ଏକ ନିର୍ଦ୍ଦିଷ୍ଟ ସମୟ ଓ ପରିସର ମଧ୍ୟରେ ଜଣେ ଜଣେ ବୁଦ୍ଧିଜୀବୀ ମଣିଷର ବୌଦ୍ଧିକ ଅଭିବ୍ୟକ୍ତି ବିଦଗ୍ଧ ସାହିତ୍ୟର ଆଧାରସ୍ତମ୍ଭ। କିନ୍ତୁ ସାଧାରଣ ମଣିଷ ସମାଜରେ ଯୁଗଯୁଗାନ୍ତର ଧରି ସଞ୍ଚିତ ବିଚିତ୍ର ଅନୁଭୂତି ଓ ଚିନ୍ତାଚେତନାରେ ଲୋକସାହିତ୍ୟ ଋଦ୍ଧିମନ୍ତ। ଗୋଟିଏ ଦେଶ ଓ ଜାତିର ସାଂସ୍କୃତିକ ପରମ୍ପରାକୁ ଜାଣିବାପାଇଁ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ। ପରମ୍ପରାକୁ ଭୁଲିବାପାଇଁ ଚେଷ୍ଟା କରି ଆଜି ଆମେ ଲକ୍ଷ୍ୟଭ୍ରଷ୍ଟ। ଲକ୍ଷ୍ୟଭ୍ରଷ୍ଟ ହୋଇଥିଲେ ଦିନେ କୁରୁକ୍ଷେତ୍ରର ରଣାଙ୍ଗନରେ ସବ୍ୟସାଚୀ ଅର୍ଜ୍ଜୁନ; ସଖାପାଇଁ ଶ୍ରୀକୃଷ୍ଣ ସମସ୍ତ ଉପନିଷଦ ରୂପ ଗାଭୀକୁ ଦୋହନ କରିଥିଲେ। ସାମ୍ପ୍ରତିକ ସମୟରେ ଅର୍ଜ୍ଜୁନଙ୍କ ବିଷାଦ ଓ ଦ୍ୱନ୍ଦ୍ୱ ଆମ ଭିତରେ ସଂକ୍ରମିତ। ଏହାର ମହୌଷଧି ଭାରତୀୟ ଲୋକସଂସ୍କୃତି ଓ ଲୋକମାନସର ଅନୁଶୀଳନ। ଶ୍ରୀମଦ୍ ଭଗବଦ୍ ଗୀତା ଭାରତୀୟ ମନୀଷାର ଚରମ ଅଭିବ୍ୟକ୍ତି; ବୃହତ୍‌କଥା ଏବଂ ତା'ର ସରସ ସଂକ୍ଷିପ୍ତ ସଂସ୍କରଣ **'କଥାସରିତ ସାଗର'** ଭାରତୀୟ ଲୋକମାନସର ସ୍ୱଚ୍ଛସୁନ୍ଦର ମୁକୁର, ଭାରତୀୟର ଆଚରଣ ସଂହିତା। ଏହି ମହାସାଗାରରେ ଅବଗାହନ କରିପାରିଲେ ଆଜିର ଭାରତୀୟ ତା'ର ଭାରତୀୟତାକୁ ଫେରିପାଇ ପାରିବା ସମ୍ଭବ ହୋଇପାରେ।

ସୋମଦେବଙ୍କ

# କଥାସରିତ ସାଗର

(ଚତୁର୍ଥ ଭାଗ)

ଅନୁବାଦ
ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ


ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦବିହାରୀ, କଟକ-୨

କଥାସରିତ ସାଗର
Kathasarita Sagar


ଅନୁବାଦ : ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ
Translated by : Dr. Sudarsana Acharya





ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers,* Binodbehari
Cuttack-753 002, Orissa (India)

ପ୍ରଥମ ପ୍ରକାଶ : ୨୦୦୫
First Edition : 2005

ପ୍ରଚ୍ଛଦ : ରଂଜିତ୍ ପରିଜା
Artist : Ranjit Parija

ଅକ୍ଷରସଜ୍ଜା : ୟୁନିଟେକ୍, କଟକ
Typeset : Unitech, Cuttack

ମୁଦ୍ରଣ : ଲକ୍ଷ୍ମୀ ଅଫ୍‌ସେଟ୍ ପ୍ରେସ୍, କଟକ
Printer : Laxmi Offset Press, Cuttack

ISBN 81-7401-577-9

Price : **Rs. 200**

# କଥାସୂଚୀ

# ମୋ କଥା ସରିନି କି ଫୁଲଗଛ ମରିନି

''ମୋ କଥାଟି ସରିଲା
ଫୁଲ ଗଛଟି ମରିଲା,
କିରେ ଫୁଲଗଛ କାଇଁକି ମଲୁ
ମତେ କାଳୀଗାଈ ଖାଇଲା,
କିରେ କାଳୀଗାଈ କିଆଁ ଖାଇଲୁ
ମତେ ଗଉଡ଼ ଜଗିଲାନି,
କିରେ ଗଉଡ଼ କାଇଁକି ଜଗିଲୁନି
ମତେ ବଡ଼ବଉ ଖାଇବାକୁ ଦେଲାନି,
କିଲୋ ବଡ଼ବଉ କିଆଁ ଖାଇବାକୁ ଦେଲୁନି
ମୋ ପିଲା କାନ୍ଦିଲା,
କିରେ ପିଲା କାଇଁକି କାନ୍ଦିଲୁ
ମତେ କଲକତରା (ଭୂଇଁଜନ୍ଦା) କାମୁଡ଼ିଲା,
କିରେ କଲକତ୍‌ରା କାଇଁକି କାମୁଡ଼ିଲୁ
ମୁଁ ଭୂଇଁ ତଳେ ତଳେ ଥାଇ
କଅଁଳ ମାଉଁସ ଟିକିଏ ଦେଖିଲେ ରୁଟ୍ କିନା ଖାଇ ।''

କଅଁଳ ମାଉଁସକୁ ଚୁମୁଟିବା ପାଇଁ ମା, ବୁଢ଼ୀମା କିମ୍ବା କଥକର ବୁଢ଼ା ଓ ବିଶି ଆଙ୍ଗୁଠି ଏକା ହୋଇ ଆସିଲେ ପିଲାଏ କେଲି ମାରି ଦଉଡ଼ନ୍ତି । 'ଏଡ଼ିକି ଏଡ଼ିକି ଲାଉ, ଯା' ଘରକୁ ସିଏ ଯାଉ' ରଡ଼ିରେ ଘରଦ୍ୱାର ଫାଟିପଡ଼େ । ଘରକୁ ସିନା ଯାଆନ୍ତି, କିନ୍ତୁ ମନଭିତରୁ କଥାର ଛାପ ଯାଏ ନାହିଁ । ଶୋଇଲାବେଳେ ବାପା ମା'ଙ୍କୁ ଅଜସ୍ର ପ୍ରଶ୍ନ ! ବଣ କୋଉଠି ଅଛି ? ରାତିରେ ରଜାଝିଅ କ'ଣ କରୁଥିବ ? ବଣ ଭିତରେ ତାକୁ ଡର ଲାଗିବନି କି ? ଇତ୍ୟାଦି ଇତ୍ୟାଦି । ସ୍ୱପ୍ନରେ ବୁଢ଼ୀ ଅସୁରୁଣୀ, ରଜାପୁଅ, ମନପବନ

ଘୋଡ଼ା ସାଙ୍ଗରେ ଦେଖାହୁଏ । ଛୁଟି ଦିନରେ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପର ମଣ୍ଟୁ ପରି ବ୍ୟାଧିତ ଆଗ୍ରହ ନେଇ ସେମାନେ ଯାଆନ୍ତି ଅଗନାଅଗନି ବନସ୍ତ, କାଚକେନ୍ଦୁ ପରି ସାତତାଳ ପାଣି ଥିବା ବେଣ୍ଟ ପୋଖରୀ, ବାଳ ମୁକୁଳାଇ ବସିଥିବା ଅସୁରୁଣୀ ବୁଢ଼ୀକୁ ଦେଖିବାପାଇଁ କେଉଁ ଅରମା ଭିତରକୁ । ହେଲେ, ମଣ୍ଟୁମାନଙ୍କର ଜିଜ୍ଞାସା ଚରିତାର୍ଥ ହୁଏ ନାହିଁ । ସଞ୍ଜ ହେଲେ ସେମାନେ ପୁଣି ଫେରି ଆସନ୍ତି କଥା ଭଣ୍ଡାର ପାଖକୁ । ପୁଣି ଆରମ୍ଭ ହୁଏ—

କି କଥା, କି କଥା !
ବେଙ୍ଗ କଥା,
କି ବେଙ୍ଗ
କାଠ ବେଙ୍ଗ, ଇତ୍ୟାଦି ।

କଥାର ଆସର ଜମେ । ପିଲାମାନେ ଆଁ କରି କଥକର ନାକକୁ ଚାହିଁଥାଆନ୍ତି । ବୁଢ଼ୀମା, ଆଈମା'ମାନେ କହି ବସନ୍ତି କେତେ କେତେ ସୁଖର, ଦୁଃଖର କଥା, ଆଉ ତା' ସାଙ୍ଗରେ ନିଜେ ଅଙ୍ଗେ ଲିଭେଇଥିବା କଥା । ସଂଖ୍ୟାହୀନ କଥାଶିଳ୍ପୀଙ୍କ ଅସଂଖ୍ୟ ଅଙ୍ଗଲିଭା ଅନୁଭୂତିରେ କଥାମୁଣି ପୂରି ପୂରି ଚାଲେ । ଶିଳ୍ପୀର ବାସ୍ତବ ଅନୁଭୂତି, ଅଦ୍ଭୁତ କଳ୍ପନାବିଳାସ ଏବଂ ପରମ୍ପରାଗତ ଅନୁସ୍ମୃତି ସେଗୁଡ଼ିକୁ କରେ ରଙ୍ଗିନ୍ ଏବଂ ତାର କଥନଶୈଳୀ ଶ୍ରୋତାମାନଙ୍କୁ କରେ ବିମୋହିତ ।

ଦୁଇହଜାର ବର୍ଷ ତଳେ ଗୁଣାଢ଼୍ୟ ତ ଥିଲେ ଏପରି ଜଣେ ନିପୁଣ ଓ କୁଶଳୀ କଥାଶିଳ୍ପୀ; ସାତବାହନ ରାଜସଭାର ଅନ୍ୟତମ ପ୍ରଚଣ୍ଡ ପ୍ରତିଭାଧାରୀ ପଣ୍ଡିତ, ଅତୀତର ଶ୍ରୁତି, ସ୍ମୃତି, ପୁରାଣ ଇତିହାସରେ ନିଷ୍ଣାତ । ଦୈବ ପ୍ରତିକୂଳତାରୁ ତାଙ୍କୁ ମାତୃଭୂମି ସହିତ ମାତୃଭାଷା ତ୍ୟାଗ କରିବାକୁ ପଡ଼ିଥିଲା । ଘୂରି ବୁଲିଲେ ଦେଶରୁ ଦେଶାନ୍ତର; ହିମାଳୟରୁ କୁମାରିକା, ଆରବରୁ ଆସାମ, ସୁବର୍ଣ୍ଣ ଦ୍ୱୀପରୁ ସୌରାଷ୍ଟ୍ର; ପଦବ୍ରଜରେ ଅତିକ୍ରମ କଲେ ବହୁ ନଦନଦୀ, ଗିରିପର୍ବତ, ବନଉପବନ; ପଥ ମଧ୍ୟରେ ସମ୍ମୁଖୀନ ହେଲେ ବହୁ ବିପଦ ଆପଦର, ଦେଖିଲେ ବହୁ ବିଚିତ୍ର ଘଟଣା, ଦୁର୍ଘଟଣା, ଉପସ୍ଥିତ ବୁଦ୍ଧିରୁ ମୁକୁଳି ଆସିଲେ ବହୁ ସଙ୍କଟଜନକ ପରିସ୍ଥିତିରୁ । ତାଙ୍କ ବିଚିତ୍ର ଅନୁଭୂତି, ସଞ୍ଚିତ ଜ୍ଞାନ ଏବଂ ଆହୃତ ଗଳ୍ପସମୂହର ଏକ ଅପୂର୍ବ ସଙ୍କଳନ ତ ସାତଲକ୍ଷ ଶ୍ଳୋକ ବିଶିଷ୍ଟ 'ବଡ୍ଡ଼ କହା'; ସୋମଦେବଙ୍କ 'କଥାସରିତ ସାଗର' ତାହାର ହିଁ ଏକ ସଂକ୍ଷିପ୍ତ, ସୁସଜ୍ଜିତ, ସୁଖପାଠ୍ୟ ଓ ମନୋଜ୍ଞ ସଂସ୍କରଣ ।

ଗୁଣାଢ଼୍ୟ ତ ଆଉ ମରଶରୀରରେ ନାହାନ୍ତି, କିନ୍ତୁ କଥା ଓ କଥାଶିଳ୍ପୀର ମୃତ୍ୟୁ ନାହିଁ । ତାଙ୍କ ଉତ୍ତରାଧିକାରୀଙ୍କ ସଂଖ୍ୟା କମ୍ ନୁହେ । ଦୁଇହଜାର ବର୍ଷ ମଧ୍ୟରେ ବହୁ

ସ୍ୱନାମଧନ୍ୟ ଓ ଅନାମଧେୟ କଥାଶିଳ୍ପୀ ତାଙ୍କ ପ୍ରଦର୍ଶିତ ପଥରେ ପଦଚାରଣା କରିଚାଲିଛନ୍ତି । ଆସିଛନ୍ତି ଅଗଣିତ ଆଇମା, ବୁଢ଼ୀମା, ଗଳ୍ପ ସାଗର, ହରିକଥା ଓ ବୁରାକଥା ପ୍ରବାଚକଙ୍କ ସହିତ ବୀରବଲ୍, ତେନାଲି ରାମଲିଙ୍ଗମ୍, ବିଷ୍ଣୁଶର୍ମା, ଶିବଦାସ, ପାଦଲିପ୍ତ ସୂରୀ, ସଂଘଦାସ ଓ ଧର୍ମଦାସ ଗଣି, ହରିଭଦ୍ର, ଜିନେଶ୍ୱର ସୂରି, ଦେବପ୍ରଭ ସୂରି, ସୋମପ୍ରଭ ସୂରି, ନେମିଚନ୍ଦ୍ର ସୂରି, ଆଚାର୍ଯ୍ୟ ସୁମତି, ରତ୍ନଶେଖର ସୂରି ପ୍ରମୁଖ ।

ଓଡ଼ିଆ ଭାଷାରେ ମଧ୍ୟ ଗୁଣାଢ଼୍ୟଙ୍କ ଉତ୍ତରାଧିକାରୀଙ୍କ ଅଭାବ ନାହିଁ । ବ୍ରଜନାଥ ବଡ଼ଜେନା ତ ଗୁଣାଢ଼୍ୟଙ୍କ ସମଧର୍ମା । ସେ ମଧ୍ୟ ରାଜ୍ୟତ୍ୟାଗୀ ଏବଂ ବହୁଭାଷାଭିଜ୍ଞ; କବି ପ୍ରତିଷ୍ଠା ତାଙ୍କର କମ୍ ନୁହେ । ପଦବ୍ରଜରେ ସେ ପରିକ୍ରମା କରିଛନ୍ତି ଓଡ଼ିଶା ଓ ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ବିଭିନ୍ନ ଅଞ୍ଚଳ, ଆହରଣ କରିଛନ୍ତି ବହୁ ବିଚିତ୍ର ଅନୁଭୂତି, ସାଜିଛନ୍ତି ଗଳ୍ପ ସାଗର । ତାଙ୍କ 'ଚତୁର ବିନୋଦ' ଅପେକ୍ଷାକୃତ କ୍ଷୁଦ୍ର ହେଲେ ସୁଦ୍ଧା 'କଥା ସରିତ ସାଗର'ର ଏକ ସମଧର୍ମୀ ଗଳ୍ପଗ୍ରନ୍ଥ । ଉଭୟଙ୍କ ଆଭିମୁଖ୍ୟର ସାମ୍ୟ ଅପରିଲକ୍ଷିତ ନୁହେ । ଏ ପ୍ରସଙ୍ଗରେ ଦୀନକୃଷ୍ଣଙ୍କ 'ପ୍ରସ୍ତାବ ସିନ୍ଧୁ' ଏବଂ ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି ରସାମୃତ'ର ନାମ ମଧ୍ୟ ଉଲ୍ଲେଖ କରାଯାଇପାରେ । ଭିନ୍ନ ଦୃଷ୍ଟିକୋଣ ଓ ଲକ୍ଷ୍ୟ ନେଇ ରଚିତ ହୋଇଥିଲେ ହେଁ କଥାଶିଳ୍ପର ଧାରାକୁ ଓଡ଼ିଶା ଭୂମିରେ ପ୍ରବହମାନ ରଖିବାପାଇଁ ଏଗୁଡ଼ିକର ଭୂମିକାକୁ ଅସ୍ୱୀକାର କରାଯାଇ ନପାରେ । ଏମାନଙ୍କ ବ୍ୟତୀତ ଅତୀତରେ ବହୁ ଅଜ୍ଞାତନାମା ଲେଖକ ବେତାଳ ପଞ୍ଚବିଂଶତି, ବିକ୍ରମାଦିତ୍ୟ ବତ୍ରିଶ ସିଂହାସନ କଥା, ହିତୋପଦେଶ ଇତ୍ୟାଦିର ଅନୁବାଦନ କରିଯାଇଛନ୍ତି । ଓଡ଼ିଶାରେ ପରିପାଳିତ ବିଭିନ୍ନ ପରମ୍ପରାଗତ ତଥା ଆଞ୍ଚଳିକ ଓଷା ବ୍ରତର ମାହାତ୍ମ୍ୟ ପ୍ରତିପାଦନ ନିମିତ୍ତ ତ ଅସଂଖ୍ୟ ଧର୍ମ କଥା ସୃଷ୍ଟି ଲାଭ କରିଛି । ଏସବୁ ଭିତରେ ଗୁଣାଢ଼୍ୟଙ୍କୁ ଖୋଜିପାଇବା କଷ୍ଟସାଧ୍ୟ ନୁହେ ।

ଏ ପ୍ରସଙ୍ଗରେ ଓଡ଼ିଶାର ପୁରାଣକାରମାନଙ୍କୁ ମଧ୍ୟ ବିସ୍ମୃତ ହେବାର ନୁହେ । ସାରଳା, ବଳରାମ, ଅଚ୍ୟୁତାନନ୍ଦ, ପୀତାମ୍ବର, ଦାମୋଦର ପ୍ରଭୃତି ମୌଳିକ ପୁରାଣ ପ୍ରଣେତାମାନେ ନିଜ ନିଜର ବିଶାଳ ପୁରାଣଗୁଡ଼ିକ ମଧ୍ୟରେ ବହୁ ଉପକଥାର ସଂଯୋଜନା ପୂର୍ବକ କଥାସୃଷ୍ଟି ପରମ୍ପରାକୁ ଉଜ୍ଜୀବିତ ରଖିଛନ୍ତି । ଗଳ୍ପସାଗର ଓ ଲୋକନୃତ୍ୟ ପ୍ରଦର୍ଶକମାନଙ୍କର ତ ଏଗୁଡ଼ିକ ଅମୂଲ୍ୟ ସମ୍ପଦ ।

ଆଧୁନିକ ଶିକ୍ଷାର ପ୍ରସାର ନିମନ୍ତେ ମିସନାରୀମାନେ ପ୍ରଚଳିତ କାହାଣୀ ଗ୍ରନ୍ଥଗୁଡ଼ିକର ହିଁ ଆଶ୍ରୟ ନେଲେ । ଉଇଲିୟମ୍ କେରିଙ୍କ ବତ୍ରିଶ ସିଂହାସନ, ଡବ୍ଲିଉ.

ସି. ଲେସିଙ୍କ ନୀତିକଥା, ହିତୋପଦେଶ ପ୍ରଭୃତି ପ୍ରାଥମିକ ସ୍ତରରେ ଓଡ଼ିଆ ବିଦ୍ୟାଳୟଗୁଡ଼ିକରେ ସାହିତ୍ୟ ପାଠ୍ୟପୁସ୍ତକ ଭାବେ ବହୁଦିନ ଧରି ପ୍ରଚଳିତ ଥିଲା । କିନ୍ତୁ ବଡ଼ ବିଚିତ୍ର, ମିସନାରୀମାନେ ଭାରତୀୟ କଥାସବୁକୁ ଓଡ଼ିଆ ଭାଷାରେ ଅନୁବାଦ କରୁଥିବା ବେଳେ ଆମେ ପାଶ୍ଚାତ୍ୟ କଥାର ପ୍ରେମରେ ପଡ଼ିଥିଲୁ ।

ସେ ଯାହାହେଉ, ଊନବିଂଶ ଶତକର ବିଦ୍ୟାଳୟ ମଧ୍ୟରୁ ଉତୁରିଥିବା ଛାତ୍ରମାନଙ୍କ ମନରେ କାହାଣୀ ପ୍ରତି ଯେଉଁ ମୋହ ସୃଷ୍ଟି ହୋଇଥିଲା, ତା'ରି ଫଳରେ ବିଂଶ ଶତକର ପ୍ରଥମାର୍ଦ୍ଧରେ ବହୁ ପ୍ରାଚ୍ୟ ପାଶ୍ଚାତ୍ୟ କାହାଣୀର ଅନୁବାଦ, ଅନୁସରଣ ସହିତ ଅଭିନବ କଥାଗ୍ରନ୍ଥ ସବୁ ସୃଷ୍ଟିଲାଭ କଲା । ଜଗନ୍ନାଥ ବଲ୍ଲଭ ଘୋଷଙ୍କ 'ଆରବ୍ୟ କୁସୁମ', ମିର୍ଯା ମହମ୍ମଦ ୟାକୁବ୍ ବେଗଙ୍କ 'ତୁରସ୍କ କୁସୁମ', କ୍ଷେତ୍ରମୋହନ ପ୍ରଧାନଙ୍କ 'ପାରସ୍ୟ କାହାଣୀ', ଉଦୟନାଥ ଷଡ଼ଙ୍ଗୀଙ୍କ 'ଜାତକ ଗଳ୍ପ', ରାମଚନ୍ଦ୍ର ଆଚାର୍ଯ୍ୟଙ୍କ ହିତକଥା, ବେତାଳ କଥା ଇତ୍ୟାଦି କେତୋଟି ଅନୂଦିତ ଗଳ୍ପ ପୁସ୍ତକ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ ।

କିନ୍ତୁ ଏସବୁ ଅନୁବାଦ ବ୍ୟତୀତ ଲୋକକଥା ପରମ୍ପରାକୁ ଅବ୍ୟାହତ ରଖିବାପାଇଁ ଯେଉଁ କେତେଜଣ ଲେଖକ ଲେଖିକା ପ୍ରୟାସ କରିଛନ୍ତି ସେମାନେ ଆଧୁନିକ ସାହିତ୍ୟର ପାଠକ ଓ ସମାଲୋଚକମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଅବହେଳିତ । ଓଡ଼ିଆ ଲୋକସାହିତ୍ୟର ଗବେଷକଙ୍କ ପାଇଁ ମଧ୍ୟ ସେମାନେ ଅପାଂକ୍ତେୟ । କିନ୍ତୁ ପୁରପଲ୍ଲୀ ଓ ବିଚ୍ଛିନ୍ନାଞ୍ଚଳର ଅଗଣିତ ଅଧାପାଠୁଆ ତଥା ଅପାଠୁଆ କିଶୋର କିଶୋରୀ, ଝିଅ ବୋହୂଙ୍କ ମଧ୍ୟରେ ସେମାନଙ୍କ ଆଦର ତଥାପି ହ୍ରାସ ପାଇନି । ହାଟବଜାରରେ ଏଗୁଡ଼ିକ ଶହ ଶହ ସଂଖ୍ୟାରେ ବିକ୍ରି ହୁଏ । ଗୁଣାଢ଼୍ୟ ପରମ୍ପରାର ଏହି ଦାୟାଦମାନଙ୍କ ରଚନା ମଧ୍ୟରୁ ଦୁଇଭାଗରେ ପ୍ରକାଶିତ ରସୁଲକୁଣ୍ଡା (ଭଞ୍ଜନଗର) ହାଇସ୍କୁଲର ଶିକ୍ଷକ ମିର୍ଯା ମହମ୍ମଦ୍ ୟାକୁବ୍ ବେଗଙ୍କ 'ଅପ୍‌ସରା କାହାଣୀ', କବିତା କଳ୍ପଲତା ଶ୍ରୀମତୀ ଅପର୍ଣ୍ଣା ଦେବୀଙ୍କ 'ଦଶକୁମାର ଚରିତ' ଓ 'ଦଶକୁମାରୀ ଚରିତ', ଅଭୟ ଚରଣ ମହାନ୍ତିଙ୍କ 'ଅବୋଲକରା କାହାଣୀ' (ଚାରିଭାଗରେ ପ୍ରକାଶିତ), ବୀରକିଶୋର ରାୟଙ୍କ 'ଶୁଆଶାରୀ କାହାଣୀ' ପ୍ରଭୃତିର ନାମ ସ୍ମରଣୀୟ । ଏ ସମୟରେ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ରାମଚନ୍ଦ୍ର ଆଚାର୍ଯ୍ୟ, ବାଳକୃଷ୍ଣ କର, ଗୋଦାବରୀଶ ମହାପାତ୍ର, ଦାମୋଦର ମିଶ୍ର, ବାଇକୋଳି ମହାପାତ୍ର, ବାଙ୍କନିଧି ପଟ୍ଟନାୟକ, ଲିଙ୍ଗରାଜ ମିଶ୍ର, ଉଦୟନାଥ ଷଡ଼ଙ୍ଗୀଙ୍କ ପରି ବହୁ ବିଶିଷ୍ଟ ଲେଖକ ରାମାୟଣ, ମହାଭାରତ, ଭାଗବତ ଏବଂ ଋଷି, ତାପସୀ, କବି, ସତୀ ପ୍ରଭୃତିଙ୍କ କଥା ଏବଂ ଜୀବନୀକୁ ଗଳ୍ପ ରୂପ ଦେବାପାଇଁ ପ୍ରୟାସ କରିଛନ୍ତି ।

କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ହଠାତ୍ ପଟ୍ଟପରିବର୍ତ୍ତନ ହୋଇଛି । ବ୍ରିଟିଶ୍ ଶାସକମାନେ ଭାରତବର୍ଷକୁ ସ୍ୱାଧୀନତା ଦେଲେ, କିନ୍ତୁ ଏ ଦେଶରୁ ଶିକ୍ଷା କରିଥିବା କୁହୁକ ବିଦ୍ୟା ସାହାଯ୍ୟରେ ବୋଧହୁଏ ଭାରତୀୟମାନଙ୍କଠାରୁ ଭାରତୀୟତା ଅପହରଣ କରିନେଲେ । ଫଳରେ ଭାରତୀୟ ପଦାର୍ଥ ପ୍ରତି ଅଶ୍ରଦ୍ଧା, ଭାରତୀୟ ମନୀଷା ପ୍ରତି ଅବିଶ୍ୱାସ, ପରମ୍ପରା ଓ ଐତିହ୍ୟ ପ୍ରତି ବିମୁଖତା ଏବଂ ସର୍ବୋପରି ଭାରତୀୟ ପ୍ରତି ଘୃଣା ବୃଦ୍ଧି ପାଇବାକୁ ଲାଗିଲା । ଆମେ ସବୁ ଥାଇ ନିଃସ୍ୱ ହୋଇପଡ଼ିଲୁ । ରାଜନୈତିକ ସ୍ୱାଧୀନତା ଅପେକ୍ଷା ଏ ମାନସିକ ବ୍ୟାଧି ବଡ଼ ମାରାତ୍ମକ । ଏହି ବ୍ୟାଧି ପ୍ରଭାବରୁ ଆମେ ଆମର ଅତୀତ ସଂସ୍କୃତିକୁ ଭୁଲିଯାଇଛୁ, ବେଦ, ଉପନିଷଦ, ପୁରାଣ, ଭଗବଦ୍‌ଗୀତା ଆମଠାରୁ ଦୂରେଇ ଯାଇଛନ୍ତି, ଭାଲୁ ଧରିବାପରି ଏକ ଧାରକରା ସଂସ୍କୃତିକୁ ନା ଆମେ ଧରିପାରୁଛୁ ନା ଛାଡ଼ିପାରୁଛୁ । ଦୂରଦର୍ଶନର ବିଭିନ୍ନ କାର୍ଯ୍ୟକ୍ରମ ତଥା ବୌଦ୍ଧିକ ଦ୍ୟୂତକ୍ରୀଡ଼ାରେ ଆମେ ଲକ୍ଷ୍ୟ କରୁଛୁ ଆମ ଉଚ୍ଚଶିକ୍ଷିତା ଶ୍ରୀମତୀମାନେ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀମାନେ, ବିଭିନ୍ନ କ୍ଷେତ୍ରରେ ପଦାଧିଷ୍ଠିତ ବିଜ୍ଞମାନେ ବିବିଧ ବିଷୟକ ବହୁ ଜଟିଳ ପ୍ରଶ୍ନର ଉତ୍ତର ଅନାୟାସରେ ଦେଇପାରୁଥିବା ବେଳେ ଭଗବଦ୍‌ଗୀତା ମହାଭାରତର କେଉଁ ପର୍ବରେ ଅଛି, ଭୀଷ୍ମଙ୍କ ମାତୃଦତ୍ତ ନାମ କ'ଣ ଥିଲା, ଇନ୍ଦ୍ରଜିତର ଅନ୍ୟ ନାମ କ'ଣ, ରାବଣର ମାତା ନାମ କ'ଣ, କର୍ଣ୍ଣ କାହାଠାରୁ ବିଦ୍ୟାଶିକ୍ଷା କରିଥିଲେ ପ୍ରଭୃତି ପ୍ରଶ୍ନ ସେମାନଙ୍କୁ ପ୍ରତିଯୋଗିତାରେ ପରାସ୍ତ କରାଇଥାଏ । ଏଥିପାଇଁ ଭାରତ ବିକାଶ ପରିଷଦ ପକ୍ଷରୁ 'ଭାରତକୋ ଜାନୋ' କାର୍ଯ୍ୟକ୍ରମ ଆରମ୍ଭ ହୋଇଛି ।

ଭାରତର ଅନ୍ତରାତ୍ମାକୁ ଆକଳନ କରିଥିଲେ ଗୁଣାଢ଼୍ୟ, ତାଙ୍କୁ ଅନୁସରଣ କରି ସୋମଦେବ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ କାଶ୍ମୀରକୁ ରକ୍ଷା କରିବାପାଇଁ ପ୍ରୟାସ କରିଥିଲେ, ଭାରତର ଅନ୍ତରାତ୍ମା ସହିତ ପରିଚିତ ଥିଲେ ଗାନ୍ଧୀଜି, ଭାରତର ସାଂସ୍କୃତିକ ଚେତନାକୁ ଆବିଷ୍କାର କରିବାପାଇଁ ଚେଷ୍ଟା କରିଥିଲେ ଜବାହାରଲାଲ ନେହୁରୁ ।

ତଥାପି ଭାରତ ଅନାବିଷ୍କୃତ । ଜ୍ଞାନର ବୀଜ ସାଉଁଟିବା ପାଇଁ ବିଶ୍ୱର ବହୁ ମନୀଷୀ ଏଠାରେ ପଦାର୍ପଣ କରିଛନ୍ତି ଓ କରୁଛନ୍ତି । ସାଉଁଟିଥିବା ଜ୍ଞାନଦ୍ୱାରା ମାନବ କଲ୍ୟାଣ ସାଧନ ପାଇଁ ସମର୍ଥ ହୋଇଛନ୍ତି । କିନ୍ତୁ ନିଜ ସମ୍ପର୍କରେ ଆମର ଅଜ୍ଞତାରୂପକ ତମିସ୍ରା କ୍ରମାନ୍ୱୟରେ ବୃଦ୍ଧିପ୍ରାପ୍ତ ହୋଇଚାଲିଛି । ଅମାବାସ୍ୟା କେତେଦୂରରେ କିଏ ଜାଣେ !

ତେଣୁ ଭାରତ ଆଜି ଅଶାନ୍ତ, ଶାନ୍ତିର ଯେତେ କପୋତ ଉଡ଼ାଇଲେ ବି ଆଭ୍ୟନ୍ତରୀଣ ଶାନ୍ତି କାହିଁ ? ଓଡ଼ିଶାର ଅବସ୍ଥା ତତୋଽଧିକ ବିପନ୍ନ ।

ଶାସକମାନେ ନିଜର ବ୍ୟକ୍ତିଗତ ସ୍ୱାର୍ଥ, ପଦପଦବୀ, ପରିବାର ଓ ଭୋଟ୍‌ବ୍ୟାଙ୍କ୍ ସୃଷ୍ଟି ମୋହରେ ଅନ୍ଧୀଭୂତ ଧୃତରାଷ୍ଟ୍ର, ରାଷ୍ଟ୍ର କଥା ଚିନ୍ତା କରିବାପାଇଁ ସମୟର ଘୋର ଅଭାବ । ଦୂରଦୃଷ୍ଟି ଅଭାବରୁ ବର୍ତ୍ତମାନସର୍ବସ୍ୱ ଶାସକଙ୍କ ଅଧିକାଂଶ ଯୋଜନା ରାଷ୍ଟ୍ର ଓ ଜନତାର ମଙ୍ଗଳ ପରିବର୍ତ୍ତେ କ୍ଷତି ହିଁ କରୁଛି । ପ୍ରଶାସକମାନେ ଶାସକମାନଙ୍କ ଛତ୍ରଛାୟା ତଳେ ଅବାରିତ ଭାବେ ଦୁର୍ନୀତିଗ୍ରସ୍ତ; ଯୌଗନ୍ଧରାୟଣ, ଚାଣକ୍ୟ, ଗୁଣଶର୍ମା କାହାନ୍ତି ? କର୍ମଚାରୀମାନେ କର୍ମକୁଣ୍ଠ ଓ ଦାୟିତ୍ୱହୀନ । ଛାତ୍ରଛାତ୍ରୀମାନଙ୍କୁ ନିୟନ୍ତ୍ରଣ କରୁଥିବା ଶିକ୍ଷକ ଆଜି ଶିକ୍ଷାର୍ଥୀମାନଙ୍କଦ୍ୱାରା ନିୟନ୍ତ୍ରିତ; ଶାସକ ପ୍ରଜାପାଳନପାଇଁ ଅସମର୍ଥ, ଭୋଟରମାନଙ୍କ ଦ୍ୱାରା ପରିଚାଳିତ; ନିଯୁକ୍ତି କ୍ଷେତ୍ରରେ ଜ୍ଞାନକୌଶଳ ପରିବର୍ତ୍ତେ ଜାତି ହେଉଛି ମାନଦଣ୍ଡ । ସର୍ବତ୍ର ବିଶୃଙ୍ଖଳା ଓ ନୈରାଶ୍ୟ । ଏଣୁ ଆଜି ଜଣେ ସୋମଦେବ, ଜଣେ ଗୁଣାଢ଼୍ୟଙ୍କ ଆବଶ୍ୟକତା ଉପଲବ୍ଧି କରାଯାଉଛି ।

ଗୁଣାଢ଼୍ୟଙ୍କ ହଜାରେ ବର୍ଷ ପରେ ସୋମଦେବ କାଶ୍ମୀରର ବିଶୃଙ୍ଖଳାକୁ ନିୟନ୍ତ୍ରଣ କରିବାପାଇଁ 'ବଡ୍‌ଡ଼ କହା'ର ସାହାଯ୍ୟ ନେଇଥିଲେ । ତା'ର ଆଉ ହଜାରେ ବର୍ଷ ପରେ ଅର୍ଥାତ୍ ସାମ୍ପ୍ରତିକ ସମୟରେ ଦୁଃସ୍ଥିତିକୁ ସମ୍ଭାଳି ନେବାପାଇଁ ଏବଂ ମାନବର ସମସ୍ତ କଲ୍ୟାଣ ଉଦ୍ଦେଶ୍ୟରେ ପୁଣି ଗୁଣାଢ଼୍ୟ ଏବଂ ସୋମଦେବଙ୍କୁ ସ୍ମରଣ କରାଯାଉଛି । ଏ ଦିଗରେ ଯେଉଁ ବଳିଷ୍ଠ ଲେଖକମାନେ ଆଗ୍ରହ ପ୍ରକାଶ କରୁଛନ୍ତି, ସେମାନଙ୍କର ପୁରୋଭାଗରେ ଅଛନ୍ତି ମନୋଜ ଦାସ ।

ଗୁଣାଢ଼୍ୟଙ୍କ ସହିତ ମନୋଜ ଦାସଙ୍କ ସାମ୍ୟ ଯଥେଷ୍ଟ । ସେ ଗୃହତ୍ୟାଗୀ କିନ୍ତୁ ସନ୍ନ୍ୟାସୀ ନୁହନ୍ତି; ଭାରତବର୍ଷକୁ ଅନ୍ତରଙ୍ଗ ଭାବେ ଚିହ୍ନିବା ପାଇଁ ତାଙ୍କର ଆକାଙ୍‌କ୍ଷା ବଳବତୀ । ଭାରତର କୋଣ ଅନୁକୋଣ ସେ ପରିକ୍ରମା କରିଛନ୍ତି ବହୁବାର, ବୁଲିଛନ୍ତି ଭାରତ ବାହାରେ ଥିବା ବହୁ ଦେଶବିଦେଶ । ସାଧୁସନ୍ଥଙ୍କଠାରୁ ଆରମ୍ଭ କରି ସାଧାରଣ ଜନତା ସହିତ ସେ ଅନ୍ତରଙ୍ଗ ଭାବେ ମିଶିଛନ୍ତି; ସେମାନଙ୍କଠାରୁ ସଂଗ୍ରହ କରିଛନ୍ତି ନିଜ ନିଜ ଅଞ୍ଚଳର କିମ୍ବଦନ୍ତୀ ଓ ଇତିହାସ । ସେ ପବିତ୍ର ଆଶ୍ରମର ଅନ୍ତେବାସୀ କିନ୍ତୁ ସଂସାର-ବିମୁଖୀ ନୁହନ୍ତି; ନିଷ୍ଠାପର କର୍ମଯୋଗୀ । ଗୁଣାଢ଼୍ୟଙ୍କ ପରି ସେ ମୂଳତଃ ଜଣେ ଶିକ୍ଷକ, ଭବିଷ୍ୟତ ନାଗରିକଙ୍କୁ ଗଢ଼ିବା ତାଙ୍କର ଲକ୍ଷ୍ୟ । ଅରବିନ୍ଦ ଦର୍ଶନର ସେ ଜଣେ ଏକନିଷ୍ଠ ପ୍ରବକ୍ତା, କିନ୍ତୁ ଭାରତୀୟ ବିଭିନ୍ନ ଦାର୍ଶନିକ ମତବାଦ ସହ ସେ ଅପରିଚିତ ନୁହନ୍ତି ।

ସାମ୍ୟବାଦରୁ ସେ ଆହରଣ କରିଛନ୍ତି ମାନବିକ-ସମ୍ବେଦନଶୀଳତା, ଅରବିନ୍ଦ ଶିକ୍ଷା ଦେଇଛନ୍ତି ରାଷ୍ଟ୍ରପ୍ରୀତି ସହିତ ଗଭୀର ଆଶାବାଦ । 'କଥା ସରିତ ସାଗର'ର ଏହାହିଁ ତ ପ୍ରମୁଖ ବକ୍ତବ୍ୟ । ସୋମଦେବ ଦୈବୀ ବାଣୀ ମାଧ୍ୟମରେ ନୈରାଶ୍ୟ ପ୍ରପୀଡ଼ିତ ହୋଇ ଆତ୍ମହତ୍ୟା କରିବାକୁ ଯାଉଥିବା ମଣିଷ ମନରେ ଆଶାର ସଞ୍ଚାର କରାଇଛନ୍ତି; ଶୁଣାଇଛନ୍ତି 'ଉତ୍ତିଷ୍ଠତ, ଜାଗ୍ରତ ପ୍ରାପ୍ୟବରାନ୍ ନିବୋଧତ' । ମନୋଜ ଦାସ ସେହିପରି ଦିବ୍ୟ ଚେତନାର ସନ୍ଧାନ ଦେଇଛନ୍ତି ଆଜିର ଅଶାନ୍ତ ମାନବ ସମାଜକୁ । 'କନକ ଉପତ୍ୟକାର କାହାଣୀ'ର ନାୟକ ରାଜୁର ଭାଷାରେ, 'ଚାହିଁ ଦେଖ । ସେ ସରୋବର ତଳେ କାଦୁଅ ଛଡ଼ା ଆଉ କିଛି ନାହିଁ । କିନ୍ତୁ ତହିଁରୁ ଉତ୍ପନ୍ନ ସେ ପଦ୍ମଫୁଲ ଆଡ଼େ ଦୃଷ୍ଟି ଦିଅ । ସେ କେଡ଼େ ଦିବ୍ୟସୁନ୍ଦର । ଯଦି ସୂର୍ଯ୍ୟ କିରଣର ମହିମାରେ ପଙ୍କରୁ ପଦ୍ମର ସମ୍ଭବ, ତେବେ ଦିବ୍ୟ କରୁଣାର ମହିମାରେ ଆଜିର ମଣିଷରୁ ମହତ୍ତର ମଣିଷ ସମ୍ଭବ ନହେବ କାହିଁକି ?' ମୃତ୍ୟୁଭୀତ, ନିରାଶ, କିଂକର୍ତ୍ତବ୍ୟବିମୂଢ଼ ମଣିଷ ମୁହଁରେ ଆଶା ଓ ବିଶ୍ୱାସର ହସ ଫୁଟାଇବା ତ ତାଙ୍କ ଲେଖନୀର ଆଭିମୁଖ୍ୟ ।

ଜଣେ ସଫଳ ଔପନ୍ୟାସିକ ଓ କ୍ଷୁଦ୍ରଗଳ୍ପ ରଚୟିତା ଭାବେ ମନୋଜ ଦାସ ଆନ୍ତର୍ଜାତୀୟ ସୁଖ୍ୟାତି ଅର୍ଜନ କରିଛନ୍ତି । ତାଙ୍କ କଥା ସାହିତ୍ୟ ପାଠକର ଚେତନାକୁ ଆଲୋଡ଼ନ କରେ, ଉର୍ଦ୍ଧ୍ୱାୟିତ କରେ; 'ନିଜର ଅଜ୍ଞତାକୁ ଭାରି ଭଲ ପାଉଥିବା, ଗେଲ କରୁଥିବା' ଚରିତ୍ରମାନଙ୍କ ପ୍ରତି ପାଠକ ସମ୍ବେଦନଶୀଳ ହୋଇଉଠେ; କିନ୍ତୁ ବଡ଼ ବିଚିତ୍ର, ଘୃଣା କରିପାରେ ନାହିଁ । ତାଙ୍କ କଥା ସାହିତ୍ୟ ପାଠ କଲାବେଳେ ପାଠକ ସ୍ଥୂଳ ଓ ସୂକ୍ଷ୍ମ ଜଗତ, ଭୌତିକତା ଆଧିଭୌତିକତା, ବିଶ୍ୱାସ୍ୟ ଅବିଶ୍ୱାସ୍ୟ, ବାସ୍ତବତା ଅବାସ୍ତବତା ମଧ୍ୟରେ ସୀମାରେଖା ନିର୍ଣ୍ଣୟ କରୁ କରୁ ସେଗୁଡ଼ିକର ଶିଳ୍ପ କୌଶଳ ଭିତରେ ନିଜକୁ ହଜାଇଦିଏ । ଅତୀତର କାହାଣୀ କଳା ସହିତ ଆଧୁନିକ କ୍ଷୁଦ୍ରଗଳ୍ପର କଳା କୌଶଳର ସମନ୍ୱିତ ରୂପ ତାକୁ ବିମୁଗ୍ଧ କରେ । ସେ ତ ନିଜେ ସ୍ୱୀକାର କରନ୍ତି ଯେ ବାଲ୍ମୀକି ଓ ବ୍ୟାସଙ୍କ ସହିତ ସୋମଦେବ ଓ ବିଷ୍ଣୁଶର୍ମା ତାଙ୍କ ଆଦର୍ଶ । ମହାକାବ୍ୟିକ ଶୈଳୀ ସହିତ କାହାଣୀ ଶିଳ୍ପ କୌଶଳର ଏ ସମନ୍ୱୟ ଅନନ୍ୟ । ଛନ୍ଦୋବଦ୍ଧ ହେଲେ ସୁଦ୍ଧା କଥାସରିତ ସାଗର ପାଇଁ ସୋମଦେବ ତ ଏତାଦୃଶ ଶୈଳୀକୁ ହିଁ ଆପଣେଇ ନେଇଥିଲେ ।

ଆଧୁନିକତାର ପ୍ରଚଣ୍ଡ ପ୍ରଭାବରେ ଗୁଣାଢ୍ୟ ପରମ୍ପରାରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା ବୋଲି ମନେ ହେଉଥିଲା ବେଳେ ମନୋଜ ଦାସ ପୁଣି ଜଣେ ସୋମଦେବ କିମ୍ବା ବିଷ୍ଣୁ ଶର୍ମା ପରି ସେହି ପରମ୍ପରାକୁ ପୁନର୍ଜୀବିତ କରିଛନ୍ତି । ତାଙ୍କ ଲେଖନୀରେ ଅତୀତର

କାହାଣୀ ଶିଳ୍ପର ନବୀକରଣ ହୋଇଛି । ଏକ ହଜାର ବର୍ଷ ପରେ ଗୁଣାଢ୍ୟ ସଂଗୃହୀତ କାହାଣୀ ସବୁ ବିଭିନ୍ନ ଲକ୍ଷ୍ୟ ସାଧନ ପାଇଁ ପୁଣିଥରେ ବିନିଯୁକ୍ତ ହୋଇଛନ୍ତି । ସରସ ଗପ, ଅବୋଲକରା କାହାଣୀ, ସାଧୁସନ୍ଥଙ୍କ କଥିତ ଉପକଥା, ପ୍ରାପ୍ତବୟସ୍କର ପଞ୍ଚତନ୍ତ୍ର ତ ତା'ର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ । 'କନକ ଉପତ୍ୟକାର କାହାଣୀ' ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ଦର୍ଶନର ଏକ ସରଳ ଓ ସୁବୋଧ୍ୟ ଭାଷ୍ୟ ନୁହେ କି ! ଲେଖକଙ୍କ ପ୍ରତ୍ୟେକଟି ପର୍ଯ୍ୟଟନ ଅନୁଭୂତି ତ ଗୋଟିଏ ଗୋଟିଏ କାହାଣୀ । ତାଙ୍କ ବାଚନ ଶୈଳୀ ଏକାନ୍ତଭାବେ ମନୋଜ୍ଞୀୟ, ଶିଶୁ ଓ ବୟସ୍କଙ୍କ ସମାନ ଭାବେ ଉପଭୋଗ୍ୟ । ସେ ଆମ ସମୟର ଗୁଣାଢ୍ୟ । ଆଧୁନିକତାର ପ୍ରଲେପ ଦେଇ ସେ କାହାଣୀକୁ କ୍ଷୁଦ୍ରଗଳ୍ପ ରୂପେ ପରିବେଷଣ କରିଛନ୍ତି ଏବଂ କ୍ଷୁଦ୍ରଗଳ୍ପକୁ କାହାଣୀ ରୂପ ଦେଇଛନ୍ତି; ସୂଚାଇଛନ୍ତି, ଫୁଲଗଛ ମରି ପାରେନା କି କଥା ଶେଷ ହୋଇଯାଇ ପାରେନା ।

ମନୋଜ ଦାସ କାହାଣୀ ସୃଷ୍ଟିର କଳାକୁ ପୁନର୍ଜୀବିତ କରିଥିଲେ ସୁଦ୍ଧା ସେଗୁଡ଼ିକ ମୁଖ୍ୟତଃ ବୟସ୍କ ପାଠକମାନଙ୍କ ମଧ୍ୟରେ ସୀମିତ ହୋଇପଡୁଛି । ସାଧାରଣ ଜନତା ଓ କିଶୋରକିଶୋରୀଙ୍କ ନିକଟରେ ସେସବୁର ବାର୍ତ୍ତା ପହଞ୍ଚାଇବା ପାଇଁ ଯେଉଁ ମାଧ୍ୟମ ଆବଶ୍ୟକ ତାହା ଧୀରେ ଧୀରେ ଲୋପ ହୋଇସାରିଛି । ଆମ ସମୟର ମା, ବୁଢ଼ୀମାମାନେ କାହାଣୀ କହିବାର ବିଶିଷ୍ଟ କଳାଟି କେବେଠାରୁ ଭୁଲିଗଲେଣି । ଗୋପାଳଚନ୍ଦ୍ର ପ୍ରହରାଜ, ରାଘବାନନ୍ଦ ଦାସ, କୁଞ୍ଜବିହାରୀ ଦାସ ପ୍ରମୁଖ ବହୁ ଲୋକକାହାଣୀ ସଂଗ୍ରହ କରିଛନ୍ତି, ମିର୍ଜା ମହମ୍ମଦ ୟାକୁବ୍ ବେଗ୍ ପ୍ରଭୃତି ବହୁ ବିଦେଶୀୟ କାହାଣୀ ଅନୁବାଦ କରିଛନ୍ତି, ଅପର୍ଣ୍ଣା ଦେବୀଙ୍କ ପରି ସ୍ରଷ୍ଟାମାନେ ଲୋକକଥା ଅନୁସରଣରେ ନୂତନ ଗଳ୍ପ ସୃଷ୍ଟି କରିଛନ୍ତି, ମନୋଜ ଦାସ ତ ସାମ୍ପ୍ରତିକ ଆବଶ୍ୟକତାକୁ ଦୃଷ୍ଟିରେ ରଖି କାହାଣୀକୁ ନୂତନଭାବେ ପରିବେଷଣ କରୁଛନ୍ତି, କିନ୍ତୁ ଏସବୁକୁ ନିଜ ରଙ୍ଗରେ ରଞ୍ଜିତ କରି ଶୁଣାଇବାପଇଁ କଥାକୁହା ମଣିଷ କାହାନ୍ତି ? ଶିଶୁର ଅନନ୍ତ ଜିଜ୍ଞାସା ପରିପୂରଣ ନିମିତ୍ତ, ତା'ର କଳ୍ପନା ଶକ୍ତିକୁ ପରିପୋଷଣ କରିବା ନିମିତ୍ତ, ତା' ମଧ୍ୟରେ ଥିବା ସ୍ୱାଭାବିକ ପ୍ରତିଭାକୁ କ୍ରିୟାଶୀଳ କରିବା ନିମିତ୍ତ କଥା ଶୁଣାଇବା ପାଇଁ ଜେଜିମା ଜେଜେବାପା କାହାନ୍ତି ? ଅସୁର ଅସୁରୁଣୀର ହତ୍ୟା, କ୍ରୂରା ରାଣୀର ଦଣ୍ଡବିଧାନ, ରାଜକୁମାରର ଈପ୍ସିତ ବସ୍ତୁ ଲାଭ, ସଙ୍ଗାତମାନଙ୍କର ମିତ୍ର ସ୍ନେହ ମାଧ୍ୟମରେ କିଶୋର କିଶୋରୀମାନଙ୍କ ନୈସର୍ଗିକ ନୀତିବୋଧକୁ କିଏ ଆଉ ଜାଗ୍ରତ କରାଉଛି ?

ପ୍ରାକ୍-ପ୍ରାଥମିକରୁ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ ଗଳ୍ପକଥନ ପ୍ରଣାଳୀ ଯେ ଶିଶୁ ପ୍ରଶିକ୍ଷଣର ଏକ ପ୍ରକୃଷ୍ଟ ମାଧ୍ୟମ, ବିଷ୍ଣୁଶର୍ମାଙ୍କଠାରୁ ଆରମ୍ଭ କରି ଫ୍ରୋବେଲ୍, କୋଠାରୀ ପ୍ରଭୃତିଙ୍କ ପର୍ଯ୍ୟନ୍ତ ବିଶ୍ୱର ସମସ୍ତ ଶିକ୍ଷାବିତ୍ ସ୍ୱୀକାର କରିଆସିଛନ୍ତି । କିନ୍ତୁ ଆଜିର ପାଠ୍ୟକ୍ରମ ଏପରି ବିଷୟ-ଭାରାକ୍ରାନ୍ତ ଯେ ଶିକ୍ଷା କକ୍ଷରେ ନା ଶିକ୍ଷକ ନା ଶିକ୍ଷାର୍ଥୀ କାହାରି ଗଳ୍ପ କହିବା ବା ଗଳ୍ପ ଶୁଣିବାର ଅବସର ନାହିଁ । କେବଳ ଭାଷା ଓ ସାହିତ୍ୟ ଶିକ୍ଷାବେଳେ ସେମାନେ କିଛିଟା ଗଳ୍ପ ଶୁଣିବାର ସୌଭାଗ୍ୟ ଲାଭ କରିଥାନ୍ତି । ଗଣିତ, ବିଜ୍ଞାନ, ଇତିହାସ, ଭୂଗୋଳ ଇତ୍ୟାଦି ତ ଶୁଷ୍କ ନୀରସ ତଥ୍ୟ ବ୍ୟତୀତ ଅନ୍ୟ କିଛି ନୁହେ । ପାଠ୍ୟପୁସ୍ତକ ବାହାରେ ଗଳ୍ପ ବହି ପଢ଼ିବାପାଇଁ ପିଲାମାନଙ୍କର ସମୟ ଓ ସୁଯୋଗ କାହିଁ ? ଫଳରେ ସେମାନଙ୍କ ଜିଜ୍ଞାସା ଜିଜ୍ଞାସାରେ ରହିଯାଏ, ଆନୁଷ୍ଠାନିକ ଶିକ୍ଷାର ଉଚ୍ଚତମ ସୋପାନ ଅତିକ୍ରମ କରିସାରିବା ପରେ ମଧ୍ୟ ସେମାନଙ୍କ ମନରେ ମାନବିକ ମୂଲ୍ୟବୋଧର ଅଭାବ । ସେମାନେ କେବଳ ଅର୍ଥ ଉପାର୍ଜ୍ଜନ ଓ ଭୋଗବିଳାସ ପାଇଁ ସେହି ଅର୍ଥର ଦୁରୁପଯୋଗ ଶିକ୍ଷାର ମୌଳିକ ଲକ୍ଷ୍ୟ ବୋଲି ଧରିନେଇ ଥାଆନ୍ତି । ସେଥିପାଇଁ ତ ଆଜି ସାରା ବିଶ୍ୱରେ ଦୁର୍ନୀତି, ଅପରାଧପ୍ରବଣତା ଓ ସନ୍ତ୍ରାସବାଦର ଅଖଣ୍ଡ ରାଜତ୍ୱ !

ଶିଶୁମାନଙ୍କ କାହାଣୀ ଶୁଣିବାର ନୈସର୍ଗିକ ପ୍ରବୃତ୍ତିକୁ ଦୃଷ୍ଟିରେ ରଖି ଦୂରଦର୍ଶନର ବିଭିନ୍ନ ଚାନେଲ କାହାଣୀ ଶୃଙ୍ଖଳାସବୁ ପ୍ରଦର୍ଶନ କରାଇଥାନ୍ତି । ବିକ୍ରମ ଓ ବେତାଳ, ପଞ୍ଚତନ୍ତ୍ର, ହାତିମ୍‌ତାଇ, ଆଲ୍ଲାଦିନ୍ ଓ ଚାଳିଶ ଚୋର ପ୍ରଭୃତି ନିଶ୍ଚିତଭାବେ ଆକର୍ଷଣୀୟ । କାର୍ଟୁନ୍ ତ ଶିଶୁମାନଙ୍କର ପ୍ରିୟ ଚାନେଲ୍ । କିନ୍ତୁ ଦୃଶ୍ୟପଟର ଦ୍ରୁତ ପରିବର୍ତ୍ତନ ଏବଂ ଶବ୍ଦତରଙ୍ଗର କୋଳାହଳ ଭିତରେ ଏହା ଶିଶୁକୁ ସାମୟିକ ଆନନ୍ଦ ଦେଉଥିଲେ ସୁଦ୍ଧା ତା'ର ମାନସପଟରେ କୌଣସି ସ୍ଥାୟୀ ପ୍ରଭାବ ପକାଇ ପାରନ୍ତି ନାହିଁ । ଏଥିପାଇଁ ଆବଶ୍ୟକ କାହାଣୀକୁ ସରସସୁନ୍ଦର ଭାବେ ପରିବେଷଣ କରିପାରୁଥିବା କଥକଟିଏ ଶିକ୍ଷକ ବା ଗୁରୁଜନଟିଏ । ସମ୍ମୁଖରେ ବସି ତା'ଠାରୁ କାହାଣୀ ଶୁଣିବା ଦ୍ୱାରା ଶିଶୁମାନେ ଯେ କେବଳ ଆନନ୍ଦ ଲାଭ କରନ୍ତି ତା' ନୁହେ, ବିଭିନ୍ନ ଶବ୍ଦ, ଶବ୍ଦସବୁର ପ୍ରୟୋଗାତ୍ମକ ବିଶେଷତ୍ୱ, ବାକ୍ୟଗଠନ, ବିଭିନ୍ନ ଭାବକୁ ପ୍ରକାଶ କଲାବେଳେ ସ୍ୱର ପରିବର୍ତ୍ତନ ପ୍ରକ୍ରିୟା, ମୁଖ ଓ ଅଙ୍ଗପ୍ରତ୍ୟଙ୍ଗର ବିକାର ସହିତ ଅଭିନୟ କଳା ଇତ୍ୟାଦି ଶିକ୍ଷା କରିବାର ସୁଯୋଗ ପାଇଥାଆନ୍ତି । ଏହାଦ୍ୱାରା ସେମାନଙ୍କ ଏକାଗ୍ରତା ଓ ଗ୍ରାହିକା ଶକ୍ତି ବିକଶିତ ହୁଏ, ଭବିଷ୍ୟତରେ ଭଲ କହିବା, ଭଲ ଲେଖିବା, ଏପରିକି ଭଲ ପଢ଼ିବାପାଇଁ ମଧ୍ୟ ସେମାନେ

ସମର୍ଥ ହୁଅନ୍ତି । ଏବେ ତ ଶିଶୁମନସ୍ତତ୍ତ୍ୱବିତ୍‌ମାନେ କହିଲେଣି ଯେ ଯେଉଁ ଶିଶୁ ଭଲ ଗପ କହିପାରେ, ସେ ଅଙ୍କରେ ଭଲ କରେ ।

ବର୍ତ୍ତମାନ କାହାଣୀର ଗନ୍ତାଘର ଅତ୍ୟନ୍ତ ସମୃଦ୍ଧ । ପତ୍ରପତ୍ରିକା, ଦୂରଦର୍ଶନ, ଚିତ୍ରଗଳ୍ପ ପୁସ୍ତିକା, କମ୍ପ୍ୟୁଟର ଇତ୍ୟାଦି ପ୍ରତ୍ୟହ ଶହ ଶହ କାହାଣୀ ସୃଷ୍ଟି କରି ଏହାର ପରିସରକୁ ପରିବ୍ୟାପ୍ତ କରିବାରେ ଲାଗିଛନ୍ତି । ମନୋବିଜ୍ଞାନୀ, ସମାଜବିଜ୍ଞାନୀ, ପରିବେଶବିଜ୍ଞାନୀ, ଶିକ୍ଷାବିତ୍, ଶିକ୍ଷକ ସମସ୍ତେ କାହାଣୀଶିଳ୍ପର ଗୁରୁତ୍ୱ ଉପଲବ୍ଧି କଲେଣି । କାଳୀଗାଈ କବଳରୁ କାହାଣୀ ଉପବନର ମରି ଆସୁଥିବା ଫୁଲଗଛ ସବୁ ପୁଣି ପୁଷ୍ପଭାରରେ ଅବନତ ହେଲାଣି, ଗୁଣାଢ଼୍ୟଙ୍କ ପରମ୍ପରା ପୁନରୁଜ୍ଜୀବିତ । ଆବଶ୍ୟକ ବିଷ୍ଣୁଶର୍ମା; କାହାଣୀଗୁଡ଼ିକୁ ବିଭିନ୍ନ ବୟସର ଶ୍ରୋତାଙ୍କ ପାଇଁ ସଜାଇ ଉପଯୁକ୍ତ କ୍ଷେତ୍ରରେ ସେସବୁକୁ ବିନିଯୋଗ କରିବା । ଉତ୍ତର ବୟସର ଆମେସବୁ ବିଷ୍ଣୁଶର୍ମା ହେବା କି ?

ସୁଦର୍ଶନ ଆଚାର୍ଯ୍ୟ





ଇଦଂ ଗୁରୁଗିରୀନ୍ଦ୍ରଜାପ୍ରଣୟମନ୍ଦରାନ୍ଦୋଳନାତ୍-
ପୁରା କିଲ କଥାମୃତଂ ହରମୁଖାମ୍ବୁଧେରୁଦ୍‌ଗତମ୍ ।
ପ୍ରସହ୍ୟ ରସୟନ୍ତି ଯେ ବିଗତବିଘ୍ନଲବ୍ଧର୍ଦ୍ଧୟୋ
ଧୁରଂ ଦଧତି ବୈବୁଧୀଂ ଭୁବି ଭବପ୍ରସାଦେନ ତେ ॥



ପରିସ୍ଥିତି ଓ ପରିବେଶର ପରିବର୍ତ୍ତନ ଓ ଗଣମାଧ୍ୟମର ବିପୁଳ ବିକାଶ ସତ୍ତ୍ୱେ ମଣିଷ ମନରୁ କଥା ଶୁଣିବାର ପ୍ରବୃତ୍ତି ତଥାପି ଲୋପପାଇନି । ଶିଶୁମାନେ ଏବେ ବି ଖାଇବା କି ଶୋଇବା ବେଳେ ମାଆ, ଜେଜେମା, ଆଈମାନଙ୍କ ପାଖରେ ଗପ ଶୁଣିବାପାଇଁ ଅଳି କରୁଛନ୍ତି । ନିଜ ଅନୁଭୂତି ବା ବକ୍ତବ୍ୟକୁ ବନେଇ ଚୁନେଇ କହିବାର ମୋହ ବୟସ୍କମାନଙ୍କୁ ତଥାପି ଆଚ୍ଛନ୍ନ କରି ରଖିଛି । ଭାଷଣ କିମ୍ବା ପ୍ରବଚନ ଶୁଣିବା ପାଇଁ ଯୁବକଯୁବତୀଙ୍କଠାରୁ ବୃଦ୍ଧବୃଦ୍ଧାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ମନରେ ପ୍ରବଳ ଆଗ୍ରହ । ଏ ଦୃଷ୍ଟିରୁ ସୋମଦେବ ତ ଜଣେ ଭଲ ବକ୍ତା, ଉତ୍ତମ ପ୍ରବାଚକ ଏବଂ ଅଦ୍ୱିତୀୟ ଗଳ୍ପସାଗର । କଥାସରିତ ସାଗର ହିଁ ତା'ର ପ୍ରକୃଷ୍ଟ ପ୍ରମାଣ ।



ଅବ୍ୟାଦ୍‌ବୋ ବିଘ୍ନବିଧ୍ୱଂସକୀର୍ତ୍ତିସ୍ତମ୍ଭମିବୋଦ୍‌କ୍ଷିପନ୍
କରଂ ଗଣପତିଃ କ୍ରୀଡ଼ାଲୀନଭୃଙ୍ଗାକ୍ଷରାବଲିମ୍ ।।

ଅରାଗମପି ରାଗାଢ୍ୟରଚନାଚତୁରଂ ପରମ୍
ହରଂ ନବନବାଶ୍ଚର୍ଯ୍ୟସର୍ଗଚିତ୍ରକରଂ ନୁମଃ ।।

ଜିତଂ ସ୍ମରଶରୈର୍ଯେଷୁ ପୌଷ୍ପେଷ୍ୱପି ପତତ୍ସ୍ୱିହ
ବଜ୍ରାଦୀନ୍ୟପି ଜାୟନ୍ତେ କୁଣ୍ଠିତାନ୍ୟେବ ତଦ୍‌ଭୃତାମ୍ ।।



# ପ୍ରଥମ ତରଙ୍ଗ

ବତ୍ସରାଜ ଉଦୟନଙ୍କ ପୁତ୍ର ନରବାହନଦତ୍ତ ଏହିପରି ଗୋଟିଏ ପରେ ଗୋଟିଏ ପତ୍ନୀ ଲାଭ କରି କୌଶାମ୍ବୀ ନଗରୀରେ କାଳାତିପାତ କରୁଥାଆନ୍ତି । ବହୁ ପତ୍ନୀ ଥିଲେ ସୁଦ୍ଧା ଶ୍ରୀକୃଷ୍ଣ ଯେପରି ରୁକ୍ମିଣୀଙ୍କୁ ପଟ୍ଟମହିଷୀ ରୂପେ ସମ୍ମାନିତ କରୁଥିଲେ, ସେହିପରି ବହୁ ପତ୍ନୀସେବିତ ନରବାହନଦତ୍ତ ନିଜର ପ୍ରଥମା ତଥା ଦେବାଂଶ ସମ୍ଭୂତା ପତ୍ନୀ ମଦନମଞ୍ଜୁକାଙ୍କୁ ସର୍ବଶ୍ରେଷ୍ଠ ମାନ୍ୟତା ଦେଉଥାଆନ୍ତି ।

ଦିନେ ରାତିରେ ଶୋଇଥିବା ବେଳେ ସେ ସ୍ୱପ୍ନରେ ଦେଖିଲେ ଯେ କୌଣସି ଦିବ୍ୟକନ୍ୟା ଆକାଶମାର୍ଗରୁ ଆସି ତାଙ୍କୁ ଉଠାଇ ନେଇଯାଉଛି । ସେ ତାଙ୍କୁ ନେଇ ଗୋଟିଏ ପର୍ବତର ଚଟାଣ ଉପରେ ଶୁଆଇଦେଲା । ସେଠାରେ ନିଦ୍ରାଭଙ୍ଗ ହେବାରୁ ସେ ଦେଖିଲେ ଯେ ଗାରୁଡ଼ ମଣି ନିର୍ମିତ କୌଣସି ପର୍ବତର ଶୀତଳ ଛାୟା ସମନ୍ୱିତ ଏକ ଶିଳାଖଣ୍ଡ ଉପରେ ସେ ଶୟନ କରିଛନ୍ତି । ଉକ୍ତ କନ୍ୟା ମଧ୍ୟ ତାଙ୍କ ନିକଟରେ ଉପସ୍ଥିତ ଥାଏ । କନ୍ୟାଟି ରାତ୍ରିର ଅନ୍ଧକାର ମଧ୍ୟରେ ନିଜର ଶାରୀରିକ କାନ୍ତି ଦ୍ୱାରା ବନଦେଶକୁ ଆଲୋକିତ କରୁଥାଏ । କାମଦେବଙ୍କ ସମ୍ମୋହନ ଔଷଧିଲତା ତୁଲ୍ୟ କନ୍ୟାଟିକୁ ଦେଖି ନରବାହନଦତ୍ତ ଜାଣିପାରିଲେ ଯେ ସେ ହିଁ ତାଙ୍କୁ ସେଠାକୁ ନେଇଆସିଛି । ସେ ପୁଣି ଲକ୍ଷ୍ୟ କଲେ ଯେ କନ୍ୟାଟି ଲଜ୍ଜାବଶତଃ ନିଜର ମନୋଭାବ ତାଙ୍କ ନିକଟରେ ପ୍ରକାଶ କରିପାରୁନାହିଁ । ଏଣୁ ନିଦ୍ରିତ ଥିବା ଛଳନା କରି, କନ୍ୟାଟିର ସମସ୍ତ ବୃତ୍ତାନ୍ତ ଜାଣିବାପାଇଁ ଚତୁର ନରବାହନଦତ୍ତ ପ୍ରଳାପ କଲା ପରି କହିଲେ, 'ପ୍ରିୟେ ମଦନମଞ୍ଜୁକେ, ତୁମେ କେଉଁଠି ଅଛ ? ଆସି ମୋତେ ଆଲିଙ୍ଗନ କର ।' କନ୍ୟାଟି ଏ କଥା ଶୁଣିବା ସଙ୍ଗେସଙ୍ଗେ ଏହାକୁ ଅପୂର୍ବ ସୁଯୋଗ ମନେକରି ମଦନମଞ୍ଜୁକାଙ୍କ ରୂପ ଧାରଣ କଲା ଏବଂ ଲଜ୍ଜା ପରିତ୍ୟାଗ ପୂର୍ବକ ରାଜକୁମାରଙ୍କୁ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲା ।

ନରବାହନଦତ୍ତ ଏଥର ଚକ୍ଷୁ ଉନ୍ମୀଳନ କଲେ । କନ୍ୟାଟିକୁ ନିଜ ପତ୍ନୀର ରୂପ ଧାରଣ କରିଥିବା ଦେଖି ସେ ତାକୁ 'ଏ କି ଚତୁରତା' କହିବା ସଙ୍ଗେସଙ୍ଗେ ହସିହସି

ତାକୁ କଣ୍ଠଲଗ୍ନ କଲେ । ଏଥିରେ ଉଲ୍ଲସିତା ହୋଇ କନ୍ୟାଟି ଲଜ୍ଜା ତ୍ୟାଗ ପୂର୍ବକ ନିଜର ସ୍ୱରୂପ ଧାରଣ କଲା । ସେ ଅବନତ ବଦନରେ ଠିଆ ହୋଇ କହିଲା, 'ଆର୍ଯ୍ୟପୁତ୍ର, ମୁଁ ଆପଣଙ୍କୁ ସ୍ୱୟଂ ବରଣ କରିଛି । ଆପଣ ମୋତେ ଗ୍ରହଣ କରନ୍ତୁ ।' ଏହା ଶୁଣି ରାଜକୁମାର ତାକୁ ସେଠାରେ ଗାନ୍ଧର୍ବରୀତିରେ ବିବାହ କଲେ । ଉଭୟଙ୍କ ପାଇଁ ଉକ୍ତ ରଜନୀ ଅତ୍ୟନ୍ତ ଆନନ୍ଦଦାୟକ ହେଲା । ପ୍ରଭାତରେ ନରବାହନଦତ୍ତ କୌଶଳକ୍ରମେ ତା'ର ପରିଚୟ ଜାଣିବାପାଇଁ, କନ୍ୟାଟିକୁ କହିଲେ—

## ବୃଦ୍ଧା ଶୃଗାଳପତ୍ନୀ କଥା

'ପ୍ରିୟେ, ମୁଁ ତୁମକୁ ଏକ ଅପୂର୍ବ କାହାଣୀ କହୁଛି, ଶୁଣ—

କୌଣସି ତପୋବନରେ ବ୍ରହ୍ମସିଦ୍ଧି ନାମରେ ଜଣେ ମୁନି ତପସ୍ୟା କରୁଥିଲେ । ଏହି ଯୋଗସିଦ୍ଧ ମୁନିଙ୍କ ଆଶ୍ରମ ନିକଟରେ ଥିବା ଗୋଟିଏ ବିଲ ମଧ୍ୟରେ ବୃଦ୍ଧା ଶୃଗାଳୀଟିଏ ବାସ କରୁଥାଏ । ଏକଦା କ୍ଷୁଧାରେ ଆତୁର ହୋଇ ସେହି ଶୃଗାଳୀ ଖାଦ୍ୟ ଅନ୍ୱେଷଣ ନିମିତ୍ତ ବିଲ ମଧ୍ୟରୁ ନିର୍ଗତ ହେଲା । କିନ୍ତୁ ଦୈବକ୍ରମେ ସେ ଦଳଠାରୁ ବିଚ୍ଛିନ୍ନ ଏକ ମଦୋନ୍ମତ୍ତ ହସ୍ତୀର ସମ୍ମୁଖରେ ଆସି ପଡ଼ିଲା । ହସ୍ତୀଟି ତାକୁ ମାରିବାପାଇଁ ଗୋଡ଼ାଉଥିବା ବେଳେ ଉଭୟେ ବ୍ରହ୍ମସିଦ୍ଧିଙ୍କ ଦୃଷ୍ଟି ଆକର୍ଷଣ କଲେ । ମୁନି କୃପାପରବଶ ହୋଇ ନିଜର ତପୋବଳରେ ଶୃଗାଳୀଟିକୁ ଗୋଟିଏ ହସ୍ତିନୀରେ ପରିଣତ କରିଦେଲେ । ସମ୍ମୁଖରେ ହସ୍ତିନୀକୁ ଦେଖି ହସ୍ତୀଟି ଶାନ୍ତ ହେଲା ଏବଂ ତାହା ପ୍ରତି ଅନୁରକ୍ତ ହୋଇପଡ଼ିଲା । ଶୃଗାଳୀଟି ମଧ୍ୟ ମୃତ୍ୟୁମୁଖରୁ ବଞ୍ଚିଗଲା ।

କିଛିଦିନ ଏକତ୍ର ବନ ମଧ୍ୟରେ ଭ୍ରମଣ କରିବା ପରେ ଦିନେ ହସ୍ତୀଟି ହସ୍ତିନୀ ପାଇଁ ପଦ୍ମଫୁଲ ଆଣିବା ଉଦ୍ଦେଶ୍ୟରେ ଶରତ୍‌କାଳୀନ ଏକ ପଙ୍କିଳ ସରୋବର ମଧ୍ୟରେ ପ୍ରବେଶ କଲା । ସେଠାରେ ପଙ୍କ ମଧ୍ୟରେ ଲାଗିଯାଇ ଆଉ ହଲଚଲ ହୋଇପାରିଲା ନାହିଁ । ବଜ୍ରାଘାତରେ ପର୍ବତ ଯେପରି ସ୍ଥାଣୁ ପାଲଟି ଯାଇଥିଲା, ତା'ର ଦଶା ମଧ୍ୟ ସେହିପରି ହେଲା । ହସ୍ତୀର ଏପରି ଦୟନୀୟ ଦଶା ଦେଖି ହସ୍ତିନୀ (ପ୍ରଥମେ ଯିଏ ଶୃଗାଳୀ ଥିଲା) ଅନ୍ୟ ହସ୍ତୀ ସହ ସେଠାରୁ ପଳାୟନ କଲା ।

ସୌଭାଗ୍ୟବଶତଃ, ଏହିସମୟରେ ତାହାର ନିଜ ହସ୍ତିନୀ ପତିର ଅନୁସନ୍ଧାନ କରି ସେଠାରେ ଆସି ଉପସ୍ଥିତ ହେଲା । ଉତ୍ତମ କୁଳରେ ଜନ୍ମଗ୍ରହଣ କରିଥିବା ସେହି ହସ୍ତିନୀ ପତିର ଏହି ସଙ୍କଟାପନ୍ନ ଅବସ୍ଥା ଦେଖି ନିଜେ ମଧ୍ୟ ତା'ର ଅନୁସରଣ କରିବା

ନିମିତ୍ତ ସେହି କର୍ଦ୍ଦମାକ୍ତ ସରୋବର ମଧ୍ୟରେ ପ୍ରବେଶ କଲା । ଏ ସମୟରେ ମୁନି ବ୍ରହ୍ମସିଦ୍ଧି ଶିଷ୍ୟମାନଙ୍କ ସହ ସେହି ମାର୍ଗରେ ଯାଉଥାଆନ୍ତି । ଏହି ଦୃଶ୍ୟ ଦେଖି ତାଙ୍କ ହୃଦୟରେ କରୁଣାର ସଞ୍ଚାର ହେଲା । ତପଃ ପ୍ରଭାବରେ ନିଜର ଶିଷ୍ୟମାନଙ୍କୁ ଅପୂର୍ବ ବଳଶାଳୀ କରାଇ ସେ ସେହି ହସ୍ତୀ ଦମ୍ପତିଙ୍କୁ ସରୋବର ମଧ୍ୟରୁ ଉଦ୍ଧାର କଲେ । ମୁନି ସେମାନଙ୍କୁ ଜୀବନଦାନ ପୂର୍ବକ ସେଠାରୁ ପ୍ରସ୍ଥାନ କରନ୍ତେ, ମୃତ୍ୟୁମୁଖରୁ ରକ୍ଷା ପାଇଥିବା ହସ୍ତୀ ଦମ୍ପତି ସୁଖରେ ବିଚରଣ କରିବାକୁ ଲାଗିଲେ ।

ଏଣୁ, ପ୍ରିୟେ ! ଉତ୍ତମ କୁଳରେ ଜନ୍ମଗ୍ରହଣ କରିଥିବା ପଶୁ ମଧ୍ୟ ବିପଦ ସମୟରେ ନିଜର ସ୍ୱାମୀ କିମ୍ବା ମିତ୍ରକୁ ପରିତ୍ୟାଗ ନ କରି ତାକୁ ରକ୍ଷା କରିବାପାଇଁ ଚେଷ୍ଟା କରିଥାଏ । କିନ୍ତୁ ନୀଚକୁଳଜାତ ଚଞ୍ଚଳଚିତ୍ତ ବ୍ୟକ୍ତିର ଉଚ୍ଚ ଭାବନା କିମ୍ବା ସ୍ନେହ ବୋଲି କିଛି ନଥାଏ ।

ଏବମୁତ୍ତମଜନ୍ମାନସ୍ତିର୍ଯଞ୍ଚୋଽପ୍ୟାପଦି ପ୍ରିୟେ
ପ୍ରଭୁଂ ନୋଜ୍‌ଝନ୍ତି ମିତ୍ରଂ ବା ତାରୟନ୍ତି ତତଃ ପୁନଃ ।

ନରବାହନଦତ୍ତଙ୍କଠାରୁ ଏହି ଗଳ୍ପଟି ଶୁଣି କନ୍ୟାଟି କହିଲା, ଆପଣଙ୍କ କଥା ଏକାନ୍ତ ସତ୍ୟ, ଏଥିରେ କୌଣସି ସନ୍ଦେହ ନାହିଁ । ଆପଣ ଏପରି କହିବାର ଅଭିପ୍ରାୟ ମଧ୍ୟ ମୁଁ ବୁଝିପାରୁଛି । ଏଣୁ ଆର୍ଯ୍ୟପୁତ୍ର ! ଆପଣ ମଧ୍ୟ ମୋଠାରୁ ଗଳ୍ପଟିଏ ଶୁଣନ୍ତୁ—

## ବାମଦତ୍ତ କଥା

କାନ୍ୟକୁବ୍ଜରେ ଶୂରଦତ୍ତ ନାମରେ ଜଣେ କୁଳୀନ ବ୍ରାହ୍ମଣ ବାସ କରୁଥିଲେ । ସେ ଏକଶତ ଗ୍ରାମର ଅଧିକାରୀ ଏବଂ ରାଜା ବାହୁଦତ୍ତଙ୍କ ଅତ୍ୟନ୍ତ ଆଦରର ପାତ୍ର । ତାଙ୍କର ଅପୂର୍ବ ପତିବ୍ରତା ପତ୍ନୀଙ୍କ ନାମ ଥିଲା ବସୁମତୀ । ଏହାଙ୍କ ଗର୍ଭରୁ ବ୍ରାହ୍ମଣଙ୍କର ଏକ ସୁନ୍ଦର ପୁତ୍ର ଜାତ ହୋଇଥିଲା । ତାର ନାମ ଥିଲା ବାମଦତ୍ତ । ପିତାଙ୍କ ପ୍ରଚେଷ୍ଟାରେ ସେ ଅଳ୍ପବୟସରୁ ହିଁ ସମସ୍ତ ବିଦ୍ୟାର ଅଧିକାରୀ ହୋଇପାରିଥିଲା । ପିତା ଶଶିପ୍ରଭା ନାମ୍ନୀ କନ୍ୟା ସହିତ ତାର ଶୁଭ ବିବାହ କରାଇ ଦେଇଥିଲେ । ସମୟକ୍ରମେ ପିତା ପରଲୋକ ଗମନ କରନ୍ତେ ଏବଂ ମାତା ମଧ୍ୟ ତାଙ୍କର ସହଗାମିନୀ ହୁଅନ୍ତେ, ବାମଦତ୍ତକୁ ଗୃହର ସମସ୍ତ ଭାର ବହନ କରିବାକୁ ପଡ଼ିଲା ।

ବାମଦତ୍ତର ଅଜ୍ଞାତସାରରେ ଶଶିପ୍ରଭା ସ୍ୱେଚ୍ଛାଚାରିଣୀ ହୋଇଯାଇଥାଏ । ଦୈବକ୍ରମେ ସେ କୌଣସି ଯୋଗିନୀଠାରୁ ଶାକିନୀ ମନ୍ତ୍ର ମଧ୍ୟ ସିଦ୍ଧ କରିନେଇଥାଏ ।

ଏକଦା ରାଜକାର୍ଯ୍ୟ ଉପଲକ୍ଷ୍ୟରେ ବାମଦତ୍ତ ରାଜଧାନୀରେ କିଛିଦିନ ଅଟକି ଗଲା । ଏ ସମୟରେ ଘରୁ ଆସିଥିବା ତା'ର ପିତୃବ୍ୟ ଏକାନ୍ତରେ ତାକୁ ଡାକି କହିଲେ, 'ବତ୍ସ, ଆମର ବଂଶ କଳଙ୍କିତ ହୋଇଗଲା । ମୁଁ ତୋର ପତ୍ନୀକୁ ଆମ ମଇଁଷିଆଳ ଟୋକା ସହିତ ଦେଖିବାକୁ ପାଇଲି ।' ପିତୃବ୍ୟଙ୍କଠାରୁ ଏହା ଶୁଣି ବାମଦତ୍ତ ରାଜଧାନୀରେ ତାଙ୍କ ରହିବା ବ୍ୟବସ୍ଥା କରାଇ ଖଡ଼୍‌ଗଟିଏ ନେଇ ଗ୍ରାମ ଅଭିମୁଖରେ ଯାତ୍ରା କଲା । ଗୃହରେ ପ୍ରବେଶ ନ କରି ସେ ନିଜକୁ ଉପବନର ଲତାକୁଞ୍ଜ ମଧ୍ୟରେ ଗୁପ୍ତ କରି ରଖିଥାଏ । ସନ୍ଧ୍ୟା ହେବାରୁ ସେହି ମଇଁଷିଆଳ ଆସି ସେଠାରେ ଉପସ୍ଥିତ ହେଲା । ଉପପତିର ପ୍ରଣୟ ପାଇଁ ଉତ୍ସୁକା ତା'ର ସ୍ତ୍ରୀ ଶଶିପ୍ରଭା ମଧ୍ୟ କିଛି ସମୟ ପରେ ବିବିଧ ଭୋଜନ ସାମଗ୍ରୀ ସହିତ ଆସି ସେଠାରେ ପହଞ୍ଚିଲା । ଭୋଜନ ଶେଷ କଲା ପରେ ଉଭୟେ ଶଯ୍ୟା ଉପରେ ଯାଇ ଶୟନ କଲେ । ଏହା ଦେଖି ବାମଦତ୍ତ ଖଡ଼୍‌ଗହସ୍ତରେ ଯାଇ ଶଯ୍ୟା ନିକଟରେ ଠିଆ ହେଲା । ଏଥିରେ ଶଶିପ୍ରଭା କ୍ଷୁବ୍ଧ ହୋଇ 'ଛିଃ, ପାପିଷ୍ଠ' ବୋଲି କହିବା ସଙ୍ଗେସଙ୍ଗେ ତା'ର ମୁହଁକୁ ଲକ୍ଷ୍ୟ କରି କିଛି ମନ୍ତ୍ରଧୂଳି ଫୋପାଡ଼ି ଦେଲା । ଫଳରେ ବାମଦତ୍ତ ତତ୍‌କ୍ଷଣାତ୍ ଗୋଟିଏ ମଇଁଷିରେ ପରିଣତ ହୋଇଗଲା । କିନ୍ତୁ ସୌଭାଗ୍ୟବଶତଃ ତା'ର ସ୍ମୃତିଶକ୍ତି ଲୋପ ପାଇ ନଥାଏ ।

ଏହାପରେ ଦୁରାଚାରିଣୀ ଶଶିପ୍ରଭା ତାକୁ ନେଇ ମଇଁଷି ଗୋଠରେ ବାନ୍ଧି ଦେଲା ଏବଂ ସେହି ମଇଁଷିଆଳଦ୍ୱାରା ପ୍ରହାର କରାଇବାକୁ ଲାଗିଲା । କିଛିଦିନ ପରେ ସେ ତାକୁ ନେଇ କୌଣସି ପଶୁ ବ୍ୟବସାୟୀକୁ ବିକ୍ରୀ କରିଦେଲା । ସେହି ବ୍ୟବସାୟୀଟି ମଧ୍ୟ ତା' ଉପରେ ବୋଝ ରଖି ତାକୁ ଗଙ୍ଗାକୂଳରେ ଥିବା ଗୋଟିଏ ଗାଁକୁ ନେଇ ଚାଲିଗଲା । ମଇଁଷି ରୂପରେ ରହି ଏହିପରି ଦୁଃଖଭୋଗ କରୁଥିବା ବାମଦତ୍ତ ଭାବୁଥାଏ ଯେ ଯଦି କୌଣସି ସରଳ ଓ ବିଶ୍ୱସ୍ତ ପୁରୁଷର ଗୃହକୁ ଦୈବକ୍ରମେ ଗୋଟିଏ ଦୁଶ୍ଚରିତ୍ରା ସ୍ତ୍ରୀ ଆସିଯାଏ, ତେବେ ଗୃହ ମଧ୍ୟରେ ସର୍ପ ପ୍ରବେଶ କରିବା ପରି ସେହି ସ୍ତ୍ରୀ ତାକୁ ସର୍ବଦା ସନ୍ତପ୍ତ କରେ ।

ଏହିପରି ଭାବି ଭାବି ବାମଦତ୍ତ ଆଖିରୁ କେବଳ ଲୁହ ଗଡ଼ାଉଥାଏ । ବୋଝ ବୋହିବା ଯୋଗୁ ତା'ର ଶରୀର ମଧ୍ୟ ଅତ୍ୟନ୍ତ କ୍ଷୀଣ ହୋଇଯାଇଥାଏ । ସେ କଙ୍କାଳସାର ଶରୀରରେ ନାମକୁ ମାତ୍ର ବଞ୍ଚିଥାଏ । ଏହିପରି ଭାବରେ ଜୀବନଯାପନ କରୁଥିବା ବେଳେ ସୌଭାଗ୍ୟବଶତଃ ଗୋଟିଏ ଯୋଗିନୀ ସହିତ ତାର ସାକ୍ଷାତ ହେଲା । ଏହି କରୁଣାମୟୀ ଯୋଗିନୀ ନିଜର ବିଦ୍ୟା ପ୍ରଭାବରେ ବାମଦତ୍ତର ସମସ୍ତ ବୃତ୍ତାନ୍ତ ଜାଣିପାରି, ତା' ଉପରେ କିଛି ମନ୍ତ୍ରିତ ଜଳ ସିଞ୍ଚନ୍ତେ ସେ ମଇଁଷି ରୂପରୁ ମୁକ୍ତି ଲାଭ କଲା ।

ବାମଦତ୍ତ ମନୁଷ୍ୟ ରୂପ ଧାରଣ କରନ୍ତେ ଯୋଗିନୀ ତାକୁ ଗୃହକୁ ନେଇଯାଇ ନିଜର କନ୍ୟା କାନ୍ତିମତୀକୁ ତାହାରି ହସ୍ତରେ ଅର୍ପଣ କଲା । ପୁଣି ତାକୁ କିଛି ମନ୍ତ୍ରିତ ସୋରିଷ ଦେଇ କହିଲା ଯେ ଏହାଦ୍ୱାରା ସେ ତା'ର ସେହି ଦୁରାଚାରିଣୀ ସ୍ତ୍ରୀକୁ ଗୋଟିଏ ମାଇଘୋଡ଼ାରେ ପରିଣତ କରିଦେଇପାରିବ । ଏଥିରେ ଆନନ୍ଦିତ ହୋଇ ବାମଦତ୍ତ ନିଜର ନବବିବାହିତା ପତ୍ନୀ ଏବଂ ସୋରିଷ ସହିତ ସ୍ୱଗୃହରେ ଆସି ଉପସ୍ଥିତ ହେଲା । ସେ ପ୍ରଥମେ ସେହି ମଇଁଷିଆଳକୁ ହତ୍ୟା କଲା ଏବଂ ପରେ ଶଶିପ୍ରଭାକୁ ଗୋଟିଏ ଘୋଡ଼ୀରେ ପରିଣତ କରି ତାକୁ ନେଇ ଅଶ୍ୱଶାଳାରେ ବାନ୍ଧିଦେଲା । ପୂର୍ବ ଶତ୍ରୁତାର ପ୍ରତିଶୋଧ ନେବାପାଇଁ ସେ ପ୍ରତିଜ୍ଞା କରିଥାଏ ଯେ ପ୍ରତିଦିନ ସେହି ଅଶ୍ୱୀରୂପିଣୀ ଶଶିପ୍ରଭାକୁ ସାତ ପାହାର ନ ଦେବା ପର୍ଯ୍ୟନ୍ତ ଭୋଜନ କରିବ ନାହିଁ ।

ଏହିପରି କିଛିଦିନ ବିତିଗଲା । ବାମଦତ୍ତ କାନ୍ତିମତୀ ସହ ସୁଖରେ କାଳାତିପାତ କରୁଥାଏ । ଦିନେ ଜଣେ ଅତିଥି ଆସି ତା'ର ଗୃହଦ୍ୱାରରେ ଉପସ୍ଥିତ ହେଲେ । ସେ ତାଙ୍କର ଯଥୋଚିତ ସତ୍କାର କଲା । ଅତିଥି ଯେତେବେଳେ ଖାଇବାପାଇଁ ବସିଲେ, ବାମଦତ୍ତ ହଠାତ୍ ଉଠି ବାହାରକୁ ଚାଲିଗଲା । ସେ ପ୍ରଥମା ପତ୍ନୀ ଶଶିପ୍ରଭାକୁ ସାତ ପାହାର ଦେବା କଥା ଭୁଲିଯାଇଥିବାରୁ ଭୋଜନସ୍ଥାନରୁ ଉଠିଆସି ନିଜର ପ୍ରତିଜ୍ଞା ପାଳନ କଲା । ଫେରିଯାଇ ପୁଣି ଯେତେବେଳେ ଅତିଥିଙ୍କ ସହ ଖାଇବା ପାଇଁ ବସିଲା, ସେତେବେଳେ ଅତିଥି ତା'ର ଏ ପ୍ରକାର ଆଚରଣର କାରଣ ଜିଜ୍ଞାସା କଲେ । ସେ ତାଙ୍କୁ ଆମୂଳଚୂଳ ସମସ୍ତ ବୃତ୍ତାନ୍ତ କହି ଶୁଣାଇଲା ।

ସବୁ ଶୁଣିସାରି ଅତିଥି କହିଲେ, 'ପ୍ରତିଦିନ ଏପରି ପ୍ରତିଶୋଧ ନେବାରେ ଲାଭ କ'ଣ ? ବରଂ ଯେଉଁ ଶାଶୁ ତୁମକୁ ପଶୁ ରୂପରୁ ମୁକ୍ତି ଦେଇଥିଲେ, ତାଙ୍କୁ ହିଁ ପ୍ରସନ୍ନ କରାଇ ନିଜର ଉନ୍ନତି କରିବାପାଇଁ ଚେଷ୍ଟା କର ।' ଅତିଥିଙ୍କ କଥାରେ ବାମଦତ୍ତ ସମ୍ମତ ହେଲା ଏବଂ ପରଦିନ ପ୍ରଭାତରେ ଉଚିତ ସମ୍ମାନର ସହିତ ତାଙ୍କୁ ବିଦାୟ ଦେଲା ।

ଆଶ୍ଚର୍ଯ୍ୟର କଥା, ଉକ୍ତଦିନ ହିଁ କଲ୍ୟାଣମୟୀ ଯୋଗିନୀ ଆସି ପହଞ୍ଚିଲେ । ସେ ଯତ୍ନପୂର୍ବକ ତାଙ୍କର ସ୍ୱାଗତ-ସତ୍କାର କରି ତାଙ୍କ ନିକଟରେ ନିଜର ଅଭିଳାଷ ବ୍ୟକ୍ତ କରନ୍ତେ ସେହି ଯୋଗସିଦ୍ଧା ଯୋଗିନୀ ସନ୍ତୁଷ୍ଟ ହୋଇ ବାମଦତ୍ତ ଓ ତା'ର ପତ୍ନୀ କାନ୍ତିମତୀକୁ ଦୀକ୍ଷାଦାନ କରିବା ସଙ୍ଗେସଙ୍ଗେ ସେମାନଙ୍କୁ କାଳସଂକର୍ଷିଣୀ ବିଦ୍ୟା ଶିକ୍ଷା ଦେଲେ । ଏହାଦ୍ୱାରା ସାଧକର ଆୟୁଷ ବୃଦ୍ଧି ପାଇଥାଏ । ସେମାନେ ଶ୍ରୀପର୍ବତକୁ ଯାଇ ଏହି ଅପୂର୍ବ ବିଦ୍ୟା ସିଦ୍ଧିପାଇଁ ସାଧନା ଆରମ୍ଭ କଲେ । ସିଦ୍ଧି ଲାଭ ହେବା ମାତ୍ରେ ବିଦ୍ୟା ନିଜ ରୂପରେ

ପ୍ରକଟିତ ହୋଇ ବାମଦତ୍ତକୁ ଏକ ଖଡ୍‌ଗ ପ୍ରଦାନ କଲା । ଖଡ୍‌ଗପ୍ରାପ୍ତି ମାତ୍ରେ ସଫଳକାମ ବାମଦତ୍ତ ପତ୍ନୀ ସହିତ ଶ୍ରେଷ୍ଠ ବିଦ୍ୟାଧରମାନଙ୍କ ମଧ୍ୟରେ ପରିଗଣିତ ହେଲା । ନିଜ ସିଦ୍ଧିର ପ୍ରଭାବ ବଳରେ ସେ ମଳୟ ପର୍ବତର ରଜତକୂଟ ଶିଖରୀରେ ଏକ ସୁନ୍ଦର ନଗର ସ୍ଥାପନ କରି ସେଠାରେ ବାସ କରିବାକୁ ଲାଗିଲା ।

ସମୟକ୍ରମେ ଏହି ବିଦ୍ୟାଧର ଶ୍ରେଷ୍ଠଙ୍କ ଔରସରୁ କାନ୍ତିମତୀର ଏକ କନ୍ୟା ଜାତ ହେଲା । କନ୍ୟାଟିର ନାମ ଲଳିତଲୋଚନା । ଲଳିତଲୋଚନା ଭୂମିଷ୍ଠ ହେଲାବେଳେ ଦିବ୍ୟବାଣୀ ଶୁଣାଯାଇଥିଲା ଯେ ସେ ବିଦ୍ୟାଧର ଚକ୍ରବର୍ତ୍ତୀଙ୍କ ପାଣିଗ୍ରହଣ କରିବ ।

ଆର୍ଯ୍ୟପୁତ୍ର ! ମୁଁ ହିଁ ସେହି ଲଳିତଲୋଚନା । ମୁଁ ନିଜର ବିଦ୍ୟାପ୍ରଭାବରେ ସବୁକିଛି ଜାଣିପାରି, ଆପଣଙ୍କ ପ୍ରତି ଅନୁରକ୍ତ ହୋଇପଡ଼ିଲି । ଏଣୁ ଆପଣଙ୍କୁ ଆମର ବାସସ୍ଥଳୀ ମଳୟ ପର୍ବତକୁ ନେଇ ଆସିଛି ।

ଲଳିତଲୋଚନାଠାରୁ ତା'ର କୁଳୀନତାର ପରିଚୟ ପାଇ ନରବାହନଦତ୍ତ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ନିଜର ନବପରିଣୀତା ପତ୍ନୀକୁ ବିଦ୍ୟାଧର କୁଳସମ୍ଭୂତା ଜାଣି ତାକୁ ଅଧିକ ଆଦର କରିବାକୁ ଲାଗିଲେ । ଏହି ନବଦମ୍ପତି ମଳାୟଚଳରେ ଦିନଯାପନ କରୁଥିବା କଥା ବତ୍ସରାଜ ଉଦୟନ ରତ୍ନପ୍ରଭା ପ୍ରଭୃତିଙ୍କ ବିଦ୍ୟାପ୍ରଭାବରେ ଜାଣିପାରି ଆଶ୍ୱସ୍ତ ଓ ପ୍ରୀତ ହେଲେ ।

# ଦ୍ୱିତୀୟ ତରଙ୍ଗ

ଲଳିତଲୋଚନାଙ୍କୁ ପତ୍ନୀ ରୂପେ ଲାଭ କରି ନରବାହନଦତ୍ତ ଅତ୍ୟନ୍ତ ଉତ୍‌ଫୁଲ୍ଲ ଥିଲେ । ବସନ୍ତର ଆଗମନରେ ନୂତନ ପୁଷ୍ପ ପଲ୍ଲବରେ ସୁଶୋଭିତ ମଳୟ ପର୍ବତର ଉପବନମାନଙ୍କରେ ସେ ତାଙ୍କ ସହ ବିନୋଦକ୍ରୀଡ଼ା କରୁଥାଆନ୍ତି ।

ଏକଦା କୌଣସି ଏକ ପୁଷ୍ପିତ ଉପବନ ମଧ୍ୟରେ ପୁଷ୍ପଚୟନ କରୁଥିବା ବେଳେ ଲଳିତଲୋଚନା ହଠାତ୍ ଚକ୍ଷୁପଲକରେ ଅଦୃଶ୍ୟ ହୋଇଗଲେ । ତାଙ୍କରି ଅନୁସନ୍ଧାନରେ ବାହାରି ନରବାହନଦତ୍ତ ଏକ ସ୍ୱଚ୍ଛ ଜଳପୂର୍ଣ୍ଣ ବିଶାଳ ସରୋବର ନିକଟରେ ଆସି ପହଞ୍ଚିଲେ । ତଟବର୍ତ୍ତୀ ବୃକ୍ଷମାନଙ୍କରୁ ପ୍ରସ୍ଫୁଟିତ ପୁଷ୍ପସବୁ ନୀଳଜଳରାଶି ଉପରେ ଭାସି ଉଠୁଥିବା ଯୋଗୁଁ ସରୋବରଟି ତାରକିତ ଆକାଶର ଶୋଭା ଧାରଣ କରିଥାଏ । ପୁଷ୍ପ ଚୟନ ସମାପ୍ତ କରି ପ୍ରିୟତମା ପତ୍ନୀ ନ ଫେରିବା ପର୍ଯ୍ୟନ୍ତ ନରବାହନଦତ୍ତ ସେଠାରେ ସ୍ନାନ ସମାପନ କରି ଅପେକ୍ଷା କରିବାପାଇଁ ମନସ୍ଥ କଲେ । ଏହିପରି ନିଶ୍ଚୟ କରି ସେ ସ୍ନାନ ଓ ଦେବପୂଜନ ସମାପ୍ତ ପୂର୍ବକ ଏକ ଚନ୍ଦନ ବୃକ୍ଷର ଛାୟାରେ ଥିବା ମସୃଣ ଶିଳାଖଣ୍ଡ ଉପରେ ବିଶ୍ରାମ ନେଉଥାଆନ୍ତି ।

ସେହିଠାରେ ବସି ବସି ହଂସମାନଙ୍କର ଗତି, କୋକିଳମାନଙ୍କର କୂଜନ ଓ ହରିଣୀମାନଙ୍କର ନୟନ ଦର୍ଶନରେ ନିଜର ସୁଦୂରବାସିନୀ ପ୍ରାଣପ୍ରିୟା ମଦନମଞ୍ଚୁକାଙ୍କ ସ୍ମୃତି ନରବାହନଦତ୍ତଙ୍କ ଚିତ୍ତପଟରେ ଜାଗ୍ରତ ହେଲା । ପ୍ରିୟତମା ପତ୍ନୀଙ୍କ ସ୍ମୃତି ଜାଗ୍ରତ ହେବାମାତ୍ରେ ତାଙ୍କ ହୃଦୟରେ ଯେଉଁ କାମାଗ୍ନି ପ୍ରଜ୍ୱଳିତ ହୋଇଉଠିଲା, ସେଥିରେ ସେ ମୂର୍ଚ୍ଛିତ ହୋଇପଡ଼ିଲେ । ଏହି ସମୟରେ ଜଣେ ତପସ୍ୱୀ ସ୍ନାନ କରିବାପାଇଁ ସେଠାକୁ ଆସିଥାଆନ୍ତି । ମୁନି ପିଶଙ୍ଗଜଟ ନରବାହନଦତ୍ତଙ୍କୁ ଏହି ପରିସ୍ଥିତିରେ ଦେଖି ତାଙ୍କ ପ୍ରଣୟିନୀର କୋମଳ ସ୍ପର୍ଶ ଅନୁରୂପ ଶୀତଳ ଚନ୍ଦନଜଳ ତାଙ୍କ ଉପରେ ସେଚନ କଲେ । ଏଥିରେ ନରବାହନଦତ୍ତଙ୍କ ଚେତନା ଫେରିଆସିଲା । ସେ ଉଠି ମୁନିଙ୍କୁ ପ୍ରଣିପାତ କଲେ । ମୁନି ନିଜର ତପସ୍ୟା ବଳରେ ରାଜକୁମାରଙ୍କ ମନୋଗତ ଭାବ ଜାଣିପାରି କୋମଳ

ସ୍ୱରରେ କହିଲେ, 'ବତ୍ସ ! ଧୈର୍ଯ୍ୟ ଧାରଣ କର । ତୁମେ ଯାହା ଚାହୁଁଛ, ତାହା ଅବଶ୍ୟ ପ୍ରାପ୍ତ ହେବ । ଧୈର୍ଯ୍ୟଦ୍ୱାରା ହିଁ ସବୁକିଛି ସିଦ୍ଧ ହୋଇଥାଏ । ଯଦି ତୁମେ ଏପର୍ଯ୍ୟନ୍ତ ଶୁଣି ନଥାଅ, ତେବେ ମୋ ସହିତ ମୋର ଆଶ୍ରମକୁ ଆସ, ମୁଁ ତୁମକୁ ମୃଗାଙ୍କଦତ୍ତଙ୍କ କଥା କହିବି ।' ଏହା କହି ମୁନି ଯଥାଶୀଘ୍ର ସ୍ନାନ ଶେଷ କରି ନରବାହନଦତ୍ତଙ୍କ ସହ ନିଜ ଆଶ୍ରମରେ ଯାଇ ଉପସ୍ଥିତ ହେଲେ । ସେଠାରେ ମଧ୍ୟ ସେ ସନ୍ଧ୍ୟାବନ୍ଦନ ଶେଷ କରି ଫଳମୂଳ ଦ୍ୱାରା ରାଜକୁମାରଙ୍କ ଅତିଥିସତ୍କାର କଲେ ଏବଂ ନିଜେ ଭୋଜନ ସମାପ୍ତ କରି ମୃଗାଙ୍କଦତ୍ତ କଥା ଶୁଣାଇବା ଆରମ୍ଭ କଲେ—

## ମୃଗାଙ୍କଦତ୍ତ କଥା

ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନିଲୋକରେ ପ୍ରସିଦ୍ଧ ଅଯୋଧ୍ୟା ନାମରେ ଏକ ନଗରୀ ଅଛି । ପ୍ରାଚୀନ କାଳରେ ସେଠାରେ ଅମରଦତ୍ତ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ଅଗ୍ନିଙ୍କ ପ୍ରତି ଯେପରି ସ୍ୱାହା ସର୍ବଦା ଅନୁରକ୍ତା, ସେହିପରି ଅଗ୍ନିଙ୍କ ଅପେକ୍ଷା ଅଧିକ ତେଜସ୍ୱୀ ରାଜା ଅମରଦତ୍ତଙ୍କ ପ୍ରତି ତାଙ୍କ ରାଣୀ ସୁରତପ୍ରଭା ଥିଲେ ଅତ୍ୟନ୍ତ ଅନୁରକ୍ତା । ଏହି ରାଣୀଙ୍କ ଗର୍ଭରୁ ରାଜାଙ୍କର ଏକ ପୁତ୍ର ଜନ୍ମ ଗ୍ରହଣ କରିଥିଲା । ପୁତ୍ରଟିର ନାମ ରଖାଯାଇଥିଲା ମୃଗାଙ୍କଦତ୍ତ । ଯେପରି ଧନୁର କୋଟିରେ ଗୁଣକୁ ସଂଯୁକ୍ତ କରି ଆମଞ୍ଚନ କଲେ ତାହା ନମ୍ର ହୋଇଯାଏ, ସେହିପରି କୋଟିଗୁଣଯୁକ୍ତ ହେଲେ ସୁଦ୍ଧା ରାଜକୁମାର ମୃଗାଙ୍କଦତ୍ତ ଥିଲେ ନମ୍ରତାର ଅବତାର । ରାଜପୁତ୍ରଙ୍କ ସହିତ ଦଶଜଣ ମନ୍ତ୍ରୀ ଥାଆନ୍ତି । ସେମାନେ ହେଲେ ପ୍ରଚଣ୍ଡଶକ୍ତି, ସ୍ଥୂଳବାହୁ, ବିକ୍ରମ କେଶରୀ, ଦୃଢ଼ମୁଷ୍ଟି, ମେଘବଳ, ଭୀମପରାକ୍ରମ, ବିମଳବୁଦ୍ଧି, ବ୍ୟାଘ୍ରସେନ, ଗୁଣାକର ଓ ବିଚିତ୍ରକଥ । ଏହି ସମସ୍ତ ମନ୍ତ୍ରୀ କୁଳୀନ, ଯୁବକ, ବୁଦ୍ଧିମାନ ଓ ରାଜକୁମାରଙ୍କ ପରମ ହିତାକାଂକ୍ଷୀ ।

ମୃଗାଙ୍କଦତ୍ତ ଏହି ମିତ୍ରମାନଙ୍କ ସହିତ ପିତାଙ୍କ ବାସଭବନରେ କାଳାତିପାତ କରୁଥାଆନ୍ତି । କିନ୍ତୁ ତାଙ୍କର ଅନୁରୂପ ପତ୍ନୀଟିଏ ମିଳିବା ସହଜ ନଥିଲା । ଦିନେ ମନ୍ତ୍ରୀ ଭୀମପରାକ୍ରମ ଏକାନ୍ତରେ ତାଙ୍କୁ କହିଲେ—

''ଦେବ ! ଆଜି ରାତିରେ ମୁଁ ଯାହା ଦେଖିଲି, ତାହା ଅତୀବ କୌତୂହଳପ୍ରଦ ! ମୁଁ ଶୟନାଗାରରେ ଶୋଇଥାଏ । ହଠାତ୍ ମୋର ନିଦ୍ରାଭଙ୍ଗ ହେଲା । ମୁଁ ଲକ୍ଷ୍ୟ କଲି, ବଜ୍ରତୁଲ୍ୟ ତୀକ୍ଷ୍ଣ ନଖଯୁକ୍ତ ଏକ ଭୀଷଣାକୃତି ସିଂହ ମୋ ଆଡ଼କୁ ମାଡ଼ି ଆସୁଅଛି । ମୁଁ ହାତରେ ଛୁରିକା ନେଇ ଶଯ୍ୟାରୁ ଉଠିବାମାତ୍ରେ ସେ ଫେରିଯିବାକୁ ଲାଗିଲା । ମୁଁ ମଧ୍ୟ

ଦ୍ରୁତଗତିରେ ତା'ର ଅନୁଗମନ କଲି । ନଦୀର ପରପାରକୁ ଚାଲିଯାଇ ସେ ତା'ର ଦୀର୍ଘ ଜିହ୍ବା ମୋ ଆଡ଼କୁ ଲମ୍ବାଇ ଦେଲା । ମୁଁ ମଧ୍ୟ ନିର୍ଭୟରେ ତା'ର ସେହି ଜିହ୍ବାକୁ ଛୁରିକା ସାହାଯ୍ୟରେ ଛେଦନ କଲି । ସେହି ଜିହ୍ବାକୁ ସେତୁ ରୂପେ ବ୍ୟବହାର କରି ମୁଁ ଯେତେବେଳେ ନଦୀର ପରପାରରେ ପହଞ୍ଚିଗଲି, ସେତେବେଳେ ସେ ଏକ କରାଳ ପୁରୁଷର ରୂପ ଧାରଣ କରି ମୋ ସମ୍ମୁଖରେ ଦଣ୍ଡାୟମାନ ହେଲା । ମୁଁ ତା'ର ପରିଚୟ ଜିଜ୍ଞାସା କରନ୍ତେ ସେ ଉତ୍ତରରେ କହିଲା ଯେ ସେ ଏକ ବେତାଳ ଏବଂ ମୋର ପରାକ୍ରମରେ ସେ ପ୍ରସନ୍ନ । ଏହାଶୁଣି ମୁଁ ତାକୁ ପ୍ରଶ୍ନ କଲି, 'ଯଦି ତୁମେ ମୋ ପ୍ରତି ପ୍ରସନ୍ନ, ତେବେ ମୋର ସ୍ବାମୀ ମୃଗାଙ୍କଦତ୍ତଙ୍କ ପତ୍ନୀ କିଏ ହେବ, ପ୍ରକାଶ କଲେ ଅନୁଗୃହୀତ ହେବି ।'

ମୋର ଏହି ପ୍ରଶ୍ନର ଉତ୍ତରରେ ସେ କହିଲା, 'ଉଜ୍ଜୟିନୀରେ କର୍ମସେନ ବୋଲି ଜଣେ ରାଜା ରାଜତ୍ୱ କରନ୍ତି । ବିଧାତାଙ୍କ ସୌନ୍ଦର୍ଯ୍ୟ ସୃଷ୍ଟିର ଆଧାର ସ୍ୱରୂପ ତାଙ୍କର ଏକ କନ୍ୟା ଅଛି । ସେହି କନ୍ୟାର ରୂପଲାବଣ୍ୟ ନିକଟରେ ସ୍ୱର୍ଗର ଅପ୍‌ସରାମାନେ ସୁଦ୍ଧା ପରାସ୍ତ ହେବେ । ଏହି ଶଶାଙ୍କବତୀ ହିଁ ତୁମ ଯୁବରାଜଙ୍କ ପତ୍ନୀ ହେବେ ଏବଂ ତାଙ୍କୁ ବିବାହ କରି ମୃଗାଙ୍କଦତ୍ତ ସସାଗରା ଧରାର ଅଧିପତି ହେବେ ।' ଏହା କହି ବେତାଳ ଅନ୍ତର୍ହିତ ହେଲା ଏବଂ ମୁଁ ମଧ୍ୟ ସେଠାରୁ ଫେରିଆସିଲି ।''

ଭୀମପରାକ୍ରମଙ୍କଠାରୁ ଏହି ବିବରଣୀ ଶୁଣି ମୃଗାଙ୍କଦତ୍ତ ସମସ୍ତ ମନ୍ତ୍ରୀଙ୍କୁ ଡକାଇ ଆଣିଲେ । ସେମାନଙ୍କ ନିକଟରେ ଏହି ବିଚିତ୍ର ବୃତ୍ତାନ୍ତ ପ୍ରକାଶ କରି କହିଲେ, 'ମୁଁ ମଧ୍ୟ ସ୍ୱପ୍ନରେ ଯାହା ଦେଖିଛି, ତାହା କହୁଛି ଶୁଣନ୍ତୁ । ମୋର ମନେହେଲା, ସତେ ଯେପରି ଆମେମାନେ ଏକ ଘୋର ଅରଣ୍ୟ ମଧ୍ୟରେ ପ୍ରବେଶ କରିଅଛେ । ପଥଶ୍ରମ ହେତୁ ଆମ ସମସ୍ତଙ୍କୁ ଶୋଷ ହେଉଥାଏ । ବହୁ କଷ୍ଟରେ ଜଳଟିକିଏ ଦେଖି ଆମେ ଯେମିତି ସେଠାକୁ ପିଇବାପାଇଁ ଯାଇଥାଇଁ, ସେଠାରୁ ପାଞ୍ଚଜଣ ଅସ୍ତ୍ରଶସ୍ତ୍ର ସଜ୍ଜିତ ପୁରୁଷ ବାହାରି ଆସି ଆମକୁ ବାଧା ଦେଲେ । ସେମାନଙ୍କୁ ହତ୍ୟା କରି ଆମ୍ଭେମାନେ ପୁଣି ସେହି ଜଳ ପାନ କରିବାପାଇଁ ଉଦ୍ୟତ ହେବାମାତ୍ରେ ଦେଖିଲେ ଯେ ସେହି ପୁରୁଷ ପାଞ୍ଚଜଣ ଏବଂ ଜଳ ଆଉ ସେଠାରେ ନାହିଁ । ଏହିପରି ଭୟଙ୍କର ତୃଷା ଅନୁଭବ କରୁଥିବା ବେଳେ ଚନ୍ଦ୍ରଜ୍ୟୋସ୍ନାରେ ଚତୁର୍ଦ୍ଦିଗ ଆଲୋକିତ କରି ସ୍ୱୟଂ ମହାଦେବ ବୃଷଭ ପୃଷ୍ଠରେ ଆସି ସେଠାରେ ଉପସ୍ଥିତ ହେଲେ । ଆମ୍ଭେମାନେ ସମସ୍ତେ ତାଙ୍କୁ ପ୍ରଣାମ କଲେ । ସେ ନିଜର ଦକ୍ଷିଣ ଚକ୍ଷୁରୁ ଗୋଟିଏ ବିନ୍ଦୁ ଅଶ୍ରୁ ସେଠାରେ ପକାଇ ଦିଅନ୍ତେ ହଠାତ୍ ସେଠାରେ ଏକ

ସାଗର ସୃଷ୍ଟି ହେଲା । ଏହି ସାଗର ମଧ୍ୟରୁ ମୁଁ ଏକ ସୁନ୍ଦର ମୁକ୍ତାମାଳା ଲାଭ କରି ତାକୁ କଣ୍ଠରେ ଧାରଣ କଲି । ଏହାପରେ ଏକ ରକ୍ତଲିପ୍ତ ନରକପାଳ ସାହାଯ୍ୟରେ ମୁଁ ସେହି ବିଶାଳ ସାଗରକୁ ପାନ କଲି । ଏ ସମୟରେ ମୋର ନିଦ୍ରାଭଙ୍ଗ ହେଲା । ସେତେବେଳକୁ ରାତ୍ରି ମଧ୍ୟ ଶେଷ ହୋଇଯାଇଥିଲା ।'

ମୃଗାଙ୍କଦତ୍ତଙ୍କଠାରୁ ଏହି ବିସ୍ମୟକର ସ୍ୱପ୍ନବୃତ୍ତାନ୍ତ ଶ୍ରବଣ କରି ମନ୍ତ୍ରୀମାନେ ଆନନ୍ଦିତ ହେଲେ । ମନ୍ତ୍ରୀ ବିମଳବୁଦ୍ଧି ସ୍ୱପ୍ନର ବ୍ୟାଖ୍ୟା କଲେ, 'ଦେବ, ଆପଣ ଧନ୍ୟ । ସ୍ୱୟଂ ଭଗବାନ୍ ମହାଦେବଙ୍କ କୃପାଲାଭ କରି ଆପଣଙ୍କ ଜୀବନ ସାର୍ଥକ ହୋଇଅଛି । ସ୍ୱପ୍ନରେ ଆପଣ ଯେଉଁ ମୁକ୍ତାମାଳା ଲାଭ କରି ସମୁଦ୍ରପାନ କଲେ ସେଥିରୁ ସ୍ପଷ୍ଟ ହେଉଛି ଯେ ଆପଣ ଶଶାଙ୍କବତୀଙ୍କୁ ବିବାହ କରି ସସାଗରାଧରା ଉପଭୋଗ କରିବେ । କିନ୍ତୁ ଏହା ବ୍ୟତୀତ ସ୍ୱପ୍ନର ଅବଶିଷ୍ଟ ଅଂଶତକ କ୍ଲେଶଦାୟକ ବୋଲି ସୂଚିତ ହୁଏ ।'

ବିମଳବୁଦ୍ଧିଙ୍କଠାରୁ ଏହା ଶୁଣି ମୃଗାଙ୍କଦତ୍ତ ମନ୍ତ୍ରୀମାନଙ୍କୁ କହିଲେ, 'ଯଦି ଭୀମପରାକ୍ରମ ବେତାଳଠାରୁ ଶୁଣିଥିବା ଫଳ ଲାଭର ସୂଚନା ମୋର ସ୍ୱପ୍ନରୁ ମିଳୁଥାଏ, ତେବେ ନିଜର ଦୁର୍ଦ୍ଧର୍ଷ ସେନାବାହିନୀ ଓ ଅଭେଦ୍ୟ ଦୁର୍ଗ ପାଇଁ ଅହଙ୍କାର ପ୍ରକାଶ କରୁଥିବା କର୍ମସେନଙ୍କୁ ବୁଦ୍ଧିବଳରେ ପରାସ୍ତ କରି ଶଶାଙ୍କବତୀଙ୍କୁ ବିବାହ କରିବାକୁ ହେବ । ବୁଦ୍ଧିବଳଦ୍ୱାରା ହିଁ ସମସ୍ତ କାର୍ଯ୍ୟ ସିଦ୍ଧ ହୋଇଥାଏ ।

ପ୍ରଜ୍ଞାବଳଂ ଚ୍ ସର୍ବେଷ୍ଟୁ ମୁଖ୍ୟଂ କାର୍ଯ୍ୟେଷୁ ସାଧନମ୍ ।

ଏ ପ୍ରସଙ୍ଗରେ ମୋର ଗୋଟିଏ ଗଳ୍ପ ମନେ ପଡୁଛି, ଶୁଣ—

## ରାଜା ଭଦ୍ରବାହୁ କଥା

ମଗଧ ରାଜ୍ୟରେ ଭଦ୍ରବାହୁ ନାମରେ ଜଣେ ରାଜା ଥିଲେ । ମନ୍ତ୍ରଗୁପ୍ତ ତାଙ୍କର ମନ୍ତ୍ରୀ । ସେ ଥିଲେ ବୁଦ୍ଧିମାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠତମ । ଦିନେ ରାଜା ଭଦ୍ରବାହୁ ମନ୍ତ୍ରୀଙ୍କୁ ଏକାନ୍ତରେ କହିଲେ, 'ବାରାଣସୀର ରାଜା ଧର୍ମଗୋପଙ୍କ ଅନଙ୍ଗଲୀଳା ନାମରେ ଏକ ତ୍ରିଲୋକସୁନ୍ଦରୀ କନ୍ୟା ଅଛି । ଶତ୍ରୁତା ଯୋଗୁଁ ଯାଚ୍ଞା କଲେ ସୁଦ୍ଧା ମୋ ସହିତ କନ୍ୟାଟିର ବିବାହ ପାଇଁ ସେ ପ୍ରସ୍ତୁତ ନୁହନ୍ତି । ଭଦ୍ରଦନ୍ତ ନାମରେ ତାଙ୍କର ଗୋଟିଏ ହସ୍ତୀ ଅଛି । ଏହାର ଅଦ୍ଭୁତ ଶକ୍ତିଦ୍ୱାରା ସେ ଦୁର୍ଜ୍ଜୟ । ଏହା ଜାଣିସୁଦ୍ଧା ତାଙ୍କ କନ୍ୟାଟି ବିନା ଜୀବନଧାରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ଏହାର କୌଣସି ସମାଧାନ ମୁଁ ଖୋଜି ପାଉନାହିଁ । ତୁମେ ଯଦି ଏ ସମ୍ପର୍କରେ କିଛି ଉପାୟ କର, ତେବେ ମୋର ଜୀବନ

ରକ୍ଷା ହେବ ।' ରାଜାଙ୍କଠାରୁ ଏହା ଶୁଣି ମନ୍ତ୍ରୀ ତାଙ୍କୁ ଧୈର୍ଯ୍ୟ ପ୍ରଦାନ କରି କହିଲେ, 'ଦେବ, ପରାକ୍ରମ କେବଳ କାର୍ଯ୍ୟସିଦ୍ଧିର ଏକମାତ୍ର ଉପାୟ ନୁହେ । ବୁଦ୍ଧିର କ'ଣ କିଛି କରାମତି ନାହିଁ ! ଆପଣ ଶୋଚନା କରନ୍ତୁ ନାହିଁ । ମୁଁ ନିଜର ବୁଦ୍ଧି ବଳରେ ଆପଣଙ୍କ ମନୋରଥ ପୂର୍ଣ୍ଣ କରିବି ।'

ରାଜାଙ୍କୁ ଏହିପରି ଆଶ୍ୱାସନା ଦେଇ ମନ୍ତ୍ରୀ ମନ୍ତ୍ରଗୁପ୍ତ ପରଦିନ ସନ୍ନ୍ୟାସୀର ଛଦ୍ମବେଶରେ ପାଞ୍ଚସାତଜଣ ବିଶ୍ୱସ୍ତ ଅନୁଚରଙ୍କ ସହିତ ବାରାଣସୀ ଅଭିମୁଖରେ ଯାତ୍ରା କଲେ । ସେଠାରେ ଶିଷ୍ୟବେଶୀ ଅନୁଚରମାନେ ତୀର୍ଥଯାତ୍ରୀ ଭକ୍ତମାନଙ୍କ ମଧ୍ୟରେ ତାଙ୍କୁ ଜଣେ ସିଦ୍ଧପୁରୁଷ ବୋଲି ପରିଚିତ କରାଉଥାଆନ୍ତି ।

ଏକଦା ରାତ୍ରିରେ କାର୍ଯ୍ୟସିଦ୍ଧିର ଉପାୟ ନିର୍ଣ୍ଣୟ କରିବାପାଇଁ ମନ୍ତ୍ରଗୁପ୍ତ ଅନୁଚରମାନଙ୍କ ସହିତ ନଗର ମଧ୍ୟରେ ଭ୍ରମଣ କରୁଥାଆନ୍ତି । ଦୂରରୁ ହସ୍ତୀପାଳର ସ୍ତ୍ରୀ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସେ ଗୃହରୁ ନିର୍ଗତ ହୋଇ ଶଙ୍କିତ ମନରେ ଦ୍ରୁତ ଗତିରେ ଚାଲିଥାଏ । ତା' ସହିତ ତିନି ଚାରିଜଣ ସଶସ୍ତ୍ର ପ୍ରହରୀ ମଧ୍ୟ ଥାଆନ୍ତି । ମନ୍ତ୍ରୀଙ୍କ ମନେ ହେଲା, ସେ ନିଶ୍ଚୟ ଗୃହତ୍ୟାଗ କରି ଚାଲିଯାଉଛି । ତେଣୁ ତା'ର ଗନ୍ତବ୍ୟସ୍ଥଳ ଜାଣିବାପାଇଁ ମନ୍ତ୍ରୀ ତାକୁ ଅନୁସରଣ କରିବାକୁ ଲାଗିଲେ । କିଛି ଦୂର ଯିବାପରେ ଦୂରରୁ ସ୍ତ୍ରୀଟିର ଗନ୍ତବ୍ୟସ୍ଥଳ ନିର୍ଣ୍ଣୟ ପୂର୍ବକ ସେ ନିଜର ଆଶ୍ରୟସ୍ଥଳକୁ ଫେରିଆସିଲେ ।

ପରଦିନ ପ୍ରଭାତରୁ ସମସ୍ତ ଧନସମ୍ପତ୍ତି ସହ ସ୍ତ୍ରୀ ପଳାୟନ କରିଥିବା ଜାଣିପାରି ହସ୍ତୀପାଳ ଏଣେତେଣେ ତା'ର ଅନୁସନ୍ଧାନ କରିବାକୁ ଲାଗିଲା । ମନ୍ତ୍ରଗୁପ୍ତ ଏହାକୁ ହିଁ ସୁଯୋଗ ଭାବି ନିଜର ଅନୁଚରମାନଙ୍କୁ ଯଥାବିଧି ତା' ନିକଟକୁ ପ୍ରେରଣ କଲେ । ପତ୍ନୀର ସନ୍ଧାନ ପାଇନପାରି ହସ୍ତୀପାଳ ସେତିକିବେଳକୁ ବିଷପାନ କରିସାରିଥାଏ । ଅନୁଚରମାନେ ଏହା ଜାଣିପାରି ନିଜର ବିଦ୍ୟାପ୍ରଭାବରେ ତା'ର ଶରୀରରୁ ବିଷ ହରଣ କଲେ । ସେ ଟିକିଏ ଆଶ୍ୱସ୍ତ ହେବାରୁ ସେମାନେ ତାକୁ କହିଲେ ଯେ ସେମାନଙ୍କ ଗୁରୁ ଜଣେ ସିଦ୍ଧପୁରୁଷ ଓ ସର୍ବଜ୍ଞ, ଏଣୁ ସେ ତା' ସ୍ତ୍ରୀର ସନ୍ଧାନ ଦେଇପାରିବେ । ଆଶାୟୀ ହସ୍ତୀପାଳ ସେମାନଙ୍କ ସହ ଛଦ୍ମବେଶୀ ମନ୍ତ୍ରୀଙ୍କ ନିକଟରେ ଆସି ପହଞ୍ଚିଲା । ବ୍ରହ୍ମଚାରୀର ଛଦ୍ମବେଶରେ ମନ୍ତ୍ରୀ ଅଧିକ ପ୍ରଭାବଶାଳୀ ଦେଖାଯାଉଥାଆନ୍ତି । ହସ୍ତୀପାଳ ତାଙ୍କୁ ପ୍ରଣାମ କରି ନିଜ ସ୍ତ୍ରୀର ସନ୍ଧାନ ଜିଜ୍ଞାସା କଲା । ମନ୍ତ୍ରୀ ମଧ୍ୟ ମିଥ୍ୟା ଧ୍ୟାନରେ ବସି ଗତ ରାତ୍ରିରେ ଲକ୍ଷ୍ୟ କରିଥିବା ସ୍ଥାନର ସମ୍ପୂର୍ଣ୍ଣ ଠିକଣା ତାକୁ ବତାଇଦେଲେ । ଏଥିରେ ସନ୍ତୁଷ୍ଟ ହୋଇ ହସ୍ତୀପାଳ ଛଦ୍ମ ତପସ୍ୱୀଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇ

ନଗରରକ୍ଷକମାନଙ୍କ ସହାୟତାରେ ସେହି ସ୍ଥାନଟି ଘେରାଉ କଲା ଏବଂ ତା'ର ସ୍ତ୍ରୀକୁ ଭୁଲାଇ ନେଇଯାଇଥିବା ସେହି ପୁରୁଷମାନଙ୍କୁ ହତ୍ୟା କରି ସ୍ତ୍ରୀ ସହିତ ସମସ୍ତ ଧନରତ୍ନ ଉଦ୍ଧାର କଲା ।

ପରଦିନ ପ୍ରଭାତରୁ କୃତଜ୍ଞ ହସ୍ତୀପାଳ ସେହି ଛଦ୍ମ ତପସ୍ୱୀଙ୍କୁ ଭୋଜନ ନିମିତ୍ତ ସ୍ୱଗୃହକୁ ନିମନ୍ତ୍ରଣ କଲା । କିନ୍ତୁ ମନ୍ତ୍ରୀ କହିଲେ ଯେ ସେ କାହାରି ଗୃହରେ ପ୍ରବେଶ କରନ୍ତି ନାହିଁ କିମ୍ବା ଦିବାଭାଗରେ ଭୋଜନ କରନ୍ତି ନାହିଁ । ଏଣୁ ହସ୍ତୀପାଳ ସେହିଦିନ ରାତ୍ରିରେ ହସ୍ତୀଶାଳରେ ତାଙ୍କର ପାନଭୋଜନର ପ୍ରବନ୍ଧ କଲା । ମନ୍ତ୍ରୀ ସେଠାରେ ଯାଇ ପହଞ୍ଚିଲେ । ଗଲାବେଳେ ସେ ଗୋଟିଏ ବିଷାକ୍ତ ସର୍ପକୁ ମନ୍ତ୍ରବଳରେ ବଶୀଭୂତ କରି ବାଉଁଶ ନଳିରେ ସେଠାକୁ ନେଇଯାଇଥାଆନ୍ତି । ଅନୁଚରମାନଙ୍କ ସହ ତାଙ୍କର ପାନଭୋଜନ ଶେଷ ହେଲା । ହସ୍ତୀପାଳ ସ୍ୱଗୃହକୁ ଚାଲିଗଲା ଏବଂ ଅନ୍ୟାନ୍ୟ ଭୃତ୍ୟମାନେ ନିଦ୍ରା ଗଲେ । ଏ ସମୟରେ ମନ୍ତ୍ରୀ ସର୍ପଟିକୁ ନେଇ ଭଦ୍ରଦନ୍ତ ହସ୍ତୀର କର୍ଣ୍ଣବିଳ ମଧ୍ୟରେ ଛାଡ଼ି ଦେଇ ଅନୁଚରମାନଙ୍କ ସହ ନିଜ ରାଜ୍ୟକୁ ଫେରିଆସିଲେ । ଏଣେ ସର୍ପ ଦଂଶନରେ ଭଦ୍ରଦନ୍ତର ମୃତ୍ୟୁ ହେଲା ।

ଧର୍ମଗୋପଙ୍କ ହସ୍ତୀ ସହିତ ତାଙ୍କର ସମସ୍ତ ଅଭିମାନକୁ ଧ୍ୱଂସ କରି ଫେରି ଆସିଥିବା ଦେଖି ରାଜା ଭଦ୍ରବାହୁ ମନ୍ତ୍ରୀଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ ହେଲେ । ଏହାପରେ ସେ ଧର୍ମଗୋପଙ୍କ ନିକଟକୁ କନ୍ୟା ପ୍ରଦାନ ପାଇଁ ଦୂତ ପ୍ରେରଣ କଲେ । ହସ୍ତୀଟିର ମୃତ୍ୟୁରେ ବଳହୀନ ରାଜା ଭଦ୍ରବାହୁ ଅଗତ୍ୟା ଏଥିରେ ସମ୍ମତ ହେଲେ । ଉଭୟଙ୍କ ବିବାହ ସମ୍ପନ୍ନ ହେଲା । ବୁଦ୍ଧିମାନ୍ ରାଜାମାନେ ସମୟକ୍ରମେ ବେତସଲତାର ଧର୍ମ ଆହରଣ କରିନେଇଥାଆନ୍ତି ଅର୍ଥାତ୍ ଆବଶ୍ୟକ ବେଳେ ନମ୍ର ହୋଇଯାଇଥାଆନ୍ତି ।

ଭଜନ୍ତି ବୈତସୀଂ ବୃତ୍ତିଂ ରାଜାନଃ କାଳବେଦିନଃ ।

ରାଜା ଭଦ୍ରବାହୁ ଯେପରି ବୁଦ୍ଧିବଳରେ ଅନଙ୍ଗଲୀଳାଙ୍କୁ ଲାଭ କରିଥିଲେ, ଅନୁରୂପ ଭାବେ ବୁଦ୍ଧିବଳରେ ମୁଁ ମଧ୍ୟ ରାଜକନ୍ୟା ଶଶାଙ୍କବତୀଙ୍କୁ ନିଶ୍ଚୟ ପତ୍ନୀରୂପେ ଲାଭ କରିବି ।

ମୃଗାଙ୍କଦତ୍ତଙ୍କଠାରୁ ଏକଥା ଶ୍ରବଣ କରି ମନ୍ତ୍ରୀ ବିଚିତ୍ରକଥ କହିଲେ, 'ଦେବ, ସ୍ୱପ୍ନରେ ଦେଖିଥିବା ମୁକ୍ତାମାଳା ଆପଣଙ୍କ ସମସ୍ତ ମନୋରଥ ପୂରଣ କରିବ । ଦେବତାମାନଙ୍କ ଅମୋଘ ପ୍ରସନ୍ନତା ଫଳରେ କେଉଁ କାର୍ଯ୍ୟ ବା ସିଦ୍ଧ ନହେବ ?' ଏ ସମ୍ପର୍କରେ ଗୋଟିଏ ଗଳ୍ପ ଶୁଣନ୍ତୁ—

# ପୁଷ୍କରାକ୍ଷ କଥା

ତକ୍ଷଶିଳା ନଗରୀରେ ଭଦ୍ରାକ୍ଷ ନାମରେ ଜଣେ ରାଜା ଥିଲେ । ସେ ପୁତ୍ର ପ୍ରାପ୍ତି ଇଚ୍ଛାରେ ପ୍ରତିଦିନ ନିଜର ଖଡ୍‌ଗ ଉପରେ ଶହେ ଆଠ ପଦ୍ମଫୁଲ ରଖି ଲକ୍ଷ୍ମୀଦେବୀଙ୍କ ଉପାସନା କରୁଥାଆନ୍ତି । ଦିନେ ସେ ମୌନବ୍ରତ ଅବଲମ୍ବନ ପୂର୍ବକ ଦେବୀଙ୍କ ପୂଜାରେ ବସିଥାଆନ୍ତି । ଫୁଲଗୁଡ଼ିକୁ ଗଣି ସେ ଦେଖିଲେ ଯେ ଦୈବକ୍ରମେ ସେହିଦିନ ଗୋଟିଏ ଫୁଲ କମ୍ ଅଛି । ସେ ନିଜର ହୃଦୟ କମଳ ବାହାର କରି ସେଥିରେ ଯୋଗ କଲେ ଏବଂ ଦେବୀ ଉପାସନା ଯଥାବିଧି ସମାପ୍ତ କଲେ । ଏଥିରେ ପ୍ରୀତ ହୋଇ ଭଗବତୀ କମଳା ସାର୍ବଭୌମ ପୁତ୍ରଲାଭର ବର ପ୍ରଦାନ ପୂର୍ବକ ତାଙ୍କ ଶରୀରକୁ ଅଧିକ ରୂପସମ୍ପନ୍ନ କରି ଅନ୍ତର୍ହିତା ହେଲେ ।

କିଛିଦିନ ପରେ ଭଦ୍ରାକ୍ଷଙ୍କ ଔରସରୁ ରାଣୀ ଗୋଟିଏ ଦିବ୍ୟସୁନ୍ଦର ପୁତ୍ରକୁ ଜନ୍ମ ଦେଲେ । ହୃଦୟ ପୁଷ୍କର ପ୍ରଦାନ ଦ୍ୱାରା ପୁତ୍ର ଲାଭ କରିଥିବାରୁ ରାଜା ଏହି ଗୁଣବାନ୍ ପୁତ୍ରଟିର ନାମ ରଖିଲେ ପୁଷ୍କରାକ୍ଷ ।

ସମୟକ୍ରମେ ପୁଷ୍କରାକ୍ଷ ଯୌବନରେ ପଦାର୍ପଣ କରନ୍ତେ ରାଜା ପୁତ୍ର ହସ୍ତରେ ରାଜ୍ୟଭାର ସମର୍ପଣ କରି ଅରଣ୍ୟବାସରେ ଚାଲିଗଲେ । ରାଜ୍ୟପ୍ରାପ୍ତ ହୋଇ ପୁଷ୍କରାକ୍ଷ ସର୍ବଦା ଶିବପୂଜା କରୁଥାଆନ୍ତି । ଦିନେ ଉପାସନା ଶେଷରେ ସେ ଉତ୍ତମା ପତ୍ନୀଟିଏ ଭିକ୍ଷା କଲେ । ଏ ସମୟରେ ଏକ ଅଶରୀରୀ ବାଣୀ ତାଙ୍କର ସମସ୍ତ ଅଭିଳାଷ ପୂରଣ ହେବ ବୋଲି ଜଣାଇଲା । ଏହା ଶ୍ରବଣ କରି ସେ ଆନନ୍ଦର ସହିତ କାଳାତିପାତ କରିବାକୁ ଲାଗିଲେ ।

ଏକଦା ପୁଷ୍କରାକ୍ଷ ମୃଗୟା ବିନୋଦ ନିମିତ୍ତ ବନ୍ୟଜନ୍ତୁ ପରିପୂର୍ଣ୍ଣ ଅରଣ୍ୟାନୀ ମଧ୍ୟରେ ପ୍ରବେଶ କଲେ । ସେଠାରେ ଗୋଟିଏ ଓଟ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ଓଟଟି ସମ୍ଭୋଗଲିପ୍ତ ଗୋଟିଏ ସର୍ପ ଦମ୍ପତିଙ୍କୁ ଭ୍ରମବଶତଃ ଖାଇବାପାଇଁ ଯାଉଥାଏ । ପୁଷ୍କରାକ୍ଷ ଏଥିରେ ମର୍ମାହତ ହୋଇ ଓଟଟିକୁ ବଧ କଲେ । ଓଟଟିର ଶରୀରରୁ ପ୍ରାଣବାୟୁ ନିର୍ଗତ ହେବା ପରେ ପରେ ସେ ଏକ ବିଦ୍ୟାଧରରେ ପରିଣତ ହୋଇଗଲା ଏବଂ ପୁଷ୍କରାକ୍ଷଙ୍କୁ ଉଦ୍ଦେଶ୍ୟ କରି କହିଲା–

'ଆପଣ ମୋର ଅଶେଷ ଉପକାର କରିଛନ୍ତି । ଏଣୁ ମୋର ବକ୍ତବ୍ୟ ଟିକିଏ ଧ୍ୟାନ ଦେଇ ଶୁଣନ୍ତୁ । ମହାରାଜ ! ରଂକୁମାଳି ଜଣେ ବରିଷ୍ଠ ତରୁଣ ବିଦ୍ୟାଧର । ଏହି ବିଦ୍ୟାଧରଙ୍କ ରୂପଶୋଭାରେ ଅନୁରକ୍ତ ହୋଇ ଅନ୍ୟ ଜଣେ ବିଦ୍ୟାଧରଙ୍କ କନ୍ୟା

ତାରାବଳୀ ତାଙ୍କୁ ବରଣ କଲା । ସେ ଦୁହେଁ ପରସ୍ପରକୁ ବିବାହ କଲେ । ଏଥିରେ କ୍ରୋଧାନ୍ୱିତ ହୋଇ ତାରାବଳୀଙ୍କ ପିତା କିଛିଦିନ ବିୟୋଗ ଦୁଃଖ ଭୋଗ କରିବାପାଇଁ ସେମାନଙ୍କୁ ଅଭିଶାପ ଦେଲେ ।

ଏହି ପତିପତ୍ନୀ ରଂକୁମାଳି ଓ ତାରାବଳୀ ଅନୁରାଗବଶତଃ ରାଜ୍ୟର ବିଭିନ୍ନ ସ୍ଥାନ ଭ୍ରମଣ କରୁଥାଆନ୍ତି । ଦିନେ ପିତୃ ଅଭିଶାପ ପ୍ରଭାବରୁ ସେମାନେ କୌଣସି ବନ ମଧ୍ୟରେ ଭ୍ରମଣ କରୁଥିବା ବେଳେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଲେ ।

ତାରାବଳୀ ସ୍ୱୀୟ ପତିଙ୍କ ଅନୁସନ୍ଧାନରେ ଆସି ପଶ୍ଚିମ ସମୁଦ୍ର ତୀରରେ ପହଞ୍ଚିଲା । ସେ ଯେଉଁ ବନ ମଧ୍ୟରେ ପ୍ରବେଶ କଲା ସେଥିରେ ଜଣେ ଋଷି ତପସ୍ୟା କରୁଥାଆନ୍ତି । ଋଷିଙ୍କ ଆଶ୍ରମରେ ଏକ ବିଶାଳ ଜମ୍ବୁ ବୃକ୍ଷ ଥାଏ । ଏହି ବୃକ୍ଷରେ ଥିବା ଭ୍ରମରମାନଙ୍କ ମଧୁର ଗୁଞ୍ଜରଣ ସତେ ଯେପରି ତାକୁ ଆଶ୍ୱାସନା ଦେବାପାଇଁ ଉଦ୍ଦିଷ୍ଟ ଥିଲା । ସେ ଏଥିରେ ମୁଗ୍ଧ ହୋଇ ନିଜେ ଏକ ଭ୍ରମରୀର ରୂପ ଧାରଣ ପୂର୍ବକ ସେମାନଙ୍କ ମଧ୍ୟରେ ଯାଇ ବସିଗଲା ଏବଂ ଗୋଟିଏ ପୁଷ୍ପରୁ ମଧୁପାନ କରିବାକୁ ଲାଗିଲା । କିଛିକ୍ଷଣ ପରେ ହଠାତ୍ ବହୁଦିନରୁ ସନ୍ଧାନ କରୁଥିବା ନିଜର ପତିଙ୍କୁ ସେଠାରେ ଭ୍ରମର ରୂପେ ଦେଖି ତା'ର ବିସ୍ମୟର ସୀମା ରହିଲା ନାହିଁ । ଭ୍ରମର ରୂପରେ ଥିବା ରଂକୁମାଳି ମଧ୍ୟ ଦୀର୍ଘଦିନର ବିଚ୍ଛେଦ ପରେ ନିଜର ପ୍ରିୟତମା ପତ୍ନୀଙ୍କୁ ଦେଖି ଅତ୍ୟନ୍ତ ଉତ୍‌ଫୁଲ୍ଲ ହୋଇଉଠିଲେ । ଫଳରେ ତାଙ୍କର ବୀର୍ଯ୍ୟ ସ୍ଖଳିତ ହେଲା । ସେ ଏହାକୁ ଗୋଟିଏ ପୁଷ୍ପ ମଧ୍ୟରେ ସେଚନ କରିଦେଲେ । ଭ୍ରମରୀ ରୂପ ପରିତ୍ୟାଗ କରି ତାରାବଳୀ ବହୁ ପ୍ରତୀକ୍ଷିତ ରଂକୁମାଳିଙ୍କୁ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲା । ମନେହେଲା ଚନ୍ଦ୍ର ଓ ଜ୍ୟୋସ୍ନା ପରସ୍ପର ଏକୀଭୂତ ହେଲେ ।

ଏହାପରେ ଏହି ଦମ୍ପତି ସ୍ୱଗୃହକୁ ଫେରିଗଲେ । ସମୟକ୍ରମେ ଉପରୋକ୍ତ ବୀର୍ଯ୍ୟସିକ୍ତ ପୁଷ୍ପରୁ ଏକ ଫଳ ଜାତ ହେଲା ଏବଂ ଏହା ମଧ୍ୟରୁ ଗୋଟିଏ କନ୍ୟାର ଉତ୍ପତ୍ତି ଘଟିଲା । ଅମୋଘ ବୀର୍ଯ୍ୟ କଦାପି ନିଷ୍ଫଳ ହୁଏ ନାହିଁ ।

ଦିନେ ବିଜିତାସୁ ନାମକ ଜଣେ ଋଷି ଫଳମୂଳ ସଂଗ୍ରହ କରିବାପାଇଁ ଏହି ଜମ୍ବୁ ବୃକ୍ଷମୂଳରେ ଆସି ପହଞ୍ଚିଲେ । ବୃକ୍ଷରୁ ଗୋଟିଏ ପାଚିଲା ଫଳ ଆସି ତାଙ୍କ ସମ୍ମୁଖରେ ପଡ଼ିଲା । ପଡ଼ିବା ମାତ୍ରେ ଫାଟିଯିବା ଫଳରେ ଫଳ ମଧ୍ୟରୁ ଏକ ଦିବ୍ୟସୁନ୍ଦରୀ କନ୍ୟା ନିର୍ଗତ ହୋଇ ଅତୀବ ନମ୍ରତାର ସହିତ ମୁନିଙ୍କୁ ପ୍ରଣିପାତ କଲା । ଦିବ୍ୟଦୃଷ୍ଟିସମ୍ପନ୍ନ ମୁନି କନ୍ୟାଟିକୁ ଦେଖି ସମସ୍ତ ବୃତ୍ତାନ୍ତ ଜାଣିପାରିଲେ । ଏଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ କନ୍ୟାଟିକୁ ସ୍ୱୀୟ ଆଶ୍ରମକୁ ନେଇଯାଇ ତା'ର ନାମକରଣ କଲେ

ବିନୟବତୀ । ଋଷି ଆଶ୍ରମରେ ଲାଳିତାପାଳିତା ବିନୟବତୀ ସମୟକ୍ରମେ ଯୌବନରେ ପଦାର୍ପଣ କଲା ।

ଏକଦା ଆକାଶମାର୍ଗରେ ଯାଉଥିଲା ବେଳେ ବିନୟବତୀ ଉପରେ ମୋର ଦୃଷ୍ଟିପାତ ହେଲା । ମୁଁ ନିଜର ରୂପଗର୍ବ ଓ କାମପୀଡ଼ାରେ ଅତିଷ୍ଠ ହୋଇ ତା' ନିକଟକୁ ଗଲି । ତା'ର ଇଚ୍ଛା ବିରୁଦ୍ଧରେ ମୁଁ ତାକୁ ହରଣ କରିବାପାଇଁ ଚେଷ୍ଟା କଲି । ତା'ର ଚିତ୍କାର ଶୁଣି ମୁନି ବିଜିତାସୁ ସେଠାରେ ଆସି ଉପସ୍ଥିତ ହେଲେ ଏବଂ ମୋର ଅବିନୀତ ବ୍ୟବହାର ଦେଖି ମୋତେ ଅଭିଶାପ ଦେଲେ । ଫଳରେ ମୁଁ ଏକ କଦାକାର ଓଟରେ ପରିଣତ ହେଲି । ମୋର ଶାପାନ୍ତ ଘୋଷଣା କରି ସେ କହିଥିଲେ ଯେ ପୁଷ୍କରାକ୍ଷଙ୍କଦ୍ୱାରା ନିହତ ହେଲେ ମୁଁ ଶାପମୁକ୍ତ ହେବି ଏବଂ ସେ ବିନୟବତୀକୁ ବିବାହ କରିବେ । ଆଜି ଆପଣଙ୍କଦ୍ୱାରା ନିହତ ହୁଅନ୍ତେ ମୋର ଶାପର ଅବଧି ଶେଷ ହେଲା । ଆପଣ ବର୍ତ୍ତମାନ ପଶ୍ଚିମ ସମୁଦ୍ର ପରପାରରେ ଥିବା ସୁରଭିମାରୁତ ବନକୁ ଯାଆନ୍ତୁ ଏବଂ ରୂପଲାବଣ୍ୟରେ ସ୍ୱୟଂ ଲକ୍ଷ୍ମୀଙ୍କୁ ବିଜିତ କରୁଥିବା ସେହି ଅଲୌକିକ କନ୍ୟାକୁ ପତ୍ନୀରୂପରେ ଗ୍ରହଣ କରନ୍ତୁ ।' ଏହା କହି ଉକ୍ତ ବିଦ୍ୟାଧର ସ୍ୱର୍ଗଲୋକକୁ ଚାଲିଗଲା ।

ଏହାପରେ ପୁଷ୍କରାକ୍ଷ ନିଜ ରାଜଧାନୀକୁ ଫେରିଗଲେ । ସେ ମନ୍ତ୍ରୀମାନଙ୍କ ହସ୍ତରେ ସମସ୍ତ ରାଜକାର୍ଯ୍ୟ ସମର୍ପଣ କରିଦେଇ ରାତ୍ରିର ଘନ ଅନ୍ଧକାର ମଧ୍ୟରେ ଅଶ୍ୱାରୋହଣ ପୂର୍ବକ ରାଜ୍ୟରୁ ପ୍ରସ୍ଥାନ କଲେ । ଦୀର୍ଘପଥ ଅତିକ୍ରମ କରି ସେ ପରିଶେଷରେ ପଶ୍ଚିମ ସମୁଦ୍ର ତୀରରେ ଯାଇ ଉପସ୍ଥିତ ହେଲେ । କିନ୍ତୁ ସମୁଦ୍ର ଉତ୍ତୀର୍ଣ୍ଣ ହେବାର ଚିନ୍ତା ତାଙ୍କ ମନକୁ ଭାରାକ୍ରାନ୍ତ କରିଦେଲା । ସେଠାରେ ଏକ ନିର୍ଜନ ଚଣ୍ଡୀମନ୍ଦିର ଥାଏ । ନିକଟସ୍ଥ ସରୋବରରେ ସ୍ନାନ ସମାପନ କରି ସେ ମନ୍ଦିର ମଧ୍ୟକୁ ଯାଇ ଚଣ୍ଡୀଙ୍କୁ ପ୍ରଣାମ କଲେ । କେହି ଜଣେ ସେଠାରେ ବୀଣାଟିଏ ରଖିଥାଏ । ପୁଷ୍କରାକ୍ଷ ତାକୁ ଉଠାଇ ନେଇ ସ୍ୱରଚିତ ସ୍ତୁତିଦ୍ୱାରା ଚଣ୍ଡୀଙ୍କୁ ନିବିଷ୍ଟ ଚିତ୍ତରେ ସ୍ତୁତି କରିବାକୁ ଲାଗିଲେ । ଏଥିରେ ସନ୍ତୁଷ୍ଟ ହୋଇ ଦେବୀ ରାତିରେ ନିଦ୍ରାଯାଇଥିବା ରାଜାଙ୍କୁ ସ୍ୱୀୟ ଅନୁଚରମାନଙ୍କ ସାହାଯ୍ୟରେ ନେଇ ସମୁଦ୍ରର ପରପାରରେ ପହଞ୍ଚାଇଦେଲେ ।

ପରଦିନ ପ୍ରଭାତରୁ ରାଜା ନିଦରୁ ଉଠି ନିଜକୁ ଚଣ୍ଡିକା ମନ୍ଦିର ପରିବର୍ତ୍ତେ ଏକ ଉପବନ ମଧ୍ୟରେ ଦେଖି ବିସ୍ମିତ ହେଲେ । ସେ ସେଠାରେ ଏଣେତେଣେ ବୁଲୁଥିବା ବେଳେ ଗୋଟିଏ ଆଶ୍ରମ ତାଙ୍କର ଦୃଷ୍ଟିଗୋଚର ହେଲା । ଆଶ୍ରମସ୍ଥିତ ଫଳଭାରନମ୍ର ବୃକ୍ଷଗୁଡ଼ିକ ସତେ ଯେପରି ରାଜାଙ୍କୁ ଅତିଥି ରୂପେ ଦେଖି ପ୍ରଣାମ କରୁଥାଆନ୍ତି ଏବଂ ପକ୍ଷୀମାନଙ୍କର କାକଳିଦ୍ୱାରା ସ୍ୱାଗତ ଜଣାଉଥାଆନ୍ତି । ସେ ଆଶ୍ରମ ମଧ୍ୟରେ ପ୍ରବେଶ କରି ଶିଷ୍ୟ

ପରିବେଷ୍ଟିତ ଜଣେ ଋଷିଙ୍କ ନିକଟରେ ଉପସ୍ଥିତ ହେଲେ । ନିକଟକୁ ଯାଇ ପ୍ରଣାମ କରନ୍ତେ ସେ ରାଜାଙ୍କର ଯଥୋଚିତ ସତ୍କାର କରି କହିଲେ, 'ପୁଷ୍କରାକ୍ଷ, ତୁମେ ଯେଉଁ ବିନୟବତୀଙ୍କପାଇଁ ଏଠାକୁ ଆସିଅଛ, ସେ ଏହି ଅଳ୍ପସମୟ ହେଲା ପୁଷ୍ପ ସମିଧ ସଂଗ୍ରହ ପାଇଁ ବନ ମଧ୍ୟକୁ ଯାଇଅଛି । ତୁମେ ଏଠାରେ ବିଶ୍ରାମ କର । ଆଜି ହିଁ ତୁମେ ତୁମ ପୂର୍ବଜନ୍ମର ପତ୍ନୀ ସହିତ ବିବାହ ବନ୍ଧନରେ ଆବଦ୍ଧ ହେବ ।'

ମୁନିଙ୍କଠାରୁ ଏହା ଶୁଣି ପୁଷ୍କରାକ୍ଷ ଚିନ୍ତା କରିବାକୁ ଲାଗିଲେ ଯେ, ତା'ହେଲେ ଇଏ ହିଁ ମୁନି ବିଜିତାସୁ ଏବଂ ଏହା ହିଁ ସେହି ବନ । ଭଗବତୀଙ୍କ ଅପାର କରୁଣାପାଇଁ ସେ ତାଙ୍କୁ ପୁଣି ପ୍ରଣାମ ଜଣାଇଲେ । କିନ୍ତୁ ବିନୟବତୀ ତାଙ୍କର ପୂର୍ବଜନ୍ମର ପତ୍ନୀ ଥିବା ଶୁଣି ସେ ବିସ୍ମୟର ସହିତ ଏହାର ବୃତ୍ତାନ୍ତ ଜ୍ଞାତ ହେବା ନିମିତ୍ତ ମୁନିଙ୍କୁ ଜିଜ୍ଞାସା କଲେ । ପ୍ରସନ୍ନଚିତ୍ତ ରାଜାଙ୍କୁ ମୁନି ତାଙ୍କର ପୂର୍ବଜନ୍ମ ସମ୍ପର୍କରେ ସୂଚନା ଦେବାକୁ ଯାଇ କହିଲେ—

## ପୁଷ୍କରାକ୍ଷ ଓ ବିନୟବତୀଙ୍କ ପୂର୍ବଜନ୍ମ କଥା

ପ୍ରାଚୀନକାଳରେ ତାମ୍ରଲିପ୍ତି ନଗରରେ ଧର୍ମସେନ ବୋଲି ଜଣେ ବଣିକ ବାସ କରୁଥିଲେ । ତାଙ୍କର କଲ୍ୟାଣମୟୀ ପତ୍ନୀଙ୍କ ନାମ ଥିଲା ବିଦ୍ୟୁଲ୍ଲେଖା । ଦିନେ ହଠାତ୍ ଚୋରମାନେ ତାଙ୍କର ସର୍ବସ୍ୱ ଅପହରଣ କରିବା ସଙ୍ଗେସଙ୍ଗେ ଶସ୍ତ୍ରାଘାତରେ ତାଙ୍କୁ କ୍ଷତବିକ୍ଷତ କରିଦେଲେ । ମୁମୂର୍ଷୁ ଧର୍ମସେନ ପତ୍ନୀ ସହିତ ଅଗ୍ନିରେ ପ୍ରବେଶ କରିବା ନିମିତ୍ତ ଉଦ୍ୟତ ହେବାବେଳେ ଆକାଶମାର୍ଗରେ ଯାଉଥିବା ଏକ ହଂସଯୁଗଳ ସେମାନଙ୍କର ଦୃଷ୍ଟିଗୋଚର ହେଲା । ହଂସଯୁଗଳ ଉପରେ ଦୃଷ୍ଟି ନିବଦ୍ଧ ରଖି ପତିପତ୍ନୀ ଅଗ୍ନିରେ ପ୍ରବେଶ ପୂର୍ବକ ଶରୀର ତ୍ୟାଗ କରିବା ଫଳରେ ପରଜନ୍ମରେ ରାଜହଂସ ଓ ରାଜହଂସୀ ରୂପରେ ଜନ୍ମଗ୍ରହଣ କଲେ ।

ସେମାନେ ଗୋଟିଏ ଖଜୁରୀ ଗଛରେ ବସାବାନ୍ଧି ରହିଥାଆନ୍ତି । ଦିନେ ପ୍ରବଳ ବର୍ଷା ଓ ବାତ୍ୟା ହେବା ଫଳରେ ଖଜୁରୀ ଗଛଟି ଉପୁଡ଼ି ପଡ଼ିଲା ଏବଂ ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଲେ । ସକାଳୁ ବାତ୍ୟା ଶାନ୍ତ ହେବାରୁ ହଂସ ବିଭିନ୍ନ ସରୋବର ଓ ବନ ଉପବନ ମଧ୍ୟରେ ହଂସିନୀର ଅନୁସନ୍ଧାନ କଲା । କିନ୍ତୁ ତା'ର ସମସ୍ତ ପ୍ରୟାସ ବ୍ୟର୍ଥ ହେଲା । ହଂସିନୀକୁ ପାଇବା ସମ୍ଭବ ହେଲାନାହିଁ । ବର୍ଷାଋତୁ ଆସିଯାଇଥିବାରୁ ହଂସମାନଙ୍କ ସ୍ୱାଭାବିକ ରୀତି ଅନୁଯାୟୀ କାମପୀଡ଼ିତ ହଂସ ମାନସ ସରୋବର ଅଭିମୁଖରେ ଯାତ୍ରା କଲା । ମାର୍ଗରେ ଅନ୍ୟ ଏକ ହଂସୀ ସହିତ ତା'ର ସମ୍ପର୍କ ସ୍ଥାପିତ ହେବାରୁ ସେ ତାକୁ ଆଶ୍ୱାସନା ପ୍ରଦାନ ପୂର୍ବକ ତା'ର ସହଚାରିଣୀ ହେଲା ।

ମାନସ ସରୋବରଠାରେ ହଂସୀ ସହିତ ତାର ପୁନର୍ମିଳନ ଘଟିଲା । ସେଠାରେ ବର୍ଷାଋତୁ ଯାପନ କରି ସେମାନେ ବିହାର କରିବାପାଇଁ ଏକ ପର୍ବତଶିଖରକୁ ଚାଲିଗଲେ । ସେଠାରେ କୌଣସି ବ୍ୟାଧ ହଂସୀଟିକୁ ହତ୍ୟା କଲା । ହଂସ କୌଣସିମତେ ଜୀବନ ରକ୍ଷା ପୂର୍ବକ ଭୟ ଓ ଶୋକରେ ବିହ୍ୱଳ ହୋଇ ସେଠାରୁ ପଳାୟନ କରିବାପାଇଁ ବାଧ ହେଲା ।

ବ୍ୟାଧ ଯେତେବେଳେ ମୃତ ହଂସୀଟିକୁ ଆଣିବାପାଇଁ ଗଲା, ସେତେବେଳେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ବହୁ ସୈନିକ ସେହି ମାର୍ଗରେ ଆସୁଥିବା ତା'ର ଦୃଷ୍ଟିଗୋଚର ହେଲା । ସେମାନେ କାଳେ ହଂସୀଟିକୁ ନେଇଯିବେ, ଏହି ଭୟରେ ସେ ଶୀଘ୍ର କିଛି ଘାସକୁଟା କାଟି ତାକୁ ଘୋଡ଼ାଇ ପକାଇଲା । ସୈନିକମାନେ ଚାଲିଯିବା ପରେ ବ୍ୟାଧ ହଂସୀଟିକୁ ଆଣିବାପାଇଁ ଯାଇ ଘାସକୁଟା ସଫା କଲା ମାତ୍ରେ ହଂସୀଟି ଚାହୁଁଚାହୁଁ ସେଠାରୁ ଉଡ଼ି ଚାଲିଗଲା । ସେହି ଘାସ ଭିତରେ ଥିବା ମୃତସଂଜୀବନୀ ଲତାର ସ୍ପର୍ଶ ପାଇ ହଂସୀଟିର ଶରୀରରେ ପ୍ରାଣଶକ୍ତି ପୁନଃସଞ୍ଚାରିତ ହୋଇଯାଇଥାଏ ।

ଏଣେ ହଂସ ଗୋଟିଏ ସରୋବର ତଟରେ ଉପନୀତ ହୋଇ ଦୁଃଖର ସହିତ ସ୍ୱୀୟ ପତ୍ନୀର ପ୍ରେମ ଓ ପ୍ରଣୟ ସମ୍ପର୍କରେ ଚିନ୍ତା କରୁ କରୁ ଅନ୍ୟ ହଂସମାନଙ୍କ ସହ ଯାଇ ମିଳିତ ହେଲା । ଏ ସମୟରେ ଜଣେ ଧୀବର ଜାଲ ବିଛାଇ ହଂସଗୁଡ଼ିକୁ ଧରିନେଇ ଆନନ୍ଦରେ ଭୋଜନ କରିବାକୁ ବସିଲା ।

ଏ ସମୟରେ ପତିର ଅନୁସନ୍ଧାନରେ ଆସି ହଂସୀ ସେହି ସରୋବର ତୀରରେ ପହଞ୍ଚିଥାଏ । ପତିର ଏ ପ୍ରକର ଦୁର୍ଦ୍ଦଶାରେ ବ୍ୟଥିତା ହୋଇ ସାହାଯ୍ୟ ଆଶାରେ ସେ ବିକଳ ଭାବରେ ଏଣେତେଣେ ଚାହିଁବାକୁ ଲାଗିଲା । ଏତିକିବେଳେ ସରୋବରରେ ସ୍ନାନକରିବା ପାଇଁ ଆସିଥିବା ଜଣେ ଯୁବକ ତାର ଦୃଷ୍ଟି ଆକର୍ଷଣ କଲା । ଯୁବକଟି କଣ୍ଠରୁ ରତ୍ନହାରଟି ବାହାର କରି ନିଜର ପରିଧେୟ ବସ୍ତ୍ର ଉପରେ ରଖି ସରୋବର ମଧ୍ୟରେ ପ୍ରବେଶ କଲା । ହଂସୀ ଏହାକୁ ଏକ ସୁଯୋଗ ଭାବି ରତ୍ନହାରଟିକୁ ତାର ଅଜ୍ଞାତସାରରେ ଉଠାଇ ନେଲା ଏବଂ ଧୀବର ଦେଖିବା ପରି ତାକୁ ଚଞ୍ଚୁରେ ଧାରଣ କରି ଧୀରେ ଧୀରେ ଆକାଶରେ ଉଡ଼ିବାକୁ ଲାଗିଲା । ଧୀବର ହଂସୀର ଚଞ୍ଚୁରେ ରତ୍ନମାଳା ଦେଖି ଜାଲ କଥା ଭୁଲିଗଲା ଏବଂ ଖଣ୍ଡିଏ ବାଡ଼ି ଧରି ତାକୁ ଅନୁସରଣ କଲା । ହଂସୀ ବହୁ ଦୂର ପଥ ଅତିକ୍ରମ କରି ଗୋଟିଏ ପର୍ବତର ଶିଖର ଦେଶରେ ମାଳାଟିକୁ ରଖିଦେଲା । ଧୀବର ଲୋଭବଶତଃ ଯେତେବେଳେ ପର୍ବତ ଆରୋହଣ କରିବାକୁ ଲାଗିଲା, ସେତେବେଳେ

ସେ ପୁଣି ସରୋବର ନିକଟକୁ ଫେରିଆସିଲା । ଯେଉଁଠି ଜାଲଟି ରଖି ଧୀବର ଚାଲିଯାଇଥିଲା, ତା'ର ସମ୍ମୁଖରେ ଥିବା ଗୋଟିଏ ବୃକ୍ଷ ଉପରେ ମାଙ୍କଡ଼ଟିଏ ବସିଥାଏ । ହଂସୀ ନିଜର ଚଞ୍ଚୁଦ୍ୱାରା ତା'ର ଗୋଟିଏ ଚକ୍ଷୁକୁ ଆଘାତ କରିବା ଫଳରେ ସେ ଉତ୍‌କ୍ଷିପ୍ତ ହୋଇ ଜାଲଟିକୁ ଛିନ୍ନଭିନ୍ନ କରିପକାଇଲା । ହଂସଗୁଡ଼ିକ ମୁକ୍ତିଲାଭ କରି ଯେ ଯାହା ମାର୍ଗରେ ଉଡ଼ିଗଲେ । ହଂସୀ ପତି ସହିତ ମିଳିତ ହୋଇ ନିଜର ସମସ୍ତ ବୃତ୍ତାନ୍ତ କହି ଶୁଣାଇଲା । ଉଭୟେ ପୁଣି ଇତସ୍ତତଃ ବିଚରଣ କରି ଆନନ୍ଦରେ ଜୀବନ ବିତାଇବାକୁ ଲାଗିଲେ ।

ପର୍ବତର ଶିଖର ପ୍ରଦେଶରୁ ରତ୍ନମାଳାଟି ଲାଭ କରି ଧୀବର ଜାଲ ନିକଟରେ ଆସି ପହଞ୍ଚିଲା ବେଳକୁ ହଂସମାନେ ଉଡ଼ି ଚାଲିଯାଇଥାନ୍ତି । ସ୍ନାନ ଶେଷକରି ଯୁବକଟି ହାରଟିକୁ ଖୋଜୁଥାଏ । ଧୀବରର ଭୀତିପୂର୍ଣ୍ଣ ଭାବ ଦେଖି ସେ ଅନୁମାନ କରିନେଲା ଯେ ହାରଟି ତାରି ନିକଟରେ ହିଁ ଅଛି । ସେ ଧୀବରକୁ ଧରିନେଇ ତା'ଠାରୁ ରତ୍ନହାରଟି ଉଦ୍ଧାର କଲା ଏବଂ ତା'ର ଦକ୍ଷିଣ ହସ୍ତଟିକୁ ଛୁରିକାଦ୍ୱାରା କର୍ତ୍ତନ କରି ସେହି ସ୍ଥାନ ତ୍ୟାଗ କଲା ।

ଦିନେ ମଧ୍ୟାହ୍ନରେ ପଦ୍ମପୁଷ୍ପର ଏକ ଛତ୍ର ପ୍ରସ୍ତୁତ କରି ହଂସ ଦମ୍ପତି ତା' ସହିତ ଆକାଶମାର୍ଗରେ ଉଡୁଥାଆନ୍ତି । ଶୀଘ୍ର ଯାଇ ସେମାନେ ଏକ ନଦୀକୂଳରେ ପହଞ୍ଚିଲେ । ସେଠାରେ ଜଣେ ମୁନି ତପସ୍ୟା କରୁଥାଆନ୍ତି । ହଠାତ୍ ଗୋଟିଏ ବ୍ୟାଧ ଶର ପ୍ରୟୋଗ କରି ଉଭୟଙ୍କୁ ଭୂମି ଉପରେ ପକାଇଦେଲା । ହଂସ ଧରିଥିବା ପଦ୍ମପୁଷ୍ପର ଛତ୍ରଟି ତପସ୍ୱୀ ପୂଜା କରୁଥିବା ଶିବଲିଙ୍ଗ ଉପରେ ଯାଇ ପଡ଼ିଲା । ଏହା ଦେଖି ବ୍ୟାଧ ହଂସଟିକୁ ନିଜେ ରଖି ହଂସୀଟିକୁ ତପସ୍ୱୀଙ୍କୁ ପ୍ରଦାନ କଲା । ତପସ୍ୱୀ ମଧ ତାକୁ ଶିବଲିଙ୍ଗ ଉପରେ ଚଢ଼ାଇ ଦେଲେ ।

ପୁଷ୍କରାକ୍ଷ ! ତୁମେ ହେଉଛ ସେହି ହଂସ । ତୁମର ପଦ୍ମପୁଷ୍ପ ନିର୍ମିତ ଛତ୍ର ଶିବଲିଙ୍ଗ ଉପରେ ପଡ଼ିବା ଯୋଗୁଁ ତୁମେ ଏ ଜନ୍ମରେ ରାଜବଂଶରେ ଉତ୍ପନ୍ନ ହୋଇଛ । ହଂସୀର ମାଂସରେ ଶିବଙ୍କର ବିଶେଷ ପୂଜା କରାଯାଇଥିବା ଯୋଗୁଁ ସେ ବିଦ୍ୟାଧର କୁଳରେ ଜନ୍ମଗ୍ରହଣ କରିଛି । ବିନୟବତୀ ହେଉଛି ସେହି ହଂସୀ, ସେ ତୁମର ପୂର୍ବଜନ୍ମର ପତ୍ନୀ ।'

ମୁନି ବିଜିତାସୁଙ୍କଠାରୁ ନିଜର ପୂର୍ବଜନ୍ମ ସମ୍ପର୍କରେ ସମସ୍ତ ବିଷୟ ଶୁଣି ପୁଷ୍କରାକ୍ଷ ପୁଣି ପ୍ରଶ୍ନ କଲେ, 'ଭଗବନ୍, ଆମେ ଦୁହେଁ ସମସ୍ତ ପାପବିନାଶକାରୀ ଅଗ୍ନି ମଧ୍ୟରେ ପ୍ରବେଶ କରିବା ପରେ ମଧ୍ୟ ଆମକୁ ଏହି ପକ୍ଷୀ ଜନ୍ମ କାହିଁକି ଗ୍ରହଣ କରିବାକୁ ପଡ଼ିଲା ?'

ମୁନି ବିଜିତାସୁ ଉତ୍ତରରେ କହିଲେ ମୃତ୍ୟୁବେଳେ ମନୁଷ୍ୟ ମନରେ ଯେଉଁ ଭାବନା ଜାଗ୍ରତ ରହିଥାଏ ପରଜନ୍ମରେ ସେ ସେହି ରୂପ ପ୍ରାପ୍ତ ହୁଏ ।'

## ଲାବଣ୍ୟ ମଞ୍ଜରୀ କଥା

ଉଜ୍ଜୟିନୀ ନଗରୀରେ ଜଣେ ନିଷ୍ଠାବତୀ ବ୍ରହ୍ମଚାରିଣୀ ରହୁଥିଲେ । ସେ ବ୍ରାହ୍ମଣ ଗୃହରେ ଜନ୍ମଗ୍ରହଣ କରି ଲାବଣ୍ୟମଞ୍ଜରୀ ନାମରେ ପରିଚିତା ଥିଲେ । ଦିନେ କମଲୋଦୟ ନାମକ ଜଣେ ରୂପବାନ୍ ବ୍ରାହ୍ମଣ ଯୁବକଙ୍କୁ ଦେଖି ସେ ତାଙ୍କ ପ୍ରତି ଆସକ୍ତା ହୋଇପଡ଼ିଲେ । କନ୍ଦର୍ପ ପୀଡ଼ାରେ ତାଙ୍କ ହୃଦୟ ସନ୍ତପ୍ତ ହେଉଥିଲେ ମଧ୍ୟ ସେ ନିଜର ନୀତି ନିୟମ ପରିତ୍ୟାଗ କରିନଥାନ୍ତି । କିନ୍ତୁ ଧ୍ୟାନରେ ବସିବା ବେଳେ ସେହି ବ୍ରାହ୍ମଣକୁମାରଙ୍କ ସ୍ମୃତି ବାରମ୍ବାର ବିଘ୍ନ ସୃଷ୍ଟି କରୁଥିବା ଯୋଗୁଁ ସେ ଗନ୍ଧବତୀ ନଦୀରେ ଆତ୍ମ ବିସର୍ଜନ କରି ଶରୀର ତ୍ୟାଗ କଲେ । ମୃତ୍ୟୁ ସମୟରେ ସମ୍ଭୋଗକାମନା ବଳବତୀ ଥିବା ଯୋଗୁଁ ପରବର୍ତ୍ତୀ ଜନ୍ମରେ ସେ ହେଲେ ଏକଲବ୍ୟା ନଗରୀର ରୂପବତୀ ନାମ୍ନୀ ଜଣେ ବେଶ୍ୟା । ତୀର୍ଥବ୍ରତ ପ୍ରଭାବରୁ ସେ ଜାତିସ୍ମରା ହୋଇପାରିଥିଲେ । ପ୍ରସଙ୍ଗବଶତଃ ସେ ଏକଦା ବୋଡ଼କର୍ଣ୍ଣ ନାମକ ଜଣେ ଜପସିଦ୍ଧ ବ୍ରାହ୍ମଣଙ୍କ ସମ୍ମୁଖରେ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ପ୍ରକାଶ କଲେ । ବ୍ରାହ୍ମଣ ତାଙ୍କର ମନୋଭାବ ଜ୍ଞାତ ହୋଇ ରୂପବତୀଙ୍କୁ ଏକାଗ୍ରଚିତ୍ତରେ ନାମ ଜପ କରିବା ଉପଦେଶ ପ୍ରଦାନ କଲେ । ଫଳରେ ବେଶ୍ୟା ବୃତ୍ତି ଆଚରଣ କରି ସୁଦ୍ଧା ସେହି ବିଶୁଦ୍ଧ ସଂକଳ୍ପା ଜୀବନର ଅନ୍ତିମ ସମୟରେ ସଦ୍‌ଗତି ଲାଭ କଲେ । ଏଥିପାଇଁ ରାଜନ୍, ମନୁଷ୍ୟ ନିଜର ବାସନା ଅନୁରୂପ ଫଳ ହିଁ ପ୍ରାପ୍ତ ହୋଇଥାଏ ।

ଏହା କହି ମୁନି ରାଜାଙ୍କୁ ସ୍ନାନାଦି କର୍ମ ଶେଷ କରିବାପାଇଁ ଛାଡ଼ିଦେଇ ନିଜେ ମଧ୍ୟାହ୍ନ କୃତ୍ୟ ସମାପନ କଲେ । ରାଜା ପୁଷ୍କରାକ୍ଷ ଗିରି ନିର୍ଝରିଣୀ କୂଳରେ ପୁଷ୍ପ ଚୟନ କରୁଥିବା ବେଳେ ବିନୟବତୀଙ୍କ ଉପରେ ତାଙ୍କର ଦୃଷ୍ଟିପାତ ହେଲା । ବିନୟବତୀ ସୂର୍ଯ୍ୟଙ୍କର ପ୍ରଭାମଣ୍ଡଳ ପରି ଦୀପ୍ତ ଦେଖାଯାଉଥାନ୍ତି । ପୂର୍ବରୁ ସେହି ଅରଣ୍ୟରେ ଏପରି କୌଣସି ସ୍ତ୍ରୀଙ୍କୁ ଦେଖିନଥିବା ରାଜା ମନେମନେ ତାଙ୍କ ପରିଚୟ ଜାଣିବା ପାଇଁ ଉତ୍କଣ୍ଠିତ ହୋଇଉଠିଲେ ।

ରାଜାଙ୍କ ଉତ୍କଣ୍ଠାକୁ ପ୍ରଶମିତ କରି ବିନୟବତୀ ବାର୍ତ୍ତାଳାପ ମଧ୍ୟରେ ସଖୀକୁ କହିଲେ, 'ସଖୀ, ଯେଉଁ ବିଦ୍ୟାଧର ପୂର୍ବେ ମୋତେ ବଳପୂର୍ବକ ଅପହରଣ କରିନେବା ପାଇଁ ଚାହୁଁଥିଲା, ଆଜି ସେ ଶାପମୁକ୍ତ ହୋଇ ମୋ ନିକଟକୁ ଆସିଥିଲା । ସେ କହୁଥିଲା ଯେ ଆଜି ମୋର ପତିପ୍ରାପ୍ତି ଘଟିବ ।' ଏହାଶୁଣି ସଖୀ ମୁନିକନ୍ୟାଙ୍କ କଥାକୁ ସମର୍ଥନ

କରି କହିଲା, 'ସେ ବୋଧହୁଏ ଠିକ୍ କହିଛି । ଆଜି ସକାଳେ ମୋ ସମ୍ମୁଖରେ ହିଁ ମୁନି ବିଜିତାସୁ ତାଙ୍କର ପ୍ରିୟ ଶିଷ୍ୟ ମଞ୍ଜୁକେଶଙ୍କୁ ଶୀଘ୍ର ଯାଇ ତାରାବଳୀ ଓ ରଙ୍କୁମାଳିଙ୍କୁ ଡାକି ଆଣିବାପାଇଁ କହୁଥିଲେ । ତା'ର କାରଣସ୍ୱରୂପ ସେ ତାଙ୍କୁ କହିଲେ ଯେ ଆଜି ଦିବସରେ ସେମାନଙ୍କ କନ୍ୟା ବିନୟବତୀଙ୍କ ସହିତ ରାଜା ପୁଷ୍କରାକ୍ଷଙ୍କ ବିବାହ ସମ୍ପନ୍ନ ହେବ । ଗୁରୁଦେବଙ୍କଠାରୁ ଏହା ଶୁଣି ମଞ୍ଜୁକେଶ ସେଠାରୁ ଚାଲିଗଲା । ତେଣୁ, ସଖି, ଆମେ ଶୀଘ୍ର ଆଶ୍ରମକୁ ଫେରିଯିବା ଉଚିତ ।'

ଏହିପରି କଥାବାର୍ତ୍ତା ମଧ୍ୟରେ ଉଭୟ ସଖୀ ଆଶ୍ରମକୁ ଚାଲିଗଲେ । ଗୋପନରେ ରାଜା ପୁଷ୍କରାକ୍ଷ ସେମାନଙ୍କର ସବୁକଥା ଶୁଣିବା ପରେ ତାଙ୍କ ହୃଦୟ ଓ ଶରୀର କାମାଗ୍ନିରେ ଉତ୍ତପ୍ତ ହୋଇଉଠିଲା । ସେ ନିର୍ଝରିଣୀରେ ସ୍ନାନ କରି ଆଶ୍ରମରେ ଆସି ଉପସ୍ଥିତ ହେଲେ । ସେତେବେଳକୁ ତାରାବଳୀ ଓ ରଙ୍କୁମାଳି ମଧ୍ୟ ଆସି ପହଞ୍ଚି ଯାଇଥାନ୍ତି । ପ୍ରଣାମ କରୁଥିବା ପୁଷ୍କରାକ୍ଷଙ୍କୁ ସେମାନେ ଯଥାର୍ଥଭାବେ ଅଭ୍ୟର୍ଥନା କଲେ । ଏ ସମୟରେ ମୁନିକୁମାରମାନେ ପ୍ରଣିପାତ ପୂର୍ବକ ସେଠାରେ ଆସି ଏମାନଙ୍କୁ ଘେରିଯାଇ ଆନନ୍ଦ କୋଳାହଳ କରିବାକୁ ଲାଗିଲେ । ମୂର୍ତ୍ତିମାନ ଦ୍ୱିତୀୟ ଅଗ୍ନିଦେବ ସଦୃଶ ବିଜିତାସୁଙ୍କ ଦ୍ୱାରା ଉଦ୍ଭାସିତ ବେଦିକା ଉପରେ ରଙ୍କୁମାଳି ପୁଷ୍କରାକ୍ଷଙ୍କ ହସ୍ତରେ ନିଜ କନ୍ୟା ବିନୟବତୀଙ୍କୁ ସମର୍ପଣ କଲେ । ଦକ୍ଷିଣା ସ୍ୱରୂପ ସେ ଏକ ଆକାଶଚାରୀ ଦିବ୍ୟବିମାନ ମଧ୍ୟ ତାଙ୍କୁ ଅର୍ପଣ କଲେ । ମହାମୁନି ବିଜିତାସୁ ମଧ୍ୟ ଚତୁଃସମୁଦ୍ରା ପୃଥିବୀ ଶାସନ କରିବା ପାଇଁ ଆଶୀର୍ବାଦ ପ୍ରଦାନ ପୂର୍ବକ ସେମାନଙ୍କ କଲ୍ୟାଣ କାମନା କଲେ ।

କିଛିଦିନ ପରେ ଶ୍ୱଶୁର ଏବଂ ମହର୍ଷିଙ୍କ ଅନୁଜ୍ଞା ନେଇ ପୁଷ୍କରାକ୍ଷ ନବବଧୂ ସହିତ ଉକ୍ତ ଦିବ୍ୟ ବିମାନ ଆରୋହଣ ପୂର୍ବକ ସମୁଦ୍ର ପରପାରରେ ଥିବା ନିଜ ରାଜ୍ୟରେ ନବୋଦିତ ପୂର୍ଣ୍ଣଚନ୍ଦ୍ର ସଦୃଶ ପ୍ରବେଶ କଲେ । ମୁନିଙ୍କ ଆଶୀର୍ବାଦ ଏବଂ ଦିବ୍ୟ ବିମାନ ପ୍ରସାଦରୁ ଆସମୁଦ୍ର ପୃଥିବୀ ଜୟ କରି ଦୀର୍ଘଦିନ ପର୍ଯ୍ୟନ୍ତ ସେ ପତ୍ନୀ ବିନୟବତୀଙ୍କ ସହିତ ସାମ୍ରାଜ୍ୟ ପରିପାଳନା କଲେ ।

ମହାରାଜ, ଦୈବ ଅନୁକୂଳ ଥିଲେ ଅତ୍ୟନ୍ତ କଠିନ କାର୍ଯ୍ୟ ମଧ୍ୟ ଅନାୟାସରେ ସିଦ୍ଧ ହୋଇଥାଏ । ଏଣୁ ସ୍ୱପ୍ନଦୃଷ୍ଟ ଭଗବାନ ଶଙ୍କରଙ୍କର ଅନୁଗ୍ରହରୁ ଆପଣଙ୍କ ମନୋରଥ ମଧ୍ୟ ଯଥାଶୀଘ୍ର ପୂର୍ଣ୍ଣ ହେବ । ରାଜପୁତ୍ର ଶଶାଙ୍କଦତ୍ତ ମନ୍ତ୍ରୀଙ୍କଠାରୁ ଏହି ବିଚିତ୍ର କଥା ଶ୍ରବଣ କରି ଶଶାଙ୍କବତୀଙ୍କ ସହ ଯଥାଶୀଘ୍ର ମିଳିତ ହେବାପାଇଁ ଉତ୍କଣ୍ଠିତ ହୋଇଉଠିଲେ ଏବଂ ମନ୍ତ୍ରୀମାନଙ୍କ ସହିତ ଉଜ୍ଜୟିନୀ ଯିବା ନିଶ୍ଚୟ କରି ସେଥିପାଇଁ ଆୟୋଜନ କରିବାକୁ ଲାଗିଲେ ।

# ତୃତୀୟ ତରଙ୍ଗ

ବେତାଳବର୍ଣ୍ଣିତ ରାଜା କର୍ମସେନଙ୍କ କନ୍ୟା ଶଶାଙ୍କବତୀଙ୍କୁ ପାଇବାପାଇଁ ମୃଗାଙ୍କଦତ୍ତ ନିଜ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରି ନିଶ୍ଚୟ କଲେ ଯେ ସେମାନେ ଉଜ୍ଜୟିନୀ ପ୍ରସ୍ଥାନ କରିବାପାଇଁ ବ୍ରହ୍ମଚାରୀ ବେଶରେ ନଗର ମଧ୍ୟରୁ ନିଷ୍କ୍ରାନ୍ତ ହେବେ । ମନ୍ତ୍ରୀ ଭୀମପରାକ୍ରମଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ ସେ ଖଟ୍ୱାଙ୍ଗ, ନରକପାଳ ଇତ୍ୟାଦି ଯୋଗାଡ଼ କରିବେ ।

ମୃଗାଙ୍କଦତ୍ତଙ୍କ ପିତୃସଚିବ ଗୁପ୍ତଚରମାନଙ୍କଠାରୁ ସମ୍ବାଦ ପାଇଲେ ଯେ ଭୀମପରାକ୍ରମ ପୂର୍ବୋକ୍ତ ସାମଗ୍ରୀ ସବୁ ଯୋଗାଡ଼ କରି ନିଜ ଘରେ ନେଇ ରଖିଛନ୍ତି ।

ମିତ୍ର ମନ୍ତ୍ରୀମାନଙ୍କୁ ବିଦାୟ ଦେଇ ମୃଗାଙ୍କଦତ୍ତ ରାଜପ୍ରାସାଦର ଚନ୍ଦ୍ରଶାଳାପୁର ଉପରେ ବୁଲୁଥିବା ବେଳେ ପାନଛେପସବୁ ତଳକୁ ପକାଇଦେଲେ । ସଂଯୋଗବଶତଃ ସେତେବେଳେ ଉକ୍ତ ପିତୃମନ୍ତ୍ରୀ ପ୍ରାସାଦ ମାର୍ଗ ଦେଇ ଯାଉଥାନ୍ତି । ଅବଶ୍ୟ ମୃଗାଙ୍କଦତ୍ତ ତାଙ୍କୁ ଦେଖିନଥାନ୍ତି, କିନ୍ତୁ ପାନପିକ ଯାଇ ତାଙ୍କ ମସ୍ତକ ଉପରେ ପଡ଼ିଲା । ଏହା ମୃଗାଙ୍କଦତ୍ତଙ୍କ କାର୍ଯ୍ୟ ବୋଲି ଜାଣିପାରି ମନ୍ତ୍ରୀ ଘରକୁ ଫେରିଯାଇ ସ୍ନାନକଲେ । କିନ୍ତୁ ରାଜକୁମାରଙ୍କ ଏହି ଅଶାଳୀନ ବ୍ୟବହାରଜନିତ କ୍ରୋଧ ତାଙ୍କ ହୃଦୟରେ ଅଲିଭା ରହିଲା ।

ଦୈବଯୋଗରୁ ମୃଗାଙ୍କଦତ୍ତଙ୍କ ପିତା ରାଜା ଅମରଦତ୍ତ ବିସୂଚିକା ରୋଗରେ ପୀଡ଼ିତ ହେଲେ । ଏହାକୁ ପ୍ରକୃତ ଅବସର ମନେକରି ମନ୍ତ୍ରୀ ଚିକିତ୍ସାର ସମସ୍ତ ବନ୍ଦୋବସ୍ତ କରି ଏକାନ୍ତରେ ରାଜାଙ୍କୁ କହିଲେ, 'ମହାରାଜ, ମୁଁ ଆପଣଙ୍କୁ ଯାହା କହିବି ସେଥିପାଇଁ ମୋତେ କ୍ଷମାଦେବେ । ରାଜକୁମାର ମୃଗାଙ୍କଦତ୍ତ ଭୀମପରାକ୍ରମଙ୍କ ଗୃହରେ ଅଭିଚାର କ୍ରିୟା ଆରମ୍ଭ କରିଛନ୍ତି । ଏହି ବାମାଚାର ପୂଜା ଆପଣଙ୍କର ଅନିଷ୍ଟ କରିପାରେ । ମୁଁ ଗୁପ୍ତଚରମାନଙ୍କଠାରୁ ଏହା ଜାଣିପାରିଛି । ଆପଣଙ୍କର ଏହି ରୋଗ ତା'ର ପ୍ରତ୍ୟକ୍ଷ ପ୍ରମାଣ । ତେଣୁ ପ୍ରଭୁ ଶରୀରରୁ ବ୍ୟାଧି ଦୂରୀକରଣ ପରି ଆପଣ ଏହି ପୁତ୍ରଟିକୁ ଦେଶାନ୍ତରକୁ ନିର୍ବାସନ କରନ୍ତୁ ।'

ଏହାଶୁଣି ରାଜା ବିବ୍ରତ ହୋଇ ଘଟଣାର ସତ୍ୟାସତ୍ୟ ଜାଣିବାନିମିତ୍ତ ନିଜ ସେନାପତିଙ୍କୁ ଭୀମପରାକ୍ରମର ବାସଭବନକୁ ପ୍ରେରଣ କଲେ । ସେନାପତି ସେଠାରେ କେଶ, ଅସ୍ଥି, ନରକପାଳ ଆଦି ଦେଖି ସେସବୁକୁ ରାଜାଙ୍କ ନିକଟକୁ ନେଇଆସିଲେ । ରାଜାଙ୍କ ବିଶ୍ୱାସ ଏଥିରେ ଦୃଢ଼ୀଭୂତ ହେଲା । ପୁତ୍ରକୁ ବିଦ୍ରୋହୀ ଘୋଷଣା କରି ମନ୍ତ୍ରୀମାନଙ୍କ ସହିତ ତାକୁ ରାଜ୍ୟରୁ ବହିଷ୍କାର କରିଦେବା ନିମିତ୍ତ ସେ ସେନାପତିଙ୍କୁ ଆଦେଶ ଦେଲେ । ମନ୍ତ୍ରୀମାନଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖିଥିବା ରାଜାମାନେ ସେମାନଙ୍କ କୁକର୍ମ ସହଜରେ ଧରିପାରି ନଥାନ୍ତି ।

ଆଶ୍ୱସ୍ତୋ ବେତ୍ତି କୁସୃତିଂ ପ୍ରଭୁଃ କୋ ହି ସ୍ୱମନ୍ତ୍ରିଣାମ୍ ।

ସେନାପତି ଯାଇ ମୃଗାଙ୍କଦତ୍ତଙ୍କୁ ରାଜାଙ୍କର ଆଦେଶ ଶୁଣାଇବା ସହ ତାଙ୍କୁ ସଚିବମାନଙ୍କ ସହ ନଗର ବାହାରେ ନେଇ ଛାଡ଼ିଆସିଲେ । ନିଜର ମନୋରଥ ପୂର୍ଣ୍ଣ ହୋଇଥିବା ଯୋଗୁଁ ରାଜକୁମାର ବିଘ୍ନରାଜ ବିନାୟକଙ୍କ ଉପାସନା କରି ପିତାମାତାଙ୍କୁ ଦୂରରୁ ଭକ୍ତିପୂତ ପ୍ରଣାମ ଜଣାଇଲେ । ଅଯୋଧ୍ୟାଠାରୁ କିଛିଦୂର ଯିବାପରେ ସେ ପ୍ରଚଣ୍ଡ ଶକ୍ତି, ଭୀମପରାକ୍ରମ ପ୍ରଭୃତି ମନ୍ତ୍ରୀମାନଙ୍କୁ କହିଲେ—

'ଏଠାରେ ଶକ୍ତିରକ୍ଷିତ ନାମରେ ଜଣେ ବିଶିଷ୍ଟ କିରାତାଧିପତି ରହୁଛନ୍ତି । ସେ ବ୍ରହ୍ମଚାରୀ, ଶାସ୍ତ୍ରଜ୍ଞ ଏବଂ ମୋର ବାଲ୍ୟସଖା । ବହୁଦିନ ପୂର୍ବେ ଏହାଙ୍କ ପିତା ଯେତେବେଳେ ଯୁଦ୍ଧରେ ପରାସ୍ତ ହୋଇ ବନ୍ଦୀ ହେଲେ, ସେତେବେଳେ ସେ ନିଜର ପୁତ୍ର ଶକ୍ତିରକ୍ଷିତଙ୍କୁ ମୋ ପିତାଙ୍କ ହସ୍ତରେ ସମର୍ପଣ କରିଦେଇଥିଲେ । ପିତାଙ୍କ ମୃତ୍ୟୁ ପରେ ବଂଶର ବିରାଦରୀମାନେ ତାଙ୍କ ବିରୋଧରେ ଚକ୍ରାନ୍ତ ଆରମ୍ଭ କଲେ । ସେତେବେଳେ ମୁଁ ମୋର ପିତାଙ୍କୁ ଅନୁରୋଧ କରନ୍ତେ ସେ ଶକ୍ତିରକ୍ଷିତଙ୍କୁ ନିଜର ସେନାବାହିନୀ ସାହାଯ୍ୟରେ ରାଜପଦବୀ ପ୍ରଦାନ କରିଥିଲେ । ଏଣୁ, ଚାଲ, ପ୍ରଥମେ ମିତ୍ରଙ୍କୁ ସାକ୍ଷାତ କରି ପରେ ଶଶାଙ୍କବତୀଙ୍କ ନିମନ୍ତେ ଉଜ୍ଜୟିନୀ ଯାତ୍ରା କରିବା ।'

ଏଥିରେ ମନ୍ତ୍ରୀମାନେ ସମ୍ମତ ହେବାରୁ ସେମାନେ ଅନ୍ୟମାର୍ଗରେ ଯାଇ ସଂଧ୍ୟାବେଳେ ଏକ ମହାକାନ୍ତାର ମଧ୍ୟରେ ପ୍ରବେଶ କଲେ । ସେଠାରେ ବୃକ୍ଷଲତା ବା ଜଳର ଚିହ୍ନବର୍ଣ୍ଣ ନଥିଲା । ବହୁ ଅନୁସନ୍ଧାନ ପରେ ସେମାନେ ଏକ କ୍ଷୁଦ୍ର ସରୋବର ଦେଖିବାକୁ ପାଇଲେ । ସେଥିରେ ସାୟଂକାଳୀନ ନିତ୍ୟକର୍ମ ଶେଷକରି ପଥକ୍ଳାନ୍ତି ଯୋଗୁଁ ତଟରେ ଥିବା ଗୋଟିଏ ଶୁଷ୍କ ବୃକ୍ଷର ନିମ୍ନରେ ଶୋଇଗଲେ । ରାତ୍ରି ଧୀରେଧୀରେ ବଢ଼ିବାକୁ ଲାଗିଲା । ଚନ୍ଦ୍ର ଉଦୟ ହେବାରୁ ଚନ୍ଦ୍ରଜ୍ୟୋତ୍ସ୍ନାର ଶୀତଳସ୍ପର୍ଶରେ ମୃଗାଙ୍କଦତ୍ତଙ୍କ ନିଦ୍ରା

ଭଙ୍ଗ ହେଲା । ସେ ଉପରକୁ ଚାହିଁ ଦେଖିଲେ ବୃକ୍ଷଟି ଶ୍ୟାମଳ ପତ୍ର, ପୁଷ୍ପ ଓ ଫଳରେ ପରିପୂର୍ଣ୍ଣ ହୋଇଉଠୁଛି । ଗୋଟିଗୋଟି ହୋଇ ପାଚିଲା ଫଳଗୁଡ଼ିଏ ଗଛ ଉପରୁ ପଡୁଥିବା ଦେଖି ସେ ମିତ୍ରମାନଙ୍କୁ ଜାଗ୍ରତ କରି ଏହି ଆଶ୍ଚର୍ଯ୍ୟ ଘଟଣା ଦେଖାଇବାକୁ ଲାଗିଲେ । ଏହା ଏକ ବିସ୍ମୟକର ବ୍ୟାପାର ଥିଲେ ମଧ୍ୟ କ୍ଷୁଧାରେ ଆତୁର ଥିବା ଯୋଗୁଁ ସେ ମନ୍ତ୍ରୀମାନଙ୍କ ସହିତ ସେହି ସୁମିଷ୍ଟ ଫଳଗୁଡ଼ିକୁ ଆହାର କଲେ । ଏମାନେ ଫଳଗୁଡ଼ିକୁ ଖାଇବାମାତ୍ରେ କ୍ଷଣକ ମଧ୍ୟରେ ବୃକ୍ଷଟି ଗୋଟିଏ ବ୍ରାହ୍ମଣ କୁମାରରେ ପରିବର୍ତ୍ତିତ ହୋଇଗଲା । ତାକୁ ଆଶ୍ଚର୍ଯ୍ୟଚକିତ ଦୃଷ୍ଟିରେ ମୃଗାଙ୍କଦତ୍ତ ଚାହୁଁଥିବା ବେଳେ ସେ ନିଜର ପରିଚୟ ଦେବାକୁ ଯାଇ କହିଲା—

## ଶ୍ରୁତଧି କଥା

'ଅତୀତରେ ଦମଧି ନାମକ ଜଣେ ବ୍ରାହ୍ମଣ ଶ୍ରେଷ୍ଠ ଅଯୋଧ୍ୟାରେ ବାସ କରୁଥିଲେ । ମୁଁ ତାଙ୍କର ପୁତ୍ର ଶ୍ରୁତଧି । ଥରେ ଅଯୋଧ୍ୟାରେ ଅନାବୃଷ୍ଟି ଯୋଗୁଁ ଅନାହାର ପୀଡ଼ିତ ମୋର ପିତା ମୁମୂର୍ଷୁ ଅବସ୍ଥାରେ ମୋ ସହିତ ଏଠାରେ ଆସି ପହଞ୍ଚିଲେ । ଆମର ଏ ଅବସ୍ଥା ଦେଖି ଜଣେ ପିତାଙ୍କୁ ପାଞ୍ଚଟି ଫଳ ପ୍ରଦାନ କଲା । ସେ ତିନୋଟି ମତେ ଦେଇ ନିଜ ପାଇଁ ଦୁଇଟି ରଖିଲେ । ସେ ଯେତେବେଳେ ସ୍ନାନ ପାଇଁ ସରୋବରରେ ଓହ୍ଲାଇଲେ ସେତେବେଳେ ମୁଁ ପାଞ୍ଚଟିଯାକ ଫଳ ଖାଇଦେଇ ଗାଢ଼ନିଦ୍ରାରେ ଶୋଇବା ଛଳନା କଲି । ସେ ସ୍ନାନ ପରେ ଫେରିଆସି ମୋତେ ମିଥ୍ୟାନିଦ୍ରାରେ କାଠଗଡ଼ପରି ପଡ଼ିଥିବା ଦେଖିଲେ, ମୋର କୁକର୍ମ ତାଙ୍କୁ ଅଛପା ରହିଲା ନାହିଁ । କ୍ଷୁଧାର୍ତ୍ତ ପିତା ମୋତେ ଏଠାରେ ଏକ ଶୁଷ୍କ ବୃକ୍ଷ ହେବାପାଇଁ ଅଭିଶାପ ଦେଲେ । ଶାପାନ୍ତର ସୂଚନା ଦେଇ ସେ କହିଥିଲେ ଯେ ଚନ୍ଦ୍ରଜ୍ୟୋତ୍ସ୍ନାରେ ମୁଁ ଫୁଲଫଳରେ ଭରିଯିବି । ଏହି ସମୟରେ ଯଦି କୌଣସି ଅତିଥିଙ୍କ ସତ୍କାର କରିବି, ତେବେ ମୋର ଶାପମୁକ୍ତି ସମ୍ଭବ ହେବ । ପିତାଙ୍କ ଅଭିଶାପରୁ ମୁଁ ଏହି ସରୋବର ତୀରରେ ଶୁଷ୍କ ବୃକ୍ଷଟିଏ ହୋଇ ରହିଥିଲି । ବହୁଦିନପରେ ଆପଣମାନେ ଆଜି ମୋର ଫଳ ଭକ୍ଷଣ କରି ମୋତେ ଶାପମୁକ୍ତ କରିଛନ୍ତି ।'

ଶ୍ରୁତଧି ଏହିପରି ନିଜର ପରିଚୟ ଦେଇ ଅନୁରୋଧ କ୍ରମେ ମୃଗାଙ୍କଦତ୍ତଙ୍କ ସମ୍ପର୍କରେ ମଧ୍ୟ ଅବଗତ ହେଲା । ଆତ୍ମୀୟ ସ୍ୱଜନହୀନ ଏବଂ ନୀତିନିପୁଣ ଏହି ବ୍ରାହ୍ମଣ ଶ୍ରୁତଧି ମୃଗାଙ୍କଦତ୍ତଙ୍କ ଅନୁଗମନ ପାଇଁ ଅନୁଜ୍ଞା ଯାଚନା କରନ୍ତେ ସେ ଏଥିରେ ସମ୍ମତି ପ୍ରଦାନ କଲେ । ରାତ୍ରିଟି ସେହି ସରୋବର କୂଳରେ ବିତିଗଲା । ପ୍ରଭାତରୁ ନିତ୍ୟକର୍ମ ଶେଷକରି ସେମାନେ ପୁଣି ଚାଲିବା ଆରମ୍ଭ କଲେ ।

କିଛି ଦୂର ଯିବାପରେ ସେମାନେ କରିମଣ୍ଡିତ ନାମକ ଏକ ବନ ମଧ୍ୟରେ ପହଞ୍ଚିଲେ । ସେଠାରେ ପାଞ୍ଚଜଣ ଘନକେଶଯୁକ୍ତ କଦାକାର ପୁରୁଷଙ୍କ ଉପରେ ଏମାନଙ୍କର ଦୃଷ୍ଟି ପଡ଼ିଲା । ସେମାନେ ନିକଟକୁ ଆସି ବିସ୍ମୟରେ ଚାହିଁ ରହିଥିବା ମୃଗାଙ୍କଦତ୍ତଙ୍କୁ ବିନମ୍ର ଭାବରେ ନିବେଦନ କଲେ, 'କାଶୀ ନଗରୀରେ ଆମର ଜନ୍ମ । ଗୋପାଳନ ଆମର ଜୀବିକା । ଅନାବୃଷ୍ଟି ଯୋଗୁଁ ସେଠାରେ ଦୁର୍ଭିକ୍ଷ ଦେଖାଦେଇଛି । ଗାଈଗୋରୁମାନଙ୍କର ଜୀବନ ରକ୍ଷା ପାଇଁ ଆମେ ଏହି ତୃଣପୂର୍ଣ୍ଣ ବନ ପ୍ରଦେଶକୁ ଚାଲିଆସିଛୁ । ଏଠାକୁ ଆସି ଆମେ ଏକ କ୍ଷୁଦ୍ର ପୁଷ୍କରିଣୀ ଦେଖିଲୁ । ତାହାର ଜଳ ରସାୟନ ପରି ହିତକର । ଏହାର ତଟରେ ଥିବା ତ୍ରିଫଳା ପ୍ରତିଦିନ ଏଥିରେ ପଡୁଥିବା ଯୋଗୁଁ ଏହା ଆମକୁ ଦୀର୍ଘଜୀବନ ଦାନ କରିଛି । ଏହି ପୁଷ୍କରିଣୀର ଜଳ ଏବଂ ହୃଷ୍ଟପୁଷ୍ଟ ଗାଈମାନଙ୍କର କ୍ଷୀର ପାନ କରି ଆମେ ଏହି ନିର୍ଜନ ବନପ୍ରଦେଶରେ ପାଞ୍ଚଶହ ବର୍ଷ କଟାଇଲୁଣି । ମହାଭାଗ, ଏଥିପାଇଁ ଆମର ରୂପ ଏହିପରି କଦାକାର ହୋଇପଡ଼ିଛି । ଆଜି ଦୈବଯୋଗରୁ ଆପଣମାନଙ୍କ ପରି ଅତିଥି ଏଠାରେ ପଦାର୍ପଣ କରିଛନ୍ତି । ଏଣୁ ଦୟାପୂର୍ବକ ଆମ ଆଶ୍ରମକୁ ଆସନ୍ତୁ ।'

ସେମାନଙ୍କର ଏହି ସାଗ୍ରହ ନିବେଦନରେ ମୃଗାଙ୍କଦତ୍ତ ସଚିବ ଓ ଶ୍ରୁତଧିଙ୍କ ସହିତ ସେମାନଙ୍କ ଆଶ୍ରମରେ ପଦାର୍ପଣ କଲେ । ଗୋପାଳମାନଙ୍କର ପ୍ରଦତ୍ତ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ସେମାନଙ୍କୁ ଯଥେଷ୍ଟ ଆପ୍ୟାୟନ କଲା । ସେମାନେ ସେହି ଦିନଟି ସେଠାରେ କଟାଇଦେଇ ପରଦିନ ପ୍ରଭାତରୁ ପୁଣି ଯାତ୍ରା ଆରମ୍ଭ କଲେ । ପଥ ମଧ୍ୟରେ ଏପରି ବହୁ କୌତୁକାବହ ଦୃଶ୍ୟ ଓ ଘଟଣା ଦେଖି ଦେଖି ସେମାନେ ଶେଷରେ ଯାଇ କିରାତ ରାଜଧାନୀରେ ପହଞ୍ଚିଲେ ।

ମିତ୍ର ଶକ୍ତିରକ୍ଷିତଙ୍କୁ ସେମାନଙ୍କ ଆଗମନର ସୂଚନା ଦେବା ନିମିତ୍ତ ଶ୍ରୁତଧିଙ୍କୁ ପଠାଗଲା । ସମ୍ବାଦ ପାଇବାମାତ୍ରେ କିରାତାଧିପତି ନିଜ ବାସଭବନରୁ ବାହାରି ଆସି ବନ୍ଧୁ ଓ ବନ୍ଧୁଙ୍କ ସଚିବମାନଙ୍କୁ ସ୍ୱାଗତ କଲେ । ନଗର ମଧ୍ୟରେ ପ୍ରବେଶ କରି ସେ ବନ୍ଧୁଙ୍କ ଆତିଥ୍ୟରେ କେବଳ ଯେ ପ୍ରୀତ ହେଲେ ତା' ନୁହେଁ, ସେଠାରେ କିଛିଦିନ ବିଶ୍ରାମ ମଧ୍ୟ ନେଲେ । ବନ୍ଧୁଙ୍କଠାରୁ ତାଙ୍କ ଉଦ୍ଦେଶ୍ୟ ସମ୍ପର୍କରେ ଜ୍ଞାତ ହୋଇ ଶକ୍ତିରକ୍ଷିତ ଆବଶ୍ୟକ ହେଲେ ସେ ମଧ୍ୟ ବନ୍ଧୁଙ୍କ ଅଭିଳାଷ ପୂର୍ତ୍ତିରେ ସହାୟତା କରିବେ ବୋଲି ପ୍ରତିଶ୍ରୁତି ଦେଲେ ।

ବନ୍ଧୁଙ୍କ ଗହଣରେ କିଛିଦିନ ଅବସ୍ଥାନ କରି ମୃଗାଙ୍କଦତ୍ତ ଶୁଭଦିନ ଓ ଶୁଭବେଳା ଦେଖି ଶଶାଙ୍କବତୀଙ୍କ ଉଦ୍ଦେଶ୍ୟରେ ଉଜ୍ଜୟିନୀ ଅଭିମୁଖରେ ବାହାରିଲେ । ମନ୍ତ୍ରୀ ଓ

ଶ୍ରୁତଧିଙ୍କ ସହିତ ଏମାନଙ୍କର ସଂଖ୍ୟା ଥିଲା ବାର । କିଛିଦୂର ଅତିକ୍ରମ କରି ସେମାନେ ଏକ ଜନମାନବଶୂନ୍ୟ ଅରଣ୍ୟରେ ପ୍ରବେଶ କଲେ । ସେଠାରେ ମୃଗଚର୍ମ ପରିହିତ ଏବଂ ଭସ୍ମ ବିଲେପିତ ଶରୀର ଜଟାଜୁଟଧାରୀ ଜଣେ ତପସ୍ୱୀଙ୍କୁ ଗୋଟିଏ ବୃକ୍ଷର ପାଦଦେଶରେ ବସିଥିବା ଦେଖିବାକୁ ପାଇଲେ । ଅନୁଗାମୀମାନଙ୍କ ସହିତ ରାଜକୁମାର ନିକଟକୁ ଯାଇ ପ୍ରଣାମପୂର୍ବକ ତାଙ୍କ ପରିଚୟ ଏବଂ ଏହି ଆଶ୍ରମହୀନ ଅରଣ୍ୟରେ ଏକାକୀ ରହୁଥିବା ସମ୍ପର୍କରେ ଜିଜ୍ଞାସା କଲେ । ଉତ୍ତରରେ ତପସ୍ୱୀ କହିଲେ–

## ଖଡ୍‌ଗଲୋଭୀ ତପସ୍ୱୀ କଥା

''ଏଠାରେ ଶୁଦ୍ଧକୀର୍ତ୍ତି ନାମରେ ଜଣେ ବହୁମନ୍ତ୍ରସିଦ୍ଧ ତପସ୍ୱୀ ରହୁଥିଲେ । ମୁଁ ତାଙ୍କରି ଶିଷ୍ୟ । ଦିନେ ଜଣେ ଶୁଭ ଲକ୍ଷଣଯୁକ୍ତ କ୍ଷତ୍ରିୟ ସନ୍ତାନଙ୍କ ସହିତ ମୋର ସାକ୍ଷାତ ହେଲା । ମୁଁ ତାଙ୍କ ଶରୀରରେ ପ୍ରବେଶ କଲି । ମୋ ଦ୍ୱାରା ଆବିଷ୍ଟ କ୍ଷତ୍ରିୟ କୁମାର ମୋର ଗୁରୁ ସେହି ସିଦ୍ଧତପସ୍ୱୀଙ୍କଠାରୁ ବହୁକଥା ଜାଣିବାକୁ ଚାହିଁଲେ । ତପସ୍ୱୀ ମଧ୍ୟ ବିଭିନ୍ନ ସିଦ୍ଧ ଔଷଧି ଏବଂ ରସାୟନ ସମ୍ପର୍କରେ ସୂଚନା ଦେଇ ମୋତେ ଲକ୍ଷ୍ୟ କରି କହିଲେ, 'ଏଠାରୁ ଉତ୍ତର ଦିଗରେ ବିନ୍ଧ୍ୟାରଣ୍ୟ ମଧ୍ୟରେ ଗୋଟିଏ ଏକକ ଶିଂଶପା ବୃକ୍ଷ ଅଛି । ଏହାର ନିମ୍ନଦେଶରେ ନାଗରାଜଙ୍କର ବିଶାଳ ରାଜଭବନ । ମଧ୍ୟାହ୍ନରେ ସେଠାର ଜଳରାଶି ଆର୍ଦ୍ର ଧୂଳିରାଶିରେ ଆଚ୍ଛାଦିତ ହୋଇ ରହିଥାଏ । ହଂସ, ସାରସ ପ୍ରଭୃତିଙ୍କୁ କ୍ରୀଡ଼ା କରୁଥିବା ଦେଖିଲେ ହିଁ ଜଳର ଉପସ୍ଥିତି ଉପଲବ୍ଧି କରିହୁଏ । ସେଠାରେ ପାରାବତ ନାମରେ ଏକ ନାଗଶ୍ରେଷ୍ଠ ରହନ୍ତି । ଦେବାସୁର ସଂଗ୍ରାମ ବେଳେ ତାଙ୍କୁ ଏକ ଅନୁତ୍ତମ ଖଡ୍‌ଗ ମିଳିଥିଲା । ଏହି ବୈଦୂର୍ଯ୍ୟକାନ୍ତି ନାମକ ଖଡ୍‌ଗକୁ ଯେଉଁ ମନୁଷ୍ୟ ଲାଭ କରିପାରିବ ସେ ସିଦ୍ଧମାନଙ୍କର ଅଧିପତି ହୋଇ ରହିବ । ତାକୁ ପରାସ୍ତ କରିବା ଅନ୍ୟ କାହା ପକ୍ଷରେ ସମ୍ଭବ ହେବନାହିଁ । ଖଡ୍‌ଗଟି ବୀରପୁରୁଷମାନଙ୍କର ସହାୟତାରେ ହିଁ ଲାଭ କରାଯାଇପାରେ ।'

ମୋର ଗୁରୁଦେବ କ୍ଷତ୍ରିୟ କୁମାରଙ୍କୁ ଏହି କଥା କହିସାରିବା ପରେ ମୁଁ ନିଜର ଆବେଶ ଦୂରେଇ ଆଣି ତାଙ୍କୁ ବିଦାୟ ଦେଲି ।

ଏହାପରେ ମୁଁ ଅନ୍ୟ ସମସ୍ତ ପଦାର୍ଥ ପ୍ରତି ବୀତସ୍ପୃହ ହୋଇ କେବଳ ଖଡ୍‌ଗଟି ପାଇବା ନିମିତ୍ତ ପୃଥିବୀ ସାରା ଭ୍ରମଣ କଲି । କିନ୍ତୁ ଏଥିରେ ସାହାଯ୍ୟ କରିବା ପାଇଁ

ମୋତେ କେହି ଜଣେ ପ୍ରକୃତ ବୀରପୁରୁଷ ମିଳିଲେ ନାହିଁ । ତେଣୁ ନିରାଶା ଓ ଦୁଃଖରେ ଜୀବନ ବିସର୍ଜ୍ଜନ କରିବାପାଇଁ ଏଠାରେ ଆସି ପହଞ୍ଚିଛି ।''

ତପସ୍ୱୀଙ୍କଠାରୁ ଏହାଶୁଣି ମନ୍ତ୍ରୀମାନଙ୍କ ସହିତ ମୃଗାଙ୍କଦତ୍ତ ତାଙ୍କର ସହାୟତା କରିବେ ବୋଲି ପ୍ରତିଶ୍ରୁତି ଦେଲେ । ତପସ୍ୱୀ ମଧ ଆନନ୍ଦର ସହିତ ତାଙ୍କ ପ୍ରସ୍ତାବକୁ ସ୍ୱୀକାର କରି ନାଗରାଜଙ୍କ ନିକଟକୁ ଯିବାପାଇଁ ପ୍ରସ୍ତୁତ ହେଲେ । ପ୍ରଥମେ ସେ ରାଜକୁମାର, ମନ୍ତ୍ରୀ ଓ ଶ୍ରୁତଧିଙ୍କ ପାଦରେ ଏକ ପ୍ରକାର ମନ୍ତ୍ରପ୍ରଲେପ ଲେପନ କଲେ । ପରେ ଗୁରୁପ୍ରଦତ୍ତ ସଙ୍କେତ ଅନୁଯାୟୀ ପାରାବତଙ୍କ ବାସସ୍ଥଳୀ ନିକଟରେ ପହଞ୍ଚି ମନ୍ତ୍ରଦ୍ୱାରା ଦଶଦିଗକୁ ବନ୍ଧନ କଲେ । ରାତିରେ ମୃଗାଙ୍କଦତ୍ତ ପ୍ରଭୃତିଙ୍କୁ ଅଭିମନ୍ତ୍ରିତ ସ୍ଥାନରେ ବିଶ୍ରାମ କରିବାପାଇଁ ଛାଡ଼ିଦେଇ ମନ୍ତ୍ରିତ ସୋରିଷ ନିକ୍ଷେପ କରି ଧୂଳି ଆଚ୍ଛାଦିତ ଜଳରାଶିର ସନ୍ଧାନ ନେଲେ । ସେଠାରେ ତାଙ୍କର ନାଗଦର୍ପଦଳନ ଯଜ୍ଞ ଆରମ୍ଭ ହେଲା । ବୃଷ୍ଟି ପ୍ରଭୃତି ଉତ୍ପାତ ରୂପ ବିଘ୍ନରାଜିକୁ ମନ୍ତ୍ରଶକ୍ତିଦ୍ୱାରା ପ୍ରତିହତ କରି ସେ ତାଙ୍କର ହୋମକ୍ରିୟା ନିର୍ବିଘ୍ନରେ ଅନୁଷ୍ଠାନ କରିଚାଲିଥାନ୍ତି । ଏ ସମୟରେ ସେହି ଶିଂଶପା ବୃକ୍ଷ ମଧ୍ୟରୁ ଏକ ଦିବ୍ୟନାରୀର ଆବିର୍ଭାବ ଘଟିଲା । ପରିହିତ ରତ୍ନାଳଙ୍କାରର ଝଙ୍କାର ରୂପକ ମନ୍ତ୍ର ଉଚ୍ଚାରଣ କରି ସେ ତପସ୍ୱୀଙ୍କ ନିକଟବର୍ତ୍ତୀ ହେଲା । ତା'ର କଟାକ୍ଷପାତରେ ତପସ୍ୱୀ ବିଚଳିତ ହୋଇଉଠିଲେ । ସେହି ଉନ୍ନତସ୍ତନୀ ନାରୀଟି ତପସ୍ୱୀଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରିବା ଫଳରେ ତପସ୍ୱୀ ଧୈର୍ଯ୍ୟ ହରାଇ ବସିଲେ । ମନ୍ତ୍ରବିସ୍ମୃତ ହେବା ଯୋଗୁଁ ତାଙ୍କ ହସ୍ତରୁ ହୋମଭାଣ୍ଡ ବିଚ୍ୟୁତ ହେଲା । ଏହାକୁ ଯଥାର୍ଥ ଅବସର ମନେକରି ପ୍ରଳୟକାଳୀନ ମେଘତୁଲ୍ୟ ନାଗରାଜ ପାରାବତ ନିଜ ଭବନ ମଧ୍ୟରୁ ନିର୍ଗତ ହେଲା । ଦିବ୍ୟ ନାରୀଟି ଅଦୃଶ୍ୟ ହୋଇଗଲା । ନାଗରାଜ ଚକ୍ଷୁରୁ ନିର୍ଗତ ହେଉଥିବା ଅସହ୍ୟ ତେଜୋରାଶି ଏବଂ ଫୁତ୍କାର ରୂପକ ପ୍ରବଳ ଗର୍ଜ୍ଜନରେ ତପସ୍ୱୀଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା ।

ତପସ୍ୱୀଙ୍କ ପ୍ରାଣବାୟୁ ଉଡ଼ିଯିବା ପରେ ପାରାବତର କ୍ରୋଧ ଶାନ୍ତ ହେଲା । କିନ୍ତୁ ତା'ର ସହାୟତା କରିବାପାଇଁ ଆସିଥିବା ମୃଗାଙ୍କଦତ୍ତ ପ୍ରଭୃତିଙ୍କୁ ସେ ଅଭିଶାପ ଦେଲା ଯେ ବିନା କାରଣରେ ସେମାନେ ତପସ୍ୱୀଙ୍କୁ ସହାୟତା କରିବାପାଇଁ ଚାହୁଁଥିବା ଯୋଗୁଁ କିଛି ସମୟ ନିମିତ୍ତ ପରସ୍ପର ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିବେ ।

ଏହା କହି ନାଗରାଜ ସେଠାରୁ ଅନ୍ତର୍ହିତ ହେବାମାତ୍ରେ ଶାପ ପ୍ରଭାବରୁ ବନଭୂମି ହଠାତ୍ ଘୋର ଅନ୍ଧକାରରେ ଆଚ୍ଛନ୍ନ ହୋଇପଡ଼ିଲା । ସେମାନେ ପରସ୍ପରକୁ ଦେଖିପାରିଲେ ନାହିଁ କି ପରସ୍ପରର କଥା ଶୁଣିପାରିଲେ ନାହିଁ । ପ୍ରଚଣ୍ଡ ବେଗରେ ଜଣେ ଅନ୍ୟଠାରୁ

ଦୂରେଇଯିବାକୁ ଲାଗିଲେ । ସେମାନଙ୍କ ଚିତ୍କାର ନିରନ୍ଧ୍ର ଅନ୍ଧକାର ମଧ୍ୟରେ କେବଳ ପ୍ରତିଧ୍ୱନିତ ହେଲା ।

ରାତ୍ରିର ଭ୍ରମ ଦୂର ହେବାପରେ ମୃଗାଙ୍କଦତ୍ତ ନିଜକୁ ସେଠାରେ ଏକାକୀ ଦେଖିବାକୁ ପାଇଲେ । ଏଣେତେଣେ ବିଚରଣ କରି ମନ୍ତ୍ରୀମାନଙ୍କଠାରୁ ବିଚ୍ଛିନ୍ନ ରାଜକୁମାର ସେହି ସ୍ଥାନରେ ହିଁ ସେମାନଙ୍କର ପ୍ରତୀକ୍ଷା କରୁଥାଆନ୍ତି । ଏହିପରି ଦୁଇତିନି ମାସ ବିତିଗଲା । ଦିନେ ଶ୍ରୁତଧି ରାଜକୁମାରଙ୍କୁ ଖୋଜି ଖୋଜି ଅକସ୍ମାତ୍ ସେଠାରେ ଆସି ପହଞ୍ଚିଲେ । ମୃଗାଙ୍କଦତ୍ତ ଆନନ୍ଦରେ ଆଦର ପୂର୍ବକ ଅନ୍ୟ ମିତ୍ରମାନଙ୍କ ସମ୍ପର୍କରେ ଜିଜ୍ଞାସା କରନ୍ତେ ଶ୍ରୁତଧି ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କ ପାଦତଳେ ପଡ଼ିଗଲେ । ଏଥିରେ ମୃଗାଙ୍କଦତ୍ତ ଅଧୀର ହୋଇପଡ଼ିବାରୁ ସେ ଧୈର୍ଯ୍ୟ ଓ ଆଶ୍ୱାସନା ଦେଇ କହିଲେ, 'ମୁଁ ସେମାନଙ୍କୁ ତ ଦେଖିନାହିଁ । କିନ୍ତୁ ଏତିକି ଜାଣିଛି ଯେ ଆମ ସମସ୍ତଙ୍କର ଗନ୍ତବ୍ୟସ୍ଥାନ ଉଜ୍ଜୟିନୀ ହୋଇଥିବା ଯୋଗୁଁ ସେମାନେ ସମସ୍ତେ ନିଶ୍ଚିତ ଭାବେ ସେଠାରେ ଆସି ପହଞ୍ଚିବେ । ଏଣୁ ଆମେ ବର୍ତ୍ତମାନ ଉଜ୍ଜୟିନୀ ଅଭିମୁଖେ ଯାତ୍ରା କରିବା ଉଚିତ ହେବ ।'

ଶ୍ରୁତଧିଙ୍କ ପ୍ରସ୍ତାବକ୍ରମେ ସେମାନେ ଉଜ୍ଜୟିନୀ ଅଭିମୁଖରେ ଯାତ୍ରା କଲେ । ମାର୍ଗରେ କିଛିଦିନ ବିତିଗଲା । ଦିନେ ହଠାତ୍ ପଥ ମଧ୍ୟରେ ସେମାନେ ମିତ୍ର ବିମଳବୁଦ୍ଧିଙ୍କୁ ବିପରୀତ ଦିଗରୁ ଆସୁଥିବା ଦେଖିବାକୁ ପାଇଲେ । ମୃଗାଙ୍କଦତ୍ତଙ୍କୁ ଦେଖି ବିମଳବୁଦ୍ଧିଙ୍କ ଚକ୍ଷୁ ସଜଳ ହୋଇଉଠିଲା । ସେ ଅଶ୍ରୁଭରା ନୟନରେ ପ୍ରଣାମ କରନ୍ତେ ମୃଗାଙ୍କଦତ୍ତ ତାଙ୍କୁ ଆନନ୍ଦରେ ଆଲିଙ୍ଗନ କଲେ । ଅନ୍ୟ ମନ୍ତ୍ରୀମାନଙ୍କ ସମ୍ପର୍କରେ ଜାଣିବାପାଇଁ ଚାହିଁବାରୁ ମିତ୍ରବତ୍ସଳ ମୃଗାଙ୍କଦତ୍ତଙ୍କୁ ବିମଳବୁଦ୍ଧି ସୂଚନା ଦେଇ ଜଣାଇଲେ–

'ଦେବ, ନାଗରାଜଙ୍କ ଅଭିଶାପରେ ମିତ୍ରମାନେ କିଏ କୁଆଡ଼େ ଗଲେ ମୁଁ ଜାଣିନି, କିନ୍ତୁ ସମସ୍ତେ ନିଶ୍ଚିତଭାବେ ଆପଣଙ୍କ ସହିତ ଆସି ମିଳିତ ହେବେ ।' ଏହା ମୁଁ କିପରି ଜାଣିପାରିଛି ତାହା ଆପଣଙ୍କୁ କହୁଛି ଶୁଣନ୍ତୁ–

## ବିମଳବୁଦ୍ଧିଙ୍କ ଅନୁଭୂତି

'ନାଗରାଜଙ୍କ ଅଭିଶାପରେ ମୁଁ ଅରଣ୍ୟର ପୂର୍ବପ୍ରାନ୍ତରେ ଯାଇ ପହଞ୍ଚିଲି । ସେଠାରୁ ବହୁଦୂର ଯିବାପରେ ମୋର ଶ୍ରାନ୍ତକ୍ଳାନ୍ତ ରୂପ ଦେଖି ଜଣେ ସାଧୁମହାତ୍ମା ମହର୍ଷି ବ୍ରହ୍ମଦଣ୍ଡୀଙ୍କ ଆଶ୍ରମରେ ନେଇ ମୋତେ ପହଞ୍ଚାଇଲେ । ଆଶ୍ରମବାସୀ ଶିଷ୍ୟମାନଙ୍କ ଦ୍ୱାରା ପ୍ରଦତ୍ତ ଖାଦ୍ୟପାନୀୟ ମୋତେ କିଛି ଆଶ୍ୱସ୍ତ କଲା । ସେଠାରେ ରହୁଥିବାବେଳେ ଦିନେ

ମୁଁ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ବୁଲୁଥାଏ । ଏ ସମୟରେ ଏକ ବିରାଟ ଗୁହା ମୋର ଦୃଷ୍ଟିଗୋଚର ହେଲା । କୌତୂହଳବଶତଃ ମୁଁ ତା' ମଧ୍ୟରେ ପ୍ରବେଶ କରି ଏକ ମଣିନିର୍ମିତ ପ୍ରାସାଦ ଦେଖିବାକୁ ପାଇଲି । ଗବାକ୍ଷ ମାର୍ଗରେ ତା' ଭିତରକୁ ଉଙ୍କିମାରି ଦେଖୁଥିବାବେଳେ ସେଠାରେ ଜଣେ ନାରୀ ବସିଥିବା ମୋର ଦୃଷ୍ଟିଗୋଚର ହେଲା ।

ସେହି ରମଣୀ ଜଣକ ଭ୍ରମରମାନଙ୍କଦ୍ୱାରା ପରିପୂର୍ଣ୍ଣ ଗୋଟିଏ ଚକ୍ର ବୁଲାଉଥାନ୍ତି । ନିକଟରେ ଗୋଟିଏ ବୃଷଭ ଠିଆ ହୋଇଥାଏ । ତା' ନିକଟରେ ଥାଏ ଗୋଟିଏ ଗର୍ଦ୍ଦଭ । ଭ୍ରମରମାନେ ଚକ୍ରରୁ ଆସି ଭାଗଭାଗ ହୋଇ ଏମାନଙ୍କ ଉପରେ ବସିଗଲେ । ଯେଉଁମାନେ ବୃଷଭ ଉପରେ ବସିଲେ ସେମାନେ ତା' ମୁହଁରୁ ବାହାରୁଥିବା ଫେଣରୂପକ କ୍ଷୀର ଶୋଷିବାକୁ ଲାଗିଲେ । ଯେଉଁମାନେ ଗଧ ଉପରେ ବସିଥିଲେ ସେମାନେ ତା' ମୁହଁରୁ ବାହାରୁଥିବା ଫେଣରୂପକ ରକ୍ତ ଶୋଷୁଥାନ୍ତି । ଏହାଦ୍ୱାରା ଭ୍ରମରଗୁଡ଼ିକର ବର୍ଣ୍ଣ ଯଥାକ୍ରମେ ଧଳା ଓ କଳା ହୋଇଗଲା । ପରେ ପରେ ସେମାନେ ମାଙ୍କଡ଼ସାରେ ପରିଣତ ହୋଇଗଲେ । ଏହି ମାଙ୍କଡ଼ସାଗୁଡ଼ିକ ଯାଇ ନିକଟରେ ଥିବା ସୁଗନ୍ଧିଯୁକ୍ତ ଏବଂ ବିଷାକ୍ତ ପୁଷ୍ପ ଉପରେ ନିଜ ଦେହରୁ ବାହାରୁଥିବା ସୂତା ଦ୍ୱାରା ଜାଲ ବୁଣିବାକୁ ଲାଗିଲେ । ଏହି ଜାଲ ମଧ୍ୟରେ ମାଙ୍କଡ଼ସାଗୁଡ଼ିକ ନିଜ ଇଚ୍ଛାନୁଯାୟୀ ଓହଳିଥାନ୍ତି । ଏ ସମୟରେ ଶ୍ୱେତ ଓ କୃଷ୍ଣ ଏପରି ଦୁଇଟି ମୁଣ୍ଡଥିବା ଗୋଟିଏ ବିରାଟକାୟ ସର୍ପ ଆସି ସେମାନଙ୍କୁ ଦଂଶନ କଲା । ଏହାଦେଖି ଉକ୍ତ ରମଣୀ ନିଜ ସ୍ଥାନରୁ ଉଠିଆସି ମାଙ୍କଡ଼ସାଗୁଡ଼ିକୁ ବିଭିନ୍ନ ହଣ୍ଡା ମଧ୍ୟରେ ନିକ୍ଷେପ କଲେ । କିନ୍ତୁ ସେଗୁଡ଼ିକ ପୁଣି ସେଥିରୁ ବାହାରି ନିଜନିଜ ଜାଲରେ ଓହଳିବାକୁ ଲାଗିଲେ । ବିଷଜ୍ୱାଳାରେ ଅଧୀର ହୋଇ ଗୋଟିଏ ଫୁଲ ଉପରିସ୍ଥ ଜାଲରୁ ଓହଳୁଥିବା ମାଙ୍କଡ଼ସାଟି ବିଳାପ କରିବାକୁ ଲାଗିଲା । ତା'ର କାନ୍ଦିବା ଦେଖି ଅନ୍ୟ ମାଙ୍କଡ଼ସା ଗୁଡ଼ିକ ମଧ୍ୟ କାନ୍ଦିବା ଆରମ୍ଭ କରିଦେଲେ ।

ଅଦୂରରେ ଜଣେ ତପସ୍ୱୀ ଧ୍ୟାନସ୍ଥ ହୋଇ ବସିଥାନ୍ତି । ମାଙ୍କଡ଼ସାଗୁଡ଼ିକର କ୍ରନ୍ଦନ ଧ୍ୱନିରେ ତାଙ୍କର ଧ୍ୟାନ ଭଗ୍ନହେଲା । ଏହି କୃପାଳୁ ତପସ୍ୱୀ ତାଙ୍କ ଲଲାଟ ପଟରୁ ଏକ ଜ୍ୟୋତି ସେମାନଙ୍କ ପ୍ରତି ନିକ୍ଷେପ କଲେ । ଏହି ଜ୍ୟୋତିର ପ୍ରଚଣ୍ଡ ଜ୍ୱାଳାରେ ମାଙ୍କଡ଼ସା ଗୁଡ଼ିକର ଜାଲସବୁ ଜଳିଗଲା । ସେମାନେ ଗୋଟିଏ ପ୍ରବାଳ ଦଣ୍ଡର ରନ୍ଧ୍ର ମଧ୍ୟରେ ପ୍ରବେଶ କରି ସେହି ଜ୍ୟୋତି ମଧ୍ୟରେ ଲୀନ ହୋଇଗଲେ । ଏହା ମଧ୍ୟରେ ନିଜର ଚକ୍ର, ବୃଷଭ ଏବଂ ଗର୍ଦ୍ଦଭ ସହିତ ରମଣୀ ଜଣକ ଅନ୍ତର୍ହିତା ହୋଇଯାଇଥାନ୍ତି ।

ଏହାଦେଖି ମୁଁ ବିସ୍ମୟଚକିତ ହୋଇପଡ଼ିଲି । ସେହି ଦୃଶ୍ୟ ସମ୍ପର୍କରେ ଚିନ୍ତାକରି ସେଠାରେ ଇତସ୍ତତଃ ବୁଲୁଥିବା ବେଳେ ମୁଁ ଏକ ରମଣୀୟ ସରୋବର ନିକଟରେ ଆସି

ପହଞ୍ଚିଲି । ଏହା ପଦ୍ମପୁଷ୍ପରେ ପରିପୂର୍ଣ୍ଣ ଥିଲା । ବିକଶିତ ପୁଷ୍ପଗୁଡ଼ିକ ଉପରେ ଭ୍ରମରମାନେ କ୍ରୀଡ଼ା କରୁଥିଲେ । ସେମାନଙ୍କର ଗୁଞ୍ଜରଣରେ ପୁଷ୍କରିଣୀ ସତେ ଯେପରି ମୋତେ କହୁଥିଲା 'ଆସ ମୋତେ ବି ଟିକିଏ ଦେଖ ।'

ପୁଷ୍କରିଣୀ କୂଳରେ ବସି ମୁଁ ଏହି ବିଶାଳ ଅରଣ୍ୟର ସୌନ୍ଦର୍ଯ୍ୟ ଦେଖୁଥାଏ । ସେହି ପୁଷ୍କରିଣୀର ଜଳ ମଧ୍ୟରେ ଅନ୍ୟ ଏକ ବନପ୍ରଦେଶ ମଧ୍ୟ ମୋତେ ଦେଖାଗଲା । ସେହି ବନପ୍ରଦେଶରେ ଗୋଟିଏ ବ୍ୟାଧ ରହିଥାଏ । ନିକଟରେ ଥାଏ ତା'ଦ୍ୱାରା ପରିପାଳିତ ଏକ ଦଶଭୁଜ ବିଶିଷ୍ଟ ସିଂହ ଶାବକ । ସିଂହ ଶିଶୁଟି ଅନାୟତ୍ତ ହୋଇପଡ଼ିବାରୁ ସେ କ୍ରୋଧରେ ତାକୁ ବନମଧ୍ୟରୁ ବିତାଡ଼ନ କରିଦେଲା । ଏ ସମୟରେ ନିକଟସ୍ଥ ଅନ୍ୟଏକ ବନଭୂମିରୁ ଗୋଟିଏ ସିଂହୀର ଗର୍ଜନ ଭାସି ଆସୁଥାଏ । ସିଂହ ଶିଶୁଟି ସେହି ଶବ୍ଦ ଆସୁଥିବା ଦିଗରେ ଅଗ୍ରସର ହେଲା । ମାର୍ଗ ମଧ୍ୟରେ ଭୟଙ୍କର ବାତ୍ୟା ତା'ର ଦଶଟିଯାକ ବାହୁକୁ ଶରୀରରୁ ବିଛିନ୍ନ କରିଦେଲା । ଏ ସମୟରେ ହଠାତ୍ ସେଠାରେ ଭଗବାନ୍ ବିଘ୍ନେଶ୍ୱରଙ୍କ ଆବିର୍ଭାବ ଘଟିଲା । ସେ ସିଂହଶିଶୁର ଶରୀରରେ ମନୁଷ୍ୟମାନଙ୍କର ଦଶଟି ହାତ ଯୋଡ଼ିଦେଲେ । ଏହାପରେ ସିଂହ ଶିଶୁଟି ସିଂହୀ ଥିବା ବନାନ୍ତରକୁ ଚାଲିଗଲା । ବହୁକଷ୍ଟରେ ସେହି ନିଘଞ୍ଚ ବନ ମଧ୍ୟରୁ ସିଂହୀର ସନ୍ଧାନ କରି ସେ ତା' ସହିତ ପ୍ରଥମୋକ୍ତ ବନଭୂମିକୁ ଫେରିଆସିଲା । ସିଂହୀ ସହିତ ନିଜପାଳିତ ସିଂହଶିଶୁକୁ ଫେରିଆସିଥିବା ଦେଖି ବ୍ୟାଧ ସେମାନଙ୍କ ହସ୍ତରେ ସମଗ୍ର ବନପ୍ରଦେଶକୁ ସମର୍ପଣ କରିଦେଇ ନିଜେ ସେଠାରୁ ଚାଲିଗଲା ।

ଏସବୁ ଦେଖି ମୁଁ ସେଠାରୁ ଆଶ୍ରମକୁ ଫେରିଆସିଲି । ମହର୍ଷି ବ୍ରହ୍ମଦଣ୍ଡୀଙ୍କ ନିକଟରେ ଏହି ବିସ୍ମୟକର ଘଟଣାବଳୀ ଆମୂଳଚୂଳ ବର୍ଣ୍ଣନା କରନ୍ତେ ସେ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ଏସବୁର ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ମୋତେ ଅଶେଷ ଆଶୀର୍ବାଦ ପ୍ରଦାନ ପୂର୍ବକ କହିଲେ–

'ତୋର ଜୀବନ ଧନ୍ୟ । ତୁ ଅତ୍ୟନ୍ତ ଭାଗ୍ୟବାନ୍ । ତା' ନହେଲେ ସ୍ୱୟଂ ଦେବଦେବ ମହାଦେବ ତୋ ପ୍ରତି ପ୍ରସନ୍ନ ହୋଇ ଏସବୁ ଦେଖାଇନଥାନ୍ତେ । ତୁ ଯେଉଁ ସ୍ତ୍ରୀକୁ ଦେଖିଲୁ ସେ ହେଉଛନ୍ତି ମାୟା । ସେ ଯେଉଁ ଚକ୍ର ଘୂର୍ଣ୍ଣନ କରୁଥିଲେ ତାହା ସଂସାର ଚକ୍ର । ସେଥିରେ ବସିଥିବା ଭ୍ରମରମାନେ ପୃଥିବୀର ବିଭିନ୍ନ ପ୍ରାଣୀ । ସେଠାରେ ଯେଉଁ ବୃଷଭ ଓ ଗର୍ଦ୍ଦଭ ଥିଲେ ସେମାନେ ଧର୍ମ ଓ ଅଧର୍ମର ପ୍ରତୀକ । ସେମାନଙ୍କର ମୁହଁରୁ ବାହାରୁଥିବା କ୍ଷୀର ଓ ରକ୍ତରୂପକ ଫେଣକୁ ନିଜନିଜର ସୁକର୍ମ ଓ ଦୁଷ୍କର୍ମ ଅନୁଯାୟୀ ପ୍ରାଣୀମାନେ ପିଉଥିଲେ ।

ନିଜନିଜ ଆଶ୍ରୟ ଭୂମିରୁ ଉତ୍ପନ୍ନ କ୍ଷୀର ଓ ରକ୍ତପାନ କରି ସେହି ପ୍ରାଣୀମାନେ ଶ୍ୱେତ ଓ କୃଷ୍ଣ ମାଙ୍କଡ଼ସାରେ ରୂପାୟିତ ହେଲେ । ପୁଣି ନିଜନିଜ ଜାଲରେ ଆବଦ୍ଧ ହୋଇ ଏହି ପ୍ରାଣୀମାନେ ଦୁଇପ୍ରକାର ସନ୍ତାନମାନଙ୍କୁ ଜନ୍ମଦେଲେ । ସେମାନେ ମଧ୍ୟ ନିଜନିଜ କର୍ମରୂପକ ସୂତ୍ରଦ୍ୱାରା ସୁଖ ଓ ଦୁଃଖର ପ୍ରତୀକ ସୁଗନ୍ଧ ଓ ବିଷାକ୍ତ ପୁଷ୍ପ ଉପରେ ଜାଲ ସୃଷ୍ଟିକରି ତା' ମଧ୍ୟରେ ଓହଳି ରହିଲେ । ନିଜର ପ୍ରବୃତ୍ତି ଅନୁଯାୟୀ ଉକ୍ତ ଦୁଇପ୍ରକାର ଫୁଲ ଉପରେ ଓହଳି ରହିଥିବା ପ୍ରାଣୀମାନଙ୍କୁ ସର୍ପରୂପୀ କାଳ ଶୁଭ ଓ ଅଶୁଭର ପ୍ରତୀକ ନିଜର ଶ୍ୱେତ ଓ କୃଷ୍ଣ ମୁଖଦ୍ୱାରା ଦଂଶନ କରି ଗ୍ରାସକଲା । ଏହାପରେ ମାୟାରୂପୀ ସେହି ରମଣୀ ଏମାନଙ୍କୁ ନେଇ ହଣ୍ଡାରୂପକ ବିଭିନ୍ନ ଯୋନିରେ ନିକ୍ଷେପ କଲା । କିନ୍ତୁ ସେଠାରୁ ଉଠିଆସି ନିଜର ଶୁଭ୍ର ଓ କଳୁଷିତ ପ୍ରବୃତ୍ତି ଅନୁକୂଳ ସୁଖଦୁଃଖରୂପୀ ଫଳପ୍ରସବକାରୀ ପୁତ୍ର, କଳତ୍ର, ସ୍ୱଜନରୂପ ଜାଲପାଶରେ ପୁଣି ଆବଦ୍ଧ ହୋଇପଡ଼ିଲେ ।

କୃଷ୍ଣବର୍ଣ୍ଣର ପ୍ରାଣୀମାନେ ନିଜ ଜାଲ ମଧ୍ୟରେ ଦୁଃଖରୂପକ ବିଷଦ୍ୱାରା ପୀଡ଼ିତ ହୋଇ ଭଗବାନଙ୍କର କୃପାଲାଭ ନିମିତ୍ତ ବିଳାପ କରିବା ଆରମ୍ଭ କଲେ । ସେମାନଙ୍କର ବିଳାପ ଧ୍ୱନି ଶ୍ୱେତବର୍ଣ୍ଣ ବିଶିଷ୍ଟ ପ୍ରାଣୀମାନଙ୍କ ମନରେ ବୈରାଗ୍ୟ ଭାବନା ଉତ୍ପନ୍ନ କଲା । ସେମାନେ ନିଜନିଜର ଜାଲପାଶ ମଧ୍ୟରେ ଆବଦ୍ଧ ରହି ଭଗବତ୍ ପ୍ରାପ୍ତି ନିମିତ୍ତ ରୋଦନ କରିବାକୁ ଲାଗିଲେ । ଏମାନଙ୍କର ଏହି କରୁଣ ବିଳାପ ଧ୍ୱନି ତପସ୍ୱୀରୂପକ ଭଗବାନଙ୍କର ଯୋଗନିଦ୍ରା ଭଙ୍ଗ କଲା । ତାଙ୍କ ପ୍ରଦତ୍ତ ଜ୍ଞାନାଗ୍ନି ଦ୍ୱାରା ଏମାନଙ୍କର ସମସ୍ତ ବନ୍ଧନ ଛିନ୍ନ ହୋଇଗଲା । ସେ ଏହି ସମସ୍ତ ପ୍ରାଣୀଙ୍କୁ ପ୍ରବାଳ ଦଣ୍ଡରୂପକ ସୂର୍ଯ୍ୟାଲୋକରେ ପ୍ରବେଶ କରାଇଲେ । ଭଗବତ୍ କୃପାରୁ ଏମାନେ ସମସ୍ତେ ଆଦିତ୍ୟଲୋକର ଉପରକୁ ଯାଇ ପରମଧାମ ପ୍ରାପ୍ତ ହେଲେ । ଏହା ସହିତ ଚକ୍ରରୂପୀ ସଂସାର, ମାୟାରୂପିଣୀ ରମଣୀ ଏବଂ ଧର୍ମ ତଥା ଅଧର୍ମ ରୂପ ସେହି ବୃଷଭ ଓ ଗର୍ଦ୍ଦଭ ସବୁକିଛି ଅଦୃଶ୍ୟ ହୋଇଗଲେ ।

ଏହିପରି ସମସ୍ତ ପ୍ରାଣୀ ନିଜନିଜର କର୍ମ ଅନୁସାରେ ପବିତ୍ର ଓ କଳୁଷିତ ରୂପେ ସଂସାର ମଧ୍ୟରେ ଭ୍ରମଣ କରୁଅଛନ୍ତି । ଭଗବତ୍ ଆରାଧନା ଦ୍ୱାରା ହିଁ ଏମାନେ ମୁକ୍ତିପ୍ରାପ୍ତ ହୋଇଥାନ୍ତି । ତୁମର ମୋହ ଶାନ୍ତି ପାଇଁ ଭଗବାନ୍ ଶଙ୍କର ଏସବୁ ତୁମକୁ ଦେଖାଇ ଅଛନ୍ତି । ବର୍ତ୍ତମାନ ସେହି ପୁଷ୍କରିଣୀର ଜଳ ମଧ୍ୟରେ ତୁମେ ଯାହାସବୁ ଦେଖିଲ ତା'ର ରହସ୍ୟ କହୁଛି ଶୁଣ—

ମୃଗାଙ୍କଦତ୍ତ ଭବିଷ୍ୟତରେ ଯେଉଁସବୁ ପରିସ୍ଥିତିର ସମ୍ମୁଖୀନ ହେବ ସେ ସବୁକୁ ହିଁ ଭଗବାନ ସରୋବରର ଜଳରାଶି ମଧ୍ୟରେ ପ୍ରତିବିମ୍ବରୂପେ ପ୍ରକଟନ କରିଛନ୍ତି ।

ସିଂହ ଶିଶୁର ଦଶଟି ଭୁଜପରି ମୃଗାଙ୍କଦତ୍ତର ଦଶଜଣ ସଚିବ ଅଛନ୍ତି । ସେହି ବନପ୍ରଦେଶ ପରି ପିତାଙ୍କ ରାଜ୍ୟରେ ସେ ଲାଳିତପାଳିତ ହୋଇଥିଲା । ପିତା ତୁ ଦେଖିଥିବା ବ୍ୟାଧ ପରି କ୍ରୋଧରେ ତାକୁ ବହିଷ୍କାର କରିଦେଲେ । ଅନ୍ୟ ବନ ମଧ୍ୟରେ ସିଂହୀର ଆହ୍ୱାନ ଶୁଣି ସିଂହଶିଶୁ ଯେପରି ସେଠାକୁ ଦୌଡ଼ିଥିଲା, ମୃଗାଙ୍କଦତ୍ତ ମଧ୍ୟ ସେହିପରି ଅବନ୍ତୀ ରାଜ୍ୟର ରାଜକନ୍ୟା ଶଶାଙ୍କବତୀର ସୁଖ୍ୟାତି ଶୁଣି ତା' ନିକଟକୁ ଚାଲିଛି । ପ୍ରବଳ ବାତ୍ୟାରେ ସିଂହଶିଶୁର ଯେପରି ଦଶଟିଯାକ ଭୁଜ ଛିନ୍ନ ହୋଇଯାଇଥିଲା, ନାଗରାଜର ଅଭିଶାପ ଫଳରେ ମୃଗାଙ୍କଦତ୍ତର ଦଶଜଣଯାକ ମନ୍ତ୍ରୀ ତା'ଠାରୁ ବିଚ୍ଛିନ୍ନ ହୋଇପଡ଼ିଛନ୍ତି । ଭଗବାନ୍ ଲମ୍ବୋଦର ବିନାୟକ ଯେପରି ସିଂହଶିଶୁର ଶରୀରରେ ଦଶଟି ହାତ ଯୋଡ଼ିଦେଲେ, ସେହିପରି ମୃଗାଙ୍କଦତ୍ତ ମଧ୍ୟ ତା'ର ଦଶଜଣ ମନ୍ତ୍ରୀଙ୍କୁ ପୁଣି ଫେରିପାଇବ । ସେ ସ୍ଥିର ଚିତ୍ତରେ ପୁଣି ଶଶାଙ୍କବତୀର ରାଜ୍ୟରେ ଯାଇ ପହଞ୍ଚିବ । ସିଂହଶାବକ ଯେପରି ବହୁକଷ୍ଟ ସ୍ୱୀକାର ପୂର୍ବକ ସିଂହୀକୁ ଠାବ କରିଥିଲା ଏବଂ ତା' ସହିତ ନିଜର ଜନ୍ମଭୂମିକୁ ଫେରିଆସିଥିଲା, ସେହିପରି ମୃଗାଙ୍କଦତ୍ତ ମଧ୍ୟ କଷ୍ଟରେ ଶଶାଙ୍କବତୀକୁ ଲାଭକରି ସ୍ୱରାଜ୍ୟକୁ ଫେରିଯିବ । ପିତା ପୁତ୍ରକୁ ଫେରିଆସିଥିବା ଦେଖି ବ୍ୟାଧତୁଲ୍ୟ ତା' ହସ୍ତରେ ରାଜ୍ୟଭାର ଅର୍ପଣ କରି ବାନପ୍ରସ୍ଥ ଅବଲମ୍ବନ କରିବେ ।

ଭଗବାନ ଶଙ୍କର ଏହିପରି ଭବିଷ୍ୟତ ଘଟଣାବଳୀ ଅତୀତ ଘଟଣା ରୂପରେ ତୋତେ ଦେଖାଇଛନ୍ତି । ଏଣୁ ତୋର ମିତ୍ର ଓ ପ୍ରଭୁ ମୃଗାଙ୍କଦତ୍ତ ନିଜର ମନ୍ତ୍ରୀ, ପତ୍ନୀ ଓ ରାଜ୍ୟପ୍ରାପ୍ତ ହୋଇ ଆନନ୍ଦ ଉପଭୋଗ କରିବ ।

ମହର୍ଷି ବ୍ରହ୍ମଦଣ୍ଡୀ ଏହିପରି ସମସ୍ତ ଘଟଣାର ରହସ୍ୟ ଉଦ୍‌ଘାଟନପୂର୍ବକ ମୋ ମନରେ ସାହସ ସଞ୍ଚାର କରାଇବାରୁ ମୁଁ ଆଶ୍ରମରୁ ବିଦାୟ ନେଇ ଆପଣଙ୍କ ସମ୍ମୁଖରେ ଉପସ୍ଥିତ ହୋଇପାରିଛି । ଆମର ପ୍ରସ୍ଥାନ ସମୟରେ ଆପଣ ଭଗବାନ ଗଣପତିଙ୍କର ଯେଉଁ ଏକାଗ୍ର ଉପାସନା କରିଥିଲେ ତା'ଦ୍ୱାରା ସେ ଆମ ପ୍ରତି ସନ୍ତୁଷ୍ଟ ଅଛନ୍ତି ବୋଲି ମନେହେଉଛି । ଏଣୁ ନିକଟ ଭବିଷ୍ୟତରେ ଅନ୍ୟ ମିତ୍ରମାନଙ୍କ ସହିତ ନିଶ୍ଚିତଭାବେ ଆମର ମିଳନ ଘଟିବ ଏବଂ ଆପଣଙ୍କର ମନୋରଥ ମଧ୍ୟ ସିଦ୍ଧ ହେବ ।'

ବିମଳବୁଦ୍ଧିଙ୍କଠାରୁ ଏହି ଅଦ୍ଭୁତ କଥା ଶୁଣି ମୃଗାଙ୍କଦତ୍ତ ଆଶ୍ୱାସିତ ହେଲେ, ଏବଂ ବିମଳବୁଦ୍ଧି ଓ ଶ୍ରୁତଧିଙ୍କ ସହିତ ପରାମର୍ଶ କରି ଅନ୍ୟ ମିତ୍ରମାନଙ୍କ ଅନୁସନ୍ଧାନ ଓ ନିଜର ମନୋରଥ ସିଦ୍ଧି ନିମିତ୍ତ ଅବନ୍ତୀ ରାଜଧାନୀ ଅଭିମୁଖରେ ଯାତ୍ରାକଲେ ।

# ଚତୁର୍ଥ ତରଙ୍ଗ

ମୃଗାଙ୍କଦତ୍ତ ଶ୍ରୁତଧି ଓ ବିମଳବୁଦ୍ଧିଙ୍କ ସହିତ ଶଶାଙ୍କବତୀଙ୍କୁ ଲାଭ କରିବା ନିମିତ୍ତ ଉଜ୍ଜୟିନୀ ଅଭିମୁଖରେ ଅଗ୍ରସର ହେଉଥାଆନ୍ତି । ପଥ ମଧ୍ୟରେ ସେମାନେ ନର୍ମଦା ନଦୀ ତଟରେ ଆସି ଉପନୀତ ହେଲେ । ମୃଗାଙ୍କଦତ୍ତ ମନ୍ତ୍ରୀମାନଙ୍କ ସହିତ ପୁଣି ମିଳିତ ହେଉଥିବା ଦେଖି ତରଙ୍ଗରୂପକ ହସ୍ତ ସଞ୍ଚାଳନ କରି ଏବଂ ଫେନରୂପକ ଅଙ୍ଗରାଗ ଦ୍ୱାରା ଶରୀରକୁ ଲେପନ କରି ପ୍ରବହମାନା ନର୍ମଦା ସତେ ଯେପରି ଆନନ୍ଦରେ ନୃତ୍ୟ କରୁଥିଲା । ତରଙ୍ଗ ତାଡ଼ିତ ଫେନରାଶିକୁ ଦେଖିଲେ ମନେହେଉଥିଲା ମୃଦୁହାସ୍ୟ ପ୍ରକାଶ କରି ନଦୀ ଯେପରି ସେମାନଙ୍କୁ ସ୍ୱାଗତ କରୁଛି ।

ମୃଗାଙ୍କଦତ୍ତ ସ୍ନାନକ୍ରିୟା ନିମିତ୍ତ ନଦୀ ମଧ୍ୟକୁ ଓହ୍ଲାଇଲେ । ଏ ସମୟରେ ମାୟାବଟୁ ନାମକ ଜନୈକ ଭୀଲ୍ ଅଧିପତି ମଧ୍ୟ ସ୍ନାନ ଉଦ୍ଦେଶ୍ୟରେ ସେଠାରେ ଆସି ପହଞ୍ଚିଥା'ନ୍ତି । ସେ ନଦୀ ମଧ୍ୟରେ ପ୍ରବେଶ କରିବା ମାତ୍ରେ ହଠାତ୍ ଜଳ ମଧ୍ୟରୁ ତିନୋଟି ଜଳମାନବ ଉଠିଆସି ଭୀଲ୍ ରାଜାଙ୍କୁ ଏକସଙ୍ଗରେ ଆକ୍ରମଣ କଲେ । ଏଥିରେ ସେ ଭୟଭୀତ ହୋଇଯିବା ସ୍ୱାଭାବିକ । ଜଳମାନବଗୁଡ଼ିକର ଭୀଷଣ ଆକୃତି ଦେଖି ଅନୁଚରମାନେ ମଧ୍ୟ ପଳାୟନ କଲେ । ମୃଗାଙ୍କଦତ୍ତ ଏସବୁ ଦେଖି ଜଳ ଗର୍ଭରୁ ଉଠିଆସି ନିଜର ଖଡ୍‌ଗ ଦ୍ୱାରା ସେହି ଜଳମାନବମାନଙ୍କୁ ହତ୍ୟାକରି ଭୀଲ୍ ଅଧିପତିଙ୍କୁ ଅଭୟ ପ୍ରଦାନ କଲେ ।

ଜଳମାନବମାନଙ୍କଠାରୁ ମୁକ୍ତ ହୋଇ ଶବରରାଜ ମୃଗାଙ୍କଦତ୍ତଙ୍କ ପାଦତଳେ ପଡ଼ି ନମ୍ରତାର ସହିତ ତାଙ୍କ ପରିଚୟ ଜିଜ୍ଞାସା କଲେ–'ମୋର ପ୍ରାଣରକ୍ଷା କରିବାପାଇଁ ବୋଧହୁଏ ବିଧାତା ଆପଣଙ୍କୁ ପଠାଇଥିଲେ । ନିଜର ପରିଚୟ ଦେଲେ ମୁଁ କୃତାର୍ଥ ହେବି । ଆପଣ କେଉଁ ପବିତ୍ର ପିତୃବଂଶକୁ ଉଜ୍ଜ୍ୱଳ କରିଛନ୍ତି ? କେଉଁ ଦେଶକୁ ପବିତ୍ର କରିବାପାଇଁ ଆପଣଙ୍କର ଏହି ଯାତ୍ରା ?' ଶ୍ରୁତଧି ଉତ୍ତରରେ ମୃଗାଙ୍କଦତ୍ତଙ୍କ ସମସ୍ତ ବୃତ୍ତାନ୍ତ ତାଙ୍କ ନିକଟରେ

ବର୍ଣ୍ଣନା କଲେ । ସବୁ ଶୁଣିସାରିବା ପରେ ଭୀଲ୍ ନରପତି ନମ୍ରତାର ସହିତ କହିଲେ 'ଆପଣ ଯଦି ଅନୁଜ୍ଞା ଦିଅନ୍ତି ତେବେ ମୁଁ ମୋର ଅନ୍ତରଙ୍ଗ ଓ ବିଶ୍ୱସ୍ତ ମିତ୍ର ମାତଙ୍ଗରାଜ ଦୁର୍ଗପିଶାଚଙ୍କ ସହିତ ଆପଣଙ୍କ ଅଭିଳଷିତ କାର୍ଯ୍ୟରେ ସହାୟକ ହେବି । ଏଣୁ, ପ୍ରଭୁ, ଦୟାପୂର୍ବକ ମୋ ଗୃହରେ ପଦାର୍ପଣ କରି ମୋତେ କୃତାର୍ଥ କରନ୍ତୁ ।' ଏହିପରି ବିନମ୍ର ବଚନରେ ସନ୍ତୁଷ୍ଟ ମୃଗାଙ୍କଦତ୍ତଙ୍କୁ ସେ ନିଜ ଗୃହକୁ ନେଇଯାଇ ନିଜର ବୈଭବ ଅନୁରୂପ ଯଥାଯୋଗ୍ୟ ସତ୍କାର କଲେ । ଗ୍ରାମବାସୀମାନେ ମଧ୍ୟ ତାଙ୍କ ପଦତଳେ ପଡ଼ି ପ୍ରଣତି ଜଣାଇଲେ । ମାତଙ୍ଗରାଜ ଦୁର୍ଗପିଶାଚ ବାର୍ତ୍ତା ପାଇବା ମାତ୍ରେ ସେଠାକୁ ଆସି ବିନୀତ ଦାସ ଭାବରେ ମିତ୍ରଙ୍କ ପ୍ରାଣରକ୍ଷା କରିଥିବା ମୃଗାଙ୍କଦତ୍ତଙ୍କୁ ଅଭିନନ୍ଦନ କଲେ । ଶଶାଙ୍କବତୀଙ୍କ ପାଇଁ ଉତ୍ସୁକ ଥିଲେ ମଧ୍ୟ ମାୟାବଟୁ ଓ ଭୀଲ୍‌ମାନଙ୍କ ପ୍ରତି ସ୍ନେହାତିଶଯ୍ୟ ଯୋଗୁଁ ମୃଗାଙ୍କଦତ୍ତ ସେଠାରେ କିଛି ଦିନ ଅଟକିଗଲେ ।

ମୃଗାଙ୍କଦତ୍ତ ସେଠାରେ ଅବସ୍ଥାନ କରୁଥିବାବେଳେ ଶବରାଧିପତି ମାୟାବଟୁ ଦିନେ ନିଜର ପ୍ରତିହାର ଚଣ୍ଡକେତୁ ସହିତ ଦ୍ୟୂତକ୍ରୀଡ଼ା ଆରମ୍ଭ କଲେ । ଏ ସମୟରେ ଆକାଶ ମେଘାଚ୍ଛନ୍ନ ହେଲା । ମେଘ ଗର୍ଜ୍ଜନରେ ମାୟାବଟୁଙ୍କ ପାଳିତ ମୟୂରମାନେ ନୃତ୍ୟ କରିବାକୁ ଲାଗିଲେ । ରାଜା ସେହି ନୃତ୍ୟ ଦେଖିବାପାଇଁ ମୃଗାଙ୍କଦତ୍ତ ପ୍ରଭୃତିଙ୍କୁ ଅନୁରୋଧ କରିବା ଦେଖି ଦ୍ୟୂତବିଳାସୀ ଚଣ୍ଡକେତୁ କହିଲା 'ମହାରାଜ, ଏ ମୟୂରମାନଙ୍କ ନୃତ୍ୟ ଦେଖି ଲାଭ କ'ଣ ? ଏମାନେ ତ ଠିକ୍ ଭାବେ ନାଚିବା ହିଁ ଜାଣିନାହାଁନ୍ତି । ଯଦି ମୟୂର ନୃତ୍ୟ ଦେଖିବା ଆପଣଙ୍କର ବିଳାସ, ତେବେ କାଲି ପ୍ରଭାତରେ ମୁଁ ଆମ ଗୃହରେ ଥିବା ମୟୂରର ନୃତ୍ୟ ଆପଣଙ୍କୁ ଦେଖାଇବି । ତା' ପରି ମୟୂରଟିଏ ସଂସାରରେ ବିରଳ ।' ଏଥିରେ ରାଜା ପରଦିନ ନୃତ୍ୟ ଦେଖାଇବା ପାଇଁ ଅନୁରୋଧ କରି ନିତ୍ୟକର୍ମପାଇଁ ଚାଲିଗଲେ । ନିଜର ଅନୁଗତମାନଙ୍କ ସହିତ ମୃଗାଙ୍କଦତ୍ତ ସେଠାରେ ରହି ଏସବୁ କଥା ଶୁଣୁଥାଆନ୍ତି । ଶବରରାଜଙ୍କ ପ୍ରସ୍ଥାନ ପରେ ସେ ମଧ୍ୟ ଉଠିଯାଇ ଦିବସର ଶେଷକୃତ୍ୟ ସମାପନ କଲେ ।

ରାତି ହେବାରୁ ଯେତେବେଳେ ଚତୁର୍ଦ୍ଦିଗ ନିବିଡ଼ ଅନ୍ଧକାରାଚ୍ଛନ୍ନ ହୋଇଗଲା, ସେତେବେଳେ ମୃଗାଙ୍କଦତ୍ତ ନିଜ ଶରୀରକୁ କସ୍ତୂରୀ ପଙ୍କଦ୍ୱାରା ଅନୁଲିପ୍ତ କରି ଖଣ୍ଡିଏ କୃଷ୍ଣବସ୍ତ୍ର ପରିଧାନ କଲେ । ହସ୍ତରେ ଖଡ଼୍‌ଗ ଧାରଣ କରି ସେ ଭବିଷ୍ୟତ କର୍ମାନୁଷ୍ଠାନ ନିମିତ୍ତ ଗୃହ ମଧ୍ୟରୁ ନିର୍ଗତ ହେଲେ । ଅନୁଚରମାନେ ସେତେବେଳକୁ ଗାଢ଼ନିଦ୍ରାରେ ଅଭିଭୂତ ।

# ମୃଗାଙ୍କଦତ୍ତ ଓ ପ୍ରତିହାର କଥା

ମୃଗାଙ୍କଦତ୍ତ ସେହି ଅନ୍ଧକାର ମଧ୍ୟରେ ପଦଚାରଣା କରୁଥାନ୍ତି । ନିକଟରେ ଥିବା ପଦାର୍ଥ ମଧ୍ୟ ଦେଖାଯାଉନଥାଏ । ଏ ସମୟରେ ଅନ୍ୟ ଜଣେ କାହାସହିତ ତାଙ୍କର ଖୁବ୍‌ଜୋରରେ ଧକ୍କା ହେଲା । ସେ କ୍ରୋଧ ପ୍ରକାଶ କରି ତାକୁ ଦ୍ୱନ୍ଦ୍ୱ ଯୁଦ୍ଧ ପାଇଁ ଆହ୍ୱାନ କଲେ । ଏଥିରେ ଅନ୍ୟ ବୟସ୍କ ବ୍ୟକ୍ତିଟି କାଳୋଚିତ ଉତ୍ତର ଦେଇ କହିଲା, 'ଆପଣ କିଛି ନବୁଝି ବିନାକାରଣରେ କାହିଁକି କ୍ରୋଧ ପ୍ରକାଶ କରୁଛନ୍ତି ? ଧୀରସ୍ଥିର ଭାବରେ ବିଚାର କଲେ ଆପଣ ଚନ୍ଦ୍ରଙ୍କୁ ଦୋଷ ଦେବା ଉଚିତ, କାରଣ ସେ ରାତ୍ରିର ଅନ୍ଧକାରକୁ ଦୂରକରି ନାହାଁନ୍ତି କିମ୍ବା ସୃଷ୍ଟିକର୍ତ୍ତାଙ୍କୁ ଦୋଷ ଦେବା ଉଚିତ, କାରଣ ସେ ପ୍ରତିଦିନ ରାତ୍ରିକୁ ଆଲୋକିତ କରିବାପାଇଁ ଚନ୍ଦ୍ରଙ୍କୁ ସମ୍ପୂର୍ଣ୍ଣ ଅଧିକାର ଦେଇ ନାହାଁନ୍ତି । ଅନ୍ଧକାର ଯୋଗୁଁ ଆମ୍ଭମାନଙ୍କ ମଧ୍ୟରେ ବିରୋଧ ସୃଷ୍ଟି ହୋଇଛି ।' ପ୍ରୌଢ଼ଠାରୁ ଏହା ଶୁଣି ମୃଗାଙ୍କଦତ୍ତଙ୍କ କ୍ରୋଧ ଶାନ୍ତ ହେଲା । ସେ 'ପ୍ରକୃତରେ ତମେ ଠିକ୍ କହିଚ' କହି ତା'ର ପରିଚୟ ଜାଣିବାପାଇଁ ଚାହିଁଲେ । ଉତ୍ତରରେ ବ୍ୟକ୍ତିଟି କହିଲା, 'ମୁଁ ତ ଚୋର । ତମେ କିଏ ?' ମୃଗାଙ୍କଦତ୍ତ ମିଥ୍ୟାରେ କହିଲେ 'ତାହାହେଲେ, ଆସ, ହାତ ମିଳାଅ । ତୁମର ଓ ମୋର ପେସା ତ ଏକା । ତେଣୁ ବର୍ତ୍ତମାନଠାରୁ ତୁମେ ମୋର ମିତ୍ର ।'

କୌତୂହଳବଶତଃ ମୃଗାଙ୍କଦତ୍ତ ତା' ସହିତ ମିତ୍ରତା କରି ରାତ୍ରିର ଅନ୍ଧକାର ମଧ୍ୟରେ ଭ୍ରମଣ କରିବାକୁ ଲାଗିଲେ । କିଛିଦୂର ଗଲାପରେ ସେହି ବ୍ୟକ୍ତିଟି ତାଙ୍କୁ ଆଣି ଘାସପତ୍ର ଦ୍ୱାରା ଆବୃତ ଗୋଟିଏ ଶୁଖିଲା କୂଅ ନିକଟରେ ପହଞ୍ଚାଇଲା । ଉଭୟେ କୂଅ ମଧ୍ୟରେ ଥିବା ଗୁପ୍ତ ସୁଡ଼ଙ୍ଗ ପଥରେ ଯାଇ ମାୟାବଟୁଙ୍କ ଅନ୍ତଃପୁରରେ ପହଞ୍ଚିଲେ । ଆଲୋକରେ ସେ ଦେଖିଲେ ଯେ ମିତ୍ରତା କରିଥିବା ବ୍ୟକ୍ତିଟି ପ୍ରକୃତରେ ଚୋର ନୁହେଁ, ପ୍ରତିହାର ଚଣ୍ଡକେତୁ । ତାକୁ ଚିହ୍ନିବା ମାତ୍ରେ ରାଜକୁମାର ନିଜକୁ ଘରର ଗୋଟିଏ କୋଣକୁ ଘୁଞ୍ଚାଇ ନେଲେ । ରାଣୀଙ୍କ ଗୁପ୍ତ ପ୍ରେମିକ ଛାୟାଲୋକ ମଧ୍ୟରେ ତାଙ୍କୁ ଚିହ୍ନିପାରିଲା ନାହିଁ; ସେ ତ ପୁଣି ଛଦ୍ମବେଶରେ ଥିଲେ ।

ମାୟାବଟୁଙ୍କ ରାଣୀ ମଞ୍ଜୁମତୀ । ସେ ପ୍ରତିହାର ପ୍ରତି ଅନୁରକ୍ତ । ପ୍ରତିହାରକୁ ଦେଖିବାମାତ୍ରେ ରାଣୀ ତାକୁ ଆଲିଙ୍ଗନ କରି ପଲଙ୍କ ଉପରେ ନେଇ ବସାଇଲେ । ଘର କୋଣରେ ଥିବା ପୁରୁଷଟିର ପରିଚୟ ପଚାରନ୍ତେ ପ୍ରତିହାର କହିଲା, 'ସେ ମୋର ବିଶ୍ୱସ୍ତ ମିତ୍ର । ତୁମେ ତାକୁ ବିଶ୍ୱାସ କରିପାର ।' ମଞ୍ଜୁମତୀ ଚିନ୍ତିତ ଭାବେ କହିଲେ, 'ମୋ ପରି ଅଭାଗିନୀ କାହାକୁ ବା ବିଶ୍ୱାସ କରିବ । ମରଣ ଗର୍ଭକୁ ଯାଉଥିବା ରାଜାଙ୍କୁ ତ ମୃଗାଙ୍କଦତ୍ତ

ବଞ୍ଚାଇଦେଲା ।' ପ୍ରତିହାର ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ପୁଣି କହିଲା, 'ପ୍ରିୟେ, ତୁମେ ବ୍ୟର୍ଥ ଚିନ୍ତା କରନି । ମୁଁ ରାଜା ଓ ସେହି ମୃଗାଙ୍କଦତ୍ତକୁ ଅତିଶୀଘ୍ର ଆମ ପଥରୁ ଦୂରେଇ ଦେଉଛି ।'

ରାଣୀ ମଞ୍ଜୁମତୀ କିନ୍ତୁ ଏଥିରେ ଆଶ୍ୱସ୍ତ ହେଲେ ନାହିଁ । ତାଙ୍କ ପାଟିରୁ ହଠାତ୍ ବାହାରି ପଡ଼ିଲା, 'ବୃଥାରେ ମନଭୁଲାଣିଆ କଥା କାହିଁକି କହୁଛ ? ନର୍ମଦାର ଜଳରାଶି ଭିତରେ ଯେତେବେଳେ ଜଳମାନବମାନେ ରାଜାଙ୍କୁ ଆକ୍ରମଣ କଲେ ସେତେବେଳେ ମୃଗାଙ୍କଦତ୍ତ ତାଙ୍କୁ ରକ୍ଷାକରିବା ପାଇଁ ଏକାକୀ ଉଦ୍ୟମ କରିଥିଲା । ତୁମେ ସେତେବେଳେ ମାରି ଦେଲନି କାହିଁକି ? ତୁମେ ତ ସେଠାରୁ ଡରିମରି ପଳାୟନ କଲ । ତେଣୁ ଆଉ ଅଧିକ କିଛି କୁହନାହିଁ । ତମ କଥା ଯଦି ଆଉ କିଏ ଶୁଣିନିଏ ତେବେ ମୃଗାଙ୍କଦତ୍ତ ହାତରୁ ତମେ ରକ୍ଷା ପାଇପାରିବ ନାହିଁ । ସେ ଅତ୍ୟନ୍ତ ପରାକ୍ରମଶାଳୀ ।'

ରାଣୀଙ୍କଠାରୁ ଏହାଶୁଣି ପ୍ରତିହାର ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇପଡ଼ିଲା । କହିଲା, 'ତୁ ବର୍ତ୍ତମାନ ସେହି ପାପୀ ମୃଗାଙ୍କଦତ୍ତ ପ୍ରତି ଆସକ୍ତ ହୋଇପଡ଼ିଲୁଣି । ତେଣୁ ମୋତେ ଏପରି ଭର୍ତ୍ସନା କରୁଛୁ । ତା'ର ଫଳ ଭୋଗକର ।' ଏହା କହି ସେ ତାଙ୍କୁ ମାରିବା ପାଇଁ କଟିରେ ଥିବା ଛୁରିଟିକୁ କୋଷମୁକ୍ତ କଲା । ଏହା ଦେଖି ରାଣୀଙ୍କ ଗୁପ୍ତ ପ୍ରଣୟ ସମ୍ପର୍କରେ ଅବହିତ ଥିବା ଦାସୀଟିଏ ଦୌଡ଼ିଆସି ତାଙ୍କୁ ରକ୍ଷା କରିବା ସହିତ ପ୍ରତିହାର ହାତରୁ ଛୁରିଟି ଛଡ଼ାଇନେଲା । ମଞ୍ଜୁମତୀ ଏହି ଅବସରରେ ଅନ୍ୟତ୍ର ଚାଲିଗଲେ । ଟଣାଓଟରା ଭିତରେ ଦାସୀଟିର କିଛିଟା ଅଙ୍ଗୁଳି କଟିଗଲା । ଦାସୀ ହାତରୁ ଛୁରିଟିକୁ ଟାଣିନେଇ ଚଣ୍ଡକେତୁ ଦୂରକୁ ଫୋପାଡ଼ି ଦେଲା ଏବଂ ବିସ୍ମିତ ଓ ବ୍ୟାକୁଳ ମୃଗାଙ୍କଦତ୍ତଙ୍କ ସହିତ ଆସିଥିବା ସୁଡ଼ଙ୍ଗ ପଥରେ ସେଠାରୁ ପଳାୟନ କଲା ।

ପ୍ରତିହାରର ଘରେ ପହଞ୍ଚି ମୃଗାଙ୍କଦତ୍ତ ନିଜକୁ ଅନ୍ଧକାର ମଧ୍ୟରେ ଗୋପନରଖି ସ୍ୱସ୍ଥାନକୁ ଫେରିବାପାଇଁ ପ୍ରତିହାରଠାରୁ ବିଦାୟ ମାଗିଲେ । କିନ୍ତୁ ପ୍ରତିହାର ସମବେଦନା ପ୍ରକାଶ କରି ବହୁତ ଥକିଯାଇଥିବା ଯୋଗୁଁ ସେହିଠାରେ ହିଁ ରାତିଟି କଟାଇଦେବା ସକାଶେ ମିତ୍ରକୁ ଅନୁରୋଧ କଲା ।

ପ୍ରତିହାରର କାର୍ଯ୍ୟକଳାପ ଜାଣିବାପାଇଁ କୌତୂହଳ ପୋଷଣ କରୁଥିବା ମୃଗାଙ୍କଦତ୍ତ ଏଥିରେ ନିଜର ସମ୍ମତି ପ୍ରକାଶ କରିବାରୁ ପ୍ରତିହାର ଜଣେ ଭୃତ୍ୟକୁ ଡାକି ନିର୍ଦ୍ଦେଶ ଦେଲା, 'ଯେଉଁଠି ମୋର ମୟୂରଟି ଅଛି ସେଠାରେ ମିତ୍ରଙ୍କ ବିଶ୍ରାମପାଇଁ ବ୍ୟବସ୍ଥା କରିଦେ ।' ମୃଗାଙ୍କଦତ୍ତ ଭୃତ୍ୟ ସହିତ ଯାଇ ଉକ୍ତ କୋଠରିରେ ପହଞ୍ଚିଲେ । ଭୃତ୍ୟ ଶଯ୍ୟା

ବିଛାଇ ଦେଇ ଦୀପଟିଏ ଜାଳିଦେଇଗଲା । ମୃଗାଙ୍କଦତ୍ତ ଭିତରୁ କିଳିଣୀ ଦେଇ ପଞ୍ଜୁରି ମଧ୍ୟରେ ଥିବା ମୟୂର ପ୍ରତି ଦୃଷ୍ଟିପାତ କଲେ । ପ୍ରତିହାର ପରଦିନ ମାୟାବଟୁଙ୍କୁ ମୟୂରର ନୃତ୍ୟ ଦେଖାଇବାପାଇଁ କହିଥିବା କଥା ତାଙ୍କର ସ୍ମରଣ ହେଲା । ଏହାକୁ ହିଁ ସେହି ଅପୂର୍ବ ମୟୂର ମନେକରି କୌତୂହଳବଶତଃ ମୃଗାଙ୍କଦତ୍ତ ପଞ୍ଜୁରିର ଦ୍ୱାର ଖୋଲିଦେଲେ । ମୟୂରଟି ପଞ୍ଜୁରି ବାହାରକୁ ଆସି ଚତୁର୍ଦ୍ଦିଗ ନିରୀକ୍ଷଣ କରିବାକୁ ଲାଗିଲା । ମୃଗାଙ୍କଦତ୍ତଙ୍କୁ ଏକାକୀ ଏବଂ ପ୍ରକୋଷ୍ଠ ନିର୍ଜ୍ଜନ ଦେଖି ସେ ତାଙ୍କ ପାଦତଳେ ପଡ଼ି ବାରମ୍ବାର ପ୍ରଣିପାତ କଲା । ପାଦତଳେ ଗଡୁଥିବା ମୟୂରର ଗଳାରେ ସୂତ୍ରଟିଏ ବନ୍ଧାଥିବା ଦେଖି ମୃଗାଙ୍କଦତ୍ତ ଭାବିଲେ ତାହା ବୋଧହୁଏ ମୟୂରଟିକୁ କଷ୍ଟ ଦେଉଛି । ତେଣୁ ସେ ସୂତ୍ରଟିକୁ ଖୋଲିଦେଲେ । ସୂତ୍ରଟି ଖୋଲିବାମାତ୍ରେ ମୃଗାଙ୍କଦତ୍ତଙ୍କୁ ହତଚକିତ କରି ମୟୂରଟି ତାଙ୍କ ମନ୍ତ୍ରୀ ଭୀମପରାକ୍ରମଙ୍କ ରୂପଧାରଣ କଲା । ରାଜକୁମାର ତାଙ୍କୁ ତଳୁ ଉଠାଇ ବାହୁପାଶରେ ଆବଦ୍ଧ କଲେ । ଆଶ୍ଚର୍ଯ୍ୟର ସହିତ ଏସବୁର ରହସ୍ୟ ଜାଣିବାପାଇଁ କୌତୂହଳୀ ହୋଇଉଠୁଥିବା ଦେଖି ଭୀମପରାକ୍ରମ ପ୍ରସନ୍ନ ଚିତ୍ତରେ କହିବା ଆରମ୍ଭ କଲେ—

## ଭୀମପରାକ୍ରମଙ୍କ ବିଚିତ୍ର ଅନୁଭୂତି

ମୋର ବିଚିତ୍ର ଅନୁଭୂତି ସମ୍ପର୍କରେ ଜାଣିବାପାଇଁ ଆପଣଙ୍କର ଉତ୍କଣ୍ଠା ମୁଁ ବୁଝିପାରୁଛି । ତେଣୁ ଆରମ୍ଭରୁ ଏପର୍ଯ୍ୟନ୍ତ ମୋର ସମସ୍ତ ବିଚିତ୍ର ଅନୁଭବ ଶୁଣିବା ହୁଅନ୍ତୁ ।

ନାଗରାଜ ପାରାବତଙ୍କ ଅଭିଶାପରୁ ଆପଣଙ୍କଠାରୁ ବିଚ୍ଛିନ୍ନ ହୋଇ ମୁଁ ଅରଣ୍ୟ ମଧ୍ୟରେ ଏଣେତେଣେ ବୁଲୁଥାଏ । ବୁଲିବୁଲି ମୁଁ ଯାଇ ଗୋଟିଏ ଶାଳ୍ମଳୀ ବୃକ୍ଷ ନିକଟରେ ପହଞ୍ଚିଲି । ବୃକ୍ଷଟିରେ ଗଣେଶଙ୍କର ଗୋଟିଏ ପ୍ରତିମା ଖୋଦିତ ହୋଇଥାଏ । ତାଙ୍କୁ ପ୍ରଣାମ ଜଣାଇ ବିଶ୍ରାମ କରିବା ନିମିତ୍ତ ବୃକ୍ଷର ପାଦଦେଶରେ ବସିଗଲି । ମୁଁ ସେଠାରେ ବସି ନିଜକୁ ଧିକ୍‌କାର କରୁଥାଏ । ରାତିରେ ଦେଖିଥିବା ବେତାଳର ବୃତ୍ତାନ୍ତ ପ୍ରଭୁଙ୍କୁ କହିବା ଉଚିତ ନଥିଲା ବୋଲି ମୋର ପଶ୍ଚାତ୍ତାପ ହେଲା । ସେଥିପାଇଁ ମୁଁ ପ୍ରାଣ ବିସର୍ଜନ କରିବା ନିମିତ୍ତ ନିଶ୍ଚୟ କଲି ଏବଂ ନିରାହାରରେ ସେହି ଦେବ ପ୍ରତିମା ସମ୍ମୁଖରେ ବସିରହିଲି ।

ଖାଦ୍ୟପାନୀୟ ପରିତ୍ୟାଗ ପୂର୍ବକ ସେଠାରେ ପଡ଼ିରହିଥିବା ବେଳେ ଜଣେ ବୃଦ୍ଧ ପଥିକ ଆସି ସେହି ବୃକ୍ଷର ଛାୟାରେ ଆଶ୍ରୟ ନେଲେ । ମୋତେ ଦେଖି ସେହି ସଜ୍ଜନ ମୋର ପରିଚୟ ଏବଂ ଏହି ନିର୍ଜ୍ଜନ ଅରଣ୍ୟ ମଧ୍ୟରେ ଏକାକୀ ଏପରି ନିଶ୍ଚେଷ୍ଟ ଭାବରେ

ପଡ଼ିରହିଥିବାର କାରଣ ଜିଜ୍ଞାସା କଲେ । ମୁଁ ତାଙ୍କୁ ନିଜର ସମଗ୍ର ବୃତ୍ତାନ୍ତ ଶୁଣାଇଲି । ସେ ପ୍ରସନ୍ନତାପୂର୍ବକ ମୋତେ ଧୈର୍ଯ୍ୟ ଓ ଆଶ୍ୱାସନା ଦେଇ କହିଲେ, 'ଜଣେ ବୀର ପୁରୁଷ ହୋଇ ସ୍ତ୍ରୀମାନଙ୍କ ପରି ଆତ୍ମହତ୍ୟା କରିବା ନିମିତ୍ତ ଚିନ୍ତା କରିବା ତୁମ ପକ୍ଷରେ ଉଚିତ ନୁହେଁ । ଅନେକ ସମୟରେ ବିପଦରେ ପଡ଼ି ସୁଦ୍ଧା ନାରୀମାନେ ଧୈର୍ଯ୍ୟହୀନା ହୁଅନ୍ତି ନାହିଁ । ଏ ସମ୍ପର୍କରେ ତୁମକୁ ଗୋଟିଏ ଗଳ୍ପ କହୁଛି ଶୁଣ—

## କମଳାକର କଥା

'କୋଶଳ ନାମରେ ଏକ ନଗରୀ ଅଛି । ସେଠାରେ ବିମଳାକର ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କ ପୁତ୍ରର ନାମ ଥିଲା କମଳାକର । ତାଙ୍କୁ ଦେଖିଲେ ମନେହେଉଥିଲା ସତେ ଯେପରି ବିଧାତା ତେଜ, ରୂପ ଓ ଦାନଶୀଳତାରେ କାର୍ତ୍ତିକେୟ, କନ୍ଦର୍ପ ଏବଂ କଳ୍ପବୃକ୍ଷକୁ ଅତିକ୍ରମ କରାଇବାପାଇଁ ପୁତ୍ରଟିର ସୃଷ୍ଟି କରିଥିଲେ । ପ୍ରତିଦିନ ବିଭିନ୍ନ ଦେଶରୁ ଭାଟ ଓ ଚାରଣମାନେ ଆସି ତାଙ୍କ ସ୍ତୁତି ଗାନ କରିଥାନ୍ତି । ଦିନେ ତାଙ୍କର ପରିଚିତ ଜଣେ ବନ୍ଦୀ ତାଙ୍କ ସମ୍ମୁଖରେ ବାରମ୍ବାର ଗୋଟିଏ ଦୋହା ଦୋହରାଇଲା । ଦୋହାଟିର ଅର୍ଥ ଥିଲା, 'ଯେଉଁ ପୁଷ୍କରିଣୀ ପଦ୍ମପୁଷ୍ପମାନଙ୍କ ବିକାଶରେ ଉତ୍ସବମୁଖର ଏବଂ ବିବିଧ ପକ୍ଷୀମାନଙ୍କ କଳରବରେ ସଙ୍ଗୀତମୁଖର, ସେହି ପୁଷ୍କରିଣୀରେ କ୍ରୀଡ଼ା ନକଲେ ହଂସାବଳୀ କିପରି ବା ସୁଖୀ ହୋଇପାରିବେ ।'

ରାଜକୁମାର ମନୋରଥସିଦ୍ଧି ନାମକ ଏହି ବନ୍ଦୀକୁ ଦୋହାଟି ବାରମ୍ବାର ଆବୃତ୍ତି କରିବାର କାରଣ ପଚାରନ୍ତେ ସେ କହିଲା—

'ଦେବ, ବିଭିନ୍ନ ରାଜ୍ୟ ଭ୍ରମଣ କରି ରାଜା ମେଘମାଳୀ ରାଜତ୍ୱ କରୁଥିବା ବିଦିଶା ନଗରୀରେ ଯାଇ ପହଞ୍ଚିଲି । ନଗରୀଟି ଶୋଭାର ଅଧିଷ୍ଠାତ୍ରୀ ମହାଲକ୍ଷ୍ମୀଙ୍କ କ୍ରୀଡ଼ା ବାଟିକା ବୋଲି ମନେହେଉଥିଲା । ସେଠାରେ ଦର୍ଦ୍ଦୁରକ ନାମକ ଜଣେ ସଙ୍ଗୀତାଚାର୍ଯ୍ୟଙ୍କ ଘରେ ରହୁଥିଲି । ଦିନେ କଥାବାର୍ତ୍ତା ମଧ୍ୟରେ ସେ କହିଲେ ଯେ ରାଜାଙ୍କର କନ୍ୟା ହଂସାବଳୀଙ୍କୁ ସେ ଏକ ଅଭିନବ ନୃତ୍ୟ ଶିକ୍ଷା ଦେଇଛନ୍ତି । ପରଦିନ ପ୍ରଭାତରେ ସେ ପିତାଙ୍କ ସମ୍ମୁଖରେ ତାହା ପ୍ରଦର୍ଶନ କରିବେ । ଦର୍ଦ୍ଦୁରକଙ୍କ କଥାଶୁଣି ମୋର କୌତୂହଳ ଜାଗ୍ରତ ହେଲା । ପରଦିନ କୌଣସି ଆଳରେ ମୁଁ ରାଜପରିବାର ସହିତ ରଙ୍ଗମଣ୍ଡପରେ ଯାଇ ପହଞ୍ଚିଲି । ସେଠାରେ ବାଦ୍ୟର ତାଳରେ ନୃତ୍ୟ କରୁଥିବା କ୍ଷୀଣକଟି ରାଜକୁମାରୀ ହଂସାବଳୀଙ୍କ ସହିତ ମୋର ସାକ୍ଷାତ ହେଲା । ନୃତ୍ୟରତା ରାଜକନ୍ୟାଙ୍କ ପୁଷ୍ପାଭରଣ ଆନ୍ଦୋଳିତ

ହେଉଥିଲା, ପାଣିପଲ୍ଲବ ଉପରକୁ ଉଠି ପୁଣି ଅଧୋମୁଖୀ ହେଉଥିଲା । ମନେହେଉଥିଲା କନ୍ଦର୍ପ ଲତା ସତେ ଯେପରି ଯୌବନରୂପ ବାୟୁ ପ୍ରବାହରେ ସଞ୍ଚାଳିତ ହେଉଅଛି । ତାଙ୍କୁ ଦେଖି ଆପଣଙ୍କ କଥା ସ୍ମରଣ ହେଲା । ମୁଁ ମନେମନେ ଆପଣଙ୍କୁ ହିଁ ତାଙ୍କର ଏକମାତ୍ର ପତି ହେବାପାଇଁ ଯୋଗ୍ୟବିବେଚନା କଲି । ଯଦି ଏପରି କନ୍ୟା ସେହି ଅନୁପମ ରାଜକୁମାରଙ୍କୁ ନମିଳେ ତାହେଲେ କାମଦେବଙ୍କ ପୁଷ୍ପବାଣ ଧାରଣ ବୃଥା ବୋଲି ଭାବୁଥାଏ । ଏଥିପାଇଁ କିଛି ଉପାୟ କରିବା ଲକ୍ଷ୍ୟରେ ନୃତ୍ୟ ଶେଷହେବା ପରେ ମୁଁ ରାଜଭବନର ଦ୍ୱାରଦେଶରେ ଆସି ଉପସ୍ଥିତ ହେଲି । ଦ୍ୱାର ନିକଟରେ ଧଳା କନାଖଣ୍ଡିଏ ଓହଳାଇ ଦେଇ ତା' ଉପରେ ଲେଖିଦେଲି, ରାଜ୍ୟରେ ମୋପରି ଯଦି କେହି ଚିତ୍ରକର ଥାନ୍ତି, ତେବେ ଏହା ଉପରେ ଗୋଟିଏ ଚିତ୍ରାଙ୍କନ କରନ୍ତୁ । ବହୁ ସମୟ ପର୍ଯ୍ୟନ୍ତ କନାଟିକୁ କେହି ନେଲେ ନାହିଁ । ଏ ସମ୍ବାଦ ରାଜାଙ୍କର ମଧ୍ୟ କର୍ଣ୍ଣଗୋଚର ହେଲା । ମୋତେ ଭିତରକୁ ଡକାଇ ନେଇ ରାଜା ତାଙ୍କ କନ୍ୟା ଅନ୍ତଃପୁରର କାନ୍ଥ ଓ ଦ୍ୱାରଗୁଡ଼ିକୁ ଚିତ୍ରିତ କରିବାପାଇଁ ନିଯୁକ୍ତ କଲେ । ହଂସାବଳୀଙ୍କ ଶୟନ କକ୍ଷରେ ମୁଁ ସେବକ ସହିତ ଆପଣଙ୍କର ଏକ ଚିତ୍ର ଅଙ୍କନ କଲି ।

ଚିତ୍ରାଙ୍କନ ସରିବା ପରେ ମୁଁ ଭାବିଲି ଯେ ଯଦି ରାଜକନ୍ୟା ହଂସାବଳୀଙ୍କୁ ସିଧାସଳଖ ଆପଣଙ୍କ କଥା କହିବି ତେବେ ସେ ମୋତେ ଧୂର୍ତ୍ତ ବୋଲି ଭାବିପାରନ୍ତି; ତେଣୁ ଏଥିପାଇଁ ଅନ୍ୟ କିଛି କୌଶଳ ଅବଲମ୍ବନ କରିବା ଉଚିତ ହେବ । ଏହା ନିଶ୍ଚୟ କରି ମୁଁ ସେଠାରେ ଜଣେ ଏପରି ବ୍ୟକ୍ତିଙ୍କ ସହିତ ମିତ୍ରତା କଲି ଯେ ସେ ଯେପରି ବିଶ୍ୱାସୀ ଥିଲେ ସେହିପରି ରୂପବାନ ମଧ୍ୟ ଥିଲେ । କିନ୍ତୁ ତାଙ୍କ ଆଚରଣ ପାଗଳଙ୍କ ପରି ଥିଲା । ତାଙ୍କ ସହିତ କଥାବାର୍ତ୍ତା କରି ମୁଁ ମୋର କୌଶଳକୁ ରୂପ ଦେଲି ।

ଦିନେ ମୋର ଏହି ମିତ୍ର ଗୀତ ଗାଇଗାଇ ଏବଂ ଉଦ୍‌ଭ୍ରାନ୍ତ ପରି ନାଚିନାଚି ରାଜମାର୍ଗରେ ଯାଉଥାନ୍ତି । ରାଜକୁମାରୀ ତାଙ୍କୁ ଦେଖି ନିଜର କ୍ରୀଡ଼ନକ କରି ରଖିବାପାଇଁ ଏହି ପାଗଳପ୍ରାୟ ମିତ୍ରଙ୍କୁ ନିଜର ଅନ୍ତଃପୁର ମଧ୍ୟକୁ ଆମନ୍ତ୍ରଣ କରିନେଲେ । ସେ ସେଠାରେ ଆପଣଙ୍କ ଚିତ୍ରଦେଖି ଅଜସ୍ର ପ୍ରଶଂସା କରିବାକୁ ଲାଗିଲେ । ସେ କହୁଥାନ୍ତି ମୋର ପୂର୍ବ ସୌଭାଗ୍ୟରୁ ଆଜି ଏହି ଚିତ୍ର ପୁରୁଷ କମଳାକରଙ୍କୁ ଏଠାରେ ଦେଖିବାକୁ ପାଇଲି । ତାଙ୍କର କରକମଳରେ ପଦ୍ମ ଓ ଶଙ୍ଖର ଚିହ୍ନ, ଭଗବାନ୍ ରମାପତିଙ୍କ ପରି ସେ ଅନନ୍ତ ଗୁଣ ଓ ବିଭବର ଅଧିକାରୀ । ସତେ ଯେପରି କମଳାକର ଲକ୍ଷ୍ମୀଙ୍କର ନିବାସ ସ୍ଥଳ । ଚିତ୍ରଟି ଦେଖି ଉନ୍ମତ୍ତ ପରି ନାଚୁଥିବା ମିତ୍ରଙ୍କ ପ୍ରଳାପ ଶୁଣି ରାଜକୁମାରୀ ହଂସାବଳୀ

ମୋତେ ପଚାରିଲେ, 'ଏହି ପାଗଳ କହୁଥିବା କଥାର କିଛି ଅର୍ଥ ତମେ ବୁଝିପାରୁଛ ନା ନାହିଁ ? ଏହି ଯେଉଁ ଚିତ୍ରଟି ତମେ ଅଙ୍କନ କରିଛ ତାହା କଳ୍ପିତ ନା କେଉଁ ଜୀବନ୍ତ ପୁରୁଷର ?' ରାଜକୁମାରୀଙ୍କ ସାଗ୍ରହ ଅନୁରୋଧ ଦେଖି ମୁଁ କହିଲି, 'ଯେଉଁ ରାଜକୁମାରଙ୍କ ରୂପ ଐଶ୍ୱର୍ଯ୍ୟରେ ଆକୃଷ୍ଟ ହୋଇ ମୁଁ ଏହି ଚିତ୍ରଟି ଅଙ୍କନ କରିଛି, ତାଙ୍କୁ ଏହି ପାଗଳ ନିଶ୍ଚୟ ପୂର୍ବରୁ କେଉଁଠି ଦେଖିଛି ।' ଏହାକହି ମୁଁ ତାଙ୍କ ନିକଟରେ ଆପଣଙ୍କ ନାମ, ରୂପ, ଗୁଣ ଓ ଐଶ୍ୱର୍ଯ୍ୟ ପ୍ରକାଶ କଲି । ହଂସାବଳୀଙ୍କ ହୃଦୟରେ ଭାବର ଅଙ୍କୁରୋଦ୍‌ଗମ ହେଲା । ଆପଣଙ୍କ ପ୍ରତି ତାଙ୍କ ପ୍ରଣୟରୂପକ ଜଳକଣା ତାକୁ ପଲ୍ଲବିତ କଲା ।

ଏ ସମୟରେ ହଂସାବଳୀଙ୍କ ପିତା ସେଠାରେ ଆସି ଉପସ୍ଥିତ ହେଲେ । ସେ ମିତ୍ରଙ୍କୁ ଏପରି ଉଦ୍ଧତ ଭାବେ ନୃତ୍ୟକରୁଥିବା ଦେଖି ବିରକ୍ତି ପ୍ରକାଶ କଲେ ଏବଂ ଆମ ଦୁହିଁଙ୍କୁ ସେଠାରୁ ବହିଷ୍କାର କରିଦେଲେ ।

ଏହି ଘଟଣାର ଅବ୍ୟବହିତ ପରେ ଆପଣଙ୍କ ପ୍ରତି ଉତ୍କଣ୍ଠିତା ରହି ହଂସାବଳୀ ଦିନକୁ ଦିନ କୃଷ୍ଣପକ୍ଷର ଚନ୍ଦ୍ରମା ପରି କ୍ଷୀଣରୁ କ୍ଷୀଣତାର ହେଉଥାନ୍ତି । ବର୍ତ୍ତମାନ ତାଙ୍କ ଲାବଣ୍ୟର କ୍ଷୀଣମାତ୍ର ଅବଶେଷ ଅଛି । ଅସୁସ୍ଥତାର ଛଳନା କରି ପିତାଙ୍କ ଅନୁଜ୍ଞାକ୍ରମେ ସେ ବର୍ତ୍ତମାନ ଭଗବାନ ବିଷ୍ଣୁଙ୍କ ମନ୍ଦିର ମଧ୍ୟରେ ଏକାନ୍ତ ବାସ କରୁଛନ୍ତି । ଆପଣଙ୍କ ଚିନ୍ତାରେ ସେ ଶୋଇବା ଛାଡ଼ିଦେଲେଣି । ଚନ୍ଦ୍ର ଓ ଜ୍ୟୋତ୍ସ୍ନା ତାଙ୍କ ପାଇଁ ଅସହ୍ୟ । ଦିନରାତି ମଧ୍ୟରେ ଭେଦ ସେ ଆଉ ଜାଣିପାରୁ ନାହାଁନ୍ତି । ଦିନେ ମୋତେ ମନ୍ଦିରରେ ପ୍ରବେଶ କରୁଥିବା ଦେଖି ରାଜକୁମାରୀ ନିକଟକୁ ଡାକି ନେଇ ପାଖରେ ବସାଇଲେ । ବସ୍ତ୍ର ଆଭୂଷଣ ଦେଇ ମୋର ସତ୍କାର କଲେ । ମୁଁ ତାଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ମନ୍ଦିର ବାହାରକୁ ଚାଲିଆସିଲି । ସେ ଦେଇଥିବା ବସ୍ତ୍ରର ପ୍ରାନ୍ତରେ ଗୋଟିଏ ଗାଥା ଲେଖାଥିଲା । ତାହାକୁ ପଢ଼ି ମୁଁ ଆପଣଙ୍କୁ ଶୁଣାଉଛି—

"ପଦ୍ମାସାଦନସୋତ୍‌ସବାନାର୍ମୁଖରଦ୍ୱିଜାଳିପରିଗୀତମ୍
କମଳାକରମପ୍ରାପ୍ତା କ୍ୱ ରତିଂ ହଂସାବଳୀ ଲଭତାମ୍ ।"

ଅର୍ଥାତ୍ ଯେଉଁ କମଳାକର ପୁଷ୍ପିତ କମଳରେ ଉତ୍ସବମୁଖର ଏବଂ ପକ୍ଷୀକୁଳର କୂଜନରେ ସଂଗୀତମୟ ସେହି ପୁଷ୍କରିଣୀ ବ୍ୟତୀତ ହଂସାବଳୀ ଆନନ୍ଦିତ ହେବ କି ?

ଏହି ଗାଥାଟି ପଢ଼ି ମୁଁ ତା'ର ମନୋଭାବ ଜାଣିପାରିଲି । ଏହା ଆପଣଙ୍କ ନିକଟରେ ନିବେଦନ କରିବାପାଇଁ ପୂର୍ବୋକ୍ତ ଗାଥାଟି ବାରମ୍ବାର ଆବୃତ୍ତି କରୁଛି । ଏହା

କହି ସେ ଗାଥା ଲେଖାଥିବା ବସ୍ତ୍ରଟି ପ୍ରଦର୍ଶନ କଲା । ବନ୍ଦୀ ବାକ୍ୟରେ ସେ ଗାଥାଟିକୁ ଦେଖିଲେ । ହଂସାବଳୀ ଶ୍ରବଣ ଓ ଦର୍ଶନେନ୍ଦ୍ରିୟ ମାଧ୍ୟମରେ ତାଙ୍କ ହୃଦୟରେ ପ୍ରବେଶ କରିଗଲେ । କମଳାକର ଏଥିରେ ଅତ୍ୟନ୍ତ ଆନନ୍ଦିତ ହୋଇ ହଂସାବଳୀଙ୍କୁ ପାଇବା ନିମିତ୍ତ ବିଭିନ୍ନ ଉପାୟ ଚିନ୍ତା କରିବାକୁ ଲାଗିଲେ ।

ସଂଯୋଗବଶତଃ ଏ ସମୟରେ ହିଁ ପିତା ବିମଳାକର ପୁତ୍ର ନିକଟରେ ଉପସ୍ଥିତ ହୋଇ କହିଲେ, 'ବତ୍ସ, ଆଳସ୍ୟପରାୟଣ ରାଜାମାନେ ମନ୍ତ୍ରବଦ୍ଧସର୍ପ ପରି ନଷ୍ଟ ହୋଇଯାନ୍ତି । ଥରେ ଏପରି ଅବସ୍ଥା ପ୍ରାପ୍ତ ହେଲେ ପୁନଃଅଭ୍ୟୁଦୟ ସହଜସାଧ୍ୟ ନୁହେଁ । ରାଜସମ୍ପଦ ଉପଭୋଗ କରି ତୁମେ ଏପର୍ଯ୍ୟନ୍ତ ବିଜୟଯାତ୍ରାର କଥା ଚିନ୍ତା କରିନାହଁ । ଏଣୁ ମୁଁ ବଞ୍ଚିଥିବା ଭିତରେ ତୁମେ ଏଥିପାଇଁ ଉଦ୍‌ଯୋଗ କର । ଜୟଯାତ୍ରା କରି ଆମର ପ୍ରବଳଶତ୍ରୁ ଅଙ୍ଗରାଜଙ୍କୁ ପରାଜିତ କର । ସେ ଆମ ରାଜ୍ୟ ଆକ୍ରମଣ କରିବା ନିମିତ୍ତ ଅଙ୍ଗ ଦେଶରୁ ନିଷ୍କ୍ରାନ୍ତ ହେଲେଣି ।' ପିତାଙ୍କ ଉପଦେଶ ବାକ୍ୟକୁ ନିଜ ପ୍ରେୟସୀ ନିକଟକୁ ଯିବା ନିମିତ୍ତ ଅଭିଳାଷ ପୋଷଣ କରୁଥିବା କମଳାକର ଅକୁଣ୍ଠ ସମର୍ଥନ ଜଣାଇଲେ ।

ପିତାଙ୍କଠାରୁ ଉପଦେଶ ଓ ଅନୁଜ୍ଞା ନେଇ କମଳାକର ନିଜର ସେନାବାହିନୀ ସହିତ ପୃଥିବୀ ପୃଷ୍ଠ ଏବଂ ଶତ୍ରୁହୃଦୟକୁ ପ୍ରକମ୍ପିତ କରି ଅଙ୍ଗଦେଶ ଅଭିମୁଖରେ ଜୈତ୍ର ଯାତ୍ରା ଆରମ୍ଭ କଲେ । ବହୁ ଗ୍ରାମ ଓ ନଗର ଅତିକ୍ରମ କରି ସେ ଅଙ୍ଗବାହିନୀର ସମ୍ମୁଖୀନ ହେଲେ । ସେମାନଙ୍କୁ ଆକ୍ରମଣ କରିବାପାଇଁ ପ୍ରସ୍ତୁତ ଦେଖି ସେ ନିଜ ସେନାବାହିନୀକୁ ପ୍ରବଳ ବେଗରେ ପ୍ରତିଆକ୍ରମଣ କରିବାପାଇଁ ନିର୍ଦ୍ଦେଶ ଦେବାସହ ନିଜେ କରବାଳ ହସ୍ତରେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ତାଙ୍କର ରଣକୌଶଳ ଦେଖିଲେ ମନେହେଉଥିଲା ଅଗସ୍ତ୍ୟ ଯେପରି ସମୁଦ୍ରର ଜଳରାଶିକୁ ପାନ କରିଥିଲେ ସେହିପରି ସେ ଅଙ୍ଗରାଜଙ୍କ ସୈନ୍ୟସାଗରକୁ ପିଇଯାଉଛନ୍ତି । ଅଙ୍ଗରାଜ ପରାସ୍ତ ଓ ବନ୍ଦୀ ହେଲେ । ବନ୍ଦୀ ଅଙ୍ଗରାଜଙ୍କୁ ଶୃଙ୍ଖଳାବଦ୍ଧକରି ଏବଂ ତାଙ୍କ ସେନାବାହିନୀକୁ ନିଜର ମୁଖ୍ୟ ସେନାପତି ହସ୍ତରେ ସମର୍ପଣ କରି କମଳାକର ପିତାଙ୍କ ନିକଟକୁ ପ୍ରେରଣ କଲେ । କିନ୍ତୁ ସେ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ ନକରି ଉକ୍ତ ସେନାପତି ଦ୍ୱାରା ପିତାଙ୍କୁ ଜଣାଇଦେଲେ ଯେ ଅନ୍ୟ ଶତ୍ରୁମାନଙ୍କୁ ଜୟ କରିବା ଇଚ୍ଛାରେ ଅଗ୍ରସର ହେଉଛନ୍ତି ।

କମଳାକରଙ୍କ ପ୍ରଚଣ୍ଡ ପରାକ୍ରମ ଏବଂ ତାଙ୍କ ସେନାବାହିନୀର ରଣକୌଶଳ ଦ୍ୱାରା ବହୁ ରାଜା ପରାଜିତ ହେଲେ । ସେମାନଙ୍କ ସେନାବାହିନୀ ରାଜକୁମାରଙ୍କ ସୈନ୍ୟସାଗରରେ ମିଳିତ ହେବାରୁ ତାହା ମହାସାଗରର ରୂପ ଧାରଣ କଲା । ସେ ଏହି

ବିଶାଳ ସେନା ସହିତ ବିଦିଶା ନଗରୀ ନିକଟରେ ଯାଇ ପହଞ୍ଚିଲେ । କିଛି ଦୂରରେ ରହି ସେ ହଂସାବଳୀଙ୍କ ପିତା ମେଘମାଳୀଙ୍କ ନିକଟକୁ ତାଙ୍କ କନ୍ୟାର ପାଣି ଗ୍ରହଣ କରିବାର ଅଭିଳାଷ ନିବେଦନ କରି ଦୂତ ପ୍ରେରଣ କଲେ । ଦୂତ ମୁଖରୁ କମଳାକରଙ୍କ କୁଳୀନତା, ବୀରତ୍ୱ ତଥା ସଦ୍‌ଗୁଣାବଳୀ ସମ୍ପର୍କରେ ଶୁଣି ଏବଂ ସେ ନିଜେ ତାଙ୍କ କନ୍ୟାର ପାଣିପ୍ରାର୍ଥନା କରି ଏତେଦୂର ଆସିଥିବା ଜାଣି ମେଘମାଳୀ ପ୍ରହୃଷ୍ଟ ଚିତ୍ତରେ ସ୍ୱୟଂ ସେଠାରେ ଆସି ପହଞ୍ଚିଲେ । କମଳାକର ତାଙ୍କୁ ଆଦରର ସହିତ ସ୍ୱାଗତ କଲେ । ରାଜା ମେଘମାଳୀ ମଧ୍ୟ କମଳାକରଙ୍କ ଯଥୋଚିତ ଆଥିତ୍ୟସତ୍କାର କରି ନିବେଦନ କଲେ—

ଯେଉଁ କାର୍ଯ୍ୟ ଜଣେ ବ୍ରାହ୍ମଣ ପ୍ରତିହାର ଦ୍ୱାରା ହୋଇପାରିଥାନ୍ତା, ତା'ପାଇଁ ଏତେ କଷ୍ଟ ସ୍ୱୀକାର କରିବାର ଆବଶ୍ୟକତା କ'ଣ ଥିଲା ? ମୁଁ ତୁମ ଉଭୟଙ୍କ ମିଳନ ବହୁପୂର୍ବରୁ ଚାହୁଁଥିଲି । ଏହାର କାରଣ ଯଦି ଜାଣିବା ପାଇଁ ଚାହୁଁଥାଅ, ତେବେ ଶୁଣ—

'ଶୈଶବରେ ହଂସାବଳୀ ଭଗବାନ ବିଷ୍ଣୁଙ୍କ ପୂଜାର୍ଚ୍ଚନା କରୁଥାଏ । ଏହି କୋମଳାଙ୍ଗୀ କନ୍ୟାକୁ ଦେଖି ମୁଁ ସବୁବେଳେ ଏହାର ଅନୁରୂପ ଗୁଣବାନ୍ ବରପାତ୍ରଟିର କଥା ଚିନ୍ତା କରୁଥାଏ । ଏହାର ଅନୁରୂପ ବରପାତ୍ର ମିଳିଲେ ନାହିଁ । ଚିନ୍ତାରେ ମୋ ଆଖିରୁ ନିଦ୍ରା ଦୂରେଇଗଲା । ମୁଁ ମାରାତ୍ମକ ଜ୍ୱରରେ ପୀଡ଼ିତ ହେଲି । ଜ୍ୱର ଶାନ୍ତି ପାଇଁ ମୁଁ ଭଗବାନ୍ ନାରାୟଣଙ୍କ ଉପାସନା କଲି ଏବଂ ମୋର କଷ୍ଟ ଦୂର କରିବାପାଇଁ ପ୍ରାର୍ଥନା କଲି । ଦିନେ ରାତିରେ ଯେତେବେଳେ କ୍ଷଣକ ପାଇଁ ମୋର ଆଖି ଲାଗିଗଲା, ସେତେବେଳେ ସ୍ୱୟଂ ଭଗବାନ୍ ସ୍ୱପ୍ନରେ ଆଦେଶ ଦେଇ କହିଲେ, 'ପୁତ୍ର, ତୋର ଜ୍ୱର ଦୁରାରୋଗ୍ୟ ନୁହେଁ । ଯାହାପାଇଁ ତୁ ଜ୍ୱର ଭୋଗୁଛୁ ସେହି ହଂସାବଳୀର ହସ୍ତ ସ୍ପର୍ଶରେ ତୁ ରୋଗମୁକ୍ତ ହେବୁ । କେବଳ ତୋର ନୁହେଁ, ମୋର ପୂଜାଦ୍ୱାରା ପବିତ୍ରିତ ତା'ର ହସ୍ତଯୁଗଳ ଯାହାକୁ ସ୍ପର୍ଶ କରିବ ସେ ଅସାଧ୍ୟ ଜ୍ୱରରୁ ମୁକ୍ତିଲାଭ କରିବ । ପୁଣି ତା'ର ବିବାହପାଇଁ ମଧ୍ୟ ତୋର ଚିନ୍ତା କରିବା ଅନାବଶ୍ୟକ । କାରଣ ରାଜକୁମାର କମଳାକର ତୋ କନ୍ୟାର ପାଣିଗ୍ରହଣ କରିବ, ଏହା ହିଁ ଭବିତବ୍ୟ' ।

ରାତ୍ରି ଶେଷରେ ଭଗବାନଙ୍କଠାରୁ ଏ ପ୍ରକାର ସ୍ୱପ୍ନାଦେଶ ପାଇ ମୋର ନିଦ ଭାଙ୍ଗିଗଲା । ସେହିଦିନ ହିଁ ହଂସାବଳୀର କରସ୍ପର୍ଶରେ ମୋର ଜ୍ୱରର ପ୍ରକୋପ ଧୀରେ ଧୀରେ ପ୍ରଶମିତ ହୋଇଆସିଲା । ଏହିପରି ତୁମ ଦୁଇଜଣଙ୍କ ସଂଯୋଗ ବିଧାତାଙ୍କ ଦ୍ୱାରା ପୂର୍ବନିର୍ଦ୍ଧାରିତ । ଏଣୁ ହଂସାବଳୀକୁ ମୁଁ ତୁମ ହସ୍ତରେ ସମର୍ପଣ କରିବି ।'

ଏହିପରି ବିବାହ ନିଶ୍ଚିତ କରି ମେଘମାଳୀ ନିଜ ରାଜଧାନୀକୁ ଫେରିଗଲେ । ସେଠାରେ ସେ ଏହି ସମଗ୍ର ବୃତ୍ତାନ୍ତ ଅନ୍ୟମାନଙ୍କୁ ମଧ୍ୟ କହି ଶୁଣାଇଲେ । ହଂସାବଳୀ ମଧ୍ୟ ଲୁଚିଲୁଚି ଏହା ଶୁଣୁଥାନ୍ତି । ପିତାଙ୍କ ସମ୍ମତି ଜାଣି ସେ ନିଜର ଜଣେ ବିଶ୍ୱସନୀୟା ସଖୀକୁ କହିଲେ, 'ତୁ ଗୁପ୍ତରେ ନିକଟସ୍ଥ ସେନାଛାଉଣୀ ମଧ୍ୟକୁ ଯାଇ ବୁଲି ଆସ । ଦେଖିବୁ ସେ, ଏହି ଚିତ୍ରରେ ଥିବା ଏବଂ ମୋର ହୃଦୟ ହରଣ କରିଥିବା ରାଜକୁମାର କି ନୁହଁନ୍ତି ? ସେହି ନାମଧାରୀ ଅନ୍ୟ କୌଣସି ରାଜକୁମାର ମଧ୍ୟ ସେନାବାହିନୀ ନେଇ ଆସିଥାଇ ପାରନ୍ତି, ଏବଂ ପିତା ଭୟରେ ତାଙ୍କ ହସ୍ତରେ କନ୍ୟା ସମର୍ପଣ ପାଇଁ ପ୍ରତିଶ୍ରୁତି ଦେଇପାରିଥାନ୍ତି ।'

ହଂସାବଳୀ ଏହା କହି ସଖୀ କନମଞ୍ଜରୀକୁ ସ୍ୱହସ୍ତରେ ସଜାଇଦେଲା । ରୁଦ୍ରାକ୍ଷମାଳା, ମୃଗଚର୍ମ, ଭସ୍ମ ଓ ଜଟାଧାରଣ କରି କନକମଞ୍ଜରୀ ଜଣେ ବାଳତପସ୍ୱିନୀ ପରି ମନେହେଲା । ଏହି ବେଶରେ ସେ ରାଜକୁମାର କମଳାକରଙ୍କ ସୈନ୍ୟଛାଉଣୀରେ ପ୍ରବେଶକରି ଦ୍ୱାରପାଳ ଦ୍ୱାରା ନିଜର ଆଗମନ ବାର୍ତ୍ତା ରାଜକୁମାରଙ୍କୁ ଜଣାଇଲା । ତାଙ୍କ ନିର୍ଦ୍ଦେଶରେ ଶିବିର ମଧ୍ୟରେ ପ୍ରବେଶ କରି କନ୍ଦର୍ପଙ୍କ ଦିବ୍ୟାସ୍ତ୍ର ତୁଲ୍ୟ ଅପୂର୍ବ ରୂପବାନ୍ ରାଜକୁମାରଙ୍କୁ ଦେଖି ସେ ଆତ୍ମହରା ହୋଇପଡ଼ିଲା । ରାଜକୁମାରଙ୍କ ରୂପବିଭବରେ ସେ ତାଙ୍କ ପ୍ରତି ଯେ କେବଳ ଆକୃଷ୍ଟ ହେଲା ତା' ନୁହେଁ, ସେଠାରେ ହିଁ ସେ ସମାଧିସ୍ଥ ହୋଇଗଲା । ଚେତନା ଲାଭ ପରେ ଉତ୍କଣ୍ଠିତା କନକମଞ୍ଜରୀ ତାଙ୍କୁ ଲାଭ ନକଲେ ତା'ର ଜନ୍ମ ବ୍ୟର୍ଥ ବୋଲି ମନେକଲା । ପରିଣାମ ଯେତେ ଭୟଙ୍କର ହେଲେ ମଧ୍ୟ ସେ ତାଙ୍କୁ ଯେକୌଣସି ଉପାୟରେ ଲାଭ କରିବ ବୋଲି ନିଶ୍ଚୟ କରି ରାଜକୁମାରଙ୍କୁ ଆଶୀର୍ବାଦ ପ୍ରଦାନପୂର୍ବକ ଏକ ମହାମୂଲ୍ୟ ରତ୍ନ ଉପହାର ଦେଲା । ରାଜକୁମାର ଉପହାର ଗ୍ରହଣ କରି ତପସ୍ୱିନୀର ସତ୍କାର କଲେ । କନକମଞ୍ଜରୀ ତାଙ୍କ ସମ୍ମୁଖରେ ଆସନ ଗ୍ରହଣ କରି କହିଲା, 'ମୁଁ ଏହି ଅଦ୍ଭୁତ ରତ୍ନଟିର ଚମତ୍କାର ବହୁବାର ପରୀକ୍ଷା କରିଛି । ଏହା ଧାରଣ କଲେ ଶତ୍ରୁର ସମସ୍ତ ପ୍ରବଳ ଅସ୍ତ୍ର ବ୍ୟର୍ଥ ହେବ । ଆପଣଙ୍କ ବୀରତ୍ୱ ଓ ଗୁଣାବଳୀରେ ପ୍ରୀତ ହୋଇ ମୁଁ ଏହା ଆପଣଙ୍କୁ ସମର୍ପଣ କରିଛି । ଏହା ମୋ ଅପେକ୍ଷା ଆପଣଙ୍କର ଅଧିକ ଉପଯୋଗୀ ।'

ତପସ୍ୱିନୀଠାରୁ ରତ୍ନଟି ଗ୍ରହଣ କରି ରାଜକୁମାର ତାକୁ କିଛି ଭିକ୍ଷା ଦେବାପାଇଁ ଅନୁଚରମାନଙ୍କୁ ନିର୍ଦ୍ଦେଶ ଦେଲେ କିନ୍ତୁ ଏକଭିକ୍ଷାବ୍ରତ ଗ୍ରହଣ କରିଥିବା ଆଳରେ ତପସ୍ୱିନୀ କିଛି ଗ୍ରହଣ କଲାନାହିଁ । ସେ ଶିବିର ବାହାରକୁ ଆସି ନିଜର ଛଦ୍ମବେଶ ତ୍ୟାଗ କଲା ।

କିଛି ସମୟ ଇତସ୍ତତଃ ଭ୍ରମଣ କରି ସେ ଦ୍ରୁତ ପଦରେ ରାଜକୁମାରୀଙ୍କ ନିକଟରେ ଯାଇ ଉପସ୍ଥିତ ହେଲା । ସେ ଅତ୍ୟନ୍ତ ବ୍ୟସ୍ତ ଓ ବିବ୍ରତ ମନେହେଉଥାଏ । ହଂସାବଳୀ ତାକୁ କିଛି ପଚାରିବା ପୂର୍ବରୁ ସେ ମିଥ୍ୟାରେ କହିବା ଆରମ୍ଭ କଲା–

'ରାଜାମାନଙ୍କ ରହସ୍ୟ ଯଦିଓ କହିବା କଥା ନୁହେଁ, ତଥାପି ତୁମପ୍ରତି ମୋ ଅନୁରାଗର ସୀମା ନଥିବା ଯୋଗୁଁ, ମୁଁ ତୁମ ଆଗରେ ତାହା ପ୍ରକାଶ କରୁଛି । ତୁମେ ମୋତେ ତପସ୍ୱିନୀ ବେଶରେ ସଜାଇଦେଲ । ମୁଁ ଯାଇ ରାଜକୁମାରଙ୍କ ଶିବିରରେ ପହଞ୍ଚିଲି । ପହଞ୍ଚିବା ମାତ୍ରେ ଜଣେ ଆସି ମୋତେ ପଚାରିଲା, 'ତମେ ମଧ କ'ଣ ଭୂତ, ପ୍ରେତମାନଙ୍କ ତନ୍ତ୍ରମନ୍ତ୍ର ଜାଣିଛ କି ?' ତା'ଠାରୁ ଏହାଶୁଣି ପ୍ରତିହାର ପରି ମନେହେଉଥିବା ବ୍ୟକ୍ତିଟିକୁ, ଏ ସମ୍ପର୍କରେ ମୁଁ ବହୁତ କିଛି ଜାଣେ ଏବଂ ଏସବୁ ମୋ ବାଁ ହାତର ଖେଳ ବୋଲି ଜଣାଇଲି । ଏହାପରେ ମୋତେ କମଳାକରଙ୍କ ନିକଟକୁ ନିଆଗଲା । ସେଠାରେ ଯାଇ ମୁଁ ଦେଖିଲି ଯେ ରାଜକୁମାର ଅତ୍ୟନ୍ତ ରୁଗ୍ଣ, ତାଙ୍କ ଉପରେ କୌଣସି ପ୍ରେତ ଆବେଶ କରିଛି । ନିକଟରେ ଥିବା ଅନୁଚରମାନେ ତାଙ୍କୁ ସମ୍ଭାଳିବାରେ ଲାଗିଛନ୍ତି । ସେମାନେ ବିଭିନ୍ନ ଔଷଧିଯୁକ୍ତ ମଣିଟିଏ ମଧ ତାଙ୍କ କଣ୍ଠରେ ବାନ୍ଧିଛନ୍ତି । ଏହାଦେଖି ମୁଁ ତାଙ୍କୁ ମିଛରେ ପ୍ରେତବାଧା ଦୂର କରିବାର କିଛି ଉପାୟ କରି ସକାଳେ ଆସି ତାଙ୍କୁ ସମ୍ପୂର୍ଣ୍ଣ ସୁସ୍ଥ କରିବି ବୋଲି ପ୍ରତିଶ୍ରୁତି ପ୍ରଦାନପୂର୍ବକ ସେଠାରୁ ଯଥାଶୀଘ୍ର ଚାଲିଆସିଲି । ଏହିପରି କଳ୍ପନାତୀତ ଅନିଷ୍ଟକର ଘଟଣା ଦେଖି ମୁଁ ଦୁଃଖରେ ଭାଙ୍ଗିପଡ଼ିଲି । ତୁମକୁ ଏସବୁ କଥା ଜଣାଇବି କି ନାହିଁ ଚିନ୍ତା କରୁଥିବା ବେଳେ ତମକୁ ଦେଖିବା ମାତ୍ରେ ମୋ ମୁହଁରୁ ସତକଥା ସବୁ ବାହାରିଗଲା । ବର୍ତ୍ତମାନ ଯାହା ତୁମେ ଠିକ୍ ଭାବୁଛ ତାହା କର ।'

ବଜ୍ରପାତ ପରି ଏହି ଦାରୁଣ ଦୁଃସମ୍ବାଦରେ ହଂସାବଳୀ ବିବ୍ରତା ହୋଇପଡ଼ିଲେ । ସେ ସଖୀକୁ କହିଲେ ସର୍ବଗୁଣସମ୍ପନ୍ନ କରି ସୃଷ୍ଟି କରିଥିବା ବ୍ୟକ୍ତିଟି ପ୍ରତି ସୃଷ୍ଟିକର୍ତ୍ତାଙ୍କ ଏତାଦୃଶ ମତ୍ସରତା ଉଚିତ ହେଲାନାହିଁ । ଅବଶ୍ୟ ଚନ୍ଦ୍ରମାରେ ମଧ ସେ କଳଙ୍କ ରେଖା ଆଙ୍କି ଦେଇଛନ୍ତି । ମୁଁ ତାହାଙ୍କୁ ପତି ରୂପରେ ବରଣ କରିଥିଲି, କିନ୍ତୁ ବର୍ତ୍ତମାନ ତାଙ୍କ ଆଡ଼କୁ ମୁହଁ ଫେରାଇ ଚାହିଁବା ମଧ ଆଉ ସମ୍ଭବ ନୁହେଁ । ବର୍ତ୍ତମାନ ଜୀବନ ବିସର୍ଜ୍ଜନ କରିବା କିମ୍ବା ଅରଣ୍ୟରେ ଯାଇ ତପସ୍ୱିନୀ ଜୀବନଯାପନ କରିବା ବ୍ୟତୀତ ମୋର ଅନ୍ୟ ଗତି ନାହିଁ । ତୁ ହିଁ ଏ ଅବସ୍ଥାରେ ମୋତେ କିଛି ବୁଦ୍ଧି ଦେ ।

ସଖୀଠାରୁ ଏହା ଶୁଣି ମାୟାବିନୀ କନକମଞ୍ଜରୀ ନିଜର ଅଭିଳାଷ ସିଦ୍ଧ ହେବାର ସୂଚନା ଦେଖି ପୁଣି ଉପଦେଶ ଛଳରେ କହିଲା, 'ବର୍ତ୍ତମାନ ଏକମାତ୍ର ଉପାୟ ଅଛି ।

ତୁମେ କୌଣସି ଦାସୀକୁ ନିଜର ବେଶଭୂଷାରେ ଭୂଷିତା କରି ତାଙ୍କ ସହିତ ବିବାହ କରାଇଦିଅ । ବିବାହ ଉତ୍ସବରେ ସମସ୍ତେ ବ୍ୟସ୍ତ ଥିବା ବେଳେ ଆମେ ଏଠାରୁ ପଳାୟନ କରିବା ।' ଏହାଶୁଣି ରାଜକୁମାରୀ ତାର ପ୍ରସ୍ତାବରେ ସମ୍ମତା ହୋଇ ଅନୁରୋଧ କଲେ, 'ସଖି, ତୋ ଅପେକ୍ଷା ମୋର ଆଉ ଅଧିକ ବିଶ୍ୱାସିନୀ ସଖୀ କିଏ ଅଛି ? ତେଣୁ ତୁ ହିଁ ତାଙ୍କୁ ବିବାହ କର ।' ପାପୀଷ୍ଠା କନକମଞ୍ଜରୀ ହଂସାବଳୀଙ୍କୁ ସାନ୍ତ୍ୱନା ଦେଇ କହିଲା, 'ଠିକ୍ ଅଛି, ତାହେଲେ ତୁମେ ନିଶ୍ଚିନ୍ତ ରହ । ମୁଁ କୌଶଳପୂର୍ବକ ଏପରି ହିଁ କରିବି । ତାପରେ ମୋ ଭାଗ୍ୟରେ ଯାହାଥିବ ତାହା ଘଟିବ । କିନ୍ତୁ ଏଥିପାଇଁ ମୁଁ ଯେତେବେଳେ ଯାହା କହିବି ତମେ ସେପରି ହିଁ କରିବ ।'

ରାଜକୁମାରୀ ହଂସାବଳୀଙ୍କୁ ଏପରି ଆଶ୍ୱାସନା ଦେଇ କନକମଞ୍ଜରୀ ନିଜର ବିଶ୍ୱାସିନୀ ଅଶୋକକରୀ ନାମ୍ନୀ ସଖୀ ନିକଟରେ ଯାଇ ପହଞ୍ଚିଲା । ଉଭୟେ ସେହିଦିନଠାରୁ ଉଦାସମନା ହଂସାବଳୀ ନିକଟରେ ଯାଇ ରହିଲେ । ସେ ମଧ୍ୟ ଏମାନଙ୍କର ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥାନ୍ତି ।

ବିବାହ ତିଥି ଆସି ପହଞ୍ଚିଲା । ସଂଧ୍ୟାବେଳେ କମଳାକର ବର ବେଶରେ ଅଶ୍ୱ, ଗଜ, ରଥ ସହିତ ଆସି ପହଞ୍ଚିଲେ । ତାଙ୍କୁ ଦେଖିବା ଏବଂ ସ୍ୱାଗତ କରିବାପାଇଁ ସମସ୍ତେ ଅଧୀର ଓ ଚଞ୍ଚଳ ହୋଇଉଠିଥାନ୍ତି । କନକମଞ୍ଜରୀ କନ୍ୟାକୁ ବେଶଭୂଷିତା କରିବ କହି ଅନ୍ୟ ସମସ୍ତ ଦାସୀ ପରିଚାରୀମାନଙ୍କୁ ଯଥାଶୀଘ୍ର ତାଙ୍କ ନିକଟରୁ ବିଦାୟ କରିଦେଲା । ଏହାପରେ କନକମଞ୍ଜରୀ ହଂସାବଳୀ ଓ ଅଶୋକକରୀଙ୍କୁ ନେଇ ଗୋଟିଏ ଗୁପ୍ତ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲା । ସେଠାରେ ସେ ସ୍ୱୟଂ ହଂସାବଳୀଙ୍କ ବେଶ ଧାରଣ କଲା ଏବଂ ହଂସାବଳୀଙ୍କୁ ଅଶୋକକରୀ ବେଶରେ ସଜାଇଦେଲା । ସଖୀ ଅଶୋକକରୀକୁ ତା ନିଜ ଛଦ୍ମବେଶରେ ସଜାଇଦେଇ ରାତ୍ରି ଦୀର୍ଘ ହେବା ଦେଖି ହଂସାବଳୀଙ୍କୁ କହିଲା, 'ତୁମେମାନେ ପଶ୍ଚିମ ଦ୍ୱାର ଦେଇ ନଗର ବାହାରକୁ ଚାଲିଯିବ । ଗୋଟିଏ କୋଶ ଯିବାପରେ ଦେଖିବ ସେଠାରେ ଏକ ପୁରାତନ ଶାଲ୍ମଳୀ ବୃକ୍ଷ ଅଛି । ତା ଦେହରେ ଥିବା ଏକ ପ୍ରଶସ୍ତ କୋରଡ଼ ମଧ୍ୟରେ ଆତ୍ମଗୋପନ କରି ମତେ ପ୍ରତୀକ୍ଷା କରିବ । ଏଠାର କାର୍ଯ୍ୟ ଶେଷ କରି ମୁଁ ନିଶ୍ଚୟ ଆସି ସେଠାରେ ତୁମମାନଙ୍କୁ ସାକ୍ଷାତ କରିବି ।'

ହଂସାବଳୀ ଚକ୍ରାନ୍ତ ବୁଝିନପାରି କନମଞ୍ଜରୀର ନିର୍ଦ୍ଦେଶାନୁଯାୟୀ ନଗରର ଗହଳଚହଳ ମଧ୍ୟରେ ପଶ୍ଚିମ ଦ୍ୱାର ଦେଇ ନିଷ୍କ୍ରାନ୍ତ ହେଲେ । ଛଦ୍ମବେଶରେ ଥିବା ଯୋଗୁଁ ତାଙ୍କୁ କେହି ଚିହ୍ନିବା ସମ୍ଭବ ହେଲାନାହିଁ । କିଛି ସମୟ ମଧ୍ୟରେ ସେ ଆସି ପୂର୍ବସୂଚିତ ଶାଲ୍ମଳୀ ବୃକ୍ଷ ନିକଟରେ ଉପସ୍ଥିତ ହେଲେ । କିନ୍ତୁ ଗଭୀର ଅନ୍ଧକାର ଯୋଗୁଁ ଭୟଭୀତ

ହୋଇ କୋରଡ଼ ମଧ୍ୟରେ ପ୍ରବେଶ କରିବା ନିମିତ୍ତ ତାଙ୍କର ସାହସ ହେଲାନାହିଁ । ନିକଟସ୍ଥ ଗୋଟିଏ ବଟବୃକ୍ଷ ଉପରେ ଚଢ଼ିଯାଇ ପତ୍ରଗହଳ ମଧ୍ୟରେ ନିଜକୁ ଲୁକ୍‌କାୟିତ ରଖି ସଖୀର ଅପେକ୍ଷା କଲେ । ସରଳମନା ବ୍ୟକ୍ତିମାନେ ଅନ୍ୟର କୁଚକ୍ରାନ୍ତ ସହଜରେ ଜାଣିପାରନ୍ତି ନାହିଁ ।

ଏଣେ ରାଜଭବନରେ ଉତ୍ସବ ଚାଲିଥାଏ । ଲଗ୍ନ ସମୟ ଉପସ୍ଥିତ ହେବାରୁ ହଂସାବଳୀଙ୍କ ଛଦ୍ମବେଶରେ ଥିବା କନମଞ୍ଜରୀକୁ ରାଜା କମଳାକର ହସ୍ତରେ ସମର୍ପଣ କଲେ । ପାପିନୀ ନିଜ ମୁଖକୁ ଓଢ଼ଣା ଦ୍ୱାରା ସଯତ୍ନରେ ଆବୃତ କରି ରଖିଥିବା ଯୋଗୁଁ କେହି ତାକୁ ଚିହ୍ନିପାରିଲେ ନାହିଁ ।

ବିବାହ ଶେଷ ହେଲା । ସେହି ମୁହୂର୍ତ୍ତରେ ହିଁ ବିଦାୟ ଲଗ୍ନ ମଧ୍ୟ ଥିବାରୁ ରାଜା ମେଘମାଳୀ ଛଦ୍ମବେଶିନୀ କନକମଞ୍ଜରୀ ଏବଂ କନକମଞ୍ଜରୀର ଛଦ୍ମବେଶରେ ଥିବା ଅଶୋକକରୀକୁ ବିଦାୟ ଦେଲେ । କମଳାକର ଏମାନଙ୍କ ସହିତ ସେହି ପଶ୍ଚିମଦ୍ୱାର ଦେଇ ନିଜ ଶିବିରକୁ ଯାତ୍ରା କରୁଥିବା ବେଳେ ମାର୍ଗରେ ଥିବା ସେହି ଶାଳ୍ମଳୀ ବୃକ୍ଷର ନିକଟବର୍ତ୍ତୀ ହେଲେ । କନକମଞ୍ଜରୀ କମଳାକର ସହିତ ଗୋଟିଏ ହସ୍ତୀ ପୃଷ୍ଠରେ ହିଁ ବସିଥାଏ । ବୃକ୍ଷର ପାଦଦେଶରେ ପହଞ୍ଚିବା ମାତ୍ରେ ସେ ମିଥ୍ୟା ଭୟରେ ରାଜକୁମାରଙ୍କୁ ନିବିଡ଼ ଆଲିଙ୍ଗନପାଶରେ ଆବଦ୍ଧ କଲା । କମଳାକର ଏପରି ଭୟଭୀତ ହେବାର କାରଣ ଜିଜ୍ଞାସା କରନ୍ତେ ହଂସାବଳୀଙ୍କ ଛଦ୍ମବେଶରେ ଥିବା ପାପୀଷ୍ଠା ମିଥ୍ୟା ଅଶ୍ରୁ ବିସର୍ଜନ ପୂର୍ବକ କହିଲା, 'ଆର୍ଯ୍ୟପୁତ୍ର, ମୁଁ ସ୍ୱପ୍ନରେ ଦେଖିଥିଲି ଯେ ଏହି ଶାଳ୍ମଳୀ ବୃକ୍ଷର କୋରଡ଼ରୁ ଗୋଟିଏ ରାକ୍ଷସୀ ତୁଲ୍ୟ ନାରୀ ନିର୍ଗତ ହୋଇ ବଧୂବେଶରେ ଯାଉଥିବା ମୋତେ ଖାଇବା ପାଇଁ ଗୋଡ଼ାଇଲା । ସେତେବେଳେ ଜଣେ ବ୍ରାହ୍ମଣ ଆସି ତା'ଠାରୁ ମୋତେ ରକ୍ଷା କଲେ । କହିଲେ, 'ପୁତ୍ରି, ତୁ ଏହି ବୃକ୍ଷଟିକୁ ଜଳାଇଦେ । ଯଦି ତା' ଭିତରୁ କୌଣସି ସ୍ତ୍ରୀ ବାହାରକୁ ଆସେ, ତା'ହେଲେ, ତାକୁ ମଧ୍ୟ ସେହି ଅଗ୍ନିରେ ପୋଡ଼ିଦେବୁ' ।'

ଏହିପରି ମୋର ମଙ୍ଗଳକାମନା କରି ସେହି ବ୍ରାହ୍ମଣ ଅନ୍ତର୍ହିତ ହୋଇଗଲେ; ମୋର ମଧ୍ୟ ନିଦ ଭାଙ୍ଗିଗଲା । ବର୍ତ୍ତମାନ ବୃକ୍ଷଟିକୁ ଦେଖି ସେହି କଥା ସ୍ମରଣ ହେବାରୁ ମୁଁ ଏପରି ଭୟଭୀତା ହୋଇପଡ଼ିଛି ।

କମଳାକର ଛଦ୍ମବେଶିନୀ ନବବଧୂର ସନ୍ତୋଷ ବିଧାନପାଇଁ ବୃକ୍ଷ ସହିତ ତା' ମଧ୍ୟରେ ଥିବା ନାରୀଟିକୁ ମଧ୍ୟ ଜାଳିଦେବା ପାଇଁ ଅନୁଚରମାନଙ୍କୁ ନିର୍ଦ୍ଦେଶ ଦେଲେ । ଅନୁଚରମାନେ ବୃକ୍ଷଟିରେ ଅଗ୍ନି ସଂଯୋଗ କଲେ । ତା' ମଧ୍ୟରୁ କୌଣସି ନାରୀ ବାହାରକୁ

ବାହାରୁନଥିବା ଦେଖି କନକମଞ୍ଜରୀ ପ୍ରକୃତ ହଂସାବଳୀ ତା' ମଧ୍ୟରେ ଦଗ୍ଧୀଭୂତ ହୋଇଯାଇଛି ବୋଲି ମନେକଲା ।

ହଂସାବଳୀଙ୍କ ମୃତ୍ୟୁରେ କନକମଞ୍ଜରୀ ନିଜର ଅଭୀଷ୍ଟ ସିଦ୍ଧ ହୋଇଥିବା ଯୋଗୁଁ ଅତ୍ୟନ୍ତ ଆନନ୍ଦିତ ହେଲା । କମଳାକର ମଧ୍ୟ ତାହାକୁ ପ୍ରକୃତ ହଂସାବଳୀ ମନେକରି ନିଜ ଶିବିରରେ ଯାଇ ପହଞ୍ଚିଲେ । ପରଦିନ ପ୍ରଭାତରୁ ସେ ନିଜର ନବପରିଣୀତା ପତ୍ନୀ ଓ ସେନାବାହିନୀ ସହିତ ନିଜ ରାଜଧାନୀ କୋଶଳାପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ପିତା ବିମଳାକର ପୁତ୍ରର ରାଜୋଚିତ କାର୍ଯ୍ୟରେ ପ୍ରୀତ ହୋଇ ରାଜ୍ୟଭାର ସମର୍ପଣ ପୂର୍ବକ ବାନପ୍ରସ୍ଥ ଅବଲମ୍ବନ କଲେ ।

କମଳାକର ଛଦ୍ମବେଶିନୀ ହଂସାବଳୀ ସହ ପ୍ରସନ୍ନ ଚିତ୍ତରେ ରାଜ୍ୟ ଶାସନ କରୁଥାନ୍ତି । କନକମଞ୍ଜରୀକୁ ଚିହ୍ନିଥିବା ଚାରଣ ମନୋରଥସିଦ୍ଧି ନିଜଜୀବନ ପ୍ରତି ବିପଦର ଆଶଙ୍କା କରି ରାଜଭବନଠାରୁ ଦୂରେଇ ରହୁଥାଏ ।

ଏଣେ ହଂସାବଳୀ ମଧ୍ୟ ବଟବୃକ୍ଷର ପତ୍ରଗହଳ ମଧ୍ୟରୁ ସମସ୍ତ ଘଟଣା ଦେଖି ଏବଂ କନକମଞ୍ଜରୀର ଛଳନାପୂର୍ଣ୍ଣ କଥାଶୁଣି ନିଜେ ଠକିଯାଇଥିବା ଉପଲବ୍ଧି କଲେ । କମଳାକର ସେଠାରୁ ଚାଲିଯିବା ପରେ ସେ ଚିନ୍ତାକଲେ ଯେ ମୋର ଏହି ପାପିନୀ ସଖୀ ମୋର ପ୍ରିୟତମକୁ ମୋଠାରୁ ଛଡ଼ାଇ ନେଇଛି । ଏପରିକି ମୋତେ ଜୀବନ୍ତ ଦଗ୍ଧକରି ସେ ନିଶ୍ଚିନ୍ତ ହେବାପାଇଁ ଚାହୁଁଥିଲା । ପ୍ରକୃତରେ ଦୁର୍ଜନମାନଙ୍କ ସହିତ ବନ୍ଧୁତା କାହାର ବା ଅନିଷ୍ଟ କରିନଥାଏ ।

ଅଶ୍ରେୟସେ ନ ବା କସ୍ୟ ବିଶ୍ୱାସୋ ଦୁର୍ଜନେ ଜନେ ।

ମୋ ପାଇଁ ହିଁ ଶାଳ୍ମଳୀ ବୃକ୍ଷଟିକୁ ଜଳାଇ ଦିଆଗଲା । ଏଣୁ ବୃକ୍ଷଟିର ଋଣ ପରିଶୋଧ କରିବାପାଇଁ ନିଜକୁ ସେହି ଅଗ୍ନି ମଧ୍ୟରେ ବିସର୍ଜ୍ଜନ ଦେବା ଉଚିତ ହେବ ।

ଏହିପରି ଚିନ୍ତାକରି ସେ ବୃକ୍ଷଶାଖାରୁ ଅବତରଣ କଲେ । ଆତ୍ମାହୁତି ଦେବାକୁ ଯାଉଥିବା ବେଳେ ତାଙ୍କର ବିବେକ ତାଙ୍କୁ ବାଧାଦେଲା । ବିଧାତା ତାଙ୍କୁ ମୃତ୍ୟୁମୁଖରୁ ବଞ୍ଚାଇ ଦେଲେ । ସେ ମନେମନେ ଚିନ୍ତା କଲେ, 'ଜୀବନ ବିସର୍ଜ୍ଜନ କଲେ କ'ଣ ବା ଲାଭ ହେବ ? ମୁଁ ଯଦି ଜୀବିତ ରହେ ତେବେ ମୋ ସହିତ କୃତଘ୍ନତା କରିଥିବା ଏହି ସଖୀର ପ୍ରତିଶୋଧ ନେଇପାରିବି । ପିତା ଅସାଧ ଜ୍ୱରରେ ପୀଡ଼ିତ ଥିବାବେଳେ ଭଗବାନ ବିଷ୍ଣୁ ମୋର କରସ୍ପର୍ଶରେ ସେ ଆରୋଗ୍ୟ ଲାଭ କରିବେ ବୋଲି କହିଥିଲେ । ସେତେବେଳେ ସେ ଏହା ମଧ୍ୟ କହିଥିଲେ ଯେ କମଳାକରଙ୍କ ସହିତ ହିଁ ମୋର ବିବାହ ହେବ । ଏଣୁ ମୁଁ

ନିଶ୍ଚିତ ଭାବେ ତାଙ୍କୁ ଦିନେ ନା ଦିନେ ପତି ରୂପେ ଲାଭ କରିବି । କିନ୍ତୁ କିଛି ସମୟ ପାଇଁ କଷ୍ଟ ସହ୍ୟ କରିବାକୁ ପଡ଼ିବ । ଏଣୁ ଭବିତବ୍ୟ ପାଇଁ ଅପେକ୍ଷା କରିବା ହିଁ ମୋ ପକ୍ଷରେ ଉଚିତ ହେବ ।'

ଏହିପରି ନିଶ୍ଚୟ କରି ହଂସାବଳୀ ନିର୍ଜନ ବନମାର୍ଗରେ ଅଗ୍ରସର ହେଲେ । ବହୁଦୂରପଥ ଅତିକ୍ରମ କଲାପରେ ତାଙ୍କର ପାଦ ଆଉ ସ୍ଥିର ଭାବରେ ପଡ଼ିପାରିଲା ନାହିଁ, ସେ କ୍ଲାନ୍ତ ହୋଇପଡ଼ିଲେ । ତାଙ୍କ ଉପରେ ଦୟାକରି ରଜନୀରାଣୀ ଯେପରି ନିଜକୁ ନିଃଶେଷ କରିଦେଲେ । ଆକାଶ ତାଙ୍କର ଶ୍ରାନ୍ତି ଦୂର କରିବାପାଇଁ ତୁଷାରବିନ୍ଦୁ ସିଞ୍ଚନ କଲା । ଗୁଣିଗଣ ବନ୍ଧୁ ଭଗବାନ ସୂର୍ଯ୍ୟଦେବ ତାଙ୍କ ଚକ୍ଷୁରୁ ଅଶ୍ରୁ ନିବାରଣ କରିବା ପାଇଁ ନିଜର କୋମଳ କିରଣ ରୂପକ ଅଙ୍ଗୁଳି ବଢ଼ାଇଦେଲେ । କେବଳ ସେତିକି ନୁହେଁ, ସେ ଆହୁରି ଉପରକୁ ଉଠି ମାର୍ଗଦର୍ଶନରେ ତାଙ୍କୁ ସାହାଯ୍ୟ କଲେ । ଏହିପରି ପ୍ରକୃତିଦ୍ୱାରା ଆଶ୍ୱାସିତା ହୋଇ କୌଣସି ଜନମାନବ ଦର୍ଶନର ଆଶା ନରଖି ସେ ଅରଣ୍ୟ ପଥରେ ଚାଲିବାକୁ ଲାଗିଲେ । ତାଙ୍କର ଶରୀର କୁଶ ଓ କଣ୍ଟକ ଦ୍ୱାରା କ୍ଷତବିକ୍ଷତ ହୋଇଯାଇଥାଏ । ସେ ଘନଘନ ନିଶ୍ୱାସ ତ୍ୟାଗ କରୁଥାନ୍ତି । ଏ ସମୟରେ ତାଙ୍କର ମନହେଲା, ସମ୍ମୁଖସ୍ଥ ଅରଣ୍ୟ ତାଙ୍କୁ ପକ୍ଷୀମାନଙ୍କର କାକଳିରେ ସ୍ୱାଗତ କରୁଛି । ଶ୍ରାନ୍ତକ୍ଲାନ୍ତ ହଂସାବଳୀ ତା' ମଧ୍ୟରେ ପ୍ରବେଶ କଲେ । ବାୟୁର ହିଲ୍ଲୋଳରେ ସଞ୍ଚାଳିତ ଶାଖା ଓ ପତ୍ରଗୁଡ଼ିକ ତାଙ୍କର ବ୍ୟଜନ କରିବାକୁ ଲାଗିଲେ । ବସନ୍ତରେ ମଞ୍ଜରିତ ଚୂତ ଶାଖା ଉପରେ କୂଜନ କରୁଥିବା କୋକିଳମାନେ ତାଙ୍କୁ ମଧୁର ସଙ୍ଗୀତ ଶୁଣାଇଲେ ।

ଅରଣ୍ୟର ଏହି ଶୋଭା କିନ୍ତୁ ଉଦାସିନୀ ହଂସାବଳୀଙ୍କ ମନରେ କୌଣସି ଭାବାନ୍ତର ସୃଷ୍ଟି କରିପାରିଲା ନାହିଁ । ସେ ମନେମନେ ଚିନ୍ତା କଲେ ଯେ ଏଠାରେ ପୁଷ୍ପରାଗ ସମାକୀର୍ଣ୍ଣ ମଳୟାନିଳ ମୋତେ ଅଗ୍ନିପରି ଦଗ୍ଧ କରିବ । ଭ୍ରମରମାନଙ୍କ ଗୁଞ୍ଜରଣ ମଧ୍ୟରେ ବୃକ୍ଷରୁ ଝରିପଡୁଥିବା ପୁଷ୍ପଗୁଚ୍ଛ ଗୁଡ଼ିକ କନ୍ଦର୍ପର ଅପ୍ରତିହତ ବାଣ ପରି ମୋତେ କ୍ଷତବିକ୍ଷତ କରିବେ । ତଥାପି ଏହି ପୁଷ୍ପଗୁଚ୍ଛ ଦ୍ୱାରା ଉପସ୍ଥିତ ମଧୁମାସରେ ଭଗବାନ ମାଧବଙ୍କ ଉପାସନା ପୂର୍ବକ ସମସ୍ତ ପ୍ରାରବ୍ଧ ପାପ କ୍ଷାଳନ କରି ଏହିଠାରେ ହିଁ ବାସ କରିବି । ଏହିପରି ମନସ୍ଥ କରି କମଳାକରଙ୍କୁ ପାଇବାପାଇଁ ହଂସାବଳୀ ପ୍ରତ୍ୟହ ନିକଟସ୍ଥ ପୁଷ୍କରିଣୀରେ ନିତ୍ୟକର୍ମ ସମାପନ ପୂର୍ବକ ଭଗବାନ ମାଧବଙ୍କୁ ପୂଜା ଏବଂ ତାଙ୍କୁ ସମର୍ପିତ ଫଳମୂଳ ଭୋଜନ କରି ସେଠାରେ ଉପଯୁକ୍ତ ସମୟର ପ୍ରତୀକ୍ଷା କରୁଥାନ୍ତି ।

ଏଣେ କୋଶଳା ନଗରୀରେ କମଳାକର ହଠାତ୍ ପାଳିଜ୍ୱରରେ ପୀଡ଼ିତ ହୋଇପଡ଼ିଲେ । ଏହା ଦେଖି ଛଦ୍ମବେଶରେ ଥିବା ହଂସାବଳୀର ଚିନ୍ତା ବଢ଼ିଗଲା । ଏକ ଦିଗରେ କାଳେ ଅଶୋକକରୀ ତା'ର ସମସ୍ତ ଗୁପ୍ତ ରହସ୍ୟ ପ୍ରକଟନ କରିଦେବାର ଭୟ, ଅନ୍ୟ ଦିଗରେ କମଳାକରଙ୍କ ଅସାଧ ଜ୍ୱର । ମେଘମାଳୀ ସମସ୍ତଙ୍କ ସମ୍ମୁଖରେ ହିଁ ପ୍ରକାଶ କରିଥିଲେ ଯେ ତାଙ୍କ କନ୍ୟାର ହସ୍ତ ସ୍ପର୍ଶରେ ଯେ କେହି ଅସାଧ ଜ୍ୱର ରୋଗରୁ ମୁକ୍ତିଲାଭ କରିବେ । କମଳାକରଙ୍କର ଯଦି ଏହି କଥା ସ୍ମରଣ ହୁଏ ତେବେ ତା' ଅବସ୍ଥା ସରିବ । କାରଣ ତା' ହସ୍ତରେ ସେ ଶକ୍ତି ନାହିଁ । ତା' ଦ୍ୱାରା ଯଦି ତାଙ୍କର ଅସାଧ ଜ୍ୱର ପ୍ରଶମିତ ନ ହୁଏ, ତେବେ ତା'ର ସମସ୍ତ ଚକ୍ରାନ୍ତ ପ୍ରଘଟ ହୋଇଯିବ । ଏଣୁ ସେ ବିଧିପୂର୍ବକ ଜ୍ୱରରୋଗର ଆରୋଗ୍ୟ ନିମିତ୍ତ ଜ୍ୱରଘ୍ନ ମନ୍ତ୍ର ସିଦ୍ଧିକରଣ ପାଇଁ ନିଶ୍ଚୟ କଲା । ଏହି ମନ୍ତ୍ରଟି ଜଣେ ଯୋଗିନୀ ଅତୀତରେ ତାକୁ ଶିକ୍ଷା ଦେଇଥିଲେ । ଏଥିପାଇଁ ମନୁଷ୍ୟ ରକ୍ତର ଅର୍ଘ୍ୟ ଦେବାକୁ ପଡ଼ିଥାଏ । ପତିଙ୍କ ଅନୁଜ୍ଞା ନେଇ ଏହି ସୁଯୋଗରେ ଅଶୋକକରୀକୁ ମଧ ହତ୍ୟା କରାଯାଇପାରିବ । ତା'ର ପ୍ରେମରେ ବଶୀଭୂତ କମଳାକର ଏଥିରେ ପ୍ରତିବନ୍ଧକ ହେବେ ନାହିଁ । ରାଜା ରୋଗମୁକ୍ତ ହେଲେ ଏବଂ ଅଶୋକକରୀ ନିହତ ହେଲେ ତା'ର ସମସ୍ତ ଚିନ୍ତା ଦୂର ହେବ ।

ଏହିପରି ଚିନ୍ତାକରି ସେ ଅଶୋକକରୀକୁ ଏ ସମ୍ପର୍କରେ ସବୁକଥା ବୁଝାଇ କହିଲା, କିନ୍ତୁ ତାକୁ ହତ୍ୟା କରିବା କଥା କହିନଥାଏ । ଅଶୋକକରୀ ମଧ ପୂଜା ପାଇଁ ଆବଶ୍ୟକ ସମସ୍ତ ଉପକରଣ ଏକତ୍ର କଲା । ସଂଧ୍ୟାହେବାରୁ ଧୂର୍ତ୍ତା କନକମଞ୍ଜରୀ ଦାସୀ ପରିବାରୀ ସମସ୍ତଙ୍କୁ ବିଦାୟ ଦେଇ କେବଳ ଅଶୋକକରୀ ସହିତ ଗୁପ୍ତ ପଥରେ ରାଜନବର ମଧ୍ୟରୁ ନିଷ୍କ୍ରାନ୍ତ ହେଲା । ହସ୍ତରେ ଏକ ତୀକ୍ଷ୍ଣ ଖଡ୍‌ଗ ଧାରଣ କରି ସେ ଏକ ଶୂନ୍ୟ ଶିବ ମନ୍ଦିର ମଧ୍ୟରେ ପ୍ରବେଶ କଲା । ସେଠାରେ ଗୋଟିଏ ମାତ୍ର ଶିବଲିଙ୍ଗ ପୂଜା ପାଉଥାନ୍ତି । ତାଙ୍କ ସମ୍ମୁଖରେ କନକମଞ୍ଜରୀ ଗୋଟିଏ ଛେଳିକୁ ହତ୍ୟା କଲା । ତା'ର ରକ୍ତରେ ସେ ଶିବଲିଙ୍ଗକୁ ଅଭିଷେକ କରାଇଲା । ସେହି ରକ୍ତରେ ହିଁ ସେ ଅର୍ଘ୍ୟ ସମର୍ପଣ କଲା । ଛେଳିର ଅନ୍ତନାଡ଼ି ଗୁଡ଼ିକୁ ମାଳା ରୂପରେ ଚଢ଼ାଇ ତା'ର ହୃଦୟ କମଳକୁ ଲିଙ୍ଗର ମସ୍ତକ ଉପରେ ସ୍ଥାପନ କଲା । ଛେଳିର ଆଖି ଦୁଇଟିକୁ ସେ ଧୂପ ପାଇଁ ବିନିଯୋଗ କରି ମୁଣ୍ଡଟିକୁ ବଳି ରୂପରେ ସମର୍ପଣ କଲା । ଏହିପରି ଭଗବାନ ଶଙ୍କରଙ୍କ ପୂଜା ଶେଷ କରିବା ପରେ ଲିଙ୍ଗ ସମ୍ମୁଖସ୍ଥ ବେଦିକାକୁ ରକ୍ତଚନ୍ଦନ ଦ୍ୱାରା ଲିପ୍ତ କଲା । ତା' ଉପରେ ଗୋରଚନା ଦ୍ୱାରା ଅଷ୍ଟଦଳ ପଦ୍ମଟିଏ ଅଙ୍କନ କଲା ଏବଂ ତା'ର ପ୍ରତ୍ୟେକ କୋଣକୁ ରକ୍ତରେ ରଞ୍ଜିତ କଲା । ଏହାପରେ ସେ ସେହି ଅଷ୍ଟଦଳ ପଦ୍ମ ଉପରେ ତିନୋଟି ପାଦ ଓ ତିନୋଟି ମୁଖ ଥିବା

କ୍ବରର ମୂର୍ତ୍ତି ଅଙ୍କନ କରି ତା'ର ହସ୍ତରେ ଭସ୍ମ ମୁଷ୍ଟି ନାମକ ଛୁରିକାଟିଏ ଧରାଇଲା । ଅଷ୍ଟଦଳ ପଦ୍ମର ପ୍ରତ୍ୟେକ ଦଳରେ ବିଧିପୂର୍ବକ କ୍ବରର ପରିକରମାନଙ୍କୁ ଚିତ୍ରଣ କରାଗଲା । ଏହାପରେ ସେ ମନ୍ତ୍ର ଉଚ୍ଚାରଣ କରି କ୍ବରକୁ ଆହ୍ୱାନ କଲା । ଆବାହନ, ଆସନ, ପାଦାସନ, ପାଦ୍ୟକ୍ରିୟା ଶେଷ ହେବା ପରେ ମନୁଷ୍ୟ ରକ୍ତରେ ତାକୁ ସ୍ନାନୀୟ ଓ ଅର୍ଘ୍ୟ ପ୍ରଦାନ କରିବା ନିମିତ୍ତ କନକମଞ୍ଜରୀ ନିକଟରେ ଥିବା ଅଶୋକକରୀକୁ ସେଠାରେ ସାଷ୍ଟାଙ୍ଗ ପ୍ରଣିପାତ କରିବା ପାଇଁ ନିର୍ଦ୍ଦେଶ ଦେଲା । ଏଥିରେ ଅଶେଷ ମଙ୍ଗଳ ହେବା କଥା ଶୁଣି ଅଶୋକକରୀ ଲମ୍ବା ହୋଇ ଶିବଲିଙ୍ଗ ସମ୍ମୁଖରେ ମୁହଁ ତଳକୁ କରି ପଡ଼ିଯିବା ମାତ୍ରେ ସେ ଖଡ୍‌ଗଦ୍ୱାରା ତାକୁ ଆଘାତ କଲା । ଭାଗ୍ୟବଳରୁ ଅସ୍ତ୍ରଟି ତା'ର ସ୍କନ୍ଧରେ ଟିକିଏ ମାତ୍ର ଆଘାତ ଦେଇ ଖସିଗଲା । ସଖୀର ଏପରି ଆଚରଣରେ ତା'ର ଆଶ୍ଚର୍ଯ୍ୟ ଓ ଭୟର ସୀମା ରହିଲା ନାହିଁ । କନକମଞ୍ଜରୀଠାରୁ ରକ୍ଷା ପାଇବାପାଇଁ ସେ 'ରକ୍ଷାକର' 'ରକ୍ଷାକର' ବୋଲି ଚିତ୍କାର କରି ଦଉଡ଼ିବାକୁ ଲାଗିଲା । ମୁକ୍ତକେଶା ଏବଂ ରକ୍ତଚନ୍ଦନ ଲିପ୍ତା ଛଦ୍ମ ହଂସାବଳୀ ମଧ୍ୟ ତା' ପଛରେ ଦଉଡୁଥାଏ । ଅଶୋକକରୀର ଚିତ୍କାର ଶୁଣି ନିକଟସ୍ଥ ନଗର ରକ୍ଷକମାନେ ଦଉଡ଼ି ଆସିଲେ । କନକମଞ୍ଜରୀର ଭୟଙ୍କର ରୂପ ଦେଖି ସେମାନେ ଚତୁର୍ଦ୍ଦିଗରୁ ତାକୁ ଆକ୍ରମଣ କରି ମରଣାନ୍ତକ ଅବସ୍ଥାରେ ପହଞ୍ଚାଇ ଦେଲେ ।

ରକ୍ଷକମାନଙ୍କୁ ଦେଖି ଅଶୋକକରୀ ଆଶ୍ୱସ୍ତ ହେଲା । ସେ ନିଜର ସମସ୍ତ ବୃତ୍ତାନ୍ତ ତାଙ୍କୁ କହି ଶୁଣାଇବାରୁ ସେମାନେ ଉଭୟଙ୍କୁ ନେଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ । ସେମାନଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣିବାପରେ ରାଜା କମଳାକର ଆଶ୍ଚର୍ଯ୍ୟଚକିତ ହୋଇପଡ଼ିଲେ । ସେ ନିଜର କୂଳଟା ପତ୍ନୀ ଏବଂ ତା'ର ସାହାଯ୍ୟକାରିଣୀକୁ ନିକଟକୁ ଆସିବାପାଇଁ ନିର୍ଦ୍ଦେଶ ଦେବାମାତ୍ରେ କନକମଞ୍ଜରୀର ପ୍ରାଣବାୟୁ ଉଡ଼ିଗଲା ।

ଛଦ୍ମବେଶିନୀ ହଂସାବଳୀର ମୃତ୍ୟୁ ଦେଖି ରାଜା ଅଶୋକକରୀକୁ ନିର୍ଭୟରେ ସମସ୍ତ ଘଟଣା ବର୍ଣ୍ଣନା କରିବା ପାଇଁ ଆଜ୍ଞା ଦେଲେ । ସେ ମଧ୍ୟ ଆମୂଳଚୂଳ ସମସ୍ତ ଚକ୍ରାନ୍ତ ରାଜାଙ୍କ ସମ୍ମୁଖରେ ପ୍ରକାଶ କଲା ।

ରାଜା କମଳାକର ପ୍ରକୃତ ସତ୍ୟ ଜାଣିପାରି ଦୁଃଖରେ ଭାଙ୍ଗିପଡ଼ିଲେ । ସେ ମନେମନେ ଭାବିଲେ, 'ମୋ ପରି ମୂର୍ଖକୁ ଧିକ୍ । ମୁଁ ରାଜା ହୋଇ ମଧ୍ୟ ଏହି ମିଥ୍ୟା ହଂସାବଳୀର ଚକ୍ରାନ୍ତର ଶିକାର ହୋଇଗଲି । ଦୁର୍ଭାଗ୍ୟର କଥା ମୋ ସମ୍ମୁଖରେ ହିଁ ପାପୀଷ୍ଠା ପ୍ରକୃତ ହଂସାବଳୀକୁ ଦଗ୍ଧୀଭୂତ କରିଦେଲା । ଅବଶ୍ୟ ସେ ତା' ପାପର ଫଳ

ପାଇଛି । ପଟ୍ଟମହିଷୀ ହୋଇ ଏପରି ବୀଭତ୍ସ ମୃତ୍ୟୁବରଣ କରିବା ନିଜ କୃତ ପାପର ପରିଣାମ ବ୍ୟତୀତ ଆଉ କ'ଣ ହୋଇପାରେ ? ବିଧାତା ମୋତେ ଗୋଟିଏ ଅବୋଧ ଶିଶୁ ପରି ରୂପ ଦ୍ୱାରା ପ୍ରଲୋଭିତ କରାଇ ମୋଠାରୁ ଅମୂଲ୍ୟ ରତ୍ନଟି ଛଡ଼ାଇ ନେଲା, ଏବଂ ଖଣ୍ଡିଏ ଉଜ୍ଜ୍ୱଳ କାଚ ଦେଇ ମୋତେ ଭ୍ରମିତ କରିଦେଲା । ଭଗବାନ ରମାପତି ତା'ର ପିତାକୁ କହିଥିବା କଥା ମୁଁ ସମ୍ପୂର୍ଣ୍ଣ ଭୁଲିଗଲି । ତା'ର ପବିତ୍ରହସ୍ତର ସ୍ପର୍ଶରେ ଜ୍ୱରମୁକ୍ତ ହେବା ଆଶୀର୍ବାଦ ମୋର ଆଦୌ ସ୍ମରଣ ହେଲାନାହିଁ । ଅବଶ୍ୟ ମେଘମାଳୀଙ୍କୁ ଭଗବାନ କହିଥିଲେ ଯେ ମୁଁ ନିଶ୍ଚିତ ଭାବେ ତାକୁ ପତ୍ନୀରୂପେ ଲାଭ କରିବି, କିନ୍ତୁ କିଛିଦିନ ହଂସାବଳୀକୁ କଷ୍ଟ ଉଠାଇବାକୁ ପଡ଼ିବ । ଏକଥା କ'ଣ କେବେ ମିଛ ହୋଇପାରେ ? ହୋଇପାରେ ସେ ସେହି ଶାଲ୍ମଳୀ ବୃକ୍ଷର କୋରଡ଼ ଭିତରେ ନରହି ଅନ୍ୟତ୍ର ଚାଲିଯାଇଥିବ । ଭଗବତ୍ କୃପାରୁ ଏପର୍ଯ୍ୟନ୍ତ ସେ ଜୀବିତ ଥାଇପାରେ । ଦୈବର ଗତି ଏବଂ ସ୍ତ୍ରୀମାନଙ୍କର ହୃଦୟକୁ ଜାଣିବା କଦାପି ସମ୍ଭବ ନୁହେଁ ।'

ସ୍ତ୍ରୀ ଚିତ୍ତସ୍ୟେବ ଦୈବସ୍ୟ କୋ ବେତ୍ତି ଗହନାଂ ଗତିମ୍ ।

ଏହିପରି ଚିନ୍ତା କରୁଥିବା ବେଳେ ମନୋରଥସିଦ୍ଧିର କଥା କମଳାକରଙ୍କ ସ୍ମରଣ ହେଲା । ସେ ତାକୁ ନିଜ ନିକଟକୁ ଡକାଇ ଆଣି କୋମଳ ସ୍ୱରରେ କହିଲେ, 'କ'ଣ, ତୁମେ ଆଜିକାଲି ଆଉ ଏଠାରେ ଦେଖାଯାଉନାହଁ । ମୁଁ ସେହି ଧୂର୍ତ୍ତା ପାପିନୀ ଦ୍ୱାରା ପ୍ରବଞ୍ଚିତ ହେଲି । ବର୍ତ୍ତମାନ ମୋର ମନୋରଥ କିପରି ସିଦ୍ଧ ହେବ କହ ?'

ରାଜାଙ୍କର ମର୍ମବେଦନା ଅନୁଭବ କରି ଚାରଣ ଯୋଡ଼ହସ୍ତରେ ନିବେଦନ କଲା, 'ମହାରାଜ, ନିଜର ଚକ୍ରାନ୍ତ ପ୍ରଘଟ ହେବା ଭୟରେ କନକମଞ୍ଜରୀ କ୍ଷତାକ୍ତ କରିଥିବା ଏହି ଅଶୋକକରୀ ହିଁ ଆପଣଙ୍କ ପ୍ରଶ୍ନର ଉତ୍ତର । ଏଠାରେ ଦେଖିଥିଲେ ସେହି କ୍ରୁରାଚଣ୍ଡୀ ମୋତେ ମଧ୍ୟ ଛାଡ଼ିନଥାନ୍ତା । କିନ୍ତୁ ହଂସାବଳୀଙ୍କ ପାଇଁ ଆପଣ ଦୁଃଖ କରିବା ଅନାବଶ୍ୟକ । ଆପଣ ଜାଣନ୍ତି ତାଙ୍କ ପିତା ମେଘମାଳୀଙ୍କୁ ଭଗବାନ୍ କମଳାପତି କହିଥିଲେ ଯେ ଆପଣଙ୍କୁ ଲାଭ କରିବା ପୂର୍ବରୁ ତାଙ୍କୁ କିଛିଦିନ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ । ହଂସାବଳୀ ପ୍ରତ୍ୟହ ନିଷ୍ଠାର ସହିତ ବିଷ୍ଣୁ ଉପାସନା କରନ୍ତି । ତେଣୁ ସେ ତାଙ୍କୁ ନିଶ୍ଚିତଭାବରେ ରକ୍ଷା କରିଥିବେ । ଧର୍ମର ସର୍ବଦା ଜୟ ହୁଏ ବୋଲି ଆପଣ ଏହି ଅଶୋକକରୀକୁ ଦେଖି କ'ଣ ଜାଣିପାରୁ ନାହାଁନ୍ତି ? ତେଣୁ ଆପଣ ନିଶ୍ଚିନ୍ତ ରହନ୍ତୁ, ମୁଁ ହଂସାବଳୀଙ୍କ ଅନୁସନ୍ଧାନରେ ବାହାରୁଛି ।' ରାଜା ଏଥିରେ ତ ସମ୍ମତ ହେଲେ କିନ୍ତୁ ହଂସାବଳୀଙ୍କ ଦର୍ଶନ ନପାଇବା ପର୍ଯ୍ୟନ୍ତ ଶାନ୍ତିରେ ରହିପାରିବେନି ବୋଲି ମନୋରଥସିଦ୍ଧି

ସହିତ ନିଜେ ମଧ ଯିବା ପାଇଁ ନିଶ୍ଚୟ କଲେ । ମନ୍ତ୍ରୀମାନଙ୍କ ଅନୁରୋଧ ବ୍ୟର୍ଥ ହେଲା । ସେ ପ୍ରଜ୍ଞାଢ୍ୟ ନାମକ ମନ୍ତ୍ରୀଙ୍କ ଉପରେ ରାଜ୍ୟଭାର ଅର୍ପଣ କରି ବନ୍ଦୀ ସହିତ ହଂସାବଳୀଙ୍କ ସନ୍ଧାନରେ ବାହାରିଲେ ।

ସେମାନେ ଶାରୀରିକ କ୍ଲାନ୍ତି ପ୍ରତି ଧ୍ୟାନ ନଦେଇ ହଂସାବଳୀଙ୍କ ସନ୍ଧାନରେ ବହୁ ତୀର୍ଥକ୍ଷେତ୍ର, ଆଶ୍ରମ ଏବଂ ଅରଣ୍ୟ ଭ୍ରମଣ କରିବାକୁ ଲାଗିଲେ । ବାସ୍ତବରେ କନ୍ଦର୍ପର ଆଦେଶ ଅତ୍ୟନ୍ତ ବଳବାନ୍ ।

ବହୁଦିନ ଇତସ୍ତତଃ ଭ୍ରମଣକରି ସେମାନେ ହଂସାବଳୀ ତପସ୍ୟା କରୁଥିବା ମହାରଣ୍ୟ ମଧ୍ୟରେ ପ୍ରବେଶ କଲେ । ସେଠାରେ ଚନ୍ଦ୍ରମାର ଶେଷତମ କଳାସ୍ୱରୂପିଣୀ କ୍ଷୀଣ ଏବଂ ରକ୍ତହୀନତା ଯୋଗୁଁ ଶରୀର ପାଣ୍ଡୁର ବର୍ଣ୍ଣ ଧାରଣ କରିଥିଲେ ସୁଦ୍ଧା ଅତ୍ୟନ୍ତ ସୁନ୍ଦରୀ ବୋଲି ମନେହେଉଥିବା ଜଣେ ରମଣୀଙ୍କୁ ଗୋଟିଏ ଫଳପୁଷ୍ପପୂର୍ଣ୍ଣ ରକ୍ତାଶୋକ ବୃକ୍ଷର ପାଦଦେଶରେ ଉପବେଶନ କରିଥିବା ଦେଖିବାକୁ ପାଇଲେ । ତାଙ୍କୁ ଦେଖି କୌତୂହଳବଶତଃ କମଳାକର ବନ୍ଦୀକୁ ଲକ୍ଷ୍ୟ କରି ପଚାରିଲେ, 'ଏହିପରି ନିଃଶବ୍ଦ, ନିଶ୍ଚଳ ଭାବେ ଧ୍ୟାନରେ ଲୀନା ନାରୀଟି କିଏ ହୋଇପାରେ ? ତାକୁ ଦେଖିଲେ ବନଦେବୀ ବୋଲି ମନେ ହେଉଛି । ଏହାର ରୂପ ତ ସାଧାରଣ ମନୁଷ୍ୟଠାରୁ ଭିନ୍ନ । ତୁମେ ଯାଇ ତାର ପରିଚୟ ନିଅ ।' ବନ୍ଦୀ ରମଣୀଙ୍କୁ ଭଲଭାବେ ନିରୀକ୍ଷଣ କରି କହିଲା, 'ହଂସାବଳୀଙ୍କୁ ଲାଭ କରି ଆପଣଙ୍କର ସୌଭାଗ୍ୟ ବୃଦ୍ଧିପ୍ରାପ୍ତ ହେଉ । ବର୍ତ୍ତମାନ ଆପଣଙ୍କ ସମ୍ମୁଖରେ ହଂସାବଳୀ ଉପସ୍ଥିତା ।' ବନ୍ଦୀର ବଚନବିନ୍ୟାସ ହଂସାବଳୀଙ୍କ ଧ୍ୟାନଭଗ୍ନ କଲା । ଶବ୍ଦ ଆସୁଥିବା ଦିଗକୁ ଚାହିଁ ସେ ବନ୍ଦୀକୁ ଚିହ୍ନିପାରିଲେ । ସେଠାରେ ଉଭୟଙ୍କୁ ଦେଖି ତାଙ୍କର ଦୁଃଖ ନୂତନ ରୂପ ପରିଗ୍ରହ କଲା । ସେ 'ହା ତାତ', 'ହା ଆର୍ଯ୍ୟପୁତ୍ର', 'ହା କମଳାକର', 'ହା ମନୋରଥସିଦ୍ଧି', 'ହା ବିପରୀତ ବିଧାତା' ବୋଲି ବିଳାପ କରିବାକୁ ଲାଗିଲେ । ଯୁଗପତ୍ ହର୍ଷ ଓ ବିଷାଦ ତାଙ୍କୁ ମୂର୍ଚ୍ଛିତ କରିଦେଲା । ସେ ଭୂମି ଉପରେ ଢଳି ପଡ଼ିଲେ । କମଳାକର ମଧ ହଂସାବଳୀଙ୍କ ଅବସ୍ଥା ଦେଖି ମୂର୍ଚ୍ଛିତ ହୋଇପଡ଼ିଲେ ।

ମନୋରସିଦ୍ଧିଙ୍କ ଉପଚାରରେ ଉଭୟେ ଚେତନା ଲାଭକରି କିଛି ଆଶ୍ୱସ୍ତ ହେଲେ । ପରସ୍ପର ପରସ୍ପରର ମନୋଭାବ ଜାଣିପାରି ସେମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ବିରହ ରୂପକ ସାଗରକୁ ଲଂଘନ କରିଥିବା ଯୋଗୁଁ ଉଭୟଙ୍କ ଚିନ୍ତା ଦୂର ହେଲା । ସେମାନେ ନିଜନିଜର ବିଚିତ୍ର ଅନୁଭୂତି ବ୍ୟକ୍ତ କରି ମନୋବେଦନା ଲାଘବ କଲେ । ମନୋରଥସିଦ୍ଧିଙ୍କ ପ୍ରସ୍ତାବ କ୍ରମେ ତିନିହେଁ କୋଶଳାପୁରୀ ଅଭିମୁଖରେ ଯାତ୍ରା

କଲେ । ସେଠାରେ କମଳାକର ହଂସାବଳୀଙ୍କ ପିତା ମେଘମାଳୀଙ୍କୁ ଆମନ୍ତ୍ରଣ କରି ଆଣି ତାଙ୍କ ଦ୍ୱାରା ସମର୍ପିତ ହଂସାବଳୀଙ୍କ ପବିତ୍ର ପାଣିଗ୍ରହଣ କଲେ । ବିବାହକ୍ରିୟା ସମ୍ପନ୍ନ ହେଲା । ଉଭୟ କୁଳର ଶିରୋଭୂଷା ସ୍ୱରୂପା ହଂସାବଳୀଙ୍କ ସହିତ କମଳାକର, ମନୋରଥସିଦ୍ଧିଙ୍କ ସମୁଚିତ ମନ୍ତ୍ରଣା ଦ୍ୱାରା ବହୁଦିନ ଧରି ରାଜ୍ୟଶାସନ କଲେ ।

ଏହିପରି ବିପତ୍ତିରେ ପଡ଼ି ସାହସ ହରାଇନଥିବା ବ୍ୟକ୍ତି ସର୍ବଦା ନିଜର ଅଭିଳଷିତ ଫଳଲାଭ କରିଥାଏ । ତେଣୁ, ବତ୍ସ, ତୁମେ ଆତ୍ମ ବିସର୍ଜ୍ଜନ କରିବା ଚିନ୍ତା ତ୍ୟାଗ କର । ଜୀବିତ ଥିଲେ ନିଶ୍ଚିତଭାବେ ରାଜକୁମାରଙ୍କ ସହିତ ତୁମର ମିଳନ ହେବ ।' ବୃଦ୍ଧ ପଥିକ ଏହିପରି ଗଳ୍ପଟିଏ ଶୁଣାଇ ମୋତେ ମୃତ୍ୟୁମୁଖରୁ ଫେରାଇ ଆଣିଲେ ଏବଂ ତାଙ୍କ ଗନ୍ତବ୍ୟ ପଥରେ ଚାଲିଗଲେ ।

ସେହି ନିର୍ଜ୍ଜନରାତ୍ରିରେ ଚଣ୍ଡକେତୁର ନିଭୃତ ପ୍ରକୋଷ୍ଠ ମଧ୍ୟରେ ନିଜର ଅନୁଭୂତି ବର୍ଣ୍ଣନା କରି ମୃଗାଙ୍କଦତ୍ତଙ୍କୁ ଭୀମପରାକ୍ରମ ପୁଣି କହିବା ଆରମ୍ଭ କଲେ—

'ବୃଦ୍ଧ ପଥିକଙ୍କଠାରୁ ଏହିପରି ଉପଦେଶ ଗ୍ରହଣ କରି ମୁଁ ଅରଣ୍ୟ ମଧ୍ୟରୁ ବାହାରକୁ ଆସିଲି । ଆମର ଲକ୍ଷ୍ୟ ଉଜ୍ଜୟିନୀ ଥିବାରୁ ଆପଣ କାଳେ ପହଞ୍ଚିଥିବେ ବୋଲି ମୁଁ ସେଠାରେ ଯାଇ ପହଞ୍ଚିଲି । କିନ୍ତୁ ବିଭିନ୍ନ ସ୍ଥାନରେ ଅନୁସନ୍ଧାନ କରି ଆପଣଙ୍କୁ ପାଇଲି ନାହିଁ । ଅତ୍ୟନ୍ତ କ୍ଳାନ୍ତ ହୋଇପଡ଼ିଥିବା ଯୋଗୁଁ ମୁଁ ଜଣେ ସ୍ତ୍ରୀଲୋକର ଘରେ ଯାଇ ଆଶ୍ରୟ ନେଲି । ମୋର ପାନଭୋଜନପାଇଁ ସେ କିଛି ଅର୍ଥ ମଧ୍ୟ ଗ୍ରହଣ କଲା । ରାତ୍ରି ଭୋଜନ ଶେଷକରି ସେ ବିଛାଇ ଦେଇଥିବା ଶଯ୍ୟା ଉପରେ ଗଡ଼ିପଡ଼ିଲି । ପଥଶ୍ରାନ୍ତି ଯୋଗୁଁ ମୁହୂର୍ତ୍ତକ ମଧ୍ୟରେ ନିଦ୍ରାଦେବୀ ମୋତେ କୋଳାଇ ନେଲେ ।

ମଧ୍ୟରାତ୍ରିରେ ହଠାତ୍ ମୋର ନିଦ ଭାଙ୍ଗିଗଲା । ନିକଟସ୍ଥ କୋଠରି ମଧ୍ୟରେ ଆଲୋକ ଜଳୁଥିବା ଦେଖି ମୋର ମନ କୌତୂହଳାକ୍ରାନ୍ତ ହୋଇଉଠିଲା । ମୁଁ ନିଃଶବ୍ଦରେ ଯାଇ କୋଠରି ମଧ୍ୟକୁ ଉଙ୍କି ମାରିଲି । ମୋତେ ଆଶ୍ରୟ ଦେଇଥିବା ସ୍ତ୍ରୀଟି କୋଠରିର ଚତୁର୍ପାର୍ଶ୍ୱରେ ଯବଧାନର ଗୋଟିଏ ରେଖା ଟାଣୁଥାଏ । ତା'ର ଓଠ କମ୍ପୁଥିବା ଯୋଗୁଁ ସେ କିଛି ମନ୍ତ୍ର ଉଚ୍ଚାରଣ କରୁଥିଲା ପରି ମନେହେଉଥିଲା । ସେ ପକାଇଥିବା ଯବଧାନଗୁଡ଼ିକ ଅଙ୍କୁରିତ ହୋଇ ସଙ୍ଗେସଙ୍ଗେ ଫଳଭାରରେ ନମ୍ର ହୋଇପଡ଼ିଲେ । ଧାନଗୁଡ଼ିକ ମଧ୍ୟ ସେହି ମୁହୂର୍ତ୍ତରେ ହିଁ ପାଚିଗଲା । ସେ ସେଗୁଡ଼ିକୁ ସଂଗ୍ରହ କରି ସିଝାଇବାକୁ ଲାଗିଲା । ସିଝିଯିବା ପରେ ସେ ଯବଧାନଗୁଡ଼ିକୁ ପେଶି ଛତୁଆ ତିଆରି କଲା ଏବଂ ସେସବୁକୁ ଗୋଟିଏ କଂସା ପାତ୍ରରେ ରଖି କିଛି ମନ୍ତ୍ରଜଳ ତା' ଉପରେ ସିଞ୍ଚନ

କଲା । ନିମିଷକ ମଧ୍ୟରେ ଏ ସମସ୍ତ କାର୍ଯ୍ୟ ଶେଷକରି ସେ ଯେତେବେଳେ ସ୍ନାନ କରିବାପାଇଁ ଚାଲିଗଲା, ସେତେବେଳେ ମୁଁ କୋଠରିଟିକୁ ଭଲଭାବରେ ଦେଖିନେଲି । କୋଠରିରେ ଥିବା ଉପକରଣ ଏବଂ ତା'ର କ୍ରିୟାକଳାପରୁ ମୋର ମନେହେଲା ଯେ ସେ ନିଶ୍ଚିତଭାବେ ଏକ ଡାହାଣୀ । ତା'ର ମନ୍ତ୍ରଶକ୍ତିକୁ ନିଷ୍କ୍ରିୟ କରିଦେବାପାଇଁ ମୁଁ ଯଥାଶୀଘ୍ର ନିଃଶବ୍ଦ ଭାବେ ଯାଇ କଂସା ବାସନରେ ଥିବା ଛତୁଆଗୁଡ଼ିକୁ ସେ ଯେଉଁ ପାତ୍ରରେ ସେସବୁ ପ୍ରସ୍ତୁତ କରିଥିଲା ସେଥିରେ ଢାଳିଦେଲି ଏବଂ ସେଥିରୁ ଆଉକିଛି ଆଣି ଉକ୍ତ କଂସାପାତ୍ରରେ ରଖିଦେଲି । ଏତିକିରେ ସ୍ତ୍ରୀଟିର ପାଦଶବ୍ଦ ଶୁଣାଗଲା । ସେ ଆସୁଥିବା ଜାଣି ମୁଁ ଶୀଘ୍ର ଆସି ମୋ ବିଛଣା ଉପରେ ଗାଢ଼ନିଦରେ ଶୋଇଥିବା ଅଭିନୟ କଲି ।

ନାରୀଟି ପୂର୍ବୋକ୍ତ ପ୍ରକୋଷ୍ଠ ମଧ୍ୟକୁ ନଯାଇ ମୋତେ ଆସି ଉଠାଇଲା । ମୁଁ ମିଥ୍ୟା ନିଦ୍ରାରୁ ଉଠନ୍ତେ ମୋତେ ଆଗ୍ରହ ପୂର୍ବକ ନିଜ କୋଠରିକୁ ଡାକିନେଇ ସେହି କଂସା ପାତ୍ରରୁ କିଛି ଛତୁଆ ଖାଇବାକୁ ଦେଲା । ମୋ ମନରେ ସନ୍ଦେହ ସୃଷ୍ଟି ନହେବା ପାଇଁ ସେ ମଧ୍ୟ ରନ୍ଧନ ପାତ୍ରରୁ କିଛି ଛତୁଆ ଆଣି ଆହାର କଲା । ମୁଁ ଯେ ଛତୁଆଗୁଡ଼ିକୁ ଓଲଟପାଲଟ କରିଦେଇଛି ଏକଥା ସେ ଜାଣିନଥିବା ଯୋଗୁଁ ମନ୍ତ୍ରସିଦ୍ଧ ଛତୁଆଗୁଡ଼ିକୁ ନିଜେ ଖାଇ ଚାହୁଁଚାହୁଁ ଗୋଟିଏ ମେଣ୍ଢାରେ ରୂପାନ୍ତରିତ ହୋଇଗଲା ।

ନାରୀଟିର ଏପ୍ରକାର ଦୁରଭିସନ୍ଧିର ସନ୍ଧାନ ପାଇ ମୋର ଅତ୍ୟନ୍ତ କ୍ରୋଧ ଜାତ ହେଲା । ମୁଁ ତାକୁ ନେଇ ଜଣେ ଶୁଣ୍ଡିକୁ ବିକ୍ରି କରିଦେଲି । ମେଣ୍ଢାଟିକୁ ଦେଖି ଶୁଣ୍ଡିର ସ୍ତ୍ରୀ ମୋ ନିକଟକୁ ଆସି ଏକାନ୍ତରେ କ୍ରୋଧ ପ୍ରକାଶ କରି କହିଲା, 'ତୁ ମୋର ସଖୀକୁ ମେଣ୍ଢା କରିଦେଇଛୁ । ତା'ର ପରିଣାମ ତୋତେ ଭୋଗ କରିବାକୁ ପଡ଼ିବ ।' ଏଥିରେ ମୁଁ ବିଚଳିତ ହୋଇପଡ଼ିଲି । ଏହି ପ୍ରତିହିଂସାପରାୟଣା ନାରୀଟିଠାରୁ ଦୂରେଇଯିବା ନିମିତ୍ତ ମୁଁ ଗୁପ୍ତରେ ସେହି ନଗର ପରିତ୍ୟାଗ କଲି । କିଛି ଦୂର ଯିବା ପରେ ମୁଁ ଅବସନ୍ନ ହୋଇପଡ଼ି ଗୋଟିଏ ବଟବୃକ୍ଷର ପାଦଦେଶରେ ଯାଇ ବିଶ୍ରାମ ନେଉଥାଏ । ସେଠାରେ ମୋର ଆଖି ଲାଗିଗଲା । ମୁଁ ଗଭୀର ନିଦ୍ରାରେ ଅଚେତ ହୋଇପଡ଼ିଲି ।

ମୋତେ ନଗର ଛାଡ଼ି ଚାଲିଯାଇଥିବା ଜାଣି ସେହି ଶୁଣ୍ଡି ସ୍ତ୍ରୀ ମୋର ସନ୍ଧାନରେ ଆସି ସେହି ବୃକ୍ଷ ନିକଟରେ ପହଞ୍ଚିଲା । ସେ ମଧ୍ୟ ଥିଲା ତା'ର ସଖୀ ପରି ଏକ ଡାହାଣୀ । ନିଦ୍ରିତାବସ୍ଥାରେ ସେ ମୋ ଗଳାରେ ଗୋଟିଏ ମନ୍ତ୍ରସୂତ୍ର ବାନ୍ଧିଦେଲା । ସେ ଚାଲିଯିବା ପରେ ମୋ ନିଦ ଭାଙ୍ଗିଗଲା । ଦେଖିଲି ମୁଁ ଏକ ମୟୂରରେ ରୂପାନ୍ତରିତ ହୋଇଯାଇଛି । କିନ୍ତୁ ଭାଗ୍ୟବଳରୁ ସ୍ମୃତି ଭ୍ରଷ୍ଟ ହୋଇନାହିଁ ।

ମୟୂର ରୂପରେ ଇତସ୍ତତଃ ଭ୍ରମଣ କରୁଥିବା ବେଳେ ଦିନେ ଗୋଟିଏ ବ୍ୟାଧ ମୋତେ ନମାରି ଜୀବନ୍ତ ଧରିନେଲା । ମୋର ସୁନ୍ଦର ରୂପ ଦେଖି ସେ ଭୀଲ୍ ଅଧିପତିଙ୍କ ପ୍ରଧାନ ପ୍ରତିହାର ଚଣ୍ଡକେତୁ ହସ୍ତରେ ମୋତେ ଉପହାର ରୂପେ ଅର୍ପଣ କଲା । ପ୍ରତିହାର ତା' ସ୍ତ୍ରୀ ନିକଟରେ ମୋତେ ଛାଡ଼ିଦେବାରୁ ସେ ଲାଳନପାଳନ କରି ଏହି ପିଞ୍ଜରା ମଧ୍ୟରେ ରଖିଅଛି । ସୌଭାଗ୍ୟବଶତଃ ଆଜି ଏଠାକୁ ଆସି ଆପଣ ମୋର କଣ୍ଠରୁ ସେହି ମନ୍ତ୍ରସୂତ୍ରଟି ଛିଣ୍ଡାଇ ଦେବା ଯୋଗୁଁ ମୁଁ ପୁଣି ମନୁଷ୍ୟ ରୂପ ଫେରିପାଇଛି ।

ଆସନ୍ତୁ ଆମେ ଯଥାଶୀଘ୍ର ଏଠାରୁ ପଳାୟନ କରିବା । ତା'ନହେଲେ ରହସ୍ୟ ଉଦ୍‌ଘାଟିତ ହୋଇଯିବା ଭୟରେ ସେ ଆପଣଙ୍କୁ ନିଶ୍ଚୟ ହତ୍ୟା କରିବ । ପ୍ରତିଦିନ ପ୍ରଭାତରୁ ସେ ପୂର୍ବରାତ୍ରିର ସହଚରମାନଙ୍କୁ ହତ୍ୟା କରୁଥିବା ମୁଁ ଦେଖିଆସିଛି । ଆପଣ ଆଜି ରାତିରେ ତା' ସହିତ ଯାଇ ତା'ର ସମସ୍ତ କାର୍ଯ୍ୟକଳାପ ଦେଖିଛନ୍ତି । ତେଣୁ ଆପଣଙ୍କୁ ଆଣି ସେ ଏହି ପ୍ରକୋଷ୍ଠ ମଧ୍ୟରେ ଅବରୁଦ୍ଧ କରି ରଖିଛି । ଏହାର ଦ୍ୱାର ବାହାରୁ ବନ୍ଦଥିବା ଯୋଗୁଁ ଆମେ ସେହି ରାସ୍ତାରେ ମୁକୁଳିପାରିବା ନାହିଁ । ଏଣୁ ଆପଣ ଡାହାଣୀର ଏହି ମନ୍ତ୍ରସୂତ୍ରକୁ କଣ୍ଠରେ ଧାରଣ କରି ମୟୂର ରୂପରେ ଝରକା ଦେଇ ବାହାରକୁ ଚାଲିଯାନ୍ତୁ । ମୁଁ ହାତବଢ଼ାଇ ଆପଣଙ୍କ କଣ୍ଠରୁ ସୂତ୍ରଟିକୁ ବାହାର କରିନେବି । ଫଳରେ ଆପଣ ନିଜ ରୂପ ଧାରଣ କରି ମୋ କଣ୍ଠରେ ସେହି ସୂତ୍ରଟିକୁ ବାନ୍ଧିଦେଲେ ମୁଁ ମୟୂର ରୂପରେ ଏଠାରୁ ବାହାରକୁ ଚାଲିଯିବି । ମୋ କଣ୍ଠରୁ ଆପଣ ସୂତ୍ରଟି ବାହାର କରିଦେଲେ ଉଭୟେ ପୁଣି ମନୁଷ୍ୟ ରୂପରେ ଏଠାରୁ ମୁକ୍ତିପାଇବା ।'

ବୁଦ୍ଧିମାନ ଭୀମପରାକ୍ରମଙ୍କ ଉପସ୍ଥିତ ବୁଦ୍ଧିରେ ଉଭୟେ ଚଣ୍ଡକେତୁର କବଳରୁ ରକ୍ଷା ପାଇ ଅନ୍ୟ ଦୁଇ ମିତ୍ର ରହୁଥିବା ସ୍ଥାନକୁ ଚାଲିଗଲେ । ପରସ୍ପରର ଅନୁଭୂତି ଶୁଣୁଶୁଣୁ ରାତ୍ରି ଶେଷହେଲା ।

ପରଦିନ ପ୍ରଭାତରୁ ଶବରରାଜ ମାୟାବଟୁ ସେଠାରେ ଆସି ପହଞ୍ଚିଲେ । ସେ ମୃଗାଙ୍କଦତ୍ତଙ୍କୁ ଗତରାତ୍ରିର କୁଶଳ ଜିଜ୍ଞାସା କରି ପଶାଖେଳିବା ପାଇଁ ନିମନ୍ତ୍ରଣ କଲେ । ଶ୍ରୁତଧି ପ୍ରତିହାରକୁ ମାୟାବଟୁ ସହିତ ଆସୁଥିବା ଦେଖି ପୂର୍ବଦିନର କଥା ସ୍ମରଣ କରାଇଦେଇ କହିଲେ, 'ଆଜି ଆଉ କେତେବେଳେ ପଶାଖେଳିବେ ? ପ୍ରତିହାରଙ୍କ ନିକଟରେ ଥିବା ମୟୂରର ନୃତ୍ୟ ଦେଖିବା କଥା କ'ଣ ଭୁଲିଗଲେ ?' ଶ୍ରୁତଧିଙ୍କ ଠାରୁ ଏହା ଶୁଣି ନୃତ୍ୟକଥା ଭୀଲ୍‌ରାଜାଙ୍କ ମନେ ପଡ଼ିଗଲା । ସେ ମୟୂର ଆଣିବା ପାଇଁ ପ୍ରତିହାରକୁ ପଠାଇଲେ ।

ମୟୂର କଥା ଶୁଣି ପ୍ରତିହାରର ମଧ୍ୟ ପୂର୍ବରାତ୍ରିର କଥା ମନେପଡ଼ିଗଲା । ତା' ସହିତ ରାଣୀ ଅନ୍ତଃପୁରରେ ପ୍ରବେଶ କରିଥିବା ଚୋରଟିକୁ ସେ ସକାଳୁ ହତ୍ୟା କରିନଥିବା ଯୋଗୁଁ ଯଥାଶୀଘ୍ର ଯାଇ ଉଭୟ କାମ ଏକା ସାଙ୍ଗରେ କରିଦେବ ବୋଲି ବିଚାରିଲା । ଦ୍ରୁତ ପଦକ୍ଷେପରେ ଆସି ସେ ମୟୂର ଥିବା ପ୍ରକୋଷ୍ଠ ମଧ୍ୟରେ କାହାରିକୁ ଦେଖିବାପାଇଁ ପାଇଲା ନାହିଁ; ନା ଚୋର, ନା ମୟୂର । ଭୟଭୀତ ଓ ବିବ୍ରତ ହୋଇ ସେ ଆସି ରାଜାଙ୍କୁ ଜଣାଇଲା ଯେ ଗଲା ରାତିରେ କେହି ଚୋର ତା'ର ମୟୂରଟିକୁ ଚୋରାଇ ନେଇଯାଇଛି ।

ପ୍ରତିହାରର କଥାରେ ଶ୍ରୁତଧି ହସିହସି କହିଲେ, 'ତୁମର ମୟୂର ଯିଏ ଚୋରାଇଛି ସେ ନିଶ୍ଚୟ ଗୋଟିଏ ମହାଚୋର ହୋଇଥିବ ।' ମୃଗାଙ୍କଦତ୍ତ ମଧ୍ୟ ଶ୍ରୁତଧି ଓ ପ୍ରତିହାର ପ୍ରତି ଚାହିଁ ହସୁଥିବା ଦେଖି ମାୟାବଟୁ କୌତୂହଳୀ ହୋଇ ଏହାର କାରଣ ଜାଣିବା ପାଇଁ ଚାହିଁଲେ । ମୃଗାଙ୍କଦତ୍ତ ଗତଦିନର ପଶାଖେଳଠାରୁ ଆରମ୍ଭ କରି ଭୀମପରାକ୍ରମଙ୍କ ପୁନଃ ମନୁଷ୍ୟ ଶରୀର ପ୍ରାପ୍ତି ଏବଂ ସେମାନଙ୍କର ପ୍ରତିହାର କବଳରୁ ମୁକ୍ତିଲାଭ ପର୍ଯ୍ୟନ୍ତ ସମସ୍ତ ଘଟଣା ଆମୂଳଚୂଳ ବର୍ଣ୍ଣନା କଲେ । ସମଗ୍ର ବୃତ୍ତାନ୍ତ ଜାଣିବା ପରେ ଭୀଲ୍‌ରାଜ ଅନ୍ତଃପୁର ଭିତରକୁ ଯାଇ ଦାସୀର କଟା ହୋଇଥିବା ଅଙ୍ଗୁଳି ସବୁ ଦେଖିଲେ । କଣ୍ଠରେ ସେହି ଶୁଣ୍ଠି ସ୍ତ୍ରୀ ଦ୍ୱାରା ମନ୍ତ୍ରିତ ସୂତ୍ର ଧାରଣ କରି କିପରି ମୟୂର ହୋଇପାରନ୍ତି, ତାହା ମଧ୍ୟ ପରୀକ୍ଷା କଲେ । ଏଥିରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଅନ୍ତଃପୁରକୁ କଳଙ୍କିତ କରିଥିବା ସେହି ପ୍ରତିହାରକୁ ମାୟାବଟୁ ସେଠାରେ ହିଁ ହତ୍ୟାକଲେ । ସେ ନିଜର ବ୍ୟଭିଚାରିଣୀ ପତ୍ନୀକୁ ମଧ୍ୟ ହତ୍ୟା କରିବା ପାଇଁ ଉଦ୍ୟତ ହେଲାବେଳେ ମୃଗାଙ୍କଦତ୍ତ ସ୍ତ୍ରୀ ହତ୍ୟା ପାପରୁ ତାଙ୍କୁ ନିବୃତ୍ତ କଲେ । ମାୟାବଟୁ ମଞ୍ଜୁମତୀର କେଶସୁଦ୍ଧା ସ୍ପର୍ଶ କରିବେ ନାହିଁ କି ତା'ର ମୁହଁ ଚାହିଁବେ ନାହିଁ ବୋଲି ତାକୁ ଦେଶାନ୍ତର କରିଦେଲେ ।

ମୃଗାଙ୍କଦତ୍ତଙ୍କ ସମଗ୍ର ଚିତ୍ତବୃତ୍ତି ଶଶାଙ୍କବତୀଙ୍କ ପାଇଁ ଉତ୍କଣ୍ଠିତ ଥିଲେ ସୁଦ୍ଧା ବାଲ୍ୟମିତ୍ର ମାୟାବଟୁଙ୍କ ସାଗ୍ରହ ଅନୁରୋଧ ଏବଂ ଆଦର ସତ୍କାର ତାଙ୍କୁ ସେଠାରେ କିଛିଦିନ ଅଟକାଇ ରଖିଲା । ସେଠାରେ ଅବସ୍ଥାନ କରି ସେ ଅନ୍ୟ ମିତ୍ରମାନଙ୍କର ପ୍ରତୀକ୍ଷା କରିବାକୁ ଲାଗିଲେ ।

## ପଞ୍ଚମ ତରଙ୍ଗ

ମୃଗାଙ୍କଦତ୍ତ ବାଲ୍ୟବନ୍ଧୁ ଭିଲ୍ଲେନ୍ଦ୍ର ମାୟାବଟୁଙ୍କ ବାସଭବନରେ ବିମଳବୁଦ୍ଧି ପ୍ରଭୃତି ମନ୍ତ୍ରୀମାନଙ୍କ ସହିତ ଅନ୍ୟ ମନ୍ତ୍ରୀମାନଙ୍କ ପ୍ରତୀକ୍ଷା କରୁଥାନ୍ତି । ଦିନେ ମାୟାବଟୁଙ୍କ ଜଣେ ମନ୍ତ୍ରୀ ଅତି ଉତ୍ତେଜିତ ଭାବରେ ସେଠାରେ ଆସି ପହଞ୍ଚିଲେ । ସେ ମୃଗାଙ୍କଦତ୍ତଙ୍କ ସମକ୍ଷରେ ହିଁ ରାଜାଙ୍କୁ କହିଲେ, 'ମହାରାଜ, ଆପଣଙ୍କ ନିର୍ଦ୍ଦେଶ ଅନୁଯାୟୀ ଭଗବତୀଙ୍କ ନିକଟରେ ବଳି ଚଢ଼ାଇବା ନିମିତ୍ତ ଜଣେ ପୁରୁଷର ସନ୍ଧାନ କରୁଥିବା ବେଳେ ସେହିପରି ଜଣେ ସୁନ୍ଦର ଓ ଅକ୍ଷତ ପୁରୁଷକୁ ଦେଖିବାକୁ ପାଇଲୁ । ତାକୁ ଶୃଙ୍ଖଳାବଦ୍ଧ କରିବାପାଇଁ ଗଲାବେଳେ ଏକାକୀ ସେ ଆମର ପାଞ୍ଚଶହ ସୈନିକଙ୍କୁ ହତ୍ୟା କଲା । ଆମଦ୍ୱାରା ବିଶେଷ ଭାବେ ଆହତ ଓ ବିବଶ ହୋଇପଡ଼ିବାରୁ ଆମେ ତାକୁ ଆପଣଙ୍କ ନିକଟକୁ ଧରିଆଣିଛୁ ।' ଭୀଲ୍ ଅଧିପତି ଯଥାଶୀଘ୍ର ତାହାକୁ ଆଣି ସେମାନଙ୍କର ସମ୍ମୁଖରେ ଉପସ୍ଥିତ କରାଇବା ପାଇଁ କହିଲେ । ରାଜାଙ୍କ ଆଦେଶ ପାଳିତ ହେଲା । ପୁରୁଷଟି ଶସ୍ତ୍ରାଘାତରେ କ୍ଷତବିକ୍ଷତ ହୋଇଯାଇଥାଏ । ତା'ର ରକ୍ତଲିପ୍ତ ଶରୀର ଯୁଦ୍ଧକ୍ଷେତ୍ରର ଧୂଳିରେ ବିବର୍ଣ୍ଣ ଦେଖାଯାଉଥାଏ । ସେ ମସ୍ତକର ସିନ୍ଦୂର ସହିତ ମଦଧାରା ମିଶ୍ରିତ ରକ୍ତବର୍ଣ୍ଣର ପଙ୍କ ଦ୍ୱାରା ଲିପ୍ତ ହୋଇଥିବା ମଦମତ୍ତ ହସ୍ତୀପରି ଧୀର ମନ୍ଥର ଗତିରେ ଶୃଙ୍ଖଳାବଦ୍ଧ ହୋଇ ଆସୁଥାଏ । ଦୂରରୁ ଦେଖି ମୃଗାଙ୍କଦତ୍ତ ତାକୁ ଚିହ୍ନିପାରିଲେ । ସେ ଥିଲା ତାଙ୍କର ଅନ୍ୟତମ ବିଶ୍ୱସ୍ତ ମନ୍ତ୍ରୀ ଗୁଣାକର । ରାଜକୁମାର ଦୌଡ଼ିଯାଇ ତାକୁ କଣ୍ଠାଲିଙ୍ଗନ କଲେ ।

ଶବରାଧିପତି ଯେତେବେଳେ ଅନ୍ୟ ମନ୍ତ୍ରୀମାନଙ୍କଠାରୁ ତାଙ୍କ ପରିଚୟ ଲାଭ କଲେ, ସେ ସଙ୍ଗେସଙ୍ଗେ ତାଙ୍କୁ ଶୃଙ୍ଖଳମୁକ୍ତ କରିବାପାଇଁ ଆଦେଶ ଦେଲେ । ଶୃଙ୍ଖଳମୁକ୍ତ ଗୁଣାକର ମୃଗାଙ୍କଦତ୍ତଙ୍କ ଚରଣ ତଳେ ପ୍ରଣିପାତ କରୁଥିବା ବେଳେ ରାଜା ମାୟାବଟୁ ତାଙ୍କୁ ଭୂମିରୁ ଉଠାଇଆଣି ଯଥୋଚିତ ଅଭିବାଦନ ଓ ସତ୍କାର କଲେ । ରାଜଭବନକୁ ନେଇଯାଇ ତାଙ୍କର ସ୍ନାନ ଲେପନର ବ୍ୟବସ୍ଥା କରାଗଲା । ବୈଦ୍ୟମାନଙ୍କଦ୍ୱାରା କ୍ଷତସ୍ଥାନ ଗୁଡ଼ିକରେ ଔଷଧ ପଟିକାର ବ୍ୟବସ୍ଥା କରାଗଲା । ସେମାନଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ପଥ୍ୟ ଓ

ପାନଭୋଜନ ଦ୍ୱାରା ସେ କିଞ୍ଚିତ୍ ଆଶ୍ୱସ୍ତ ହେଲେ । ମୃଗାଙ୍କଦତ୍ତ ତାଙ୍କ ନିକଟରେ ବସିଥାନ୍ତି । ଗୁଣାକର ଟିକିଏ ସୁସ୍ଥ ଅନୁଭବ କରିବା ଦେଖି ସେ ତାଙ୍କ ଅନୁଭୂତି ସମ୍ପର୍କରେ କହିବା ପାଇଁ ଅନୁରୋଧ କଲେ । ଗୁଣାକର ନିଜ ପ୍ରଭୁଙ୍କ ଆଦେଶ ରକ୍ଷା କରି କହିବା ଆରମ୍ଭ କଲେ–

## ଗୁଣାକରଙ୍କ ଆତ୍ମକଥା

ନାଗରାଜଙ୍କ ଶାପରୁ ମୁଁ ଆପଣଙ୍କଠାରୁ ବିଚ୍ଛିନ୍ନ ହୋଇପଡ଼ିଲି । କ'ଣ ସବୁ ଘଟିଗଲା ମୁଁ କିଛି ବୁଝିପାରିଲି ନାହିଁ । ଦୀର୍ଘ ସମୟ ଧରି ମୁଁ ସେହି ବିସ୍ତୃତ ଅରଣ୍ୟ ମଧ୍ୟରେ ଲକ୍ଷ୍ୟହୀନ ଭାବରେ କେବଳ ବୁଲିବାକୁ ଲାଗିଲି ।

ଯେତେବେଳେ ମୋର ଟିକିଏ ଧୈର୍ଯ୍ୟ ଫେରିଆସିଲା ମୁଁ ନିଜ ଅପେକ୍ଷା ଆପଣମାନଙ୍କ ପାଇଁ ଅଧିକ ଚିନ୍ତିତ ହୋଇପଡ଼ିଲି । ମୋର ମନେହେଲା ଏହା କୌଣସି ଦୁଷ୍ଟବୁଦ୍ଧି ଦ୍ୱାରା ପ୍ରଭାବିତ ବିଧାତାର କୁତ୍ସିତ ବିଳାସ । ଯେଉଁ ମୃଗାଙ୍କଦତ୍ତ ରାଜପ୍ରାସାଦରେ ରହି ମଧ୍ୟ କଷ୍ଟ ଅନୁଭବ କରୁଥିଲେ ସେ ବନଭୂମିର ତପ୍ତବାଲୁକା ରାଶିରେ କିପରି ପଦଚାରଣା କରିବେ ? ତାଙ୍କ ମନ୍ତ୍ରୀମାନେ ମଧ୍ୟ କିପରି ଏସବୁ କଷ୍ଟ ସହିବେ ? ଏହିସବୁ ଚିନ୍ତା କରି ମ୍ରିୟମାଣ ଅବସ୍ଥାରେ ବୁଲୁଥିବା ବେଳେ ଦେବୀ ବିନ୍ଧ୍ୟବାସିନୀଙ୍କ ମନ୍ଦିର ନିକଟରେ ଯାଇ ପହଞ୍ଚିଲି ।

ବଳିଦାନ ପାଇଁ ବିଭିନ୍ନ ପ୍ରକାର ଜୀବଜନ୍ତୁ ଦେବୀଙ୍କ ନିକଟକୁ ଦିନରାତି ନିଆଯାଉଥାଏ । ତେଣୁ ଦେବୀ ମନ୍ଦିରଟି ଯମଭବନ ବୋଲି ମୋର ମନେହେଲା । ମୁଁ ମନ୍ଦିର ମଧ୍ୟରେ ପ୍ରବେଶ କରି ବିନ୍ଧ୍ୟବାସିନୀଙ୍କୁ ପ୍ରଣାମ କଲି । ସେଠାରେ ପଡ଼ିଥିବା ଗୋଟିଏ ଶବ ପ୍ରତି ମୋର ଦୃଷ୍ଟି ଆକର୍ଷିତ ହେଲା । ଶବଟିର ହାତରେ ଗୋଟିଏ ତୀକ୍ଷ୍ଣ ଛୁରିକା ଥାଏ । ସେ ତା'ଦ୍ୱାରା ନିଜ କଣ୍ଠରେ ଗଭୀର କ୍ଷତ କରି ଦେବୀଙ୍କ ନିକଟରେ ଆତ୍ମବଳି ଦେଇଥିଲା । ତାକୁ ଦେଖି ଆପଣଙ୍କ ବିୟୋଗଜନିତ ଦୁଃଖ ଆହୁରି ବଢ଼ିଗଲା । ମୁଁ ମଧ୍ୟ ଆତ୍ମବଳିଦାନ କରି ଦେବୀଙ୍କୁ ସନ୍ତୁଷ୍ଟ କରିବାପାଇଁ ମନସ୍ଥ କଲି । ଦୌଡ଼ିଯାଇ ଶବ ହସ୍ତରୁ ଛୁରିକାଟି ଉଠାଇ ଆଣିଲା ବେଳେ ମୋତେ ଏଥିରୁ ନିବୃତ୍ତ କରି ଜଣେ ତପସ୍ୱିନୀ ସେଠାରେ ଆସି ଉପସ୍ଥିତ ହେଲେ । ବାର୍ଦ୍ଧକ୍ୟ ଯୋଗୁଁ ତାଙ୍କ ଶରୀର ଓ ମସ୍ତକ କମ୍ପିତ ହେଉଥାଏ । ସେ ମୂର୍ତ୍ତିମତୀ ଦୟାପରି ଦେଖାଯାଉଥାନ୍ତି । ମୋଠାରୁ ସମସ୍ତ ବୃତ୍ତାନ୍ତ ଶୁଣିବା ପରେ ସେ ବାତ୍ସଲ୍ୟଭରା କଣ୍ଠରେ କହିଲେ, 'ପୁତ୍ର, ଏପରି କର ନାହିଁ ।

ମୃତବ୍ୟକ୍ତିମାନଙ୍କ ସହିତ ମଧ୍ୟ ମିଳନ ସମ୍ଭବ ହେବା ଦେଖାଯାଇଥାଏ । ଜୀବିତ ବ୍ୟକ୍ତିମାନଙ୍କ କଥା ବା କ'ଣ କହିବା ! ଏ ସମ୍ବନ୍ଧରେ ତୋତେ ଗୋଟିଏ ଗଳ୍ପ କହୁଛି ଶୁଣ—

## ବିନୀତମତି କଥା

ପୃଥିବୀ ପୃଷ୍ଠରେ ଅହିଚ୍ଛତ୍ର ନାମରେ ଏକ ପ୍ରଖ୍ୟାତ ନଗରୀ ଅଛି । ପ୍ରାଚୀନ କାଳରେ ସେଠାରେ ଉଦୟତୁଙ୍ଗ ନାମଧାରୀ ଜଣେ ପ୍ରତାପଶାଳୀ ରାଜା ରାଜତ୍ୱ କରୁଥିଲେ । ତାଙ୍କର ବିଶିଷ୍ଟ ପ୍ରତିହାରର ନାମ ଥିଲା କମଳମତି । କମଳମତିର ପୁତ୍ର ବିନୀତମତି ସେ ସମୟର ଜଣେ ଅତୁଳନୀୟ ଯୁବକ ଥିଲା । ମୃଣାଳ ଓ ଧନୁ ତା'ର ଗୁଣରାଶିକୁ ଅପହରଣ କରିନେଇଥିଲେ ସୁଦ୍ଧା ବିନୀତମତିର ସମକକ୍ଷ ହେବା ପାଇଁ ସମର୍ଥ ହୋଇପାରିନାହାଁନ୍ତି; କାରଣ ମୃଣାଳ ଛିଦ୍ରଯୁକ୍ତ ଏବଂ ଧନୁ ବକ୍ର ।

ଦିନେ ସେ ନିଜର ଶଙ୍ଖମର୍ମର ପ୍ରାସାଦ ଉପରେ ବସି ସଂଧ୍ୟାବେଳେ ଉଦୀୟମାନ ଚନ୍ଦ୍ରଙ୍କୁ ଚାହିଁ ରହିଥାଏ । ନବୋଦିତ ଚନ୍ଦ୍ରମା କାମଦେବଙ୍କ କଳ୍ପଦ୍ରୁମର ନବମୁକୁଳିତ ପତ୍ରଦ୍ୱାରା ରଜନୀରାଣୀ ପୂର୍ବ ଦିଗ ପାଇଁ ପ୍ରସ୍ତୁତ କରିଥିବା କର୍ଣ୍ଣାଳଙ୍କାର ପରି ଶୋଭା ପାଉଥାଏ । ଧୀରେ ଧୀରେ ଚନ୍ଦ୍ରକିରଣ ସମଗ୍ର ପୃଥିବୀକୁ ଧବଳିତ କଲା । ଏହା ଦେଖି ବିନୀତମତି ମଧ୍ୟ ଆନନ୍ଦ ବିଭୋର ହୋଇ ଚନ୍ଦ୍ରଜ୍ୟୋତ୍ସ୍ନା ଦ୍ୱାରା ଅମୃତଧାରା ପରି ଶୋଭାପାଉଥିବା ରାଜପଥଗୁଡ଼ିକ ମଧ୍ୟରୁ କୌଣସି ଏକ ପଥରେ ଯାଇ ଆନନ୍ଦ ଉପଭୋଗ କରିବା ନିମିତ୍ତ ନିଶ୍ଚୟ କଲା ।

ପ୍ରାସାଦ ପୃଷ୍ଠରୁ ଅବତରଣ କରି ଧନୁର୍ବାଣ ହସ୍ତରେ ସେ ଗୋଟିଏ ରାଜପଥରେ ଗତି କରୁଥାଏ । କିଛି ଦୂର ଯିବା ପରେ ହଠାତ୍ କାହାର କ୍ରନ୍ଦନ ଧ୍ୱନି ତାର କର୍ଣ୍ଣଗୋଚର ହେଲା । ସେ ସେହିଦିଗକୁ ଯାଇ ଦେଖିଲା, ଗୋଟିଏ ବୃକ୍ଷର ପାଦଦେଶରେ ଜଣେ ଦିବ୍ୟ ରୂପବତୀ କନ୍ୟା ବସି ରୋଦନ କରୁଛି । ବିନୀତମତି ତା' ନିକଟକୁ ଯାଇ ଜିଜ୍ଞାସା କଲା, 'ଦେବି, ଆପଣଙ୍କ ପରିଚୟ ଜାଣିପାରେ କି ? ଏଠାରେ ବସି ଆପଣଙ୍କ ନିର୍ମଳ ମୁଖଚନ୍ଦ୍ରକୁ ଅଶ୍ରୁଦ୍ୱାରା କାହିଁକି କଳଙ୍କିତ କରୁଛନ୍ତି ?'

ଜିଜ୍ଞାସାର ଉତ୍ତରରେ କନ୍ୟା ନିଜର ପରିଚୟ ଦେଲା—'ମହାତ୍ମନ୍, ମୁଁ ନାଗରାଜ ଗନ୍ଧମାଳୀଙ୍କ କନ୍ୟା । ମୋ ନାଁ ବିନୟବତୀ । ଥରେ ମୋର ପିତା ଯୁଦ୍ଧ କ୍ଷେତ୍ରରୁ ପୃଷ୍ଠଭଙ୍ଗ ଦେଇ ଆସିଗଲେ । ତେଣୁ ବାସୁକି ପିତାଙ୍କୁ ଅଭିଶପ୍ତ କରି କହିଲେ ଯେ ସେ ଶତ୍ରୁଦ୍ୱାରା ପରାଜିତ ହେବେ ଏବଂ ତା'ର ଦାସତ୍ୱ କରିବେ ।'

ଏହି ଅଭିଶାପ ଫଳରେ ମୋର ପିତା କାଳଜିହ୍ୱ ନାମକ ଏକ ଯକ୍ଷ ଦ୍ୱାରା ପରାଜିତ ହେଲେ ଏବଂ ତା'ର ଦାସ ହୋଇ ରହିଲେ । ସେ ତାଙ୍କୁ ନିଜର ପୁଷ୍ପଭାର ବାହକ ରୂପେ ନିଯୁକ୍ତ କରିଥାଏ । ତାଙ୍କର ଏହି ଦୁଃଖ ସହ୍ୟ କରିନପାରି ମୁଁ ପିତାଙ୍କ ପାଇଁ ଭଗବତୀ ଗୌରୀଙ୍କୁ ତପସ୍ୟାରେ ସନ୍ତୁଷ୍ଟ କଲି । ଭଗବତୀ ମୋ ସମ୍ମୁଖରେ ପ୍ରତ୍ୟକ୍ଷ ହୋଇ କହିଲେ, 'ପୁତ୍ରି, ଶୁଣ, ମାନସ ସରୋବର ମଧ୍ୟରେ ସ୍ଫଟିକ ନିର୍ମିତ ଏକ ବିରାଟ ସହସ୍ରଦଳ ପଦ୍ମ ଅଛି । ସହସ୍ର ଫଣାଯୁକ୍ତ ଶେଷନାଗଙ୍କ ମସ୍ତକସ୍ଥିତ ମଣି ସମୂହ ମଧ୍ୟରୁ ଯେପରି ଉଜ୍ଜ୍ୱଳ ଜ୍ୟୋତି ନିର୍ଗତ ହେଉଥାଏ, ସେହିପରି ଏହି ପଦ୍ମ ମଧ୍ୟରୁ ଅଶେଷ ତେଜୋରାଶି ବିଚ୍ଛୁରିତ । ଦିନେ ଏହି ପଦ୍ମଟିକୁ ଦେଖି କୁବେରଙ୍କ ମନରେ ଏହାକୁ ନେବା ପାଇଁ ଆକାଙ୍କ୍ଷା ଜାତ ହେଲା । ସେ ଏଥିପାଇଁ ମାନସ ସରୋବରରେ ସ୍ନାନ କରି ଭଗବାନ ବିଷ୍ଣୁଙ୍କ ଆରାଧନା କଲେ । ଏ ସମୟରେ ତାଙ୍କ ଅନୁଗାମୀ ଯକ୍ଷମାନେ ସେହି ସରୋବର ମଧ୍ୟରେ ହଂସ, ଚକ୍ରବାକ ପ୍ରଭୃତି ରୂପରେ କ୍ରୀଡ଼ା କରୁଥାନ୍ତି । ସେଠାରେ ତୋର ପିତାଶତ୍ରୁ କାଳଜିହ୍ୱ ନାମକ ଯକ୍ଷର ଜ୍ୟେଷ୍ଠଭ୍ରାତା ବିଦ୍ୟୁତ୍‌ଜିହ୍ୱ ମଧ୍ୟ ଚକ୍ରବାକ ରୂପରେ ନିଜ ଭାର୍ଯ୍ୟା ସହିତ କ୍ରୀଡ଼ା କରୁଥିଲା । ତା'ର ପକ୍ଷ ସଞ୍ଚାଳନରୁ ଜଳବିନ୍ଦୁ ଯାଇ କୁବେରଙ୍କ ହସ୍ତରେ ଥିବା ଅର୍ଘ୍ୟପାତ୍ର ଉପରେ ପଡ଼ିବା ଫଳରେ ତାଙ୍କ ଆରାଧନା ବିଘ୍ନିତ ହେଲା । ସେ କ୍ରୋଧରେ ଅଭିଶାପ ଦେଇ ପତ୍ନୀ ସହିତ ବିଦ୍ୟୁତ୍‌ଜିହ୍ୱକୁ ମାନସ ସରୋବରର ଚକ୍ରବାକୀ ଚକ୍ରବାକରେ ପରିଣତ କରିଦେଲେ । ପ୍ରତିଦିନ ରାତ୍ରିରେ ଚକ୍ରବାକ ରୂପେ ରହିଥିବା ବଡ଼ଭାଇର ପରିଚର୍ଯ୍ୟା ପାଇଁ କାଳଜିହ୍ୱ ତା'ର ପ୍ରେୟସୀ ଓ ତୋର ପିତା ଗନ୍ଧମାଳୀ ସହିତ ଆସୁଅଛି । ଦିନରେ ସେ ତା'ର ନିଜ ରୂପ ଧାରଣ କରିନେଉଛି । ତେଣୁ, ପୁତ୍ରି, ତୁ ଅହିଚ୍ଛତ୍ର ରାଜ୍ୟର ପ୍ରତିହାର-ପୁତ୍ର ଉଦ୍ୟମଶୀଳ ଓ ମହାବୀର ବିନୀତମତିକୁ ସେଠାକୁ ପଠାଇବାର ପ୍ରବନ୍ଧ କର । ଏହି ଅଶ୍ୱ ଓ ଖଡ୍‌ଗ ମଧ୍ୟ ନେଇଯା' । ଏହାଦ୍ୱାରା ସେହି ପରାକ୍ରମଶାଳୀ ବିନୀତମତି ଯକ୍ଷକୁ ପରାସ୍ତ କରି ତୋର ପିତାକୁ ମୁକ୍ତି ଦେବ । ଯେଉଁ ବ୍ୟକ୍ତି ଏହି ଖଡ୍‌ଗରତ୍ନର ଅଧିକାରୀ ହେବ, ସେ ସମସ୍ତ ଶତ୍ରୁଙ୍କୁ ଜୟକରି ସମଗ୍ର ପୃଥିବୀର ଏକଛତ୍ର ସମ୍ରାଟ ହେବ ।'

ଏହା କହି ଦେବୀ ଅନ୍ତର୍ହିତା ହେଲେ । ତତ୍‌କ୍ଷଣାତ୍ ମୁଁ ଏହି ଅଶ୍ୱ ଓ ଖଡ୍‌ଗ ମୋ ସମ୍ମୁଖରେ ଉପସ୍ଥିତ ହେବା ଦେଖିଲି । ଆଜି ଆପଣଙ୍କୁ ଏହି କାର୍ଯ୍ୟସିଦ୍ଧି ପାଇଁ ପ୍ରେରଣ କରିବା ନିମିତ୍ତ ଏଠାକୁ ଆସିଅଛି । ଦେବୀଙ୍କ ଅନୁଗ୍ରହରୁ ଆପଣ ଆଜି ନିଜ ପ୍ରାସାଦରୁ ବାହାରି ଏହି ରାଜମାର୍ଗରେ ବୁଲୁଥିବା ଲକ୍ଷ୍ୟ କରି ମୁଁ କ୍ରନ୍ଦନ ଧ୍ୱନି ଦ୍ୱାରା ଆପଣଙ୍କୁ ଏଠାକୁ ଡାକିଆଣିଛି । ହେ ମହାଭାଗ, ଆପଣ ମୋର ଅଭିଳାଷ ପୂର୍ଣ୍ଣ କରନ୍ତୁ । ବିନୟବତୀଙ୍କ ଅନୁରୋଧ ରକ୍ଷା କରିବାପାଇଁ ବିନୀତମତି ସମ୍ମତ ହେଲା ।

ପ୍ରତିହାର କୁମାରଙ୍କ ସମ୍ମତିରେ ଉଲ୍ଲସିତା ହୋଇ ନାଗକନ୍ୟା ତୁରନ୍ତ ଅଶ୍ୱଟିକୁ ନେଇଆସିଲା । ସେ ତ ନିଶ୍ଚିତ ଭାବେ ବେଗବାନ୍ ଥିଲା, କିନ୍ତୁ ତା’ ସହିତ ତାର ଚନ୍ଦ୍ର ଜ୍ୟୋତ୍ସ୍ନାତୁଲ୍ୟ କଳଙ୍କହୀନ ଶ୍ୱେତବର୍ଣ୍ଣ ଦେଖିଲେ ମନେହେଉଥିଲା ସେ ନିଜ ଶରୀରର ଶ୍ୱେତ ରଶ୍ମି ଦ୍ୱାରା ଚତୁର୍ଦ୍ଦିଗର ଅନ୍ଧକାରକୁ ଦୂରୀଭୂତ କରିବାପାଇଁ ଭ୍ରମଣ କରୁଛି । ଏହା ସହିତ ସେ ଖଡ୍‌ଗଟିକୁ ମଧ୍ୟ ନେଇଆସିଥିଲା । ଖଡ୍‌ଗଟି ବିଜୟ ଲକ୍ଷ୍ମୀଙ୍କୁ ଅନୁସନ୍ଧାନ କରୁଥିବା ଭଳି ମନେହେଉଥାଏ । ତା’ ଦେହରୁ ବିଚ୍ଛୁରିତ ଆଲୋକକୁ ଦେଖିଲେ ତାରକିତ ଆକାଶର ଭ୍ରମ ସୃଷ୍ଟି ହେଉଥିଲା ।

ନାଗକନ୍ୟାଠାରୁ ଏ ଦୁଇଟି ଅପୂର୍ବ ବସ୍ତୁ ଲାଭ କରି ବିନୀତମତି ଖଡ୍‌ଗ ହସ୍ତରେ ଅଶ୍ୱାରୋହଣ କଲା । ଚାହୁଁଚାହୁଁ ଅଶ୍ୱଟି ତାକୁ ନିଜ ପ୍ରଭାବରେ ମାନସ ସରୋବରରେ ନେଇ ପହଞ୍ଚାଇଦେଲା । ଶୀତଳ ବାୟୁ ପ୍ରବାହରେ ଆନ୍ଦୋଳିତ ହେଉଥିବା ପଦ୍ମପରିପୂର୍ଣ୍ଣ ସରୋବର କାଳଜିହ୍ୱ ପ୍ରତି ଦୟାଶୀଳ ହୋଇ ସତେ ଯେପରି ଚକ୍ରବାକମାନଙ୍କର ଆର୍ତ୍ତ କୂଜନରେ ବିନୀତମତିକୁ ନିକଟବର୍ତ୍ତୀ ନହେବା ପାଇଁ ନିର୍ଦ୍ଦେଶ ଦେଉଥିଲା । ସେଠାରେ ଗନ୍ଧମାଳୀ ସହିତ ବିଦ୍ୟୁତ୍‌ଜିହ୍ୱକୁ ଦେଖି, ନିଜର ଖଡ୍‌ଗ ଦ୍ୱାରା ଆକ୍ରମଣ କଲା । ଜ୍ୟେଷ୍ଠ ଭ୍ରାତାର ଦୁରବସ୍ଥା ଦେଖି କାଳଜିହ୍ୱ ନିଜର ଚକ୍ରବାକ ଶରୀର ପରିତ୍ୟାଗ କରି ଜଳରାଶି ମଧ୍ୟରୁ ଉଠିଆସିଲା । ଉଭୟଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେବା ମାତ୍ରେ ସେ ନିଜ ବିଦ୍ୟା ପ୍ରଭାବରେ ଆକାଶ ମାର୍ଗକୁ ଉଡ଼ି ଚାଲିଗଲା । ଏହା ଦେଖି ବିନୀତମତି ନିଜ ଅଶ୍ୱ ସାହାଯ୍ୟରେ ପଶ୍ଚାଦ୍ଧାବନ କରି ତାକୁ ଧରିନେଲା । ଖଡ୍‌ଗ ଦ୍ୱାରା ଶିରଚ୍ଛେଦ କରିବାକୁ ଯିବାବେଳେ ଅତ୍ୟନ୍ତ ନମ୍ରତାପୂର୍ବକ ଯକ୍ଷ ଶରଣାଗତ ହୋଇ କ୍ଷମାଭିକ୍ଷା କରନ୍ତେ ବିନୀତମତି ତାକୁ ମୁକ୍ତି ଦେଲା ଏବଂ ସେ ମଧ୍ୟ ଗନ୍ଧମାଳୀକୁ ଦାସତ୍ୱରୁ ମୁକ୍ତ କଲା । ତା’ ସହିତ ସେ ବିନୀତମତିକୁ ଅତିବୃଷ୍ଟି, ଅନାବୃଷ୍ଟି, ପତଙ୍ଗ ଆକ୍ରମଣ, ମୂଷାମାନଙ୍କ ଉତ୍ପାତ, ଶୁଆମାନଙ୍କ ଉପଦ୍ରବ ଏବଂ ରାଜାଙ୍କ ଆକ୍ରମଣ ରୂପ ଛଅଟି ବିପତ୍ତିରୁ ରକ୍ଷା କରିପାରୁଥିବା ଏକ ମୁଦ୍ରିକା ମଧ୍ୟ ପ୍ରଦାନ କଲା । କାଳଜିହ୍ୱ ସହିତ ସଖ୍ୟ ସ୍ଥାପନ କରି ପ୍ରତିହାର ପୁତ୍ର ନାଗରାଜ ଗନ୍ଧମାଳୀ ସହିତ ପୂର୍ବକଥିତ ବୃକ୍ଷ ନିକଟକୁ ଫେରିଆସିଲା ।

ପିତା ଓ କନ୍ୟା ପରସ୍ପରକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ନାଗରାଜ ବିନୀତମତିର ପୌରୁଷରେ ମୁଗ୍ଧୀଭୂତ ହୋଇ ନିଜ କନ୍ୟାକୁ ତା’ ହସ୍ତରେ ଅର୍ପଣ କଲେ । ଗନ୍ଧମାଳୀଙ୍କ ପ୍ରତ୍ୟାବର୍ତ୍ତନ ପରେ ବିନୀତମତି ଖଡ୍‌ଗ, ଅଙ୍ଗୁଠି, ଅଶ୍ୱ ଏବଂ ନାଗକନ୍ୟାରୂପକ ଚାରୋଟି ରତ୍ନ ସହିତ ରାତ୍ରି ଶେଷରେ ସ୍ୱବାସଭବନକୁ ଫେରିଆସିଲା । ପିତା କମଳମତି

ପୁତ୍ରଠାରୁ ସମଗ୍ର ବୃତ୍ତାନ୍ତ ଶୁଣି ନାଗକନ୍ୟା ସହିତ ତା'ର ବିବାହ ଲୌକିକ ବିଧିବିଧାନ ଅନୁଯାୟୀ ସମ୍ପନ୍ନ କଲେ । ନିଜ ନିଜର ଗୁଣବତ୍ତା ଏବଂ ପୂର୍ବୋକ୍ତ ଚାରୋଟି ରତ୍ନ ସହିତ ସେମାନେ ପିତୃଗୃହରେ ଆନନ୍ଦମୟ ଜୀବନଯାପନ କରିବାକୁ ଲାଗିଲେ ।

ପୁତ୍ରର ବୁଦ୍ଧିମତା ଓ ବୀରତ୍ୱରେ ସନ୍ତୁଷ୍ଟ ହୋଇ ପିତା କମଳମତି ପ୍ରସଙ୍ଗକ୍ରମେ ଦିନେ କହିଲେ, 'ପୁତ୍ର, ଆମ ରାଜା ଉଦୟତୁଙ୍ଗଙ୍କ ଉଦୟବତୀ ନାମରେ ଏକମାତ୍ର କନ୍ୟା ଅଛି । ସେ ସମସ୍ତ ବିଦ୍ୟାର ଅଧିକାରିଣୀ । ତା'ର ଅଗାଧ ଶାସ୍ତ୍ରଜ୍ଞାନ ଦେଖି ପିତା ପ୍ରତିଜ୍ଞା କରିଛନ୍ତି ଯେ ତାଙ୍କ କନ୍ୟାକୁ ଶାସ୍ତ୍ରବିବାଦରେ ଯିଏ ପରାସ୍ତ କରିବ ସେହି ବ୍ରାହ୍ମଣ ବା କ୍ଷତ୍ରିୟ କୁମାର ହସ୍ତରେ କନ୍ୟା ସମର୍ପଣ କରିବେ । କନ୍ୟାଟି ଅପ୍ସରା ପରି ସୁନ୍ଦରୀ । ନିଜର ଆଶ୍ଚର୍ଯ୍ୟଜନକ ତର୍କ ଦ୍ୱାରା ସେ ସଂସାରର ସମସ୍ତ ତର୍କଶାସ୍ତ୍ରଜ୍ଞଙ୍କୁ ପରାଜିତ କରିସାରିଛି । ତୁ କ୍ଷାତ୍ର ଧର୍ମ ଓ ଶାସ୍ତ୍ର ବିଦ୍ୟାରେ ଏକାନ୍ତ ଧୁରୀଣ । ଏଣୁ ତୋର ଚୁପ୍‌ଚାପ୍ ବସିରହିବା ଉଚିତ ନୁହେଁ । ରାଜକନ୍ୟାକୁ ତର୍କରେ ପରାଜିତ କରି ତା' ସହିତ ବିବାହ କର ।'

ପିତାଙ୍କଠାରୁ ଏହି ଉପଦେଶ ଶୁଣି ବିନୀତମତି କହିଲେ, 'ଏହି କୋମଳାଙ୍ଗୀ ନାରୀ ସହିତ ମୋର ବିଦ୍ୟାବିବାଦ ସମ୍ଭବ ହେବ କିପରି ? ତଥାପି ଆପଣଙ୍କ ଆଦେଶ ମୋର ଅବଶ୍ୟ ପାଳନୀୟ ।' ବୟସ୍କ ପୁତ୍ରଠାରୁ ଏ ପ୍ରକାର ମନ୍ତବ୍ୟ ଶୁଣି ପ୍ରତିହାର ରାଜାଙ୍କ ନିକଟରେ ଏହି ପ୍ରସ୍ତାବ ଆଗତ କଲେ । କନ୍ୟାକୁ ସତ୍‌ପାତ୍ରରେ ଅର୍ପଣ କରିନପାରି ଚିନ୍ତିତ ଉଦୟତୁଙ୍ଗ ଏଥିରେ ସ୍ୱୀକୃତ ନହେବେ ବା କାହିଁକି ! ପ୍ରତିହାର ରାଜଭବନରୁ ଫେରିଆସି ପୁତ୍ରକୁ ଏ ଶୁଭ ସମ୍ବାଦ ଜଣାଇଲେ ।

ପରଦିନ ରାଜସଭା ମଧ୍ୟରେ ଉପସ୍ଥିତ ଥିବା ପଣ୍ଡିତ ମଣ୍ଡଳୀ ରୂପକ କମଳବନ ମଧ୍ୟରେ ରାଜା ଆସି ରାଜହଂସ ତୁଲ୍ୟ ସିଂହାସନରେ ଆସୀନ ହେବାରୁ ବିନୀତମତି ଅଂଶୁମାନ ସୂର୍ଯ୍ୟତୁଲ୍ୟ ସଭା ମଧ୍ୟରେ ପ୍ରବେଶ କଲା । ରାଜଦରବାରସ୍ଥିତ ଗୁଣଜ୍ଞ ପଣ୍ଡିତମାନଙ୍କର ଭ୍ରମରରୂପକ ଚକ୍ଷୁ ସମୂହ ତା'ର ଚତୁର୍ଦ୍ଦିଗରେ ଘୂରିବାକୁ ଲାଗିଲେ । କିଛି ସମୟ ମଧ୍ୟରେ ରାଜକନ୍ୟା ଉଦୟବତୀ ଧୀର ମନ୍ଥର ଗତିରେ ସଭା ମଧ୍ୟରେ ଆସି ଉପସ୍ଥିତ ହେଲେ । ପୁଷ୍ପିତ ଲତାର ତନ୍ତୁନିର୍ମିତ ଗୁଣଦ୍ୱାରା କାମଦେବଙ୍କ ପୁଷ୍ପଧନୁପରି ଅମିତ ସଦ୍‌ଗୁଣ ଭାରାଦ୍ୱାରା ରାଜକୁମାରୀ ଅତ୍ୟନ୍ତ ନମ୍ର ଦେଖାଯାଉଥିଲେ । ସେ ଧାରଣ କରିଥିବା ବହୁମୂଲ୍ୟ ଆଭୂଷଣ ତାଙ୍କ ନୈସର୍ଗିକ ରୂପକୁ ଶତଗୁଣିତ କରୁଥିଲା । ରତ୍ନାଳଙ୍କାରଗୁଡ଼ିକର ଝଙ୍କାର ସତେ ଯେପରି ତର୍କସଭା ଆରମ୍ଭ ପୂର୍ବରୁ ହିଁ ବାଦୀମାନଙ୍କର

ବିରୋଧ କରୁଥିଲା । ସେ ମର୍କତ ନିର୍ମିତ ଆସନରେ ଆସୀନା ହେଲେ । ମନେହେଲା, ନିର୍ମଳ ଆକାଶ ବକ୍ଷରେ ପୂର୍ଣ୍ଣଚନ୍ଦ୍ର ଉଦିତ ହେଲେ । ସ୍ମିତହାସ୍ୟ ପ୍ରକାଶପୂର୍ବକ ପୂର୍ବପକ୍ଷ ସ୍ଥାପନା କଲାବେଳେ ଅର୍ଥାତ୍ ବାଦୀଙ୍କୁ ପ୍ରଶ୍ନ କଲାବେଳେ ତାଙ୍କ ଦନ୍ତପଂକ୍ତିର କିରଣ ଜାଲରେ ଶବ୍ଦଗୁଡ଼ିକୁ ଗୁମ୍ଫନ କରୁଥିବା ପରି ମନେହେଉଥିଲା । କିନ୍ତୁ ବିନୀତମତି ପ୍ରତ୍ୟେକ ପଦରେ ତାଙ୍କ ସିଦ୍ଧାନ୍ତ ସବୁକୁ ଖଣ୍ଡନ କରି କ୍ଷଣକ ମଧ୍ୟରେ ରାଜକୁମାରୀଙ୍କୁ ନିରୁତ୍ତର କରିଦେଲେ । ସଭାସଦ୍‌ମାନେ ବିନୀତମତିର ପ୍ରଖର ବୁଦ୍ଧିମତାର ପ୍ରଶଂସା କରିବାକୁ ଲାଗିଲେ । ରାଜକନ୍ୟା ମଧ୍ୟ ସମ୍ମୁଖରେ ଉପଯୁକ୍ତ ବରପାତ୍ରଟିଏ ଦେଖି ନିଜର ପରାଜୟକୁ ବିଜୟ ବୋଲିହିଁ ମନେକଲେ । ପ୍ରତିହାର ପୁତ୍ର ଯେଉଁ କନ୍ୟାକୁ ଶାସ୍ତ୍ର ବିବାଦରେ ପରାସ୍ତ କଲେ ରାଜା ଉଦୟତୁଙ୍ଗ ସେହି କନ୍ୟାଙ୍କୁ ତାଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧ କରିଦେଲେ ।

ବିନୀତମତି ଦକ୍ଷିଣାସ୍ୱରୂପ ପ୍ରାପ୍ତ ପ୍ରଚୁର ଧନରାଶି ଏବଂ ଉଭୟ ନାଗକନ୍ୟା ଓ ରାଜକନ୍ୟାଙ୍କ ସହିତ ଆନନ୍ଦର ଦିନଯାପନ କରିବାକୁ ଲାଗିଲେ ।

ଦିନେ ବିନୀତମତି ଉଭୟ ପତ୍ନୀଙ୍କ ସହିତ ଦ୍ୟୂତକ୍ରୀଡ଼ା କରୁଥାନ୍ତି । ବାରମ୍ବାର ପତ୍ନୀମାନଙ୍କ ଦ୍ୱାରା ପରାସ୍ତ ହେବା ଫଳରେ ତାଙ୍କର ମନ ବ୍ୟାକୁଳ ହୋଇଉଠୁଥାଏ । ଏ ସମୟରେ ଜଣେ ବ୍ରାହ୍ମଣ ଆସି ବାରଣ ସତ୍ତ୍ୱେ ଭୋଜନ କରିବାପାଇଁ ଜିଦ୍ ଧରିବସିଲା । ଏଥିରେ ବିରକ୍ତ ଓ ରୁଷ୍ଟ ହୋଇ ନିକଟରେ ଥିବା ଜଣେ ଅନୁଚର କାନରେ ସେ ଧୀର ସ୍ୱରରେ କହିଲେ ଯେ ସେ ଗୋଟିଏ ବଡ଼ କଂସା ପାତ୍ରରେ ବାଲିଭରି କରି ଏବଂ ତାକୁ ଗୋଟିଏ ବସ୍ତ୍ରରେ ଆଚ୍ଛାଦନ କରି ବ୍ରାହ୍ମଣକୁ ଦାନ କରିଦେଉ । ସେହି ସରଳବ୍ରାହ୍ମଣ ପାତ୍ରଟି ଅତ୍ୟନ୍ତ ଭାରି ଲାଗୁଥିବା ଯୋଗୁଁ ସ୍ୱର୍ଣ୍ଣମୁଦ୍ରାରେ ପରିପୂର୍ଣ୍ଣ ମନେକରି ପ୍ରସନ୍ନତା ପୂର୍ବକ ବିଦାୟ ନେଲା । କିନ୍ତୁ ଏକାନ୍ତରେ ବସ୍ତ୍ର ଆଚ୍ଛାଦନଟି ଦୂର କରିବାପରେ ଦୁଃଖରେ ବାଲିଗୁଡ଼ିକୁ ଫୋପାଡ଼ି ଦେଇ ଅନ୍ୟତ୍ର ଚାଲିଗଲା ।

ଏଣେ ବିନୀତମତିଙ୍କ ଦ୍ୟୂତକ୍ରୀଡ଼ା ଶେଷ ହେଲା । ସେ ପୁଣି ପତ୍ନୀମାନଙ୍କ ସହିତ ହସଖୁସିରେ ସମୟ ବିତାଇଲେ । ବ୍ରାହ୍ମଣ ପ୍ରତି କରିଥିବା ଅବିଚାର କଥା ତାଙ୍କର ଆଉ ମନେପଡ଼ିଲା ନାହିଁ ।

କିଛିଦିନ ପରେ ରାଜା ଉଦୟତୁଙ୍ଗ ବାର୍ଦ୍ଧକ୍ୟ ଯୋଗୁଁ ସନ୍ଧି, ବିଗ୍ରହ ଇତ୍ୟାଦି କରିବା ସାମର୍ଥ୍ୟ ହରାଇବସିଲେ । ରାଜ୍ୟ ଶାସନ କରିବା ତାଙ୍କ ପକ୍ଷରେ ଆଉ ସମ୍ଭବ ହେଲାନାହିଁ । ପୁତ୍ରହୀନ ରାଜା ଜାମାତା ବିନୀତମତି ହସ୍ତରେ ରାଜ୍ୟ ସମର୍ପଣ କରିଦେଇ ସନ୍ନ୍ୟାସ

ଆଚରଣ ପୂର୍ବକ ଗଙ୍ଗା ତଟରେ ଯାଇ ବାସକଲେ । ରାଜ୍ୟ ପ୍ରାପ୍ତିମାତ୍ରେ ବିନୀତମତି ନିଜର ଅପୂର୍ବ ଅଶ୍ୱ ଓ ଖଡ୍‌ଗ ସାହାଯ୍ୟରେ ସମଗ୍ର ପୃଥିବୀ ଜୟକରି ନିଜକୁ ଏକଛତ୍ର ସମ୍ରାଟ ରୂପେ ପ୍ରତିଷ୍ଠା କଲେ । ପୂର୍ବୋକ୍ତ ଈତିଘ୍ନ ମୁଦ୍ରିକା ପ୍ରଭାବରେ ତାଙ୍କ ରାଜ୍ୟ ରାମରାଜ୍ୟ ତୁଲ୍ୟ ରୋଗ ଓ ଦୁର୍ଭିକ୍ଷମୁକ୍ତ ଥିଲା ।

ଏକଦା ଦେଶାନ୍ତରରୁ ରତ୍ନଚନ୍ଦ୍ରମତି ନାମରେ ଜଣେ ଭିକ୍ଷୁ ତାଙ୍କ ରାଜସଭାରେ ଆସି ପହଞ୍ଚିଲେ । ବିଭିନ୍ନ ବିଦ୍ୟାରେ ସେ ଥିଲେ ଧୁରୀଣ । ବାଦୀରୂପକ ହସ୍ତୀମାନଙ୍କ ପାଇଁ ସେ ସିଂହ ପରି ପ୍ରତୀୟମାନ ହେଉଥିଲେ । ବିଦ୍ୱାନମାନଙ୍କର ପୃଷ୍ଠପୋଷକ ବିନୀତମତି ତାଙ୍କୁ ଯଥୋଚିତ ସମ୍ମାନ ପ୍ରଦାନ ପୂର୍ବକ ସ୍ୱାଗତ କଲେ । ଭିକ୍ଷୁ ଶାସ୍ତ୍ରାର୍ଥ ପାଇଁ ତାଙ୍କୁ ଆହ୍ୱାନ କଲେ । ସେ କହିଲେ ଯେ ତାଙ୍କର ପ୍ରତିଜ୍ଞା ହେଲା ପ୍ରତିବାଦୀ ଯଦି ହାରିଯାଏ ସେ ବୌଦ୍ଧଧର୍ମ ଗ୍ରହଣ କରିବେ ଏବଂ ସ୍ୱୟଂ ଯଦି ହାରିଯାନ୍ତି ସେ ଚୀବର ପରିତ୍ୟାଗ କରି ବ୍ରାହ୍ମଣମାନଙ୍କର ସେବା କରିବେ । ବିନୀତମତି ଭିକ୍ଷୁଙ୍କ ଅନୁରୋଧ ସ୍ୱୀକାର କଲେ ଏବଂ ତାଙ୍କ ସହିତ ସାତଦିନ ଧରି ଶାସ୍ତ୍ରବିବାଦରେ ଲିପ୍ତ ରହିଲେ । ଅଷ୍ଟମଦିନ ଭିକ୍ଷୁ ଉଦୟବତୀଙ୍କୁ ଶାସ୍ତ୍ର ବିବାଦରେ ପରାଜିତ କରିଥିବା ବିନୀତମତିକୁ ନିଜ ବୌଦ୍ଧିକତାରେ ପରାସ୍ତ କଲେ । ସେହିଦିନ ଭିକ୍ଷୁ ପ୍ରାଣୀମାତ୍ରର ଉପକାରକ ଏବଂ ପୁଣ୍ୟପ୍ରଦ ବୌଦ୍ଧଧର୍ମରେ ବିନୀତମତିକୁ ଦୀକ୍ଷିତ କଲେ । ରାଜା ମଧ ଶ୍ରଦ୍ଧାପୂର୍ବକ ସେହି ଧର୍ମ ଗ୍ରହଣ କରି ସେହିଦିନଠାରୁ ଭଗବାନ ସୌଗତବୁଦ୍ଧଙ୍କୁ ଉପାସନା କରିବା ସହିତ ଭିକ୍ଷୁ, ବ୍ରାହ୍ମଣ ତଥା ସାଧାରଣ ଜନତା ପାଇଁ ବିହାର, ଆଶ୍ରମ, ଅନ୍ନଛତ୍ର ଇତ୍ୟାଦି ପ୍ରତିଷ୍ଠା କରିବା ଆରମ୍ଭ କଲେ । ଏହି ଧର୍ମର ନୀତିଗୁଡ଼ିକ ଅଭ୍ୟାସ କରିବା ଦ୍ୱାରା ରାଜାଙ୍କର ରାଗ, ଦ୍ୱେଷ ଇତ୍ୟାଦି ସାଂସାରିକ ପ୍ରବୃତ୍ତିଗୁଡ଼ିକ ଶାନ୍ତ ହେଲା । ବିନୀତମତି ବୋଧିସତ୍ତ୍ୱଙ୍କ ଆଚରଣ ସମ୍ପର୍କୀୟ ଉପଦେଶ ଶୁଣାଇବା ପାଇଁ ଭିକ୍ଷୁଙ୍କୁ ନିବେଦନ କଲେ ।

ଉପଦେଶ ଦେବା ପୂର୍ବରୁ ଭିକ୍ଷୁ କହିଲେ, 'ରାଜନ୍, ସମସ୍ତ ପାପ କ୍ଷାଳିତ ନହେବା ପର୍ଯ୍ୟନ୍ତ ବୋଧିସତ୍ତ୍ୱଙ୍କ ମହାଚର୍ଯ୍ୟା ଆଚରଣ କରିବା କୌଣସି ବ୍ୟକ୍ତି ପକ୍ଷରେ ସମ୍ଭବ ନୁହେଁ । ଆପଣଙ୍କର ଏପରି କୌଣସି ପାପକର୍ମ ମୁଁ ମୋର ସ୍ଥୂଳଚକ୍ଷୁରେ ଦେଖିପାରୁ ନାହିଁ । ତେଣୁ ଆପଣ ନିଜେ କୌଣସି-ଉପାୟରେ ସୂକ୍ଷ୍ମ ମନଦ୍ୱାରା ନିଜକୃତ ପାପର ସନ୍ଧାନ କରନ୍ତୁ । ତାକୁ କ୍ଷାଳନ କରି ଚିତ୍ତକୁ ପ୍ରଶାନ୍ତ କଲେ ବୋଧିସତ୍ତ୍ୱଙ୍କ ମହାଚର୍ଯ୍ୟା ଆଚରଣ କରିପାରିବେ ।'

ଏହା କହି ଚକ୍ଷୁ ବିନୀତମତିଙ୍କୁ ସ୍ୱପ୍ନମାଣବ ଅର୍ଥାତ୍ ସ୍ୱପ୍ନଦର୍ଶନ କରିବାର ବିଦ୍ୟା ଶିକ୍ଷାଦେଲେ । ରାତିରେ ଏହି ବିଦ୍ୟା ପ୍ରୟୋଗ କରି ଦେଖିଥିବା ସ୍ୱପ୍ନ ସମ୍ପର୍କରେ ପରଦିନ ସେ ଭିକ୍ଷୁଙ୍କୁ କହିଲେ–

'ଗୁରୁଦେବ, ଆପଣଙ୍କ ବିଦ୍ୟା ପ୍ରୟୋଗ କରି ରାତିରେ ମୁଁ ଯେଉଁ ସ୍ୱପ୍ନ ଦେଖିଲି ତା'ର ବିବରଣୀ ଶ୍ରବଣ କରନ୍ତୁ । ସ୍ୱପ୍ନରେ ମୋର ମନେହେଲା ମୁଁ ପରଲୋକକୁ ଚାଲିଯାଇଛି । ସେଠାରେ ମୁଁ କ୍ଷୁଧାତୁର ହୋଇପଡ଼ିବାରୁ ନିକଟରେ ଥିବା ଲୋକମାନଙ୍କୁ କିଛି ଖାଦ୍ୟପଦାର୍ଥ ଭିକ୍ଷାକଲି । କେତେଜଣ ଦଣ୍ଡଧାରୀ ପୁରୁଷ ମୋ ଆଗରେ ତତଲା ବାଲିଗୁଡ଼ିଏ ରଖିଦେଇ ମୋତେ ଖାଇବା ପାଇଁ କହିଲେ । ତା'ର କାରଣ ସ୍ୱରୂପ ସେମାନେ କହିଲେ ଯେ ଅତୀତରେ ମୁଁ କୌଣସି କ୍ଷୁଧାର୍ତ୍ତ ବ୍ରାହ୍ମଣଙ୍କୁ ଏହାହିଁ ଖାଇବାକୁ ଦେଇଥିଲି । ଏଣୁ ପରଲୋକ ପାଇଁ ଏହାହିଁ ମୋର ଅର୍ଜିତ ଖାଦ୍ୟ । ଏହି ପାପରୁ ମୁକ୍ତିଲାଭ କରିବାପାଇଁ ସେମାନେ ମୋତେ ଦଶକୋଟି ସୁବର୍ଣ୍ଣ ମୁଦ୍ରା ଦାନ କରିବାପାଇଁ କହିଲେ । ସେମାନେ ଏହା କହୁଥିବା ବେଳେ ରାତ୍ରିଶେଷ ହେବାରୁ ମୋର ନିଦ୍ରାଭଙ୍ଗ ହେଲା ।'

ଭିକ୍ଷୁଙ୍କୁ ଏହିପରି ସ୍ୱପ୍ନବୃତ୍ତାନ୍ତ ଶୁଣାଇ ବିନୀତମତି ତାଙ୍କ ଉପଦେଶ କ୍ରମେ ଦଶକୋଟି ସ୍ୱର୍ଣ୍ଣମୁଦ୍ରା ଦାନ କଲେ । ପରଦିନ ପୁଣି ସେହି ସ୍ୱପ୍ନମାଣବ ବିଦ୍ୟାଦ୍ୱାରା ସ୍ୱପ୍ନରେ ଯାହା ଦେଖିଲେ ତାହା ପ୍ରାତଃକାଳରେ ଭିକ୍ଷୁଙ୍କ ନିକଟରେ ବର୍ଣ୍ଣନା କରି କହିଲେ, ''ପରଲୋକରେ ସେହି ପୁରୁଷମାନେ ମୋତେ ଆଜି ମଧ ସେହି ତପ୍ତବାଲୁକାର ଭୋଜନ ଦେଲେ । ମୁଁ ସେମାନେ କହିଥିବା ଦଶକୋଟି ସ୍ୱର୍ଣ୍ଣମୁଦ୍ରା ଦାନ କରିସାରିଛି ବୋଲି ଜଣାଇବା ପରେ ସେମାନଙ୍କ ମଧରୁ ଜଣେ କହିଲା, 'ରାଜା, ତୁମର ଏହି ଦାନ ନିଷ୍ଫଳ ହୋଇଯାଇଛି; କାରଣ ସେହି ସ୍ୱର୍ଣ୍ଣମୁଦ୍ରା ମଧରେ ଦାନଗ୍ରହୀତା ବ୍ରାହ୍ମଣର ମଧ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଥିଲା' । ଏହାଶୁଣି ମୋର ନିଦ୍ରାଭଙ୍ଗ ହେଲା ।'' ଭିକ୍ଷୁଙ୍କୁ ଏହା ଶୁଣାଇ ବିନୀତମତି ପରଦିନ ଗରିବ ଭିକ୍ଷୁକମାନଙ୍କୁ ଆଉ ଦଶକୋଟି ସ୍ୱର୍ଣ୍ଣମୁଦ୍ରା ଦାନ କଲେ ।

ରାତିରେ ପୁଣି ସ୍ୱପ୍ନଦର୍ଶନ ବିଦ୍ୟାଦ୍ୱାରା ସ୍ୱପ୍ନଦେଖି ପରଦିନ ପ୍ରଭାତରୁ ସେ ସ୍ୱପ୍ନବୃତ୍ତାନ୍ତ ଏହିପରି ବର୍ଣ୍ଣନା କଲେ– ''ଆଶ୍ଚର୍ଯ୍ୟର କଥା, ଆଜି ମଧ ପରଲୋକରେ ସେମାନେ ସେହି ତପ୍ତ ବାଲୁକା ଖାଇବାପାଇଁ ଦେଲେ । ପଚାରିବାରୁ କହିଲେ, 'ରାଜା ତୁମର ଏହି ଦାନ ମଧ ନିଷ୍ଫଳ ହୋଇଛି; କାରଣ ତୁମ ରାଜ୍ୟ ମଧରେ ଥିବା ଗୋଟିଏ ଜଙ୍ଗଲରେ ତସ୍କରମାନେ ଜଣେ ବ୍ରାହ୍ମଣର ସର୍ବସ୍ୱ ଅପହରଣ କରି ତାକୁ ହତ୍ୟା କରିଛନ୍ତି । ତୁମେ ସେହି ବ୍ରାହ୍ମଣକୁ ରକ୍ଷା କରିନାହଁ । ରାଜା ଭାବରେ ପ୍ରଜାମାନଙ୍କୁ ସୁରକ୍ଷା

ଦେଇନପାରିବା ଯୋଗୁଁ ତୁମର ଏହି ଦାନ ମଧ୍ୟ ନିଷ୍ଫଳ ହୋଇଛି । ତେଣୁ ଆଜି ତୁମେ ଦୁଇଗୁଣ ଦାନ କର' । ଏହାଶୁଣି ମୋର ନିଦ୍ରାଭଙ୍ଗ ହେଲା ।'' ସେହିଦିନଠାରୁ ବିନୀତମତି କୋଡ଼ିଏକୋଟି ସ୍ୱର୍ଣ୍ଣମୁଦ୍ରା ଦାନ ଦେଲେ । ସେ ତାଙ୍କର ପାପକ୍ଷାଳିତ ହେବା ପରିବର୍ତ୍ତେ ବୃଦ୍ଧିଲାଭ କରୁଥିବା ଦେଖି ଭିକ୍ଷୁଙ୍କୁ କହିଲେ ଯେ ପାପପୂର୍ଣ୍ଣ ଏହି ସଂସାରରେ ତା'ପରି ବ୍ୟକ୍ତିମାନଙ୍କର ବୋଧିଚର୍ଯ୍ୟା ଆଚରଣ କରିବା ସମ୍ଭବ ନୁହେଁ । ଭିକ୍ଷୁ କିନ୍ତୁ ତାଙ୍କୁ ଧୈର୍ଯ୍ୟ ଦେଇ କହିଲେ—

''ମହାରାଜ, ପଣ୍ଡିତ ଲୋକମାନେ ଏତିକି ମାତ୍ର କଥାରେ ଧର୍ମପାଳନ ରୂପ ପବିତ୍ର କାର୍ଯ୍ୟ ପାଇଁ ନିରୁତ୍ସାହିତ ହୁଅନ୍ତି ନାହିଁ । ଯେଉଁ ବ୍ୟକ୍ତି ଧୀର ଓ ଉଦ୍ୟମଶୀଳ, ପୁଣି ନିଜ ଧର୍ମ ପଥରେ ଅବିଚଳିତ, ଦେବତାମାନେ ତାକୁ ସର୍ବଦା ରକ୍ଷା କରିଥାନ୍ତି; ତାର ଅଭିଳାଷ ନିଶ୍ଚିତ ଭାବେ ପୂର୍ଣ୍ଣ ହୋଇଥାଏ । ଯଦି ଆପଣ ଭଗବାନ ବୋଧିସତ୍ତ୍ୱଙ୍କ ବରାହ ଜାତକ ଶୁଣିନଥାନ୍ତି, ତେବେ ଶୁଣନ୍ତୁ—

## ପବିତ୍ର ବରାହ କଥା

ପ୍ରାଚୀନ କାଳରେ ବିନ୍ଧ୍ୟ ପର୍ବତର କୌଣସି ଗୁହାରେ ବୁଦ୍ଧଦେବଙ୍କ ଅଂଶରୁ ଜନ୍ମଗ୍ରହଣ କରିଥିବା ଏକ ବୁଦ୍ଧିମାନ୍ ବରାହ ନିଜର ଏକ ବାନର ମିତ୍ରସହିତ ରହୁଥିଲା । ସେ ମିତ୍ରସହିତ ନିଜ ସାମର୍ଥ୍ୟ ଅନୁଯାୟୀ ଅରଣ୍ୟରେ ଥିବା ସମସ୍ତ ଜୀବଜନ୍ତୁଙ୍କ ମଙ୍ଗଳ ସାଧନ କରିବା ସଙ୍ଗେସଙ୍ଗେ ଅତିଥିମାନଙ୍କର ଯଥୋଚିତ ପୂଜାକରି ଜୀବନଯାପନ କରୁଥାଏ ।

ଥରେ ପାଞ୍ଚଦିନ ପର୍ଯ୍ୟନ୍ତ ମୂଷଳଧାରାରେ ବର୍ଷାହେଲା । ଜୀବଜନ୍ତୁମାନେ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯିବା ସମ୍ଭବ ହେଲାନାହିଁ । ପଞ୍ଚମଦିନ ରାତିରେ ବରାହ ଗୁହା ମଧ୍ୟରେ ବାନର ସହିତ ଶୋଇଥିବା ବେଳେ ଗୋଟିଏ ସିଂହ ନିଜର ଭାର୍ଯ୍ୟା ଓ ଶାବକ ସହିତ ଗୁହାଦ୍ୱାରରେ ଆସି ଆଶ୍ରୟ ନେଲା । ସେଠାରେ ଅତ୍ୟନ୍ତ କ୍ଷୀଣ ସ୍ୱରରେ ସେ ଭାର୍ଯ୍ୟାକୁ କହୁଥାଏ ଯେ ସେମାନେ ଭୋକରେ ଆଉ ବେଶି ସମୟ ବଞ୍ଚିପାରିବେ ନାହିଁ; ସେଠାରେ ହିଁ ତାଙ୍କୁ ମରିବାକୁ ପଡ଼ିବ । ସିଂହୀ ଏଥିରେ ପ୍ରସ୍ତାବ ଦେଲା, 'ଆମେ ତିନିଜଣଯାକ ମରିବା ଯଦି ସୁନିଶ୍ଚିତ, ତେବେ ମୋତେ ଖାଇ ତୁମେ ଦୁହେଁ ଜୀବିତ ରହ । ତୁମେ ମୋର ସ୍ୱାମୀ ଏବଂ ସନ୍ତାନଟି ଆମର ପ୍ରାଣଠାରୁ ମଧ୍ୟ ଅଧିକ ପ୍ରିୟ । ତୁମେ ବଞ୍ଚିଥିଲେ ବହୁସ୍ତ୍ରୀ ମିଳିବେ । ଏଣୁ ମୋ ଦ୍ୱାରା ତୁମେ ଦୁହେଁ ଜୀବନ ରକ୍ଷାକର ।'

ସେମାନେ ଏହିପରି କଥାବାର୍ତ୍ତା କରୁଥିବା ବେଳେ ଗୁହା ମଧ୍ୟରେ ଶୋଇଥିବା ଉଦାରଚେତା ବରାହର ନିଦ ଭାଙ୍ଗିଗଲା । ସେ ସିଂହ ଓ ତା'ର ଭାର୍ଯ୍ୟା ମଧ୍ୟରେ ହେଉଥିବା କଥାବାର୍ତ୍ତା ଶୁଣିଲା । ଆନନ୍ଦ ମନରେ ବରାହ ଚିନ୍ତା କଲା ଯେ ଏହିପରି ଦୁର୍ଦ୍ଦିନ ଓ ଭୟାବହ ରାତ୍ରିରେ ଜଣେ ଅତିଥି ଆସି ପହଞ୍ଚିବା ମୋର ସୌଭାଗ୍ୟ । ଆଜି ମୋର ପୁଣ୍ୟୋଦୟ ଘଟିଛି । ତେଣୁ କୌଣସି ପ୍ରତିବନ୍ଧକ ଆସି ପହଞ୍ଚିବା ପୂର୍ବରୁ ମୁଁ ମୋର ଏହି ମରଣଶୀଳ ଶରୀରଦ୍ୱାରା ଅତିଥିମାନଙ୍କର ଜୀବନରକ୍ଷା କରିବା ଉଚିତ ହେବ । ଏହିପରି ଚିନ୍ତାକରି ସେ ଗୁହା ମଧ୍ୟରୁ ବାହାରକୁ ଆସି ଅତ୍ୟନ୍ତ ପ୍ରୀତିପୂର୍ଣ୍ଣ ସ୍ୱରରେ ସିଂହକୁ କହିଲା 'ଭଦ୍ର, ତୁମେ ଆଦୌ ଦୁଃଖକର ନାହିଁ । ମୁଁ ତୁମର, ତୁମ ଭାର୍ଯ୍ୟା ଓ ଶିଶୁର ଆହାରପାଇଁ ଏଠାରେ ଉପସ୍ଥିତ ଅଛି । ମୋତେ ଖାଇ ତୁମେମାନେ ଜୀବନ ରକ୍ଷା କର ।'

ବରାହର କଥା ଶୁଣି ପ୍ରସନ୍ନଚିତ୍ତ ସିଂହ ପତ୍ନୀକୁ କହିଲା, 'ତା'ହେଲେ ପ୍ରଥମେ ଶିଶୁଟିକୁ ଆହାର କରାଅ, ତା'ପରେ ମୁଁ ଖାଇବି ଏବଂ ମୋ ପରେ ତୁମେ ମଧ୍ୟ ଖାଇନେବ ।' ସିଂହୀ ଏଥିରେ ସମ୍ମତା ହୋଇ ପ୍ରଥମେ ଶିଶୁଟିକୁ ବରାହମାଂସ ଭୋଜନ କରାଇଲା । ଏହାପରେ ସେ ଯେତେବେଳେ ବରାହର ମାଂସ ଖାଇବା ଆରମ୍ଭ କଲା ସେତେବେଳେ ସେହି ମହାପ୍ରାଣ ବରାହ କହିଲା, 'ମହାଶୟ, ଆପଣ ଖାଇଲାବେଳେ ମୋର ରକ୍ତସବୁ ଭୂମିରେ ପଡ଼ି ନଷ୍ଟ ହୋଇଯାଉଛି । ତେଣୁ ପ୍ରଥମେ ରକ୍ତତକ ପିଇନିଅ, ପରେ ମାଂସ ଖାଇ କ୍ଷୁଧା ମେଣ୍ଟାଇବ । ଯାହା ବଳିବ ତାହା ଖାଇ ପତ୍ନୀ ତୁମର ସନ୍ତୁଷ୍ଟ ହେବେ ।' ବରାହ ଏହା କହୁଥିବାବେଳେ ସିଂହ ଧୀରେ ଧୀରେ ବରାହ ଶରୀରରେ ସମସ୍ତ ମାଂସ ନିଃଶେଷ କରିଦେଲା; କେବଳ ଅସ୍ଥିତକ ଶେଷ ରହିଲା । କିନ୍ତୁ ବରାହ ତଥାପି ଚେତନା ସ୍ଥିତିରେ ଜାଗ୍ରତ ଥାଏ । ତା'ର କଙ୍କାଳ ମଧ୍ୟରୁ ଜୀବନୀଶକ୍ତି ତଥାପି ଚାଲିଯାଇନଥାଏ । ସତେ ଯେପରି ତାହା ବରାହର ଧୈର୍ଯ୍ୟର ଅନ୍ତିମ ସୀମା ଜାଣିବା ପାଇଁ ଅପେକ୍ଷା କରୁଥିଲା ।

ବରାହ ସମ୍ପୂର୍ଣ୍ଣ ଜୀବନୀଶକ୍ତି ହରାଇବା ପୂର୍ବରୁ ସିଂହୀ ଅତ୍ୟଧିକ କ୍ଷୁଧା ସହ୍ୟ କରିନପାରି ପ୍ରାଣ ତ୍ୟାଗ କଲା । ତା'ର ମୃତପିଣ୍ଡକୁ ସେଠାରେ ଛାଡ଼ିଦେଇ ସିଂହ ମଧ୍ୟ ଶାବକ ସହିତ ସେଠାରୁ ଅନ୍ୟତ୍ର ଚାଲିଗଲା । ରାତି ଧୀରେ ଧୀରେ ଶେଷ ହେବାକୁ ବସିଲା । ବାନରର ନିଦ୍ରାଭଙ୍ଗ ହେବାରୁ ଗୁହା ବାହାରକୁ ଆସି ମିତ୍ରର ଦୁର୍ଦ୍ଦଶା ଦେଖି ସେ କଙ୍କାଳ ନିକଟରେ ବସିଗଲା । ଧୀରେ ଧୀରେ ବ୍ୟଥାତୁର କଣ୍ଠରେ ଏପରି ଦୁର୍ଦ୍ଦଶାର କାରଣ, ଯଦି ସମ୍ଭବ ହୁଏ, ଜାଣିବାପାଇଁ ପ୍ରଶ୍ନ କଲା । ବରାହ ଅତ୍ୟନ୍ତ ପ୍ରଶାନ୍ତ ସ୍ୱରରେ

ସମଗ୍ର ବୃତ୍ତାନ୍ତ କହି ଶୁଣାଇବାରୁ ବାନର ତା'ର ପାଦତଳେ ପଡ଼ିଯାଇ କରୁଣ ସ୍ୱରରେ କହିଲା, 'ମିତ୍ର, ତୁମେ କେଉଁ ଦେବତାଙ୍କ ଅଂଶରେ ଜନ୍ମଗ୍ରହଣ କରି ନିଜ ଶରୀରକୁ ଏହି ପଶୁ ଜୀବନରେ ଉତ୍ସର୍ଗ କରି ନିଜକୁ ମୁକ୍ତକଲ । ଯଦି ତୁମର କିଛି ଶେଷ ଅଭିଳାଷ ଥାଏ, ତା'ହେଲେ କହ, ମୁଁ ତାକୁ ପୂର୍ଣ୍ଣ କରିବି ।'

ମିତ୍ର ବାନରଠାରୁ ଏହାଶୁଣି ବରାହ କ୍ଷୀଣ ସ୍ୱରରେ କହିଲା, 'ମିତ୍ର, ମୋର ଯାହା ଇଚ୍ଛା ତାହା ପୂରଣ କରିବା ସ୍ୱୟଂ ବିଧାତା ପକ୍ଷରେ ମଧ୍ୟ ଦୁଃସାଧ୍ୟ । ମୁଁ ଚାହୁଁଛି ଯେ ଏହି ତପସ୍ୱିନୀ ସିଂହୀ ପୁଣି ବଞ୍ଚିଯାଉ ଏବଂ ମୋର ଶରୀର ମଧ୍ୟ ପୂର୍ବ ପରି ରକ୍ତମାଂସରେ ପୂର୍ଣ୍ଣତା ପ୍ରାପ୍ତ ହେଉ; ମୋ ଶରୀରର ମାଂସଭକ୍ଷଣ କରି ସିଂହୀ ଯଦି ତା'ର କ୍ଷୁଧା ଶାନ୍ତ କରିପାରନ୍ତା, ତା'ହେଲେ ମୁଁ ନିଶ୍ଚିନ୍ତରେ ମୃତ୍ୟୁବରଣ କରିପାରନ୍ତି ।'

ବରାହ ଏହିପରି କହୁଥିବା ବେଳେ ସ୍ୱୟଂ ଧର୍ମଦେବ ସେଠାରେ ଆବିର୍ଭୂତ ହେଲେ । ତାଙ୍କ କରସ୍ପର୍ଶରେ ବରାହ ନିଜର ପଶୁରୂପ ପରିବର୍ତ୍ତେ ଏକ ମହର୍ଷିଙ୍କର ଦିବ୍ୟରୂପ ଫେରିପାଇଲା । ଧର୍ମଦେବ କହିଲେ, 'ପରୋପକାରକୁ ଏକମାତ୍ର ବ୍ରତରୂପେ ଗ୍ରହଣ କରିଥିବା ଦେଖି ତୁମକୁ ପରୀକ୍ଷା କରିବା ନିମିତ୍ତ ମୁଁ ହିଁ ଏହିପରି ସିଂହରୂପ ଧାରଣ କରିଥିଲି । ଆଜି ତୁମେ ନିଜର ଅଖଣ୍ଡ ବ୍ୟକ୍ତିତ୍ୱ ଏବଂ ଅନ୍ୟର ଉପକାର ପାଇଁ ପ୍ରାଣୋତ୍ସର୍ଗ ଦ୍ୱାରା ମୋର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ । ତେଣୁ ମୁଁ ତୁମକୁ ଏଇ ମହର୍ଷି ପଦ ପ୍ରଦାନ କରିଛି ।'

ଏହାଶୁଣି ଏବଂ ଧର୍ମଙ୍କୁ ନିଜ ସମ୍ମୁଖରେ ଦେଖି ମହର୍ଷି କହିଲେ, 'ଭଗବନ୍, ମୋର ଏହି ପରମ ମିତ୍ର ବାନରଙ୍କୁ ପଶୁରୂପେ ପରିତ୍ୟାଗ କରି ମହର୍ଷି ପଦବୀ ଗ୍ରହଣ କରିବାର ଇଚ୍ଛା ମୋର ନାହିଁ ।' ତାଙ୍କ ମୁଖର ବାକ୍ୟଶେଷ ହେବା ପୂର୍ବରୁ ଧର୍ମଦେବ ବାନରକୁ ମଧ୍ୟ ମୁନୀନ୍ଦ୍ର ରୂପ ପ୍ରଦାନ କଲେ ।

ମହାଜନମାନଙ୍କ ସତ୍‌ସଙ୍ଗ ମଧ୍ୟ ସର୍ବଦା ମଙ୍ଗଳମୟ ହୋଇଥାଏ ।

**ଧ୍ରୁବଂ ଫଳାୟ ମହତେ ମହଦ୍‌ଭିଃ ସହ ସଙ୍ଗମଃ ।**

ଉଭୟ ମିତ୍ର ମନୁଷ୍ୟରୂପରେ ଧର୍ମଦେବଙ୍କୁ ପ୍ରଣିପାତ କରୁଥିଲା ବେଳେ ମୃତା ସିଂହୀ ସହିତ ସେ ସେଠାରୁ ଅନ୍ତର୍ହିତ ହୋଇଗଲେ । ରାଜନ୍, ଯେଉଁ ବ୍ୟକ୍ତି ନିଜର ସତ୍ତ୍ୱଗୁଣ ଦ୍ୱାରା ଧର୍ମାଚରଣ ପ୍ରତି ନିଜର ମନୋଭାବକୁ ଶୀଥିଳ କରେନାହିଁ ସେ ଦେବତାମାନଙ୍କ ସହାୟତାରେ ଅନାୟାସରେ ନିଜର ମନୋରଥ ପୂରଣ କରିଥାଏ ।''

ଏବଂ ସତ୍ତ୍ୱବଲାତ୍ୟକ୍ତ ଧର୍ମୋତ୍ସାହୈରଦୁର୍ଲଭାଃ
ଦେବତାକୃତସାହାଯ୍ୟୈ ରାଜନ୍ ବାଞ୍ଛିତସିଦ୍ଧୟଃ ।

ଭିକ୍ଷୁଙ୍କ କଥାଶୁଣି ଦାନଶୀଳ ରାଜା ବିନୀତମତି ଉକ୍ତଦିନ ରାତ୍ରିରେ ପୁଣି ସ୍ୱପ୍ନମାଣବ ପ୍ରୟୋଗ କଲେ । ପ୍ରଭାତରେ ଦେଖିଥିବା ସ୍ୱପ୍ନ ସମ୍ପର୍କରେ ଭିକ୍ଷୁଙ୍କୁ କହିଲେ, "ଗୁରୁଦେବ, ଆଜି ସ୍ୱପ୍ନରେ ମୋର ମନେହେଲା ସତେ ଯେପରି କୌଣସି ଦିବ୍ୟ ମୁନି ମୋତେ କହୁଛନ୍ତି, 'ପୁତ୍ର, ତୁମର ପାପ କ୍ଷାଳିତ ହୋଇଯାଇଛି । ନିଷ୍କଳୁଷ ଭାବରେ ତୁମେ ବର୍ତ୍ତମାନ ବୋଧିସତ୍ତ୍ୱ ପଦପ୍ରାପ୍ତି ପାଇଁ ଆଚାର ପାଳନ କର ।' ମୁନିଙ୍କର ଏହି କଥା ଶୁଣି ମୁଁ ଦିବ୍ୟ ପ୍ରଶାନ୍ତି ଲାଭ କଲି ଏବଂ ମୋର ନିଦ୍ରାଭଙ୍ଗ ହେଲା ।"

ନିଜର ଗୁରୁ ତଥା ଭିକ୍ଷୁଙ୍କ ନିକଟରେ ଏହା ନିବେଦନ କରି ସେ ତାଙ୍କରି ନିର୍ଦ୍ଦେଶ କ୍ରମେ ଏକ ଶୁଭ ଦିନରେ ବୌଦ୍ଧଧର୍ମର ମହାଚର୍ଯ୍ୟା ଗ୍ରହଣ କଲେ । ସେହିଦିନଠାରୁ ବିନୀତମତି ଯାଚକମାନଙ୍କର ସମସ୍ତ କାମନା ପୂରଣ କରି ସମୟ କଟାଉଥାନ୍ତି । ଏଥିରେ ତାଙ୍କ ଧନରାଶି ମଧ୍ୟ ଅକ୍ଷୟ ହୋଇଉଠୁଥାଏ । ଧର୍ମ କରିବା ଦ୍ୱାରା ସମ୍ପତ୍ତିର କେବେ କ୍ଷୟ ହୁଏ ନାହିଁ; ବରଂ ବୃଦ୍ଧି ହିଁ ହୁଏ ।

ଧର୍ମମୂଳା ହି ସଂପଦଃ ।

ଦିନେ ଜଣେ ଯାଚକ ବ୍ରାହ୍ମଣ ବିନୀତମତିଙ୍କ ନିକଟରେ ନିବେଦନ କଲେ, 'ମହାରାଜ୍, ମୁଁ ଜଣେ ବ୍ରାହ୍ମଣ । ପାଟଳିପୁତ୍ରରୁ ଆପଣଙ୍କ ସାହାଯ୍ୟ ଭିକ୍ଷା ପାଇଁ ଆସିଛି । ସେଠାରେ ଗୋଟିଏ ବ୍ରହ୍ମରାକ୍ଷସ ମୋର ଅଗ୍ନିଶାଳାକୁ ଅଧିକାର କରିନେଇଛି । ସେ ମୋର ପୁତ୍ରକୁ ମଧ୍ୟ ନେଇ କେଉଁଠି ଲୁଚାଇ ରଖିଛି । ତାକୁ ସେଠାରୁ ତଡ଼ିବାପାଇଁ ମୋର ସମସ୍ତ କୌଶଳ ବ୍ୟର୍ଥ ହେଲା । ତେଣୁ ଆପଣଙ୍କ ସାହାଯ୍ୟ ପ୍ରାର୍ଥନା ପାଇଁ ଆସି ପହଞ୍ଚିଛି । ଯାଚକମାନଙ୍କ ନିମିତ୍ତ ଆପଣ କଳ୍ପବୃକ୍ଷ ସଦୃଶ । ଶୁଣିଛି, ଆପଣଙ୍କ ନିକଟରେ ସମସ୍ତ ଉପଦ୍ରବ ନାଶ କରିବା ମୁଦ୍ରିକାଟିଏ ଅଛି । ଦୟାପୂର୍ବକ ତାକୁ ପ୍ରଦାନ କଲେ ମୁଁ ଉପକୃତ ହେବି ।'

ଯାଚକ ବ୍ରାହ୍ମଣର ପ୍ରାର୍ଥନା ଶେଷ ହେବା ମାତ୍ରେ ବିନୀତମତି କାଳଜିହ୍ୱଠାରୁ ପାଇଥିବା ମୁଦ୍ରିକାଟି ନିଜ ଅଙ୍ଗୁଳିରୁ ବାହାର କରି ତାକୁ ପ୍ରଦାନ କଲେ । ଏଥିପାଇଁ ତାଙ୍କ ମନରେ ତିଳେ ମାତ୍ର କ୍ଷୋଭ ହେଲା ନାହିଁ । ବ୍ରାହ୍ମଣକୁ ଏ ପ୍ରକାର ଦାନ କରିବା ଦ୍ୱାରା ତାଙ୍କର ବୋଧିସତ୍ତ୍ୱ ବ୍ରତ ପାଳନର ମହତ୍ତ୍ୱ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା ।

କିଛିଦିନ ପରେ ଉତ୍ତରାପଥରୁ ଅନ୍ୟ ଜଣେ ଅତିଥି ଆସି ପହଞ୍ଚିଲେ । ସେ କୌଣସି ରାଜ୍ୟର ଯୁବରାଜ ଥିଲେ । ତାଙ୍କ ନାମଥିଲା ଇନ୍ଦୁକଳଶ । ତାଙ୍କୁ ରାଜବଂଶରେ ଜନ୍ମଗ୍ରହଣ କରିଥିବା ଜାଣି ବିନୀତମତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ଦ୍ୱାରା ସ୍ୱାଗତ କଲେ । ନିଜର ମନୋରଥ ପ୍ରକାଶ କରିବାକୁ ଯାଇ ରାଜକୁମାର କହିଲେ, 'ଯାଚକମାନଙ୍କ ପାଇଁ ଚିନ୍ତାମଣି ବୋଲି ଆପଣଙ୍କ ସୁଖ୍ୟାତି ଦିଗବିଦିଗରେ ପରିବ୍ୟାପ୍ତ । ଶୁଣିଛି, ଆପଣଙ୍କ ଜୀବନ ଭିକ୍ଷା କରିଥିବା ଯାଚକକୁ ମଧ୍ୟ ଶୂନ୍ୟହସ୍ତରେ ଫେରିବାକୁ ହୁଏନାହିଁ । ମୋର କନିଷ୍ଠଭ୍ରାତା କନକକଳଶ ବଳପୂର୍ବକ ରାଜ୍ୟ ଅଧିକାର କରି ମୋତେ ରାଜ୍ୟରୁ ବହିଷ୍କାର କରିଦେଇଛି । ଏଣୁ ମୁଁ ଆପଣଙ୍କ ନିକଟକୁ କିଛି ସାହାଯ୍ୟ ଭିକ୍ଷା କରିବା ପାଇଁ ଆସିଛି । ଆପଣ ଯଦି ମୋତେ ନିଜର ଅପୂର୍ବ ଅଶ୍ୱ ଓ ଖଡ଼୍ଗ ଦାନ କରନ୍ତେ ତେବେ ମୋ ଭାଇକୁ ପରାସ୍ତ କରି ନିଜ ରାଜ୍ୟ ଫେରିପା'ନ୍ତି ।' ବିନୀତମତି ଏହା ଶୁଣିବା ମାତ୍ରେ ମନ୍ତ୍ରୀମାନଙ୍କ ବାରଣସତ୍ତ୍ୱେ ରାଜ୍ୟ ରକ୍ଷାର କବଚ ତୁଲ୍ୟ ଅଶ୍ୱ ଓ ଖଡ଼୍ଗକୁ ଇନ୍ଦୁକଳଶ ହାତରେ ସମର୍ପଣ କରିଦେଲେ । ଏଥିରେ ପ୍ରଶାନ୍ତଚିତ୍ତ ବିନୀତମତିଙ୍କ ମନ ତିଳେମାତ୍ର ବିଚଳିତ ନଥିଲା ।

ଇନ୍ଦୁକଳଶ ଅଶ୍ୱ ଓ ଖଡ଼୍ଗ ସାହାଯ୍ୟରେ ନିଜରାଜ୍ୟ ଫେରିପାଇଲେ । ରାଜ୍ୟରୁ ବହିଷ୍କୃତ ହୋଇ କନିଷ୍ଠଭ୍ରାତା କନକକଳଶ ମଧ୍ୟ ବିନୀତମତିଙ୍କ ରାଜଧାନୀରେ ଆସି ଉପସ୍ଥିତ ହେଲା । ରାଜ୍ୟ ହରାଇଥିବା ଦୁଃଖରେ ସେ ସେଠାରେ ଆତ୍ମାହୁତି ଦେବାପାଇଁ ଆୟୋଜନ କରୁଥାଏ । ନଗରରକ୍ଷକମାନଙ୍କଠାରୁ ରାଜା ବିନୀତମତି ଏହି ଦୁଃସମ୍ବାଦ ଶୁଣି ମନ୍ତ୍ରୀମାନଙ୍କୁ ଡାକି କହିଲେ ଯେ ତାଙ୍କ ଅପରାଧରୁ ହିଁ ଏହି ସଜ୍ଜନଙ୍କର ଏହିପରି ଦଶା ସୃଷ୍ଟି ହୋଇଛି । ତେଣୁ ସେ ନିଜରାଜ୍ୟ ପ୍ରଦାନ କରି ରାଜକୁମାରଙ୍କ ଋଣରୁ ମୁକ୍ତ ହେବାକୁ ଚାହାଁନ୍ତି । ଯେଉଁ ରାଜ୍ୟଦ୍ୱାରା ଅନ୍ୟର ଉପକାର କରାଯାଇ ପାରିବ ନାହିଁ ସେପରି ରାଜ୍ୟରେ ଲାଭ କ'ଣ ? ସେ ନିଃସନ୍ତାନ ଥିବାଯୋଗୁଁ କନକକଳଶଙ୍କୁ ପୁତ୍ର ରୂପେ ସ୍ୱୀକାର କରି ତାଙ୍କ ହସ୍ତରେ ରାଜ୍ୟ ସମର୍ପଣ କରିବାକୁ ଚାହୁଁଛନ୍ତି । ମନ୍ତ୍ରୀମାନେ ଏହାର ପ୍ରତିରୋଧ କରିବା ସତ୍ତ୍ୱେ ସେ ସଙ୍ଗେସଙ୍ଗେ କନକକଳଶଙ୍କୁ ସ୍ୱାଗତ କରିଆଣି ରାଜ୍ୟଭାର ହସ୍ତାନ୍ତର କଲେ ।

ଦାନ କରିସାରିବା ପରେ ରାଜ୍ୟରେ ରହିବା ଅନୁଚିତ ହେବ ବୋଲି ସେ ସେହି ମୁହୂର୍ତ୍ତରେ ହିଁ ନିଜର ଉଭୟ ପତ୍ନୀଙ୍କ ସହିତ ରାଜ୍ୟ ତ୍ୟାଗ କଲେ । ବିନୀତମତିଙ୍କ ରାଜ୍ୟତ୍ୟାଗ ପ୍ରଜାମାନଙ୍କୁ ବିହ୍ୱଳିତ କଲା । ସେମାନଙ୍କ ଅଶ୍ରୁଧାରାରେ ପୃଥିବୀ କର୍ଦ୍ଦମାକ୍ତ ହୋଇଉଠିଲା । ସେମାନେ ବିକଳ ସ୍ୱରରେ କହୁଥାନ୍ତି, 'ସମଗ୍ର ପୃଥିବୀକୁ ଆଲୋକିତ

ଓ ଉଲ୍ଲସିତ କରୁଥିବା ପୂର୍ଣ୍ଣଚନ୍ଦ୍ରକୁ କେଉଁଠାରୁ ଆସି ଆକସ୍ମିକ ଭାବରେ ଏହି ଘନକୃଷ୍ଣ ମେଘମାଳା ଆବୃତ କରୁଛି । ପ୍ରଜାମାନଙ୍କ ପାଇଁ ଆମ ରାଜା ଥିଲେ କଳ୍ପବୃକ୍ଷ ତୁଲ୍ୟ । ରାଜ୍ୟର ପ୍ରତ୍ୟେକଟି ପ୍ରଜା ଏବଂ ପ୍ରତ୍ୟେକଟି ଜୀବଜନ୍ତୁର ଦୁଃଖ ଦୂର କରିବା ପାଇଁ ସେ ଥିଲେ ଚିନ୍ତାମଣି ସଦୃଶ । ବିଧାତା ତାଙ୍କୁ ନେଇ କ'ଣ କରିବ କିଏ ଜାଣେ ?' ଏହିପରି ଅଶ୍ରୁଳ ନୟନରେ ନଗରବାସୀମାନେ ତାଙ୍କର ଅନୁଗମନ କରିବାକୁ ଲାଗିଲେ ।

ବିନୀତମତି କୃତଜ୍ଞ ପ୍ରଜାମାନଙ୍କୁ କୌଣସିମତେ ସାନ୍ତ୍ୱନା ଦେଇ ନଗର ମଧ୍ୟକୁ ଫେରାଇଦେଲେ । ସେଠାରୁ ସେ ଅବିଚଳିତ ଚିତ୍ତରେ କୌଣସି ବାହନ ଆରୋହଣ ନକରି ଅରଣ୍ୟ ଅଭିମୁଖରେ ଯାତ୍ରା କଲେ । ଚାଲି ଚାଲି ସେମାନେ ଏକ ମରୁଭୂମି ନିକଟରେ ଆସି ପହଞ୍ଚିଲେ । ସୂର୍ଯ୍ୟଙ୍କ ପ୍ରଖର କିରଣରେ ମରୁଭୂମିର ବାଲୁକାରାଶି ଅଗ୍ନିକଣା ତୁଲ୍ୟ ଉତ୍ତପ୍ତ ଥିଲା । ଦିଗ୍‌ବଳୟ ପର୍ଯ୍ୟନ୍ତ କୌଣସି ଜଳାଶୟ ବା ବୃକ୍ଷଲତା ଦୃଷ୍ଟିଗୋଚର ହେଉନଥିଲା । ରାଜାଙ୍କ ଧୈର୍ଯ୍ୟ ପରୀକ୍ଷା ପାଇଁ ବୋଧହୁଏ ବିଧାତା ଏପରି ଏକ ମରୁଭୂମି ସୃଷ୍ଟି କରିଅଛନ୍ତି । ମରୁଭୂମିକୁ ଦେଖି ସମସ୍ତେ ଭୟଭୀତ ହୋଇପଡ଼ିଲେ । ପଦବ୍ରଜରେ ବହୁ ଦୂରପଥ ଅତିକ୍ରମ କରିଥିବା ଯୋଗୁଁ କ୍ଳାନ୍ତି ଓ ତୃଷାରେ ବିହ୍ୱଳ ହୋଇ ଅରଣ୍ୟ ସୀମାରେ ଥିବା ଗୋଟିଏ ଉଚ୍ଚସ୍ଥାନରେ ସେମାନେ ବିଶ୍ରାମ ନେବାପାଇଁ ବସିଗଲେ । ଚାହୁଁଚାହୁଁ ସେମାନଙ୍କର ଆଖି ଲାଗିଗଲା । ସମସ୍ତେ ଗାଢ଼ନିଦ୍ରାରେ ଅଭିଭୂତ ହୋଇପଡ଼ିଲେ ।

ଦୀର୍ଘ ସମୟ ପରେ ବିନୀତମତିଙ୍କ ନିଦ୍ରା ଭଙ୍ଗ ହେଲା । ସେ ଆଖି ଖୋଲି ଯାହ ଦେଖିଲେ ସେଥିରେ ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସମ୍ମୁଖରେ ଏକ ବିସ୍ତୃତ ଉପବନ ସେ ଦେଖିବାକୁ ପାଇଲେ । ଉପବନ ମଧ୍ୟରେ ଏକ ଶୀତଳ ଏବଂ ସ୍ୱଚ୍ଛଜଳପୂର୍ଣ୍ଣ ପୁଷ୍କରିଣୀ ଥିଲା । ପୁଷ୍କରିଣୀ ମଧ୍ୟରେ ପୁଷ୍ପିତ ପଦ୍ମସବୁ କ୍ରୀଡ଼ା କରୁଥିଲେ । ଉପବନର ବୃକ୍ଷଗୁଡ଼ିକ ସୁମିଷ୍ଟ ଫଳଭାରରେ ନମ୍ର ଥିଲେ । ବୃକ୍ଷଛାୟାରେ ମସୃଣ ଶିଳାଖଣ୍ଡ ସବୁ ମଣ୍ଡପତୁଲ୍ୟ ଶୋଭାପାଉଥିଲା । ଉପବନର ସମତଳଭୂମି ସବୁଜ ତୃଣରାଶି ଦ୍ୱାରା ଆଚ୍ଛାଦିତ ଥିଲା । ମନେହେଉଥିଲା, ରାଜାଙ୍କ ଅକାତର ଦାନଶୀଳତା ତଥା ସାତ୍ତ୍ୱିକ ପ୍ରଭାବରୁ ସ୍ୱର୍ଗ ସ୍ଥିତ ନନ୍ଦନକାନନର ଏକ ଅଂଶ ପୃଥିବୀ ପୃଷ୍ଠକୁ ଓହ୍ଲାଇ ଆସିଛି । ରାଜା ଏହାକୁ ସ୍ୱପ୍ନ ନା ଭ୍ରମ ନା କୌଣସି ଦେବତାଙ୍କ ଅଯାଚିତ ଅନୁଗ୍ରହ ଜାଣିପାରିଲେ ନାହିଁ । ଏ ସମୟରେ ଆକାଶମାର୍ଗରେ ହଂସମିଥୁନ ରୂପେ ଉଡୁଥିବା ଦୁଇଜଣ ସିଦ୍ଧଙ୍କ ଦିବ୍ୟବାଣୀ ଶୁଣାଗଲା–'ରାଜନ୍, ଏସବୁ ପୁଣ୍ୟରାଶିର ହିଁ ପ୍ରଭାବ । ଏଥିରେ ଆଶ୍ଚର୍ଯ୍ୟ ହେବାର

କ'ଣ ଅଛି ! ବର୍ତ୍ତମାନ ତୁମେ ଫଳପୁଷ୍ପ ପରିପୂରିତ ଏହି ଉପବନ ମଧ୍ୟରେ ନିଜର ଇଚ୍ଛାନୁଯାୟୀ ବିଚରଣ କର ।' ସିଦ୍ଧମାନଙ୍କର କଥା ଶୁଣି ବିନୀତମତି ନିଶ୍ଚିନ୍ତ ମନରେ ପତ୍ନୀମାନଙ୍କ ସହିତ ସେଠାରେ ତପଶ୍ଚରଣ କରିବାକୁ ଲାଗିଲେ ।

ଦିନେ ରାଜର୍ଷି ବିନୀତମତି ଏକ ଶିଳାଖଣ୍ଡ ଉପରେ ବସିଥାନ୍ତି । ଏ ସମୟରେ କୌଣସି ଜଣେ ବ୍ୟକ୍ତି ବୃକ୍ଷଶାଖାରୁ ଓହଳି ଆତ୍ମହତ୍ୟା କରିବାପାଇଁ ଉଦ୍ୟମ କରୁଥିବା ତାଙ୍କର ଦୃଷ୍ଟିଗୋଚର ହେଲା । ସେ ତୀବ୍ରଗତିରେ ଯାଇ ତାକୁ ସେଥିରୁ ନିବୃତ୍ତ କଲେ । ପ୍ରୀତିପୂର୍ଣ୍ଣ ବାକ୍ୟରେ ତାକୁ ଆଶ୍ୱାସିତ କରି ଏ ପ୍ରକାର କୁକର୍ମର କାରଣ ଜିଜ୍ଞାସା କରନ୍ତେ, ଲୋକଟି କହିଲା, 'ମୁଁ ସୋମବଂଶୀ ନାଗଶୂରଙ୍କ ପୁତ୍ର ସୋମଶୂର । ମୋର ଜନ୍ମବେଳେ ଜ୍ୟୋତିଷୀମାନେ ଜାତକ ଦେଖି କହିଥିଲେ ଯେ ମୁଁ ଜଣେ ଚୋର ହେବି । ଏହି ଭୟରେ ପିତା ଶୈଶବରୁ ହିଁ ମୋତେ ଯତ୍ନପୂର୍ବକ ଧର୍ମଶାସ୍ତ୍ର ଶିକ୍ଷା ଦେଲେ, କିନ୍ତୁ ସମସ୍ତ ଧର୍ମଶାସ୍ତ୍ର ଅଧ୍ୟୟନ କରିସାରିବା ପରେ ମଧ୍ୟ କୁସଙ୍ଗରେ ପଡ଼ି ଚୋରି କରୁଥାଏ । ପୂର୍ବାର୍ଜିତ କର୍ମଫଳକୁ କିଏ ବା ଅନ୍ୟଥା କରିବ !

କସ୍ୟ ପ୍ରାକ୍ କର୍ମ କେନେହ ଶକ୍ୟତେ କର୍ତ୍ତୁମନ୍ୟଥା ।

ଦିନେ ମୁଁ ଚୋରି କରୁଥିବା ସମୟରେ ନଗର ରକ୍ଷକମାନଙ୍କ ହାତରେ ଧରାପଡ଼ିଲି । ମୋର ମୃତ୍ୟୁଦଣ୍ଡାଦେଶ ହେଲା । ଘାତୁକମାନେ ମୋତେ ବଧଭୂମିକୁ ନେଇଗଲେ । ଏ ସମୟରେ ରାଜାଙ୍କର ଏକ ବିଶାଳକାୟ ହସ୍ତୀ ପାଗଳ ହୋଇଯାଇଥାଏ । ସେ ବନ୍ଧନ ଛିନ୍ନ କରି ରାଜରାସ୍ତାରେ ବହୁ ଲୋକଙ୍କୁ ମୃତାହତ କରି ସେହି ବଧଭୂମିରେ ଆସି ପହଞ୍ଚିଲା । ତାକୁ ଦେଖି ଘାତୁକମାନେ ମୋତେ ଛାଡ଼ିଦେଇ ପଳାୟନ କଲେ । ଏହି ତୁମୁଳ କାଣ୍ଡ ମଧ୍ୟରେ ମୁଁ ମଧ୍ୟ ଜୀବନ ଧରି ସେଠାରୁ ଖସିଗଲି ।

ପରେ ମୁଁ ଶୁଣିଲି ଯେ ମୋତେ ବଧଭୂମିକୁ ନିଆଯାଇଥିବା ଶୁଣି ମୋର ପିତା ଶରୀର ତ୍ୟାଗ କରିଛନ୍ତି । ସେହି ଦୁଃଖରେ ମା' ମଧ୍ୟ ତାଙ୍କର ସହଗମନ କରି ଆତ୍ମବିସର୍ଜ୍ଜନ କରିଛନ୍ତି । ଶୋକ ଓ ଦୁଃଖରେ ମୋର ମନ ବ୍ୟାକୁଳ ହୋଇପଡ଼ିଲା । ଶରୀର ତ୍ୟାଗର ସଂକଳ୍ପ କରି ମୁଁ ଏହି ମରୁଭୂମିରେ ଆସି ପହଞ୍ଚିଲି । ଏଠାରେ ପଦାର୍ପଣ କରିବାମାତ୍ରେ ମୋ ସମ୍ମୁଖରେ ଜଣେ ଦିବ୍ୟରମଣୀ ଆବିର୍ଭୂତା ହେଲେ । ନିକଟକୁ ଆସି ମୋତେ ସାନ୍ତ୍ୱନା ଦେଇ କହିଲେ, 'ପୁତ୍ର, ତୁ ରାଜର୍ଷି ବିନୀତମତିଙ୍କ ଆଶ୍ରମ ନିକଟକୁ ଆସିଯାଇଛୁ, ଏଣୁ ତୋର ସମସ୍ତ ପାପ କ୍ଷାଳିତ ହୋଇଯାଇଛି । ବର୍ତ୍ତମାନ ତୁ ତାଙ୍କ ଠାରୁ ଦିବ୍ୟଜ୍ଞାନ ଲାଭ କରିବୁ ।'. ଏହା କହି ସେ ତିରୋହିତା ହେଲେ ।

ଏହି ମରୁଭୂମି ଓ ଉପବନ ମଧ୍ୟରେ ଅନୁସନ୍ଧାନ କରି ଏପର୍ଯ୍ୟନ୍ତ ମୁଁ ସେହି ମହାତ୍ମାଙ୍କ ସନ୍ଧାନ ପାଇପାରିଲି ନାହିଁ । ତେଣୁ ପ୍ରାଣ ବିସର୍ଜ୍ଜନ କରିବାକୁ ଯାଉଥିଲି । ଏ ସମୟରେ ଆପଣ ମୋତେ ଦେଖିପାରିଛନ୍ତି ।'

ସୋମଶୂରଠାରୁ ତା'ର ସମସ୍ତ ବୃତ୍ତାନ୍ତ ଶୁଣି ବିନୀତମତି ତାକୁ ନିଜ ସହିତ ଆଶ୍ରମକୁ ନେଇଗଲେ । ସମୁଚିତ ସତ୍କାର ପରେ ସେ ନିଜର ପରିଚୟ ଦେଇ ବିଭିନ୍ନ ଧର୍ମ କଥା ଦ୍ୱାରା ତା'ର ଅଜ୍ଞାନରାଶିକୁ ଦୂର କରି କହିଲେ, 'ବତ୍ସ, ଅଜ୍ଞାନକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିବା ଉଚିତ; କାରଣ ଏହାଦ୍ୱାରା ବୁଦ୍ଧି ବିପରୀତମୁଖୀ ହୋଇଯାଏ ଏବଂ ଇହଲୋକ ଓ ପରଲୋକରେ କେବଳ ଦୁଃଖ ହିଁ ମିଳିଥାଏ । ଏ ସମ୍ପର୍କରେ ଆଗମ ଶାସ୍ତ୍ରରେ ଥିବା ଗୋଟିଏ ଗଳ୍ପ ଶ୍ରବଣ କର—

## ଦେବଭୂତି କଥା

ପ୍ରାଚୀନ କାଳରେ ପାଞ୍ଚାଳ ରାଜ୍ୟରେ ଦେବଭୂତି ନାମକ ଜଣେ ବେଦଜ୍ଞ ବ୍ରାହ୍ମଣ ରହୁଥିଲେ । ଭୋଗବତୀ ତାଙ୍କର ସତୀସାଧ୍ୱୀ ସ୍ତ୍ରୀ । ଦିନେ ବ୍ରାହ୍ମଣ ସ୍ନାନ କରିବାପାଇଁ ଯାଇଥିବା ବେଳେ ତାଙ୍କ ସ୍ତ୍ରୀ ଶାଗ ତୋଳିବାପାଇଁ ବଗିଚା ମଧ୍ୟକୁ ଯାଇଥାନ୍ତି । ସେଠାରେ ଗୋଟିଏ ଧୋବାର ଗଧ ଶାଗ ପଟାଳିଗୁଡ଼ିକୁ ଖାଇଯାଉଥାଏ । ତାକୁ ତଡ଼ିବା ପାଇଁ ବ୍ରାହ୍ମଣପତ୍ନୀ ଖଣ୍ଡିଏ ବାଡ଼ିଧରି ଗୋଡ଼ାଇଲେ । ଗଧଟି ଦୌଡ଼ି ଚାଲିଯିବା ବେଳେ ଗୋଟିଏ ଖାତ ମଧ୍ୟରେ ପଡ଼ିଗଲା । ଫଳରେ ତା'ର ଗୋଟିଏ ଗୋଡ଼ ଭାଙ୍ଗିଗଲା । ଧୋବା ଏହା ଜାଣିପାରି କ୍ରୋଧରେ ବ୍ରାହ୍ମଣୀଙ୍କୁ ସେହି ବାଡ଼ିରେ ପ୍ରହାର କରି ପଦାଘାତ ଦ୍ୱାରା ସେହି ଖାତ ମଧ୍ୟକୁ ଠେଲିଦେଲା । ଫଳରେ ସେହିଠାରେ ହିଁ ଗର୍ଭବତୀ ବ୍ରାହ୍ମଣୀଙ୍କର ଗର୍ଭପାତ ହୋଇଗଲା । ଧୋବା ବ୍ରାହ୍ମଣପତ୍ନୀଙ୍କୁ ସେହି ଅବସ୍ଥାରେ ଛାଡ଼ିଦେଇ ଗଧ ସହିତ ଚାଲିଯିବା ପରେ ତାଙ୍କ ସ୍ୱାମୀ ସ୍ନାନ ସାରି ଫେରିଆସିଲେ । ପତ୍ନୀର ଏ ଅବସ୍ଥା ଦେଖି ଏବଂ ତାଙ୍କଠାରୁ ସମସ୍ତ ଘଟଣା ଶୁଣି ସେ ନଗରପାଳ ନିକଟରେ ଯାଇ ଅଭିଯୋଗ କଲେ ।

ନଗରପାଳ ପ୍ରକୃତ ଘଟଣାର ତଦନ୍ତ କରିବା ନିମିତ୍ତ ସେହି ବଳାସୁର ନାମକ ଧୋବାକୁ ମଧ୍ୟ ଧରିଆଣିଲେ । ବ୍ରାହ୍ମଣ ଦେବଭୂତି ଏବଂ ଧୋବାଠାରୁ ଅଭିଯୋଗ ଶୁଣିଲା ପରେ ମୂର୍ଖ ନଗରପାଳ ନିଜର ନ୍ୟାୟ ଶୁଣାଇ କହିଲେ, 'ଗଧଟିର ଗୋଡ଼ ଭାଙ୍ଗି ଯାଇଥିବାରୁ ସେ ଧୋବାର ବୋଝ ଆଉ ବୋହିପାରିବ ନାହିଁ । ତେଣୁ ତା'ର ଗୋଡ଼ ଭଲ ହେବା ପର୍ଯ୍ୟନ୍ତ ସେ ବ୍ରାହ୍ମଣ ଧୋବାର ବୋଝ ବୋହିବେ । ସେହିପରି ଧୋବା

ବ୍ରାହ୍ମଣ ସ୍ତ୍ରୀଙ୍କ ଗର୍ଭପାତ କରିଛି ଏଣୁ ସେ ପୁଣି ତାଙ୍କୁ ଗର୍ଭବତୀ କରି ଦେବଭୂତିଙ୍କୁ ସମର୍ପଣ କରିବ ।'

ନଗରପାଳର ଏ ପ୍ରକାର ଦଣ୍ଡବିଧାନରେ ଦୁଃଖିତ ଓ ଲଜ୍ଜିତ ଦେବଭୂତି ଓ ତାଙ୍କ ପତ୍ନୀ ବିଷପାନ କରି ଆତ୍ମହତ୍ୟା କଲେ । ଏହା ରାଜାଙ୍କର କର୍ଣ୍ଣଗୋଚର ହେବାରୁ ସେ ସେହି ମୂର୍ଖ ଓ ବ୍ରହ୍ମଘାତୀ ନଗରପାଳକୁ ପ୍ରାଣଦଣ୍ଡରେ ଦଣ୍ଡିତ କଲେ । ମୃତ୍ୟୁପରେ ବହୁଜନ୍ମ ଧରି ପଶୁଯୋନିରେ ଜନ୍ମଗ୍ରହଣ କରି ସେ ଅନନ୍ତ ଦୁଃଖ ଲାଭକଲା ।'

ଏହିପରି ଅଜ୍ଞାନରୂପକ ଅନ୍ଧକାରରେ ଆବୃତ ଏବଂ ନିଜ ଦୋଷରୁ ହିଁ ବିପଥରେ ଚାଳିତ ହେଉଥିବା ବ୍ୟକ୍ତି ଶାସ୍ତ୍ରଜ୍ଞାନ ରୂପକ ଦୀପଶିଖା ଅଭାବରୁ କଷ୍ଟ ହିଁ ଲାଭ କରିଥାଏ ।

ଇତ୍ୟଜ୍ଞାନତମଚ୍ଛନାଃ ସ୍ୱଦୋଷୋନ୍ମାର୍ଗଗାମିନଃ
ଅପୁରସ୍କୃତସତ୍‌ଶାସ୍ତ୍ରଦୀପା ଭ୍ରଶ୍ୟନ୍ତି ନିଶ୍ଚିତମ୍ ।

ରାଜର୍ଷି ବିନୀତମତି ଉଚିତ ମାର୍ଗ ଅନୁସନ୍ଧାନ କରୁଥିବା ସୋମଶୂରକୁ କହିଲେ, ''ବତ୍ସ, ତୁମର ପାରମିତା ବା ସମ୍ପୂର୍ଣ୍ଣ ଜ୍ଞାନପାଇଁ ମୁଁ କ୍ରମଶଃ କେତୋଟି କଥା କହୁଛି, ତାକୁ ଧ୍ୟାନ ଦେଇ ଶୁଣ—

## ଦାନପାରମିତା କଥା

ପ୍ରାଚୀନ କାଳରେ କୁରୁକ୍ଷେତ୍ରରେ ମଳୟପ୍ରଭ ନାମରେ ଜଣେ ରାଜା ଥିଲେ । ଥରେ ତାଙ୍କ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଲା । ରାଜା ପ୍ରଜାମାନଙ୍କୁ ରାଜକୋଷରୁ ଧନବିତରଣ କରିବାପାଇଁ ନିଶ୍ଚୟ କଲେ । କିନ୍ତୁ ମନ୍ତ୍ରୀମାନେ ଲୋଭବଶତଃ ରାଜାଙ୍କୁ ସେଥିରୁ ନିବୃତ୍ତ କରୁଥାନ୍ତି । ଏହା ଜାଣିପାରି ରାଜକୁମାର ଇନ୍ଦୁପ୍ରଭ ଦିନେ ରାଜାଙ୍କୁ ଏକାନ୍ତରେ କହିଲେ, 'ପିତା, ଆପଣ ମନ୍ତ୍ରୀମାନଙ୍କର କୁମନ୍ତ୍ରଣାରେ ପଡ଼ି ପ୍ରଜାମାନଙ୍କୁ ଉପେକ୍ଷା କରିବା ଉଚିତ ହେଉନାହିଁ । ଆପଣ ସେମାନଙ୍କପାଇଁ କଳ୍ପବୃକ୍ଷ ସଦୃଶ ଏବଂ ସେମାନେ ଆପଣଙ୍କ ପାଇଁ କାମଧେନୁ ।' ପୁତ୍ରର ଏପରି ଆଗ୍ରହ ଦେଖି ମନ୍ତ୍ରୀମାନଙ୍କ ବଶୀଭୂତ ରାଜା ମଳୟପ୍ରଭ ଉଦାସୀନ ଭାବରେ ଜଣାଇଲେ, 'ପୁତ୍ର, ଆମ ପାଖରେ କ'ଣ ଅକ୍ଷୟ ଧନଭଣ୍ଡାର ଅଛି କି ? ଏପରି ଧନଭଣ୍ଡାର ବିନା ମୁଁ ଯଦି କଳ୍ପବୃକ୍ଷ ହୋଇପାରେ ତୁ ସେମାନଙ୍କ ପାଇଁ କାହିଁକି ବା କଳ୍ପବୃକ୍ଷ ନହେବୁ ।'

ପିତାଙ୍କ ଏ ପ୍ରକାର ଅବଜ୍ଞା ଇନ୍ଦୁପ୍ରଭଙ୍କ ମନରେ ବହୁତ ଦୁଃଖ ଜାତ କଲା । ସେ ମନେମନେ ପ୍ରତିଜ୍ଞା କଲେ ଯେ ତପସ୍ୟା ଦ୍ୱାରା ସେ ହୁଏତ କଳ୍ପବୃକ୍ଷ ହେବେ, ନୋଚେତ୍

ପ୍ରାଣତ୍ୟାଗ କରିବେ । ଏପରି ନିଶ୍ଚୟ କରି ମହାସତ୍ତ୍ୱ ରାଜକୁମାର ତପୋବନ ମଧ୍ୟକୁ ଯାତ୍ରାକଲେ ।

ଇନ୍ଦୁପ୍ରଭ ଉପବନରେ ପହଞ୍ଚିବା ମାତ୍ରେ ରାଜ୍ୟରୁ ଦୁର୍ଭିକ୍ଷ ଦୂର ହେଲା । ତାଙ୍କର କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ଦେବରାଜ ଇନ୍ଦ୍ର ବରଦାନ ଦେଲେ । ସେ ବର ପ୍ରଭାବରେ ନିଜ ନଗରକୁ ଆସି ଗୋଟିଏ କଳ୍ପବୃକ୍ଷରେ ରୂପାନ୍ତରିତ ହୋଇଗଲେ । କଳ୍ପବୃକ୍ଷର ଦିଗନ୍ତ ପ୍ରସାରିତ ଶାଖାଗୁଡ଼ିକ ସତେ ଯେପରି ପକ୍ଷୀମାନଙ୍କର କାକଳି ଦ୍ୱାରା ଦୂରଦୂରାନ୍ତରରେ ଥିବା ଯାଚକମାନଙ୍କୁ ଆହ୍ୱାନ କରୁଥିଲା । ଯାଚକମାନେ ବୃକ୍ଷ ପ୍ରଭାବରୁ ନିଜର ସମସ୍ତ ଅଭିଳାଷ ପୂର୍ଣ୍ଣ କରି ସ୍ୱର୍ଗରାଜ୍ୟରେ ବାସ କରୁଥିବା ପରି ମନେକରୁଥିଲେ । ସେମାନଙ୍କର କୌଣସି ଅଭିଳଷିତ ଦ୍ରବ୍ୟର ଅଭାବ ନଥିଲା ।

ଦିନେ ଦେବରାଜ ଇନ୍ଦ୍ର ତାଙ୍କୁ ପ୍ରଲୁବ୍ଧ କରିବାପାଇଁ ଆସି ରାଜକୁମାରଙ୍କୁ କହିଲେ, 'ତୁମର ପୁଣ୍ୟ ତପସ୍ୟାବଳରୁ ପରୋପକାର କରିବାର ସମସ୍ତ କାମନା ପୂର୍ଣ୍ଣ ହୋଇଛି । ବର୍ତ୍ତମାନ ଆସ ସ୍ୱର୍ଗକୁ ଯିବ ।' ଏହାଶୁଣି କଳ୍ପବୃକ୍ଷରୂପୀ ଇନ୍ଦ୍ରପ୍ରଭ ଦେବରାଜଙ୍କୁ ବିନୀତ ପ୍ରଣାମ ଜଣାଇ ନିବଦେନ କଲେ, 'ଭଗବନ୍, ଆପଣ ଦେଖୁଛନ୍ତି, ଏଠାରେ ଅସଂଖ୍ୟ ବୃକ୍ଷ ନିଜର ଫଳପୁଷ୍ପଦ୍ୱାରା ସାମର୍ଥ୍ୟ ଅନୁଯାୟୀ ଅନ୍ୟର ଉପକାର କରୁଛନ୍ତି । ମୁଁ କଳ୍ପବୃକ୍ଷ ହୋଇ ସେମାନଙ୍କ ଉପକାର କରିବା ପରିବର୍ତ୍ତେ ନିଜର ସୁଖପାଇଁ ସ୍ୱର୍ଗଲୋକକୁ କିପରି ଯାଇପାରିବି ?' ତାଙ୍କର ଏହି ଉଦାର ବଚନ ଶ୍ରବଣରେ ଇନ୍ଦ୍ର ସନ୍ତୁଷ୍ଟ ହୋଇ କହିଲେ ଯେ ସେ ତାଙ୍କର ସମଗ୍ର ପ୍ରଜାବୃନ୍ଦଙ୍କୁ ସ୍ୱର୍ଗକୁ ନେଇଯିବେ । ଇନ୍ଦୁପ୍ରଭ ଅବିଚଳିତ ତଥା ନିରୁଦ୍‌ବିଗ୍ନ କଣ୍ଠରେ ଇନ୍ଦ୍ରଙ୍କୁ କହିଲେ, 'ଯଦି ଆପଣ ମୋ ପ୍ରତି ପ୍ରସନ୍ନ, ତେବେ ଅନୁଗ୍ରହ ପୂର୍ବକ ମୋର ପ୍ରଜାବୃନ୍ଦଙ୍କୁ ସ୍ୱର୍ଗଲୋକକୁ ନେଇଯା'ନ୍ତୁ । ଏଥିରେ ମୋର କିଛି ଲାଭ ବା କ୍ଷତି ନାହିଁ । ମୁଁ ଏକମାତ୍ର ପରୋପକାର ବ୍ରତସିଦ୍ଧି ନିମିତ୍ତ କଠୋର ତପସ୍ୟାଚରଣ କରିବି ।'

ଇନ୍ଦ୍ରଙ୍କୁ ବିନୀତ ଭାବରେ ଏପରି ଅନୁରୋଧ କରନ୍ତେ ସେ ବୋଧିସତ୍ତ୍ୱଙ୍କ ଅଂଶରେ ଜନ୍ମିତ ଇନ୍ଦୁପ୍ରଭଙ୍କୁ ଆଶୀର୍ବାଦ ପ୍ରଦାନ ପୂର୍ବକ ପ୍ରଜାମାନଙ୍କ ସହିତ ସ୍ୱର୍ଗଲୋକକୁ ପ୍ରତ୍ୟାବର୍ତ୍ତନ କଲେ । ରାଜପୁତ୍ର ମଧ୍ୟ କଳ୍ପବୃକ୍ଷରୁ ନିଜର ମନୁଷ୍ୟ ଶରୀର ଧାରଣ କରି ଘୋର ତପସ୍ୟାରେ ନିମଗ୍ନ ହେଲେ । ସମୟ କ୍ରମେ ତାଙ୍କର ବୋଧିସତ୍ତ୍ୱତ୍ୱ ଲାଭ ହେଲା ।

ଦାନଶୀଳତା ଦ୍ୱାରା କିପରି ସିଦ୍ଧିଲାଭ ହୁଏ ତାହା ଜଣାଇବା ପାଇଁ ମୁଁ ତୁମକୁ ଏହି କଥାଟି ଶୁଣାଇଲି । ବର୍ତ୍ତମାନ ଶୀଳପାରମିତା କଥା ଶୁଣ—

## ଶୀଳପାରମିତା କଥା

ପ୍ରାଚୀନ କାଳର କଥା । ବିନ୍ଧ୍ୟ ପର୍ବତର କୌଣସି ଏକ ବୃକ୍ଷରେ ଶୁକପକ୍ଷୀମାନଙ୍କର ଜଣେ ରାଜା ରହୁଥିଲେ । ସେ ବୋଧିସତ୍ତ୍ୱଙ୍କ ଅଂଶରେ ଜନ୍ମଗ୍ରହଣ କରି ଇନ୍ଦ୍ରିୟମାନଙ୍କୁ ଜୟ କରିଥାଆନ୍ତି । ପୂର୍ବଜନ୍ମର ପୁଣ୍ୟଫଳରୁ ସେ ଶୀଳବାନ୍ ଏବଂ ଜାତିସ୍ମର ଥିଲେ । ଶୁକରାଜ ହେମପ୍ରଭଙ୍କ ନିକଟରେ ଚାରୁମତି ନାମରେ ଏକ ଶୁକ ପ୍ରତିହାର ରୂପେ ରହିଥିଲା । ସେ ଯେପରି ମୂର୍ଖ ସେହିପରି ବିଷୟାସକ୍ତ ।

ଦିନେ କୌଣସି ବ୍ୟାଧ ଚାରୁମତିର ସ୍ତ୍ରୀକୁ ଜାଲରେ ଧରି ହତ୍ୟାକଲା । ତା'ର ବିୟୋଗରେ ସେ ଅତ୍ୟନ୍ତ ଶୋକାକୁଳ ହୋଇ ମୁମୂର୍ଷୁ ଅବସ୍ଥାକୁ ଆସିଗଲା । ଚାରୁମତୀକୁ ଆଶ୍ୱସ୍ତ କରିବା ନିମିତ୍ତ ବୁଦ୍ଧିମାନ ହେମପ୍ରଭ ମିଥ୍ୟା ଆଶ୍ୱାସନା ଦେଇ କହିଲେ, 'ତୋର ସ୍ତ୍ରୀ ମରିନାହିଁ । ବ୍ୟାଧର ଜାଲ ଭିତରୁ ସେ ଖସି ଚାଲିଯାଇଛି । ମୁଁ ଏବେଏବେ ତାକୁ ଜୀବିତ ଅବସ୍ଥାରେ ଦେଖି ଆସିଲି । ତୁ ଯଦି ତାକୁ ଦେଖିବାକୁ ଚାହୁଁ, ତା'ହେଲେ ମୋ ସହିତ ଆସିପାରୁ ।' ଏହାକହି ରାଜା ଚାରୁମତୀକୁ ଆକାଶ ମାର୍ଗରେ ଏକ ଜଳାଶୟ ନିକଟକୁ ନେଇଗଲେ ।

ଜଳାଶୟ ମଧ୍ୟରେ ଚାରୁମତିର ହିଁ ପ୍ରତିବିମ୍ବକୁ ଦେଖାଇ ହେମପ୍ରଭ ସେ ତା'ର ସ୍ତ୍ରୀ ବୋଲି ସୂଚନା ଦେଲେ । ଏଥିରେ ବିଶ୍ୱାସ କରି ଆନନ୍ଦ ମନରେ ମୂର୍ଖ ଶୁକ ଜଳାଶୟ ମଧ୍ୟକୁ ଲମ୍ଫଦେଇ ନିଜ ପ୍ରତିବିମ୍ବକୁ ଚୁମ୍ବନ ଓ ଆଲିଙ୍ଗନ କରିବାକୁ ଲାଗିଲା । କିନ୍ତୁ ନିଜ ସ୍ତ୍ରୀର ସ୍ପର୍ଶ ନପାଇ କିମ୍ବା ତା' ଚଞ୍ଚୁରୁ କୌଣସି ଶବ୍ଦ ନଶୁଣି ସେ ଭାବିଲା ଯେ ସ୍ତ୍ରୀ ତା' ପ୍ରତି ଅଭିମାନ କରି ଏପରି ଆଚରଣ କରୁଛି । ମାନଭଙ୍ଗ କରିବାପାଇଁ ସେ ନିକଟସ୍ଥ ବୃକ୍ଷରୁ କିଛି ଅଁଳା କୋଳି ଆଣି ଜଳ ମଧ୍ୟରେ ନିକ୍ଷେପ କଲା । କୋଳିଗୁଡ଼ିକ ପ୍ରଥମେ ବୁଡ଼ିଯାଇ ପୁଣି ଭାସି ଉଠିବାରୁ ସେ ଭାବିଲା ଯେ ରାଗରେ ତା' ସ୍ତ୍ରୀ ସେଗୁଡ଼ିକୁ ଫୋପାଡ଼ି ଦେଇଛି । ଏଥିରେ ଦୁଃଖିତ ହୋଇ, 'ଦେବ, ମୋ ସ୍ତ୍ରୀ ମୋତେ କଥା କହୁନାହିଁ କି ଛୁଇଁବାକୁ ଦେଉନାହିଁ । ମୁଁ ଦେଇଥିବା ଅଁଳାକୋଳିଗୁଡ଼ିକ ମଧ୍ୟ ସେ ଫୋପାଡ଼ି ଦେଇଛି । ଆପଣ ତାକୁ ଟିକିଏ ବୁଝାନ୍ତୁ' ବୋଲି କହି ଅନୁନୟ କଲା ।

ମୂର୍ଖ ଶୁକଠାରୁ ଏହାଶୁଣି ଶୁକରାଜ ହେମପ୍ରଭ ଧୀର ସ୍ୱରରେ ତା'ର ମୋହଭଙ୍ଗ କରିବାପାଇଁ କହିଲେ, 'ଏକଥା ତୁମ ନିକଟରେ ପ୍ରକାଶ କରିବା ଉଚିତ ନହେଲେ ମଧ୍ୟ ତୁମ ପ୍ରତି ମୋର ଅତ୍ୟଧିକ ସ୍ନେହଯୋଗୁଁ କହୁଛି ଶୁଣ । ଅନ୍ୟ ଏକ ଶୁକ ପ୍ରତି ଅନୁରକ୍ତ

ହୋଇ ତୁମ ସ୍ତ୍ରୀ ଏପରି ଆଚରଣ କରୁଅଛି । ତା'ର ଆଉ ତୁମଠାରେ ପୂର୍ବ ସ୍ନେହ ନାହିଁ । ଯଦି ଚାହୁଁଛ, ତାହେଲେ ଆସ ମୁଁ ତୁମକୁ ଦେଖାଇଦେବି ।'

ଏହିପରି ଛଳନାପୂର୍ଣ୍ଣ ବାକ୍ୟ କହି ହେମପ୍ରଭ ଜଳାଶୟ ନିକଟକୁ ଘେନିଯାଇ ତାକୁ ତାଙ୍କ ନିଜର ପ୍ରତିବିମ୍ବ ଦେଖାଇଲେ । ତା' ଦେଖି ମୂର୍ଖ ଶୁକ ଭାବିଲା ଯେ ତା ସ୍ତ୍ରୀ ଅନ୍ୟ ସହିତ ଚାଲିଯାଇଛି । ସେ ତା' ପ୍ରତି ବିରକ୍ତ ହୋଇ ରାଜାଙ୍କୁ ଚାହିଁ କହିଲା,'ପ୍ରଭୁ, ଆପଣଙ୍କ କଥା ନଶୁଣି ମୋର ମୂର୍ଖତା ଯୋଗୁଁ ମୁଁ ଏପରି ଫଳ ପାଇଛି । ବର୍ତ୍ତମାନ କ'ଣ କରିବି ଦୟାକରି କୁହନ୍ତୁ ?' ଶୁକର ନାରୀ ମୋହ ତୁଟିଯାଇଥିବା ଦେଖି ତାକୁ ଉପଦେଶ ଦେବାର ସମୟ ଆସିଯାଇଛି ବୋଲି ଜାଣି ହେମପ୍ରଭ କହିଲେ, 'ବିଷପାନ କରିବା ଭଲ, ସାପକୁ ଆଣି ଗଳାରେ ବାନ୍ଧିବା ମଧ ଭଲ କିନ୍ତୁ ସ୍ତ୍ରୀମାନଙ୍କୁ ବିଶ୍ୱାସ କରିବା କଦାପି ଭଲ ନୁହେଁ । ସେମାନଙ୍କ ଉପରେ କୌଣସି ମନ୍ତ୍ର, ଯନ୍ତ୍ର ବା ତନ୍ତ୍ରର ପ୍ରଭାବ ପଡ଼େନାହିଁ । ସେମାନେ ଧୂଳିଝଡ଼ ପରି ଅତ୍ୟନ୍ତ ଚପଳ । ଉତ୍ତମ ମାର୍ଗରେ ଯାଉଥିବା ପୁରୁଷକୁ କଳଙ୍କିତ ଓ ଭ୍ରଷ୍ଟ କରନ୍ତି । ତେଣୁ ପଣ୍ଡିତ ଓ ବୁଦ୍ଧିମାନ ବ୍ୟକ୍ତିମାନେ ସେମାନଙ୍କ ପ୍ରତି କୌଣସିମତେ ଆସକ୍ତ ହୁଅନ୍ତି ନାହିଁ । ସେମାନେ ବୀତରାଗ ପଦପ୍ରାପ୍ତି ପାଇଁ ଶୀଳ ଅଭ୍ୟାସ କରିଥାନ୍ତି ।'

**ବରଂ ହାଳାହଳଂ ଭୁକ୍ତମହିର୍ବିଦ୍ଧୋ ବରଂ ଗଳେ**
**ନ ପୁନଃ ସ୍ତ୍ରୀଷୁ ବିଶ୍ୱାସୋ ମଣିମନ୍ତ୍ରାଦ୍ୟଗୋଚରଃ ।**
**କଳଂକୟନ୍ତି ସନ୍ମାର୍ଗଜୁଷଃ ପରିଭବନ୍ତ୍ୟଲମ୍**
**ବାତ୍ୟା ଇବାତିଚପଳାଃ ସ୍ତ୍ରିୟୋ ଭୂରିରଜୋଦ୍ଧୃତଃ ।**

ରାଜାଙ୍କ ଉପଦେଶ ପାଳନ କରି ଚାରୁମତି ସ୍ତ୍ରୀସଙ୍ଗ ତ୍ୟାଗ ପୂର୍ବକ କ୍ରମଶଃ ବୁଦ୍ଧଙ୍କ ପରି ଉର୍ଦ୍ଧ୍ୱରେତା ହୋଇଗଲା । ଶୀଳବାନ୍ ଲୋକମାନେ ଅନ୍ୟମାନଙ୍କୁ କିପରି ଉଦ୍ଧାର କରନ୍ତି, ତାର ସୂଚନା ଦେବାପାଇଁ ମୁଁ ତୁମକୁ ଏହି ଶୀଳପାରମିତା କଥା ଶୁଣାଇଲି । ବର୍ତ୍ତମାନ କ୍ଷମାପାରମିତା କଥା ଶୁଣ—

## କ୍ଷମାପାରମିତା କଥା

କେଦାର ପର୍ବତ ଉପରେ ଶୁଭନୟ ନାମକ ଜଣେ ମହାମୁନି ରହୁଥାଆନ୍ତି । ସେ ପ୍ରତିଦିନ ମନ୍ଦାକିନୀ ନଦୀରେ ସ୍ନାନକରି ଇନ୍ଦ୍ରିୟମାନଙ୍କୁ ନିଜର ବଶୀଭୂତ କରିପାରିଥିଲେ । ତପସ୍ୟା ପ୍ରଭାବରୁ ତାଙ୍କର ଶରୀର ଅତ୍ୟନ୍ତ କ୍ଷୀଣ ହୋଇଯାଇଥାଏ ।

ଦିନେ ରାତିରେ କେତେଜଣ ଚୋର ଆସି ସେଠାରେ ପହଞ୍ଚିଲେ । ସେଠାରେ ପୂର୍ବରୁ ପୋତାଯାଇଥିବା ସୁନା ଅଳଙ୍କାର ସବୁ ନେବାପାଇଁ ସେମାନେ ଆସିଥାନ୍ତି । କିନ୍ତୁ ବିଭିନ୍ନ ସ୍ଥାନରେ ଖୋଳି ତା'ର ସନ୍ଧାନ ନପାଇବା ଯୋଗୁଁ ସେମାନେ ଭାବିଲେ ଯେ ଶୁଭନୟ ହିଁ ସେସବୁକୁ ଅପହରଣ କରିନେଇଛନ୍ତି । ସେମାନେ ମୁନିଙ୍କ ଆଶ୍ରମ ମଧ୍ୟରେ ପ୍ରବେଶ କରି ରୁକ୍ଷ ସ୍ୱରରେ କହିଲେ, 'ଆରେ ଛଦ୍ମତପସ୍ୱି, ଏବେ ଆଉ ଏତେ ଛଳନା କରନାହିଁ । ଆମେ ପୋତିଥିବା ସୁନାତକ ଆମକୁ ଦେଇଦେ । ତୁ ତ ଆମ ଅପେକ୍ଷା ବଡ଼ଚୋର ବୋଲି ମନେହେଉଛୁ ।' ମୁନି ତ ଧନରାଶି ନେଇ ନଥିଲେ, ଏଣୁ ଏମାନଙ୍କ କଥାରେ ସେ ସତ୍ୟ ପ୍ରକାଶ କରି ସେମାନଙ୍କୁ କହିଲେ ଯେ ତାଙ୍କ ସୁନା ସେ ଦେଖିନାହାଁନ୍ତି କି ସେ ସମ୍ପର୍କରେ ମଧ୍ୟ କିଛି ଜାଣିନାହାଁନ୍ତି ।

ଚୋରମାନେ ମୁନିଙ୍କ କଥାରେ ବିଶ୍ୱାସ କଲେ ନାହିଁ । ସେମାନେ ତାଙ୍କୁ ଲାଠି ସାହାଯ୍ୟରେ ପ୍ରହାର କରିବାକୁ ଲାଗିଲେ । ମୁନି ତଥାପି ସତ କଥା ଦୋହରାଇବାକୁ ଲାଗିଲେ । ଏଥିରେ କ୍ରୋଧିତ ହୋଇ ଚୋରମାନେ ଶୁଭନୟଙ୍କ ହାତ ଓ ପାଦ କାଟିଦେବା ସହିତ ତାଙ୍କ ଆଖି ଦୁଇଟିକୁ ମଧ୍ୟ ବାହାର କରିଦେଲେ । ତଥାପି ସେ ଅବିଚଳିତ ଓ ନିର୍ବିକାର ରହିଥାନ୍ତି । ଏଥିରେ ଚୋରମାନେ ତାଙ୍କୁ ନିର୍ଦ୍ଦୋଷ ମନେକରି ଯେଉଁ ଦିଗରୁ ଆସିଥିଲେ ସେହି ଦିଗକୁ ଚାଲିଗଲେ ।

ପରଦିନ ପ୍ରଭାତରୁ ମୁନି ଶୁଭନୟଙ୍କ ଶିଷ୍ୟ ରାଜା ଶେଖରଜ୍ୟୋତି ଆଶ୍ରମରେ ଆସି ପହଞ୍ଚିଲେ । ଗୁରୁଙ୍କ ଦୁର୍ଦ୍ଦଶା ଦେଖି ତାଙ୍କର ଦୁଃଖ ହେଲା । ମୁନିଙ୍କଠାରୁ ସମସ୍ତ ଘଟଣା ଶୁଣିବା ପରେ ରାଜା ଚୋରମାନଙ୍କୁ ଧରିଆଣିଲେ । ସେ ତାଙ୍କୁ ପ୍ରାଣଦଣ୍ଡ ଶୁଣାଇବାରୁ ମୁନି କହିଲେ, 'ରାଜନ୍, ଯଦି ତୁମେ ସେମାନଙ୍କୁ ପ୍ରାଣଦଣ୍ଡ ଦିଅ, ତାହେଲେ ମୁଁ ମଧ୍ୟ ପ୍ରାଣତ୍ୟାଗ କରିବି । ମୋର ଏପରି ଦୁର୍ଦ୍ଦଶା ଅସ୍ତ୍ରଗୁଡ଼ିକ କରିଛନ୍ତି । ସେଥିରେ ଏମାନଙ୍କର ଅପରାଧ କ'ଣ ? ତୁମେ ଯଦି କହ, ଏମାନେ ମୋ ଉପରେ ଅସ୍ତ୍ରାଘାତ କରିଥିଲେ, ତେବେ ମୁଁ କହିବି, ଏମାନେ ନୁହଁନ୍ତି, କ୍ରୋଧହିଁ ମୋ ଉପରେ ଅସ୍ତ୍ର ଚଳାଉଥିଲା । ଏମାନେ ରଖିଥିବା ସୁନା ସବୁ ହରାଇ କ୍ରୋଧାନ୍ୱିତ ହୋଇପଡ଼ିଲେ । ଏମାନେ ଏସବୁ ହରାଇବାର କାରଣ ମୋର ପୂର୍ବକୃତ ଅପରାଧ । ମୋର ଏ ପ୍ରକାର ଅପରାଧର କାରଣ ମୋର ଅଜ୍ଞାନତା । ତେଣୁ ମୋର ଅଜ୍ଞାନତା ମୋତେ ଏ ପ୍ରକାର ଦୁର୍ଦ୍ଦଶାରେ ପକାଇଛି । ତେଣୁ ମୋର ଅଜ୍ଞାନତାକୁ ତୁମେ ବଧ କରିବା ଉଚିତ ହେବ । ପୁଣି ଅପକାର ପାଇଁ ଚୋରମାନେ ଯଦି ଦଣ୍ଡର ଯୋଗ୍ୟ ତେବେ ଉପକାର ପାଇଁ କିଏ

ପୁରସ୍କାର ପାଇବ । ଯଦି ଏମାନେ ମୋର ଏପରି ଦୁର୍ଦ୍ଦଶା କରିନଥାନ୍ତେ, ତେବେ ମୋକ୍ଷ ଫଳପ୍ରଦାୟକ କ୍ଷମା ମୁଁ କାହାକୁ କରିଥାନ୍ତି ? ତେଣୁ ଏମାନେ ମୋର ବହୁତ ବଡ଼ ଉପକାର କରିଛନ୍ତି ।'

କ୍ଷମାଶୀଳ ଶୁଭନୟ ରାଜାଙ୍କୁ ଏହିପରି ବୁଝାଇ ଚୋରମାନଙ୍କୁ ବନ୍ଧନମୁକ୍ତ କଲେ । ଦେଖୁଦେଖୁ ନିଜର ତପସ୍ୟାର ଫଳ ଏବଂ କ୍ଷମାଶୀଳତାର ପ୍ରଭାବରୁ ତାଙ୍କ ଶରୀର ପୁଣି ପୂର୍ବପରି ଅକ୍ଷତ ହୋଇଗଲା । ଏହାଦ୍ୱାରା ସେ ସିଦ୍ଧି ମଧ୍ୟ ଲାଭ କଲେ । କ୍ଷମାଶୀଳ ପୁରୁଷମାନେ କିପରି ସଂସାର ସାଗରରୁ ଉତ୍ତୀର୍ଣ୍ଣ ହୋଇଥାନ୍ତି ତାହା ଜଣାଇବାପାଇଁ ମୁଁ ତୁମକୁ କ୍ଷମାପାରମିତା କଥା କହିଲି, ବର୍ତ୍ତମାନ ଧୈର୍ଯ୍ୟପାରମିତା କଥା ଶୁଣ—

## ଧୈର୍ଯ୍ୟପାରମିତା କଥା

ପ୍ରାଚୀନ କାଳରେ ମାଳାଧର ନାମକ ଜଣେ ବ୍ରାହ୍ମଣ କୁମାର ଥାନ୍ତି । ଦିନେ ସେ ଆକାଶ ମାର୍ଗରେ ଯାଉଥିବା ଜଣେ ସିଦ୍ଧକୁମାରଙ୍କୁ ଦେଖିଲେ । ତାଙ୍କର ମଧ୍ୟ ଆକାଶ ମାର୍ଗରେ ଉଡ଼ିବାର ଇଚ୍ଛା ହେଲା । ତେଣୁ ସେ ତୃଣ ନିର୍ମିତ ପକ୍ଷ ଧାରଣ ପୂର୍ବକ ଆକାଶରେ ଉଡ଼ିବା ଅଭ୍ୟାସ ଆରମ୍ଭ କଲେ । ପ୍ରତିଦିନ ସେ ଏହିପରି ବୃଥା ପ୍ରୟାସ କରୁଥାନ୍ତି । ଦିନେ ଏପରି ଅଭ୍ୟାସ କରୁଥିବା ବେଳେ ଆକାଶ ମାର୍ଗରେ ଯାଉଥିବା କୁମାର କାର୍ତ୍ତିକେୟ ତାଙ୍କୁ ଦେଖି ଭାବିଲେ ଯେ ଯେଉଁ କାର୍ଯ୍ୟ ଅସମ୍ଭବ ତାକୁ ସମ୍ଭବ କରିବାପାଇଁ ଏହି ବ୍ରାହ୍ମଣ କୁମାର ଅସୀମ ଧୈର୍ଯ୍ୟର ସହ ଚେଷ୍ଟା କରିଚାଲିଛନ୍ତି । ତେଣୁ ଏହାଙ୍କ ପ୍ରତି ଦୟା କରିବା ଉଚିତ । ତାଙ୍କୁ ସାହାଯ୍ୟ କରିବା ଅଭିଳାଷରେ ସେ ବ୍ରାହ୍ମଣ କୁମାରଙ୍କୁ ନିଜ ବିଦ୍ୟା ପ୍ରଭାବରେ ଉପରକୁ ଉଠାଇ ଆଣି ନିଜର ଅନୁଚର ରୂପେ ନିଯୁକ୍ତ କଲେ ।

ଏହିପରି ଧୈର୍ଯ୍ୟଶୀଳ ବ୍ୟକ୍ତିମାନଙ୍କ ପ୍ରତି ଦେବତାମାନେ ମଧ୍ୟ ସନ୍ତୁଷ୍ଟ ହୋଇଥାନ୍ତି । ଏଣୁ ମୁଁ ତୁମକୁ ଧୈର୍ଯ୍ୟପାରମିତା କଥା ଶୁଣାଇଲି, ବର୍ତ୍ତମାନ ଧ୍ୟାନପାରମିତା କଥା ଶୁଣ—

## ଧ୍ୟାନପାରମିତା କଥା

ଅତୀତ କାଳର କଥା । କର୍ଣ୍ଣାଟଦେଶରେ ବିଜୟମାଳୀ ବୋଲି ଜଣେ ଧନୀ ବଣିକ ରହୁଥାନ୍ତି । ମଳୟମାଳୀ ତାଙ୍କର ଏକମାତ୍ର ପୁତ୍ର । ଦିନେ ସେ ପିତାଙ୍କ ସହିତ ରାଜଭବନକୁ ଯାଇଥାଏ । ସେଠାରେ ରାଜା ଇନ୍ଦୁକେଶରୀଙ୍କ ଅପୂର୍ବ ସୁନ୍ଦରୀ କନ୍ୟା ଇନ୍ଦୁଯଶାଙ୍କୁ ଦେଖି

ସେ ମୋହିତ ହୋଇପଡ଼ିଲା । ଘରକୁ ଫେରି ଆସିବା ପରେ ରାତିରେ ତାକୁ ଆଉ ନିଦ ହେଲା ନାହିଁ । ଫଳରେ ସେ ଧୀରେ ଧୀରେ କ୍ଷୀଣ ଓ ଦୁର୍ବଳ ହୋଇପଡ଼ିଲା । ଦିନରେ ମଧ୍ୟ ସେ ନିସ୍ତେଜ ଓ ବିଷଣ୍ଣ ହୋଇ ରହିଥାଏ । ତାକୁ ଦେଖିଲେ ମନେହେଉଥିଲା ସତେ ଯେପରି ସେ କୁମୁଦ ବ୍ରତ ଆଚରଣ କରୁଛି । ଦିନସାରା ସେ ଉପବାସରେ ହିଁ ରହୁଥାଏ । ପରିବାରର କେହି କିଛି ପଚାରିଲେ ସେ ଜଡ଼ପରି ନିରୁତ୍ତର ରହୁଥିଲା, କାହା ସହିତ କିଛି କଥାବାର୍ତ୍ତା କରୁନଥିଲା । ଦିନରାତି ସେ କେବଳ ରାଜକନ୍ୟାର କଥା ଚିନ୍ତା କରୁଥାଏ ।

ଦିନେ ଏହିପରି ବିରହକାତର ଅବସ୍ଥାରେ ବସିଥିବା ବେଳେ ମଞ୍ଜରକ ନାମକ ତା'ର ଜଣେ ବିଶ୍ୱସ୍ତ ମିତ୍ର ଆସି ପହଞ୍ଚିଲା । ସେ ରାଜାଙ୍କର ଚିତ୍ରକାର । ମିତ୍ରକୁ ଏପରି ଚିତ୍ରାର୍ପିତ ପରି ଭାବରେ ବସିଥିବା ଦେଖି ସେ ତା'ର କାରଣ ଜିଜ୍ଞାସା କଲା । ମଳୟମାଳୀ ତା' ନିକଟରେ ନିଜର ମନୋବେଦନାର କାରଣ ବ୍ୟକ୍ତ କରନ୍ତେ ଚିତ୍ରକାର କହିଲା, 'ମିତ୍ର, ରାଜକୁମାରୀଙ୍କୁ ପାଇବାପାଇଁ ଇଚ୍ଛା କରିବା ତୁମ ପକ୍ଷରେ ଉଚିତ ନୁହେଁ । ସାଧାରଣ ପୁଷ୍କରିଣୀରେ ରହୁଥିବା ହଂସ ସେହି ପୁଷ୍କରିଣୀର ସୁଖ ସୌଭାଗ୍ୟ ଉପଭୋଗ କରିବା ଉଚିତ । ସେ ଭଗବାନଙ୍କ ନାଭିକମଳର ବୈଭବଲକ୍ଷ୍ମୀ କାହିଁକି କାମନା କରିବ ?' ଏହିପରି ଆଶ୍ୱାସନା ଦେବାଦ୍ୱାରା ମିତ୍ରର ମନୋଭାବ ପରିବର୍ତ୍ତନ କରିନପାରିବା ଯୋଗୁଁ ସେ ରାଜକୁମାରୀଙ୍କ ଏକ ଚିତ୍ରପଟ ପ୍ରସ୍ତୁତ କରି ତାକୁ ସମର୍ପଣ କଲା, ଏଥିରେ ଯଦି ମିତ୍ରର ଉତ୍କଣ୍ଠା ଓ ଅନୁଶୋଚନା ଦୂର ହୋଇପାରେ !

ଚିତ୍ରଲିଖିତ ରାଜକୁମାରୀଙ୍କୁ ପାଇ ମଳୟମାଳୀ ତାଙ୍କୁ ନିର୍ନିମେଷ ନୟନରେ ଚାହିଁ ରହିବା, ବିନତି କରିବା, ସ୍ପର୍ଶ କରିବା, ବିଭିନ୍ନ ଅଳଙ୍କାରରେ ସଜାଇବା ଦ୍ୱାରା ଆତ୍ମସନ୍ତୋଷ ଲାଭ କରୁଥାଏ । ସେ ଚିତ୍ରାର୍ପିତ ରାଜକୁମାରୀଙ୍କୁ ପ୍ରକୃତ ଇନ୍ଦୁଯଶା ଭାବି ସେଥିରେ ତନ୍ମୟ ହୋଇପଡ଼ିଲା । ସମୟକ୍ରମେ ସେ ସେହି ଚିତ୍ରକୁ ସତ୍ୟ ମନେକରି ତା ସହିତ ବାର୍ତ୍ତାଳାପ, ଚୁମ୍ବନ ଆଲିଙ୍ଗନାଦି କରୁଥିବା ଅନୁଭବ କଲା । ଭାବରାଜ୍ୟରେ ସେ ନିଜର ମନୋଗତ ପ୍ରଣୟିନୀ ସହିତ ସହବାସ କରି ସମଗ୍ର ସଂସାରକୁ ଭୁଲିଗଲା ।

ଦିନେ ଶୁକ୍ଳପକ୍ଷ ରାତ୍ରିରେ ସେହି ଚିତ୍ରପଟକୁ ଧରି ନିଜର ପ୍ରଣୟିନୀ ସହିତ ବିହାର କରିବାପାଇଁ ସେ ଆସି ଉପବନ ମଧ୍ୟରେ ପ୍ରବେଶ କଲା । ସେଠାରେ କୌଣସି ବୃକ୍ଷର ପାଦଦେଶରେ ଚିତ୍ରପଟକୁ ସ୍ଥାପନା କରି ସେ ପ୍ରେୟସୀ ପାଇଁ ପୁଷ୍ପରାଶି ସଂଗ୍ରହ କରିବା ଉଦ୍ଦେଶ୍ୟରେ ବହୁଦୂରକୁ ଚାଲିଗଲା । ଏ ସମୟରେ ବିନୟଜ୍ୟୋତି ନାମକ ଜଣେ ମୁନି ତା'ର ଏ ପ୍ରକାର ଅବସ୍ଥା ଦେଖି ଦୟାର୍ଦ୍ରଚିତ୍ତରେ ତାକୁ ଏହି ମୋହଶକ୍ତି ମଧ୍ୟରୁ ଉଦ୍ଧାର

କରିବା ନିମିତ୍ତ ଆକାଶ ମାର୍ଗରୁ ଅବତରଣ କଲେ । ସେ ନିଜର ଶକ୍ତି ପ୍ରଭାବରେ ଚିତ୍ରପଟଟିର ଗୋଟିଏ କୋଣରେ ସଜୀବ କୃଷ୍ଣ ସର୍ପଟିଏ ଚିତ୍ରଣ କରି କିଛି ଦୂରରେ ଗୁପ୍ତ ହୋଇ ରହିଲେ ।

ମଳୟମାଳୀ ବହୁ ସୁଗନ୍ଧିତ ପୁଷ୍ପ ନେଇ ସେଠାରେ ଆସି ପହଞ୍ଚିଲା । ପଟଚିତ୍ର ଉପରେ କୃଷ୍ଣ ସର୍ପକୁ ଦେଖି ସେ ଭାବିଲା ଯେ ରୂପର ଭଣ୍ଡାର ତା'ର ପ୍ରଣୟିନୀକୁ ରକ୍ଷା କରିବା ନିମିତ୍ତ ବିଧାତା ଏହି କୃଷ୍ଣ ସର୍ପକୁ ପ୍ରେରଣ କରିଛନ୍ତି । ଏହିପରି ଭାବି ସେ ଚିତ୍ରପଟଟିକୁ ପୁଷ୍ପାଭରଣରେ ବିଭୂଷିତ କଲା । ଭାବରାଜ୍ୟରେ ତାକୁ ଜୀବନ୍ତ ମନେକରି ଆଲିଙ୍ଗନ କରିବାକୁ ଯିବା ସମୟରେ ମୁନିଙ୍କ ମାୟାପ୍ରଭାବରୁ ଦେଖିଲା ଯେ କୃଷ୍ଣସର୍ପର ଆଘାତରେ ରାଜକୁମାରୀ ମରିଯାଇଛି । ସେ ଭୁଲିଗଲା ଯେ ସେ ଆଲିଙ୍ଗନ କରିବାକୁ ଯାଉଥିବା ରାଜକୁମାରୀ ବାସ୍ତବ ନୁହେଁ ଚିତ୍ରପଟ ମାତ୍ର । ତେଣୁ ତା'ର ଚେତନା ଲୋପ ହେଲା, ସେ ଭୂମି ଉପରେ ଢଳିପଡ଼ିଲା । କିଛି ସମୟ ପରେ ଚେତନା ଫେରିଆସିବାରୁ ସେ ବିଳାପ କରି ପ୍ରାଣବିସର୍ଜନ କରିବାପାଇଁ ନିଶ୍ଚୟ କଲା । କେବଳ ନିଶ୍ଚୟ ନୁହେଁ, ଗୋଟିଏ ବୃକ୍ଷର ଉଚ୍ଚଶାଖା ଉପରେ ଆରୋହଣ କରି ସେଠାରୁ ତଳକୁ ଡେଇଁପଡ଼ିଲା ।

ଏ ସମୟରେ ମୁନି ବିନୟଜ୍ୟୋତି ଆତ୍ମପ୍ରକାଶ କରି ତାକୁ ଧରିନେଲେ ଏବଂ ଆଶ୍ୱାସନା ଦେଇ କହିଲେ, 'ଆରେ ମୂର୍ଖ, ପ୍ରକୃତ ରାଜକୁମାରୀ ତ ରାଜମହଲରେ ଅଛନ୍ତି । ଏଇଟା ତ ଗୋଟିଏ ଚିତ୍ରକନ୍ୟା । କାହାକୁ ତୁ ଆଲିଙ୍ଗନ କରୁଛୁ, କିଏ ବା ସର୍ପାଘାତରେ ମରିଛି । ଅତ୍ୟଧିକ ଆସକ୍ତି ଯୋଗୁଁ ତୁ ଏପରି ଭ୍ରମରେ ପଡ଼ିଛୁ । ତୁ ଯଦି ଏହିପରି ଦୃଢ଼ଚିତ୍ତରେ ସତ୍ୟର ଅନୁସନ୍ଧାନ କରିବୁ, ତେବେ ଜୀବନରେ ଆଉ ଏପରି ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ ।'

ମୁନିଙ୍କ ଉପଦେଶରେ ତା'ର ମୋହ କଟିଗଲା । ସେ ମୁନିଙ୍କ ପଦପ୍ରାନ୍ତରେ ପ୍ରଣାମ କରି କହିଲା, 'ଭଗବନ୍, ଆପଣଙ୍କ ଅପାର ଅନୁଗ୍ରହରୁ ମୁଁ ଏହି ଦୁଃଖ ସମୁଦ୍ରରୁ ଉତ୍ତୀର୍ଣ୍ଣ ହୋଇପାରିଛି । ବର୍ତ୍ତମାନ ସଂସାରରୂପକ ସାଗରକୁ ଲଂଘନ କରିବାପାଇଁ ମୋତେ କିଛି ଉପଦେଶ ଦିଅନ୍ତୁ ।' ମଳୟମାଳୀକୁ ମୋହମୁକ୍ତ ଜାଣି ମୁନି ରୂପରେ ଥିବା ବୋଧିସତ୍ତ୍ୱ ତାକୁ ଜ୍ଞାନଉପଦେଶ ଦେଇ ଅନ୍ତର୍ହିତ ହେଲେ ।

ଏହାପରେ ମଳୟମାଳୀ ଅରଣ୍ୟ ମଧ୍ୟରେ ତପଶ୍ଚରଣ ପୂର୍ବକ ସତ୍ୟଜ୍ଞାନ ଲାଭ କରି ଅର୍ହତ୍ ପଦପ୍ରାପ୍ତ ହେଲା । ସେହି କୃପାଳୁ ରାଜା ଇନ୍ଦୁକେଶରୀ ମଧ୍ୟ ତା ନିକଟରୁ ସତ୍ୟଜ୍ଞାନର ଉପଦେଶ ଲାଭ କରି ପ୍ରଜାମାନଙ୍କ ସହିତ ମୁକ୍ତିଲାଭ କଲେ ।

ଏହିପରି ଯେଉଁମାନେ ଧ୍ୟାନବଳରେ ବଳୀୟାନ୍ ସେମାନଙ୍କ ପାଇଁ ଅସତ୍ୟ ମଧ୍ୟ ସତ୍ୟରେ ପରିଣତ ହୁଏ । ତେଣୁ ଏହି ଧ୍ୟାନପାରମିତା କଥା ତୋତେ ଶୁଣାଇଲି । ବର୍ତ୍ତମାନ ପ୍ରଜ୍ଞାପାରମିତାର କଥା ଶୁଣ–

## ପ୍ରଜ୍ଞାପାରମିତା କଥା

ପ୍ରାଚୀନ କାଳରେ ସିଂହଳ ଦ୍ୱୀପରେ ସିଂହବିକ୍ରମ ନାମକ ଏକ ଚୋର ଥିଲା । ଜନ୍ମରୁ ହିଁ ସେ ଅନ୍ୟମାନଙ୍କଠାରୁ ଚୋରି କରି ନିଜର ପରିପୋଷଣ କରୁଥାଏ । ସମୟକ୍ରମେ ସେ ଆସି ବାର୍ଦ୍ଧକ୍ୟରେ ପହଞ୍ଚିଲା । ଏ ଅବସ୍ଥାରେ ସେ ଚୌର୍ଯ୍ୟବୃତ୍ତି ପରିତ୍ୟାଗ କଲା, କେବଳ ତା ନୁହେଁ ମନେମନେ ଚିନ୍ତା କରିବାକୁ ଲାଗିଲା, 'ପରଲୋକରେ ମୋର ଅବସ୍ଥା କ'ଣ ହେବ ? କି ଉପାୟ କଲେ ମୁଁ ଏ ଅପରାଧରୁ ମୁକ୍ତ ହେବି ? ସେଠାରେ କାହାର ଶରଣାଗତ ହେବା ଉଚିତ ହେବ ?

ଯଦି ମୁଁ ଭଗବାନ୍ ଶଙ୍କର କିମ୍ୱା ବିଷ୍ଣୁଙ୍କର ଶରଣନେବି ସେଠାରେ ମୋ ପରି ଜଣେ ଅକିଞ୍ଚନର ସ୍ଥାନ କେଉଁଠି ରହିବ ? ଦେବତା ଓ ମହର୍ଷିମାନେ ତ ଏମାନଙ୍କର ଶରଣାର୍ଥୀ । ଏଣୁ ଚିତ୍ରଗୁପ୍ତଙ୍କ ନିକଟରେ ଶରଣ ପଶିବା ବୋଧହୁଏ ଅଧିକ ଯୁକ୍ତିଯୁକ୍ତ ହେବ । ସେ ପ୍ରତ୍ୟେକ ପ୍ରାଣୀର ପାପପୁଣ୍ୟର ହିସାବ ଲେଖନ୍ତି । ହୁଏତ ସେ ମୋତେ ରକ୍ଷା କରିପାରନ୍ତି । ସେ ବ୍ରହ୍ମା ଏବଂ ଶିବ ଉଭୟଙ୍କ କରଣ ଭାବେ କାର୍ଯ୍ୟ କରନ୍ତି । ଏଣୁ ସମସ୍ତ ସଂସାର ତାଙ୍କ ହାତରେ । ସେ କ୍ଷଣକ ମଧ୍ୟରେ ସୃଷ୍ଟି କରିପାରନ୍ତି କିମ୍ୱା ସଂହାର କରିପାରନ୍ତି ।'

ଏହିପରି ନିଶ୍ଚୟ କରି ସେ ଚିତ୍ରଗୁପ୍ତଙ୍କୁ ଭକ୍ତି କରିବା ଆରମ୍ଭ କଲା । ପ୍ରତିଦିନ ସେ ତାଙ୍କର ପୂଜା କରେ; ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ବ୍ରାହ୍ମଣମାନଙ୍କୁ ଭୋଜନ ଦିଏ ।

ଚୋରଟିର ମନୋଭାବ ଜାଣିବାପାଇଁ ଦିନେ ଚିତ୍ରଗୁପ୍ତ ଅତିଥି ରୂପେ ତା'ର ଗୃହଦ୍ୱାରରେ ଆସି ପହଞ୍ଚିଲେ । ଚୋର ତାଙ୍କର ଆଦର ସତ୍କାର କରି ପାନଭୋଜନ କରାଇଲା । ଶେଷରେ ଦକ୍ଷିଣା ପ୍ରଦାନ କରି କହିଲା ଯେ ସେ ତାକୁ 'ଚିତ୍ରଗୁପ୍ତ ତୁମ ଉପରେ ପ୍ରସନ୍ନ ହୁଅନ୍ତୁ' ବୋଲି ଆଶୀର୍ବାଦ କରନ୍ତୁ । ଏହାଶୁଣି ବ୍ରାହ୍ମଣରୂପୀ ଚିତ୍ରଗୁପ୍ତ କହିଲେ, 'ବିଷ୍ଣୁ ଓ ଶିବଙ୍କୁ ଛାଡ଼ି ଚିତ୍ରଗୁପ୍ତଙ୍କ ପାଖରେ ତୁମର କି କାମ ?' ଏହାଶୁଣି ଚୋର ସିଂହବିକ୍ରମ କହିଲା ଏଥିରେ ତୁମର କଣ ଯାଏଆସେ । ଅନ୍ୟ ଦେବତାମାନଙ୍କ ନିକଟରେ ମୋର ପ୍ରୟୋଜନ ବା କ'ଣ ?' ତା' କଥାରେ ବ୍ରାହ୍ମଣରୂପୀ ଚିତ୍ରଗୁପ୍ତ ପରୀକ୍ଷା

ନେବାପାଇଁ କହିଲେ ଯେ ସେ ଯଦି ତା' ସ୍ତ୍ରୀକୁ ତାଙ୍କ ହାତରେ ସମର୍ପଣ କରିଦିଏ ତେବେ ସେ ତା' କହିବା ଅନୁଯାୟୀ ଆଶୀର୍ବାଦ ପ୍ରଦାନ କରିବେ । ସିଂହବିକ୍ରମ ଆନନ୍ଦ ମନରେ ଏହାକୁ ସ୍ୱୀକାର କଲା । କହିଲା, 'ଅଭୀଷ୍ଟ ଦେବତାଙ୍କୁ ସନ୍ତୁଷ୍ଟ କରିବାପାଇଁ ମୁଁ ମୋ ସ୍ତ୍ରୀକୁ ଆପଣଙ୍କ ନିକଟରେ ସମର୍ପଣ କଲି ।'

ତା'ର ଏହି ଦୃଢ଼ ଭକ୍ତିଭାବର ପରିଚୟ ପାଇ ଚିତ୍ରଗୁପ୍ତ ପ୍ରକୃତ ରୂପ ଧାରଣ କରି କହିଲେ, 'ମୁଁ ହିଁ ଚିତ୍ରଗୁପ୍ତ । କହ, ମୁଁ ତୋ ପାଇଁ କ'ଣ କରିପାରିବି ?' ସିଂହବିକ୍ରମ ଭକ୍ତି ଭାବରେ ତାଙ୍କୁ ପ୍ରଣାମ କଲା । ନିବେଦନ କଲା, 'ଭଗବନ୍, ପରଲୋକ ପାଇଁ ମୋର ବହୁତ ଭୟ ହେଉଛି । ତେଣୁ ଆପଣ ଏପରି କିଛି କରନ୍ତୁ ଯାହାଦ୍ୱାରା ମୋର ମୃତ୍ୟୁ ହିଁ ହେବ ନାହିଁ ।' ଚିତ୍ରଗୁପ୍ତ ଦ୍ୱନ୍ଦରେ ପଡ଼ି କହିଲେ, 'ମୃତ୍ୟୁଠାରୁ ରକ୍ଷା ପାଇବା ସମ୍ଭବ ନୁହେଁ । କିନ୍ତୁ ମୁଁ ତୋତେ ଗୋଟିଏ ଉପାୟ କହୁଛି ଶୁଣ—ପୂର୍ବେ ଭଗବାନ ଶିବ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଶ୍ୱେତ ନିମିତ୍ତ କାଳକୁ ଦଗ୍ଧୀଭୂତ କରିଥିଲେ । କିନ୍ତୁ ଆବଶ୍ୟକତା ଦୃଷ୍ଟିରୁ ତାକୁ ପୁଣି ଜୀବିତ କରିବାପାଇଁ ବାଧ ହେଲେ । ସେତେବେଳେ ସେ ବରଦାନ କରି କହିଥିଲେ ଯେ ଯେଉଁଠାରେ ଶ୍ୱେତ ରହିବେ, ସେହି ସ୍ଥାନର କୌଣସି ପ୍ରାଣୀକୁ କାଳ ସ୍ପର୍ଶ କରିବ ନାହିଁ ।

ବର୍ତ୍ତମାନ ମହର୍ଷି ଶ୍ୱେତ ପୂର୍ବ ସମୁଦ୍ରର ପରପାରରେ ତରଙ୍ଗିଣୀ ନଦୀର ଅପର ତଟରେ ଥିବା ତପୋବନ ମଧ୍ୟରେ ରହୁଅଛନ୍ତି । ସେଠାରେ ରହିଲେ ମୃତ୍ୟୁ ଆକ୍ରମଣ କରିପାରିବ ନାହିଁ । ମୁଁ ତୋତେ ନେଇ ସେଠାରେ ଛାଡ଼ିଦେଉଛି, କିନ୍ତୁ ତୁ ତରଙ୍ଗିଣୀ ନଦୀର ଏପଟ ତୀରକୁ କେବେହେଲେ ଆସିବୁ ନାହିଁ । ଯଦି ଭୁଲ୍‌ବଶତଃ କେବେ ଏପଟକୁ ଆସିଯାଉ ଏବଂ ମୃତ୍ୟୁ ତୋତେ ଆକ୍ରମଣ କରେ ତେବେ ସୁଦ୍ଧା ପରଲୋକରେ ପହଞ୍ଚିବା ପରେ ମୁଁ ତୋ ପାଇଁ କିଛି ଉପାୟ କରିବି ।'

ଚିତ୍ରଗୁପ୍ତଙ୍କର କଥା ଶୁଣି ସିଂହବିକ୍ରମ ଅତ୍ୟନ୍ତ ଆନନ୍ଦିତ ହେଲା । ଚିତ୍ରଗୁପ୍ତ ତାକୁ ନେଇ ମହର୍ଷି ଶ୍ୱେତଙ୍କ ଆଶ୍ରମରେ ଛାଡ଼ିଦେଇ ଅଦୃଶ୍ୟ ହୋଇଗଲେ । ଆୟୁ ଶେଷ ହେବାରୁ ସେଠାରେ ରହୁଥିବା ସିଂହବିକ୍ରମକୁ ନେବାପାଇଁ କାଳ ଆସି ତରଙ୍ଗିଣୀ ନଦୀର ବିପରୀତ ତୀରରେ ପହଞ୍ଚିଲା । କିନ୍ତୁ ସିଂହବିକ୍ରମକୁ କୌଣସି ଉପାୟରେ ନେବା ଯେତେବେଳେ ସମ୍ଭବ ହେଲାନାହିଁ ସେତେବେଳେ ସେ ନିଜର ମାୟା ବଳରେ ଗୋଟିଏ ଦିବ୍ୟ ସ୍ତ୍ରୀ ସୃଷ୍ଟିକରି ତା' ନିକଟକୁ ପ୍ରେରଣ କଲା । ନାରୀଟି ସିଂହବିକ୍ରମ ନିକଟରେ ଉପସ୍ଥିତ ହୋଇ ନିଜର ଅପରୂପ ଲାବଣ୍ୟ ଏବଂ କାମୋଦ୍ଦୀପକ ଅଙ୍ଗଭଙ୍ଗୀ ଦ୍ୱାରା ତାକୁ

ବଶୀଭୂତ କଲା । କିଛିଦିନ ତା' ସହିତ ରହିବାପରେ ନାରୀଟି ନିଜର ସ୍ୱଜନମାନଙ୍କ ସହିତ ସାକ୍ଷାତ କରିବା ଛଳରେ ତରଙ୍ଗିଣୀ ନଦୀର ଅପର ତଟକୁ ଯିବାପାଇଁ ଜଳ ମଧ୍ୟରେ ପ୍ରବେଶ କଲା । ସିଂହବ୍ରିକମ ମଧ୍ୟ ତା'ର ପଶ୍ଚାଦ୍‌ଗମନ କରି ନଦୀ ତୀଟନ୍ତରେ ପହଞ୍ଚିଲା । କିନ୍ତୁ ନଦୀ ମଧ୍ୟରେ ପ୍ରବେଶ ନକରି କୂଳରେ ଠିଆ ହୋଇ ହିଁ ସେ ନାରୀଟିର ଗତିପଥକୁ ଚାହିଁରହିଥାଏ ।

ନଦୀର ମଧ୍ୟସ୍ଥଳରେ ଉପନୀତ ହୋଇ ମାୟାବିନୀ ନାରୀଟି ନିଜକୁ ସ୍ରୋତ ମଧ୍ୟରେ ଭସାଇ ଦେବାପରି ଛଳନା କରି ଚିତ୍କାର କଲା, 'ଆର୍ଯ୍ୟପୁତ୍ର, ମୋତେ ମୃତ୍ୟୁମୁଖକୁ ଯିବା ଦେଖି ମଧ୍ୟ ଆପଣ ରକ୍ଷା କରିବାପାଇଁ ଆସୁନାହାଁନ୍ତି । ଆପଣ ବୋଧହୁଏ ସିଂହବିକ୍ରମ ନହୋଇ ଶୃଗାଳ ବିକ୍ରମ ।' ନାରୀଟିର ଛଳୋକ୍ତି ଶୁଣିବା ମାତ୍ରେ ସିଂହବିକ୍ରମ ନଦୀ ଗର୍ଭକୁ ଓହ୍ଲାଇଗଲା । ମାୟାବିନୀ ଏହି ସୁଯୋଗରେ ତାକୁ ରକ୍ଷା କରିବାପାଇଁ ଆସୁଥିବା ସିଂହବିକ୍ରମକୁ ନଦୀ ଅପରପାର ପର୍ଯ୍ୟନ୍ତ ନେଇଆସିଲା । କୂଳରେ ପାଦ ଦେବା ମାତ୍ରେ ମୃତ୍ୟୁ ତା' ଗଳାରେ କାଳପାଶ ପକାଇ କହିଲା, 'ସାଂସାରିକ ବିଷୟରେ ଯେଉଁମାନଙ୍କର ମନ ନିମଜ୍ଜିତ, ସେମାନଙ୍କର ମସ୍ତକ ଉପରେ ସର୍ବଦା କାଳଚକ୍ର ବୁଲୁଥାଏ ।'

କାଳ ଏହିପରି ସେହି ପ୍ରମାଦଗ୍ରସ୍ତ ଚୋରଟିକୁ ନେଇ ଯମରାଜାଙ୍କ ଦରବାରରେ ଉପସ୍ଥିତ କରାଇଲା । ଚିତ୍ରଗୁପ୍ତ ତ ପୂର୍ବରୁ ତା' ପ୍ରତି ପ୍ରସନ୍ନ ଥିଲେ । ତାକୁ ସେଠାରେ ଦେଖି ଏକାନ୍ତରେ କହିଲେ, 'ଯେତେବେଳେ ପ୍ରଥମେ ନର୍କ ଭୋଗ ବା ସ୍ୱର୍ଗ ଭୋଗ କରିବୁ ବୋଲି ତୋତେ ପଚାରାଯିବ, ସେତେବେଳେ ତୁ ପ୍ରଥମେ ସ୍ୱର୍ଗ ଭୋଗ କରିବା ପାଇଁ ପ୍ରାର୍ଥନା କରିବୁ । ସ୍ୱର୍ଗରେ ରହିଲାବେଳେ ନିଜ ସ୍ଥିତିକୁ ଦୃଢ଼ କରିବାପାଇଁ ପୁଣ୍ୟ କାର୍ଯ୍ୟ କରିବୁ ଏବଂ ନିଜର ସମସ୍ତ ପାପକୁ ନଷ୍ଟ କରିବା ନିମିତ୍ତ ତପସ୍ୟା କରିବୁ ।' ଚିତ୍ରଗୁପ୍ତ ଧୀର ସ୍ୱରରେ ଏହା କହୁଥିବା ବେଳେ ସିଂହବିକ୍ରମ ଅତ୍ୟନ୍ତ ବିକଳ ଓ ଭୟଭୀତ ହୋଇ ମୁଣ୍ଡ ପୋତି ଠିଆ ହୋଇଥାଏ । ସେ ଚିତ୍ରଗୁପ୍ତଙ୍କ କଥାରେ ସେପରି ହିଁ କରିବ ବୋଲି କହି ଧର୍ମରାଜଙ୍କ ନିକଟରେ ଯୋଡ଼ହସ୍ତରେ ଯାଇ ଠିଆହେଲା ।

ସିଂହବିକ୍ରମକୁ ଦେଖି ଧର୍ମରାଜ ଚିତ୍ରଗୁପ୍ତଙ୍କୁ ତା'ର କିଛି ମାତ୍ର ପୁଣ୍ୟ ଅଛି କି ନାହିଁ ଜଣାଇବା ନିମିତ୍ତ ନିର୍ଦ୍ଦେଶ ଦେଲେ । ଉତ୍ତରରେ ଚିତ୍ରଗୁପ୍ତ କହିଲେ, 'ପ୍ରଭୁ, ଲୋକଟି ବଡ଼ ଅତିଥିପ୍ରିୟ । ସେ ଇଷ୍ଟଦେବଙ୍କୁ ସନ୍ତୁଷ୍ଟ କରିବାପାଇଁ ନିଜର ସ୍ତ୍ରୀକୁ ମଧ୍ୟ ସମର୍ପଣ କରିଦେଇଥିଲା । ତେଣୁ, ପ୍ରଭୁ, ଦେବତାମାନଙ୍କର ଗୋଟିଏ ଦିବସ ପର୍ଯ୍ୟନ୍ତ ଏହାର

ସ୍ୱର୍ଗରେ ରହିବା ଅଧିକାର ଅଛି ।' ଏହାଶୁଣି ଧର୍ମରାଜ ସିଂହବିକ୍ରମକୁ ତା'ର ଶୁଭ ଓ ଅଶୁଭ କର୍ମର ଫଳରୁ ପ୍ରଥମେ କେଉଁଟି ଭୋଗ କରିବ ବୋଲି ଜିଜ୍ଞାସା କଲେ । ସେ ପ୍ରଥମେ ଶୁଭକର୍ମର ଫଳ ଭୋଗ କରିବାପାଇଁ ପ୍ରାର୍ଥନା କରିବା ମାତ୍ରେ ଏକ ଦିବ୍ୟ ବିମାନ ଆସି ତା' ସମ୍ମୁଖରେ ପହଞ୍ଚିଲା । ଚିତ୍ରଗୁପ୍ତଙ୍କ ଉପଦେଶ ସ୍ମରଣ କରି ସେ ଧର୍ମରାଜଙ୍କ ଠାରୁ ଅନୁଜ୍ଞା ନେଇ ସେଥିରେ ସ୍ୱର୍ଗଲୋକକୁ ଯାତ୍ରା କଲା ।

ସ୍ୱର୍ଗଲୋକରେ ଉପନୀତ ହୋଇ ସିଂହବିକ୍ରମ ସ୍ୱର୍ଗସୁଖ ପ୍ରତି ସର୍ବଦା ଉଦାସୀନ ରହିଥାଏ । ଆକାଶ ଗଙ୍ଗାରେ ସ୍ନାନକରି ଏବଂ ଜପତପ ପ୍ରଭୃତିରେ ନିମଜ୍ଜିତ ରହି ସେ ଅନ୍ୟ ଏକ ଦିବସ ମଧ୍ୟ ସ୍ୱର୍ଗଲୋକରେ ବିତାଇଦେଲା । ସେଠାରେ ବାସକରୁଥିବା ବେଳେ କଠୋର ତପଶ୍ଚର୍ଯ୍ୟା ଏବଂ ଭଗବାନ ଶଙ୍କରଙ୍କ ଆରାଧନା ଦ୍ୱାରା ସେ ନିଜର ସମସ୍ତ ପାପକୁ କ୍ଷାଳନ କରିଦେଲା । ଜ୍ଞାନପ୍ରାପ୍ତି ପରେ ନରକର ଦୂତମାନେ ତା'ର କେଶରାଶିକି ସୁଦ୍ଧା ଚାହିଁ ପାରିଲେ ନାହିଁ । ଭୂର୍ଜପତ୍ର ଉପରେ ଲିଖିତ ସିଂହବିକ୍ରମର ସମସ୍ତ ପାପରାଶିକୁ ଚିତ୍ରଗୁପ୍ତ ପୋଛିଦେଲେ । ଏଥିରେ ଯମରାଜଙ୍କର ମଧ୍ୟ କିଛି କର୍ତ୍ତୃତ୍ୱ ରହିଲା ନାହିଁ ।

ଏହିପରି ସିଂହବିକ୍ରମ ପରି ଆଜନ୍ମ ଚୋର ମଧ୍ୟ ସତ୍ୟପ୍ରଜ୍ଞାବଳରେ ସିଦ୍ଧିଲାଭ କରିପାରିଲା । ବୁଦ୍ଧିମାନ୍ ଲୋକମାନେ ଭଗବାନ୍ ବୁଦ୍ଧଙ୍କ ଉପଦିଷ୍ଟ ଛ'ଟି ପାରମିତା ଆଚରଣ ରୂପକ ନୌକା ଦ୍ୱାରା ସଂସାର ସାଗରକୁ ଉତ୍ତୀର୍ଣ୍ଣ ହୋଇଥାନ୍ତି ।

ବୋଧିସତ୍ତ୍ୱ ପଦଲାଭ କରିଥିବା ରାଜର୍ଷି ବିନୀତମତି ଯେତେବେଳେ ସେହି ଉପବନ ମଧ୍ୟରେ ସୋମଶୂରଙ୍କୁ ଏହିପରି ସତ୍‌ଉପଦେଶ ପୂର୍ଣ୍ଣ କଥାସବୁ ଶୁଣାଉଥିଲେ, ସେତେବେଳେ ଏଥିରୁ ଜ୍ଞାନ ପ୍ରାପ୍ତ ହୋଇ ସଂଧ୍ୟାକାଳୀନ ରକ୍ତିମାରୂପକ କଷାୟ ବସ୍ତ୍ର ପରିଧାନ କରି ସୂର୍ଯ୍ୟଦେବ ମଧ୍ୟ ଅସ୍ତାଚଳର ଗୁହା ମଧ୍ୟରେ ପ୍ରବେଶ କଲେ । ଉଭୟ ବିନୀତମତି ଓ ସୋମଶୂର ସଂଧ୍ୟା ଉପସ୍ଥିତ ଦେଖି ସାଂୟକୃତ୍ୟ ସମାପନ ପୂର୍ବକ ରାତ୍ରଟି ସେହିଠାରେ ବିତାଇଦେଲେ ।

ପରଦିନ ବିନୀତମତି ସମସ୍ତ ରହସ୍ୟ ସହିତ ସୋମଶୂରଙ୍କୁ ବୌଦ୍ଧଧର୍ମର ଉପଦେଶାବଳୀ ଶୁଣାଇବାକୁ ଲାଗିଲେ । ସୋମଶୂର ଏଥିରୁ ଜ୍ଞାନଲାଭ ପୂର୍ବକ ଉପବନର ଏକ ବୃକ୍ଷ ଛାୟାରେ ପର୍ଣ୍ଣ କୁଟୀର ନିର୍ମାଣ କରି ଗୁରୁସେବାରେ ନିଜକୁ ନିମଜ୍ଜିତ ରଖିଲେ । ସମୟ କ୍ରମେ ଉଭୟ ଗୁରୁଶିଷ୍ୟ ସମାନ ଭାବରେ ଯୋଗର ମହାସିଦ୍ଧି ଦ୍ୱାରା ପରମଜ୍ଞାନ ପ୍ରାପ୍ତ କଲେ ।

ଏଣେ ଇନ୍ଦୁକଳଶ ଈର୍ଷ୍ୟାପ୍ରଣୋଦିତ ହୋଇ ବିନୀତମତିଙ୍କଠାରୁ ଦାନରୂପେ ପାଇଥିବା ଅପୂର୍ବ ଅଶ୍ୱ ଓ ଖଡ୍‌ଗ ସାହାଯ୍ୟରେ କନକକଳଶଙ୍କୁ ଅହିଚ୍ଛତ୍ର ରାଜ୍ୟରୁ ମଧ୍ୟ ବିତାଡ଼ନ କରିଦେଲା । ଭାଇଦ୍ୱାରା ନିଜ ରାଜ୍ୟରୁ ବିତାଡ଼ିତ ହେବାପରେ ବିନୀତମତିଙ୍କ ଠାରୁ ପ୍ରାପ୍ତ ରାଜ୍ୟରୁ ପୁନଶ୍ଚ ବିତାଡ଼ିତ ହେବା କନକକଳଶ ନିଜର ଦୁଇ ତିନିଜଣ ମନ୍ତ୍ରୀଙ୍କ ସହିତ ଇତସ୍ତତଃ ଲକ୍ଷ୍ୟହୀନ ଭାବେ ବୁଲୁଥିବା ବେଳେ ଦୈବାତ୍ ବିନୀତମତିଙ୍କ ଆଶ୍ରମ ଥିବା ଉପବନରେ ଆସି ପହଞ୍ଚିଲେ । ସେମାନେ କ୍ଷୁଧା ଓ ତୃଷାରେ ଅତିଷ୍ଠ ଥିଲେ । ଜଳ ଓ ଆହାର ସେମାନଙ୍କ ପାଇଁ ଅତ୍ୟନ୍ତ ଜରୁରୀ ଥିଲା । ବିନୀତମତି ଅତିଥି ସତ୍କାର ପାଇଁ ଆୟୋଜନ କରୁଥିବା ବେଳେ ତାଙ୍କୁ ପ୍ରବଞ୍ଚିତ କରିବା ଇଚ୍ଛାରେ ଇନ୍ଦ୍ର ନିଜ ମାୟାଦ୍ୱାରା ସେହି ଉପବନଟିକୁ ଅଗ୍ନିସାତ୍ କରିଦେଲେ । ତାହା ପୁଣି ପୂର୍ବପରି ମରୁଭୂମିରେ ପରିଣତ ହୋଇଗଲା । ଆଶ୍ରମ ଅକସ୍ମାତ୍ ମରୁଭୂମିରେ ରୂପାନ୍ତରିତ ହୋଇଯାଇଥିବା ଦେଖି ବିନୀତମତି ପ୍ରଥମେ କିଛି ବୁଝିପାରିଲେ ନାହିଁ । ସେ ଏଣେତେଣେ କେବଳ ଉଦ୍‌ଭ୍ରାନ୍ତ ପରି ଦୌଡ଼ିବାକୁ ଲାଗିଲେ । ଏ ସମୟରେ ଅନୁଗାମୀମାନଙ୍କ ସହିତ କନକକଳଶଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ସେମାନେ ପ୍ରାୟ କଣ୍ଠାଗ୍ରତପ୍ରାଣ ଥିଲେ । ବୋଧିସତ୍ତ୍ୱ ବିନୀତମତି ନିକଟକୁ ଯାଇ ତାଙ୍କର ଏ ଦୁରବସ୍ଥାର କାରଣ ଜାଣିବା ପରେ ପ୍ରଥମେ କୁଶଳପ୍ରଶ୍ନ ଦ୍ୱାରା ସେମାନଙ୍କର ଅତିଥି ସତ୍କାର କଲେ । ନିଜର ଅସହାୟତା ପ୍ରକାଶ କରି ସେ ସେମାନଙ୍କୁ କହିଲେ, 'ଏହି ଉପବନ ତ ମରୁଭୂମିରେ ପରିଣତ ହୋଇଗଲା । ଆପଣମାନଙ୍କର ସତ୍କାର କରିବାପାଇଁ କୌଣସି ପଦାର୍ଥ ଏଠାରେ ମିଳିବା ସମ୍ଭବ ନୁହେଁ । ତଥାପି କ୍ଷୁଧାନିବାରଣ ପାଇଁ ମୁଁ ଆପଣମାନଙ୍କୁ ଗୋଟିଏ ଉପାୟ କହୁଛି । ଏଠାରୁ ପ୍ରାୟ ଅଧକୋଶ ଦୂରରେ ଥିବା ଏକ ଗର୍ତ୍ତ ଭିତରେ ପଡ଼ିଯାଇ ଗୋଟିଏ ହରିଣ ମରିଯାଇଛି । ଆପଣମାନେ ସେଠାକୁ ଯାଇ ତା'ର ମାଂସଦ୍ୱାରା ପ୍ରାଣ ରକ୍ଷା କରନ୍ତୁ ।' ତାଙ୍କ ନିର୍ଦ୍ଦେଶାନୁଯାୟୀ କନକକଳଶ ସେଠାକୁ ଯିବା ନିମିତ୍ତ ଉଦ୍ୟତ ହେଲେ ।

ଅତିଥିମାନଙ୍କୁ ନିର୍ଦ୍ଦେଶ ଦେଇ ବୋଧିସତ୍ତ୍ୱ ବିନୀତମତି ସେମାନଙ୍କ ପୂର୍ବରୁ ଯାଇ ସେଠାରେ ପହଞ୍ଚିଗଲେ । ଯୋଗ ବଳରେ ନିଜେ ମୃଗରୂପ ଧାରଣ ପୂର୍ବକ ସେହି ଗର୍ତ୍ତ ମଧ୍ୟକୁ ଡେଇଁ ପ୍ରାଣ ବିସର୍ଜନ କଲେ । କନକକଳଶ ଅନୁଚରମାନଙ୍କ ସହିତ ସେଠାରେ ପହଞ୍ଚି ମୃତ ମୃଗକୁ ଖୋଜି ବାହାର କରିବା ପରେ ଶୁଖିଲା ଡାଳ ପତ୍ର ଯୋଗାଡ଼ କରି ମୃଗଟିକୁ ସେଥିରେ ପୋଡ଼ି ତା'ର ମାଂସ ଭକ୍ଷଣ କଲେ । ସେମାନେ ଏତେ କ୍ଷୁଧାର୍ତ୍ତ ଥିଲେ ଯେ ମୃଗଟିର କଙ୍କାଳରେ ଟିକିଏ ବୋଲି ଆଉ ମାଂସ ରହିଲା ନାହିଁ ।

ଏଣେ ବିନୀତମତିଙ୍କ ଉଭୟ ପତ୍ନୀ ନାଗକନ୍ୟା ଓ ରାଜକନ୍ୟା ଉପବନର ଅବସ୍ଥା ଦେଖି ବିହ୍ୱଳ ହୋଇପଡ଼ିଲେ । ପତିଙ୍କୁ ସେଠାରେ ନଦେଖି ସେମାନଙ୍କ ଚିନ୍ତା ବଢ଼ିଗଲା । ସେମାନେ ସୋମଶୂରଙ୍କ ନିକଟରେ ଯାଇ ପହଞ୍ଚିଲେ । ସୋମଶୂର ନିଜର ଗଭୀର ସମାଧିରୁ ଜାଗ୍ରତ ହୁଅନ୍ତେ ଗୁରୁପତ୍ନୀମାନଙ୍କଠାରୁ ସମସ୍ତ ସମାଚାର ଶୁଣି ବିଚଳିତ ହୋଇପଡ଼ିଲେ । ସେ ପୁଣି ସମାଧିସ୍ଥ ହୋଇ ଯେତେବେଳେ ଗୁରୁଙ୍କ ସମ୍ପର୍କରେ ସବୁକିଛି ଜାଣିପାରିଲେ ସେତେବେଳେ ଦୁଃଖଦ ହେଲେ ସୁଦ୍ଧା ଗୁରୁପତ୍ନୀମାନଙ୍କ ନିକଟରେ ସବୁକଥା ବ୍ୟକ୍ତ କଲେ । ତିନିହେଁ ଯଥାଶୀଘ୍ର ଯାଇ ଅତିଥିମାନଙ୍କ ନିମିତ୍ତ ବିନୀତମତି ଆତ୍ମବଳି ଦେଇଥିବା ସ୍ଥାନରେ ଉପସ୍ଥିତ ହେଲେ । ସେଠାରେ ମୃଗରୂପ ଧାରଣ କରି ଆତ୍ମବଳି ଦେଇଥିବା ପତିଙ୍କର ଅସ୍ଥି ଓ ଶୃଙ୍ଗ ବ୍ୟତୀତ ଅନ୍ୟ କିଛି ନଥିଲା । ସେସବୁକୁ ଏକତ୍ର କରି ସେମାନେ ନିକଟସ୍ଥ ଆଶ୍ରମରେ ଚିତାଗ୍ନି ପ୍ରସ୍ତୁତ କଲେ ଏବଂ ପତିଙ୍କ ଦେହାବଶେଷ ସହିତ ଅଗ୍ନି ମଧ୍ୟରେ ପ୍ରବେଶ କଲେ । କନକକଳଶ ଓ ତାଙ୍କ ଅନୁଚରମାନେ ଏସବୁ ଦେଖୁଥାନ୍ତି । ସେ ଧୀରେ ଧୀରେ ସମସ୍ତ ରହସ୍ୟ ଜାଣିପାରିଲେ । ତାଙ୍କର ଗଭୀର ଦୁଃଖ ଜାତ ହେଲା । ସେ ମଧ୍ୟ ଅନୁଚରମାନଙ୍କ ସହିତ ସେହି ଚିତାଗ୍ନିରେ ଝାସ ଦେଲେ ।

ଏ ସମସ୍ତ ଘଟଣା ଘଟିଯିବା ପରେ ସୋମଶୂର ଗୁରୁଙ୍କ ମୃତ୍ୟୁଜନିତ ଦୁଃଖ ସହ୍ୟ କରିନପାରି ଯୋଗ ବଳରେ ପ୍ରାଣ ବିସର୍ଜନ କରିବାର ସଂକଳ୍ପ କଲେ । ଆଶ୍ରମ ମଧ୍ୟରେ ଗୋଟିଏ କୁଶାସନ ପ୍ରସ୍ତୁତ କରି ତା'ଉପରେ ବସିବାକୁ ଗଲାବେଳେ ଦେବରାଜ ଇନ୍ଦ୍ର ପ୍ରତ୍ୟକ୍ଷ ରୂପେ ସେଠାରେ ଆବିର୍ଭୂତ ହୋଇ କହିଲେ, 'ବତ୍ସ, ନିଜ ସଂକଳ୍ପରୁ କ୍ଷାନ୍ତ ହୁଅ । ମୁଁ ତୁମ ଗୁରୁଙ୍କ ପରୀକ୍ଷା ହିଁ ନେଉଥିଲି । ଚିତାରେ ଦଗ୍ଧୀଭୂତ ହୋଇଥିବା ସମସ୍ତଙ୍କ ଅସ୍ଥି ଓ ଭସ୍ମାବଶେଷ ଉପରେ ଅମୃତ ସିଞ୍ଚନ କରି ସେମାନଙ୍କୁ ଜୀବନ ଦାନ ଦେଇସାରିଛି । ତୁମେ ଯାଇ ତାଙ୍କୁ ସାକ୍ଷାତ କର ।' ସୋମଶୂର ପ୍ରସନ୍ନତା ପୂର୍ବକ ତାଙ୍କୁ ପ୍ରଣିପାତ କରି ଚିତାଗ୍ନି ନିକଟରେ ଉପସ୍ଥିତ ହେଲେ । ପତ୍ନୀ ଓ ଅତିଥିମାନଙ୍କ ସହିତ ଗୁରୁଙ୍କୁ ପୂର୍ବରୂପରେ ଦେଖି ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ନତମସ୍ତକରେ ଗୁରୁଙ୍କୁ ପ୍ରଣିପାତ କଲେ । କୁଶଳ ଜିଜ୍ଞାସା ପୂର୍ବକ ବଚନ ପୁଷ୍ପଦ୍ୱାରା ତାଙ୍କର ପୂଜା କରି ଚକ୍ଷୁଯୁଗଳଦ୍ୱାରା ସତେ ଯେପରି ତାଙ୍କୁ ପିଇଯିବାକୁ ଲାଗିଲେ ।

କନକକଳଶ ଭକ୍ତିଭରା ନୟନରେ ବୋଧିସତ୍ତ୍ୱ ବିନୀତମତିଙ୍କୁ ଚାହିଁ ରହିଥିବା ବେଳେ ବ୍ରହ୍ମା, ବିଷ୍ଣୁ ପ୍ରଭୃତି ସମସ୍ତ ଦେବତାଙ୍କର ସେଠାରେ ଆବିର୍ଭାବ ଘଟିଲା । ରାଜର୍ଷିଙ୍କ

ଦାନଧର୍ମ ଓ ଜ୍ଞାନ ତପସ୍ୟାରେ ସନ୍ତୁଷ୍ଟ ହୋଇ ସମସ୍ତେ ତାଙ୍କୁ ଦିବ୍ୟ ଅନୁଭୂତି ସମ୍ପନ୍ନ ଏବଂ ପରୋପକାରୀ ହେବା ନିମିତ୍ତ ଆଶୀର୍ବାଦ ପ୍ରଦାନ କରି ଅନ୍ତର୍ହିତ ହେଲେ ।

ଦେବତାମାନଙ୍କ ଅନ୍ତର୍ଦ୍ଧାନ ପରେ ବିନୀତମତି, ଶିଷ୍ୟ ସୋମଶୂର, ପତ୍ନୀ ନାଗକନ୍ୟା ଓ ରାଜକନ୍ୟା ତଥା କନକକଳଶ ଓ ତାଙ୍କ ଅନୁଚରମାନଙ୍କ ସହିତ ତପଶ୍ଚରଣ ନିମିତ୍ତ ଅନ୍ୟ ଏକ ଦିବ୍ୟ ତପୋବନ ପ୍ରତି ପ୍ରସ୍ଥାନ କଲେ ।

ତାତ, ଅଗ୍ନିରେ ଦଗ୍ଧୀଭୂତ ହୋଇଯାଇଥିବା ବ୍ୟକ୍ତିମାନଙ୍କର ମଧ୍ୟ ଏହିପରି ପୁନର୍ମିଳନ ସମ୍ଭବ ହୋଇଥାଏ । ତେଣୁ ଜୀବିତ ଓ ସ୍ୱଚ୍ଛନ୍ଦ ଗତିସମ୍ପନ୍ନ ବ୍ୟକ୍ତିମାନଙ୍କ କଥା ବା କ'ଣ କହିବି ? ଏଥିପାଇଁ, ବତ୍ସ, ଶରୀର ତ୍ୟାଗ କରିବା କଥା ମନରୁ ପୋଛିଦିଅ । ତୁମେ ବୀର ପୁରୁଷ, ଆଗକୁ ଅଗ୍ରସର ହୁଅ । ମୃଗାଙ୍କଦତ୍ତଙ୍କ ସହିତ ତୁମର ମିଳନ ଅବଶ୍ୟମ୍ଭାବୀ ।'

ବୃଦ୍ଧା ତପସ୍ୱିନୀଙ୍କଠାରୁ ଏହିକଥା ଶୁଣି ମୋ ମନରେ ମିଳନର ଆଶା ଜାଗ୍ରତ ହେଲା । ଖଡ୍‌ଗ ଧାରଣପୂର୍ବକ ମୁଁ ତାଙ୍କୁ ପ୍ରଣତିଜ୍ଞାପନ କରି ବିଦାୟ ନେଲି । ବିଭିନ୍ନ ସ୍ଥାନ ଭ୍ରମଣ କରି ମୁଁ ଯେତେବେଳେ ଏହି ଅରଣ୍ୟ ମଧ୍ୟରେ ପ୍ରବେଶ କଲି ସଂଯୋଗବଶତଃ ଚଣ୍ଡୀଙ୍କ ପାଇଁ ବଳି ଖୋଜୁଥିବା ଏହି ଭୀଲ୍‌ମାନଙ୍କ ହାତରେ ଧରାପଡ଼ିଲି । ସେମାନେ ମୋତେ ଯୁଦ୍ଧରେ ବିବଶ କରି ରାଜା ମାୟାବଟୁଙ୍କ ସମ୍ମୁଖକୁ ନେଇଆସିଛନ୍ତି । ଏଠାରେ ମିତ୍ରମାନଙ୍କ ସହିତ ଆପଣଙ୍କୁ ଦେଖି ମୋର ସମସ୍ତ ବେଦନା ଦୂର ହୋଇଯାଇଛି । ମୁଁ ବର୍ତ୍ତମାନ ସୁସ୍ଥ ଓ ଶାନ୍ତ ।

ମିତ୍ର ଗୁଣାକରଙ୍କ ଠାରୁ ତାଙ୍କର ସମସ୍ତ ବୃତ୍ତାନ୍ତ ଶୁଣି ବାଲ୍ୟବନ୍ଧୁ ଭୀଲ୍ ଅଧିପତିଙ୍କ ଗୃହରେ ରହୁଥିବା ମୃଗାଙ୍କଦତ୍ତ ଅତ୍ୟନ୍ତ ଆନନ୍ଦିତ ହେଲେ । ଗୁଣାକରଙ୍କ କ୍ଷତସ୍ଥାନଗୁଡ଼ିକୁ ଧୋଇ ସେଥିପାଇଁ ଉପଯୁକ୍ତ ମଲମପଟ୍ଟିର ବ୍ୟବସ୍ଥା କରାଗଲା । ସୂର୍ଯ୍ୟ ଧୀରେ ଧୀରେ ଉପରକୁ ଉଠିବାରୁ ମୃଗାଙ୍କଦତ୍ତ ନିତ୍ୟକର୍ମ ସମାପନ ନିମିତ୍ତ ଅନ୍ୟ ମିତ୍ରମାନଙ୍କ ସହିତ ଉଠିଗଲେ । ଅବଶିଷ୍ଟ ମିତ୍ରମାନଙ୍କ ସହିତ ମିଳିତ ହେବା ଏବଂ ଶଶାଙ୍କବତୀଙ୍କୁ ଲାଭ କରିବା ଆକାଙ୍କ୍ଷା ବଳବତୀ ଥିଲେ ସୁଦ୍ଧା ଗୁଣାକର ସମ୍ପୂର୍ଣ୍ଣ ସୁସ୍ଥ ହେବା ପର୍ଯ୍ୟନ୍ତ ମୃଗାଙ୍କଦତ୍ତଙ୍କୁ ଭୀଲ୍‌ରାଜ ମାୟାବଟୁଙ୍କ ଗୃହରେ ଆଉ କିଛିଦିନ ରହିବାକୁ ପଡ଼ିଲା ।

# ଷଷ୍ଠ ତରଙ୍ଗ

ଗୁଣାକର ଧୀରେ ଧୀରେ ସୁସ୍ଥ ହେଲେ । ତାଙ୍କର ବ୍ରଣଗୁଡ଼ିକ ଆରୋଗ୍ୟ ହେଲା । ମୃଗାଙ୍କଦତ୍ତ ମଧ୍ୟ ଶଶାଙ୍କବତୀଙ୍କ ପାଇଁ ଅଧିକ ଉତ୍କଣ୍ଠିତ ହୋଇପଡୁଥିଲେ । ଏଣୁ ଗୋଟିଏ ଶୁଭଦିନ ଓ ଶୁଭ ମୁହୂର୍ତ୍ତ ଦେଖି ସେ ମିତ୍ର ମାୟାବଟୁଙ୍କଠାରୁ ବିଦାୟ ନେଇ ଉଜ୍ଜୟିନୀ ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ଶବର ଅଧିପତି ମଧ୍ୟ ଅନ୍ୟତମ ମିତ୍ର ମାତଙ୍ଗପତି ଦୁର୍ଗପିଶାଚ ଏବଂ ଅନୁଚରମାନଙ୍କ ସହିତ ବହୁଦୂର ପର୍ଯ୍ୟନ୍ତ ବଳାଇଦେବାପାଇଁ ତାଙ୍କର ସହଗାମୀ ହେଲେ । ଶେଷରେ ଆବଶ୍ୟକ ସମସ୍ତ ସହାୟତା ଦେବାପାଇଁ ପ୍ରତିଶ୍ରୁତି ଦେଇ ମାୟାବଟୁ ନିଜ ପଲ୍ଲୀକୁ ଫେରିଆସିଲେ ।

ଶ୍ରୁତଧି, ବିମଳବୁଦ୍ଧି, ଗୁଣାକର ତଥା ଭୀମପରାକ୍ରମଙ୍କ ସହିତ ମୃଗାଙ୍କଦତ୍ତ ବିନ୍ଧ୍ୟାଟବୀ ମଧ୍ୟରେ ଉଜ୍ଜୟିନୀ ପ୍ରତି ଅଗ୍ରସର ହେଲେ । ଅନ୍ୟମନ୍ତ୍ରୀ ଓ ମିତ୍ରମାନଙ୍କ ସହିତ ମିଳନର ଆଶା ସେମାନଙ୍କ ମନରେ ସତତ ଜାଗ୍ରତ ଥାଏ । ବିଶ୍ରାମ ନେବା ନିମିତ୍ତ ସେମାନେ ସୂର୍ଯ୍ୟାସ୍ତ ପରେ ଗୋଟିଏ ବୃକ୍ଷର ପାଦଦେଶରେ ନିଦ୍ରାଗଲେ । ହଠାତ୍ ନିଦ ଭାଙ୍ଗିଯିବାରୁ ରାଜକୁମାର ଉଠି ଦେଖିଲେ ଯେ ଅଦୂରରେ ଅନ୍ୟଜଣେ ପଥିକ ମଧ୍ୟ ବିଶ୍ରାମ ନେଉଛନ୍ତି । ସେ ନିକଟକୁ ଯାଇ ପଥିକଙ୍କ ମୁହଁରୁ ଆବରଣଟି ଘୁଞ୍ଚାଇବାମାତ୍ରେ ତାଙ୍କୁ ନିଜର ଅନ୍ୟତମ ସଚିବ ବିଚିତ୍ରକଥ ବୋଲି ଚିହ୍ନିପାରିଲେ । ମୁହଁରୁ ଆବରଣ ଅପସରିଯିବାରୁ ବିଚିତ୍ରକଥଙ୍କର ମଧ୍ୟ ନିଦ୍ରାଭଙ୍ଗ ହେଲା । ଆଗରେ ନିଜର ପ୍ରଭୁ ମୃଗାଙ୍କଦତ୍ତଙ୍କୁ ଦେଖି ସେ ତାଙ୍କ ପାଦଯୁଗଳକୁ ନିବିଡ଼ଭାବେ ଭିଡ଼ି ଧରିଲେ । ଏହି ଆକସ୍ମିକ ମିଳନରେ ମୃଗାଙ୍କଦତ୍ତଙ୍କ ଆନନ୍ଦର ସୀମା ଅତିକ୍ରମ କରିଗଲା । ସେ ବିଚିତ୍ରକଥଙ୍କୁ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ଅନ୍ୟ ମନ୍ତ୍ରୀମାନେ ମଧ୍ୟ ଜାଗ୍ରତ ହୋଇ ତାଙ୍କୁ କଣ୍ଠାଶ୍ଳେଷ ପୂର୍ବକ ଅଭିନନ୍ଦନ ଜଣାଇବାକୁ ଲାଗିଲେ । ପରସ୍ପର ପରସ୍ପର ନିକଟରେ ନିଜନିଜର ବୃତ୍ତାନ୍ତ ବର୍ଣ୍ଣନା କରି ବିଚିତ୍ରକଥଙ୍କୁ ତାଙ୍କ ଅନୁଭୂତି ବର୍ଣ୍ଣନା କରିବା ନିମିତ୍ତ ଅନୁରୋଧ କରନ୍ତେ, ସେ ଆରମ୍ଭ କଲେ—

## ବିଚିତ୍ରକଥଙ୍କ ଆତ୍ମକାହାଣୀ

ନାଗରାଜ ପାରାବତଙ୍କ ଅଭିଶାପ ଫଳରେ ଆପଣମାନେ ଯେତେବେଳେ ଇତସ୍ତତଃ ଚାଲିଗଲେ ମୁଁ ଏକାକୀ ବିବ୍ରତ ହୋଇ ସେହି ଅରଣ୍ୟ ମଧ୍ୟରେ ଭ୍ରମଣ କରିବାକୁ ଲାଗିଲି । ବୁଲିବୁଲି ମୁଁ କେତେଦୂର ଯେ ଚାଲିଗଲି ଜାଣିପାରିଲି ନାହିଁ । ଧୀରେଧୀରେ ମୋର ସଂଜ୍ଞା ଲୋପ ହୋଇଆସୁଥିଲା । ଶ୍ରାନ୍ତକ୍ଲାନ୍ତ ହୋଇ ମୁଁ ପରଦିନ ଅରଣ୍ୟ ସୀମାରେ ଥିବା ଗୋଟିଏ ଦିବ୍ୟ ତଥା ବିଶାଳ ନଗରୀରେ ଆସି ପହଞ୍ଚିଲି । ନଗର ମଧ୍ୟରେ ପ୍ରବେଶ କରି ବୁଲୁଥିବା ବେଳେ ଦୁଇଜଣ ଦିବ୍ୟରମଣୀ ଏବଂ ଜଣେ ଦିବ୍ୟପୁରୁଷ ମୋତେ ସାହସ ଦେଇ ଖାଦ୍ୟପାନୀୟ ଦ୍ୱାରା ଆଶ୍ୱସ୍ତ କଲେ ।

ସେମାନଙ୍କ ଆଦର ଓ ଯତ୍ନରେ ମୁଁ ଦିବ୍ୟ ଭୋଜନ କଲି । ମୋ ପରେ ପୁରୁଷ ଜଣକ ତାଙ୍କର ଭୋଜନ ସମାପ୍ତ କଲେ । ଶେଷରେ ସ୍ତ୍ରୀମାନେ ଭୋଜନକରି ମୋ ନିକଟରେ ଆସି ବସିଲେ । ମୁଁ ସମ୍ଭ୍ରମର ସହିତ ସେମାନଙ୍କ ପରିଚୟ ଜିଜ୍ଞାସା କଲି ଏବଂ ମୋପରି ଜଣେ ଅଜ୍ଞାତ ବ୍ୟକ୍ତିର ଜୀବନରକ୍ଷାପାଇଁ ଏପରି ଯତ୍ନ କରିବାର କାରଣ ଜାଣିବାକୁ ଚାହିଁଲି । ପ୍ରସଙ୍ଗକ୍ରମେ ମୋର ସମଗ୍ର ବୃତ୍ତାନ୍ତ ତାଙ୍କ ନିକଟରେ ବର୍ଣ୍ଣନା କରି ରାଜକୁମାରଙ୍କ ବିନା ମୋର ଶରୀର ଧାରଣ କିପରି ଅସମ୍ଭବ ତାହା ମଧ୍ୟ ତାଙ୍କୁ କହି ଶୁଣାଇଲି । ସେ ମହାତ୍ମା ସବୁ ଶୁଣିବା ପରେ ପ୍ରୀତିପୂର୍ଣ୍ଣ ବଚନରେ ମୋତେ କହିଲେ, 'ମୁଁ ଜଣେ ଯକ୍ଷ । ଏ ଉଭୟ ମୋର ପତ୍ନୀ । ଆଜି ତୁମେ ମୋର ଅତିଥି ହୋଇ ଆସି ପହଞ୍ଚିଲ । ଅତିଥିମାନଙ୍କର ଯଥୋଚିତ ସତ୍କାର କରିବା ଗୃହସ୍ଥର ଧର୍ମ । ଏଥିପାଇଁ ମୁଁ ତୁମର ଅର୍ଚ୍ଚନା କଲି । କିନ୍ତୁ ତୁମେ ପ୍ରାଣତ୍ୟାଗର ସଂକଳ୍ପ କରିବା ଅନୁଚିତ । ନାଗରାଜଙ୍କ ଅଭିଶାପ ତୁମମାନଙ୍କୁ କିଛିଦିନ ପାଇଁ ହିଁ ବିଚ୍ଛିନ୍ନ କରିଦେଇଛି । ଶାପର ଅବଧି ଶେଷ ହୋଇଯିବା ପରେ ଅବଶ୍ୟ ତୁମମାନଙ୍କର ପୁନର୍ମିଳନ ଘଟିବ । ଏହି ସଂସାରରେ ବିନାଦୁଃଖରେ ଜୀବନଯାପନ କରୁଥିବା ବ୍ୟକ୍ତି ବିରଳ । ଯକ୍ଷ ହୋଇ ସୁଦ୍ଧା ମୁଁ ଯେପରି ଦୁଃଖ ଦେଖିଛି ତାହା ତୁମ ଆଗରେ ପ୍ରକାଶ କରୁଛି, ଶୁଣ–

## ଶ୍ରୀଦର୍ଶନ କଥା

ପୃଥିବୀ ବଧୂର ଶିରୋଭୂଷା ପୁଷ୍ପଗୁଚ୍ଛ ତୁଲ୍ୟ ତ୍ରିଗର୍ତ୍ତ ନାମରେ ଏକ ନଗରୀ ଅଛି । ସେଠାରେ ପବିତ୍ରଧର ନାମରେ ଜଣେ ବ୍ରାହ୍ମଣ ଯୁବକ ବାସ କରୁଥିଲେ । ସେ ଧନରେ ଦରିଦ୍ର ଥିଲେ ମଧ୍ୟ ବଂଶ ଓ ସ୍ୱଜନରେ ଦରିଦ୍ର ନଥିଲେ । ଧନଶାଳୀ ବନ୍ଧୁବାନ୍ଧବ ମଧ୍ୟରେ

ରହି ସେହି ସ୍ୱାଭିମାନୀ ବ୍ରାହ୍ମଣ ଦିନେ ଚିନ୍ତାକଲେ, 'କୌଣସି ସାର୍ଥକ କାର୍ଯ୍ୟରେ ନିରର୍ଥକ ଶବ୍ଦ ଯେପରି ଶୋଭାପାଏ ନାହିଁ, ସେହିପରି ଅର୍ଥଶାଳୀ ବନ୍ଧୁବାନ୍ଧବମାନଙ୍କ ମଧ୍ୟରେ ମୋପରି ଜଣେ ଦରିଦ୍ର ଶୋଭାପାଇବା ସମ୍ଭବ ନୁହେଁ । ମୋର ସ୍ୱାଭିମାନ ଏବଂ କୁଳୀନତା ଯୋଗୁଁ ମୁଁ ଅନ୍ୟର ସେବା କରିବା କିମ୍ବା ଅନ୍ୟଠାରୁ ଦାନ ଗ୍ରହଣ କରିବା ମଧ୍ୟ ସ୍ପୃହଣୀୟ ନୁହେଁ । ଏଣୁ ଗୁରୁମୁଖରୁ ଲାଭ କରିଥିବା ମନ୍ତ୍ରଦ୍ୱାରା କୌଣସି ଏକାନ୍ତ ସ୍ଥାନକୁ ଯାଇ ଯକ୍ଷିଣୀ ସିଦ୍ଧ କରିବା ହିଁ ମୋପାଇଁ ଉଚିତ ହେବ ।'

ଏହିପରି ନିଶ୍ଚୟ କରି ବ୍ରାହ୍ମଣ ପବିତ୍ରଧର ଅରଣ୍ୟ ମଧ୍ୟରେ ଯାଇ ପତ୍ନୀ ରୂପରେ ବିଧିପୂର୍ବକ ଯକ୍ଷିଣୀର ସାଧନା କରିବାକୁ ଲାଗିଲେ । କିଛିଦିନ ମଧ୍ୟରେ ସେ ସୌଦାମିନୀ ନାମ୍ନୀ ଯକ୍ଷିଣୀକୁ ସିଦ୍ଧକଲେ । ଉଭୟେ ବସନ୍ତକାଳୀନ ପୁଷ୍ପିତ ଲତା ପରି ଶୋଭା ପାଇଲେ ସୁଦ୍ଧା ବହୁଦିନ ପର୍ଯ୍ୟନ୍ତ ସେମାନଙ୍କର କୌଣସି ସନ୍ତାନସନ୍ତତି ଜନ୍ମ ହେଲାନାହିଁ । ବ୍ରାହ୍ମଣଙ୍କୁ ଏଥିପାଇଁ ଦୁଃଖ କରୁଥିବା ଲକ୍ଷ୍ୟ କରି ଯକ୍ଷିଣୀ ସୌଦାମିନୀ ଆଶ୍ୱାସନା ଦେଇ କହିଲା, "ଆର୍ଯ୍ୟପୁତ୍ର, ଆପଣ ଚିନ୍ତିତ ହେବା ଅନାବଶ୍ୟକ । ଆମେ ନିଶ୍ଚିତ ଭାବେ ପୁତ୍ରଲାଭ କରିବା । ଏ ସମ୍ପର୍କରେ ମୁଁ ଆପଣଙ୍କୁ ଗୋଟିଏ ବୃତ୍ତାନ୍ତ କହୁଛି, ଶୁଣନ୍ତୁ—

## ସୌଦାମିନୀର ଆତ୍ମକଥା

ଦାକ୍ଷିଣାତ୍ୟର ସୀମାନ୍ତ ପ୍ରଦେଶରେ ବର୍ଷାର ଜନ୍ମସ୍ଥଳୀ ପରି ସର୍ବଦା ମେଘାଚ୍ଛନ୍ନ ଏକ ଶ୍ୟାମଳ ତମାଳ ଉଦ୍ୟାନ ଶୋଭାପାଉଛି । ଭଗବାନ୍ ସୂର୍ଯ୍ୟ ମଧ୍ୟ ସେଠାରେ ନିଷ୍ପ୍ରଭ ହୋଇପଡ଼ନ୍ତି । ସେଠାରେ ପୃଥୁଦର ନାମକ ଜଣେ ପ୍ରସିଦ୍ଧ ଯକ୍ଷ ବାସ କରନ୍ତି । ମୁଁ ତାଙ୍କର ଏକମାତ୍ର କନ୍ୟା ସୌଦାମିନୀ । ବାତ୍ସଲ୍ୟ ସ୍ନେହରୁ ପିତା ମୋତେ ସମସ୍ତ କୁଳାଚଳ ଏବଂ ଦିବ୍ୟ ଉପବନଗୁଡ଼ିକ ମଧ୍ୟକୁ ନେଇଯାଆନ୍ତି । ମୁଁ ସେଠାରେ ସର୍ବଦା ବିଚରଣ କରି ଆନନ୍ଦ ଉପଭୋଗ କରୁଥାଏ ।

ଦିନେ ମୋର ଅନ୍ତରଙ୍ଗାସଖୀ କପିଶଭ୍ରୂ ସହିତ କୈଳାସ ପର୍ବତ ଉପରେ କ୍ରୀଡ଼ା କଲାବେଳେ ଅଟ୍ଟହାସ ନାମକ ଜଣେ ଯକ୍ଷପୁତ୍ରଙ୍କ ଉପରେ ମୋର ଦୃଷ୍ଟି ନିବଦ୍ଧ ହେଲା । ମିତ୍ରମାନଙ୍କ ମଧ୍ୟରେ ରହିଥିବା ସେହି ଯକ୍ଷକୁମାରଙ୍କ ଦୃଷ୍ଟି ମଧ୍ୟ ମୋ ଉପରେ ପଡ଼ିଲା । ଉଭୟେ ଉଭୟଙ୍କୁ ଦେଖିବା ମାତ୍ରେ ଆମେ ପରସ୍ପର ପ୍ରତି ଆକୃଷ୍ଟ ହେଲୁ । ସଖୀଠାରୁ ଏହା ଜାଣିପାରି ଏବଂ ଆମ ମିଳନ ଅଯୌକ୍ତିକ ନୁହେଁ ଦେଖି ପିତା ଅଟ୍ଟହାସଙ୍କୁ ନିକଟକୁ ଡାକି ଆମ ଉଭୟଙ୍କ ବିବାହ ନିଶ୍ଚିତ କଲେ ।

ବିବାହ ଦିବସ ସ୍ଥିରୀଭୂତ ହେବାରୁ ପିତା ମୋତେ ଆମ ବାସଭବନକୁ ଫେରାଇ ଆଣିଲେ । ଅଟ୍ଟହାସ ମଧ୍ୟ ମିତ୍ରମାନଙ୍କ ସହିତ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ପରଦିନ ସଖୀ କପିଶଭ୍ରୂ ମୋ ନିକଟରେ ଆସି ପହଞ୍ଚିଲା । ସେ ଅତ୍ୟନ୍ତ ଦୁଃଖିତ ଓ ଉଦାସ ଦେଖାଯାଉଥାଏ । ମୁଁ ବାରମ୍ବାର ପଚାରିବାରୁ ସେ ବହୁକଷ୍ଟରେ କହିଲା, 'ସଖି', ତୁମକୁ ତ ଏହା କହିବା ଉଚିତ ନୁହେଁ । ତଥାପି ତୁମେ ବାଧ୍ୟ କରିବାରୁ ମୁଁ ମଧ୍ୟ କହିବାପାଇଁ ବାଧ୍ୟ ହେଉଛି । ଧୈର୍ଯ୍ୟ ଧରି ମୋର ସମସ୍ତ କଥା ଶୁଣିବ । ମଝିରୁ ଭାଙ୍ଗିପଡ଼ିବ ନାହିଁ ।

ଆଜି ଏଠାକୁ ଆସିବା ବେଳେ ମୁଁ ଅଟ୍ଟହାସଙ୍କୁ ଦେଖିଲି । ସେ ତୁମକୁ ପାଇବା ପାଇଁ ଅତ୍ୟନ୍ତ ଉତ୍ସୁକ ଥିବାପରି ଜଣାଯାଉଥାନ୍ତି । ମିତ୍ରମାନଙ୍କ ଅନୁରୋଧ କ୍ରମେ ସେ ହିମାଳୟର ଚିତ୍ରସ୍ଥଳ ନାମକ ଶିଖରୀରେ ମିତ୍ରମାନଙ୍କ ସହିତ କ୍ରୀଡ଼ା କରିବାପାଇଁ ଯାଇ ଉପସ୍ଥିତ ହେଲେ । ସେ ଯକ୍ଷରାଜ ହୋଇଥାନ୍ତି । ମିତ୍ରମାନେ ତାଙ୍କ ଭାଇ ଦୀପ୍ତଶିଖଙ୍କୁ ଯକ୍ଷରାଜଙ୍କ ପୁତ୍ର ନଳକୂବର ବେଶରେ ସଜାଇଥାନ୍ତି । ଏବଂ ଅନ୍ୟମାନେ ଯକ୍ଷରାଜ କୁବେରଙ୍କ ମନ୍ତ୍ରୀ ରୂପରେ ରହିଥାନ୍ତି । ତୁମର ଭାବୀସ୍ୱାମୀ ଯକ୍ଷରାଜ କୁବେରଙ୍କ ବେଶରେ ମନ୍ତ୍ରୀମାନଙ୍କ ସହିତ କ୍ରୀଡ଼ା କରୁଥିବା ବେଳେ ଆକାଶ ମାର୍ଗରେ ବିଚରଣ କରୁଥାନ୍ତି । ଏ ସମୟରେ ଅକସ୍ମାତ୍ ପ୍ରକୃତ ନଳକୂବରଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ପିତାଙ୍କ ବେଶ ଧାରଣ କରି ଆକାଶରେ ବିଚରଣ କରୁଥିବା ଦେଖି ସେ ଅଟ୍ଟହାସଙ୍କୁ ଅଭିଶାପ ଦେଲେ, 'ରେ ଦୁର୍ମତି, ଭୃତ୍ୟ ହୋଇ ପ୍ରଭୁଙ୍କ ପରି ଆଚରଣ କରିବାପାଇଁ ପ୍ରୟାସ କରୁଥିବା ଯୋଗୁଁ ତୁ ମର୍ତ୍ତ୍ୟଲୋକରେ ଯାଇ ଜନ୍ମଗ୍ରହଣ କରିବୁ । ଊର୍ଦ୍ଧ୍ୱକୁ ଯିବାପାଇଁ ଚାହୁଁଥିବା ଯୋଗୁଁ ତୋର ନୀଚ଼ଗତି ହେବା ଉଚିତ ।' ଏଥିରେ ଅଟ୍ଟହାସଙ୍କ ସମସ୍ତ ଆନନ୍ଦ ନଷ୍ଟ ହୋଇଗଲା । ସେ ଉଦ୍‌ବେଗର ସହିତ ପ୍ରାର୍ଥନା କଲେ, 'ଦେବ, ମୁଁ ଅଧିକାରର ସ୍ୱାଭିମାନରେ ଏପରି କରିନାହିଁ । କେବଳ କୌତୂହଳବଶତଃ ମୁଁ ଏପରି ମୂର୍ଖତା କରିଛି । ଆପଣ ମୋର ଧୃଷ୍ଟତା ମାର୍ଜନା କରି କ୍ଷମା କରନ୍ତୁ ।'

ଅଟ୍ଟହାସଙ୍କ ବିନୀତ ପ୍ରାର୍ଥନା ନଳକୂବରଙ୍କ କ୍ରୋଧ ଶାନ୍ତ କଲା । ସେ ଧ୍ୟାନସ୍ଥ ହୋଇ ଜାଣିଲେ ଯେ ସେ ଯାହା କରିଛନ୍ତି ତାହା ଯଥାର୍ଥ ହିଁ ହୋଇଛି । ତେଣୁ ଶାପାନ୍ତ ଘୋଷଣା କରି ସେ କହିଲେ, 'ତୁ ମନୁଷ୍ୟ ଲୋକରେ ଜନ୍ମଗ୍ରହଣ କରି, ଯେଉଁ ଯକ୍ଷିଣୀ ପାଇଁ ଉତ୍ସୁକ ଅଛୁ, ତାକୁ ବିବାହ କରିବୁ । ପୁଣି ତୁ ନଳକୂବରର ବେଶ ଧାରଣ କରିଥିବା ନିଜ ଭାଇ ଦୀପ୍ତଶିଖକୁ ପୁତ୍ର ରୂପରେ ଲାଭ କରିବୁ । ସନ୍ତାନ ପ୍ରାପ୍ତି ପରେ ତୁମେ ଉଭୟେ

ଶାପମୁକ୍ତ ହୋଇ ପୁଣି ନିଜଲୋକକୁ ଫେରିଆସିବ । ତୋର ଭାଇ ମର୍ତ୍ତ୍ୟରେ ତୋର ପୁତ୍ରରୂପେ ଜନ୍ମଲାଭ କରି ରାଜାରୂପେ ରାଜ୍ୟଶାସନ ପୂର୍ବକ ଶାପମୁକ୍ତ ହେବ– ଏବଂ ତୁମ ନିକଟକୁ ଫେରିଆସିବ ।' ନଳକୁବର ଏହା କହୁଥିବା ବେଳେ ଅଟ୍ଟହାସ ହଠାତ୍ ସେଠାରୁ ଅନ୍ତର୍ହିତ ହୋଇଗଲେ । ବୋଧହୁଏ ଶାପର ପ୍ରଭାବ ତାଙ୍କୁ ମର୍ତ୍ତ୍ୟଲୋକକୁ ନେଇଗଲା । ସଖି, ଏହା ଦେଖି ମୁଁ ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଲି ଏବଂ ଧୀରେ ଧୀରେ ତୁମ ନିକଟରେ ଆସି ପହଞ୍ଚିଲି ।'

ସଖୀଠାରୁ ଏହା ଶୁଣି ମୋର ଦଶା ଯାହାହେଲା, କହିବା ସମ୍ଭବ ନୁହେଁ । ବହୁ ସମୟ ଧରି ଶୋକ ବିହ୍ୱଳ ହୋଇ ରହିବା ପରେ ଗୃହକୁ ଫେରିଆସି ପିତାମାତାଙ୍କୁ ଏହା ଜଣାଇଲି । ଶାପ ମୁକ୍ତିର ଉପାୟ କହିଲାବେଳେ ନଳକୁବର ଆମର ମିଳନ ସମ୍ପର୍କରେ ସୂଚନା ଦେଇଥିବାରୁ ମୁଁ ଆଶାନ୍ୱିତ ହୋଇ ଅପେକ୍ଷା କରିବାକୁ ଲାଗିଲି ।

ଆପଣ ହେଉଛନ୍ତି ସେହି ଅଟ୍ଟହାସ ଏବଂ ମୁଁ ଯକ୍ଷକୁମାରୀ ସୌଦାମିନୀ । ପୃଥିବୀ ପୃଷ୍ଠରେ ଆମର ମିଳନ ଘଟିଛି । ତେଣୁ ଶୀଘ୍ର ଆମେ ପୁତ୍ର ଲାଭ କରିବା ।''

ବୁଦ୍ଧିମତୀ ସୌଦାମିନୀଠାରୁ ଏହାଶୁଣି ବ୍ରାହ୍ମଣ ପବିତ୍ରଧର ଅତ୍ୟନ୍ତ ପ୍ରସନ୍ନ ହେଲେ । ପୂର୍ବଜନ୍ମରେ ମଧ ତାଙ୍କ ବିଶ୍ୱାସ ଜାତ ହେଲା । କିଛିଦିନ ମଧରେ ତାଙ୍କ ଔରସରୁ ଯକ୍ଷିଣୀ ଏକ ପୁତ୍ରକୁ ଜନ୍ମଦେଲା । ବାଳକଟିର ରୂପ ସୌନ୍ଦର୍ଯ୍ୟ ତାଙ୍କ ଗୃହ ଏବଂ ମନ ଉଭୟକୁ ଆଲୋକିତ କଲା । ପୁତ୍ରର ମୁଖଦର୍ଶନ ମାତ୍ରେ ପବିତ୍ରଧର ଶାପମୁକ୍ତ ହୋଇ ଯକ୍ଷ ଅଟ୍ଟହାସର ରୂପ ଧାରଣ କଲେ । ସେ ଯକ୍ଷିଣୀକି କହିଲେ, 'ପ୍ରିୟେ, ବର୍ତ୍ତମାନ ଆମେ ଦୁହେଁ ଶାପମୁକ୍ତ । ଚାଲ ଆମେ ଆମ ଯକ୍ଷଲୋକକୁ ଫେରିଯିବା ।' କିନ୍ତୁ ଏଥିରେ ଯକ୍ଷିଣୀ ଟିକିଏ ଚିନ୍ତାକରି କହିଲା, 'ଅଭିଶାପ ଯୋଗୁଁ ତୁମର କନିଷ୍ଠ ଭ୍ରାତା ଆମର ପୁତ୍ରରୂପେ ଜନ୍ମ ନେଇଛନ୍ତି । ଆମେ ଚାଲିଗଲେ ଏହି ଶିଶୁଟିର ଅବସ୍ଥା କ'ଣ ହେବ ଟିକିଏ ଚିନ୍ତା କର ।'

ଅଟ୍ଟହାସ କର୍ତ୍ତବ୍ୟ ନିରୂପଣ କରିବା ନିମିତ୍ତ ଧ୍ୟାନସ୍ଥ ହେଲା । ଧ୍ୟାନରେ ଭବିଷ୍ୟତ ଘଟଣାବଳୀ ଦେଖି ଯକ୍ଷିଣୀ ସୌଦାମିନୀକୁ କହିଲା, 'ପ୍ରିୟେ, ତା' ପାଇଁ ଆମର ଚିନ୍ତା କରିବାର କିଛି ନାହିଁ । ଏହି ନଗରରେ ଦେବଦର୍ଶନ ନାମରେ ଜଣେ ବ୍ରାହ୍ମଣ ରହୁଛନ୍ତି । ତାଙ୍କର ସନ୍ତାନ ନାହିଁ କି ଧନ ମଧ ନାହିଁ । ସେ ପଞ୍ଚାଗ୍ନି ଆରାଧନା କରୁଥିଲେ ମଧ ତାଙ୍କ ଗୃହରେ ସାତୋଟି ଅଗ୍ନି ପ୍ରଜ୍ୱଳିତ ରହୁଛି । ମାନେ, ଅଗ୍ନିଙ୍କର ପାଞ୍ଚୋଟି ରୂପ ତ ବ୍ରାହ୍ମଣ ଘରେ ଥାଏ । ସେଥିରେ ଏହି ବ୍ରାହ୍ମଣ ଓ ତା' ସ୍ତ୍ରୀର ପେଟରେ ଜଳୁଥିବା ଦୁଇଟି ଅଗ୍ନି

ସଂଯୁକ୍ତ ହୋଇଛନ୍ତି । ଧନ ଏବଂ ପୁତ୍ର ପ୍ରାପ୍ତିପାଇଁ ବ୍ରାହ୍ମଣ ଅଗ୍ନିଙ୍କର ଉପାସନା କରୁଥାଆନ୍ତି । ଦିନେ ଅଗ୍ନି ତାଙ୍କ ନିଷ୍ଠାରେ ସନ୍ତୁଷ୍ଟ ହୋଇ ଦର୍ଶନ ଦେଲେ । କହିଲେ, 'ତୁମ ଔରସରେ ପୁତ୍ର ସନ୍ତାନ ନାହିଁ । ତେଣୁ ତୁମେ ଦତ୍ତପୁତ୍ର ଗ୍ରହଣ କର । ତା'ଦ୍ୱାରା ତମର ଦାରିଦ୍ର୍ୟ ମଧ ନଷ୍ଟ ହେବ ।' ଅଗ୍ନିଙ୍କର ଆଶୀର୍ବାଦ କ୍ରମେ ବ୍ରାହ୍ମଣ ଏପର୍ଯ୍ୟନ୍ତ ପୁତ୍ରର ପ୍ରତୀକ୍ଷାରେ ଅଛନ୍ତି । ଆମେ ଏହି ପୁତ୍ରଟିକୁ ତାଙ୍କ ହସ୍ତରେ ଅର୍ପଣ କରିଦେବା । ଏହାହିଁ ଭବିତବ୍ୟ ।'

ନିଜ ସ୍ତ୍ରୀକୁ ଏପରି କହି ଅଟ୍ଟହାସ ଶିଶୁଟିର କଣ୍ଠରେ ଏକ ଦିବ୍ୟ ରତ୍ନମାଳା ପିନ୍ଧାଇ ଦେଲେ । ବ୍ରାହ୍ମଣ ଓ ତା' ସ୍ତ୍ରୀ ଯେଉଁ କୋଠରିରେ ଶୋଇଥିଲେ ସେହି କୋଠରିରେ ଏକ ସ୍ୱର୍ଣ୍ଣମୁଦ୍ରା ପରିପୂର୍ଣ୍ଣ ପାତ୍ର ଉପରେ ଶିଶୁଟିକୁ ଶୁଆଇ ଦେଇ ଉଭୟ ଅଟ୍ଟହାସ ଓ ସୌଦାମିନୀ ଯକ୍ଷଲୋକକୁ ଫେରିଗଲେ ।

ବ୍ରାହ୍ମଣ ଦେବଦର୍ଶନ ଜାଗ୍ରତ ହେବା ମାତ୍ରେ ଏହି ନକ୍ଷତ୍ରମାଳା ବିଭୂଷିତ ଚନ୍ଦ୍ରମାତୁଲ୍ୟ ଶିଶୁଟି ଉପରେ ତାଙ୍କର ଦୃଷ୍ଟିପାତ ହେଲା । ସେ ତାକୁ ଦେଖି ବିସ୍ମିତ ହେଲେ । କିନ୍ତୁ ରତ୍ନପୂର୍ଣ୍ଣ ପାତ୍ରଟିକୁ ଦେଖି ଅଗ୍ନିଙ୍କର ସ୍ୱପ୍ନାଦେଶ ତାଙ୍କର ସ୍ମରଣ ହେଲା । ସେ ଦୈବୀଦତ୍ତ ଶିଶୁ ଓ ରତ୍ନ ଭଣ୍ଡାରକୁ ଗ୍ରହଣ କରି ପରଦିନ ଜନ୍ମୋତ୍ସବ ପାଳନ କଲେ । ଏକାଦଶ ଦିବସରେ ପୁତ୍ରଟିର ନାମ ଶ୍ରୀଦର୍ଶନ ରଖାଗଲା । ପୁତ୍ରଲାଭ ସହିତ ଅକ୍ଷୟ ଧନ ଭଣ୍ଡାର ଲାଭ କରି ସେମାନେ ଆନନ୍ଦମୟ ଜୀବନଯାପନ କରିବାକୁ ଲାଗିଲେ ।

ଶ୍ରୀଦର୍ଶନ ପିତୃ ଗୃହରେ ଲାଳିତପାଳିତ ହୋଇ ଅତ୍ୟନ୍ତ ଶକ୍ତିଶାଳୀ ହୋଇଉଠିଲେ । ପିତାଙ୍କ ଦ୍ୱାରା ସମସ୍ତ ବେଦ ବିଦ୍ୟା ଓ ଶସ୍ତ୍ରବିଦ୍ୟା ତାଙ୍କର ଆୟତ୍ତ ହେଲା । ସେ ଯୌବନରେ ପଦାର୍ପଣ କରନ୍ତେ ପିତା ଦେବଦର୍ଶନ ତୀର୍ଥଯାତ୍ରାରେ ବାହାରିଲେ । ପୁଣ୍ୟ ତୀର୍ଥ ପ୍ରୟାଗଠାରେ ତାଙ୍କର ଦେହାନ୍ତ ହେଲା । ଏହି ଦୁଃସମ୍ବାଦ ଶୁଣି ମାତା ମଧ ଅଗ୍ନିରେ ପ୍ରବେଶ କରି ଶରୀର ତ୍ୟାଗ କଲେ । ଶୋକସନ୍ତପ୍ତ ଶ୍ରୀଦର୍ଶନ ଶାସ୍ତ୍ରୋକ୍ତ ବିଧିରେ ପିତାମାତାଙ୍କ ଶୁଦ୍ଧିକ୍ରିୟା ଶେଷ କରି ଧୀରେଧୀରେ ଆଶ୍ୱସ୍ତ ହେଲେ ।

ସେପର୍ଯ୍ୟନ୍ତ ଶ୍ରୀଦର୍ଶନ ବିବାହ କରିନଥାନ୍ତି । ପରିବାରରେ ସେ ଏକାକୀ । ଧନ ସମ୍ପତ୍ତି ପ୍ରଚୁର । ତାଙ୍କ ଉଚ୍ଛୃଙ୍ଖଳତାକୁ ନିୟନ୍ତ୍ରଣ କରିବାପାଇଁ କେହି ବୟସ୍କ ପରିଜନ ମଧ ନାହିଁ । ତେଣୁ ବୁଦ୍ଧିମାନ ହେଲେ ସୁଦ୍ଧା ସେ ଦୁର୍ଭାଗ୍ୟବଶତଃ ଦ୍ୟୂତକ୍ରୀଡ଼ା ପ୍ରତି ଆସକ୍ତ ହୋଇପଡ଼ିଲେ । ଧୀରେଧୀରେ ତାଙ୍କର ସମସ୍ତ ସମ୍ପତ୍ତି ନିଃଶେଷ ହେବାକୁ ଲାଗିଲା । ଅଳ୍ପକେତୋଟି ଦିନ ଭିତରେ ସେ ଖାଦ୍ୟାଭାବରେ ପୀଡ଼ିତ ହେଲେ ।

ଏକଦା ଶ୍ରୀଦର୍ଶନ ଦୁଇତିନିଦିନ ଧରି ନିରାହାର ରହି ଦ୍ୟୂତଶାଳାରେ ପଡ଼ିରହିଥାନ୍ତି । ଉଚିତ ବସ୍ତ୍ରାଭାବରୁ ଲଜ୍ଜାନିବାରଣ କରିନପାରି ସେ ବାହାରକୁ ବାହାରିପାରୁ ନଥାନ୍ତି । ସ୍ୱାଭିମାନ ଯୋଗୁଁ ଅନ୍ୟଠାରୁ ସେ ଅର୍ଥ କିମ୍ବା ଖାଦ୍ୟପଦାର୍ଥ ଗ୍ରହଣ ନକରି ସେଠାରେ ପଡ଼ିରହିଥିବା ବେଳେ ମୁଖରକ ନାମକ ତାଙ୍କର ଅନ୍ୟତମ ଦ୍ୟୂତବିଳାସୀ ମିତ୍ର ଆଶ୍ୱାସନା ଦେଇ କହିଲେ, 'ତୁମେ ଏପରି କାହିଁକି ବିଚଳିତ ହୋଇପଡୁଛ । ଦ୍ୟୂତ ବିଳାସ ରୂପକ ପାପର ଏହାହିଁ ଯେ ପରିଣତି, ତାହା କ'ଣ ତମେ ଜାଣିନ ? ତୁମେ କ'ଣ ଜାଣିନ ଯେ ପଶାକାଠି ଦାରିଦ୍ର୍ୟକୁ ନିମନ୍ତ୍ରଣ କରିଥାଏ ? ଦ୍ୟୂତକ୍ରୀଡ଼ାରେ ଲିପ୍ତ ବ୍ୟକ୍ତିମାନଙ୍କର ଦୁଇଟି ହାତ ହିଁ ପରିଧେୟ ବସ୍ତ୍ର, ଭୂମି ହିଁ ଶଯ୍ୟା, ଉନ୍ମୁକ୍ତ ମଣ୍ଡପ ହିଁ ଗୃହ ଏବଂ ସର୍ବନାଶ ହିଁ ତା'ର ସ୍ତ୍ରୀ । ଏହାହିଁ ବିଧାତାର ବିଧାନ । ତୁମେ ତ ଶାସ୍ତ୍ରଜ୍ଞ । ଏସବୁ ଜାଣି ସୁଦ୍ଧା ଭୋଜନ ଗ୍ରହଣ ନକରିବା ତୁମ ପକ୍ଷରେ ଉଚିତ ହେଉନାହିଁ । ନିଜକୁ କାହିଁକି ଏପରି ଉପେକ୍ଷା କରୁଛ ? ଜୀବନଧାରଣ ପୂର୍ବକ ପଣ୍ଡିତ ବ୍ୟକ୍ତିମାନେ କେଉଁ ଅଭିଳାଷ ବା ପୂରଣ ନକରି ପାରନ୍ତି ? ଏ ସମ୍ପର୍କରେ ମୁଁ ତୁମକୁ ଏକ ବିଚିତ୍ର କଥା କହୁଛି, ଶୁଣ—

## ଭୂନନ୍ଦନ କଥା

ପୃଥିବୀର ଆଭୂଷଣ ପରି କାଶ୍ମୀର ନାମରେ ଏକ ମଣ୍ଡଳ ଶୋଭାପାଉଛି । ସ୍ୱର୍ଗ ରାଜ୍ୟରେ ଥିବା ଅନନ୍ତ ଭୋଗବିଳାସ ଦର୍ଶନରେ ବିଧାତା ମନୁଷ୍ୟମାନଙ୍କ ପାଇଁ ଭୂପୃଷ୍ଠରେ ସେହିପରି ଏକ ସ୍ୱର୍ଗ ରାଜ୍ୟ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଏହାକୁ ନିର୍ମାଣ କରିଥିଲା । ଲକ୍ଷ୍ମୀ ଓ ସରସ୍ୱତୀ ପରସ୍ପର ମଧ୍ୟରେ ଈର୍ଷ୍ୟା କରି ଏଠାରେ ନିଜନିଜର ପ୍ରାଧାନ୍ୟ ପ୍ରତିଷ୍ଠା ପାଇଁ ପ୍ରତିଯୋଗିତା କରୁଥିବା ପରି ମନେହୁଏ । ଏଠାରେ ଧର୍ମଦ୍ରୋହୀ କଳି ପ୍ରବେଶ କରିପାରୁ ନାହିଁ । ଚତୁର୍ଦ୍ଦିଗକୁ ଆବେଷ୍ଟନ କରି ପର୍ବତରାଜ ହିମାଳୟ ଏହାକୁ ରକ୍ଷା କରୁଛନ୍ତି । ଏଠାରେ ଥିବା ବିତସ୍ତା ନଦୀକୁ ଦେଖିଲେ ମନେହେଉଛି, ସତେ ଯେପରି ସେ ନିଜର ତରଙ୍ଗାବଳୀ ରୂପକ ହସ୍ତଦ୍ୱାରା ପାପସମୂହକୁ ଦୂରେଇ ଦେବାପାଇଁ କହୁଛି, 'ଏହା ଦେବତୀର୍ଥ । ଏଠାରେ ପ୍ରବେଶ କରନାହିଁ ।' ଏଠାରେ ଥିବା ସୁଧାଧବଳ ଅଟ୍ଟାଳିକା ଶ୍ରେଣୀକୁ ଦେଖିଲେ ମନେହୁଏ, ସତେ ଯେପରି ହିମାଳୟର ତୁଷାରାବୃତ ଶିଖରସମୂହଦ୍ୱାରା ନଗରଟି ନିର୍ମିତ ।

କାଶ୍ମୀରର ଏହି ପବିତ୍ର ରାଜ୍ୟରେ ଭୂନନ୍ଦନ ନାମରେ ଜଣେ ରାଜା ଥିଲେ । ସେ ଚାରି ଆଶ୍ରମରେ ରହୁଥିବା ଚାରି ବର୍ଣ୍ଣର ବ୍ୟକ୍ତିମାନଙ୍କ ପାଇଁ ଥିଲେ ଉପଦେଷ୍ଟା,

ପ୍ରଜାମାନଙ୍କ ପାଇଁ ଆନନ୍ଦପ୍ରଦ ଚନ୍ଦ୍ରମା ଏବଂ ବିଭିନ୍ନ ବିଦ୍ୟା ତଥା ଆଗମ ଶାସ୍ତ୍ରମାନଙ୍କରେ ନିଷ୍ଣାତ । ତାଙ୍କର ପରାକ୍ରମ କାମିନୀମାନଙ୍କର ନଖକ୍ଷତ ଚିହ୍ନିତ କୁଚମଣ୍ଡଳ ଏବଂ ସେନାବାହିନୀକୁ ସମାନ ଭାବରେ ଶୋଭନ କରୁଥିଲା । ଭୂନନ୍ଦନ ନୀତିପରାୟଣ ଥିଲେ । ତାଙ୍କର ପ୍ରଜାମଣ୍ଡଳୀ ଥିଲେ ବିପଦମୁକ୍ତ । ରାଜାଙ୍କର ଚିତ୍ତବୃତ୍ତି ଏକମାତ୍ର ଶ୍ରୀକୃଷ୍ଣଙ୍କଠାରେ ଆସକ୍ତ ଥିଲା । ସେ ନିର୍ମଳ ଓ ପବିତ୍ର ଚିତ୍ତରେ ତାଙ୍କର ଆରାଧନା କରୁଥିଲେ ।

ଗୋଟିଏ ଦ୍ୱାଦଶୀ ଦିନର କଥା । ରାଜା ଭୂନନ୍ଦନ ବିଧିପୂର୍ବକ ଭଗବାନଙ୍କର ପୂଜା ଶେଷ କଲେ । ରାତିରେ ସେ ସ୍ୱପ୍ନରେ ଦେଖିଲେ ଯେ ଜଣେ ଦୈତ୍ୟକନ୍ୟା ସ୍ୱଇଚ୍ଛାରେ ଆସି ତାଙ୍କ ନିକଟରେ ଉପସ୍ଥିତ ହୋଇଛି । ତା' ସହିତ ସେ ବିହାର କରୁଛନ୍ତି । ସମ୍ଭୋଗ ଶେଷରେ ତାଙ୍କର ନିଦ୍ରାଭଙ୍ଗ ହେଲା । ସେ ଜାଗ୍ରତ ହୋଇ ଦେଖିଲେ ସେଠାରୁ କନ୍ୟାଟି ଅନ୍ତର୍ହିତ ହୋଇଯାଇଛି । କିନ୍ତୁ ନିଜ ଶରୀରରେ ସମ୍ଭୋଗ ଚିହ୍ନ ସବୁ ଦେଖି ସେ ବିସ୍ମିତ ହେଲେ । ଏହା ଯେ ସ୍ୱପ୍ନ ନୁହେଁ ଏବଂ ପ୍ରକୃତରେ ସେ ସେହି ଦୈତ୍ୟକନ୍ୟା ସହିତ ସମ୍ଭୋଗ କ୍ରିୟା କରିଛନ୍ତି, ତାହା ସେ ସ୍ପଷ୍ଟ ବୁଝିପାରିଲେ । କୌଣସି ଦିବ୍ୟ ରମଣୀଦ୍ୱାରା ପ୍ରତାରିତ ହୋଇଥିବା ରାଜା ଭୂନନ୍ଦନ ତାରି ଚିନ୍ତାରେ ନିମଜ୍ଜିତ ରହିଲେ । ଧୀରେଧୀରେ ରାଜକାର୍ଯ୍ୟରୁ ମଧ୍ୟ ସେ ଦୂରେଇ ଗଲେ ।

ଭୂନନ୍ଦନ ସେହି ଦୈତ୍ୟକନ୍ୟା ସହିତ ପୁନର୍ମିଳନର କୌଣସି ଉପାୟ ଚିନ୍ତା କରିପାରିଲେ ନାହିଁ । ତାଙ୍କର ମନେହେଲା ଭଗବାନଙ୍କ ଅପାର କୃପାରୁ ସେହି କନ୍ୟା ସହିତ କ୍ଷଣିକପାଇଁ ତାଙ୍କର ମିଳନ ଘଟିଥିଲା । ଏଣୁ ସେ ପୁଣି ଉକ୍ତ କନ୍ୟାକୁ ଲାଭ କରିବାନିମିତ୍ତ ଏକାନ୍ତରେ ଭଗବାନଙ୍କ ଆରାଧନା କରିବାପାଇଁ ନିଶ୍ଚୟ କଲେ । ରାଜଭୋଗ ତାଙ୍କୁ ଅଳୀକ ମନେହେଲା । ସେ ରାଜସିଂହାସନ ତ୍ୟାଗ କରିବାର ସଂକଳ୍ପ ମନ୍ତ୍ରୀମାନଙ୍କୁ ଜଣାଇଦେଲେ ଏବଂ ନିଜର କନିଷ୍ଠ ଭ୍ରାତା ସୁନନ୍ଦନ ହସ୍ତରେ ରାଜ୍ୟଭାର ସମର୍ପଣ କରି ନିଜେ ରାଜ୍ୟତ୍ୟାଗ କଲେ ।

ରାଜ୍ୟ ତ୍ୟାଗ ପରେ ସେ କ୍ରମସର ନାମକ ଏକ ତୀର୍ଥରେ ଯାଇ ପହଞ୍ଚିଲେ । ସ୍ଥାନଟି ଅତୀତରେ ବାମନାବତାରୀ ଭଗବାନଙ୍କର ପାଦନ୍ୟାସରେ ପବିତ୍ରିତ ହୋଇଥିଲା । ସେଠାରେ ଥିବା ପର୍ବତ ଶୀର୍ଷରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଶୃଙ୍ଗ ରୂପେ ଅବସ୍ଥାନ କରୁଥିଲେ । କାଶ୍ମୀରରେ ପ୍ରବାହିତ ବିତସା ପ୍ରତି ଈର୍ଷାନ୍ୱିତ ହୋଇ ଭଗବାନ ବିଷ୍ଣୁଙ୍କ ଚରଣରୁ ବିଷ୍ଣୁବତୀ ନାମକ ଦ୍ୱିତୀୟ ଗଙ୍ଗା ଏଠାରେ ପ୍ରବାହିତ ହେଉଥିଲା । ପ୍ରଚଣ୍ଡ ଗ୍ରୀଷ୍ମ କାଳରେ ନବବର୍ଷା ବିନ୍ଦୁର ଆଶା ରଖି ଚାତକ ଯେପରି ଅଶେଷ କଷ୍ଟ ସହ୍ୟ କରିଥାଏ,

ସେହିପରି ରାଜା ଭୂନନ୍ଦନ ସେଠାରେ ଅନ୍ୟ ସମସ୍ତ ସୁଖସମ୍ଭୋଗର ଆକାଂକ୍ଷା ପରିତ୍ୟାଗ କରି ତପଶ୍ଚରଣ କରିବାକୁ ଲାଗିଲେ ।

ଏହିପରି ବାରବର୍ଷ ବିତିଗଲା । ଦିନେ ଜଣେ ବିଶିଷ୍ଟ ତପସ୍ୱୀ ସେହି ମାର୍ଗରେ ଆସି ପହଞ୍ଚିଲେ । ସେ ଥିଲେ ଜ୍ଞାନବୃଦ୍ଧ, ତାଙ୍କ ମସ୍ତକରେ ଥିବା ଜଟାବଦ୍ଧ କେଶରାଶିର ଅଗ୍ରଭାଗ ଶ୍ୱେତ ଦେଖାଯାଉଥିଲା, ସେ ମୃଗଚର୍ମ ପରିଧାନ କରିଥିଲେ । ତାଙ୍କ ସହିତ ଥିଲେ ତାଙ୍କର ଶିଷ୍ୟମଣ୍ଡଳୀ । କ୍ରମସର ତୀର୍ଥ ନିକଟସ୍ଥ ପର୍ବତ ଶିଖରରୁ ଅବତରଣ କରୁଥିବା ଭଗବାନ ଶଙ୍କରଙ୍କ ପରି ସେ ଆସି ସେଠାରେ ଉପଗତ ହେଲେ ।

ରାଜାଙ୍କ ଦର୍ଶନରେ ତପସ୍ୱୀଙ୍କ ମନରେ ଅଶେଷ ପ୍ରୀତି ଜାତ ହେଲା । ନିକଟକୁ ଆସି ସେ ରାଜାଙ୍କ ପରିଚୟ ଓ ତପସ୍ୟାର କାରଣ ଜିଜ୍ଞାସା କଲେ । ଭୂନନ୍ଦନଙ୍କ ମନୋଭାବ ଜ୍ଞାତ ହୋଇ ସେ କିଛିକ୍ଷଣ ଧ୍ୟାନ ପୂର୍ବକ କହିଲେ, 'ରାଜନ୍, ତୁମେ ନିଜର ପ୍ରଣୟିନୀ ବୋଲି ମନେକରୁଥିବା ସେହି ଦୈତ୍ୟକନ୍ୟା ପାତାଳପୁର ନିବାସିନୀ । କିନ୍ତୁ ତୁମେ ଧୈର୍ଯ୍ୟ ଧାରଣ କର । ମୁଁ ତୁମକୁ ସେଠାକୁ ନେଇଯିବି ।'

'ଦାକ୍ଷିଣାତ୍ୟରେ ଯଜ୍ଞ ନାମରେ ଜଣେ ଯାଜ୍ଞିକ ବ୍ରାହ୍ମଣ ରହନ୍ତି । ମୁଁ ତାଙ୍କର ପୁତ୍ର । ମୋର ନାମ ଭୂତିବସୁ । ମୁଁ ଯୋଗୀମାନଙ୍କର ଗୁରୁ । ପିତା ମୋତେ ବହୁବିଧ ଶାସ୍ତ୍ର ଶିକ୍ଷା ଦେଇଛନ୍ତି । ମୁଁ ମଧ୍ୟ ଭଗବାନ୍ ହଟକେଶାନଙ୍କୁ ପ୍ରସନ୍ନ କରିବାନିମିତ୍ତ ପାତାଳଶାସ୍ତ୍ରରୁ ବହୁ ମନ୍ତ୍ରତନ୍ତ୍ର ବିଧି ଶିକ୍ଷା କରିଛି । ଶ୍ରୀପର୍ବତ ଉପରେ ଦେବଦେବ ମହାଦେବଙ୍କ ଆଶୀର୍ବାଦ ଲାଭପାଇଁ ମୁଁ କଠୋର ତପସ୍ୟାରେ ନିମଗ୍ନ ଥିଲି । ଭଗବାନ ସନ୍ତୁଷ୍ଟ ହୋଇ ମୋ ସମ୍ମୁଖରେ ଆବିର୍ଭୂତ ହେଲେ । ମୋତେ ଆଦେଶ ଦେଇ କହିଲେ, 'ତୁମେ ରସାତଳକୁ ଯାଇ ସେଠାରେ ଦୈତ୍ୟ ରମଣୀମାନଙ୍କ ସହିତ ମିଳନ ସୁଖ ଭୋଗ କର । ତା'ପରେ ଯାଇ ମୋତେ ପ୍ରାପ୍ତ ହେବ । ସେମାନଙ୍କ ସହିତ ମିଳିତ ହେବାର ଉପାୟ ମଧ୍ୟ ମୁଁ ବତାଇ ଦେଉଛି । ପୃଥିବୀ ପୃଷ୍ଠରୁ ପାତାଳକୁ ଯିବାପାଇଁ ବହୁତ ଗୁଡ଼ିଏ ବିବର ଅଛି । କିନ୍ତୁ କାଶ୍ମୀରରେ ଥିବା ବିବରଟି ବିଶାଳ ଓ ପ୍ରଶସ୍ତ । ତାହା ଦାନବ ଶିଳ୍ପୀ ମୟଙ୍କ ଦ୍ୱାରା ନିର୍ମିତ । ବାଣଙ୍କ କନ୍ୟା ଉଷା ଏହି ମାର୍ଗରେ ପ୍ରେମିକ ଅନିରୁଦ୍ଧଙ୍କୁ ଦାନବମାନଙ୍କ ଗୁପ୍ତ ଉପବନ ମଧ୍ୟକୁ ନେଇଯାଇ ବିଳାସକେଳି କରୁଥିଲା । ପ୍ରଦ୍ୟୁମ୍ନ ନିଜ ପୁତ୍ରର ସୁରକ୍ଷାପାଇଁ ପର୍ବତ ଶିଖର ଉପରେ ଏକ ଦ୍ୱାର ପ୍ରସ୍ତୁତ କରିଥିଲେ । ସେ ବିବିଧ ସ୍ତୁତି ସ୍ତୋତ୍ର ଦ୍ୱାରା ଶାରିକା ନାମରେ ନାମିତ ଭଗବତୀ ଦୁର୍ଗାଙ୍କର ଆରାଧନା କରି ତାଙ୍କୁ ଦ୍ୱାରଦେଶରେ ସ୍ଥାପନା କରିଥିଲେ । ଏଥିପାଇଁ ଏହି ସ୍ଥାନକୁ ଆଜି ସୁଦ୍ଧା ପ୍ରଦ୍ୟୁମ୍ନଶିଖର ଏବଂ ଶାରିକାକୂଟ

ବୋଲି କୁହାଯାଏ । ତୁମେ ନିଜର ଅନୁଚରମାନଙ୍କ ସହିତ ସେହି ବିବର ଦେଇ ପାତାଳପୁରକୁ ଯାଅ । ମୋର ଆଶୀର୍ବାଦରୁ ସେଠାରେ ତୁମର ମନୋରଥ ସିଦ୍ଧ ହେବ ।'

ଏହା କହି ଭଗବାନ୍ ଶଙ୍କର ଅନ୍ତର୍ହିତ ହୁଅନ୍ତେ ମୋର ଜ୍ଞାନୋଦୟ ହେଲା । ତାଙ୍କ ଆଶୀର୍ବାଦରୁ ମୁଁ ଆସି କାଶ୍ମୀରରେ ପହଞ୍ଚିଛି । ତେଣୁ ରାଜନ୍, ଆସନ୍ତୁ ଆମେ ଶାରିକାକୂଟ ଯିବା । ସେଠାରୁ ମୁଁ ଆପଣଙ୍କୁ ପାତାଳବାସିନୀ ଆପଣଙ୍କ ପ୍ରଣୟିନୀ ନିକଟକୁ ନେଇଯିବି ।'

ଯୋଗୀରାଜ ଭୂତିବସୁଙ୍କଠାରୁ ରାଜା ଭୂନନ୍ଦନ ଏହା ଶୁଣି ତାଙ୍କ ପ୍ରସ୍ତାବ ସ୍ୱୀକାର କଲେ ଏବଂ ସେମାନେ ଯାଇ ଶାରିକାକୂଟରେ ପହଞ୍ଚିଲେ । ସେଠାରେ ପବିତ୍ର ବିତସ୍ତା ନଦୀରେ ସ୍ନାନ କରି ସିଦ୍ଧ ବିନାୟକଙ୍କ ଆରାଧନା ପୂର୍ବକ ଦିଗ୍‌ବନ୍ଧନ, ପ୍ରାଣାୟମ ପୁରଃସର ଦେବୀ ଶାରିକାଙ୍କ ପୂଜା କଲେ । ଭଗବାନ ଶଙ୍କରଙ୍କଠାରୁ ବରଲାଭ କରିଥିବା ତପସ୍ୱୀ ପ୍ରବର ଚତୁର୍ଦ୍ଦିଗରେ ସର୍ଷପ ନିକ୍ଷେପଦ୍ୱାରା ପୂର୍ବୋକ୍ତ ବିବରର ସନ୍ଧାନ କଲେ । ଶିଷ୍ୟପରିବୃତ ଭୂତିବସୁଙ୍କ ସହିତ ରାଜା ବିବର ମଧ୍ୟରେ ପ୍ରବେଶ କରି ପାଞ୍ଚଦିନ ଓ ପାଞ୍ଚରାତି ତା' ମଧ୍ୟରେ ଚାଲିବାକୁ ଲାଗିଲେ । ଷଷ୍ଠ ଦିନ ସେମାନେ ପାତାଳବାହିନୀ ଗଙ୍ଗାନଦୀ ପାର ହୋଇ ରୌପ୍ୟମୟ ଭୂମିଖଣ୍ଡ ଉପରେ ଏକ ଦିବ୍ୟ ଉପବନ ଦେଖିବାକୁ ପାଇଲେ । ସ୍ଥାନଟି ପ୍ରସ୍ଫୁଟିତ ସୁବର୍ଣ୍ଣ କମଳଦ୍ୱାରା ସୁବାସିତ ଥିଲା; ପ୍ରବାଳ, କର୍ପୂର, ଚନ୍ଦନ, ଅଗୁରୁ ବୃକ୍ଷଦ୍ୱାରା ପରିପୂର୍ଣ୍ଣ ଥିଲା । ତା' ମଧ୍ୟରେ ରତ୍ନନିର୍ମିତ ସୋପାନଶ୍ରେଣୀ, ସୁବର୍ଣ୍ଣନିର୍ମିତ ଦ୍ୱାର ଏବଂ ମାଣିକ୍ୟସ୍ତମ୍ଭ ବିଶିଷ୍ଟ ଏକ ବିଶାଳ ଶିବମନ୍ଦିର ଥିଲା । ବିଭିନ୍ନ ମଣିମୁକ୍ତାଦ୍ୱାରା ମନ୍ଦିରଟି ଆଲୋକିତ ହୋଇଉଠୁଥିଲା । ଚନ୍ଦ୍ରକାନ୍ତମଣିମୟ ଶିଳାସମୂହରୁ ନିର୍ଝରିତ ଜଳରାଶିଦ୍ୱାରା ତାହା ନିର୍ମଳ ଓ ପରିଛନ୍ନ ଥିଲା । ପ୍ରସନ୍ନଚିତ୍ତରେ ଆଗନ୍ତୁକମାନେ ଏହି ସମୁନ୍ନତ ମନ୍ଦିରଟିକୁ ଚାହିଁ ରହିଥାନ୍ତି ।

ତପସ୍ୱୀ ଅନୁଗାମୀମାନଙ୍କର ବିସ୍ମୟ ଭଙ୍ଗକରି କହିଲେ, 'ଏ ହେଉଛନ୍ତି ତ୍ରିଭୂବନ ପ୍ରସିଦ୍ଧ ସେହି ପାତଳବାସୀ ହଟକେଶାନ । ତୁମେ ସବୁ ତାଙ୍କର ଉପାସନା କର ।' ତପସ୍ୱୀଙ୍କ ନିର୍ଦ୍ଦେଶକ୍ରମେ ସମସ୍ତେ ପାତାଳଗଙ୍ଗାରେ ସ୍ନାନ ସମାପନ ପୂର୍ବକ ପାତାଳଜାତ ପୁଷ୍ପସମୂହରେ ଭଗବାନଙ୍କର ପୂଜାକଲେ ।

ପୂଜା ଶେଷରେ ବିଶ୍ରାମ ନେବା ନିମିତ୍ତ ସେମାନେ କିଛି ସମୟ ସେଠାରେ ବିତାଇଦେଇ ପୁଣି ଚାଲିବା ଆରମ୍ଭ କଲେ । କିଛିଦୂର ଯିବାପରେ ଗୋଟିଏ ବିଶାଳ ଓ ଦିବ୍ୟ ଜାମୁକୋଳି ବୃକ୍ଷ ସେମାନଙ୍କ ଦୃଷ୍ଟିରେ ପଡ଼ିଲା । ପକ୍ୱ ଫଳଭାରରେ ବୃକ୍ଷର

ଶାଖାଗୁଡ଼ିକ ଭୂମି ପର୍ଯ୍ୟନ୍ତ ଲମ୍ବି ଆସିଥାନ୍ତି । ତପସ୍ୱୀ ପ୍ରଲୁବ୍ଧ ହୋଇ ସେ ଫଳଗୁଡ଼ିକୁ ନଖାଇବା ପାଇଁ ଅନ୍ୟମାନଙ୍କୁ ନିର୍ଦ୍ଦେଶଦେଲେ, କାରଣ ତା'ଦ୍ୱାରା କିଛି ବିଘ୍ନ ଘଟିବାର ସମ୍ଭାବନା ଥିଲା ।

ତପସ୍ୱୀଙ୍କ ବାରଣସତ୍ତ୍ୱେ କ୍ଷୁଧା ସମ୍ବରଣ କରିନପାରି ତାଙ୍କର ଜଣେ ଶିଷ୍ୟ ସେଥିରୁ ଗୋଟିଏ ପାଚିଲା ଜାମୁକୋଳି ଖାଇନେଲା ଏବଂ ସଙ୍ଗେସଙ୍ଗେ ସେ ସେଠାରେ ଗୋଟିଏ ପ୍ରାଣହୀନ ପ୍ରତିମାରେ ପରିଣତ ହୋଇଗଲା । ତା'ର ଏପ୍ରକାର ପରିଣତି ଦେଖି ଅନ୍ୟ ଶିଷ୍ୟମାନେ ଭୟଭୀତ ହୋଇପଡ଼ିଲେ । ସେମାନଙ୍କ ମନରୁ ଫଳଖାଇବାର ମୋହ ତୁଟିଗଲା । ତପସ୍ୱୀ ରାଜା ଭୂନନ୍ଦନ ଏବଂ ଅନ୍ୟ ଶିଷ୍ୟମାନଙ୍କ ସହିତ ଆଗକୁ ଅଗ୍ରସର ହେଲେ ।

ଗୋଟିଏ କ୍ରୋଶ ଅତିକ୍ରମ କଲାପରେ ସେମାନେ ଯାଇ ଏକ ସୁବର୍ଣ୍ଣନିର୍ମିତ ପ୍ରାଚୀର ନିକଟରେ ପହଞ୍ଚିଲେ । ତା' ମଧ୍ୟରେ ପ୍ରବେଶ କରିବାପାଇଁ ଗୋଟିଏ ରତ୍ନଖଚିତ ଦ୍ୱାର ଥିଲା । ଦ୍ୱାରର ଉଭୟ ପାର୍ଶ୍ୱରେ ଦୁଇଟି ଲୌହନିର୍ମିତ ମେଷ ଦ୍ୱାର ରକ୍ଷା କରୁଥିଲେ । ଭିତରେ ପ୍ରବେଶ କରିବାପାଇଁ ପ୍ରୟାସ କରୁଥିବା ବ୍ୟକ୍ତିମାନଙ୍କୁ ନିଜର ତୀକ୍ଷ୍ଣ ଶୃଙ୍ଗଦ୍ୱାରା ଆଘାତ କରିବାପାଇଁ ସେମାନେ ସର୍ବଦା ଉଦ୍ୟତ ଥିଲେ । ତପସ୍ୱୀ ସେମାନଙ୍କ ମସ୍ତକରେ ନିଜର ଅଭିମନ୍ତ୍ରିତ ଦଣ୍ଡ ପ୍ରହାର କରିବାମାତ୍ରେ ଉଭୟେ ବଜ୍ରାହତ ପରି ସେଠାରୁ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ଦ୍ୱାର ଉନ୍ମୁକ୍ତ ହେବାରୁ ଯୋଗୀରାଜ ଭୂତିବସୁ ରାଜା ଭୂନନ୍ଦନ ଓ ଶିଷ୍ୟମାନଙ୍କ ସହିତ ଭିତରେ ପ୍ରବେଶ କରି ଏକ ରତ୍ନନିର୍ମିତ ଦିବ୍ୟ ଭବନ ଦେଖିବାକୁ ପାଇଲେ । ତା'ର ପ୍ରତ୍ୟେକ ଦ୍ୱାରରେ ଲୌହମୂଷଳଧାରୀ ଦ୍ୱାରପାଳମାନେ ପହରା ଦେଉଥାନ୍ତି । ନିଜନିଜ ଅଧରକୁ ଦାନ୍ତଦ୍ୱାରା ଚାପିଧରିଥିବାଯୋଗୁଁ ସେମାନଙ୍କ ଆକୃତି ବଡ଼ ଭୟଙ୍କର ଦେଖାଯାଉଥାଏ । ଆଗନ୍ତୁକମାନେ ଭବନ ସମ୍ମୁଖରେ ଥିବା ଗୋଟିଏ ବୃକ୍ଷର ପାଦଦେଶରେ ଯାଇ ବିଶ୍ରାମ ନେଲେ । ତପସ୍ୱୀ ଦୁଷ୍ଟଘ୍ନୀ ମନ୍ତ୍ର ଜପ କରିବା ମାତ୍ରେ ସମସ୍ତଦ୍ୱାରରୁ ଦ୍ୱାରପାଳମାନେ କେଉଁଆଡ଼େ ଚାଲିଯାଇ ଅଦୃଶ୍ୟ ହେଲେ । କ୍ଷଣକ ମଧ୍ୟରେ ସେହି ଦ୍ୱାରଗୁଡ଼ିକ ମଧ୍ୟଦେଇ ଦିବ୍ୟ ଅଳଙ୍କାର ଓ ବସ୍ତ୍ରଧାରଣ କରିଥିବା ବାରଙ୍ଗନାମାନେ ଆସୁଥିବା ଦେଖାଗଲା । ସେମାନେ ସମସ୍ତେ ଥିଲେ ଦୈତ୍ୟକନ୍ୟାମାନଙ୍କର ପରିଚାରିକା । ସେମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ଉପହାରପୂର୍ଣ୍ଣ ପାତ୍ର ଧାରଣ କରିଥାଆନ୍ତି । ଜଣେଜଣେ ସେବିକା ପୃଥକ୍ ପୃଥକ୍ ଭାବେ

ଆଗନ୍ତୁକମାନଙ୍କ ନିକଟକୁ ଆସି ନିଜନିଜର ସ୍ୱାମିନୀମାନଙ୍କର ନିମନ୍ତ୍ରଣ ଜଣାଇଲେ ଏବଂ ପ୍ରାସାଦ ମଧ୍ୟରେ ପ୍ରବେଶ କରିବାପାଇଁ ପ୍ରାର୍ଥନା କଲେ ।

ପ୍ରାସାଦ ମଧ୍ୟରେ ପ୍ରବେଶ କରିବା ପୂର୍ବରୁ ତପସ୍ୱୀ ଅନ୍ୟମାନଙ୍କୁ ସତର୍କ କରାଇଦେଲେ ଯେ ସେମାନେ ଯେପରି ଦୈତ୍ୟକନ୍ୟାମାନଙ୍କର ଆଦେଶ ଓ ଅନୁରୋଧକୁ ପ୍ରତ୍ୟାଖ୍ୟାନ ନକରନ୍ତି । ସେ ନିଜେ କେତେଜଣ ବାରାଙ୍ଗନାଙ୍କ ସହିତ ଏକ ଭବ୍ୟ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲେ । ସେଠାରେ ଜଣେ ବିଶିଷ୍ଟ ଦୈତ୍ୟକନ୍ୟାଙ୍କ ଅନୁରୋଧରେ ସେ ତାଙ୍କ ସହିତ ବିଳାସକ୍ରୀଡ଼ାରେ ମାତିଗଲେ । ଅନ୍ୟ ବାରାଙ୍ଗନାମାନଙ୍କ ସହିତ ଯାଇ ତାଙ୍କ ଶିଷ୍ୟମାନେ ମଧ୍ୟ ଅନୁରୂପ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପ୍ରକୋଷ୍ଠରେ ଜଣେ ଜଣେ ଦୈତ୍ୟକନ୍ୟା ସହିତ ବିଳାସ କ୍ରୀଡ଼ାରେ ନିମଜ୍ଜିତ ହେଲେ ।

ବିନମ୍ର ଭାବେ ଅନୁରୋଧ ଜଣାଉଥିବା ଜଣେ ବାରାଙ୍ଗନା ରାଜା ଭୂନନ୍ଦନଙ୍କୁ ମଧ୍ୟ ଏକ ଦିବ୍ୟ ପ୍ରକୋଷ୍ଠରେ ପ୍ରବେଶ କରାଇଲା । ପ୍ରକୋଷ୍ଠଟିର ବାହ୍ୟ ପ୍ରାକାରଗୁଡ଼ିକ ମଣିମାଣିକ୍ୟରେ ଶୋଭାପାଉଥିଲା । ଭିତରେ ଥିବା ରତ୍ନନିର୍ମିତ ପ୍ରାକାରଗୁଡ଼ିକରେ ଦୈତ୍ୟକନ୍ୟାମାନଙ୍କର ପ୍ରତିବିମ୍ୱ ଜୀବନ୍ତ ଭିତ୍ତିଚିତ୍ରର ଭ୍ରମ ସୃଷ୍ଟି କରୁଥିଲା । ପ୍ରକୋଷ୍ଠଟିର ଭୂମି ଥିଲା ମହାନୀଳମଣି ଆଚ୍ଛାଦିତ । ମନେହେଉଥିଲା ତାହା ନିର୍ମଳ ଆକାଶ ସହିତ ପ୍ରତିସ୍ପର୍ଦ୍ଧା କରୁଥିଲା । ପ୍ରକୋଷ୍ଠଟି ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରଭାବନିର୍ମିତ, କାଦମ୍ବରୀମତ୍ତ ବଳରାମ ଏବଂ କାମଦେବଙ୍କ ଦ୍ୱାରା ସୁଶୋଭିତ ବୃଷ୍ଣିମାନଙ୍କର ପ୍ରାସାଦ ବୋଲି ମନେହେଉଥିଲା । ସେଠାରେ ରହୁଥିବା ସ୍ତ୍ରୀମାନେ ସୌକୁମାର୍ଯ୍ୟରେ ନବୋଦିତ ସୂର୍ଯ୍ୟର ତେଜ ସହ୍ୟ କରିପାରୁନଥିବା ପୁଷ୍ପ ଅପେକ୍ଷା ଆହୁରି ସୁକୁମାରୀ ଥିଲେ । ଦିବ୍ୟ ସଙ୍ଗୀତ ସେଠାରେ ପ୍ରତିଧ୍ୱନିତ ହେଉଥିଲା । ସେହି ପ୍ରକୋଷ୍ଠ ମଧ୍ୟରେ ରାଜା ଭୂନନ୍ଦନ ସ୍ୱପ୍ନଦୃଷ୍ଟ ସେହି ସୁନ୍ଦରୀ ଅସୁରକନ୍ୟାକୁ ଦେଖିବାକୁ ପାଇଲେ । ସୂର୍ଯ୍ୟକିରଣରୁ ବଞ୍ଚିତ ପାତାଳପୁରକୁ ଦୈତ୍ୟକନ୍ୟାଙ୍କର ଜ୍ୟୋତି ଆଲୋକିତ କରୁଥିଲା । ମନେହେଉଥିଲା ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ନିର୍ମିତ ଜ୍ୟୋତିର୍ମୟ ରତ୍ନଗୁଡ଼ିକ ଏହାର ଅନୁକରଣ ମାତ୍ର ।

ଏଠାରେ ଦୈତ୍ୟକନ୍ୟାଙ୍କୁ ଦେଖି ରାଜାଙ୍କ ଚକ୍ଷୁ ଆନନ୍ଦାଶ୍ରୁରେ ପରିପୂର୍ଣ୍ଣ ହୋଇଗଲା । କୁମୁଦିନୀ ନାମକ ସେହି ଦୈତ୍ୟକନ୍ୟା ରାଜାଙ୍କୁ ଦେଖି ଉତ୍ଫୁଲ୍ଲିତା ହୋଇଉଠିଲେ । ସଖୀମାନେ କନ୍ୟାର ଗୁଣଗାନରେ ପ୍ରକୋଷ୍ଠଟିକୁ ମୁଖରିତ କଲେ । ଦୈତ୍ୟକନ୍ୟାଟି ଉଠି 'ମୁଁ ଆପଣଙ୍କୁ ବହୁତ କଷ୍ଟ ଦେଲି' ବୋଲି କହି ଆଦର ପୂର୍ବକ ଆସନରେ ନେଇ ବସାଇଲେ । କିଛି ସମୟ ବିଶ୍ରାମ ପରେ ରାଜା ସ୍ନାନାଦି ନିତ୍ୟକର୍ମ

ଶେଷକରି ବସ୍ତ୍ର ଆଭୂଷଣ ଇତ୍ୟାଦି ପରିଧାନ କଲେ ! ଦୈତ୍ୟକନ୍ୟା ଆଦରପୂର୍ବକ ପାନୀୟ ସେବା ନିମିତ୍ତ ତାଙ୍କୁ ନେଇ ନିଜର ବିଳାସ ଉପବନ ମଧ୍ୟରେ ପ୍ରବେଶ କଲେ । ସେମାନେ ଉଦ୍ୟାନସ୍ଥ ଏକ ସରୋବର ତଟରେ ଯାଇ ଉପବେଶନ କରନ୍ତେ ରାଜା ଲକ୍ଷ୍ୟ କଲେ ଯେ ସରୋବରର ଚତୁର୍ଦ୍ଦିଗରେ ଥିବା ବୃକ୍ଷସମୂହର ଶାଖାରେ କେତେଗୁଡ଼ିଏ ଶବ ଝୁଲି ରହିଛନ୍ତି । ସେଥିରୁ ଝରୁଥିବା ରକ୍ତ ଓ ଚର୍ବିଦ୍ୱାରା ସରୋବରଟି ପରିପୂର୍ଣ୍ଣ ହୋଇଉଠୁଛି । ଦୈତ୍ୟକନ୍ୟା ସରୋବରର ସେହି ମଦିରାରୁ କିଛି ପାନୀୟ ଆଣି ରାଜାଙ୍କୁ ପ୍ରଦାନ କଲେ, କିନ୍ତୁ ଏହି ଘୃଣିତ ପାନୀୟକୁ ସ୍ୱୀକାର କରିବା ଭୂନନ୍ଦନଙ୍କ ପକ୍ଷେ ସମ୍ଭବ ନଥିଲା । ରାଜାଙ୍କର ନାସିକା କୁଞ୍ଚନ ଦେଖି ଦୈତ୍ୟକନ୍ୟା କହିଲା, 'ଆମର ଏହି ପାନୀୟକୁ ଅସ୍ୱୀକାର କଲେ ଆପଣଙ୍କର ମଙ୍ଗଳ ହେବନାହିଁ ।' ରାଜା ଉତ୍ତରରେ କହିଲେ 'ଯାହା ହେଲେ ବି ଏହି ଘୃଣ୍ୟ ପାନୀୟକୁ ପିଇବା ମୋ ପକ୍ଷରେ ସମ୍ଭବ ନୁହେଁ ।' ଏଥିରେ ରୁଷ୍ଟ ହୋଇ ଦୈତ୍ୟକନ୍ୟା ସେହି ମଦିରା ପାତ୍ରଟିକୁ ରାଜାଙ୍କ ମସ୍ତକ ଉପରେ ଢାଳିଦେଇ ଅନ୍ୟତ୍ର ଚାଲିଗଲେ । ଘୃଣାରେ ରାଜାଙ୍କର ମୁଖ ଓ ନେତ୍ର ବନ୍ଦ ହୋଇଗଲା । ଏ ଅବସ୍ଥାରେ ତାଙ୍କୁ ଉଠାଇ ଦୈତ୍ୟକନ୍ୟାଙ୍କର ସଖୀମାନେ ଅନ୍ୟ ଏକ ସରୋବର ମଧ୍ୟରେ ନିକ୍ଷେପ ଦେଲେ ।

ରାଜା ଜଳମଧ୍ୟରୁ ଉଠି ଦେଖିଲେ ଯେ ସେ ତାଙ୍କର ପୂର୍ବ ତପୋଭୂମି କ୍ରମସର ତୀର୍ଥର ସେହି ତପୋବନ ମଧ୍ୟରେ ଆସି ପହଞ୍ଚି ଯାଇଛନ୍ତି । ନିକଟସ୍ଥ ପର୍ବତଗୁଡ଼ିକ ଉପରେ ଶୋଭାପାଉଥିବା ତୁଷାର ଖଣ୍ଡଗୁଡ଼ିକ ତାଙ୍କୁ ଦେଖି ହସୁଥିବା ପରି ମନେହେଲା । ବିସ୍ମିତ, ବିଷଣ୍ଣ, ଉଦ୍‌ଭ୍ରାନ୍ତ ଏବଂ ପ୍ରବଞ୍ଚିତ ରାଜା ଚିନ୍ତାକଲେ ଯେ କାହିଁ ସେହି ଦୈତ୍ୟକନ୍ୟାର ପ୍ରମୋଦ ଉପବନ ଏବଂ କାହିଁ କ୍ରମସର ତୀର୍ଥର ଏହି ତପୋବନ ! ଇଏତ ବଡ଼ ଆଶ୍ଚର୍ଯ୍ୟର କଥା ! ଏହା ଇନ୍ଦ୍ରଜାଲ ନା ମୋର ବୁଦ୍ଧିଭ୍ରମ । ବୋଧହୁଏ ତପସ୍ୱୀଙ୍କ ସତର୍କବାଣୀ ସତ୍ତ୍ୱେ ତାଙ୍କ କଥା ନମାନିବାର ଏହା ହେଉଛି ପରିଣତି । ସେହି ପାନୀୟ ବୋଧହୁଏ ଏତେ ଘୃଣ୍ୟ ନଥିଲା । ଦୈତ୍ୟକନ୍ୟା ବୋଧହୁଏ ମୋର ପରୀକ୍ଷା ନେଉଥିଲେ । ମୋର ମସ୍ତକ ଉପରେ ଢଳାଯାଇଥିବା ସେହି ମଦିରାର ସୁଗନ୍ଧ ଏବେ ମଧ୍ୟ ମୁଁ ବାରିପାରୁଛି ; ବିଧାତା ବାମହେଲେ ଭାଗ୍ୟହୀନ ବ୍ୟକ୍ତିମାନେ ବହୁକଷ୍ଟ ସ୍ୱୀକାର କରି ମଧ୍ୟ କୌଣସି ସୁଫଳ ପାଇପାରି ନଥାନ୍ତି ।'

**ତତ୍‌ସର୍ବଥା ହ୍ୟଭବ୍ୟାନାଂ କୃତଃ କ୍ଲେଶୋ ମହାନପି,**
**ନ ଫଳାୟ ବିଧିସ୍ତେଷୁ ତଥା ବାମୋ ହି ବର୍ତ୍ତତେ ।**

ରାଜା ଭୂନନ୍ଦନ ଏହିପରି ଚିନ୍ତା କରୁଥିବା ବେଳେ ଅସୁରକନ୍ୟା ଦ୍ୱାରା ତାଙ୍କ ମସ୍ତକରେ ଢଳାଯାଇଥିବା ମଦିରାର ସୁଗନ୍ଧରେ ଆକୃଷ୍ଟ ହୋଇ ଭ୍ରମରମାନେ ଆସି ତାଙ୍କୁ ଘେରିଗଲେ । ବେତାଳଙ୍କୁ ଜାଗ୍ରତକଲା ପରେ ଦୁର୍ବଳମନା ବ୍ୟକ୍ତିମାନେ ଯେପରି କଷ୍ଟ ଅନୁଭବ କରିଥାନ୍ତି ତାଙ୍କୁ ମଧ୍ୟ ସେହିପରି ଇଷ୍ଟଫଳ ପରିବର୍ତ୍ତେ ଦୁଃଖ ହିଁ ଭୋଗ କରିବାକୁ ପଡୁଛି ବୋଲି ରାଜା ଚିନ୍ତା କରୁଥାନ୍ତି । ଭ୍ରମରଗୁଡ଼ିକର ଦଂଶନ ତାଙ୍କୁ ଅତ୍ୟନ୍ତ କଷ୍ଟ ଦେଉଥାଏ । ସେମାନଙ୍କଠାରୁ ରକ୍ଷାପାଇବା ପାଇଁ ସେ ଶରୀର ତ୍ୟାଗ କରିବା ନିମିତ୍ତ ନିଶ୍ଚୟ କଲେ ।

ଏ ସମୟରେ ସଂଯୋଗ କ୍ରମେ ଜଣେ ମୁନିପୁତ୍ର ସେହି ମାର୍ଗରେ ଯାଉଥିବା ବେଳେ ରାଜାଙ୍କର ଏହି ଦୁରବସ୍ଥା ଦେଖି ତାଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ଦୟାର୍ଦ୍ର ଚିତ୍ତରେ ସେ ଭ୍ରମରଗୁଡ଼ିକୁ ଘଉଡ଼ାଇଦେଇ ରାଜାଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣପୂର୍ବକ କହିଲେ, 'ରାଜନ୍, ଶରୀର ଥିବା ପର୍ଯ୍ୟନ୍ତ ଦୁଃଖର ଶେଷ କାହିଁ ? ବୁଦ୍ଧିମାନ ବ୍ୟକ୍ତିମାନେ ଏଣୁ ଅବିଚଳିତ ଚିତ୍ତରେ ପୁରୁଷାର୍ଥ ଲାଭ କରିବାପାଇଁ ପ୍ରୟାସ କରିଥାନ୍ତି । ଯେପର୍ଯ୍ୟନ୍ତ ମନୁଷ୍ୟ ମନରୁ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ଭେଦଭାବ ଦୂରୀଭୂତ ହୋଇନଥାଏ, ସେପର୍ଯ୍ୟନ୍ତ ତା'ର ସମସ୍ତ ଉପାସନାର ଫଳ କ୍ଷଣସ୍ଥାୟୀ ମାତ୍ର ହୋଇଥାଏ । ଏଣୁ ତୁମେ ଏ ତିନିଙ୍କୁ ଏକ ବୋଲି ଭାବି ଧୈର୍ଯ୍ୟପୂର୍ବକ ଏଠାରେ ବାରବର୍ଷ ତପଶ୍ଚରଣ କର । ତା'ହେଲେ ତୁମେ ତୁମର ସେହି ପ୍ରଣୟିନୀକୁ ପାଇପାରିବ ଏବଂ ଶେଷରେ ତୁମକୁ ଅକ୍ଷୟ ସିଦ୍ଧି ମଧ୍ୟ ମିଳିବ । ତୁମ ଶରୀରରୁ ନିର୍ଗତ ହେଉଥିବା ଦିବ୍ୟ ସୁଗନ୍ଧିରୁ ଜଣାଯାଉଛି ଯେ ତୁମର ଶରୀର ସିଦ୍ଧ ହୋଇସାରିଛି । ମୁଁ ତୁମକୁ ଗୋଟିଏ ମନ୍ତ୍ର ଏବଂ ମୋର ଏହି କୃଷ୍ଣାଜିନ ପ୍ରଦାନ କରୁଛି । ଏହାଦ୍ୱାରା ଶରୀରକୁ ଆବୃତ କଲେ ଭ୍ରମରମାନେ ଆଉ ତୁମକୁ ବିବ୍ରତ କରିବେ ନାହିଁ ।' ମୁନି ତାଙ୍କୁ ମନ୍ତ୍ର ଓ ମୃଗଚର୍ମ ପ୍ରଦାନ କରି ସେଠାରୁ ଚାଲିଗଲେ ।

ଋଷିପୁତ୍ରଙ୍କ ସାନ୍ତ୍ୱନା ବାଣୀ ତାଙ୍କୁ ଶରୀର ତ୍ୟାଗ ସଂକଳ୍ପରୁ ନିବୃତ୍ତ କଲା । ରାଜା ସେଠାରେ ରହି ବାରବର୍ଷ ପର୍ଯ୍ୟନ୍ତ ତପଶ୍ଚରଣ ପୂର୍ବକ ଭଗବାନ ଶଙ୍କରଙ୍କ ଆରାଧନା କଲେ । ଦ୍ୱାଦଶ ବର୍ଷ ଶେଷରେ ସେ ଦେଖିଲେ ଯେ ଦୈତ୍ୟକନ୍ୟା କୁମୁଦିନୀ ସ୍ୱୟଂ ଆସି ତାଙ୍କ ନିକଟରେ ପହଞ୍ଚିଛନ୍ତି । ଭୂନନ୍ଦନ ତାଙ୍କ ସହିତ ପାତାଳପୁରକୁ ଯାଇ ବହୁଦିନ ପର୍ଯ୍ୟନ୍ତ ସୁଖସମ୍ଭୋଗରେ କାଳାତିପାତ କଲେ । ଶେଷରେ ଉଭୟଙ୍କର ସିଦ୍ଧିଲାଭ ହେଲା ।

ଏହିପରି ଭାଗ୍ୟଶାଳୀ ପୁରୁଷମାନେ ନିରୁଦ୍‌ବେଗ ରହି ଧୈର୍ଯ୍ୟ ଧାରଣ କରିବାଦ୍ୱାରା ନିଜ ସ୍ଥିତିରୁ ଦୂରେଇ ଯାଇଥିଲେ ସୁଦ୍ଧା ପୁଣି ତାକୁ ପାଇପାରିଥାନ୍ତି । ତେଣୁ, ମିତ୍ର, ତୁମ ଶରୀରରେ ମୁଁ ଉତ୍ତମ ଲକ୍ଷଣ ସବୁ ଦେଖିପାରୁଛି । ନିଶ୍ଚିତ ଭାବରେ ତୁମ ଜୀବନ ମଙ୍ଗଳମୟ ହେବ । ଏଥିପାଇଁ, ନିରାହାରରେ ଶରୀରକୁ କଷ୍ଟଦେବା ତୁମ ପକ୍ଷରେ ଉଚିତ ହେଉନାହିଁ ।'

ଦ୍ୟୂତଶାଳାରେ ମୁଖରକ ଯେତେବେଳେ ମିତ୍ର ଶ୍ରୀଦର୍ଶନଙ୍କୁ ଏହିପରି କହି ଆଶ୍ୱାସିତ କଲେ ସେତେବେଳେ କ୍ଷୁଧା ତୃଷାରେ ପୀଡ଼ିତ ଶ୍ରୀଦର୍ଶନ ତାଙ୍କୁ କହିଲେ, 'ମିତ୍ର, ତୁମେ ଯାହା କହିଛ ତାହା ଯଥାର୍ଥ । କିନ୍ତୁ ମୁଁ କୁଳୀନ ବ୍ରାହ୍ମଣ । ଦ୍ୟୂତକ୍ରୀଡ଼ା ମୋତେ ଆଣି ଏପରି ଦୁଃସ୍ଥିତିରେ ପକାଇଛି । ଲଜ୍ଜାବଶତଃ ନଗର ମଧ୍ୟକୁ ଯିବା ମୋ ପକ୍ଷରେ ସମ୍ଭବ ହେଉନାହିଁ । ଏଣୁ ଆଜି ରାତି ମଧ୍ୟରେ ହିଁ ମୁଁ ଦେଶାନ୍ତର ଚାଲିଯିବି । ତମେ ମୋତେ ମନାକର ନାହିଁ । ତା'ହେଲେ ମୁଁ ଭୋଜନ କରିବି ।'

ମୁଖରକ ମିତ୍ରଙ୍କ ପ୍ରସ୍ତାବରେ ସମ୍ମତି ଜଣାଇ ତାଙ୍କ ନିମିତ୍ତ କିଛି ଖାଦ୍ୟପଦାର୍ଥ ନେଇଆସିଲେ । ଶ୍ରୀଦର୍ଶନ ଭୋଜନ କରିବାପରେ ସେଠାରୁ ବିଦେଶ ଯାତ୍ରାରେ ବାହାରିଲେ । ମିତ୍ର ସ୍ନେହରୁ ମୁଖରକ ମଧ୍ୟ ତାଙ୍କର ସହଯାତ୍ରୀ ହେଲେ ।

ସେମାନେ ରାତ୍ରିର ଅନ୍ଧକାର ମଧ୍ୟରେ ଚାଲିଥିବା ବେଳେ ଆକାଶ ମାର୍ଗରୁ ଦୁଇଜଣ ଯକ୍ଷ ସ୍ୱେଚ୍ଛାପୂର୍ବକ ସେମାନଙ୍କ ସମ୍ମୁଖରେ ଆସି ଅବତରଣ କଲେ । ଏମାନେ ଅନ୍ୟ କେହି ନୁହନ୍ତି, ଶ୍ରୀଦର୍ଶନଙ୍କୁ ଜନ୍ମମାତ୍ରେ ଘେନିଯାଇ ଦେବଦର୍ଶନ ବ୍ରାହ୍ମଣଙ୍କ ଗୃହରେ ସ୍ୱର୍ଣ୍ଣପାତ୍ର ସହିତ ପରିତ୍ୟାଗ କରି ଚାଲିଯାଇଥିବା ପିତାମାତା ଅଟ୍ଟହାସ ଓ ସୌଦାମିନୀ । ସେମାନେ ପୁତ୍ରକୁ ବିପଦରେ ପଡ଼ିଥିବା ଏବଂ ଦ୍ୟୂତକ୍ରୀଡ଼ାରେ ସର୍ବସ୍ୱ ହରାଇ ବିଦେଶ ପଥରେ ଯାତ୍ରା କରୁଥିବା ଦେଖି କହିଲେ, 'ପୁତ୍ର, ଆମେମାନେ ପୂର୍ବେ ରହୁଥିବା ଗୃହ ମଧ୍ୟରେ ବହୁ ରତ୍ନାଳଙ୍କାର ପୋତି ଦେଇଥିଲୁ । ତୁ ସେଠାକୁ ଯାଇ ସେସବୁକୁ ଖୋଳି ବାହାର କର । ସେହି ଧନଦ୍ୱାରା ମାଳବ ଦେଶକୁ ଯାଇ ନିଶ୍ଚିତ ମନରେ ବାସକର । ମାଳବର ରାଜା ଶ୍ରୀସେନ ଅତ୍ୟନ୍ତ ଧନଶାଳୀ । କୌମାର ଅବସ୍ଥାରେ ସେ ଦ୍ୟୂତକ୍ରୀଡ଼ା ପ୍ରତି ଆସକ୍ତ ହୋଇ ବହୁକଷ୍ଟ ପାଇଥିଲେ । ତେଣୁ ରାଜପଦରେ ଅଭିଷିକ୍ତ ହେବା ପରେ ଦ୍ୟୂତ ବିଳାସୀମାନଙ୍କପାଇଁ ସେ ଗୋଟିଏ ବିଶାଳ ମଠ ପ୍ରତିଷ୍ଠା କରିଛନ୍ତି । ସେଠାରେ ରହୁଥିବା ଜୁଆଡ଼ିମାନଙ୍କ ପାଇଁ ସ୍ୱେଚ୍ଛା ଭୋଜନର ବ୍ୟବସ୍ଥା କରାଯାଇଛି । ତୁମେ ସେହି ମଠରେ ଯାଇ ଆଶ୍ରୟ ନିଅ । ଏହାଦ୍ୱାରା ତୁମମାନଙ୍କର ମଙ୍ଗଳ ହେବ ।'

ପିତାମାତାଙ୍କ ଉପଦେଶ କ୍ରମେ ଶ୍ରୀଦର୍ଶନ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିଆସିଲା । ମିତ୍ର ସହିତ ଖନନ କରି ସେମାନେ ପ୍ରଚୁର ଅର୍ଥଲାଭ କଲେ । ଏହାକୁ ବିଧାତାର ଅଶେଷ ଅନୁଗ୍ରହ ମନେକରି ସେମାନେ ମାଳବ ଅଭିମୁଖରେ ଯାତ୍ରାକଲେ । ସମଗ୍ର ରାତ୍ରି ଓ ସମଗ୍ର ଦିବସ ଯାତ୍ରା କରି ସେମାନେ ଦୀର୍ଘ ପଥ ଅତିକ୍ରମ କଲେ । ସଂଧ୍ୟା ସମୟରେ ସେମାନେ ଯେଉଁ ଗ୍ରାମନିକଟରେ ଯାଇ ପହଞ୍ଚିଲେ ତା'ର ନାମ ବହୁଶସ୍ୟ । ଗାଁ ମୁଣ୍ଡରେ ଗୋଟିଏ ନିର୍ମଳ ଜଳପୂର୍ଣ୍ଣ ପୁଷ୍କରିଣୀ ଥିଲା । ଉଭୟେ ପଥକ୍ଳାନ୍ତି ଅପନୋଦନ ନିମିତ୍ତ ତା' କୂଳରେ ଯାଇ ବସିଲେ । ସରୋବର ଜଳରେ ହାତ ମୁହଁ ଧୋଇ ଏବଂ ଜଳପାନ କରି ସେମାନେ ଟିକିଏ ଆଶ୍ୱସ୍ତି ଅନୁଭବ କଲାବେଳେ ଜଣେ ଅପୂର୍ବ ସୁନ୍ଦରୀ କନ୍ୟା ଜଳନେବା ନିମିତ୍ତ ସେଠାରେ ଆସି ପହଞ୍ଚିଲା । ନୀଳକମଳ ତୁଲ୍ୟ ତା'ର ଶରୀରକାନ୍ତି ଦେଖିଲେ ମନେହେଉଥିଲା ଭଗବାନ ଶିବଙ୍କ ଦ୍ୱାରା ଦଗ୍ଧୀଭୂତ କନ୍ଦର୍ପର ଚିତାଗ୍ନିରୁ ନିର୍ଗତ ଧୂମରାଶି ଦ୍ୱାରା ଶ୍ୟାମଳବର୍ଣ୍ଣ ଧାରଣ କରିଥିବା କନ୍ଦର୍ପପତ୍ନୀ ରତି । ଶ୍ରୀଦର୍ଶନ ତାକୁ ପ୍ରେମପୂର୍ଣ୍ଣ ନୟନରେ ଚାହିଁ ରହିଲେ । ମିତ୍ର ମୁଖରକ ମଧ୍ୟ କନ୍ୟାଟିକୁ ଦେଖି ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠିଲେ । ସେ ଉଭୟ ମିତ୍ରଙ୍କ ନିକଟତର ହୋଇ କହିଲା, 'ମହାଭାଗ, ବିପତ୍ତିରେ ପଡ଼ିବାପାଇଁ ଆପଣମାନେ କେଉଁଠାରୁ ଆସି ଏଠାରେ ପହଞ୍ଚିଛନ୍ତି ? ଅଜ୍ଞାନତାବଶତଃ ବୋଧହୁଏ ଜଳନ୍ତା ଅଗ୍ନି ନିକଟକୁ ପତଙ୍ଗମାନେ ଆସବା ପରି ଏଠାକୁ ଆପଣମାନେ ଆସିଯାଇଛନ୍ତି ।'

ଏହାଶୁଣି ଧୈର୍ଯ୍ୟଶୀଳ ମୁଖରକ ବିବ୍ରତ ହେଲେ ନାହିଁ । ସେ କନ୍ୟାଟିର ପରିଚୟ ଓ ତା'ର ବକ୍ତବ୍ୟର ଅଭିପ୍ରାୟ ଜିଜ୍ଞାସା କଲେ । ଉତ୍ତରରେ ସେହି କନ୍ୟା କହିବା ଆରମ୍ଭ କଲା—

## ପଦ୍ମିଷ୍ଠାର ଆତ୍ମ ବୃତ୍ତାନ୍ତ

'ବ୍ରାହ୍ମଣମାନଙ୍କୁ ଦାନ ସ୍ୱରୂପ ମିଳିଥିବା ସୁଘୋଷ ନାମକ ଏକ ବିଶାଳ ଅଗ୍ରହାର ଅଛି । ସେଠାରେ ପଦ୍ମଗର୍ଭ ନାମରେ ଜଣେ ବେଦଜ୍ଞ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କ କୁଳୀନା ପତ୍ନୀ ଥିଲେ ଶଶୀକଳା । ତାଙ୍କ ଗର୍ଭରୁ ବ୍ରାହ୍ମଣଙ୍କ ଔରସରେ ଦୁଇଟି ସନ୍ତାନ ଜନ୍ମଗ୍ରହଣ କରିଥିଲେ । ମୁଖରକ ନାମରେ ଏକପୁତ୍ର ଏବଂ ପଦ୍ମିଷ୍ଠା ନାମରେ ଏକ କନ୍ୟା । ମୁଁ ଅଭାଗିନୀ ହେଉଛି ସେହି ପଦ୍ମିଷ୍ଠା । ମୋର ବଡ଼ଭାଇ କୈଶୋରରୁ ହିଁ ଦ୍ୟୁତକ୍ରୀଡ଼ାରେ ମାତି ନଷ୍ଟ ହୋଇଗଲା । ଫଳରେ ସେହି ସମୟରୁ ହିଁ ସେ କେଉଁଆଡ଼େ ଚାଲିଯାଇଛି ।

ତା'ର ବିଚ୍ଛେଦରେ ମା'ଙ୍କର ମୃତ୍ୟୁ ଘଟିଲା । ପୁତ୍ର ଓ ସ୍ତ୍ରୀର ବିରହରେ ପିତା ଗୃହତ୍ୟାଗ କଲେ । ପୁତ୍ରର ଅନୁସନ୍ଧାନରେ ସେ ଇତସ୍ତତଃ ଭ୍ରମଣ କରି ଶେଷରେ ଦୁର୍ଭାଗ୍ୟବଶତଃ ଏହି ଗ୍ରାମରେ ଆସି ପହଞ୍ଚିଲେ ।

ଏହି ଅଗ୍ରହାରରେ ବସୁଭୂତି ନାମରେ ଜଣେ ପ୍ରସିଦ୍ଧ ବ୍ୟକ୍ତି ରହୁଛନ୍ତି । ସେ ନାମରେ ମାତ୍ର ବ୍ରାହ୍ମଣ କିନ୍ତୁ ସେ ଚୋରମାନଙ୍କର ଜଣେ ସର୍ଦ୍ଦାର । ସେହି ପାପିଷ୍ଠ ଅନୁଚରମାନଙ୍କ ସହିତ ଆସି ମୋର ପିତାଙ୍କୁ ହତ୍ୟାକଲା । ଆମ ନିକଟରେ ଯାହାକିଛି ଅଳଙ୍କାରପତ୍ର ଥିଲା ତାକୁ ସବୁ ନେଇଗଲା । ମୋତେ ମଧ୍ୟ ଧରିନେଇ ସେ ତା'ର ଗୃହ ମଧ୍ୟରେ ଆବଦ୍ଧ କରି ରଖିଛି । ତା'ର ଅଭିଳାଷ, ତା'ର ପୁତ୍ର ସୁଭୂତି ସହିତ ମୋର ବିବାହ କରାଇବ । ସୁଭୂତି ଗୋଟିଏ ବଣିକ ଦଳଙ୍କୁ ଲୁଣ୍ଠନ କରିବାକୁ ଯାଇ ମୋର ସୌଭାଗ୍ୟରୁ ଏପର୍ଯ୍ୟନ୍ତ ଫେରିନାହିଁ । ମୁଁ ଭାଗ୍ୟକୁ ଆଦରି ଏଠାରେ ପଡ଼ିରହିଛି । ମୋର ତ ଯାହାହେବାର ଅଛି ହେବ, କିନ୍ତୁ ସେ ଯଦି ଆପଣମାନଙ୍କୁ ଦେଖିନିଏ, ତା'ହେଲେ ବିପଦରେ ପଡ଼ିବେ । ଏଣୁ ତା' କବଳରୁ ରକ୍ଷା ପାଇବାପାଇଁ ଯାହା ଉଚିତ ମନେକରୁଛନ୍ତି ସେହି ଉପାୟ କରନ୍ତୁ ।'

କନ୍ୟାଟି ଠାରୁ ଏହା ଶୁଣି ମୁଖରକ ତାକୁ ଚିହ୍ନିପାରିଲା, ଏବଂ ନିଜର ପରିଚୟ ଦେଇ ତାକୁ କୋଳାଗ୍ରତ କରିନେଲା । ସେ ଯେ ତା'ର ନିଜ ବଡ଼ଭାଇ ମୁଖରକ, ଏହା ଜାଣିପାରି ପଦ୍ମିଷ୍ଠାର ସମସ୍ତ ପୂର୍ବ ଘଟଣା ସ୍ମରଣ ହେଲା । ସେ ମଧ୍ୟ ଭାଇକୁ ଧରି କାନ୍ଦିବାକୁ ଲାଗିଲା ।

ଶ୍ରୀଦର୍ଶନ ପିତାମାତାଙ୍କ ପାଇଁ ଶୋକ କରୁଥିବା ଭାଇଭଉଣୀଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ତାହା ଶୋକ କରିବାର ସମୟ ନୁହେଁ । ଦସ୍ୟୁମାନଙ୍କଠାରୁ କିପରି ରକ୍ଷାପାଇବେ ଏବଂ ବସୁଭୂତି ଉପରେ କିପରି ପ୍ରତିଶୋଧ ନେବେ, ସେ ସମ୍ପର୍କରେ ଚିନ୍ତାକରିବା ଆବଶ୍ୟକ । ଶ୍ରୀଦର୍ଶନଙ୍କ କଥାରେ ସେମାନେ ପରିସ୍ଥିତି ସମ୍ପର୍କରେ ସଚେତନ ହୋଇଉଠିଲେ ଏବଂ ପରସ୍ପର ମଧ୍ୟରେ ମନ୍ତ୍ରଣା କରି ନିଜନିଜର କର୍ତ୍ତବ୍ୟ ସ୍ଥିର କଲେ ।

ପୂର୍ବରୁ କିଛି ଦିନ ଉପବାସରେ ଥିବା ଯୋଗୁଁ ଶ୍ରୀଦର୍ଶନ ଦୁର୍ବଳ ହୋଇପଡ଼ିଥାନ୍ତି । ସେ ଅତ୍ୟନ୍ତ ରୁଗ୍ଣ ପରି ଅଭିନୟ କରି ସେହି ସରୋବର କୂଳରେ ପଡ଼ିରହିଲେ । ମୁଖରକ ତାଙ୍କ ପାଦଦୁଇଟିକୁ ଧରି କାନ୍ଦିବାର ଅଭିନୟ କଲେ । ପଦ୍ମିଷ୍ଠା ଦ୍ରୁତ ପଦରେ ଯାଇ ବସୁଭୂତି ନିକଟରେ ପହଞ୍ଚିଲା । ସେ ସରୋବର କୂଳରେ କୌଣସି ପଥିକ ତାହାର ଜଣେ ଅନୁଚର ସହିତ ବେମାର ହୋଇପଡ଼ିଥିବା କଥା ପ୍ରକାଶ କରନ୍ତେ ବସୁଭୂତି

ସେମାନଙ୍କ ଖବର ନେବାପାଇଁ ସଙ୍ଗେସଙ୍ଗେ କେତେଜଣ ଅନୁଚରଙ୍କୁ ପଠାଇଲା । ସେମାନେ ଶ୍ରୀଦର୍ଶନଙ୍କ ନିକଟକୁ ଯାଇ ସହାନୁଭୂତି ପ୍ରଦର୍ଶନର ଛଳନା କରି ସେମାନଙ୍କ ପରିଚୟ ଓ ବିଳାପର କାରଣ ଜିଜ୍ଞାସା କଲେ । ଏମାନଙ୍କ ଅଭିପ୍ରାୟ ଜାଣିପାରି ମୁଖରକ ଆହୁରି ଆର୍ତ୍ତସ୍ୱରରେ ବିଳାପ କରିବାକୁ ଲାଗିଲା । ବାଷ୍ପାକୁଳ କଣ୍ଠରେ ସେ କହିଲା—

'ଏହି ନୈଷ୍ଠିକ ବ୍ରାହ୍ମଣ ମୋର ବଡ଼ଭାଇ । ଆମେ ତୀର୍ଥଯାତ୍ରାରେ ବାହାରିଥିଲୁ । ବିଭିନ୍ନ ସ୍ଥାନ ବୁଲିବା ଫଳରେ ସେ ଅସୁସ୍ଥ ହୋଇପଡ଼ିଲେ । ଆଜି ତାଙ୍କୁ ଧରି ମୁଁ ଏଠାରେ ଆସି ପହଞ୍ଚିଛି । ଏଠାରେ ପହଞ୍ଚିବା ମାତ୍ରେ ସେ ନିଶ୍ଚେଷ୍ଟ ହୋଇପଡ଼ିଛନ୍ତି । ସଂଜ୍ଞା ଲୋପ ହେବା ପୂର୍ବରୁ ସେ କହିଛନ୍ତି, 'ବତ୍ସ, ଶୀଘ୍ର ମୋପାଇଁ କୁଶର ଗୋଟିଏ ଶଯ୍ୟା ପ୍ରସ୍ତୁତ କର । ସେଥିରେ ମୋତେ ଶୁଆଇ ଦେଇ ତୁ ଗାଁ ଭିତରୁ ଜଣେ ନୈଷ୍ଠିକ ବ୍ରାହ୍ମଣଙ୍କୁ ନେଇଆସ । ଆଜି ରାତିରେ ମୋର ମୃତ୍ୟୁ ନିଶ୍ଚିତ । ଏଣୁ ମୋର ସମସ୍ତ ସମ୍ପତ୍ତି ସେହି ବ୍ରାହ୍ମଣଙ୍କୁ ଦାନ କରି ନିଶ୍ଚିନ୍ତରେ ମରିବି ।' ସେ ଏହା କହିବା ପରେ ମୁଁ କ'ଣ କରିବି କିଛି ଚିନ୍ତା କରିପାରୁନାହିଁ । ସୂର୍ଯ୍ୟ ଅସ୍ତ ହେଲେଣି, ମୁଁ ଏଠାରେ ସମ୍ପୂର୍ଣ୍ଣ ଅପରିଚିତ । ତେଣୁ ବିକଳରେ ତାଙ୍କ ପାଦତଳେ ବସି କାନ୍ଦୁଛି । ଆପଣମାନେ ଦୟାପୂର୍ବକ ଜଣେ ନୈଷ୍ଠିକ ବ୍ରାହ୍ମଣଙ୍କୁ ଡାକିଆଣିଲେ ମୁଁ ଭାଇଙ୍କ ପାଖରେ ଥିବା ସମସ୍ତ ସମ୍ପତ୍ତି ତାଙ୍କୁ ଦାନ କରିବି । ଆଜି ରାତିମଧରେ ଭାଇ ତ ନିଶ୍ଚୟ ଶେଷ ନିଃଶ୍ୱାସ ତ୍ୟାଗ କରିବେ । ଭାଇଙ୍କୁ ଛାଡ଼ି ରହିବା ମୋ ପକ୍ଷରେ ମଧ୍ୟ ସମ୍ଭବ ନୁହେଁ । କାଲି ପ୍ରଭାତରୁ ମୁଁ ମଧ୍ୟ ଅଗ୍ନିରେ ପ୍ରବେଶ କରିବି । ଆପଣମାନେ ସଜ୍ଜନ ଓ ଦୟାଳୁ ମନେହେଉଛନ୍ତି । ଅଯାଚିତ ଭାବରେ ଆସି ଆମ ପ୍ରତି ସହାନୁଭୂତି ଦେଖାଇଥିବାଯୋଗୁଁ ଆପଣମାନେ ଆମର ମିତ୍ର । ଅନୁଗ୍ରହ ପୂର୍ବକ ଆମର ଏତିକି ସାହାଯ୍ୟ କରିବେ ବୋଲି ଅନୁରୋଧ ।'

ମୁଖରକଙ୍କଠାରୁ ଏସବୁ ଶୁଣି ଚୋରମାନଙ୍କ ମନରେ ଦୟା ହେଲା । ସେମାନେ ବସୁଭୂତିଙ୍କ ନିକଟରେ ଯାଇ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ । କହିଲେ, 'ସେମାନଙ୍କୁ ହତ୍ୟାକରି ଆମେ ଯେଉଁ ଧନ ପାଇଥାନ୍ତେ, ତାହା ବ୍ରାହ୍ମଣ ସ୍ୱୟଂ ଦାନ କରିବା ପାଇଁ ଇଚ୍ଛା କରୁଛି । ତେଣୁ ଆପଣ ଯାଇ ସେହି ଦାନ ଗ୍ରହଣ କରନ୍ତୁ ।' କିନ୍ତୁ ବସୁଭୂତି ଏଥିରେ ସମ୍ମତ ହେଲାନାହିଁ । ସେ କହିଲା 'ଇଏ କି କାମ ? ହତ୍ୟା ନକରି ଧନ ଗ୍ରହଣ କରିବା ଆମର ନୀତିବିରୁଦ୍ଧ । ଯଦି ତାକୁ ହତ୍ୟା ନକରି ଆମେ ତା'ର ସମ୍ପତ୍ତି ନେଇଆସିବା, ତା'ହେଲେ ସେ ସମ୍ପତ୍ତି ଆମପାଇଁ ବିପଦର କାରଣ ହେବ ।' ତାକୁ ବୁଝାଇବପାଇଁ ଯାଇ ଅନୁଚରମାନେ ପୁଣି କହିଲେ, 'ଆପଣଙ୍କର ଏ ପ୍ରକାର ଆଶଙ୍କା ବୃଥା । ବଳପୂର୍ବକ

ଧନ ଅପହରଣ କରିବା ଏବଂ ଜଣେ ମୁମୂର୍ଷୁଠାରୁ ଦାନ ଗ୍ରହଣ କରିବା, ଦୁଇଟି ସମ୍ପୂର୍ଣ୍ଣ ଭିନ୍ନକଥା । କାଲି ସୁଦ୍ଧା ଯଦି ସେହି ରୋଗଗ୍ରସ୍ତ ପୁରୁଷଟି ଜୀବିତ ରହେ, ତା'ହେଲେ ଅନୁଚର ସହିତ ତାକୁ ହତ୍ୟାକରିବା, ନୋଚେତ୍ ଅଯଥା ବ୍ରହ୍ମହତ୍ୟା ହିଁ ସାର ହେବ ।'

ଅନୁଚରମାନଙ୍କ କଥାରେ ବସୁଭୂତିର ଟିକିଏ ସଦ୍‌ବୁଦ୍ଧି ଉଦୟ ହେଲା । ସେ ସେମାନଙ୍କ କଥାରେ ସମ୍ମତି ପ୍ରକାଶ କରି ରାତିରେ ଶ୍ରୀଦର୍ଶନ ନିକଟରେ ଯାଇ ପହଞ୍ଚିଲା । ଶ୍ରୀଦର୍ଶନ ତାକୁ ଦେଖି ରୁଦ୍ଧଶ୍ୱାସ ହେବାର ଅଭିନୟ କରି ନିକଟରେ ଥିବା ସମ୍ପତ୍ତିରୁ କିଛି ତାକୁ ଦାନସ୍ୱରୂପ ଅର୍ପଣ କଲେ । ବସୁଭୂତି ନିଜର କାର୍ଯ୍ୟସିଦ୍ଧ ହୋଇଥିବା ଦେଖି ସେଠାରୁ ପ୍ରତ୍ୟାବର୍ତ୍ତନ କଲା । ରାତି ଦୀର୍ଘ ହେବାରୁ ଚୋରମାନେ ଗାଢ଼ନିଦ୍ରାରେ ଶୋଇଗଲେ । ପଦ୍ମିଷ୍ଠା ଏହି ସୁଯୋଗରେ ଆସି ଶ୍ରୀଦର୍ଶନ ଓ ମୁଖରକଙ୍କ ନିକଟରେ ପହଞ୍ଚିଲା । ତିନିହେଁ ପରାମର୍ଶପୂର୍ବକ ଯଥାଶୀଘ୍ର ଚୋରମାନଙ୍କର ଅଗମ୍ୟ ମାର୍ଗରେ ମାଳବ ରାଜ୍ୟ ପ୍ରତି ଅଗ୍ରସର ହେଲେ ।

ରାତ୍ରିର ଅନ୍ଧକାର ମଧ୍ୟରେ ସେମାନେ ବହୁଦୂର ପଥ ଅତିକ୍ରମ କରିଗଲେ । ପରଦିନ ସେମାନେ ଏପରି ଏକ ନିଘଞ୍ଚ ଅରଣ୍ୟ ମଧ୍ୟରେ ଯାଇ ପ୍ରବେଶ କଲେ ଯେ ଶୁଷ୍କ ବୃକ୍ଷଲତାଦ୍ୱାରା ତାହା ରୁଗ୍‌ଣ ଓ କମ୍ପିତ, କୃଷ୍ଣସାର ମୃଗମାନଙ୍କର ସାଶ୍ରୁସଜଳ ନୟନ ସମୂହଦ୍ୱାରା ରୋରୁଦ୍ୟମାନ ଏବଂ ବ୍ୟାଘ୍ର, ସିଂହ ଇତ୍ୟାଦି ପଶୁଙ୍କ ଗର୍ଜନରେ ଭୟଭୀତ ବୋଲି ମନେହେଉଥିଲା । ସମଗ୍ର ଦିବସ ସେମାନେ ସେହି ବନ ମଧ୍ୟରେ ପଥଭ୍ରାନ୍ତ ହୋଇ କଟାଇଦେଲେ । ସେମାନଙ୍କ କଷ୍ଟ ବୋଧହୁଏ ସହ୍ୟ କରିନପାରି ସୂର୍ଯ୍ୟ ନିଜର କିରଣଜାଳକୁ ଶିଥିଳ କରିଦେଇ ଅସ୍ତଗଲେ । ପଥକ୍ଳାନ୍ତି ଓ କ୍ଷୁଧା ସେମାନଙ୍କୁ ଅତିଷ୍ଠ କରିଦେଉଥିଲା । ସେମାନେ ଗୋଟିଏ ବୃକ୍ଷର ପାଦଦେଶରେ ଆଶ୍ରୟ ନେଲେ । ସଂଧ୍ୟା ଉତ୍ତୀର୍ଣ୍ଣ ହେଲା । ରାତ୍ରିର ଅନ୍ଧକାର ମଧ୍ୟରେ କିଛିଦୂରରେ ଅଗ୍ନିଶିଖା ତୁଲ୍ୟ ଏକ ଆଲୋକ ସେମାନଙ୍କର ଦୃଷ୍ଟିଗୋଚର ହେଲା । ନିକଟରେ କୌଣସି ଜନବସତି ଥିବା ନିଶ୍ଚୟ କରି ଶ୍ରୀଦର୍ଶନ ସେହି ଆଲୋକ ଦିଗରେ ଅଗ୍ରସର ହେବାକୁ ଲାଗିଲେ । ସେଠାରେ ରତ୍ନନିର୍ମିତ ଏକ ବିଶାଳ ଅଟ୍ଟାଳିକା ତାଙ୍କର ଦୃଷ୍ଟିଗୋଚର ହେଲା । ଅଟ୍ଟାଳିକାର ପ୍ରାଚୀରରୁ ହିଁ ଅଗ୍ନିଶିଖା ତୁଲ୍ୟ ଜ୍ୟୋତି ବିଚ୍ଛୁରିତ ହେଉଥିଲା ।

ଶ୍ରୀଦର୍ଶନ ସାହସର ସହିତ ସେହି ରତ୍ନଭବନ ମଧ୍ୟରେ ପ୍ରବେଶ କଲେ । ସେଠାରେ ଜଣେ ଦିବ୍ୟ ରୂପବତୀ ଯକ୍ଷିଣୀ ବସିଥିବା ତାଙ୍କର ଦୃଷ୍ଟିଗୋଚର ହେଲା । ସେହି ଯକ୍ଷିଣୀଙ୍କୁ ପରିବେଷ୍ଟନ କରି ବିପରୀତପାଦ ଏବଂ ବିକୃତନୟନ ବହୁ ଯକ୍ଷିଣୀ

ରହିଥାନ୍ତି । ଆଉ କେତେକ ଯକ୍ଷ ତାଙ୍କ ପାଇଁ ଖାଦ୍ୟ ଓ ପାନୀୟର ବ୍ୟବସ୍ଥା କରୁଥାନ୍ତି । ଶ୍ରୀଦର୍ଶନ ତାଙ୍କ ନିକଟକୁ ଯାଇ ଯକ୍ଷିଣୀଙ୍କ ଖାଦ୍ୟପାନୀୟରୁ ଅତିଥିଙ୍କ ଅଂଶ ଯାଚନା କଲେ । ଶ୍ରୀଦର୍ଶନଙ୍କ ସାହସ ଓ ବୀରତ୍ୱ ଯକ୍ଷିଣୀକୁ ସନ୍ତୁଷ୍ଟ କଲା । ସେ ନିଜ ଖାଦ୍ୟରୁ ତିନିଜଣ ଅତିଥିଙ୍କ ପାଇଁ ଅନ୍ନ ଓ ଜଳ ପ୍ରଦାନ କଲେ । କେବଳ ସେତିକି ନୁହେଁ, ସେ ଜଣେ ଯକ୍ଷକୁ ମଧ୍ୟ ସେସବୁ ନେଇ ପୂର୍ବୋକ୍ତ ବୃକ୍ଷ ନିକଟରେ ପହଞ୍ଚାଇ ଦେବା ନିମିତ୍ତ ଆଦେଶ କଲେ । ଶ୍ରୀଦର୍ଶନ ଯକ୍ଷ ସହିତ ମିତ୍ରମାନଙ୍କ ନିକଟରେ ପହଞ୍ଚି ଯକ୍ଷକୁ ବିଦାୟ ଦେଲେ । ଆଣିଥିବା ବିବିଧ ବ୍ୟଞ୍ଜନ ଓ ପାନୀୟ ସେମାନଙ୍କର କ୍ଷୁଧା ଶାନ୍ତ କଲା । ଶୀତଳ ଓ ସ୍ୱଚ୍ଛ ଜଳପାନ କରି ସେମାନେ ଆଶ୍ୱସ୍ତ ହେଲେ ।

ଶ୍ରୀଦର୍ଶନଙ୍କ ଅପୂର୍ବ ସାହସ ଓ ବୀରତ୍ୱ ଦେଖି ମୁଖରକ ତାଙ୍କୁ କୌଣସି ଦେବତାଙ୍କ ଅଂଶରେ ଜାତ ବୋଲି ମନେକଲେ । ମିତ୍ରଙ୍କୁ ଆଗ୍ରହର ସହିତ କହିଲେ, 'ମିତ୍ର, ତୁମେ ନିଶ୍ଚିତ ଭାବରେ କୌଣସି ଅଭିଶପ୍ତ ଦେବତା । ମୁଁ ମୋର ଭଗିନୀ ପଦ୍ମିଷ୍ଠାକୁ ତୁମ ହସ୍ତରେ ସମର୍ପଣ କରୁଛି । ସେ ଯେପରି ରୂପବତୀ ସେହିପରି ଗୁଣବତୀ ମଧ୍ୟ । ତୁମର ଉପଯୁକ୍ତ ପତ୍ନୀ ହେବାପାଇଁ ସେ ଯୋଗ୍ୟା ।'

ମିତ୍ରଙ୍କ ବ୍ୟବହାର ଶ୍ରୀଦର୍ଶନଙ୍କୁ ମୁଗ୍ଧ କଲା । ସେ ଅତ୍ୟନ୍ତ ଆନନ୍ଦିତ ହେଲେ । କହିଲେ, 'ମିତ୍ର, ତୁମ ଦାନକୁ ମୁଁ ସ୍ୱୀକାର କରୁଛି । ଏକଥା ପ୍ରଥମରୁ ହିଁ ମୁଁ ତୁମକୁ କହିବାକୁ ଚାହୁଁଥିଲି, କିନ୍ତୁ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପରେ ଏହା ପ୍ରକାଶ କରି ବିବାହ କରିବି ବୋଲି ଭାବିଥିଲି ।' ଏଥିରେ ପଦ୍ମିଷ୍ଠା ଲଜ୍ଜିତା ହୋଇପଡ଼ିଲେ । ପରସ୍ପରର ଆଳାପ ଆଲୋଚନା ମଧ୍ୟରେ ରାତିଟି କଟିଗଲା ।

ପରଦିନ ପ୍ରଭାତରୁ ସେମାନେ ପୁଣି ଯାତ୍ରା ଆରମ୍ଭ କଲେ । କିଛି ଦିନ ମଧ୍ୟରେ ସେମାନେ ଆସି ମାଳବରାଜ ଶ୍ରୀସେନଙ୍କ ନଗର ମଧ୍ୟରେ ପ୍ରବେଶ କଲେ । ପଥଶ୍ରାନ୍ତି ଦୂର କରିବାପାଇଁ ସେମାନେ ପ୍ରଥମେ ଯାଇ ଜଣେ ବୃଦ୍ଧା ବ୍ରାହ୍ମଣୀର ଦ୍ୱାରରେ ଉପସ୍ଥିତ ହେଲେ । ବ୍ରାହ୍ମଣୀ ଗୃହ ମଧ୍ୟକୁ ସ୍ୱାଗତ କରି ସେମାନଙ୍କର ଖାଦ୍ୟପେୟର ବ୍ୟବସ୍ଥା କଲା । କଥାବାର୍ତ୍ତା ମଧ୍ୟରେ ସେମାନେ ନିଜର ପରିଚୟ ଓ ଜୀବନବୃତ୍ତାନ୍ତ ବ୍ରାହ୍ମଣୀ ନିକଟରେ ବ୍ୟକ୍ତ କଲେ । ଏସବୁ ଶୁଣି ବ୍ରାହ୍ମଣୀ କିଛି ବିବ୍ରତ ହେବାପରି ଜଣାଯିବା ଯୋଗୁଁ ଏହାର କାରଣ ଜିଜ୍ଞାସା କରି ସେମାନେ ଶୁଣିଲେ—

'ଏଠାରେ ସତ୍ୟବ୍ରତ ନାମରେ ଜଣେ ବ୍ରାହ୍ମଣ ରହୁଥିଲେ । ଜଣେ ଦକ୍ଷ ରାଜକର୍ମଚାରୀ ରୂପେ ତାଙ୍କର ସୁନାମ ଥିଲା । ମୁଁ ତାଙ୍କର ପତ୍ନୀ ଯଶସ୍ୱତୀ । ମୋର

ମଧ୍ୟ ଜନ୍ମ ଏକ କୁଳୀନ ବ୍ରାହ୍ମଣ ପରିବାରରେ । ପତିଙ୍କ ଦେହାନ୍ତ ପରେ, ମୋର କେହି ପୁତ୍ର ନଥିବା ଯୋଗୁଁ ରାଜା ଦୟାପରବଶ ହୋଇ ମୋତେ ସ୍ୱାମୀଙ୍କ ଦରମାର ଏକ ଚତୁର୍ଥାଂଶ ଦେଉଥିଲେ । ମୋର ଦୁର୍ଭାଗ୍ୟରୁ ସେହି ପ୍ରଜାବତ୍ସଳ ରାଜା ରାଜଚନ୍ଦ୍ର ଅସାଧ୍ୟ କ୍ଷୟରୋଗରେ ପୀଡ଼ିତ ହୋଇପଡ଼ିଛନ୍ତି । ମନ୍ତ୍ର ଓ ଔଷଧ ତାଙ୍କୁ ସୁସ୍ଥ କରିପାରିଲା ନାହିଁ । ଜଣେ ତାନ୍ତ୍ରିକ ରାଜାଙ୍କୁ ଆସି କହିଛନ୍ତି ଯେ ଯଦି କୌଣସି ବୀରପୁରୁଷ ତାଙ୍କର ସହାୟତା କରିବ ତେବେ ବେତାଳ ସାଧନା କରି ସେ ତାଙ୍କୁ ରୋଗମୁକ୍ତ କରିପାରିବ । ଧେଣ୍ଡୁରା ପିଟି ରାଜା ଏହା ଘୋଷଣା କଲାପରେ ସୁଦ୍ଧା ଏପରି କୌଣସି ବୀରପୁରୁଷ ମିଳିଲେ ନାହିଁ । ତେଣୁ ରାଜା ମନ୍ତ୍ରୀମାନଙ୍କୁ କହିଛନ୍ତି ଯେ ସେ ଯେଉଁ ମଠ ଦ୍ୟୁତବିଳାସୀମାନଙ୍କ ପାଇଁ ପ୍ରତିଷ୍ଠା କରିଛନ୍ତି ସେଠାକୁ ଯାଇ ସେମାନେ ଏପରି କୌଣସି ବୀରପୁରୁଷର ସନ୍ଧାନ କରିବେ । କାରଣ ଦ୍ୟୁତବିଳାସୀମାନେ ସ୍ତ୍ରୀ, ବନ୍ଧୁବାନ୍ଧବ, ଧନସମ୍ପତ୍ତିର ଲୋଭ ତ୍ୟାଗ କରି ନିରପେକ୍ଷ ରହିଥାନ୍ତି । ସେମାନେ ନିର୍ଭୟ ଓ ବୀର । ମୁନିଋଷିଙ୍କ ପରି ଏମାନେ ବୃକ୍ଷମୂଳରେ ଶୋଇଯାଇ ପାରନ୍ତି । ମନ୍ତ୍ରୀମାନେ ମଠର ଅଧିକାରୀଙ୍କୁ ଏହାର ସୂଚନା ଦେଇ କୌଣସି ବୀରପୁରୁଷର ଅପେକ୍ଷା କରୁଛନ୍ତି । ତୁମେମାନେ ମଧ୍ୟ ତ ଜୁଆ ଖେଳରେ ପ୍ରବୀଣ । ପୁତ୍ର ଶ୍ରୀଦର୍ଶନ, ତୁମେ ଯଦି ସେହି ତାନ୍ତ୍ରିକଙ୍କୁ ସାହାଯ୍ୟ କରିବାପାଇଁ ଚାହିଁବ, ତେବେ ମୁଁ ଆଜିନେଇ ତୁମକୁ ସେଠାରେ ପହଞ୍ଚାଇ ଦେବି । ରାଜାଙ୍କଠାରୁ ତୁମେ ଉପଯୁକ୍ତ ସତ୍କାର ପାଇବ ଏବଂ ମୁଁ ମଧ୍ୟ ତୁମଠାରେ ଋଣୀ ରହିବି । ରାଜାଙ୍କର ଏହି ପୀଡ଼ା ମୋ ପାଇଁ ପ୍ରାଣାନ୍ତକ ଦୁଃଖଦାୟକ ।'

ବୃଦ୍ଧାର କଥାରେ ଶ୍ରୀଦର୍ଶନ ସମ୍ମତି ପ୍ରକାଶପୂର୍ବକ ତାଙ୍କୁ ନେଇ ମଠରେ ପହଞ୍ଚାଇ ଦେବା ନିମିତ୍ତ ଅନୁରୋଧ କଲେ ।

ବୃଦ୍ଧା ବ୍ରାହ୍ମଣୀ ଆନନ୍ଦ ମନରେ ଶ୍ରୀଦର୍ଶନ, ମୁଖରକ ଏବଂ ପଦ୍ମିଷ୍ଠାକୁ ସଙ୍ଗରେ ଧରି ମଠରେ ଯାଇ ପହଞ୍ଚିଲା ଏବଂ ଅଧିକାରୀକୁ ଶ୍ରୀଦର୍ଶନ ଜଣେ ବିଦେଶୀ ଦ୍ୟୁତ-କ୍ରୀଡ଼ାବିଳାସୀ, ବୀର ଏବଂ ରାଜାଙ୍କ ତାନ୍ତ୍ରିକଙ୍କୁ ସାହାଯ୍ୟ କରିବା ପାଇଁ ସମର୍ଥ ବୋଲି ଜଣାଇଲା । ଶ୍ରୀଦର୍ଶନଙ୍କଠାରୁ ଅନୁରୂପ ସମ୍ମତିର ସୂଚନା ପାଇ ମଠାଧିକାରୀ ତାଙ୍କର ଉପଯୁକ୍ତ ସତ୍କାର କରିବା ସଙ୍ଗେସଙ୍ଗେ ରାଜାଙ୍କ ସମ୍ମୁଖରେ ନେଇ ଉପସ୍ଥିତ କରାଇଲା । ଶ୍ରୀଦର୍ଶନ ଦ୍ୱିତୀୟା ଚନ୍ଦ୍ରପରି କ୍ଷୀଣ ତଥା ଦୁର୍ବଳ ରାଜାଙ୍କୁ ଦେଖି ଦୁଃଖିତ ହେଲେ । ମୁଣ୍ଡକୁ ପୋତି ବସିଥିବା ରାଜା ମଧ୍ୟ ଏହି ବଳିଷ୍ଠ ତଥା ଭବ୍ୟ ଶ୍ରୀଦର୍ଶନଙ୍କୁ ଦେଖି ସନ୍ତୁଷ୍ଟ ହେଲେ । ତାଙ୍କ ମନରେ ଆଶାର ସଞ୍ଚାର ହେଲା । ସେ ଧୀର ସ୍ୱରରେ କହିଲେ, 'ତୁମର ପ୍ରଯତ୍ନ

ଫଳରେ ମୁଁ ନିଶ୍ଚିତ ଭାବେ ରୋଗମୁକ୍ତ ହେବି । ମୋର ଶରୀର ଏବଂ ମନ ମଧ୍ୟ ତୁମକୁ ଦେଖି ପ୍ରଫୁଲ୍ଲିତ ହୋଇଉଠୁଛି, ପୀଡ଼ା ମଧ୍ୟ କିଛି ପରିମାଣରେ ଶାନ୍ତ ହେଲାପରି ମନେକରୁଛି । ତେଣୁ ଆର୍ଯ୍ୟ, ତୁମେ ଅନୁଗ୍ରହ କରି ମୋର ସହାୟତା କର ।' ଶ୍ରୀଦର୍ଶନ 'ଏହା କିବା ବଡ଼କଥା' କହି ରାଜାଙ୍କୁ ସାନ୍ତ୍ୱନା ପ୍ରଦାନ କଲେ ।

ଦୂତ ଦ୍ୱାରା ଶ୍ରୀଦର୍ଶନ ଆସିଥିବା ସୂଚନା ଦେବାରୁ ପୂର୍ବୋକ୍ତ ତାନ୍ତ୍ରିକ ଆସି ସେଠାରେ ଉପସ୍ଥିତ ହେଲା । ତାଙ୍କ ସମ୍ପର୍କରେ ସବୁ ଜାଣିବା ପରେ ସେ କହିଲା, 'ଭଦ୍ର, ତୁମେ ଯଦି ବେତାଳର ଆବାହନରେ ମୋତେ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଅଛ, ତେବେ ଆଜି କୃଷ୍ଣ ଚତୁର୍ଦ୍ଦଶୀ, ମଧ୍ୟ ରାତ୍ରିରେ ତୁମେ କାର୍ଯ୍ୟସିଦ୍ଧି ନିମିତ୍ତ ମୋ ନିକଟରେ ଆସି ପହଞ୍ଚିବ । ମୁଁ ଶ୍ମଶାନରେ ପୂଜା କରୁଥିବି ।'

ମନ୍ତ୍ରସାଧକ ଚାଲିଯିବାପରେ ରାଜାଙ୍କଠାରୁ ଅନୁମତି ନେଇ ଶ୍ରୀଦର୍ଶନ ମଠକୁ ଫେରିଆସିଲେ । ସେଠାରେ ପଦ୍ମିଷ୍ଠା ଓ ମୁଖରକ ସହିତ କଥାବାର୍ତ୍ତା ଓ ଆଳାପ ଆଲୋଚନାରେ ଦିନଟି କଟିଗଲା । ଧୀରେ ଧୀରେ ରାତ୍ରି ବୃଦ୍ଧିପ୍ରାପ୍ତ ହେବାରୁ ସେ କୃପାଣ ହସ୍ତରେ ଏକାକୀ ଶ୍ମଶାନ ଅଭିମୁଖରେ ପ୍ରସ୍ଥାନ କଲେ ।

ଭୂତପ୍ରେତ-ସଙ୍କୁଳ ସେହି ଅପବିତ୍ର ଶ୍ମଶାନ ନିର୍ଜ୍ଜନ ଓ ଭୟଙ୍କର ଥିଲା । ଶୃଗାଳମାନଙ୍କର ବିକଟ ଧ୍ୱନିରେ ତାହା ଆହୁରି ଭୀଷଣ ମନେହେଉଥିଲା । ରାତ୍ରିର ଅନ୍ଧକାର ମଧ୍ୟରେ ଚିତାନଳଗୁଡ଼ିକହିଁ କିଛି ଆଲୋକ ବିଚ୍ଛୁରଣ କରୁଥିଲେ । ଶ୍ରୀଦର୍ଶନ ସେହି ଅନ୍ଧକାର ମଧ୍ୟରେ ଇତସ୍ତତଃ ଭ୍ରମଣ କରି ଶେଷରେ ଶ୍ମଶାନର ମଧ୍ୟସ୍ଥଳରେ ବସି ସାଧନା ପାଇଁ ପ୍ରସ୍ତୁତ ହେଉଥିବା ତାନ୍ତ୍ରିକକୁ ଦେଖିବାକୁ ପାଇଲେ । ତା'ର ସମଗ୍ର ଶରୀର ଭସ୍ମଦ୍ୱାରା ଧୂସର ଦେଖାଯାଉଥିଲା । କେଶଗୁଡ଼ିକୁ ଜଟା ରୂପରେ ବାନ୍ଧି ସେ କୌଣସି ଶବ ଉପରେ ଆଚ୍ଛାଦାନ କରାଯାଇଥିବା ଏକ ବସ୍ତ୍ରକୁ ପଗଡ଼ି ରୂପେ ଧାରଣ କରିଥିଲା । ତାନ୍ତ୍ରିକର ଶରୀର କୃଷ୍ଣବସ୍ତ୍ରରେ ଆବୃତ ଥିଲା ଏବଂ ସେ ଯଜ୍ଞୋପବିତ ଧାରଣ କରିଥିଲା ।

ଶ୍ରୀଦର୍ଶନ ନିକଟକୁ ଯାଇ ନିଜର ପରିଚୟ ଦେଲେ ଏବଂ ଅଣ୍ଟାରେ ଉତ୍ତରୀୟଟିକୁ ଭିଡ଼ି କଣ କରିବାକୁ ହେବ ବୋଲି ଜିଜ୍ଞାସାକଲେ । ସାଧକ ତାଙ୍କୁ ଦେଖି ପ୍ରସନ୍ନଚିତ୍ତରେ କହିଲା, 'ଏଠାରୁ ପଶ୍ଚିମକୁ ମାଇଲିଏ ଚାଲିଯିବ । ସେଠାରେ ଗୋଟିଏ ଅଶୋକ ବୃକ୍ଷ ଅଛି । ସେହି ବୃକ୍ଷଟିର ପତ୍ରସବୁ ଚିତାଗ୍ନିର ଉତ୍ତାପରେ ଜଳିଯାଇଥିବା ଦେଖିବ । ସେହି ବୃକ୍ଷର ପାଦଦେଶରେ ଗୋଟିଏ ଶବ ପଡ଼ିରହିଛି । ତାକୁ ତୁମେ ସେହିପରି ହିଁ ଉଠାଇ ଆଣିବ ।'

ଶ୍ରୀଦର୍ଶନ 'ଠିକ୍ ଅଛି' କହି ଦ୍ରୁତପଦରେ ସେହି ଦିଗକୁ ଅଗ୍ରସର ହେଲେ । ଅଶୋକ ବୃକ୍ଷତଳେ ପହଞ୍ଚି ଦେଖିଲେ ଯେ ଅନ୍ୟଜଣେ ଶବଟିକୁ ନେଇ ଚାଲିଯାଉଛି । ସେ ଦଉଡ଼ି ଯାଇ ତା'ର ସ୍କନ୍ଧ ଉପରୁ ଶବଟିକୁ ଟାଣିବାପାଇଁ ଚେଷ୍ଟା କରି କହିଲେ, 'ତାକୁ ଛାଡ଼ିଦିଅ । ମୋର ମିତ୍ରର ଏହି ଶବକୁ ନେଇ ମୋତେ ଦାହସଂସ୍କାର କରିବାକୁ ହେବ । ତୁମେ ତାକୁ ନେଇ କ'ଣ କରିବ ?' ଏଥିରେ ଶବକୁ ଧରି ଚାଲିଯାଉଥିବା ବ୍ୟକ୍ତିଟି କହିଲା, 'ଏ ଶବ ମୋ ମିତ୍ରର । ମୁଁ ଏହାକୁ ଦେଇପାରିବି ନାହିଁ । ତୁମେ ଏହାର କ'ଣ ହେବ ?' ସେମାନଙ୍କ କଥାବାର୍ତ୍ତା ଭିତରେ ଶବ ମଧ୍ୟରେ ବେତାଳଟିଏ ପ୍ରବେଶ କରିଯାଇଥାଏ । ଉଭୟେ ଶବଟିକୁ ଟଣାଓଟରା କରୁଥିବା ବେଳେ ତାର ମୁହଁରୁ ଏକ ବିକଟ ଚିତ୍କାର ନିର୍ଗତ ହେଲା । ସେଥିରେ ଶବଟିକୁ ଧରିଥିବା ବ୍ୟକ୍ତିଟି ଭୟଭୀତ ହୋଇପଡ଼ିଲା ଏବଂ ତା'ର ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହୋଇଯାଇ ସେହିଠାରେ ହିଁ ମୃତ୍ୟୁ ଘଟିଲା । ଶ୍ରୀଦର୍ଶନ ଶବଟିକୁ ନିଜ ସ୍କନ୍ଧରେ ଧାରଣ କରି ଫେରିବାର ଉପକ୍ରମ କଲେ ।

ସେ ଦୁଇଚାରିପାଦ ଆଗକୁ ଯାଇଛନ୍ତି, ଏ ସମୟରେ ସେହି ସଦ୍ୟ ମୃତ ବ୍ୟକ୍ତିଟି ମଧ୍ୟ ଉଠି ଠିଆହେଲା । ତା' ମଧ୍ୟରେ ସୁଦ୍ଧା ଆଉ ଗୋଟିଏ ବେତାଳ ପ୍ରବେଶ କରିଯାଇଥାଏ । ସେ ଶ୍ରୀଦର୍ଶନଙ୍କୁ ଅଟକାଇ କହିଲା, 'ରୁହ, ମୋ ମିତ୍ରକୁ କୁଆଡ଼େ ନେଇଯାଉଛ ।' ଶ୍ରୀଦର୍ଶନ ତାକୁ ବେତାଳାବିଷ୍ଟ ଦେଖି ପଚାରିଲେ, 'ଯଦି ଇଏ ତୁମର ମିତ୍ର, ତେବେ ତୁମ କଥାର ସତ୍ୟତା ପାଇଁ ପ୍ରମାଣ କ'ଣ ଅଛି ? ଇଏ ତ ମୋର ମିତ୍ର ।' ଏହାଶୁଣି ଶ୍ରୀଦର୍ଶନଙ୍କ ସ୍କନ୍ଧଉପରେ ଥିବା ଶବଟିକୁ ଦେଖାଇ କହିଲା ଯେ ସେହି ଶବଟି ହିଁ ତାଙ୍କ ଉଭୟଙ୍କ କଥାର ପ୍ରମାଣ । ଶ୍ରୀଦର୍ଶନ ନିଜ ସ୍କନ୍ଧ ଉପରେ ଥିବା ବେତାଳଟି କାହାର ମିତ୍ର ବୋଲି ତାକୁ ହିଁ ଜିଜ୍ଞାସା କଲେ । ଉତ୍ତରରେ ବେତାଳାବିଷ୍ଟ ଶବ ଉଭୟଙ୍କୁ ଲକ୍ଷ୍ୟ କରି କହିଲା ଯେ 'ସେ ଭୟଙ୍କର ଭାବେ କ୍ଷୁଧାର୍ତ୍ତ । ଯିଏ ତାକୁ ଯଥେଷ୍ଟ ଖାଦ୍ୟ ପ୍ରଦାନ କରିବ ସେହିଁ ତା'ର ମିତ୍ର ଏବଂ ସେହି ମିତ୍ର ହିଁ ତାକୁ ନିଜର ଇଚ୍ଛାନୁରୂପ ଭାବେ ନେଇଯାଇପାରିବ ।'

ଏଥିରେ ଦ୍ୱିତୀୟ ଶବ ମଧ୍ୟସ୍ଥିତ ବେତାଳ ଜଣାଇଲା ଯେ ତା' ପାଖରେ କିଛି ଖାଦ୍ୟପଦାର୍ଥ ନାହିଁ । ଯଦି ଅନ୍ୟ ନିକଟରେ ଅଛି ତା'ହେଲେ ସେ ଦିଅନ୍ତୁ । ଶ୍ରୀଦର୍ଶନ୍ ଆଚ୍ଛା ଦେଉଛି କହି ଅନ୍ୟ ବେତାଳ ପ୍ରବେଶ କରିଥିବା ଶବଟିକୁ କାଟିବା ନିମିତ୍ତ ଯେତେବେଳେ ନିଜର କୃପାଣ ଉଠାଇଲେ ସେତେବେଳେ ନିଜର ସିଦ୍ଧି ପ୍ରଭାବରୁ ବେତାଳଟି ଶବ ସହିତ ସେଠାରୁ ଉଭେଇଗଲା । ଏହା ଦେଖି ତାଙ୍କ ସ୍କନ୍ଧ ଉପରେ ଥିବା

ବେ଼ତାଳ ତାଙ୍କ ପ୍ରତିଶ୍ରୁତି ଅନୁଯାୟୀ ଭୋଜନ ଦେବାନିମିତ୍ତ ଅନୁରୋଧ କଲା । ଶ୍ରୀଦର୍ଶନ ନିକଟରେ ଅନ୍ୟକୌଣସି ଶବ କିମ୍ବା ବ୍ୟକ୍ତିକୁ ନପାଇ କୃପାଣ ଦ୍ୱାରା ନିଜ ଶରୀରର ମାଂସ ତାକୁ ଅର୍ପଣ କଲେ । ବେତାଳ ଏଥିରେ ସନ୍ତୁଷ୍ଟ ହେଲା । ସେ ଶ୍ରୀଦର୍ଶନଙ୍କୁ କହିଲା, 'ବୀର, ମୁଁ ତୁମର ସାହସ ଓ ବୀରତ୍ୱ ଦେଖି ଅତ୍ୟନ୍ତ ପ୍ରସନ୍ନ । ତୁମର ଶରୀର ପୁଣି ପୂର୍ବାବସ୍ଥା ପ୍ରାପ୍ତ ହେଉ । ବର୍ତ୍ତମାନ ତୁମେ ମୋତେ ନେଇଯାଇପାର । ତୁମର କାର୍ଯ୍ୟସିଦ୍ଧ ହେବ । କିନ୍ତୁ ସେହି ତାନ୍ତ୍ରିକ ଦୁର୍ବଳମନା ହୋଇଥିବା ଯୋଗୁଁ ବଞ୍ଚିପାରିବ ନାହିଁ ।'

ବେତାଳ ଏହିପରି କହୁଥିବା ବେଳେ ଶ୍ରୀଦର୍ଶନଙ୍କ ଶରୀର ପୂର୍ବାବସ୍ଥାକୁ ଫେରିଆସିଲା । ସେ ଶବଟିକୁ ଘେନିଯାଇ ତାନ୍ତ୍ରିକ ସମ୍ମୁଖରେ ସ୍ଥାପନ କଲେ । ତାନ୍ତ୍ରିକ ପ୍ରସନ୍ନଚିତ୍ତରେ ରକ୍ତଚନ୍ଦନ ଓ ରକ୍ତବର୍ଣ୍ଣ ପୁଷ୍ପରେ ତା'ର ପୂଜା କଲା । ସେ ଶବଟିକୁ ନେଇ ଗୋଟିଏ ବିରାଟ ମଣ୍ଡଳ ମଧ୍ୟରେ ସ୍ଥାପନ କଲା । ମଣ୍ଡଳଟି ମନୁଷ୍ୟର ଅସ୍ଥିଚୂର୍ଣ୍ଣରେ ପ୍ରସ୍ତୁତ ହୋଇଥାଏ । ତା'ର କୋଣଗୁଡ଼ିକରେ ରକ୍ତପୂର୍ଣ୍ଣ ପାତ୍ର ସବୁ ରଖାଯାଇଥାଏ ଏବଂ ମଧ୍ୟରେ ମନୁଷ୍ୟ ଚର୍ବିଦ୍ୱାରା ଗୋଟିଏ ଦୀପ ପ୍ରଜ୍ୱଳିତ ଥାଏ । ତାନ୍ତ୍ରିକ ଉର୍ଦ୍ଧ୍ୱମୁଖରେ ପଡ଼ିଥିବା ବେତାଳାବିଷ୍ଟ ଶବ ଉପରେ ବସି ହୋମ ଆରମ୍ଭ କଲା । ନରକପାଳରେ ସେ ସେହି ବେତାଳର ମୁଖରେ ଆହୁତି ଦେଉଥାଏ । କ୍ଷଣକ ମଧ୍ୟରେ ସେହି ଶବମୁଖରୁ ପ୍ରଚଣ୍ଡ ଜ୍ୱାଳା ନିର୍ଗତ ହେବାକୁ ଲାଗିଲା । ତାନ୍ତ୍ରିକ ଭୟରେ ଶବ ଉପରୁ ଉଠି ଯଥାଶୀଘ୍ର ସେଠାରୁ ପଳାୟନ କଲା । ସେ ଉତ୍ସାହଶୂନ୍ୟ ହୋଇପଡ଼ିବା ଫଳରେ ତା' ହାତରୁ ଅସ୍ଥି ନିର୍ମିତ ଶ୍ରୁବ ତଳେ ପଡ଼ିଗଲା । ତାକୁ ଭୟରେ ପଳାୟନ କରୁଥିବା ଦେଖି ବେତାଳ ମଣ୍ଡଳ ମଧ୍ୟରୁ ଉଠିପଡ଼ି ତା'ର ପଶ୍ଚାଦ୍ଧାବନ କରି କିଛି ଦୂରରେ ତାକୁ ସମ୍ପୂର୍ଣ୍ଣତଃ ଗିଳିଦେଲା ।

ଶ୍ରୀଦର୍ଶନ ଏହା ଦେଖି ନିଜ କୃପାଣ ଉଠାଇଲେ । ସେ ବେତାଳକୁ ହତ୍ୟା କରିବାପାଇଁ ଅଗ୍ରସର ହେଉଥିବା ଦେଖି ବେତାଳ ତାଙ୍କୁ ସେଥିରୁ ନିବୃତ୍ତ କରି କହିଲା, 'ମହାଭାଗ, ତୁମର ଏପରି ସାହସ ଦେଖି ମୁଁ ପ୍ରସନ୍ନ । ଏଣୁ ମୋ ମୁହଁରୁ ବାହାରୁଥିବା ଏହି ସୋରିଷଗୁଡ଼ିକୁ ତୁମେ ଗ୍ରହଣ କର । ଏଥିରୁ କିଛି ରାଜାଙ୍କ ମୁଣ୍ଡରେ ବାନ୍ଧିଦେଇ ଅନ୍ୟତକ ତାଙ୍କ ହାତରେ ଦେଇଦେବ । ଏହାଦ୍ୱାରା ସେ ଅତିଶୀଘ୍ର କ୍ଷୟରୋଗରୁ ମୁକ୍ତ ହେବେ । ତୁମେ ମଧ୍ୟ ସମଗ୍ର ପୃଥିବୀର ରାଜା ରୂପେ ପ୍ରତିଷ୍ଠା ଲାଭ କରିବ ।'

ବେତାଳଠାରୁ ଏହା ଶୁଣି ଶ୍ରୀଦର୍ଶନ ତାକୁ କହିଲେ, 'ଏହି ତାନ୍ତ୍ରିକ ବିନା ମୁଁ ରାଜାଙ୍କ ନିକଟକୁ ଯିବି ବା କିପରି ? ରାଜା ଭାବିବେ, ମୋ ନିଜର ସ୍ୱାର୍ଥ ପାଇଁ ମୁଁ ତାନ୍ତ୍ରିକଟିକୁ ହତ୍ୟା କରିଛି ।' ଶ୍ରୀଦର୍ଶନଙ୍କ ଯୁକ୍ତିର ସତ୍ୟତା ଉପଲବ୍ଧି କରି ବେତାଳ

ତାଙ୍କୁ ପୁଣି କହିଲା, 'ରାଜାଙ୍କ ମନରେ ବିଶ୍ୱାସ ଜାତ କରାଇବାପାଇଁ ମୁଁ ଗୋଟିଏ ଉପାୟ ତୁମକୁ କହୁଛି; ରାଜା ତୁମକୁ ଆଉ ଦୋଷୀ ମନେକରିବେ ନାହିଁ । ମୁଁ ଯେଉଁ ଶବ ଦେହରେ ରହି ତାନ୍ତ୍ରିକଟିକୁ ଗିଳିଦେଇଛି, ତୁମେ ତା'ର ପେଟ ଚିରି ରାଜାଙ୍କୁ ଦେଖାଇଦେବ । ସେ ତା' ଭିତରେ ତାନ୍ତ୍ରିକର ମୃତପିଣ୍ଡକୁ ଦେଖି ତୁମ କଥାରେ ଆଉ ଅବିଶ୍ୱାସ କରିବେ ନାହିଁ ।'

ଏପରି କହି ଏବଂ ଶ୍ରୀଦର୍ଶନଙ୍କ ହାତରେ ସୋରିଷତକ ଅର୍ପଣ ପୂର୍ବକ ବେତାଳ ଶବ ଦେହରୁ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । ଶବଟି ପୁଣି ସେହି ସ୍ଥାନରେ ନିର୍ଜୀବ ଭାବେ ପଡ଼ିରହିଲା । ଶ୍ରୀଦର୍ଶନ ସୋରିଷଗୁଡ଼ିକୁ ନେଇ ମଠକୁ ଫେରିଗଲେ ଏବଂ ସମସ୍ତ ବୃତ୍ତାନ୍ତ ମିତ୍ର ଓ ପଦ୍ମିଷ୍ଠାକୁ ଶୁଣାଇ ସେଠାରେ ସୂର୍ଯ୍ୟୋଦୟର ପ୍ରତୀକ୍ଷା କରିବାକୁ ଲାଗିଲେ ।

ପରଦିନ ପ୍ରଭାତରୁ ଶ୍ରୀଦର୍ଶନ ରାଜା ଶ୍ରୀସେନଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ରାତ୍ରିର ସମସ୍ତ ଘଟଣା ରାଜାଙ୍କ ନିକଟରେ ନିବେଦନ କରିବା ପରେ ମନ୍ତ୍ରୀମାନଙ୍କ ସହିତ ଯାଇ ଶବର ଗର୍ଭଚିରି ତାନ୍ତ୍ରିକକୁ ଦେଖାଇବାଦ୍ୱାରା ତାଙ୍କ କଥାରେ ଆଉ କାହାର ଅବିଶ୍ୱାସ ରହିଲା ନାହିଁ । ବେତାଳଠାରୁ ପାଇଥିବା ସୋରିଷଦ୍ୱାରା ରାଜା ସମ୍ପୂର୍ଣ୍ଣ ଆରୋଗ୍ୟଲାଭ କଲେ । ରାଜ୍ୟବାସୀ ଏବଂ ସେହି ବୃଦ୍ଧା ବ୍ରାହ୍ମଣୀ ଶ୍ରୀଦର୍ଶନଙ୍କ ବୀରତ୍ୱରେ ମୁଗ୍ଧ ହେଲେ ।

ରାଜା ଶ୍ରୀସେନ ଥିଲେ ପୁତ୍ରହୀନ । ସେ ଶ୍ରୀଦର୍ଶନଙ୍କୁ ପୁତ୍ରରୂପେ ଗ୍ରହଣ କରି ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଶ୍ରୀଦର୍ଶନଙ୍କୁ ପଦ୍ମିଷ୍ଠାଙ୍କ ସହିତ ବିବାହ କରାଇ ରାଜା ତାଙ୍କୁ ମଧ୍ୟ ପୁତ୍ରବଧୂ ରୂପେ ଗ୍ରହଣ କଲେ । ଉତ୍ତମ ଏବଂ ଉର୍ବର ମୃତ୍ତିକାରେ ରୋପଣ କରାଯାଇଥିବା ବୀଜ ସର୍ବଦା ଫଳଦାନୀ ବୃକ୍ଷରେ ପରିଣତ ହୋଇଥାଏ । ସେହିପରି ଶ୍ରୀସେନଙ୍କ ପରେ ବୀର ଶ୍ରୀଦର୍ଶନ ସମଗ୍ର ପୃଥିବୀ ଜୟ କରି ଶାଳକ ମୁଖରକ ଏବଂ ଲକ୍ଷ୍ମୀ ସମାନା ପତ୍ନୀ ପଦ୍ମିଷ୍ଠା ସହିତ ରାଜସୁଖ ଭୋଗ କରିବାକୁ ଲାଗିଲେ ।

**ଉପ୍ତଂ ସୁକୃତବୀଜଂ ହି ସୁକ୍ଷେତ୍ରେଷୁ ମହାଫଳମ୍ ।**

## ଶ୍ରୀଦର୍ଶନ ଓ ଅନଙ୍ଗମଞ୍ଜରୀ କଥା

ଦିନେ ଉପେନ୍ଦ୍ରଶକ୍ତି ନାମକ ଜଣେ ପ୍ରସିଦ୍ଧ ବଣିକ ସମୁଦ୍ର ତଟରେ ବୁଲୁଥିବା ବେଳେ ରତ୍ନନିର୍ମିତ ଗୋଟିଏ ବିନାୟକ ମୂର୍ତ୍ତି ପାଇଲେ । ସେ ତାକୁ ଆଣି ଯୁବରାଜ

ଶ୍ରୀଦର୍ଶନଙ୍କୁ ଉପହାର ସ୍ୱରୂପ ପ୍ରଦାନ କରନ୍ତେ ଏହି ବହୁମୂଲ୍ୟ ମୂର୍ତ୍ତିଟିକୁ ସେ ଅତ୍ୟନ୍ତ ଭକ୍ତିପୂର୍ଣ୍ଣ ଭାବରେ ଏବଂ ଆଡ଼ମ୍ବର ସହକାରେ ଯଥାବିଧି ପ୍ରତିଷ୍ଠା କଲେ । ବିନାୟକଙ୍କ ଦୈନନ୍ଦିନ ଭୋଗ ନିମିତ୍ତ ଏକହଜାର ଗ୍ରାମ ଖଞ୍ଜି ଦିଆଗଲା । ମହାସମାରୋହରେ ପାଳିତ ହେଉଥିବା ଉତ୍ସବରେ ସେ ଅଞ୍ଚଳର ସମସ୍ତ ଜନତା ସମ୍ମିଳିତ ହୋଇଥାଆନ୍ତି । ପ୍ରତିଷ୍ଠାଦିନ ରାତ୍ରିରେ ଆୟୋଜିତ ହୋଇଥିବା ନୃତ୍ୟ ଓ ସଙ୍ଗୀତରେ ପ୍ରସନ୍ନ ହୋଇ ଗଣାଧିପତି ନିଜ ଗଣମାନଙ୍କୁ ନିର୍ଦ୍ଦେଶ ଦେଇ କହିଲେ–

'ମୋର ପ୍ରସାଦରୁ ଶ୍ରୀଦର୍ଶନ ପୃଥିବୀର ସମ୍ରାଟ ହେବ । ଶୁଣିଛି, ପଶ୍ଚିମ ସମୁଦ୍ରରେ ହଂସଦ୍ୱୀପ ନାମରେ ଏକ ଦ୍ୱୀପ ଅଛି । ସେଠାରେ ଅନଙ୍ଗୋଦୟ ନାମରେ ଜଣେ ରାଜା ରାଜତ୍ୱ କରନ୍ତି । ତାଙ୍କର କନ୍ୟା ଅନଙ୍ଗମଞ୍ଜରୀ । ତାକୁ ନାରୀମାନଙ୍କ ମଧ୍ୟରେ ଗୋଟିଏ ରତ୍ନବୋଲି ଜାଣ । ମୋ ପ୍ରତି ତା'ର ଅଚଳା ଭକ୍ତି । ସେ ପ୍ରତିଦିନ ମୋର ପୂଜା କରି ବର ଭିକ୍ଷା କରେ ଯେ ପୃଥିବୀର ଏକଛତ୍ର ସମ୍ରାଟଙ୍କୁ ସେ ପତିରୂପରେ ଲାଭ କରୁ । ଶ୍ରୀଦର୍ଶନ ହିଁ ତା'ର ପତି ହେବା ନିମିତ୍ତ ଉପଯୁକ୍ତ । ଉଭୟଙ୍କର ବିବାହ ହେଲେ ମୁଁ ମୋର ଏହି ଦୁଇ ଭକ୍ତଙ୍କୁ ଉପଯୁକ୍ତ ଫଳ ଦେଇପାରିବି । ତେଣୁ ତୁମେ କିଛି କୌଶଳ କରି ଶ୍ରୀଦର୍ଶନଙ୍କୁ ଏଠାରୁ ଘେନିଯାଇ ଅନଙ୍ଗମଞ୍ଜରୀ ସହିତ ସାକ୍ଷାତ କରାଅ । କିନ୍ତୁ ଯଥାଶୀଘ୍ର ତାକୁ ଫେରାଇ ଆଣିବ । କିଛିଦିନ ପରେ ଉଭୟେ ବିବାହ ସୂତ୍ରରେ ଆବଦ୍ଧ ହେବେ । କିନ୍ତୁ ଆଜି ଏହି କାର୍ଯ୍ୟସିଦ୍ଧ ହେବା ସମ୍ଭବ ନୁହେଁ; ଏହାହିଁ ଭବିତବ୍ୟ । ପୁଣି ମୋର ପ୍ରତିମା ପାଇଥିବା ଉପେନ୍ଦ୍ରଶକ୍ତିର ମଧ୍ୟ କିଛି ଉପକାର କରିବା ଉଚିତ ।'

ବିନାୟକଙ୍କଠାରୁ ନିର୍ଦ୍ଦେଶ ପାଇ ଗଣମାନେ ସେଦିନ ରାତିରେ ହିଁ ସୁପ୍ତ ଶ୍ରୀଦର୍ଶନଙ୍କୁ ସେମାନଙ୍କ ସିଦ୍ଧିବଳରେ ହଂସଦ୍ୱୀପକୁ ନେଇଗଲେ ଏବଂ ରାଜକୁମାରୀ ଅନଙ୍ଗମଞ୍ଜରୀଙ୍କ ଅନ୍ତଃପୁର ମଧ୍ୟରେ ପ୍ରବେଶ କରି ସେ ଶୋଇଥିବା ପଲଙ୍କ ଉପରେ ଶ୍ରୀଦର୍ଶନଙ୍କୁ ଶୁଆଇ ଦେଲେ ।

କେତୋଟି ମୁହୂର୍ତ୍ତ ମଧ୍ୟରେ ରାଜକୁମାରଙ୍କ ନିଦ୍ରାଭଙ୍ଗ ହେଲା । ସେ ହଠାତ୍ ନିଜକୁ ରତ୍ନଦ୍ୱୀପଦ୍ୱାରା ଆଲୋକିତ ଏକ ଭବ୍ୟ କୋଠରି ମଧ୍ୟରେ ଆବିଷ୍କାର କଲେ । ପ୍ରକୋଷ୍ଠଟିର ପୃଷ୍ଠଭୂମି ରାଜାବର୍ତ୍ତ ପ୍ରସ୍ତରଦ୍ୱାରା ଏବଂ ବିତାନ ବହୁମୂଲ୍ୟ ମଣିମାଣିକ୍ୟଦ୍ୱାରା ନିର୍ମିତ ହୋଇଥିଲା । ପ୍ରକୋଷ୍ଠ ମଧ୍ୟରେ ଥିବା ମୂଲ୍ୟବାନ୍ ଶଯ୍ୟା ଉପରେ ଅନଙ୍ଗମଞ୍ଜରୀ ନିକଟରେ ଶୟନ କରିଥିବା ଦେଖି ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ରାଜକୁମାରୀଙ୍କ କାନ୍ତି ଅମୃତର ଉଦ୍‌ଗାର ପରି ପ୍ରକୋଷ୍ଠଟିକୁ ଅଧିକ ସୁନ୍ଦର କରୁଥିଲା । ତାରାକାଖଚିତ

ଦିଗନ୍ତବିସ୍ତାରୀ ସୁଷମାମୟ ଆକାଶ ଦେହରେ ଧବଳ ମେଘଖଣ୍ଡ ଉପରେ ଶରତ୍‌କାଳୀନ ଚନ୍ଦ୍ରମା ପରି ରାଜକନ୍ୟା ଅନଙ୍ଗମଞ୍ଜରୀ ଶଯ୍ୟା ଉପରେ ଶୟନ କରିଥାନ୍ତି । ତାଙ୍କୁ ଦେଖି ଯୁଗପତ୍ ହର୍ଷ ଓ ବିସ୍ମୟରେ ବିଚଳିତ ହୋଇ ଶ୍ରୀଦର୍ଶନ ମନେ ମନେ ଚିନ୍ତାକଲେ—

'ମୁଁ ତ ମୋ ଶୟନ କକ୍ଷରେ ଶୋଇଥିଲି, ଏବେ ମୁଁ ଆସି ଏଇଠି ପହଞ୍ଚିଛି କିପରି ? କଥା କ'ଣ ? ଏହି ସ୍ତ୍ରୀ କିଏ ? ନିଶ୍ଚୟ ଏହା ସ୍ୱପ୍ନ ହୋଇପାରେ ! କିନ୍ତୁ ମୁଁ ତ ଜାଗ୍ରତ ଅଛି, ଏହା ସ୍ୱପ୍ନ ବା ହେବ କିପରି ? ଏହାଙ୍କୁ ଉଠାଇଲେ ହିଁ ସବୁକିଛି ଜଣାଯିବ । ଏହିପରି ଚିନ୍ତାକରି ଶ୍ରୀଦର୍ଶନ ଧୀରେଧୀରେ ନିଜର ହସ୍ତଦ୍ୱାରା ଅନଙ୍ଗମଞ୍ଜରୀଙ୍କୁ ହଲାଇବାକୁ ଲାଗିଲେ । ଚନ୍ଦ୍ରକିରଣର ସ୍ପର୍ଶରେ କୁମୁଦିନୀ ହସି ଉଠିଲା ପରି ରାଜକୁମାରଙ୍କ ହସ୍ତସ୍ପର୍ଶରେ ଅନଙ୍ଗମଞ୍ଜରୀ ଜାଗ୍ରତ ହେଲେ । ତାଙ୍କର ଚକ୍ଷୁରୂପକ ଭ୍ରମରଗୁଡ଼ିକ ଇତସ୍ତତଃ ନୃତ୍ୟ କରିବାକୁ ଲାଗିଲେ । ଶ୍ରୀଦର୍ଶନଙ୍କ ଉପରେ ଦୃଷ୍ଟିପାତ ହେବାରୁ ମୁହୂର୍ତ୍ତକପାଇଁ ସେ କିଂକର୍ତ୍ତବ୍ୟବିମୂଢ଼ା ହୋଇପଡ଼ିଲେ । ଭାବିଲେ, 'ଏହି ଦିବ୍ୟ ରୂପବାନ୍ ପୁରୁଷ ଜଣକ କିଏ ହୋଇପାରନ୍ତି ? ଏହି ଅନ୍ତଃପୁର ମଧ୍ୟରେ ପ୍ରବେଶ କରିବା କୌଣସି ପୁରୁଷ ପକ୍ଷରେ ଅସମ୍ଭବ । ତଥାପି ଇଏ ଏଠାକୁ ଆସିଯାଇଥିବା ହେତୁ ନିଶ୍ଚୟ କୌଣସି ଦେବତା ହୋଇଥିବେ ।' ଏହିପରି ନିଶ୍ଚୟ କରି ଅନଙ୍ଗମଞ୍ଜରୀ ସମ୍ଭ୍ରମର ସହିତ ଶଯ୍ୟାଉପରେ ଉଠିବସିଲେ । ବିନମ୍ର ଭାବରେ ସେ ଶ୍ରୀଦର୍ଶନଙ୍କ ପରିଚୟ ଏବଂ କିପରି ଓ କାହିଁକି ଏଠାକୁ ଆସିଅଛନ୍ତି ଇତ୍ୟାଦି ଜିଜ୍ଞାସା କଲେ ।

ଶ୍ରୀଦର୍ଶନ ନିଜର ବିସ୍ତୃତ ପରିଚୟ ଦେବା ପରେ ଅନଙ୍ଗମଞ୍ଜରୀ ନିଜର ନାମ, ଦେଶ ତଥା ବଂଶ ପରମ୍ପରା ସମ୍ପର୍କରେ ଅବହିତ କରାଇଲେ । ସେମାନଙ୍କର ସ୍ୱପ୍ନ ଭ୍ରମ କଟିଗଲା । ପରସ୍ପର ପରସ୍ପର ପ୍ରତି ଅନୁରକ୍ତ ହୋଇପଡ଼ିଲେ । ଏହି ଅନୁରକ୍ତିକୁ ପ୍ରକାଶ କରିବାପାଇଁ ସେମାନେ ପରସ୍ପରର ଅଳଙ୍କାର ଓ ଆଭୂଷଣ ବିନିମୟ କଲେ । ଗାନ୍ଧର୍ବ ବିବାହ ପାଇଁ ଉଭୟେ ଉତ୍କଣ୍ଠିତ ହେଉଥିବା ଦେଖି ବିନାୟକଙ୍କ ଗଣମାନେ ଉଭୟଙ୍କୁ ସେଠାରେ ପୁଣି ନିଦ୍ରାଭିଭୂତ କରାଇଦେଲେ ।

ଶ୍ରୀଦର୍ଶନ ଶୋଇଯିବା ପରେ ଗଣମାନେ ତାଙ୍କୁ କ୍ଷଣକ ମଧ୍ୟରେ ଆଣି ତାଙ୍କ ଶୟନାଗାରରେ ପହଞ୍ଚାଇଦେଲେ । ତାଙ୍କର ମନୋରଥ ସମ୍ପୂର୍ଣ୍ଣ ସିଦ୍ଧ ହୋଇପାରିଲା ନାହିଁ । ନିଦ୍ରାଭଙ୍ଗ ହେବାରୁ ଶଯ୍ୟାତ୍ୟାଗ କରି ଶ୍ରୀଦର୍ଶନ ନିଜ ଅଙ୍ଗରେ ନାରୀର ଅଳଙ୍କାର ଦେଖି ଆଶ୍ଚର୍ଯ୍ୟ ହେଲେ । ଭାବିଲେ 'ଏସବୁ କ'ଣ ? ହଂସଦ୍ୱୀପର ସେ ରାଜକୁମାରୀ ଗଲେ କୁଆଡ଼େ ? ସେ ଦିବ୍ୟଭବନ ବା କାହିଁ ? ମୁଁ ପୁଣି ଏଠାକୁ ଆସିଲି କିପରି ?

ଏହା ତ ନିଶ୍ଚିତ ଭାବରେ ସ୍ୱପ୍ନ ନୁହେଁ । ସେହି କନ୍ୟାର ଅଳଙ୍କାରଗୁଡ଼ିକ ବାସ୍ତବତାର ପ୍ରମାଣ । ତେଣୁ ଏହା ନିଶ୍ଚୟ ଭାଗ୍ୟର ଖେଳ ।' ସେ ଏପରି ଚିନ୍ତା କରୁଥିବା ବେଳେ ପଦ୍ମିଷ୍ଠା ନିଦରୁ ଉଠି ବସିଲେ । ସ୍ୱାମୀଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ସେ ତାଙ୍କୁ ସାନ୍ତ୍ୱନା ଓ ସାହସ ଦେଲେ ।

ରାତ୍ରି ଶେଷହେଲା । ଅନଙ୍ଗମଞ୍ଜରୀଙ୍କ ନାମାଙ୍କିତ ଅଳଙ୍କାରଗୁଡ଼ିକୁ ଧାରଣ କରି ଶ୍ରୀଦର୍ଶନ ରାଜା ଶ୍ରୀସେନଙ୍କ ନିକଟରେ ଯାଇ ସମସ୍ତ ବୃତ୍ତାନ୍ତ ନିବେଦନ କଲେ । ପୁତ୍ରକୁ ପ୍ରସନ୍ନ କରିବାପାଇଁ ରାଜା ଶ୍ରୀସେନ ହଂସଦ୍ୱୀପର ଠିକଣା ଜାଣିବା ନିମିତ୍ତ ରାଜ୍ୟସାରା ଧେଣ୍ଡୁରା ଦେଲେ । କିନ୍ତୁ କୌଣସି ନାଗରିକ ବା ଆଗନ୍ତୁକ ଏ ସମ୍ପର୍କରେ ଜାଣିଥିବା ମନେହେଲା ନାହିଁ ।

ଏଣେ ଶ୍ରୀଦର୍ଶନ ଅନଙ୍ଗମଞ୍ଜରୀଙ୍କ ବିରହରେ କନ୍ଦର୍ପ ଜ୍ୱରରେ ପୀଡ଼ିତ ହୋଇପଡ଼ିଲେ । ରାଜକୀୟ ଭୋଗବିଳାସରେ ତାଙ୍କର ମନ ଆଉ ଲାଗିଲା ନାହିଁ । ଅନଙ୍ଗମଞ୍ଜରୀଙ୍କ ହାର ଏବଂ ଆଭୂଷଣ ସବୁକୁ ନିର୍ନିମେଷ ନୟନରେ ଚାହିଁ ରହି ସେ କ୍ଷୁଧାପିପାସା ଭୁଲିଗଲେ । ସ୍ୱପ୍ନରେ ପ୍ରିୟାର ମୁଖକମଳ ଦେଖିପାରୁ ନଥିବା ଯୋଗୁଁ ସେ ନିଦ୍ରା ମଧ୍ୟ ତ୍ୟାଗ କଲେ ।

ହଂସଦ୍ୱୀପରେ ଅନଙ୍ଗମଞ୍ଜରୀଙ୍କ ଅବସ୍ଥା ମଧ୍ୟ ତତୋଽଧିକ । ପ୍ରଭାତର ଶଙ୍ଖ ଧ୍ୱନିରେ ତାଙ୍କର ନିଦ୍ରାଭଙ୍ଗ ହେଲା । ରାତ୍ରିର ସମସ୍ତ ଘଟଣା ତାଙ୍କର ସ୍ମରଣ ହେଲା । ନିଜ ଅଙ୍ଗରେ ଶ୍ରୀଦର୍ଶନଙ୍କ ଅଳଙ୍କାର ସବୁ ଦେଖି ସେ ଚିନ୍ତାରେ ପଡ଼ିଗଲେ । ଭାବିଲେ, 'ଅଳଙ୍କାରଗୁଡ଼ିକୁ ଦେଖିଲେ ମୁଁ ଯେ ସ୍ୱପ୍ନ ଦେଖୁନଥିଲି ଏହା ନିଶ୍ଚିତ । କିନ୍ତୁ ମୋତେ ଯିଏ ଆଭୂଷଣ ଦେଲେ ସେହି ଦୁର୍ଲ୍ଲଭ ପୁରୁଷଙ୍କ ବିରହରେ ମୋର ବଞ୍ଚିବା ଅନିଶ୍ଚିତ ହୋଇପଡ଼ିବ ।'

ଅନଙ୍ଗମଞ୍ଜରୀ ଏହିପରି ଚିନ୍ତା କରୁଥିବା ବେଳେ ପିତା ଅନଙ୍ଗୋଦୟ ହଠାତ୍ ଆସି ସେଠାରେ ପହଞ୍ଚିଲେ । ତାଙ୍କୁ ଦେଖି ଅନଙ୍ଗମଞ୍ଜରୀ ଲଜ୍ଜାରେ ଭାଙ୍ଗିପଡ଼ି ନିଜ ଶରୀରକୁ ପରିଧେୟ ବସ୍ତ୍ର ଦ୍ୱାରା ଆବୃତ କରିବାପାଇଁ ଚେଷ୍ଟା କଲେ । କନ୍ୟାର ମନୋଭାବ ଏବଂ ଆଚରଣ ଲକ୍ଷ୍ୟ କରି ସନ୍ତାନବତ୍ସଳ ରାଜା ତାଙ୍କୁ କୋଳାଗ୍ରତ କରି କହିଲେ, 'ପୁତ୍ରି, ପ୍ରଭାତରୁ ତୋର ଏହି ପୁରୁଷ ବେଶ କାହିଁକି ? ମୋତେ ଦେଖି ତୁ ଏପରି ଲଜ୍ଜିତ ହେବାର କାରଣ ମୁଁ ଜାଣିପାରୁନାହିଁ । ମୋତେ ଅବିଶ୍ୱାସ ନକରି ସବୁକଥା

ସତସତ କହ । ତୁ ମୋର ପ୍ରାଣ ଅପେକ୍ଷା ମଧ୍ୟ ଅଧିକ ପ୍ରିୟ । ମୁଁ ତୋର ସମସ୍ତ କାମନା ପୂରଣ କରିବି ।'

ପିତାଙ୍କ ଏହି ବାତ୍ସଲ୍ୟଭରା ସାନ୍ତ୍ୱନାରେ ଅନଙ୍ଗମଞ୍ଜରୀଙ୍କ ଲଜ୍ଜା ଦୂର ହେବାକୁ ଲାଗିଲା । ସେ ରାତ୍ରିର ସମସ୍ତ ଘଟଣା ତାଙ୍କ ଆଗରେ ବ୍ୟକ୍ତ କଲେ । ରାଜା ସମସ୍ତ କଥା ଶୁଣି ଭାବିଲେ ଯେ ଏହା କଦାପି ମନୁଷ୍ୟକୃତ ନୁହେଁ, ଇନ୍ଦ୍ରଜାଲ ପରି ମନେହେଉଛି । ଏ ସମ୍ପର୍କରେ କ'ଣ କରାଯାଇପାରିବ ଚିନ୍ତା କରିନପାରି ସେ ତାଙ୍କ ରାଜଧାନୀରେ ଥିବା ମହାବ୍ରତଧାରୀ ତଥା ସିଦ୍ଧଯୋଗୀ ବ୍ରହ୍ମସୋମଙ୍କ ନିକଟରେ ଯାଇ ପହଞ୍ଚିଲେ । ରାଜାଙ୍କ ବ୍ୟବହାରରେ ପୂର୍ବରୁ ସେ ତାଙ୍କ ପ୍ରତି ସନ୍ତୁଷ୍ଟ ଥିଲେ । ଅନଙ୍ଗୋଦୟଙ୍କଠାରୁ ସମସ୍ତ ଘଟଣା ଶୁଣି ସେ କିଛି ସମୟ ପାଇଁ ସମାଧିସ୍ଥ ହେଲେ । ଯୋଗ ବଳରେ ସମସ୍ତ ସତ୍ୟ ଉଦ୍‌ଘାଟିତ ହେଲା । ସେ ରାଜାଙ୍କୁ ଘଟଣା ସମ୍ପର୍କରେ କହିଲେ, 'ପ୍ରକୃତରେ ଗଣପତିଙ୍କ ଗଣମାନେ ମାଳବର ରାଜପୁତ୍ର ଶ୍ରୀଦର୍ଶନଙ୍କୁ ନେଇ ଆସିଥିଲେ । ଭଗବାନ୍ ବିନାୟକ ତୁମର କନ୍ୟା ଏବଂ ଶ୍ରୀଦର୍ଶନ ଉଭୟଙ୍କ ଉପରେ ଅତ୍ୟନ୍ତ ପ୍ରସନ୍ନ । ତାଙ୍କ କୃପାରୁ ଶ୍ରୀଦର୍ଶନ ରାଜଚକ୍ରବର୍ତ୍ତୀ ହେବେ । ଏଣୁ ସେ ତୁମ କନ୍ୟାର ଉପଯୁକ୍ତ ପତି ।'

ମହାଯୋଗୀଙ୍କଠାରୁ ଏହା ଶୁଣି ରାଜା ବିନମ୍ର ଭାବରେ କହିଲେ, 'ଭଗବନ୍, ଏହି ବିଶାଳ ହଂସଦ୍ୱୀପଠାରୁ ମାଳବ ବହୁଦୂରରେ ଅବସ୍ଥିତ । ସେଠାକୁ ଯିବା ମାର୍ଗ ମଧ୍ୟ ଅତ୍ୟନ୍ତ ଦୁର୍ଗମ । ପୁଣି ଉପସ୍ଥିତ କାର୍ଯ୍ୟରେ ମଧ୍ୟ ବିଳମ୍ବ କରିବା ଉଚିତ ନୁହେଁ । ମୁଁ ସର୍ବଦା ଆପଣଙ୍କ ଅନୁଗ୍ରହ ଉପରେ ନିର୍ଭର କରିଆସିଛି । ଏହି କାର୍ଯ୍ୟରେ ମଧ୍ୟ ଆପଣ ହିଁ ମୋର ଭରସା ।'

ରାଜାଙ୍କ ଅନୁରୋଧରେ ଯୋଗୀରାଜ ସମ୍ମତ ହେଲେ । କାର୍ଯ୍ୟସିଦ୍ଧିରେ ରାଜାଙ୍କୁ ସାହାଯ୍ୟ କରିବେ ବୋଲି କହି ସେ ହଠାତ୍ ସେଠାରୁ ଅନ୍ତର୍ହିତ ହୋଇଗଲେ ।

ମୁହୂର୍ତ୍ତକ ମଧ୍ୟରେ ଯୋଗସିଦ୍ଧ ବ୍ରହ୍ମସୋମ ଶ୍ରୀସେନଙ୍କ ରାଜଧାନୀ ମାଳବରେ ଯାଇ ପ୍ରବେଶ କଲେ । ସେଠାରେ ପହଞ୍ଚିବା ମାତ୍ରେ ସର୍ବପ୍ରଥମେ ସେ ଶ୍ରୀସେନଙ୍କଦ୍ୱାରା ନିର୍ମିତ ବିନାୟକ ମନ୍ଦିରରେ ଯାଇ ସିଦ୍ଧ ଗଣପତିଙ୍କୁ ପ୍ରଣାମ କଲେ । ତାଙ୍କ ମୁଖରେ ସିଦ୍ଧଗଣପତି ସ୍ତୋତ୍ର ଉଚ୍ଚାରିତ ହେଲା—

**''ନମୋଽସ୍ତୁ ତୁଭ୍ୟଂ ନକ୍ଷତ୍ରମାଳାମଣ୍ଡିତମୂର୍ଦ୍ଧନେ**
**ସୁମେରୁ ଶିଖରାଭାୟ କଲ୍ୟାଣମୟ ମୂର୍ତ୍ତୟେ ।**

ନୌମି ନୃତ୍ତୋତ୍ସବୋତ୍କ୍ଷିପ୍ତସରଳାଭ୍ରଲିହଂ ତବ
କରଂ ତ୍ରିଭୁବନାଗାରଧାରଣସ୍ତମ୍ଭସନ୍ନିଭମ୍ ।
ନିଧାନଂ ସର୍ବସିଦ୍ଧୀନାଂ ବିଘ୍ନାନ୍ତକ ନମାମ୍ୟହମ୍
ପୃଥୁଲୋଦରକୁମ୍ଭଂ ତେ ପନ୍ନଗାଭରଣଂ ବପୁଃ ।''

ବ୍ରହ୍ମସୋମ ଭଗବାନଙ୍କର ଏହିପରି ସ୍ତୋତ୍ର ପାଠ କରୁଥିବା ବେଳେ ସମୁଦ୍ର ତୀରରୁ ଗଣପତି ପ୍ରତିମା ପ୍ରାପ୍ତ ହୋଇଥିବା ଉପେନ୍ଦ୍ରଶକ୍ତିଙ୍କ ପୁତ୍ର ମହେନ୍ଦ୍ରଶକ୍ତି ନାଚିନାଚି ଆସି ସେଠାରେ ପହଞ୍ଚିଲା । ସେ ପ୍ରବଳ ଉନ୍ମାଦ ରୋଗଗ୍ରସ୍ତ । ବହୁଦିନରୁ ସେ ଏହି ରୋଗ ଭୋଗ କରିଆସୁଛି । ଯୋଗୀଙ୍କୁ ଦେଖି ସେ ତାଙ୍କୁ ଧରିବାପାଇଁ ଦୌଡ଼ିଗଲା । ଯୋଗୀପ୍ରବର ଭୟଭୀତ ନହୋଇ ତାକୁ ନିଜ ହାତରେ ପ୍ରହାର କଲେ । ଯୋଗୀଙ୍କ ମନ୍ତ୍ରସିଦ୍ଧ ହସ୍ତରୁ ପ୍ରହାର ଖାଇ ମହେନ୍ଦ୍ରଶକ୍ତିର ଉନ୍ମାଦ ଶାନ୍ତ ହେଲା ଏବଂ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲା । ଜ୍ଞାନ ଫେରିଆସିବାରୁ ନିଜକୁ ଉଲଗ୍ନ ଦେଖି ଲଜ୍ଜାରେ ସେ ବିବ୍ରତ ହୋଇ ଉଭୟ ହସ୍ତରେ ଗୁପ୍ତାଙ୍ଗ ଆବରଣ କରି ଘରକୁ ଫେରିଯିବାପାଇଁ ଉଦ୍ୟତ ହେଲା । ଦର୍ଶକମାନଙ୍କଠାରୁ ଏ ସବୁ ଘଟଣା ଶୁଣି ପିତା ଉପେନ୍ଦ୍ରଶକ୍ତି ଅତ୍ୟନ୍ତ ଆନନ୍ଦର ସହିତ ଯାଇ ପୁତ୍ରକୁ ନେଇଆସିଲେ । ତାକୁ ସ୍ନାନପାନ ଏବଂ ଉତ୍ତମ ବସ୍ତ୍ରଆଭୂଷଣ ଧାରଣ କରାଇ ସେ ପୁତ୍ର ସହିତ ଯାଇ ତପସ୍ୱୀ ବ୍ରହ୍ମସୋମଙ୍କ ସମୀପରେ ଉପସ୍ଥିତ ହେଲେ । ଉପହାର ସ୍ୱରୂପ ସେ ବହୁ ଧନରତ୍ନ ସଙ୍ଗରେ ନେଇଥାନ୍ତି । ପୁତ୍ରକୁ ଆରୋଗ୍ୟ କରିଥିବା ଯୋଗୁଁ ସେ ତପସ୍ୱୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଉପହାର ପ୍ରଦାନ କଲେ, କିନ୍ତୁ ଦିବ୍ୟ ସିଦ୍ଧିର ଅଧିକାରୀ ବ୍ରହ୍ମସୋମ ସେମାନଙ୍କ ମଙ୍ଗଳ କାମନା ପୂର୍ବକ ଉପହାର ସବୁକୁ ଫେରାଇଦେଲେ ।

ବ୍ରହ୍ମସୋମଙ୍କ ଅଦ୍ଭୁତ ଶକ୍ତିର ସମାଚାର ଚାହୁଁଚାହୁଁ ରାଜ୍ୟସାରା ରାଷ୍ଟ୍ର ହୋଇଗଲା । ଏହା ରାଜାଙ୍କର କର୍ଣ୍ଣଗୋଚର ହେବାରୁ ସେ ମଧ୍ୟ ପୁତ୍ର ଶ୍ରୀଦର୍ଶନ ସହିତ ଯାଇ ତପସ୍ୱୀଙ୍କୁ ପ୍ରଣିପାତ କଲେ । କହିଲେ, 'ଆପଣଙ୍କ ଅଯାଚିତ ଅନୁଗ୍ରହରୁ ଏହି ବଣିକଙ୍କ ପୁତ୍ର ଆରୋଗ୍ୟ ଲାଭ କଲା । ଦୟାପୂର୍ବକ ମୋ ପୁତ୍ରର ମଧ୍ୟ ମଙ୍ଗଳ ସାଧନ କରିବେ ବୋଲି ମୁଁ ଆପଣଙ୍କୁ ବିନମ୍ର ପ୍ରାର୍ଥନା କରୁଅଛି ।'

ରାଜାଙ୍କ ଅନୁରୋଧରେ ବ୍ରହ୍ମସୋମ ହସିହସି କହିଲେ, 'ରାଜନ୍, ମୁଁ ଏହି ଚୋରର କି କଲ୍ୟାଣ କରିବି ? ରାତିରେ ହଂସଦ୍ୱୀପକୁ ଯାଇ ରାଜକୁମାରୀ ଅନଙ୍ଗମଞ୍ଜରୀଙ୍କ ହୃଦୟ ଓ ଅଳଙ୍କାର ଚୋରାଇ ଫେରିଛି । ତଥାପି ମୋତେ ଆପଣଙ୍କ ଅନୁରୋଧ ରକ୍ଷା କରିବାକୁ

ପଡ଼ିବ ।' ଏହିପରି କହି ତପସ୍ୱୀ ଶ୍ରୀଦର୍ଶନଙ୍କ ହସ୍ତଧାରଣ ପୂର୍ବକ ସେଠାରୁ ଅନ୍ତର୍ହିତ ହୋଇଗଲେ ।

କିଛିକ୍ଷଣ ମଧ୍ୟରେ ଉଭୟେ ହଂସଦ୍ୱୀପରେ ଆସି ପଦାର୍ପଣ କଲେ । ସେ ରାଜକୁମାରୀଙ୍କ ଆଭୂଷଣ ସହିତ ଶ୍ରୀଦର୍ଶନଙ୍କୁ ନେଇ ରାଜପ୍ରାସାଦରେ ପ୍ରବେଶ କରନ୍ତେ ରାଜା ପ୍ରଥମେ ତପସ୍ୱୀଙ୍କ ଚରଣ ସ୍ପର୍ଶ କରି ଆନନ୍ଦର ସହିତ ଶ୍ରୀଦର୍ଶନଙ୍କୁ ଅଭିନନ୍ଦନ ଜଣାଇଲେ । କିଛି ଦିନ ମଧ୍ୟରେ ରତ୍ନଗର୍ଭା ପୃଥିବୀ ତୁଲ୍ୟା ରାଜକୁମାରୀ ଅନଙ୍ଗମଞ୍ଜରୀଙ୍କ ସହିତ ଶ୍ରୀଦର୍ଶନଙ୍କ ବିବାହ ସମ୍ପନ୍ନ ହେଲା । ରାଜାଙ୍କ ଅନୁରୋଧ କ୍ରମେ ଯୋଗୀରାଜ ବ୍ରହ୍ମସୋମ ନବବିବାହିତା ପତିପତ୍ନୀଙ୍କୁ ନେଇ ମାଳବରେ ପହଞ୍ଚାଇ ଦେଇ ଆସିଲେ । ଶ୍ରୀସେନ ପୁତ୍ର ଓ ପୁତ୍ରବଧୂଙ୍କୁ ଦେଖି ରାଜ୍ୟସାରା ଉତ୍ସବ ପାଳନ କଲେ । ଉଭୟ ପତିପତ୍ନୀ ମଧ୍ୟ ନିଜନିଜର ଅଭିଳାଷ ପୂର୍ଣ୍ଣ ହୋଇଥିବାଯୋଗୁଁ ଆନନ୍ଦର ସହ କାଳାତିପାତ କରିବାକୁ ଲାଗିଲେ ।

ସମୟକ୍ରମେ ରାଜା ଶ୍ରୀସେନଙ୍କର ପରଲୋକ ହେଲା । ଶ୍ରୀଦର୍ଶନ ରାଜ୍ୟଲାଭ କରି ଅଳ୍ପଦିନ ମଧ୍ୟରେ ସମଗ୍ର ପୃଥିବୀ ଜୟକଲେ । ତାଙ୍କର ଉଭୟ ପତ୍ନୀ ପଦ୍ମିଷ୍ଠା ଓ ଅନଙ୍ଗମଞ୍ଜରୀ ମଧ୍ୟ ଯଥାସମୟରେ ତାଙ୍କୁ ଦୁଇଟି ପୁତ୍ର ଉପହାର ଦେଲେ । ଏମାନଙ୍କର ନାମ ଥିଲା ପଦ୍ମସେନ ଓ ଅନଙ୍ଗସେନ । ରାଜ ପ୍ରାସାଦରେ ଉଭୟ ରାଜକୁମାର ଚନ୍ଦ୍ରକଳା ତୁଲ୍ୟ ବୃଦ୍ଧିଲାଭ କରୁଥାନ୍ତି ।

ଦିନେ ଶ୍ରୀଦର୍ଶନ ଉଭୟ ପତ୍ନୀଙ୍କ ସହିତ ଅନ୍ତଃପୁର ମଧ୍ୟରେ ବସିଥାନ୍ତି । ଏ ସମୟରେ ରାଜଭବନ ବାହାରୁ ଜଣେ ବ୍ରାହ୍ମଣର ବିଳାପ ଧ୍ୱନି ତାଙ୍କର ଶ୍ରୁତିଗୋଚର ହେଲା । ରାଜା ତାଙ୍କୁ ଭିତରକୁ ଡକାଇ ଆଣି ବିଳାପର କାରଣ ଜିଜ୍ଞାସା କରନ୍ତେ ସେ କହିଲା, ''ମୋର ଦୀପ୍ତଶିଖା ଅଗ୍ନିକୁ ତାଙ୍କର ଜ୍ୟୋତିଲେଖା ଓ ଧୂମଲେଖା ସହିତ ଅଟ୍ଟହାସ ପୂର୍ବକ କାଳମେଘ ନିର୍ବାପଣ କରିଛି ।'' ଏହା କହି ବ୍ରାହ୍ମଣ ହଠାତ୍ ସେଠାରୁ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ରାଜା ବିସ୍ମୟର ସହିତ ସେ କ'ଣ କହିଲା ଏବଂ କେଉଁଆଡ଼େ ଗଲା ଚିନ୍ତା କରୁଥିବା ବେଳେ ତାଙ୍କର ଉଭୟ ପତ୍ନୀ କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲେ । ଚାହୁଁଚାହୁଁ ଉଭୟଙ୍କ ମୃତ୍ୟୁ ହେଲା । ବଜ୍ରପାତ ପରି ଏହି କଠୋର ଦୃଶ୍ୟ ସହ୍ୟ କରିନପାରି ରାଜା ଶ୍ରୀଦର୍ଶନ ଆର୍ତ୍ତଚିତ୍କାର ପୂର୍ବକ ଭୂମି ଉପରେ ଟଳିପଡ଼ିଲେ । ସେବକମାନେ ତାଙ୍କୁ ଅନ୍ୟତ୍ର ଉଠାଇନେବା ପରେ ମୁଖରକ ଉଭୟ ଶବକୁ ନେଇ ଦାହସଂସ୍କାର କଲେ । ରାଜା ଚେତନା ଲାଭ କରି ବହୁ ସମୟ ପର୍ଯ୍ୟନ୍ତ ଶୋକାକୁଳ

ରହିଲେ, କିନ୍ତୁ ରାଣୀମାନଙ୍କ ପ୍ରତି ତାଙ୍କର ସ୍ନେହ ଓ ମମତା ତାଙ୍କୁ ପାରଲୌକିକ କର୍ମ ଯଥାବିଧି ସମ୍ପନ୍ନ କରିବାପାଇଁ ବାଧ କଲା । ସଂସାର ପ୍ରତି ବିରକ୍ତ ହୋଇ ସେ ଗୋଟିଏ ବର୍ଷ କୌଣସିମତେ କଟାଇଦେଲେ । ବର୍ଷ ଶେଷରେ ନିଜ ରାଜ୍ୟକୁ ପୁତ୍ରମାନଙ୍କ ମଧ୍ୟରେ ଦୁଇଭାଗରେ ବାଣ୍ଟିଦେଇ ରାଜା ସନ୍ନ୍ୟାସ ଗ୍ରହଣ ପୂର୍ବକ ରାଜଧାନୀରୁ ନିଷ୍କ୍ରାନ୍ତ ହେଲେ ।

ଅନୁଗତ ପ୍ରଜାମାନଙ୍କୁ ଅନୁସରଣରୁ ନିବୃତ୍ତ କରାଇ ଶ୍ରୀଦର୍ଶନ ଏକ ଘନଅରଣ୍ୟ ମଧ୍ୟରେ ଯାଇ ପ୍ରବେଶ କଲେ । ଫଳମୂଳ ଆହାର କରି ସେ ସେଠାରେ ତପଶ୍ଚରଣ କରୁଥାନ୍ତି । ଦିନେ ଅରଣ୍ୟ ମଧ୍ୟରେ ଭ୍ରମଣ କରୁଥିବା ବେଳେ ସେ ଏକ ବଟବୃକ୍ଷ ନିକଟରେ ଆସି ପହଞ୍ଚିଲେ । ସେଠାରେ ପହଞ୍ଚିବା ମାତ୍ରେ ବୃକ୍ଷ ମଧ୍ୟରୁ ଦୁଇଜଣ ଦିବ୍ୟ ରୂପଶାଳିନୀ ନାରୀ ଫଳପୁଷ୍ପ ହସ୍ତରେ ଆବିର୍ଭୂତା ହୋଇ ରାଜାଙ୍କୁ ସେହି ଫଳପୁଷ୍ପ ଗ୍ରହଣ କରିବା ନିମିତ୍ତ ନିବେଦନ କଲେ । ରାଜା ପ୍ରଥମେ ସେମାନଙ୍କ ପରିଚୟ ଜାଣିବା ପାଇଁ ଚାହିଁବାରୁ ନାରୀମାନେ ସେମାନଙ୍କ ବାସଭବନକୁ ଯିବାପାଇଁ ସାଦର ନିମନ୍ତ୍ରଣ ଜଣାଇଲେ । ଶ୍ରୀଦର୍ଶନ ମଧ୍ୟ କୌତୂହଳ ଦମନ କରିନପାରି ସେମାନଙ୍କ ସହିତ ଯାଇ ବୃକ୍ଷ ମଧ୍ୟରେ ପ୍ରବେଶ କଲେ । ସେଠାରେ ଏକ ଦିବ୍ୟ ରତ୍ନ ନିର୍ମିତ ପ୍ରାସାଦ ତାଙ୍କର ଦୃଷ୍ଟିପାତ ହେଲା । ଉଭୟ ନାରୀ ତାଙ୍କୁ ସ୍ୱାଗତ କରି ସେହି ଦିବ୍ୟ ଭବନ ମଧ୍ୟରେ ପ୍ରବେଶ କରାଇଲେ । କିଛି ସମୟ ବିଶ୍ରାମ କରିବା ପରେ ସେମାନେ ଦିବ୍ୟ ଫଳମୂଳ ଭୋଜନ କରାଇ ଶ୍ରୀଦର୍ଶନଙ୍କୁ ଆପ୍ୟାୟିତ କଲେ । ସେ ବିସ୍ମିତ ଭାବରେ ଏହି ନାରୀମାନଙ୍କ ଆଚରଣ ଓ ସତ୍କାରର ଆନ୍ତରିକତା ଲକ୍ଷ୍ୟ କରୁଥିବା ବେଳେ ସେମାନେ କହିବା ଆରମ୍ଭ କଲେ– 'ରାଜନ୍, ଆପଣ ଆମମାନଙ୍କର ପରିଚୟ ଜାଣିବାପାଇଁ ଚାହୁଁଥିଲେ, ବର୍ତ୍ତମାନ ଶୁଣନ୍ତୁ–

"ପ୍ରାଚୀନ କାଳରେ ପ୍ରତିଷ୍ଠାନପୁରରେ କମଳଗର୍ଭ ନାମକ ଜଣେ ବ୍ରାହ୍ମଣ ରହୁଥିଲେ । ତାଙ୍କର ଦୁଇଟି ସ୍ତ୍ରୀ– ଜଣକର ନାମ ପଥ୍ୟା ଏବଂ ଅନ୍ୟଜଣକର ନାମ ଅବଳା । ସମୟକ୍ରମେ ସେମାନେ ବାର୍ଦ୍ଧକ୍ୟରେ ଉପନୀତ ହେଲେ । ପତି ଯେପରି ପତ୍ନୀମାନଙ୍କ ପ୍ରତି ଅନୁରକ୍ତ ଥିଲେ, ପତ୍ନୀମାନେ ମଧ୍ୟ ସେହିପରି ପତିଙ୍କ ପ୍ରତି ଅତ୍ୟନ୍ତ ସ୍ନେହଶୀଳା ଥିଲେ । ଏଣୁ ଜୀବନର ଶେଷ ଅବସ୍ଥାରେ ସେମାନେ ଅଗ୍ନିରେ ପ୍ରବେଶ କରି ଏକ ସଙ୍ଗରେ ଶରୀର ବିସର୍ଜନ କଲେ । ଏ ସମୟରେ ସେମାନେ ଅଗ୍ନି ଦେବତାଙ୍କୁ ବର ମାଗିଥିଲେ ଯେ ସେମାନେ ପରବର୍ତ୍ତୀ ସବୁ ଜନ୍ମରେ ପତି-ପତ୍ନୀ ରୂପେ ଜନ୍ମ ନେବେ ।

ପରଜନ୍ମରେ ଅଶେଷ ତପୋବଳରୁ କମଳଗର୍ଭ ଯକ୍ଷ ରୂପେ ଜନ୍ମନେଲେ । ତାଙ୍କ ପିତାଙ୍କ ନାମ ଥିଲା ପ୍ରଦୀପ୍ତାକ୍ଷ । ସେ ଦୀପ୍ତଶିଖ ନାମରେ ପରିଚିତ ହେଲେ । ଅଟ୍ଟହାସ

ଥିଲେ ତାଙ୍କର ଜ୍ୟେଷ୍ଠ ଭ୍ରାତା । କମଳଗର୍ଭଙ୍କ ଉଭୟ ପତ୍ନୀ ପଥ୍ୟା ଓ ଅବଳା ମଧ୍ୟ ଯକ୍ଷରାଜ ଧୂମ୍ରକେତୁଙ୍କ ଔରସରୁ ଯକ୍ଷକନ୍ୟା ରୂପେ ଜନ୍ମଗ୍ରହଣ କଲେ । ଏ ଜନ୍ମରେ ସେମାନଙ୍କ ନାମ ଥିଲା ଜ୍ୟୋତିର୍ଲେଖା ଓ ଧୂମ୍ରଲେଖା । ସମୟକ୍ରମେ ଉଭୟେ ଯୌବନରେ ପଦାର୍ପଣ କଲେ । ଉତ୍ତମ ପତିଲାଭ ନିମିତ୍ତ ଅରଣ୍ୟ ମଧ୍ୟରେ ତପସ୍ୟା କରି ସେମାନେ ଭଗବାନ ଶଙ୍କରଙ୍କୁ ସନ୍ତୁଷ୍ଟ କଲେ । ସେ ପ୍ରତ୍ୟକ୍ଷ ରୂପେ ଯକ୍ଷକନ୍ୟାମାନଙ୍କ ନିକଟରେ ଆବିର୍ଭୂତ ହୋଇ ବର ଦେଲେ ଯେ ପୂର୍ବଜନ୍ମରେ ସେମାନେ ଯାହା ସହିତ ଅଗ୍ନି ପ୍ରବେଶ କରି ସମସ୍ତ ଜନ୍ମରେ ପତିରୂପରେ ପାଇବାପାଇଁ ବର ଭିକ୍ଷା କରିଥିଲେ ସେହି ଯକ୍ଷ ଦୀପ୍ତଶିଖ ଅଟ୍ଟହାସର ଅନୁଜ ରୂପେ ଜନ୍ମଗ୍ରହଣ କରିଛି । ସ୍ୱାମୀଙ୍କର ଅଭିଶାପରୁ ମର୍ତ୍ତ୍ୟଲୋକରେ ସେ ବର୍ତ୍ତମାନ ଶ୍ରୀଦର୍ଶନ ନାମରେ ପରିଚିତ । ତେଣୁ ବର୍ତ୍ତମାନ ସେମାନେ ସେଠାକୁ ଯାଆନ୍ତୁ । ମର୍ତ୍ତ୍ୟଲୋକରେ ମଧ୍ୟ ସେ ସେମାନଙ୍କ ପତି ହେବ । ଅଭିଶାପର ଅବଧି ଶେଷ ହେବାପରେ ସମସ୍ତେ ପୁଣି ଯକ୍ଷଲୋକକୁ ଫେରିଆସିବେ ।

ଭଗବାନ ଗୌରୀପତିଙ୍କ ଆଶୀର୍ବାଦରୁ ଉଭୟ ଯକ୍ଷକନ୍ୟା ପୃଥିବୀରେ ପଦ୍ମିଷ୍ଠା ଓ ଅନଙ୍ଗମଞ୍ଜରୀ ରୂପେ ଜନ୍ମଗ୍ରହଣ କରି ଶ୍ରୀଦର୍ଶନଙ୍କୁ ବିବାହ କଲେ । ସେମାନେ ଆନନ୍ଦରେ ଦାମ୍ପତ୍ୟ ଜୀବନ ଅତିବାହିତ କରୁଥିବା ବେଳେ ଦିନେ ଅଟ୍ଟହାସ ବ୍ରାହ୍ମଣ ରୂପରେ ଆସି ଶ୍ଳେଷପୂର୍ଣ୍ଣ ଭାବେ ସେମାନଙ୍କର ନାମ ଉଚ୍ଚାରଣ ପୂର୍ବକ ପୂର୍ବଜନ୍ମର ସ୍ମୃତି ଜାଗ୍ରତ କରାଇଲା । ଫଳରେ ଉଭୟ ପଦ୍ମିଷ୍ଠା ଓ ଅନଙ୍ଗମଞ୍ଜରୀ ମନୁଷ୍ୟ ଶରୀର ତ୍ୟାଗ ପୂର୍ବକ ଯକ୍ଷଲୋକକୁ ଫେରିଗଲେ ।''

ଆମେ ଦୁଇଜଣ ହେଉଛୁ ସେହି ଯକ୍ଷକନ୍ୟା ଏବଂ ତୁମେ ହେଉଛ ଯକ୍ଷ ଦୀପ୍ତଶିଖ ।' ଯକ୍ଷକନ୍ୟାମାନଙ୍କ କଥାଶୁଣି ଶ୍ରୀଦର୍ଶନଙ୍କ ମନରେ ପୂର୍ବଜନ୍ମର ସ୍ମୃତି ଜାଗ୍ରତ ହେଲା । ସେ ମଧ୍ୟ ନିଜର ପୂର୍ବ ଯକ୍ଷରୂପ ଧାରଣ କଲେ, ଏବଂ ଯକ୍ଷଲୋକକୁ ଫେରିଯାଇ ନିଜର ସ୍ତ୍ରୀମାନଙ୍କ ସହିତ ପୁନଃମିଳିତ ହେଲେ ।

ତେଣୁ, ହେ ବିଚିତ୍ରକଥ, ତୁମେ ମୋତେ ସେହି ଯକ୍ଷ ବୋଲି ଜାଣ ଏବଂ ଏ ଉଭୟେ ମୋର ପ୍ରିୟତମା ପତ୍ନୀ ଜ୍ୟୋତିର୍ଲେଖା ତଥା ଧୂମ୍ରଲେଖା । ମୋପରି ଜଣେ ଦେବଅଂଶ ଜାତ ବ୍ୟକ୍ତି ପକ୍ଷରେ ଯେତେବେଳେ ଏହିପରି ସୁଖଦୁଃଖର ଅନୁଭୂତି ଅବଶ୍ୟମ୍ଭାବୀ, ସେତେବେଳେ ମନୁଷ୍ୟମାନଙ୍କର କଥା ବା ଆଉ କ'ଣ କହିବା ! ବତ୍ସ, ରାଜକୁମାର ମୃଗାଙ୍କଦତ୍ତଙ୍କ ସହିତ ତୁମର ଅତିଶୀଘ୍ର ମିଳନ ଘଟିବ । ତେଣୁ ତୁମେ ଦୁଃଖ ନକରି ଧୈର୍ଯ୍ୟ ଧର । ତୁମର ଆତିଥ୍ୟ କରିବାପାଇଁ ହିଁ ମୁଁ ଏଠାରେ ରହିଥିଲି । ଏହା

ମୋର ପାର୍ଥିବ ବାସସ୍ଥଳୀ । ତୁମେ ଏଠାରେ ନିଶ୍ଚିନ୍ତରେ ରହ । ମୁଁ ତୁମର ମନୋରଥ ପୂର୍ଣ୍ଣ କରି ମୋର ନିଜ ଧାମ କୈଳାସକୁ ଚାଲିଯିବି ।

ଏହିପରି କହି ସେ କିଛିଦିନ ମୋର ଅତିଥି ସତ୍କାର କଲେ । ଆଜି ଆପଣମାନେ ଏଠାକୁ ଆସିଥିବା ଜାଣି ସେହି ସଜ୍ଜନ ଯକ୍ଷ ସୁପ୍ତ ଅବସ୍ଥାରେ ମୋତେ ଉଠାଇ ଆଣି ଆପଣମାନଙ୍କ ମଧ୍ୟରେ ଶୁଆଇ ଦେଇଛନ୍ତି । ନିଦ୍ରାଭଙ୍ଗ ପରେ ମୁଁ ଆପଣଙ୍କ ଶୁଭ ଦର୍ଶନ ଲାଭ କରିଛି ଏବଂ ଆପଣମାନେ ମଧ୍ୟ ମୋତେ ଦେଖିଛନ୍ତି । ଆପଣଙ୍କ ନିକଟରୁ ବିଚ୍ଛିନ୍ନ ହେବାଠାରୁ ଆଜି ପର୍ଯ୍ୟନ୍ତ ଏହାହିଁ ମୋର ବିଚିତ୍ର ଅନୁଭୂତି ।'

ମୃଗାଙ୍କଦତ୍ତ ନିଜର ସ୍ୱନାମଧନ୍ୟ ସଚିବ ବିଚିତ୍ରକଥଙ୍କଠାରୁ ତାଙ୍କର ଏପରି ବିଚିତ୍ର ଅନୁଭୂତି ଶୁଣି ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ସହିତ ସେଠାରେ ରାତିଟି ବିତାଇଦେଲେ । ପ୍ରଭାତରୁ ଉଜ୍ଜୟିନୀ ଅଭିମୁଖରେ ସେମାନଙ୍କର ଯାତ୍ରା ଆରମ୍ଭ ହେଲା । ଶଶାଙ୍କବତୀଙ୍କ ପାଇଁ ତାଙ୍କ ମନ ଉଦ୍‌ବିଗ୍ନ ଥିଲେ ସୁଦ୍ଧା ସେ ପଥମଧ୍ୟରେ ନାଗରାଜ ପାରାବତଙ୍କ ଅଭିଶାପରୁ ବିଚ୍ଛିନ୍ନ ହୋଇପଡ଼ିଥିବା ଅନ୍ୟ ମିତ୍ରମାନଙ୍କର ଅନୁସନ୍ଧାନ କରୁଥାନ୍ତି ।

# ସପ୍ତମ ତରଙ୍ଗ

ଶ୍ରୁତଧି, ବିଚିତ୍ରକଥ ପ୍ରଭୃତି ମିତ୍ର ଓ ମନ୍ତ୍ରୀମାନଙ୍କ ସହିତ ମୃଗାଙ୍କଦତ୍ତ ବିନ୍ଧ୍ୟ ପର୍ବତରେ ଅନ୍ୟ ସଚିବମାନଙ୍କୁ ଅନୁସନ୍ଧାନ କରୁଥିବା ବେଳେ ଏକ ସୁରମ୍ୟ ବନ ମଧ୍ୟରେ ଯାଇ ପ୍ରବେଶ କଲେ । ବନଟି ସୁମିଷ୍ଟ ଫଳଭାରରେ ଆନତ ବୃକ୍ଷରାଜି ଏବଂ ସ୍ୱଚ୍ଛ, ମଧୁର ତଥା ଶୀତଳ ଜଳପୂର୍ଣ୍ଣ ସରୋବରଦ୍ୱାରା ରମଣୀୟ ଥିଲା । ମୃଗାଙ୍କଦତ୍ତ ମିତ୍ରମାନଙ୍କ ସହିତ ସରୋବରରେ ସ୍ନାନ କରି ଫଳାହାର ଦ୍ୱାରା ଆଶ୍ୱସ୍ତ ହେଲେ । ଗୋଟିଏ ବୃକ୍ଷର ଛାୟାରେ ବିଶ୍ରାମ କରୁଥିବା ବେଳେ ଅଦୂରସ୍ଥ ଲତାଗହଳରୁ କିଛି ଅସ୍ପଷ୍ଟ ଶବ୍ଦ ତାଙ୍କର ଶ୍ରୁତିଗୋଚର ହେଲା ।

ମୃଗାଙ୍କଦତ୍ତ କୌତୂହଳବଶତଃ ନିକଟକୁ ଯାଇ ଗୁପ୍ତ ଭାବରେ ତା' ଭିତରକୁ ଉଙ୍କି ମାରିଲେ । ସେଠାରେ ଯାହା ଦେଖିଲେ, ତାହା ତାଙ୍କୁ ବିଚିତ୍ର ମନେହେଲା । ପତ୍ରଶଯ୍ୟାରେ ଜଣେ ପଥଶ୍ରାନ୍ତ ଅନ୍ଧଯୁବକ ଶୋଇଥାଆନ୍ତି । ଗୋଟିଏ ମତ୍ତହସ୍ତୀ ନିଜର ଶୁଣ୍ଢଦ୍ୱାରା ତାଙ୍କୁ ଜଳପାନ କରାଉଥାଏ । ବୃକ୍ଷରୁ ଗୋଟିଏ ଗୋଟିଏ ଫଳ ତୋଳି ଆଣି ସେ ତାଙ୍କ ମୁହଁରେ ଦେଉଥାଏ; ତାଙ୍କୁ ଆଶ୍ୱସ୍ତ କରିବାପାଇଁ ନିଜର କର୍ଣ୍ଣରୂପକ ପଂଖାରେ ବିଞ୍ଚୁଥାଏ । ସେ ସେହି ବ୍ୟକ୍ତିଙ୍କୁ ବାରମ୍ବାର ଜଣେ ସଜ୍ଜନ ପୁରୁଷ ପରି ମନୁଷ୍ୟ ସ୍ୱରରେ ପଚାରୁଥାଏ 'ବର୍ତ୍ତମାନ ଆପଣଙ୍କୁ ଟିକିଏ ଭଲ ଲାଗୁଛି ତ ?'

ଏହି ବିସ୍ମୟକର ଘଟଣା ଦେଖି ମୃଗାଙ୍କଦତ୍ତ ବନ୍ଧୁମାନଙ୍କୁ ଡାକିନେଇ କହିଲେ, 'ଦେଖିଲ, ଏହି ବଣୁଆ ହାତୀଟି କିପରି ମନୁଷ୍ୟ ପରି ବ୍ୟବହାର କରୁଛି । ନିଶ୍ଚୟ ଏହା ପ୍ରକୃତରେ ହାତୀ ନୁହେଁ, ଅନ୍ୟ କୌଣସି ଦିବ୍ୟ ପ୍ରାଣୀ ହାତୀ ରୂପରେ ଏପରି ବ୍ୟବହାର କରୁଛି । ଶୋଇଥିବା ବ୍ୟକ୍ତିଜଣକ ଆମ ମିତ୍ର ପ୍ରଚଣ୍ଡଶକ୍ତି ପରି ଦେଖାଯାଉଛନ୍ତି । କିନ୍ତୁ ଇଏତ ଚକ୍ଷୁହୀନ । ତେଣୁ ଆମେ ଶୀଘ୍ର ଏମାନଙ୍କର ପରିଚୟ ଜାଣିବା ଉଚିତ ହେବ ।' ମିତ୍ରମାନଙ୍କୁ ଏହା କହି ରାଜକୁମାର ଲୁଚିଲୁଚି ସେମାନଙ୍କ ବାର୍ତ୍ତାଳାପ ଶୁଣିବାକୁ ଲାଗିଲେ ।

ହସ୍ତୀଟିର ଶୁଶ୍ରୂଷାରେ ଅନ୍ଧ କିଛି ଆଶ୍ୱସ୍ତ ହେଲା । ହାତୀ ତା'ର ପରିଚୟ ଏବଂ ଅନ୍ଧ ହେବା ସତ୍ତ୍ୱେ ଏହି ସ୍ଥାନରେ ଆସି କିପରି ପହଞ୍ଚିଛି ଇତ୍ୟାଦି ଜାଣିବାପାଇଁ ପ୍ରଶ୍ନ କରନ୍ତେ; ଉତ୍ତରରେ ସେ କହିଲା—

'ଅଯୋଧ୍ୟା ନଗରୀରେ ଅମରଦତ୍ତ ବୋଲି ଜଣେ ରାଜା ଅଛନ୍ତି । ତାଙ୍କର ସର୍ବଗୁଣସମ୍ପନ୍ନ ପୁତ୍ର ମୃଗାଙ୍କଦତ୍ତ । ମୁଁ ତାଙ୍କର ସେବକ । ଉତ୍ତମକୁଳରେ ଜନ୍ମଗ୍ରହଣ କରିଥିବା ଏହି ଅନ୍ଧକୁ ପ୍ରଚଣ୍ଡଶକ୍ତି ବୋଲି ଜାଣନ୍ତୁ । କୌଣସି କାରଣରୁ ପିତା ଆମ ଦଶଜଣ ସହାୟକ ମିତ୍ରଙ୍କ ସହିତ ରାଜକୁମାରଙ୍କୁ ରାଜ୍ୟରୁ ନିର୍ବାସନ କଲେ । ଆମେ ସମସ୍ତେ ଶଶାଙ୍କବତୀଙ୍କପାଇଁ ଉଜ୍ଜୟିନୀ ଅଭିମୁଖରେ ଯାତ୍ରା କରୁଥିଲୁ । ମାର୍ଗରେ ନାଗରାଜ ପାରାବତଙ୍କ ଅଭିଶାପରୁ ଏବେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ିଛୁ । ତାଙ୍କ ଅଭିଶାପରୁ ମୋର ଦୃଷ୍ଟିଶକ୍ତି ନଷ୍ଟ ହୋଇଯାଇଛି । ଅରଣ୍ୟ ମଧ୍ୟରେ ଯେଉଁଠି ଯାହା ଫଳମୂଳ ହାତକୁ ଲାଗିଲା ତାକୁ ଖାଇ ଲକ୍ଷ୍ୟହୀନ ଭାବରେ ବୁଲୁଥିବା ବେଳେ ଏଠାରେ ଆସି ପହଞ୍ଚିଛି । କୌଣସି ଗର୍ତ୍ତ ଭିତରେ ପଡ଼ି କ୍ଷୁଧାପିପାସାରେ ମରିଯିବା ଭଲ ବୋଲି ଭାବୁଥିଲେ ସୁଦ୍ଧା ଅଶେଷ ଦୁଃଖ ସହ୍ୟ କରିବା ପାଇଁ ବିଧାତା ମୋତେ ଏପର୍ଯ୍ୟନ୍ତ ବଞ୍ଚାଇ ରଖିଛି । ଆଜି ଯେପରି ଆପଣଙ୍କ କୃପାରୁ ମୋର କ୍ଷୁଧା ଶାନ୍ତ ହେଲା, ସେହିପରି କୌଣସି ସଜ୍ଜନଙ୍କ କୃପାରୁ ମୋର ଦୃଷ୍ଟିଶକ୍ତି ଫେରିଆସିବ ବୋଲି ହୃଦ୍‌ବୋଧ ହେଉଛି । ଆପଣ ନିଶ୍ଚୟ ଜଣେ ଦେବାଂଶ ଜାତ ସଜ୍ଜନ ।'

ଅନ୍ଧର ଆତ୍ମ ପରିଚୟରୁ ମୃଗାଙ୍କଦତ୍ତ ତାକୁ ନିଜର ଅନ୍ୟତମ ସଚିବ ପ୍ରଚଣ୍ଡଶକ୍ତି ବୋଲି ଜାଣିପାରିଲେ । ଏଥିରେ ତାଙ୍କର ଯେତିକି ଆନନ୍ଦ ହେଲା, ସେତିକି ଦୁଃଖ ମଧ୍ୟ ହେଲା । ସେ ଅନ୍ୟମାନଙ୍କୁ କହିଲେ, 'ଏହି ବ୍ୟକ୍ତି ହିଁ ଆମର ମିତ୍ର ପ୍ରଚଣ୍ଡଶକ୍ତି । ତାଙ୍କର ଏହି ଦୁରବସ୍ଥା ନିଶ୍ଚିତ ଭାବେ ଦୁଃଖଦାୟକ । କିନ୍ତୁ ବର୍ତ୍ତମାନ ଆମେ ତାଙ୍କ ନିକଟକୁ ଯିବା ଉଚିତ ହେବ ନାହିଁ । ହୁଏତ ହାତୀ ତାଙ୍କର ଅନ୍ଧତ୍ୱ ଦୂର କରିଦେଇପାରେ । ଆମକୁ ଦେଖି ସେ ଯଦି ଚାଲିଯାଏ, ତେବେ କାର୍ଯ୍ୟ ସିଦ୍ଧ ହେବ ନାହିଁ । ତେଣୁ ଏହିଠାରେ ହିଁ ନିଜକୁ ଗୁପ୍ତ ରଖି ଆଗକୁ କ'ଣ ହେଉଛି ଦେଖିବା ?'

ମୃଗାଙ୍କଦତ୍ତ ପୁଣି ସେମାନଙ୍କର କଥାବାର୍ତ୍ତା ଶୁଣିବାପାଇଁ କାନ ଦେଲେ । ପ୍ରଚଣ୍ଡଶକ୍ତି ହାତୀଟିକୁ ଆଗ୍ରହର ସହିତ ପଚାରୁଥାନ୍ତି, 'ମହାତ୍ମନ୍, ବର୍ତ୍ତମାନ ଆପଣଙ୍କ ବୃତ୍ତାନ୍ତ କହନ୍ତୁ । ଆପଣ କିଏ ? ହାତୀମାନେ ତ ସାଧାରଣତଃ ମଦମତ୍ତ ହୋଇଥାନ୍ତି । କିନ୍ତୁ ଆପଣଙ୍କର ବଚନବିନ୍ୟାସ ଅତ୍ୟନ୍ତ କୋମଳ ଓ ମଧୁର ।' ପ୍ରଚଣ୍ଡଶକ୍ତିଙ୍କ

ଅନୁରୋଧରେ ଗଜରାଜ ଦୀର୍ଘଶ୍ୱାସ ତ୍ୟାଗ କରି କହିଲା, ମୁଁ ଆରମ୍ଭରୁ ମୋର ବୃତ୍ତାନ୍ତ କହୁଛି, ଶୁଣ–

## ଗଜରାଜର ଆତ୍ମକଥା

ପ୍ରାଚୀନ କାଳରେ ଏକଲବ୍ୟା ବୋଲି ଏକ ନଗରୀ ଥିଲା । ସେଠାରେ ଶ୍ରୁତଧର ନାମରେ ଜଣେ ରାଜା ରାଜତ୍ୱ କରୁଥାନ୍ତି । ତାଙ୍କର ଦୁଇଜଣ ରାଣୀ ଓ ଦୁଇଟି ପୁତ୍ର ଥିଲେ । ରାଜାଙ୍କ ମୃତ୍ୟୁ ପରେ କନିଷ୍ଠ ପୁତ୍ର ସତ୍ୟଧର ନିଜର ଜ୍ୟେଷ୍ଠଭ୍ରାତା ଶୀଳଧରକୁ ରାଜ୍ୟରୁ ବହିଷ୍କାର କରିଦେଲା । ଏଥିରେ କ୍ରୋଧାନ୍ୱିତ ହୋଇ ଶୀଳଧର ଯାଇ ଭଗବାନ ଶଙ୍କରଙ୍କ ଆରାଧନା କଲା । ତା'ର ତପସ୍ୟାରେ ସନ୍ତୁଷ୍ଟ ହେବାରୁ ସେ ବରଭିକ୍ଷା କଲା ଯେ ସେ ଏକ ଗନ୍ଧର୍ବ ହୋଇ ଆକାଶମାର୍ଗରେ ବିଚରଣ କରିପାରିବ ଏବଂ ଅନାୟାସରେ ସାନଭାଇ ସତ୍ୟଧରକୁ ହତ୍ୟା କରିପାରିବ । ଭଗବାନ ତା' ପ୍ରତି ସନ୍ତୁଷ୍ଟ ଥିବା ଯୋଗୁଁ କହିଲେ, 'ଏହି ବର ତ ତୋତେ ମିଳିବ କିନ୍ତୁ ତୋର ଶତ୍ରୁ ଆଜି ମୃତ୍ୟୁବରଣ କରିଛି । ସେ ରାଢ଼ାନଗରୀର ରାଜା ଉଗ୍ରଭଟ୍ଟଙ୍କ ପୁତ୍ର ସମରଭଟ୍ଟ ରୂପେ ଜନ୍ମଗ୍ରହଣ କରିବ ଏବଂ ପିତାଙ୍କର ଅତି ପ୍ରିୟପାତ୍ର ହେବ । ଏହାର ବିମାତାଙ୍କ ଗର୍ଭରୁ ତୁ ବଡ଼ଭାଇ ରୂପେ ଜନ୍ମନେବୁ । ସେତେବେଳେ ତୋର ନାମ ହେବ ଭୀମଭଟ୍ଟ । ତୁ ତୋର ଏହି ଅନୁଜକୁ ହତ୍ୟାକରି ରାଜତ୍ୱ କରିବୁ । କିନ୍ତୁ କ୍ରୋଧର ବଶବର୍ତ୍ତୀ ହୋଇ ତପସ୍ୟା କରିଥିବା ଯୋଗୁଁ ମୁନିଶାପରେ ତୋତେ ଗୋଟିଏ ବନ୍ୟହସ୍ତୀ ରୂପେ କିଛିକାଳ କଟାଇବାକୁ ପଡ଼ିବ । ହସ୍ତୀ ରୂପରେ ଥିଲାବେଳେ ତୁ ପୂର୍ବଜନ୍ମ କଥା ସ୍ମରଣ କରିପାରୁଥିବୁ, ତୋର ସ୍ୱର ମନୁଷ୍ୟର ସ୍ୱରପରି ହେବ । ଯେତେବେଳେ କୌଣସି ପଥକ୍ଳାନ୍ତ ପଥିକର ସେବାଶୁଶ୍ରୁଷା କରି ତା' ଆଗରେ ନିଜର ଜୀବନ କାହାଣୀ ବର୍ଣ୍ଣନା କରିବୁ ସେତେବେଳେ ତୁ ଶାପମୁକ୍ତ ହୋଇ ପୁଣି ଗନ୍ଧର୍ବ ରୂପ ପ୍ରାପ୍ତ ହେବୁ । ଏହାଦ୍ୱାରା ସେହି ଅତିଥିଙ୍କର ବି ଉପକାର ହେବ ।'

ଦେବଦେବ ମହାଦେବ ଏହା କହି ଅନ୍ତର୍ହିତ ହେଲେ । ନିଜର ଭବିଷ୍ୟତ ସମ୍ପର୍କରେ ଜାଣିବା ପରେ ଶୀଳଧର ଦୀର୍ଘ ତପସ୍ୟାରେ ତା'ର ଶରୀର ଅତ୍ୟନ୍ତ ଜୀର୍ଣ୍ଣ ହୋଇଯାଇଥିବା ଅନୁଭବ କରି ଗଙ୍ଗାରେ ଆତ୍ମ ବିସର୍ଜନ କଲା ।

ପ୍ରସଙ୍ଗକ୍ରମେ, ଏହା ମଧ୍ୟରେ ରାଢ଼ାନଗରୀର ପୂର୍ବୋକ୍ତ ରାଜା ଉଗ୍ରଭଟ୍ଟ ନିଜର ଅନୁରୂପ ସଦ୍‌ଗୁଣବତୀ ରାଣୀ ମନୋରମାଙ୍କ ସହିତ ଆନନ୍ଦରେ ଜୀବନ ନିର୍ବାହ କରୁଥାନ୍ତି ।

ଏକଦା ଦୂରସ୍ଥିତ କୌଣସି ରାଜ୍ୟରୁ ଲାସକ ନାମରେ ଜଣେ ନର୍ତ୍ତକ ତାଙ୍କ ନିକଟରେ ଆସି ପହଞ୍ଚିଲା । ସେ ରାଜସଭାରେ ଭଗବାନ ବିଷ୍ଣୁଙ୍କ ମୋହିନୀ ରୂପ ଧାରଣ ଏବଂ ଦେବଦାବନଙ୍କୁ ଅମୃତ ବିତରଣ କଥାବସ୍ତୁ ସମ୍ବଳିତ ଏକ ନାଟକ ପ୍ରଦର୍ଶନ କଲା । ସେହି ନାଟକରେ ତା'ର କନ୍ୟା ଲାସ୍ୟମତୀ ଅମୃତିକା ରୂପରେ ଅଭିନୟ କରୁଥାଏ । ଅମୃତ ବିତରଣ କରୁଥିବା ମୋହିନୀର କନ୍ୟା ଲାସ୍ୟମତୀର ଅତୁଳନୀୟ ରୂପ ବିଭବ ପ୍ରତି ରାଜା ଆକୃଷ୍ଟ ହୋଇପଡ଼ିଲେ । କନ୍ଦର୍ପ ପୀଡ଼ାରେ ବ୍ୟଥିତ ହୋଇ ସେ ଲାସକକୁ ବହୁ ଧନରତ୍ନ ପ୍ରଦାନ ପୂର୍ବକ ତା'ର କନ୍ୟାଟିକୁ ଗ୍ରହଣ କଲେ । ଲାସ୍ୟମତୀକୁ ଅନ୍ତଃପୁର ମଧ୍ୟକୁ ପଠାଇଦେଇ ରାଜା କିଛି ଦିନ ମଧ୍ୟରେ ତାକୁ ବିବାହ କଲେ । ତା'ର ରୂପସୁଧା ପାନକରି ରାଜ୍ୟଶାସନ ପ୍ରତି ରାଜାଙ୍କ କର୍ତ୍ତବ୍ୟ ଶିଥିଳ ହୋଇପଡ଼ିଲା ।

ଦିନେ ରାଜା ଯଜୁଃସ୍ୱାମୀ ନାମକ ନିଜର ପୁରୋହିତଙ୍କୁ ଡାକି କହିଲେ ଯେ ପୁତ୍ରଟିଏ ନଥିବା ଯୋଗୁଁ ସେ ଓ ରାଣୀମାନେ ଅତ୍ୟନ୍ତ ଚିନ୍ତିତ । ତେଣୁ ପୁତ୍ରେଷ୍ଟି ଯଜ୍ଞଟିଏ କଲେ ହୁଏତ ପୁତ୍ରଲାଭ ହୋଇପାରେ । ରାଜାଙ୍କ ପ୍ରସ୍ତାବରେ ସମ୍ମତ ହୋଇ ପୁରୋହିତ ବହୁ ଶାସ୍ତ୍ରଜ୍ଞ ବ୍ରାହ୍ମଣଙ୍କ ସାହାଯ୍ୟରେ ଯଜ୍ଞ ଅନୁଷ୍ଠାନ କଲେ । ଯଜ୍ଞଚରୁର ପ୍ରଥମ ଭାଗ ଜ୍ୟେଷ୍ଠାରାଣୀ ମନୋରମାଙ୍କୁ ପ୍ରଦାନ କରାଗଲା । ଯଜୁଃସ୍ୱାମୀ ପ୍ରଥମରୁ ହିଁ ମନୋରମାଙ୍କ ଗୁଣ, ଚରିତ୍ର ତଥା ଆଚରଣରେ ମୁଗ୍ଧ ଥିଲେ । ତେଣୁ ଅଧିକ ପ୍ରିୟପାତ୍ରୀ ହୋଇଥିଲେ ସୁଦ୍ଧା କନିଷ୍ଠା ରାଣୀ ଲାସ୍ୟମତୀଙ୍କୁ ରାଜା ଯଜ୍ଞଚରୁର ଅବଶିଷ୍ଟାଂଶ ପ୍ରଦାନ କଲେ । ଚରୁ ମାଧ୍ୟମରେ ପୂର୍ବୋକ୍ତ ଶୀଳଧର ଓ ସତ୍ୟଧର ରାଣୀମାନଙ୍କ ଗର୍ଭରେ ପ୍ରବେଶ କରିବା ଯୋଗୁଁ ସେମାନଙ୍କର ଗର୍ଭୋଦୟ ହେଲା । ସମୟକ୍ରମେ ପଟ୍ଟମହିଷୀ ମନୋରମା ଶୁଭଲକ୍ଷଣଯୁକ୍ତ ଗୋଟିଏ ପୁତ୍ରକୁ ଜନ୍ମଦେଲେ । ଜନ୍ମ ସମୟରେ ଆକାଶରୁ ଦିବ୍ୟବାଣୀ ଶୁଣାଗଲା ଯେ ପୁତ୍ରଟିର ନାମ ଭୀମଭଟ୍ଟ ରହିବ ଏବଂ ସେ ଜଣେ ପ୍ରସିଦ୍ଧ ଓ ଯଶସ୍ୱୀ ରାଜା ହେବ । ପରଦିନ ଲାସ୍ୟମତୀଙ୍କ ଗର୍ଭରୁ ମଧ୍ୟ ଅନ୍ୟ ଏକ ପୁତ୍ର ଜନ୍ମନେଲା । ରାଜା ଦ୍ୱିତୀୟ ପୁତ୍ରର ନାମ ରଖିଲେ ସମରଭଟ୍ଟ । ଉଭୟ ଶିଶୁଙ୍କର ବିଭିନ୍ନ ସଂସ୍କାର କରାଗଲା । ସେମାନେ ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲେ ।

ଜ୍ୟେଷ୍ଠଭ୍ରାତା ଭୀମଭଟ୍ଟ ନିଜର ସଦ୍‌ଗୁଣରାଶିଦ୍ୱାରା ସମରଭଟ୍ଟଙ୍କୁ ସବୁବେଳେ ବଳିଯାଉଥାଏ । ଏଥିଯୋଗୁଁ ଉଭୟଙ୍କ ଭିତରେ ତିକ୍ତତା, ମନାନ୍ତର ଏବଂ ଶେଷରେ ଶତ୍ରୁତା ସୃଷ୍ଟି ହୋଇ ବଢ଼ିବାକୁ ଲାଗିଲା । ଦିନେ ବାହୁଯୁଦ୍ଧ କରୁଥିଲା ବେଳେ ଈର୍ଷାବଶତଃ

ସମରଭଟ୍ଟ ବଡ଼ଭାଇର କଣ୍ଠଦେଶରେ ଶକ୍ତ ଆଘାତ କଲା । ଏଥିରେ ଭୀମଭଟ୍ଟ କ୍ରୋଧରେ ଅନୁଜକୁ ନିଜର ଦୁଇ ବାହୁରେ ଉପରକୁ ଉଠାଇ ଖୁବ୍ ଜୋର୍‌ରେ ତଳେ କଚାଡ଼ିଦେଲା । ଏଥିରେ ସମରଭଟ୍ଟ କିଛି ସମୟପାଇଁ ଅଚେତ ହୋଇପଡ଼ିଲା । ତା'ର କର୍ଣ୍ଣ ଓ ନାସିକାରୁ ରକ୍ତସ୍ରାବ ହେବାକୁ ଲାଗିଲା । ଅନୁଚରମାନେ ତାକୁ ଉଠାଇ ମା'ଙ୍କ ନିକଟକୁ ନେଇଗଲେ । ମାତା ପୁତ୍ରର ଏ ଅବସ୍ଥା ଦେଖି ଏବଂ ସମସ୍ତ ଘଟଣା ଶୁଣି ଶୋକାକୁଳ ହୋଇପଡ଼ିଲେ । ପୁତ୍ରର ମସ୍ତକକୁ କୋଳରେ ଧରି ସେ କାନ୍ଦୁଥାନ୍ତି । ଏ ସମୟରେ ରାଜା ଉଗ୍ରଭଟ୍ଟ ସେଠାରେ ଆସି ଉପସ୍ଥିତ ହେଲେ । ପୁତ୍ରର ଦୁର୍ଦ୍ଦଶା ଏବଂ ରାଣୀଙ୍କ ବିଳାପ ତାଙ୍କୁ ଦ୍ରବିତ କରିଦେଲା । ତାଙ୍କର ଜିଜ୍ଞାସାକ୍ରମେ ଲାସ୍ୟମତୀ ବାଷ୍ପାକୁଳ କଣ୍ଠରେ ନିବେଦନ କଲେ—

'ପୁତ୍ର ଭୀମଭଟ୍ଟ ଏହାର ଏପରି ଦୁର୍ଦ୍ଦଶା କରିଦେଇଛି । ସେ ସବୁବେଳେ ଏହା ପ୍ରତି ଏହିପରି ବ୍ୟବହାର ହିଁ କରିଥାଏ । ଆପଣଙ୍କ ମନରେ ଦୁଃଖ ହେବ ବୋଲି ମୁଁ ଆଜିପର୍ଯ୍ୟନ୍ତ ଏ ସମ୍ପର୍କରେ ଆପଣଙ୍କୁ କିଛି କହିନଥିଲି । ଭୀମଭଟ୍ଟର ଆଚରଣ ଦେଖିଲେ ମନେହେଉଛି ଏହା ଆପଣଙ୍କପାଇଁ ମଧ୍ୟ ଶୁଭଙ୍କର ହେବନାହିଁ । ତେଣୁ ତା' ସମ୍ପର୍କରେ ଆପଣ ଯାହା ବିଚାର କରିବେ ।'

ପ୍ରିୟତମା ପତ୍ନୀଠାରୁ ଏହାଶୁଣି ରାଜାଙ୍କର କ୍ରୋଧ ବଢ଼ିଗଲା । ସେ ତତ୍‌କ୍ଷଣାତ୍ ଭୀମଭଟ୍ଟକୁ ନିଜ ନିକଟରୁ ଦୂରେଇଦେଲେ । ତା'ର ସମସ୍ତ ବୃତ୍ତି ମଧ୍ୟ ପ୍ରତ୍ୟାହୃତ ହେଲା । ସମରଭଟ୍ଟର ସୁରକ୍ଷାପାଇଁ ରାଜା ଏକଶହ ସଶସ୍ତ୍ର ରକ୍ଷକ ନିଯୁକ୍ତ କଲେ । ରାଜକୋଷର ଦାୟିତ୍ୱ ମଧ୍ୟ ସେ କନିଷ୍ଠ ପୁତ୍ର ହସ୍ତରେ ସମର୍ପଣ କଲେ । ଭୀମଭଟ୍ଟକୁ ସମସ୍ତ ରାଜଭୋଗରୁ ବଞ୍ଚିତ କରାଗଲା ।

ଭୀମଭଟ୍ଟଙ୍କ ମାତା ମନୋରମା ଏସବୁ ଘଟଣା ଜାଣିବା ପରେ ପୁତ୍ରକୁ ଡାକି କହିଲେ, 'ପୁତ୍ର, ତୋର ପିତା ବର୍ତ୍ତମାନ ସେହି ନର୍ତ୍ତକୀ ପ୍ରତି ବିଶେଷଭାବେ ଆସକ୍ତ । ତେଣୁ ସେ ତୋତେ ତ୍ୟାଜ୍ୟପୁତ୍ର କରିଛନ୍ତି । ତେଣୁ ତୁ ଅଜାଙ୍କ ଘରକୁ ଚାଲିଯା' । ପାଟଳିପୁତ୍ରରେ ତୋତେ ସୁରକ୍ଷା ମିଳିବ । ଅଜା ନିଃସନ୍ତାନ । ତେଣୁ ତାଙ୍କ ପରେ ତୁ ସେ ରାଜ୍ୟର ଉତ୍ତରାଧିକାରୀ ହେବୁ । ଏଠାରେ ରହିଲେ ରାଜ ଅନୁଗ୍ରହପ୍ରାପ୍ତ ତୋର ବଳିଷ୍ଠ ଶତ୍ରୁ ସମରଭଟ୍ଟ ତୋତେ ହତ୍ୟା କରିବ ।'

କିନ୍ତୁ ସ୍ୱାଭିମାନୀ ଭୀମଭଟ୍ଟ ମାତାଙ୍କ ପ୍ରସ୍ତାବରେ ସମ୍ମତ ହୋଇପାରିଲେ ନାହିଁ । ସେ କହିଲେ, 'କ୍ଷତ୍ରିୟ ବଂଶରେ ଜନ୍ମ ହୋଇ ନପୁଂସକ ତୁଲ୍ୟ ଭୟରେ ଶତ୍ରୁଠାରୁ ପଳାୟନ କରିବା ମୋପାଇଁ ଉଚିତ ହେବ ନାହିଁ । ତୁମେ ଧୈର୍ଯ୍ୟ ଧର । ଦେଖିବି କିଏ

ମୋର କ'ଣ କରିବ ?' ଏଥିରେ ପୁତ୍ରବତ୍ସଳା ମନୋରମା ଗର୍ବିତ ହେବା ସଙ୍ଗେ ସଙ୍ଗେ ଦୁଃଖିତ ମଧ୍ୟ ହୋଇ ପୁଣି ପ୍ରସ୍ତାବ ଦେଲେ ଯେ ତାଙ୍କଠାରେ ଥିବା ଧନସମ୍ପତ୍ତି ବ୍ୟୟ କରି ପୁତ୍ର ନିଜ ପାଇଁ କିଛି ଦେହରକ୍ଷୀ ନିଯୁକ୍ତ କରୁ । କିନ୍ତୁ ଏହାକୁ ମଧ୍ୟ ସ୍ୱୀକାର ନକରି ଭୀମଭଟ୍ଟ କହିଲେ 'ମା, ଏହା ମଧ୍ୟ ମୋତେ ଶୋଭାଦେବ ନାହିଁ । ମୁଁ ଏପରି କଲେ ଏହା ପିତାଙ୍କର ବିରୁଦ୍ଧାଚରଣ ହେବ । ତୁମେ ନିଶ୍ଚିନ୍ତ ରହ । ତୁମ ଆଶୀର୍ବାଦରୁ ମୋର କୌଣସି ଅନିଷ୍ଟ ହେବ ନାହିଁ ।' ମା'ଙ୍କୁ ଏପରି ସାନ୍ତ୍ୱନା ଦେଇ ଭୀମଭଟ୍ଟ ସେଠାରୁ ଅନ୍ୟତ୍ର ଚାଲିଗଲେ ।

ନଗରବାସୀମାନ ଏସବୁ ଘଟଣା ଅବହିତ ହେଲା ପରେ ସେମାନେ ଭୀମଭଟ୍ଟ ପ୍ରତି ରାଜାଙ୍କ ବ୍ୟବହାରକୁ ଉଚିତ ବୋଲି ମନେକଲେନାହିଁ । ସମରଭଟ୍ଟ କୌଣସି କୁଚକ୍ରାନ୍ତ କରି ରାଜ୍ୟ ଅଧିକାର କରିବା ଅସମ୍ଭବ ନୁହେଁ ବୋଲି ସେମାନେ ଉପଲବ୍ଧି କଲେ । ତେଣୁ ଏହି ଦୁଃସ୍ଥିତିରେ ସମସ୍ତ ନଗରବାସୀ ଭୀମଭଟ୍ଟଙ୍କ ସହାୟତାପାଇଁ ନିଶ୍ଚୟ କରି ଗୋପନରେ ତାଙ୍କୁ ଏପରି ସାହାଯ୍ୟ କଲେ ଯେ ସେ ପୂର୍ବପରି ଅନୁଚରମାନଙ୍କ ସହିତ ନିର୍ବିଘ୍ନରେ ବାସକରିବାରୁ ବଞ୍ଚିତ ହେଲେନାହିଁ ।

ରାଜା ସମରଭଟ୍ଟଙ୍କ ସୁରକ୍ଷାପାଇଁ ଯେଉଁ ବ୍ୟବସ୍ଥା କରିଦେଲେ ସେଥିରେ ତାଙ୍କ ସାହସ ଆହୁରି ବଢ଼ିଗଲା । ସେ ବଡ଼ଭାଇର ହତ୍ୟାନିମିତ୍ତ ବିଭିନ୍ନ କୌଶଳ ଚିନ୍ତା କରିବାକୁ ଲାଗିଲା ।

ନଗର ମଧ୍ୟରେ ଶଂଖଦତ୍ତ ନାମକ ଜଣେ ଧନଶାଳୀ ତଥା ବୀରତ୍ୱସମ୍ପନ୍ନ ବ୍ରାହ୍ମଣ ଯୁବକ ରହୁଥାନ୍ତି । ଉଭୟ ରାଜଭ୍ରାତାଙ୍କ ସହିତ ତାଙ୍କର ବନ୍ଧୁତା ଥାଏ । ଦିନେ ସେ ସମରଭଟ୍ଟଙ୍କ ନିକଟକୁ ଆସି କହିଲେ, 'ମିତ୍ର, ଜ୍ୟେଷ୍ଠଭ୍ରାତାଙ୍କ ପ୍ରତି ଶତ୍ରୁତା କରିବା ଉଚିତ ହେଉନାହିଁ । ଏହା ମଧ୍ୟ ଏକ ଧର୍ମବିରୁଦ୍ଧ କାର୍ଯ୍ୟ । ତାଙ୍କୁ ପରାଜିତ କରିବା ତୁମ ପକ୍ଷରେ ସମ୍ଭବ ନୁହେଁ । ଏହା ତୁମ ପାଇଁ ଅପଖ୍ୟାତି ହିଁ ଆଣିଦେବ । ଏ ଦୃଷ୍ଟିରୁ ତୁମେ ଏ ପ୍ରକାର ଅପପ୍ରୟାଶରୁ ନିବୃତ୍ତ ରହିବା ଉଚିତ ହେବ ବୋଲି ମୁଁ ମନେ କରୁଛି ।' ଏଥିରେ ସମରଭଟ୍ଟ ଉତ୍କ୍ଷିପ୍ତ ହୋଇଉଠିଲେ । ସେ ତାଙ୍କ କାର୍ଯ୍ୟରେ ବାଧା ସୃଷ୍ଟି କରୁଥିବାରୁ ତିରସ୍କାର ପୂର୍ବକ ଧମକ ମଧ୍ୟ ଦେଲେ ।

ବାସ୍ତବରେ ହିତୋପଦେଶ ମୂର୍ଖମାନଙ୍କୁ ଶାନ୍ତ କରିପାରେ ନାହିଁ ବରଂ ସେମାନଙ୍କର କ୍ରୋଧ ହିଁ ବଢ଼ାଇଥାଏ ।

ହିତୋପଦେଶୋ ମୂର୍ଖସ୍ୟ କୋପାୟୈବ ନ ଶାନ୍ତୟେ ।

ସମରଭଟ୍ଟର ବ୍ୟବହାରରେ କ୍ଷୁବ୍ଧ ହୋଇ ଶାନ୍ତିପ୍ରିୟ ଶଂଖଦତ୍ତ ତାଙ୍କୁ ଉପଯୁକ୍ତ ଶିକ୍ଷା ଦେବାନିମିତ୍ତ ଭୀମଭଟ୍ଟଙ୍କ ନିକଟରେ ଯାଇ ପହଞ୍ଚିଲେ ଏବଂ ତାଙ୍କୁ ହିଁ ନିଜର ଏକମାତ୍ର ମିତ୍ରରୂପେ ଗ୍ରହଣ କଲେ ।

ଏ ସମୟରେ ମଣିଦତ୍ତ ନାମରେ ଜଣେ ବିଦେଶୀ ବଣିକ ରାଢ଼ାନଗରୀରେ ଆସି ଉପସ୍ଥିତ ହୁଅନ୍ତି । ତାଙ୍କ ସହିତ ଏକ ଅତି ଉତ୍ତମ ଅଶ୍ୱ ଥାଏ । ଅଶ୍ୱଟିର ବର୍ଣ୍ଣ ଚନ୍ଦ୍ରଜ୍ୟୋସ୍ନା ପରି ଶୁଭ୍ର, ତା'ର ହ୍ରେଷାରବ ଯୁଦ୍ଧକାଳୀନ ଶଂଖଧ୍ୱନି ପରି ସୁଶ୍ରାବ୍ୟ, ତା'ର ଗତି କ୍ଷୀର ସାଗରର ଉନ୍ନତ ଲହରୀ ପରି ଚଞ୍ଚଳ, ମଥାମଣି, ବାଜୁବନ୍ଧ ପ୍ରଭୃତି ଅଳଙ୍କାରରେ ବିଭୂଷିତ ତା'ର ରୂପ ଦେଖିଲେ ମନେହେଉଥାଏ ସେ ଯେପରି ଗନ୍ଧର୍ବ କୁଳର ସମସ୍ତ ସିଦ୍ଧିକୁ ନେଇ ଜନ୍ମଗ୍ରହଣ କରିଛି । ଶଂଖଦତ୍ତଙ୍କ ଉପଦେଶ ଅନୁଯାୟୀ ଭୀମଭଟ୍ଟ ପ୍ରଚୁର ଧନ ବିନିମୟରେ ବଣିକଙ୍କଠାରୁ ଅଶ୍ୱଟିକୁ କିଣିନେଲେ । ଏହା ସମରଭଟ୍ଟଙ୍କ ଶ୍ରୁତିଗୋଚର ହେବାରୁ ସେ ତତ୍‌କ୍ଷଣାତ୍ ଯାଇ ବଣିକଙ୍କ ନିକଟରେ ପହଞ୍ଚିଲେ । ଦୁଇଗୁଣ ଧନରାଶିର ପ୍ରଲୋଭନ ଦେଖାଇ ସେ ଅଶ୍ୱଟିକୁ ନେବାପାଇଁ ଚାହିଁବାରୁ ବଣିକ ଥରେ ବିକ୍ରି କରିଦେଇଥିବା ଅଶ୍ୱଟିକୁ ଫେରାଇ ଆଣିବା ସମ୍ଭବ ନୁହେଁ ବୋଲି ତାଙ୍କୁ ସିଧାସଳଖ ଜଣାଇଦେଲେ ।

ନିଜର ମନୋରଥ ସିଦ୍ଧ ନହେବାରୁ ଈର୍ଷ୍ୟା ପ୍ରଣୋଦିତ ସମରଭଟ୍ଟ ବଳପୂର୍ବକ ଅଶ୍ୱଟିକୁ ନେବାପାଇଁ ଉଦ୍ୟମ କଲେ । ଭୀମଭଟ୍ଟଙ୍କ ଅନୁଚରମାନେ ପ୍ରତିରୋଧ କରିବା ଯୋଗୁଁ ଉଭୟଙ୍କ ମଧ୍ୟରେ ବଚସା ଓ ଯୁଦ୍ଧ ଆରମ୍ଭ ହେଲା । ଭୀମଭଟ୍ଟ ସମରଭଟ୍ଟଙ୍କ ସମସ୍ତ ଅନୁଚରଙ୍କୁ ହତ୍ୟାକଲେ । ତାଙ୍କ ଭୀମ ପରାକ୍ରମ ଦେଖି ସମରଭଟ୍ଟ ଅଶ୍ୱଟିକୁ ସେଠାରେ ଛାଡ଼ିଦେଇ ପଳାୟନ କଲା । କିନ୍ତୁ ଶଂଖଦତ୍ତ ପଛରୁ କେଶ ଧାରଣ କରି କ୍ରୋଧରେ ତାକୁ ହତ୍ୟା କରିବାପାଇଁ ଉଦ୍ୟତ ହେଲେ । ଶଂଖଦତ୍ତଙ୍କ ତରବାରି ମୁହୂର୍ତ୍ତକ ମଧ୍ୟରେ ସମରଭଟ୍ଟର ମସ୍ତକ ଛିନ୍ନ କରିଥାନ୍ତା, କିନ୍ତୁ ଭୀମଭଟ୍ଟ ଏହାଦ୍ୱାରା ପିତାଙ୍କ ମନରେ ଦୁଃଖ ହେବ ବୋଲି ତାଙ୍କୁ ସେଥିରୁ ନିବୃତ୍ତ କଲେ । ସମରଭଟ୍ଟ ଆସନ୍ନ ମୃତ୍ୟୁରୁ ରକ୍ଷାପାଇ ରକ୍ତାକ୍ତ ଶରୀରରେ ପିତାଙ୍କ ସମୀପରେ ଯାଇ ଉପସ୍ଥିତ ହେଲା ।

ଭୀମଭଟ୍ଟ ଅଶ୍ୱଟିକୁ ଧରି ଫେରୁଥିବା ବେଳେ ଜଣେ ବ୍ରାହ୍ମଣ ତାଙ୍କ ସମ୍ମୁଖକୁ ଆସି ଏକାନ୍ତରେ କହିଲେ, ''ତୁମର ମାତା ମହାରାଣୀ ମନୋରମା ପୁରୋହିତ ଯଜ୍ଞଃସ୍ୱାମୀ ଏବଂ ତୁମ ପିତାଙ୍କ ମନ୍ତ୍ରୀ ସୁମତି ମିଳିତ ଭାବେ ତୁମ ନିକଟକୁ ଏହି ବାର୍ତ୍ତା

ଦେଇଛନ୍ତି—'ପୁତ୍ର, ତୁମ ପ୍ରତି ରାଜାଙ୍କର ମନୋଭାବ ସମ୍ପର୍କରେ ତୁମେ ଅବଗତ ଅଛ । ଅଶ୍ୱପାଇଁ ସଂଘର୍ଷ ଏବଂ ସେଥିରେ ସମରଭଟ୍ଟର ପରାଜୟ ତାଙ୍କ କ୍ରୋଧକୁ ଆହୁରି ବଢ଼ାଇଦେବ । ଯଦି ତୁମେ ନିଜର ତଥା ନିଜ ରାଜଧର୍ମ ଓ ବଂଶକୀର୍ତ୍ତିକୁ ରକ୍ଷା କରିବାପାଇଁ ଚାହୁଁଥାଅ, ଯଦି ନିଜର ଭବିଷ୍ୟତ ପ୍ରତି ତୁମର କିଛି ଚିନ୍ତାଥାଏ ଏବଂ ଯଦି ତୁମେ ଆମମାନଙ୍କୁ ତୁମର ହିତୈଷୀ ବୋଲି ଭାବୁଥାଅ ତେବେ ନିଜର କାର୍ଯ୍ୟସିଦ୍ଧି ନିମିତ୍ତ ସୂର୍ଯ୍ୟାସ୍ତମାତ୍ରେ ତୁମେ ଗୋପନରେ ନଗର ତ୍ୟାଗକରି ନିଜ ମାତାମହଙ୍କ ନିକଟକୁ ଚାଲିଯାଅ ।' ଏହି ବାର୍ତ୍ତା ସହିତ ସେମାନେ ତୁମପାଇଁ ବହୁ ମୂଲ୍ୟବାନ୍ ରତ୍ନ ଏବଂ ସ୍ୱର୍ଣ୍ଣମୁଦ୍ରାପୂର୍ଣ୍ଣ କଳସଟିଏ ମଧ୍ୟ ପଠାଇଛନ୍ତି । ତୁମେ ମୋଠାରୁ ତାହା ଗ୍ରହଣ କର ।''

ବ୍ରାହ୍ମଣଠାରୁ ଶୁଭଚିନ୍ତକମାନଙ୍କ ନିର୍ଦ୍ଦେଶ ଶୁଣି ସେ ପ୍ରଣିପାତ ପୂର୍ବକ ତାଙ୍କୁ ଅଭିନନ୍ଦନ ଜଣାଇଲେ । 'ଗୁରୁଜନମାନଙ୍କ ଉପଦେଶ ଅବଶ୍ୟ ପାଳନୀୟ' ବୋଲି କହି ସେ ବ୍ରାହ୍ମଣ ହସ୍ତରୁ କଳସଟି ଗ୍ରହଣ କଲେ ।

ସମୁଚିତ ସନ୍ଦେଶ ପ୍ରଦାନ ପୂର୍ବକ ବ୍ରାହ୍ମଣକୁ ବିଦାୟ ଦେଇ ଭୀମଭଟ୍ଟ କୃପାଣ ହସ୍ତରେ ଅଶ୍ୱାରୋହଣ କଲେ । ଶଂଖଦତ୍ତ ମଧ୍ୟ ମିତ୍ରଙ୍କ ସହାୟତାପାଇଁ ବହୁ ଧନରତ୍ନ ସହିତ ଅନ୍ୟ ଏକ ଅଶ୍ୱ ଆରୋହଣ କରି ମିତ୍ରଙ୍କ ଅନୁଗାମୀ ହେଲେ । ବହୁଦୂର ପଥ ଅତିକ୍ରମ କରି ପରଦିନ ରାତ୍ରିରେ ସେମାନେ ଆସି ଗୋଟିଏ ଶରବଣ ମଧ୍ୟରେ ପ୍ରବେଶ କଲେ । ପଥଶ୍ରାନ୍ତି ଯୋଗୁଁ ଅଶ୍ୱଗୁଡ଼ିକର ଗତି ମନ୍ଥର ହୋଇପଡ଼ିଥାଏ । ଶର ଗୁଳ୍ମ ଗୁଡ଼ିକରେ ଅଶ୍ୱଖୁରାର ସଂଘର୍ଷ ଯେଉଁ ଧ୍ୱନି ସୃଷ୍ଟିକଲା ସେଥିରେ ନିକଟସ୍ଥ ଗୋଟିଏ ସିଂହ ତା'ର ଶିଶୁସନ୍ତାନମାନଙ୍କ ସହିତ ଜାଗ୍ରତ ହୋଇଉଠିଲା । ସେମାନେ ଅଶ୍ୱଗୁଡ଼ିକୁ ଆକ୍ରମଣ କରି ଉଦରର ନିମ୍ନଭାଗକୁ ବିଦୀର୍ଣ୍ଣ କରିପକାଇଲେ । ଶଂଖଦତ୍ତ ଓ ଭୀମଭଟ୍ଟ ଅସ୍ତ୍ର ସାହାଯ୍ୟରେ ସିଂହ ଓ ତା'ର ଶାବକମାନଙ୍କୁ ଆକ୍ରମଣ କରି ବଧ କଲେ, କିନ୍ତୁ ଅଶ୍ୱ ଦୁଇଟିକୁ ରକ୍ଷା କରିପାରିଲେ ନାହିଁ । ଅଶ୍ୱ ଦୁଇଟିର ଅନ୍ତନାଳୀ ସବୁ ବାହାରି ପଡ଼ିଥିବାଯୋଗୁଁ ସେହିଠାରେ ହିଁ ସେମାନେ ମୃତ୍ୟୁବରଣ କଲେ ।

ଭୀମଭଟ୍ଟଙ୍କର ଦୁଃଖ ସୀମା ଟପିଗଲା । ସେ ବିକଳ ଭାବେ ଶଂଖଦତ୍ତଙ୍କୁ କହିଲେ, 'ମିତ୍ର, ବିରୋଧାଚରଣ କରୁଥିବା ଆତ୍ମୀୟ ସ୍ୱଜନମାନଙ୍କଠାରୁ ଆମେ କୌଶଳରେ ଚାଲିଆସିଲେ, କିନ୍ତୁ ଶତଚେଷ୍ଟା କରି ମଧ୍ୟ ଆମ ଅଶ୍ୱଦୁଇଟିର ଜୀବନହରଣ କରି ଆମକୁ ଦୁଃଖ ସାଗରରେ ଭସାଇ ଦେଇଥିବା ବିଧାତାଠାରୁ ଯିବା କୁଆଡ଼େ ? ଯେଉଁ ଅଶ୍ୱପାଇଁ

ଆମେ ରାଜ୍ୟ ତ୍ୟାଗକଲେ ସେ ତ ମରିଗଲା । ଆମେ ଏବେ ରାତ୍ରିର ଅନ୍ଧକାର ମଧ୍ୟରେ ଶରବଣ ଭିତରେ ଚାଲିଚାଲି ଯିବା କିପରି ?'

ମିତ୍ରଠାରୁ ଏହାଶୁଣି ବୀର ଶଂଖଦତ୍ତ ସାନ୍ତ୍ୱନା ଦେଇ କହିଲେ, 'ଏହା କୋଉ ନୂଆକଥା । ବିଧାତା ଯେତେବେଳେ ପ୍ରତିକୂଳ ହୁଏ, ସେତେବେଳେ ସେ ମନୁଷ୍ୟର ପୌରୁଷକୁ ଜୟ କରିବାପାଇଁ ଚେଷ୍ଟାକରେ । ଏହା ତା'ର ସ୍ୱଭାବ । ଧୈର୍ଯ୍ୟ ଦ୍ୱାରାହିଁ ବିଧାତାକୁ ପରାଭୂତ କରିବା ସମ୍ଭବ । ବାତ୍ୟା ଯେପରି ପର୍ବତର କିଛି ଅନିଷ୍ଟ କରିପାରେ ନାହିଁ ସେହିପରି ଧୈର୍ଯ୍ୟଶୀଳ, ଅକଂପିତ ତଥା ଦୃଢ଼ବ୍ରତ ପୁରୁଷମାନଙ୍କର କ୍ଷତି କରିବା ବିଧାତା ପକ୍ଷରେ ସମ୍ଭବପର ହୁଏ ନାହିଁ । ଏଣୁ, ମିତ୍ର, ଆସ ଆମେ ଧୈର୍ଯ୍ୟରୂପକ ଅଶ୍ୱ ଆରୋହଣ କରି ଏଠାରୁ ଯିବାପାଇଁ ଉଦ୍ୟମ କରିବା ।' ଶଙ୍ଖଦତ୍ତଙ୍କ ଧୀର ପ୍ରଶାନ୍ତ ବାକ୍ୟରେ ସମ୍ମୋହିତ ହୋଇ ଭୀମଭଟ୍ଟ ତାଙ୍କ ସହିତ ଅଗ୍ରସର ହେଲେ ।

ଧୀରେ ଧୀରେ ସେମାନେ ସେହି ଶରବଣକୁ ଅତିକ୍ରମ କରିଗଲେ । କୁଶଗୁଡ଼ିକର ଧାରୁଆ ପତ୍ର ଓ ମୁନିଆ ମୂଳଦ୍ୱାରା ସେମାନଙ୍କ ପାଦ କ୍ଷତବିକ୍ଷତ ହୋଇପଡ଼ିଲା । ରାତ୍ରି ମଧ୍ୟ ଶେଷ ହେଲା । ଦିନନାଥ ସୂର୍ଯ୍ୟ ଉଦୟାଚଳରେ ଦୃଶ୍ୟମାନ ହେଲେ । ମାର୍ଗରେ ଥିବା ପୁଷ୍କରିଣୀଗୁଡ଼ିକରେ ପଦ୍ମସବୁ ବିକଶିତ ହୋଇଉଠିଲେ । ସେମାନଙ୍କ ଚତୁର୍ଦ୍ଦିଗରେ ଗୁଞ୍ଜରଣ କରୁଥିବା ଭ୍ରମରମାନେ ସତେ ଯେପରି ଏମାନଙ୍କୁ କହୁଥିଲେ, 'ଯାହାହେଉ, ସିଂହ, ବ୍ୟାଘ୍ର ପ୍ରଭୃତି ହିଂସ୍ରଜନ୍ତୁ ପୂର୍ଣ୍ଣ ଅରଣ୍ୟଟିକୁ ପାର କରିଗଲ ।'

ଚାଲିଚାଲି ଭୀମଭଟ୍ଟ ମିତ୍ର ଶଂଖଦତ୍ତଙ୍କ ସହିତ ଗଙ୍ଗାତଟରେ ଆସି ପହଞ୍ଚିଲେ । ଭଗବାନ ଶଙ୍କରଙ୍କ ଜଟାସ୍ଥିତ ଚନ୍ଦ୍ରମାକୁ ସ୍ପର୍ଶ କରିଆସୁଥିବା ଅମୃତ ତୁଲ୍ୟ ସ୍ୱାଦିଷ୍ଟ ଓ ଶୀତଳ ଗଙ୍ଗାଜଳରେ ସ୍ନାନକରି ସେଠାରେ ସେମାନେ ବିଶ୍ରାମ ନେଲେ । ମାର୍ଗରେ ଆସିଲାବେଳେ ଶଂଖଦତ୍ତ ଜଣେ ବ୍ୟାଧଠାରୁ କିଛି ମୃଗମାଂସ କିଣି ଆଣିଥିଲେ । ସେହି ପୋଡ଼ା ମାଂସରେ ସେମାନଙ୍କର କ୍ଷୁଧା ନିବାରିତ ହେଲା ।

ଗଙ୍ଗା ସେତେବେଳେ କୂଳପ୍ଲାବନ କରି ପ୍ରବାହିତ ହେଉଥାନ୍ତି । ତାଙ୍କୁ ଲଙ୍ଘନ କରିବା ସମ୍ଭବ ନଥିଲା । ଉଚ୍ଛଳିତ ତରଙ୍ଗଦ୍ୱାରା ସେ ଯେପରି ଜଳମଧ୍ୟରେ ପ୍ରବେଶ କରିବାପାଇଁ ପଥିକମାନଙ୍କୁ ବାରଣ କରୁଥିଲେ । ଗଙ୍ଗାର ତୀରଭୂମି ବହୁ ତପସ୍ୱୀଙ୍କ ଆଶ୍ରମରେ ପରିପୂର୍ଣ୍ଣ । ଉଭୟ ମିତ୍ର ସେସବୁ ଆଶ୍ରମ ଦେଖି ବୁଲୁଥିବା ବେଳେ ଏକ ନିର୍ଜନ ସ୍ଥାନରେ ଆସି ପହଞ୍ଚିଲେ । ସେଠାରେ ଥିବା ଏକ କ୍ଷୁଦ୍ର କୁଟୀର ମଧ୍ୟରେ ଜଣେ ବ୍ରାହ୍ମଣ ପୁତ୍ର ସ୍ୱାଧ୍ୟାୟରେ ନିମଗ୍ନ ଥାନ୍ତି । ଭୀମଭଟ୍ଟ ନିକଟକୁ ଯାଇ ତାଙ୍କର ପରିଚୟ ଓ

ସେହିପରି ନିର୍ଜନ ସ୍ଥାନରେ ଜୀବନ କଟାଉଥିବାର କାରଣ ଜିଜ୍ଞାସା କଲେ । ଉତ୍ତରରେ ବ୍ରାହ୍ମଣ ଯୁବକ କହିଲେ–

'ମୁଁ କାଶୀଧାମରେ ବାସକରୁଥିବା ବ୍ରାହ୍ମଣ ଶ୍ରୀକଣ୍ଠଙ୍କ ପୁତ୍ର ନୀଳକଣ୍ଠ । ଶୈଶବରେ ପିତା ମୋର ସମସ୍ତ ସଂସ୍କାର ଅନୁଷ୍ଠାନ କରି ଅଧ୍ୟୟନ ପାଇଁ ଗୁରୁକୁଳକୁ ପଠାଇଦେଲେ । ମୁଁ ସେଠାରେ ସମସ୍ତ ବିଦ୍ୟା ଆୟତ୍ତ କରି ଗୃହକୁ ଫେରିଲା ବେଳକୁ ମୋର ସମସ୍ତ ଆତ୍ମୀୟସ୍ୱଜନ ମୃତ୍ୟୁବରଣ କରିଥାନ୍ତି । ଏହା ଫଳରେ ମୁଁ ନିଃସ୍ୱ ଓ ଅନାଥ ହୋଇପଡ଼ିଲି । ଗୃହସ୍ଥାଶ୍ରମରେ ପ୍ରବେଶ କରିବା ମୋ ପକ୍ଷରେ ସମ୍ଭବ ନଥିଲା । ଶୋକାକୁଳ ଚିତ୍ତରେ ମୁଁ ଏହି ନିର୍ଜନ ସ୍ଥାନକୁ ଚାଲିଆସି ତପସ୍ୟା କରିବାକୁ ଲାଗିଲି । ଦିନେ ଦେବୀ ଗଙ୍ଗା ମୋ ପ୍ରତି ଦୟାର୍ଦ୍ର ହୋଇ ସ୍ୱପ୍ନରେ ମୋତେ ଗୋଟିଏ ଫଳ ପ୍ରଦାନ କଲେ ଏବଂ ମନୋରଥ ସିଦ୍ଧ ନହେବା ପର୍ଯ୍ୟନ୍ତ ଏହିପରି ଫଳ ଭକ୍ଷଣ କରି ଏଠାରେ ତପଶ୍ଚରଣ କରିବାପାଇଁ ନିର୍ଦ୍ଦେଶ ଦେଲେ ।

ସ୍ୱପ୍ନ ନିର୍ଦ୍ଦେଶ ପାଇ ମୋର ନିଦ୍ରାଭଙ୍ଗ ହେଲା । ରାତ୍ରି ଶେଷ ହୋଇ ଆସୁଥିବାରୁ ମୁଁ ଯାଇ ଗଙ୍ଗାସ୍ନାନ କଲି । ସେଠାରେ କେତେଗୁଡ଼ିଏ ଫଳ ଭାସି ଆସୁଥିବା ମୋର ଦୃଷ୍ଟିଗୋଚର ହେଲା । ସେହି ଅମୃତ ତୁଲ୍ୟ ସ୍ୱାଦିଷ୍ଟ ଫଳଗୁଡ଼ିକୁ ସଂଗ୍ରହ କରିଆଣି କୁଟୀରରେ ଭୋଜନ କଲି । ସେହିଦିନଠାରୁ ପ୍ରତିଦିନ ଏହିପରି ଗଙ୍ଗାରୁ ପ୍ରାପ୍ତ ଫଳ ଆହାର କରି ଏଠାରେ ରହି ତପସ୍ୟା କରୁଛି ।'

ବ୍ରାହ୍ମଣ ଯୁବକଙ୍କ କଥାରେ ପ୍ରୀତ ହୋଇ ଭୀମଭଟ୍ଟ ଶଂଖଦତ୍ତଙ୍କୁ ଲକ୍ଷ୍ୟ କରି କହିଲେ, 'ମିତ୍ର, ଏହି ବ୍ରାହ୍ମଣ ଯୁବକ ଅତ୍ୟନ୍ତ ଗୁଣବାନ୍ ଏବଂ ବିଦ୍ୱାନ୍ ବୋଲି ମନେହେଉଛନ୍ତି । ଗୃହସ୍ଥାଶ୍ରମ ନିର୍ବହଣ କରିବାପାଇଁ ମୁଁ ତାଙ୍କୁ କିଛି ଅର୍ଥ ଦାନ କରିବି ।' ଶଂଖଦତ୍ତ ଏଥିରେ ସମ୍ମତ ହେବାରୁ ସେ ମାତାଙ୍କ ଠାରୁ ପ୍ରାପ୍ତ ସମସ୍ତ ଧନରାଶି ବ୍ରାହ୍ମଣ ଯୁବକଙ୍କ ହସ୍ତରେ ସମର୍ପଣ କଲେ ।

ମହାପୁରୁଷମାନେ ପ୍ରବଳ ପରାକ୍ରମୀ ହେଲେ ମଧ୍ୟ ଅନ୍ୟର ଦୁଃଖ ଶୁଣି ଯଦି ସେହି ମୁହୂର୍ତ୍ତରେ ତା'ର ଦୁଃଖ ଦୂର ନକରନ୍ତି ତେବେ ସେମାନଙ୍କର ମହତ୍ତ୍ୱ କେଉଁଠି ?

**ଅଲ୍ପସ୍ତସତ୍ତ୍ୱକୋଷାଣାଂ ମହତ୍ତ୍ୱଂ ମହତାଂ ହି କିମ୍**
**ଆକର୍ଣିତାଂ ପରସ୍ୟାର୍ତ୍ତିଂ ନ ଚେଦ୍‌ଛିନ୍ଦନ୍ତି ତତ୍‌କ୍ଷଣମ୍ ।**

ବ୍ରାହ୍ମଣଙ୍କୁ କୃତାର୍ଥ କରି ଭୀମଭଟ୍ଟ ଗଙ୍ଗା ପାର କରିବାପାଇଁ ବିଭିନ୍ନ କୌଶଳ ଓ ପନ୍ଥା ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ ତାଙ୍କର ସମସ୍ତ ପ୍ରୟାଶ ବ୍ୟର୍ଥ ହେଲା । ଶେଷରେ ସେ ନିଜର କୃପାଣ ଓ ଧନରାଶିକୁ ମସ୍ତକ ଉପରେ ବାନ୍ଧିଦେଇ ମିତ୍ରଙ୍କ ସହିତ ଗଙ୍ଗାଗର୍ଭକୁ ଓହ୍ଲାଇଗଲେ । ନଦୀର ମଧ୍ୟଭାଗରେ ଗଙ୍ଗାର ସ୍ରୋତ ଅତ୍ୟନ୍ତ ପ୍ରଖର ଥିଲା । ଶଂଖଦତ୍ତ ତାକୁ ଅତିକ୍ରମ କରିନପାରି ସ୍ରୋତରେ ଭାସିଗଲେ । କିନ୍ତୁ ରାଜକୁମାର ଭୀମଭଟ୍ଟ କୌଣସିମତେ ଲହରୀଦ୍ୱାରା ବିତାଡ଼ିତ ହୋଇ କୂଳରେ ଆସି ପହଞ୍ଚିଲେ । ନିକଟରେ ଶଂଖଦତ୍ତଙ୍କୁ ନ ଦେଖି ତାଙ୍କର ଚିନ୍ତା ବଢ଼ିଗଲା । ସେ ଚତୁର୍ଦ୍ଦିଗ ମିତ୍ରଙ୍କର ଅନୁସନ୍ଧାନ କରୁଥିବା ବେଳେ ସୂର୍ଯ୍ୟ ଅସ୍ତ ଗଲେ ।

ରାତ୍ରି ବଢ଼ିବାକୁ ଲାଗିଲା । କୌଣସି ଦିଗରୁ ଶଂଖଦତ୍ତଙ୍କ ସନ୍ଧାନ ମିଳିଲା ନାହିଁ । ନିରାଶ ଓ ଦୁଃଖିତ ଭୀମଭଟ୍ଟ ଗଙ୍ଗାସ୍ରୋତରେ ଆତ୍ମବିସର୍ଜନ ପାଇଁ ଉଦ୍ୟତ ହେଲେ । ଗଙ୍ଗାଙ୍କୁ ପ୍ରାର୍ଥନା କରି କହିଲେ, 'ମା ଗଙ୍ଗା, ତୁମେ ମୋର ପ୍ରାଣ ତୁଲ୍ୟ ମିତ୍ରଙ୍କୁ ହରଣ କରିନେଲ । ବର୍ତ୍ତମାନ ମୋର ଏହି ଶୂନ୍ୟ ଶରୀରକୁ ଗ୍ରହଣ କରି ସନ୍ତୁଷ୍ଟ ହୁଅ ।' ଏହିପରି ପ୍ରାର୍ଥନା କରି ଲମ୍ଫ ପ୍ରଦାନ କରୁଥିବାବେଳେ ଗଙ୍ଗା ସ୍ୱଶରୀରରେ ଆବିର୍ଭୂତା ହୋଇ ଭୀମଭଟ୍ଟଙ୍କୁ କହିଲେ, 'ପୁତ୍ର, ଏପରି ଦୁଃସାହସ କରନାହିଁ । ତୋର ମିତ୍ର ଜୀବିତ ଅଛି । ଅତିଶୀଘ୍ର ତା' ସହିତ ତୋର ମିଳନ ହେବ । ତୁ ମୋଠାରୁ ପ୍ରତିଲୋମ ଓ ଅନୁଲୋମ ବିଦ୍ୟା ଗ୍ରହଣ କର । ଅନୁଲୋମ ପାଠ କଲେ ତୁ ଅନ୍ୟମାନଙ୍କ ସମ୍ମୁଖରୁ ଅଦୃଶ୍ୟ ହୋଇଯିବୁ ଏବଂ ପ୍ରତିଲୋମ ପାଠ କଲେ ଇଚ୍ଛାନୁରୂପ ବେଶ ଧାରଣ କରିପାରିବୁ । ଏହି ସପ୍ତାକ୍ଷରୀ ବିଦ୍ୟାଦ୍ୱାରା ତୁ ସମଗ୍ର ପୃଥିବୀରେ ଚକ୍ରବର୍ତ୍ତୀ ସମ୍ରାଟ ହୋଇପାରିବୁ ।'

ଏହା କହି ଏବଂ ଉଭୟ ବିଦ୍ୟା ପ୍ରଦାନ କରି ଦେବୀ ଗଙ୍ଗା ନିଜ ସ୍ରୋତ ମଧ୍ୟରେ ଅଦୃଶ୍ୟ ହୋଇଗଲେ । ମିତ୍ର ସହିତ ପୁନର୍ମିଳନର ଆଶା ଥିବାରୁ ଭୀମଭଟ୍ଟ ମଧ୍ୟ ଆତ୍ମବିସର୍ଜନର ସଂକଳ୍ପ ତ୍ୟାଗ କଲେ । ମିତ୍ର (ସୂର୍ଯ୍ୟ) ବିରହରେ ରଜନୀ ପରି ମିତ୍ର ଶଂଖଦତ୍ତ ବିରହରେ ସେ ରାତିଟି କଟିଗଲା । ପରଦିନ ସେ ପୁଣି ମିତ୍ରଙ୍କ ଅନୁସନ୍ଧାନରେ ବାହାରିଲେ । ବହୁ ସ୍ଥାନ ଭ୍ରମଣ କରି ସେ ଏକାକୀ ଗୁଜରାଟ୍ ନାମକ ଏକ ଦେଶରେ ଆସି ପହଞ୍ଚିଲେ । ସେଠାରେ ନାଗରିକମାନେ ବିଭିନ୍ନ ବର୍ଗରେ ବିଭକ୍ତ ଥିଲେ ସୁଦ୍ଧା ସେମାନଙ୍କ ଜୀବନଯାପନ ପ୍ରଣାଳୀ ଅତ୍ୟନ୍ତ ଉନ୍ନତ ଥିଲା । ସେମାନେ ବିଭିନ୍ନ କଳାର ଭଣ୍ଡାର ଥିଲେ ମଧ୍ୟ ଦୋଷାକର (କଳାକର ବା ଚନ୍ଦ୍ର) ଶବ୍ଦର ଭାଗୀ ନଥିଲେ । ଭୀମଭଟ୍ଟ ଏହି ନଗରରେ ଥିବା ଦେବମନ୍ଦିରଗୁଡ଼ିକ ଦର୍ଶନ କରି ଶେଷରେ ଏକ ଦ୍ୟୁତଶାଳାରେ

ଆସି ପହଞ୍ଚିଲେ । ସେଠାରେ କିଛି ଯୁବକ ଜୁଆ ଖେଳିବାରେ ଉନ୍ମତ୍ତ ଥାନ୍ତି । ସେମାନେ କଟିଦେଶରେ ଖଣ୍ଡିଏ ମାତ୍ର ବସ୍ତ୍ର ପରିଧାନ କରିଥିଲେ ସୁଦ୍ଧା ସେମାନଙ୍କ ସୁନ୍ଦର, ସୁଦୃଢ଼ ଏବଂ ସୁପୁଷ୍ଟ ଅଙ୍ଗ ସୌନ୍ଦର୍ଯ୍ୟ ଦେଖିଲେ ମନେହେଉଥିଲା ସେମାନେ ପ୍ରତିଦିନ ବ୍ୟାୟାମ କରି ଆନନ୍ଦମୟ ଜୀବନଯାପନ କରୁଛନ୍ତି । ପୁଣି ସେମାନଙ୍କ ଆଚରଣ ଏବଂ କ୍ରୀଡ଼ାକୌଶଳ ଦେଖିଲେ ସେମାନେ ବିତ୍ତଶାଳୀ ବୋଲି ମନେହେଉଥିଲେ । ଧନରାଶିକୁ ଗୁପ୍ତ ରଖି ଅର୍ଥ ଉପାର୍ଜ୍ଜନ ପାଇଁ ସେମାନେ ଜୁଆ ଖେଳୁଥିବା ମନେ ହେଉଥିଲା ।

ଦ୍ୟୁତଶାଳାରେ ପ୍ରବେଶ କରି ଖେଳୁଥିବା ବ୍ୟକ୍ତିମାନଙ୍କ ସହିତ ଆଳାପ ଆଲୋଚନା ପରେ ଭୀମଭଟ୍ଟ ସେମାନଙ୍କ ସହିତ ଜୁଆ ଖେଳିବାପାଇଁ ବସିଗଲେ । ସେମାନେ ବିଭିନ୍ନ ଅଳଙ୍କାର ବିଭୂଷିତ ଗୋଟିଏ ଉତ୍ତମ ଶିକାର ଜୁଟିଥିବା ଯୋଗୁଁ ଆନନ୍ଦରେ ତାଙ୍କୁ ସ୍ୱାଗତ କଲେ, କିନ୍ତୁ ସେମାନଙ୍କର ଆଶା ବ୍ୟର୍ଥ ହେଲା । ଅନ୍ୟମାନଙ୍କୁ ପ୍ରବଞ୍ଚିତ କରି ସେହି ଦ୍ୟୁତବିଳାସୀ ଯୁବକମାନେ ଯେଉଁ ଅର୍ଥ ଉପାର୍ଜ୍ଜନ କରିଥିଲେ ଭୀମଭଟ୍ଟ ପଣ ମାଧ୍ୟମରେ ସେସବୁ ଜିଣିନେଲେ । ସେମାନେ ସର୍ବସ୍ୱାନ୍ତ ହୋଇ ଯେତେବେଳେ ଘରକୁ ବାହାରିଲେ ସେତେବେଳେ ଭୀମଭଟ୍ଟ ଦ୍ୱାର ନିକଟରେ ତାଙ୍କର ପଥରୋଧ କରି କହିଲେ, 'ତୁମେ ସବୁ ଯାଉଛ କୁଆଡ଼େ ? ଏହି ଧନସମ୍ପତ୍ତି ସବୁ ତମେ ନେଇଯାଅ । ମୁଁ ଏସବୁକୁ ନେଇ କ'ଣ କରିବି ? ଏଗୁଡ଼ିକୁ ନେଇ ମୁଁ ମୋର ମିତ୍ରମାନଙ୍କୁ ଅର୍ପଣ କରିବି । ତମେମାନେ କ'ଣ ମୋର ମିତ୍ର ନୁହଁ କି ? ତୁମ ଅନୁରୂପ ଅନୁକୂଳ ମିତ୍ର ମୋତେ ଆଉ କେଉଁଠୁ ମିଳିବ ?' ଭୀମଭଟ୍ଟ ଏହା କହିବା ସତ୍ତ୍ୱେ ସେମାନେ ଲଜ୍ଜାବଶତଃ ହାରିଯାଇଥିବା ଧନରାଶି ଗ୍ରହଣ କଲେନାହିଁ ।

ସେମାନଙ୍କ ମଧ୍ୟରେ ଅକ୍ଷକ୍ଷପଣକ ନାମରେ ଜଣେ ଦ୍ୟୁତବିଳାସୀ ଥାନ୍ତି । ସେ କହିଲେ, 'ଦ୍ୟୁତକ୍ରୀଡ଼ାର ନୀତି ହେଲା ଜିଣିଥିବା ଧନରାଶିକୁ ଫେରସ୍ତ ଦିଆଯିବ ନାହିଁ । ତେଣୁ ଆମେ ଏପ୍ରକାର ନୀତିବିରୁଦ୍ଧ କାର୍ଯ୍ୟ କରିବାପାଇଁ ପ୍ରସ୍ତୁତ ନୋହୁ । ତଥାପି ଆମ୍ଭମାନଙ୍କ ସହିତ ମିତ୍ରତା କରି ଯଦି ସେ ସ୍ୱଇଚ୍ଛାରେ ଆମେ ହାରିଯାଇଥିବା ଅର୍ଥ ଫେରାଇ ଦେବାପାଇଁ ଚାହୁଁଛନ୍ତି ତେବେ ଆମେ ଏସବୁ ଗ୍ରହଣ କରିବାରେ ଅସୁବିଧା କିଛି ନାହିଁ ।' ଏଥିରେ ଅନ୍ୟମାନେ ଦ୍ୱିଧାଗ୍ରସ୍ତଭାବେ ସମ୍ମତ ହୋଇ କହିଲେ ଯେ ଭୀମଭଟ୍ଟ ଯଦି ସେମାନଙ୍କର ଚିରନ୍ତନ ମିତ୍ର ହୋଇ ରହନ୍ତି ତେବେ ତାଙ୍କଠାରୁ ଅର୍ଥ ଗ୍ରହଣ କରାଯାଇପାରିବ । ଭୀମଭଟ୍ଟ ସେମାନଙ୍କ ଆଚରଣ ଓ ଉକ୍ତିରୁ ଜାଣିପାରିଲେ ଯେ ସେମାନେ କେବଳ ଦ୍ୟୁତବିଳାସୀ ନୁହଁନ୍ତି କିନ୍ତୁ ସଜ୍ଜନ, ବୀର, ନୀତିବାନ୍ ଏବଂ ସହୃଦୟ

ମଧ୍ୟ । ତେଣୁ ଶାଶ୍ୱତମିତ୍ରତା ପାଇଁ ସେ ସ୍ୱୀକୃତ ହେଲେ ଏବଂ ଜିଣିଥିବା ସମସ୍ତ ଧନରାଶି ସେମାନଙ୍କୁ ପ୍ରତ୍ୟର୍ପଣ କଲେ ।

ମିତ୍ରମାନଙ୍କ ଅନୁରୋଧରେ ଭୀମଭଟ୍ଟ ଗୁଜରାଟର ଅନ୍ୟ କୌଣସି ସ୍ଥାନରେ ନରହି ସେମାନଙ୍କ ବାସଭବନରେ ଯାଇ ଆତିଥ୍ୟ ସ୍ୱୀକାର କଲେ । ଦିନେ ସେ ମିତ୍ର ଓ ସେମାନଙ୍କ ଆତ୍ମୀୟସ୍ୱଜନମାନଙ୍କ ସହିତ ଉପବନ ବିହାରରେ ଯାଇଥାନ୍ତି । ସେଠାରେ ସେମାନେ ଆଣିଥିବା ପାନଭୋଜନର ଉପଯୋଗ କରାଗଲା । ସେମାନଙ୍କ ଆଗ୍ରହ କ୍ରମେ ରାଜକୁମାର ନିଜର ପରିଚୟ ଓ ସମଗ୍ର ଜୀବନ ବୃତ୍ତାନ୍ତ କହି ଶୁଣାଇଲେ । ସେ ମଧ୍ୟ ମିତ୍ରମାନଙ୍କ ସମ୍ପର୍କରେ ଜାଣିବାପାଇଁ ଚାହିଁବାରୁ ପ୍ରଥମେ ଅକ୍ଷକ୍ଷପଣକ ନିଜର ଆତ୍ମକାହାଣୀ ଶୁଣାଇବା ଆରମ୍ଭ କଲେ—

## ଅକ୍ଷକ୍ଷପଣକ କଥା

ହସ୍ତିନାପୁରରେ ଶିବଦତ୍ତ ନାମକ ଜଣେ ବ୍ରାହ୍ମଣ ରହୁଥିଲେ । ମୁଁ ସେହି ମହାଧନଶାଳୀ ବ୍ରାହ୍ମଣଙ୍କ ପୁତ୍ର ବସୁଦତ୍ତ । ଶୈଶବରେ ମୁଁ ଉଭୟ ଶସ୍ତ୍ରବିଦ୍ୟା ଓ ଶାସ୍ତ୍ରବିଦ୍ୟା ଆୟତ୍ତ କରିଥିଲି । ଯୌବନରେ ପିତା ଜଣେ କୁଳୀନା କନ୍ୟା ସହିତ ମୋର ବିବାହ ସମ୍ପନ୍ନ କରିଦେଇଥିଲେ । ମୋର ମା' ବଡ଼ କର୍କଶ ଏବଂ ଅତ୍ୟନ୍ତ କ୍ରୋଧୀ । ତାଙ୍କୁ ଶାନ୍ତ କରିବା ଅସମ୍ଭବ ଥିଲା । ସେ ପିତାଙ୍କୁ ଏପରି ବିରକ୍ତ କରିଦେଉଥିଲା ଯେ ମୋର ବିବାହ ପରେ ପିତା ଦିନେ ଅତର୍କିତ ଭାବରେ ଗୃହତ୍ୟାଗ କରି ଚାଲିଗଲେ । ଏଥିରେ ମୋ ମନରେ ବଡ଼ ଭୟ ଜାତ ହେଲା । ମା'ଙ୍କୁ ସବୁବେଳେ ସନ୍ତୁଷ୍ଟ ରଖିବା ପାଇଁ ମୁଁ ମୋ ସ୍ତ୍ରୀକୁ ପ୍ରବର୍ତ୍ତାଇଲି । ସେ ମଧ୍ୟ ଭୟରେ ମା'ଙ୍କର ମନନେବାପାଇଁ ଚେଷ୍ଟା କରୁଥାଏ । କିନ୍ତୁ ସର୍ବଦା କଳହରେ ଆନନ୍ଦ ପାଉଥିବା ମୋର ମା' ଏଥିରେ ସନ୍ତୁଷ୍ଟ ହେଲାନାହିଁ । ପତ୍ନୀ ଚୁପ୍ ରହିଲେ ସେ ତାକୁ ଅବଜ୍ଞା ବୋଲି ଗ୍ରହଣ କରେ; ନମ୍ର ଓ ଦୀନହୀନ କଥାବାର୍ତ୍ତାକୁ ଛଳନା ଏବଂ ବୁଝାଇସୁଝାଇ କହିବାକୁ କଳହ ବୋଲି ମନେକରେ । ବାସ୍ତବରେ ଅଗ୍ନିର ଦହନୀୟତାକୁ କେହି ଦୂର କରିପାରିବ ନାହିଁ । ତା'ର ଏହି ବ୍ୟବହାରରେ ଅତିଷ୍ଠ ହୋଇ ଦିନେ ପତ୍ନୀ ମଧ୍ୟ ଗୃହତ୍ୟାଗ ପୂର୍ବକ କେଉଁଆଡ଼େ ପଳାୟନ କଲା । ଏଥିରେ ଉଦ୍‌ବିଗ୍ନ ହୋଇ ମୁଁ ମଧ୍ୟ ଘରଛାଡ଼ି ଚାଲିଯିବାପାଇଁ ଚିନ୍ତା କରୁଥିବା ବେଳେ ମୋର ଦୁରାତ୍ମା ଆତ୍ମୀୟ ସ୍ୱଜନମାନେ ପୁଣି ମୋତେ ବିବାହ କରାଇଦେଲେ । କିନ୍ତୁ ମା'ର ବ୍ୟବହାର ସହ୍ୟ କରିନପାରି ଦ୍ୱିତୀୟା ପତ୍ନୀ ମଧ୍ୟ ଆତ୍ମହତ୍ୟା କଲା ।

ଏଥିରେ ମୋର ଗଭୀର ମନୋବେଦନା ଜାତହେଲା । ମୁଁ ଗୃହତ୍ୟାଗ କରିବାପାଇଁ ପ୍ରସ୍ତୁତ ହେଲି । କିନ୍ତୁ ସେହି ଆତ୍ମୀୟସ୍ୱଜନମାନେ ପୁଣି ମୋତେ ବାଧାଦେଲେ । ମୁଁ ସେମାନଙ୍କ ନିକଟରେ ମା'ର କ୍ରୂରତାର କଥା କହିଲି । ପିତା ଗୃହତ୍ୟାଗ କରିଯିବାର କାରଣ ମଧ୍ୟ ମା' ବୋଲି କହିବାରୁ ସେମାନେ ତାକୁ ବିଶ୍ୱାସ କଲେ ନାହିଁ । ତେଣୁ ମୁଁ ଗୋଟିଏ କୌଶଳ ଅବଲମ୍ବନ କଲି ।

କାଠ ଓ କନାରେ ଗୋଟିଏ ସ୍ତ୍ରୀର ପିତୁଳା ପ୍ରସ୍ତୁତ କରି ଏକାନ୍ତରେ ତା' ସହିତ ବିବାହ କରିବାର ଛଳନା କଲି । ଏହି ତୃତୀୟ ବିବାହ କଥା ମା' ଓ ବନ୍ଧୁ ସ୍ୱଜନମାନଙ୍କ ମଧ୍ୟରେ ପ୍ରଚାରିତ ହେଲା । ପିତୁଳାଟିକୁ ଘର ବାହାରେ ଥିବା ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ମଧ୍ୟରେ ରଖି ଜଣେ ବିଶ୍ୱସ୍ତା ପରିଚାରିକାକୁ ତା'ର ଦେଖାଶୁଣା କରିବାପାଇଁ ନିଯୁକ୍ତି ଦେଲି । ପିତୁଳାଟି ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ମଧ୍ୟରେ ରହୁଥିବା ଯୋଗୁଁ ପରିଚାରିକାଟିର ଅଭିନୟ କେହି ଧରିପାରୁନଥିଲେ । ମା'ଙ୍କୁ ମଧ୍ୟ କହଲି, 'ତୁମେ ମୋ ସହିତ ଗୋଟିଏ ଅଲଗା ପ୍ରକୋଷ୍ଠରେ ରହ । ତୁମେ ମୋ ସ୍ତ୍ରୀ ରହୁଥିବା କୋଠରିକୁ ଯିବ ନାହିଁ କି ସେ ମଧ୍ୟ ଏଠାକୁ ଆସିବ ନାହିଁ । ବର୍ତ୍ତମାନ ତା'ର ବୟସ ଅତି ଅଳ୍ପ । ତୁମର ସେବା ଶୁଶ୍ରୂଷା କରିବାର ଯୋଗ୍ୟତା ବା ସାମର୍ଥ୍ୟ ତା'ର ନାହିଁ ।' ମା' ଏଥିରେ ରାଜିହେଲେ ।

ଏହିପରି କିଛିଦିନ ବିତିଗଲା । ବୋହୂକୁ ଦେଖିବାପାଇଁ ସେ ବହୁବାର ଚେଷ୍ଟାକରି ସୁଦ୍ଧା କୋଠରି ବାହାରେ ତାଲା ପଡ଼ିଥିବାରୁ ଦେଖିପାରନ୍ତି ନାହିଁ । କିନ୍ତୁ ସେହି ମିଥ୍ୟା ବୋହୂ ସହିତ କଳହ କରିବାର ଇଚ୍ଛା ସେ ଦମନ କରିପାରୁ ନଥିଲେ । ଦିନେ ଗୋଟିଏ ପଥର ସାହାଯ୍ୟରେ ନିଜ ମୁଣ୍ଡକୁ ରକ୍ତାକ୍ତ କରି ସେ ଘର ବାହାରକୁ ଆସି ଚିତ୍କାର କରିବାକୁ ଲାଗିଲେ । ଆମର ଆତ୍ମୀୟସ୍ୱଜନମାନେ ତାଙ୍କର ଚିତ୍କାର ଶୁଣି ଦୌଡ଼ି ଆସିବାରୁ ସେ କ୍ରୋଧରେ ସେମାନଙ୍କୁ ବୁଝାଇଲେ ଯେ ତାଙ୍କ ବୋହୂ ଏ ଅବସ୍ଥା କରିଛି । ତେଣୁ ତା' ଦାଉରୁ ରକ୍ଷାପାଇବାପାଇଁ ମରିବା ଛଡ଼ା ତାଙ୍କର ଆଉ ଗତ୍ୟନ୍ତର ନାହିଁ । ଉପସ୍ଥିତ ସମସ୍ତେ ମା'ଙ୍କୁ ନେଇ ମୋ ନିକଟକୁ ଆସିଲେ । ମୁଁ ଧୀରସ୍ଥିର ଭାବେ ସମସ୍ତଙ୍କ ସହିତ ଯାଇ କୋଠରିର ଚାବି ଖୋଲିଲି । କୋଠରି ମଧ୍ୟରେ ବସ୍ତ୍ରାଳଙ୍କାର ବିଭୂଷିତା କାଠ ପିତୁଳିକୁ ଦେଖି ସେମାନଙ୍କର କ୍ରୋଧ ହଠାତ୍ ଶାନ୍ତ ହୋଇପଡ଼ିଲା । ସେମାନେ ମା'ର ପ୍ରକୃତ ସ୍ୱଭାବ ଜାଣିପାରିଲେ ଏବଂ ହସିହସି ଯିଏ ଯାହା ଘରକୁ ଫେରିଗଲେ ।

ଏ ସମସ୍ତ ଘଟଣାରୁ ମା' ପ୍ରତି ମୋର ସ୍ନେହ ଓ ମମତା ତୁଟିଗଲା । ମୁଁ ସେହି ମୁହୂର୍ତ୍ତରେ ଗୃହତ୍ୟାଗ କଲି । ସଂଯୋଗକ୍ରମେ ଏହି ଦ୍ୟୂତଶାଳାରେ ଆସି ପହଞ୍ଚିଛି ।

ଏଠାରେ ପାଞ୍ଚଜଣ ବ୍ୟକ୍ତି ଜୁଆ ଖେଳୁଥାନ୍ତି । ମୁଁ ମଧ୍ୟ ଏମାନଙ୍କ ସହିତ ଖେଳରେ ଯୋଗଦେଲି । ଆମର ସର୍ତ୍ତ ରହିଲା ଯେ ଯିଏ ହାରିବ ସେ ଜିଣିଥିବା ଲୋକର ଦାସ ହୋଇ ରହିବ । ଏମାନେ ସମସ୍ତେ ମୋଠାରୁ ହାରିଯିବା ଯୋଗୁଁ ମୋର ଦାସତ୍ୱ ସ୍ୱୀକାର କଲେ । କିନ୍ତୁ ଏମାନଙ୍କର ବୀରତ୍ୱ ଓ ଚାରିତ୍ରିକ ଗୁଣାବଳୀ ବର୍ତ୍ତମାନ ମୋତେ ଏମାନଙ୍କର ଦାସ କରିଦେଇଛି । ଏମାନଙ୍କ ସହିତ ରହି ମୁଁ ମୋର ଦୁଃଖକଷ୍ଟ ସବୁ ଭୁଲିସାରିଛି । ପରିସ୍ଥିତି ଅନୁଯାୟୀ ବର୍ତ୍ତମାନ ମୋର ନାମ ଅକ୍ଷକ୍ଷପଣକ ବୋଲି ଜାଣନ୍ତୁ । ଏମାନଙ୍କ ମଧ୍ୟରୁ ଏହି ଜଣକ ହେଉଛନ୍ତି ଚଣ୍ଡଭୂଜଙ୍ଗ, ଏବଂ ଇଏ ହେଉଛନ୍ତି ପାଂଶୁପଟ, ଏହାଙ୍କର ନାମ ଶ୍ମଶାନବେତାଳ, ତାଙ୍କ ନିକଟରେ ଅଛନ୍ତି କାଳବରାଟକ ଏବଂ ଏହି ଶେଷବନ୍ଧୁ ଜଣକ ହେଲେ ଶାରିପ୍ରସ୍ତର । ଏମାନେ ସମସ୍ତେ ସମାନଭାବରେ ପରାକ୍ରମଶାଳୀ ଏବଂ ବୀର । ସମସ୍ତେ ଉଚ୍ଚକୁଳରେ ଜନ୍ମଗ୍ରହଣ କରି ଏଠାରେ ନିଜକୁ ଗୁପ୍ତ ରଖିଛନ୍ତି । ଆମର ସୌଭାଗ୍ୟବଶତଃ ଆଜି ଆପଣଙ୍କ ସହିତ ଦେଖାହେଲା । ବର୍ତ୍ତମାନଠାରୁ ଆପଣ ହିଁ ଆମ୍ଭମାନଙ୍କର ପ୍ରଭୁ । ଆମେ ସମସ୍ତେ ଗୁଣର ପୂଜାରୀ । ସେଥିପାଇଁ ଆପଣଙ୍କୁ ଗୁଣବାନ ଜାଣି ହାରିଥିବା ଧନରାଶି ଆପଣଙ୍କଠାରୁ ଗ୍ରହଣ କରିଥିଲୁ ।

## ଶଙ୍ଖଦତ୍ତ କଥା

ଅକ୍ଷକ୍ଷପଣକ ଏହିପରି ନିଜର ପରିଚୟ ଦେବାପରେ ଅନ୍ୟ ପାଞ୍ଚଜଣ ମଧ୍ୟ କ୍ରମଶଃ ନିଜନିଜର ପରିଚୟ ଭୀମଭଟ୍ଟଙ୍କୁ ପ୍ରଦାନ କଲେ । ସେଥିରୁ ଭୀମଭଟ୍ଟ ଜାଣିପାରିଲେ ଯେ ତାଙ୍କର ଏହି ମିତ୍ରମାନେ ପ୍ରତ୍ୟେକେ ଜଣେଜଣେ ପ୍ରକୃଷ୍ଟ ବୀର ଏବଂ ସେମାନେ ଏଠାରେ ଆତ୍ମଗୋପନ କରି ରହିଛନ୍ତି । କେବଳ ଅର୍ଥ ଲାଭପାଇଁ ସେମାନଙ୍କର ଏହି ଦ୍ୟୂତକ୍ରୀଡ଼ା ନୁହେ । ସେମାନଙ୍କ ସହିତ ବିଭିନ୍ନ ବିଷୟରେ କଥାବାର୍ତ୍ତା, ହସଖୁସି କରି ଭୀମଭଟ୍ଟ ସେମାନଙ୍କ ଅନ୍ତରଙ୍ଗ ହେବା ବେଳେ ପୂର୍ବଦିଗର ଲଲାଟକୁ ରକ୍ତିମ ଆଭାରେ ବିଭୂଷଣ କରି ପୂର୍ଣ୍ଣଚନ୍ଦ୍ର ଦର୍ଶନ ଦେଲେ । ଉପବନର ବୃକ୍ଷଲତା ପକ୍ଷୀମାନଙ୍କର କାକଳିରେ ମୁଖରିତ ହୋଇଉଠିଲା । ରାଜକୁମାର ଭୀମଭଟ୍ଟ ଦ୍ୟୂତବିଳାସୀ ମିତ୍ରମାନଙ୍କ ସହିତ ଅକ୍ଷକ୍ଷପଣକଙ୍କ ଗୃହକୁ ଫେରିଆସିଲେ ।

ମିତ୍ରମାନଙ୍କ ସହିତ ଭୀମଭଟ୍ଟ ସେଠାରେ ଶଙ୍ଖଦତ୍ତଙ୍କ ପ୍ରତୀକ୍ଷା କରୁଥିବା ବେଳେ ବର୍ଷାଋତୁ ଆସି ପହଞ୍ଚିଲା । ମେଘ ଗର୍ଜନ ମାଧ୍ୟମରେ ସେ ଯେପରି ତାଙ୍କୁ ସାନ୍ତ୍ୱନା ଦେଇ କହୁଥିଲା ଯେ ନିକଟରେ ତାଙ୍କ ମିତ୍ର ଫେରିଆସିବେ ।

ସେମାନଙ୍କ ବାସଭବନର ଅଦୂରରେ ବିପାଶା ନଦୀ, ବର୍ଷାଜଳରେ କୂଳପ୍ଲାବନ କରି ସମୁଦ୍ର ପ୍ରତି ବହିଚାଲିଥାଏ । କିନ୍ତୁ ପୂର୍ଣ୍ଣିମା ରାତ୍ରିରେ ସମୁଦ୍ରର ଜୁଆର ଯୋଗୁଁ ନଦୀର ଜଳ ସେହିଦିନ ପ୍ରତିକୂଳ ଦିଗରେ ପ୍ରବାହିତ ହେଉଥିଲା । ଏହି ମହାପ୍ଲାବନ ନଦୀତଟର ବହୁଦୂର ପର୍ଯ୍ୟନ୍ତ ଭୂମିକୁ ଜଳାର୍ଣ୍ଣବ କରିଦେଇଥାଏ । ଭଟ୍ଟା ପଡ଼ିବାରୁ ନଦୀର ଜଳ ପୁଣି ପ୍ରବଳ ବେଗରେ ସମୁଦ୍ରପ୍ରତି ପ୍ରବାହିତ ହେଲା ।

ଏହି ଜଳାର୍ଣ୍ଣବ ମଧ୍ୟରେ ଏକ ବିରାଟକାୟ ମତ୍ସ୍ୟ ସମୁଦ୍ର ମଧ୍ୟରୁ ଉପରକୁ ଉଠିଆସିଥାଏ । କିନ୍ତୁ ତା'ର ଅତ୍ୟଧିକ ଓଜନ ଯୋଗୁଁ ନଦୀଜଳ ତାକୁ ପୁଣି ସମୁଦ୍ରକୁ ନେଇପାରିଲା ନାହିଁ । ତାହା ନଦୀକୂଳରେ ହିଁ ପଡ଼ିରହିଲା । ନଗରବାସୀମାନେ ତାକୁ ମାରିବାପାଇଁ ବିଭିନ୍ନ ଅସ୍ତ୍ରଶସ୍ତ୍ର ଧରି ଦୌଡ଼ିଲେ । ମତ୍ସ୍ୟଟିକୁ ମାରି ଯେତେବେଳେ ତାକୁ କଟାଗଲା ସେତେବେଳେ ତା'ର ପେଟ ଭିତରୁ ଜଣେ ବ୍ରାହ୍ମଣ ଯୁବକ ଜୀବିତାବସ୍ଥାରେ ଉଠି ଆସିଲେ । ଏହି ଅଦ୍ଭୁତ ଦୃଶ୍ୟ ଦର୍ଶକମାନଙ୍କ ମଧ୍ୟରେ କୋଳାହଳ ସୃଷ୍ଟି କଲା । ଭୀମଭଟ୍ଟ ମଧ୍ୟ ଏହି ଅପୂର୍ବ ଦୃଶ୍ୟ ଦେଖିବାପାଇଁ ମିତ୍ରମାନଙ୍କ ସହିତ ସେଠାରେ ପହଞ୍ଚିଲେ । ମତ୍ସ୍ୟ ଉଦରରୁ ବାହାରିଥିବା ବ୍ରାହ୍ମଣ ଯୁବକ ଯେ ଶଂଖଦତ୍ତ, ଏହାଦେଖି ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ଦୌଡ଼ିଯାଇ ତାଙ୍କୁ ଆଲିଙ୍ଗନ କଲେ । ମନେହେଲା ତାଙ୍କ ଚକ୍ଷୁରୁ ନିର୍ଗତ ଆନନ୍ଦାଶ୍ରୁ ଶଂଖଦତ୍ତଙ୍କ ଶରୀରରୁ ମତ୍ସ୍ୟ ଗନ୍ଧ ଦୂର କରିବାପାଇଁ ସ୍ନାନ କରାଉଛି । ଶଂଖଦତ୍ତ ମତ୍ସ୍ୟଗର୍ଭରୁ ରକ୍ଷାପାଇ ମିତ୍ରଙ୍କ ଦର୍ଶନଲାଭ କରିଥିବା ଯୋଗୁଁ ଆନନ୍ଦାତିଶଯ୍ୟରେ ଉତ୍‌ଫୁଲ୍ଲିତ ହୋଇଉଠିଲେ । ଭୀମଭଟ୍ଟ ଏବଂ ତାଙ୍କ ଅନ୍ୟାନ୍ୟ ମିତ୍ରମାନଙ୍କ କୌତୂହଳକୁ ଦମନ କରିବାକୁ ଯାଇ ସେ ନିଜର ଅନୁଭୂତି ବର୍ଣ୍ଣନା କରିବା ଆରମ୍ଭ କଲେ—

'ଯେତେବେଳେ ଗଙ୍ଗାର ପ୍ରବଳସ୍ରୋତ ଦ୍ୱାରା ମୁଁ ଆପଣଙ୍କଠାରୁ ବିଚ୍ଛିନ୍ନ ହୋଇପଡ଼ିଲି ସେତେବେଳେ ହଠାତ୍ ଗୋଟିଏ ବିରାଟକାୟ ମତ୍ସ୍ୟ ମୋତେ ଗିଳିଦେଲା । ତାର ଉଦରରୂପକ ବିଶାଳ ଭବନ ମଧ୍ୟରେ ମୁଁ ବହୁଦିନ ଧରି ରହିଗଲି । କ୍ଷୁଧା ଦୂର କରିବାପାଇଁ ମୁଁ ଛୁରୀକା ଦ୍ୱାରା ତା' ଗର୍ଭରୁ କିଛି ମାଂସକାଟି ପ୍ରତ୍ୟହ ଆହାର କରୁଥାଏ । ଭାଗ୍ୟବଶତଃ ବିଧାତା ସେ ମତ୍ସ୍ୟଟିକୁ ଆଣି ଏଠାରେ ଛାଡ଼ିଦେଲା । ଆପଣମାନେ ତା'ର ଉଦର ଚିରି ମୋତେ ବାହାର କରିଛନ୍ତି । ମୁଁ ଆଜି ଉଭୟ ମିତ୍ରଙ୍କୁ (ସୂର୍ଯ୍ୟ ଏବଂ ଭୀମଭଟ୍ଟ) ଏକ ସଙ୍ଗରେ ଦର୍ଶନ କରିଛି । ଏହାହିଁ ମୋର ବୃତ୍ତାନ୍ତ । ଆଉ ଅଧିକା କିଛି ମୁଁ ଜାଣେ ନାହିଁ ।'

ଶଂଖଦତ୍ତଙ୍କ କଥା ଶୁଣି ଉପସ୍ଥିତ ଲୋକମାନେ ଆଶ୍ଚର୍ଯ୍ୟର ସହ କଥାବାର୍ତ୍ତା ହେଲେ, 'କାହିଁ ଗଙ୍ଗାର ମାଛ, ମାଛର ମନୁଷ୍ୟ ଗିଳିବା, ସେ ମାଛ ପୁଣି ସମୁଦ୍ର ଗର୍ଭକୁ ଯିବା ଏବଂ ସେଠାରୁ ବିପାଶା ନଦୀରେ ପ୍ରବେଶ କରିବା ଏବଂ କାହିଁ ମୃତ ମତ୍ସ୍ୟ ଉଦରରୁ ଜୀବନ୍ତ ମନୁଷ୍ୟର ଆବିର୍ଭାବ ! ଅଦ୍ଭୁତକର୍ମା ବିଧାତାର ଗତି ପ୍ରକୃତରେ ଅଚିନ୍ତନୀୟ ।'

ଅକ୍ଷକ୍ଷପଣକ ପ୍ରଭୃତି ମିତ୍ରମାନଙ୍କ ସହିତ ଭୀମଭଟ୍ଟ ଶଙ୍ଖଦତ୍ତଙ୍କୁ ସଙ୍ଗରେ ଧରି ସ୍ୱବାସଭବନକୁ ଫେରିଆସିଲେ । ମତ୍ସ୍ୟଗର୍ଭରୁ ସଦ୍ୟ ବାହାରିଥିବା ଶଙ୍ଖଦତ୍ତଙ୍କର ଏହା ପୁନର୍ଜନ୍ମ ବୋଲି ମନେକରାଗଲା । ଭୀମଭଟ୍ଟ ତାଙ୍କୁ ବିଭିନ୍ନ ବେଶଭୂଷାରେ ଭୂଷିତ କରି ତାଙ୍କର ଜନ୍ମୋତ୍ସବ ପାଳନ କଲେ । ଶଙ୍ଖଦତ୍ତ ମଧ୍ୟ ରାଜକୁମାରଙ୍କ ମିତ୍ରମାନଙ୍କୁ ନିଜର ମିତ୍ରରୂପେ ଗ୍ରହଣ କରି ସେହି ନଗରରେ ବାସ କରିବାକୁ ଲାଗିଲେ ।

ବିଳାସବ୍ୟସନ ମଧ୍ୟରେ ମିତ୍ରମାନଙ୍କର କିଛିଦିନ କଟିଗଲା । ନାଗରାଜ ବାସୁକିଙ୍କ ଜନ୍ମତିଥି ଆସି ପଡ଼ିବାରୁ ନଗର ମଧ୍ୟରେ ବିରାଟ ଯାତ୍ରା ମହୋତ୍ସବର ଆୟୋଜନ କରାଗଲା । ମହୋତ୍ସବ ଦେଖିବାପାଇଁ ମିତ୍ରମାନଙ୍କ ସହିତ ଭୀମଭଟ୍ଟ ନାଗରାଜଙ୍କ ମନ୍ଦିରକୁ ଗଲେ । ନଗରର ପ୍ରସିଦ୍ଧ ବ୍ୟକ୍ତିମାନେ ସେଠାରେ ସମବେତ ହୋଇଥାନ୍ତି । ମନ୍ଦିର ମଧ୍ୟରେ ସର୍ପମାନଙ୍କର ଫଣା ତୁଲ୍ୟ ବହୁ ପୁଷ୍ପମାଲ୍ୟ ଶୋଭା ପାଉଥାଏ । ପୁଷ୍ପଗୁଡ଼ିକ ପାତାଳପୁରର ଭ୍ରମ ସୃଷ୍ଟି କରୁଥାନ୍ତି । ଭୀମଭଟ୍ଟ ନାଗରାଜ ବାସୁକିଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇଲେ ।

ଦର୍ଶନ ଶେଷକରି ଭୀମଭଟ୍ଟ ଦକ୍ଷିଣ ଦ୍ୱାର ଦେଇ ମନ୍ଦିର ବାହାରକୁ ଆସୁଥାଆନ୍ତି । ସମ୍ମୁଖରେ ଗୋଟିଏ ଜଳପୂର୍ଣ୍ଣ ହ୍ରଦ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସର୍ପମଣି ତୁଲ୍ୟ ରକ୍ତପଦ୍ମରେ ହ୍ରଦଟି ଶୋଭା ପାଉଥାଏ । ସର୍ପ ବିଷରୂପକ ଅଗ୍ନିର ଧୂମଶିଖା ପରି ନୀଳକଇଁ ସବୁ ହ୍ରଦ ମଧ୍ୟରେ ଆନ୍ଦୋଳିତ ହେଉଥାଆନ୍ତି । ବାୟୁ ହିଲ୍ଲୋଳରେ ବୃକ୍ଷଶାଖାରୁ ଝରିପଡୁଥିବା ପୁଷ୍ପଗୁଚ୍ଛଗୁଡ଼ିକୁ ଦେଖିଲେ ମନେହେଉଥିଲା ସତେ ଯେପରି ଜଡ଼ପ୍ରକୃତି ବାସୁକିଙ୍କର ଆରାଧନା କରୁଅଛି । ସେ ହ୍ରଦର ଶୋଭାରେ ବିମୁଗ୍ଧ ହୋଇଉଠିଲେ । ଭଗବତୀ ଲକ୍ଷ୍ମୀଙ୍କ ଜନ୍ମଦାତା ଏବଂ ଭଗବାନ ବିଷ୍ଣୁଙ୍କ ଆବାସସ୍ଥଳୀ କ୍ଷୀର ସମୁଦ୍ରର ଶୋଭା ମଧ୍ୟ ଏହା ଅପେକ୍ଷା ନ୍ୟୂନ ବୋଲି ତାଙ୍କର ମନେହେଲା । ସେ ଚିତ୍ରାର୍ପିତ ପରି କିଛି ସମୟ ସେଠାରେ ଅଟକିଗଲେ ।

ଏ ସମୟରେ ଲାଟ ଦେଶର ରାଜା ଚନ୍ଦ୍ରାଦିତ୍ୟଙ୍କ ଅପୂର୍ବ ସୁନ୍ଦରୀ କନ୍ୟା ମାତା କୁବଳୟାବଳୀଙ୍କ ସହିତ ସ୍ନାନ କରିବା ଉଦ୍ଦେଶ୍ୟରେ ହ୍ରଦତୀରରେ ଆସି ପହଞ୍ଚିଲେ ।

ରାଜକନ୍ୟା ସ୍ୱର୍ଗରୁ ଅବତରଣ କରିଥିବା କୌଣସି ଦେବୀ ବୋଲି ମନେହେଉଥାନ୍ତି । କେବଳ ତାଙ୍କ ଚକ୍ଷୁର ପଲକପାତ ହିଁ ତାଙ୍କୁ ମାନବୀ ବୋଲି ଜଣାଇ ଦେଉଥାଏ । ତାଙ୍କ ଶରୀର କୁସୁମ କୋମଳ ଥିଲା; କଟୀ ମୁଷ୍ଟିଗ୍ରାହ୍ୟ ଥିଲା; ବିଭିନ୍ନ ଶୁଭଲକ୍ଷଣରେ ସେ ଉଦ୍ଭାସିତ ଥିଲେ । ତାଙ୍କ ଶରୀର କାମଦେବଙ୍କ ପୁଷ୍ପଧନୁ ବୋଲି ମନେହେଉଥିଲା । ହଂସାବଳୀଙ୍କ ତିର୍ଯ୍ୟକ୍ ଦୃଷ୍ଟିପାତ ରୂପକ ଶରବିଦ୍ଧ ହୋଇ ଭୀମଭଟ୍ଟ ଅଚେତ ପ୍ରାୟ ହୋଇଗଲେ । ପୃଥିବୀର ସର୍ବଶ୍ରେଷ୍ଠ ରୂପବାନ ପୁରୁଷ ଭୀମଭଟ୍ଟଙ୍କ ତିର୍ଯ୍ୟକ୍ ଦୃଷ୍ଟି ମଧ୍ୟ ରାଜକୁମାରୀଙ୍କ ହୃଦୟ କୋଷରେ ପ୍ରବେଶ କରି ତାଙ୍କୁ ଧୈର୍ଯ୍ୟହୀନ କରିଦେଲା । ସେ ନିଜର ଜଣେ ବିଶ୍ୱାସିନୀ ଚେଟୀକୁ ଗୁପ୍ତ ଭାବରେ ପଠାଇ ଭୀମଭଟ୍ଟଙ୍କ ମିତ୍ରମାନଙ୍କ ଠାରୁ ତାଙ୍କ ନାମ, ଗୋତ୍ର, କୁଳ ଇତ୍ୟାଦି ସମ୍ପର୍କରେ ସବୁକିଛି ସଂଗ୍ରହ କଲେ । ସ୍ନାନଶେଷରେ ସେ ସଖୀମାନଙ୍କ ସହିତ ଫେରିଗଲେ । କିନ୍ତୁ ଯିବାବେଳେ ବାରମ୍ବାର ସେ ମୁହଁ ଫେରାଇ ଭୀମଭଟ୍ଟଙ୍କୁ ଚାହୁଁଥାନ୍ତି ।

ରାଜକୁମାରୀ ଫେରିଯିବା ପରେ ଭୀମଭଟ୍ଟ ମଧ୍ୟ ମିତ୍ରମାନଙ୍କ ସହିତ ନିଜ ବାସଭବନକୁ ପ୍ରତ୍ୟାବର୍ତ୍ତନ କଲେ । ସେ ଅନ୍ୟମନସ୍କଭାବେ ଅସ୍ଥିରପଦପାତରେ ଚାଲୁଥାନ୍ତି । ଏ ସମୟରେ ଜଣେ ବିଶ୍ୱସ୍ତା ଦୂତୀ ଆସି ଏକାନ୍ତରେ ଭୀମଭଟ୍ଟଙ୍କୁ ରାଜକୁମାରୀଙ୍କଦ୍ୱାରା ପ୍ରେରିତ ସନ୍ଦେଶ ଦେଲା, "ଦେବ, ରାଜକୁମାରୀ ହଂସାବଳୀ ଆପଣଙ୍କ ନିକଟରେ ଏହି ପ୍ରାର୍ଥନା ଜଣାଇଛନ୍ତି ଯେ ସେ ଆପଣଙ୍କ ପ୍ରଣୟ ପାଶରେ ଆବଦ୍ଧା, କାମ ପ୍ରବାହର ସ୍ରୋତ ମଧ୍ୟରେ ସେ ଭାସିଚାଲିଛନ୍ତି । ଏ ଅବସ୍ଥାରେ ତାଙ୍କୁ ଦେଖି ମଧ୍ୟ ଅନାଦର ପୂର୍ବକ ଆପଣ ତଟସ୍ଥ ରହିବା କେତେଦୂର ସମୁଚିତ ଚିନ୍ତା କରିବେ ?"

ଦୂତୀଠାରୁ ରାଜକୁମାରୀଙ୍କ ମନୋଭାବ ଜାଣିପାରି ଭୀମଭଟ୍ଟ ପୁନର୍ଜୀବିତ ହେଲେ ବୋଲି ମନେକଲେ । ପ୍ରସନ୍ନ ଚିତ୍ତରେ ସେ ଦୂତୀକୁ କହିଲେ–'ମୁଁ ମଧ୍ୟ ଅନୁରୂପ ଭାବେ କାମପ୍ରବାହରେ ଭାସିଚାଲିଛି ବୋଲି ମୋର ପ୍ରିୟତମା କ'ଣ ଜାଣିପାରି ନାହାଁନ୍ତି ? ମୋତେ ତଟସ୍ଥ ବୋଲି ସେ ଭାବୁଛନ୍ତି କିପରି ? ବର୍ତ୍ତମାନ ତାଙ୍କର ସହାୟତା ଲାଭକରି ତାଙ୍କ ମନୋରଥ ପୂରଣ କରିବି । ମୋର ବିଦ୍ୟା ପ୍ରଭାବରୁ ଆଜି ରାତିରେ ଯାଇ ମୁଁ ଅନ୍ତଃପୁର ମଧ୍ୟରେ ପହଞ୍ଚିବି । ଯିବାବେଳେ ମୋତେ କେହି ଦେଖିପାରିବେ ନାହିଁ । ସେଠାରେ ପହଞ୍ଚି ମୁଁ ନିଜେ ମୋର ପ୍ରାଣପ୍ରିୟା ରାଜକୁମାରୀଙ୍କୁ ସାନ୍ତ୍ୱନା ଦେବି ।'

ଭୀମଭଟ୍ଟଙ୍କ ସନ୍ଦେଶ ନେଇ ଦୂତୀ ହଂସାବଳୀଙ୍କୁ ଶୁଣାଇଲା । ସେ ପ୍ରିୟ ମିଳନର ପ୍ରତୀକ୍ଷା କରିବାକୁ ଲାଗିଲେ ।

କୌଣସିମତେ ମିତ୍ରମାନଙ୍କ ସହିତ ଦିନଟି କଟାଇ ସଂଧ୍ୟାରେ ଭୀମଭଟ୍ଟ ବିଭିନ୍ନ ଅଳଙ୍କାରରେ ଭୂଷିତ ହୋଇ ହଂସାବଳୀଙ୍କ ଅନ୍ତଃପୁରରେ ଯାଇ ଉପସ୍ଥିତ ହେଲେ । ଭଗବତୀ ଗଙ୍ଗାଙ୍କ ପ୍ରଦତ୍ତ ମନ୍ତ୍ରଟିକୁ ଅନୁଲୋମ ଭାବେ ପାଠ କରିବାଦ୍ୱାରା ଅନ୍ତଃପୁର ରକ୍ଷକମାନେ ତାଙ୍କୁ ଦେଖିପାରିଲେ ନାହିଁ । ହଂସାବଳୀ ପୂର୍ବରୁ ନିଜ ଶୟନାଗାରର ଦ୍ୱାର ଉନ୍ମୁକ୍ତ ରଖିଥିବା ଯୋଗୁଁ ଭୀମଭଟ୍ଟଙ୍କ ପାଇଁ ସେଠାରେ ପହଞ୍ଚିବା ସହଜସାଧ୍ୟ ହେଲା ।

ହଂସାବଳୀଙ୍କ ଅନ୍ତଃପୁର କୃଷ୍ଣ ଅଗୁରୁଦ୍ୱାରା ସୁବାସିତ ଥିଲା । ଶୃଙ୍ଗାର ଭାବ ଜାଗ୍ରତ କରିବାପାଇଁ ସୁଗନ୍ଧିତ ପ୍ରକୋଷ୍ଠଟି ଅତ୍ୟନ୍ତ ଅନୁକୂଳ ବୋଲି ମନେହେଉଥିଲା । ରାଜକୁମାରୀ ପାଞ୍ଚୋଟି ବର୍ଣ୍ଣର ପୁଷ୍ପମାଳାରେ ପ୍ରକୋଷ୍ଠଟିକୁ ସଜାଇଥିବାରୁ ଏହା କାମଦେବଙ୍କ ଉପବନର ଭ୍ରମ ସୃଷ୍ଟି କରୁଥିଲା । ଦେବୀ ଗଙ୍ଗାଙ୍କ ପ୍ରଦତ୍ତ ସିଦ୍ଧିପ୍ରଦ ବିଦ୍ୟାରୂପୀ ଲତାର ସୁମିଷ୍ଟ ଫଳସ୍ୱରୂପ ଦିବ୍ୟ ସୌରଭାନ୍ୱିତା ହଂସାବଳୀଙ୍କୁ ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହେଲେ ।

ମନ୍ତ୍ରଶକ୍ତି ବଳରେ ଭୀମଭଟ୍ଟ ଅଦୃଶ୍ୟ ଥିବାରୁ ରାଜକୁମାରୀ କୌଣସି ଆଗନ୍ତୁକର ଉପସ୍ଥିତି ଅନୁଭବ କରିପାରୁଥିଲେ ସୁଦ୍ଧା କାହାରିକୁ ନଦେଖି ଇତସ୍ତତଃ ହେଉଥିଲେ । ତାଙ୍କର ବିବ୍ରତଭାବ ଦୂର କରିବାପାଇଁ ରାଜକୁମାର ମନ୍ତ୍ରଟିକୁ ପ୍ରତିଲୋମ ଭାବେ ପାଠ କରି ନିଜକୁ ପ୍ରକୋଷ୍ଠ ମଧ୍ୟରେ ପ୍ରକଟନ କଲେ । ହଠାତ୍ ସମ୍ମୁଖରେ ଭୀମଭଟ୍ଟଙ୍କୁ ଦେଖି ହଂସାବଳୀ ପୁଲକିତ ହୋଇଉଠିଲେ । ତାଙ୍କ ଶରୀର ରୋମାଞ୍ଚିତ ହେଲା । ଲଜ୍ଜାଜନିତ ଭୟରୁ ଶରୀରରେ ବେପଥୁ ସୃଷ୍ଟିହେଲା । ଅଳଙ୍କାରଗୁଡ଼ିକର କମ୍ପିତ ସ୍ୱରରେ ସେ ଆନନ୍ଦରେ ନୃତ୍ୟ କରୁଥିବା ପରି ଜଣାଗଲେ । କୁମାରୀ ଅବସ୍ଥାରେ ଥିବା ଯୋଗୁଁ ଅତ୍ୟଧିକ ଲଜ୍ଜା ତାଙ୍କର ମୁଖମଣ୍ଡଳ ଓ ଚକ୍ଷୁକୁ ଅବନତ ହେବାପାଇଁ ବାଧ୍ୟ କରିଥିଲା । ସେ ଯେପରି କାମଭାବ ଜାଗ୍ରତ କରାଇଥିବା ନିଜ ହୃଦୟକୁ ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ପର୍କରେ ଜିଜ୍ଞାସା କରୁଥିଲେ ।

ଭୀମଭଟ୍ଟଙ୍କୁ ରାଜକୁମାରୀଙ୍କ ମନୋଭାବ ଅଛପା ରହିଲାନାହିଁ । ସେ ସ୍ନେହସ୍ନିଗ୍ଧ ସ୍ୱରରେ କହିଲେ, ''ମୁଗ୍ଧେ, ତୁମ ହୃଦୟର ଭାବନା ସ୍ୱତଃ ପ୍ରକଟିତ ହୋଇପଡୁଛି । ଲଜ୍ଜା ଯୋଗୁଁ ତାକୁ ଗୋପନ କରିବାପାଇଁ ଚେଷ୍ଟା କରିବା ବୃଥା । ତୁମ ଶରୀରର ପୁଲକିତ ରୋମାବଳୀ ଏବଂ ଉନ୍ନତ ସ୍ତନଯୁଗଳକୁ ଦୃଢ଼ ଭାବରେ ଆବଦ୍ଧ କରିଥିବା ସ୍ତନ ବନ୍ଧନୀର

ଉତ୍‌ଥାନ ପତନ ତୁମର ମନୋଭାବକୁ ଗୋପନ କରିପାରୁନାହିଁ ।'' ଏହିପରି ସରସ ବଚନବିନ୍ୟାସ ଦ୍ୱାରା ଲଜ୍ଜା ଦୂର କରି ଭୀମଭଟ୍ଟ ରାଜକୁମାରୀଙ୍କୁ ଗାନ୍ଧର୍ବରୀତିରେ ବିବାହ କଲେ । ପତ୍ନୀର ମୁଖମଣ୍ଡଳ ରୂପକ ବିକଶିତ କମଳରେ ଭ୍ରମର ପରି ବିହାର କରି ଭୀମଭଟ୍ଟ ସେଠାରେ ରାତ୍ରିଟି ବିତାଇଦେଲେ । ପ୍ରଭାତରୁ ପୁଣି ସଂଧ୍ୟାବେଳେ ଆସିବାର ପ୍ରତିଶ୍ରୁତି ଦେଇ ସେ ନିଜ ବିଦ୍ୟାବଳରେ ସେଠାରୁ ନିଷ୍କ୍ରାନ୍ତ ହେଲେ ।

ରାତ୍ରି ପ୍ରଭାତ ହେଲା । ଅନ୍ତଃପୁର କଂଚୁକୀମାନେ ରାଜକୁମାରୀଙ୍କୁ ନିତ୍ୟକର୍ମ ସମାପନପାଇଁ ପ୍ରସ୍ତୁତ କରିବା ନିମିତ୍ତ ଆସି ପହଞ୍ଚିଲେ । ତାଙ୍କ ଶରୀରରେ ସମ୍ଭୋଗର ଚିହ୍ନସବୁ ସେମାନଙ୍କୁ ବିସ୍ମିତ କଲା । ତାଙ୍କ ଅଳକାବଳୀ ଇତସ୍ତତଃ ହୋଇଯାଇଥିଲା । ଅଙ୍ଗରେ ଦନ୍ତ ଓ ନଖ କ୍ଷତର ଚିହ୍ନ ସ୍ପଷ୍ଟ ଦେଖାଯାଉଥିଲା । ସେ କନ୍ଦର୍ପ ବାଣ ବିଦ୍ଧ ପରି ମନେହେଉଥିଲେ । କଞ୍ଚୁକୀମାନେ ଭୟଭୀତ ହୋଇ ପିତାଙ୍କ ନିକଟରେ ସମଗ୍ର ବୃତ୍ତାନ୍ତ ଜଣାଇଲେ । ରାଜା ସେମାନଙ୍କ କଥାର ସତ୍ୟତା ଜାଣିବା ନିମିତ୍ତ ସେହିଦିନ ରାତିରେ କେତେଜଣ ଗୁପ୍ତଚରଙ୍କୁ ଗୁପ୍ତ ପ୍ରହରା ଦେବାପାଇଁ ନିଯୁକ୍ତ କଲେ ।

ଏଣେ ଭୀମଭଟ୍ଟ ମିତ୍ରମାନଙ୍କ ସହିତ ଆନନ୍ଦରେ ଦିନଯାପନ କରି ସଂଧ୍ୟାରେ ରାଜକୁମାରୀଙ୍କ ଅନ୍ତଃପୁରରେ ପୁଣି ଆସି ଉପସ୍ଥିତ ହେଲେ । ଅଦୃଶ୍ୟ ଭାବରେ ଅନ୍ତଃପୁର ମଧ୍ୟରେ ପ୍ରବେଶ କରିଥିବା ଦେଖି ଗୁପ୍ତଚରମାନେ ତାଙ୍କୁ କୌଣସି ଦିବ୍ୟପୁରୁଷ ମନେକରି ସେଠାରୁ ଫେରିଗଲେ । ରାଜାଙ୍କ ନିକଟରେ ଏହା ନିବେଦନ କରନ୍ତେ ରାଜା ସେମାନଙ୍କୁ ଆଦେଶ ଦେଲେ, 'ଦୃଢ଼ ସୁରକ୍ଷା ବ୍ୟବସ୍ଥା ଭିତରେ ଯିଏ ଅଦୃଶ୍ୟ ଭାବେ ଅନ୍ତଃପୁର ମଧ୍ୟକୁ ଯାଇପାରିଛି, ସେ ନିଶ୍ଚିତ ଭାବେ କୌଣସି ସାଧାରଣ ମନୁଷ୍ୟ ନୁହେଁ । ତେଣୁ ତୁମେ ଯାଇ ତାଙ୍କୁ ନେଇଆସ । ମୁଁ ବି ଏହାର ରହସ୍ୟ ଜାଣିବାପାଇଁ ଚେଷ୍ଟାକରିବି । ତୁମେ ତାଙ୍କ ପ୍ରତି ନିଷ୍ଠୁର ବ୍ୟବହାର ନକରି କୋମଳଭାବେ କହ ଯେ ସେ ରାଜାଙ୍କ ନିକଟରେ ପ୍ରତ୍ୟକ୍ଷଭାବେ ତାଙ୍କ କନ୍ୟାର ପାଣିଗ୍ରହଣ କରିବା ଅଭିଳାଷ କାହିଁକି ପ୍ରକାଶ କରିନାହାଁନ୍ତି ? ଗୋପନରେ ଏପରି ଆଚରଣର କାରଣ କ'ଣ ହୋଇପାରେ ? ଆପଣଙ୍କ ପରି ଗୁଣୀ ଓ ବିଦ୍ୟାବାନ୍ ଜାମାତା ଆଉ କେଉଁଠୁ ମିଳିପାରିବ ?' ରାଜାଙ୍କ ନିର୍ଦ୍ଦେଶକ୍ରମେ ଗୁପ୍ତଚରମାନେ ରାଜକୁମାରୀଙ୍କ ଶୟନ ପ୍ରକୋଷ୍ଠ ବାହାରୁ ରାଜାଙ୍କ ନିର୍ଦ୍ଦେଶ ଯଥାରୀତି କହି ଶୁଣାଇଲେ ।

ଭୀମଭଟ୍ଟ ତାଙ୍କ ଗୋପନ ଅଭିସାର ବିଷୟ ପ୍ରଘଟ ହୋଇଯାଇଥିବା ଜାଣିପାରିଲେ । କିନ୍ତୁ ବିପଦରେ ଧୈର୍ଯ୍ୟ ହରାଇବା ତାଙ୍କର ସ୍ୱଭାବ ନୁହେଁ । ତେଣୁ

ପ୍ରକୋଷ୍ଠ ମଧ୍ୟରୁ ସେ ଗମ୍ଭୀର ସ୍ୱରରେ କହିଲେ, 'ମୋ ପକ୍ଷରୁ ରାଜାଙ୍କୁ ଯାଇ ନିବେଦନ କର ଯେ ବର୍ତ୍ତମାନ ଚତୁର୍ଦ୍ଦିଗରେ ରାତ୍ରିର ଘୋର ଅନ୍ଧକାର । ମୁଁ କାଲି ସକାଳେ ଯାଇ ମହାରାଜଙ୍କୁ ସମସ୍ତ ବୃତ୍ତାନ୍ତ କହି ଶୁଣାଇବି ।' ଗୁପ୍ତଚରମାନଙ୍କଠାରୁ ଏ ସମ୍ବାଦ ପାଇ ରାଜା ନିଶ୍ଚିନ୍ତ ରହିଲେ । ଭୀମଭଟ୍ଟ ପରଦିନ ପ୍ରଭାତରୁ ଉଠି ପୁଣି ସେହିପରିଭାବେ ମିତ୍ରମାନଙ୍କ ନିକଟରେ ଆସି ପହଞ୍ଚିଲେ ।

ନିତ୍ୟକର୍ମ ସମାପନ ପୂର୍ବକ ଭୀମଭଟ୍ଟ ଏବଂ ତାଙ୍କର ସାତଜଣ ମିତ୍ର ଦିବ୍ୟ ବେଶଭୂଷାରେ ଭୂଷିତ ହୋଇ ରାଜା ଚନ୍ଦ୍ରାଦିତ୍ୟଙ୍କ ଦରବାରରେ ଯାଇ ଉପସ୍ଥିତ ହେଲେ । ରାଜକୁମାରଙ୍କ ତେଜ, ଧୈର୍ଯ୍ୟ ଓ ସୌନ୍ଦର୍ଯ୍ୟ ଦେଖି ରାଜା ତାଙ୍କୁ ନିଜର ସମତୁଲ ଅନ୍ୟ ଏକ ଆସନ ପ୍ରଦାନ କଲେ । ଭୀମଭଟ୍ଟ ଆସନ ଗ୍ରହଣ କରିବା ପରେ ବ୍ରାହ୍ମଣ ଶଂଖଦତ୍ତ ମିତ୍ରଙ୍କ ପରିଚୟ ଦେବାକୁ ଯାଇ ରାଜାଙ୍କୁ ଜଣାଇଲେ, 'ରାଜନ୍, ମୋର ମିତ୍ର ହେଉଛନ୍ତି ରାଢ଼ଦେଶର ନରପତି ଉଗ୍ରଭଟ୍ଟଙ୍କ ପୁତ୍ର । ଏହାଙ୍କ ନାମ ଭୀମଭଟ୍ଟ । ନିଜର ଅସାଧାରଣ ବିଦ୍‌ବତ୍ତା ପ୍ରଭାବରେ ଏହାଙ୍କର ପରାକ୍ରମ ଅଲୌକିକ । ସେ ଆପଣଙ୍କ କନ୍ୟାର ଯାଚନାପାଇଁ ଆପଣଙ୍କ ନିକଟକୁ ଆସିଛନ୍ତି ।' ରାଜା ପୂର୍ବରାତ୍ରିର କଥା ସ୍ମରଣ କରି ଏବଂ ଭୀମଭଟ୍ଟଙ୍କୁ ସବୁଦୃଷ୍ଟିରୁ ଯୋଗ୍ୟ ଦେଖି ଏ ପ୍ରସ୍ତାବକୁ ସ୍ୱୀକାର କଲେ । ମହାସମାରୋହରରେ ବିବାହ ଅନୁଷ୍ଠିତ ହେଲା । ରାଜା ଚନ୍ଦ୍ରାଦିତ୍ୟ ଅପର୍ଯ୍ୟାପ୍ତ ଧନରାଶି ସହିତ କନ୍ୟା ହଂସାବଳୀକୁ ଭୀମଭଟ୍ଟଙ୍କ ହସ୍ତରେ ସମର୍ପଣ କଲେ । ବହୁସଂଖ୍ୟକ ହସ୍ତୀ, ଅଶ୍ୱ ଓ ଗ୍ରାମର ଅଧିକାରୀ ହୋଇ ହଂସାବଳୀଙ୍କ ସହିତ ଭୀମଭଟ୍ଟ ଶ୍ୱଶୁରଙ୍କ ରାଜଧାନୀରେ ଜୀବନଯାପନ କରୁଥାଆନ୍ତି । ସମୟକ୍ରମେ ବୃଦ୍ଧ ଓ ପୁତ୍ରହୀନ ଚନ୍ଦ୍ରାଦିତ୍ୟ ଜାମାତା ହସ୍ତରେ ରାଜ୍ୟଭାର ସମର୍ପଣ କରି ସନ୍ନ୍ୟାସାଶ୍ରମକୁ ଚାଲିଗଲେ । କୃତଜ୍ଞ ଏବଂ କୃତବିଦ୍ୟ ଭୀମଭଟ୍ଟ, ଶଙ୍ଖଦତ୍ତ ପ୍ରଭୃତି ପରାକ୍ରମଶାଳୀ ମିତ୍ରମାନଙ୍କ ସହିତ ଶ୍ୱଶୁରପ୍ରଦତ୍ତ ରାଜ୍ୟ ପରିପାଳନା କରିବା ଫଳରେ ପ୍ରଜାମାନଙ୍କର ସୁଖସମୃଦ୍ଧି ଅଧିକ ବୃଦ୍ଧି ଲାଭ କଲା ।

କିଛି ଦିନ ଏହିପରି ବିତିଗଲା । ଦିନେ ଗୁପ୍ତଚରମାନେ ଆସି ତାଙ୍କୁ ଜଣାଇଲେ ଯେ ତାଙ୍କ ପିତା ଉଗ୍ରଭଟ୍ଟ ପ୍ରୟାଗ ତୀର୍ଥରେ ଶରୀର ବିସର୍ଜନ କରିଛନ୍ତି । ମୃତ୍ୟୁବେଳେ ସେ ନର୍ତ୍ତକୀ ଲାସ୍ୟବତୀ ଗର୍ଭରୁ ଜାତ କନିଷ୍ଠ ପୁତ୍ର ସମରଭଟ୍ଟଙ୍କୁ ରାଜ ସିଂହାସନ ପ୍ରଦାନ କରିଛନ୍ତି । ପିତାଙ୍କପାଇଁ ଭୀମଭଟ୍ଟ ଶୋକପାଳନ କଲେ, ଅନ୍ତିମ ସଂସ୍କାର ଯଥାବିଧି ସମାପ୍ତ ହେଲା ।

ପ୍ରଜାପୁଞ୍ଜ ଏବଂ ଆତ୍ମୀୟ ସ୍ୱଜନମାନଙ୍କ ପ୍ରତି ଅପବ୍ୟବହାର କରୁଥିବା ସମରଭଟ୍ଟ ନିକଟକୁ ଦୂତ ହସ୍ତରେ ଭୀମଭଟ୍ଟ ଏକ ଲିଖିତ ପତ୍ର ପ୍ରେରଣ କଲେ । ସେଥିରେ ଉଲ୍ଲେଖ ଥିଲା, 'ମୂର୍ଖ ନର୍ତ୍ତକୀ ପୁତ୍ର, ମୋର ପିତାଙ୍କ ସିଂହାସନ ଉପରେ ତୋର ବା କି ଅଧିକାର ? ମୁଁ ବର୍ତ୍ତମାନ ଲାଟ ଦେଶର ଏକଚ୍ଛତ୍ର ସମ୍ରାଟ । ତଥାପି ରାଢ଼ ମୋର ରାଜ୍ୟ । ତେଣୁ ଭୁଲରେ ସୁଦ୍ଧା ତୁ ରାଜସିଂହାସନରେ ବସିବୁ ନାହିଁ ।' ଦୂତ ଦ୍ରୁତବେଗରେ ଯାଇ ରାଜଦରବାରରେ ବସିଥିବା ସମରଭଟ୍ଟ ହସ୍ତରେ ପତ୍ରଟି ପ୍ରଦାନ କଲା । ସେ ପତ୍ରପାଠ କରି କ୍ରୋଧାନ୍ୱିତ ହୋଇଉଠିଲା । ଗର୍ଜନ କରି ସଭାଷଦ୍‌ମାନଙ୍କୁ ଶୁଣାଇ କହିଲା, 'ଯେଉଁ ପୁତ୍ରକୁ ପିତା ଅଯୋଗ୍ୟ ମନେକରି ରାଜ୍ୟରୁ ବିତାଡ଼ନ କରିଥିଲେ, ତା' ପକ୍ଷରେ ଏପରି ଔଦ୍ଧତ୍ୟପୂର୍ଣ୍ଣ ପତ୍ର ଲେଖିବା ଅନୁଚିତ ହୋଇନାହିଁ । ନିଜ ବିଳ ମଧ୍ୟରେ ରହି ଶୃଗାଳ ସିଂହ ପରି ଦାମ୍ଭିକତା ଦେଖାଇଥାଏ । କିନ୍ତୁ ସିଂହକୁ ସମ୍ମୁଖରେ ଦେଖିଲେ ଶୃଗାଳ ଶୃଗାଳପରି ହିଁ ଆଚରଣ କରେ ।'

ଏହିପରି ତର୍ଜନ ଗର୍ଜନ କରି ସମରଭଟ୍ଟ ଅନୁରୂପ ପତ୍ରଟିଏ ଦୂତ ହସ୍ତରେ ପ୍ରେରଣ କଲା । ଦୂତ ଲାଟ ଦେଶରେ ଯାଇ ରାଜା ଭୀମଭଟ୍ଟଙ୍କୁ ପତ୍ରଟି ପ୍ରଦାନ କରନ୍ତେ ସେ ପତ୍ରପାଠ କରି ଅଟ୍ଟହାସ ପ୍ରକାଶ ପୂର୍ବକ ଅନୁଜର ଦୂତକୁ କହିଲେ, ''ଦୂତ, ତୁମେ ବର୍ତ୍ତମାନ ଫେରିଯାଅ । ମୋ ପକ୍ଷରୁ ସେହି ନର୍ତ୍ତକୀ ପୁତ୍ରକୁ କହିବ 'ଯେତେବେଳେ ତୁ ବଳାତ୍କାରରେ ଅଶ୍ୱନେବାକୁ ବସିଥିଲୁ ସେତେବେଳେ ଶଙ୍ଖଦତ୍ତଠାରୁ ମୁଁ ତୋତେ ରକ୍ଷାକରିଥିଲି । କାରଣ ସେତେବେଳେ ତୁ ଶିଶୁ ଥିଲୁ । ପିତା ମଧ୍ୟ ତୋତେ ଅଧିକ ସ୍ନେହ କରୁଥିଲେ । କିନ୍ତୁ ବାରମ୍ବାର ତୋତେ କ୍ଷମାଦେବା ମୋ ପକ୍ଷରେ ସମ୍ଭବ ନୁହେଁ । ଏଥର ନିଶ୍ଚିତ ଭାବେ ତୋତେ ପିତାଙ୍କ ନିକଟକୁ ପଠାଇବି । ତୋ ପ୍ରତି ତାଙ୍କର ମମତା ଅତ୍ୟନ୍ତ ନିବିଡ଼ ଥିଲା । ତୁ ଏଥିପାଇଁ ପ୍ରସ୍ତୁତ ରହ । ମୁଁ ଅତି ନିକଟରେ ସେଠାରେ ପହଞ୍ଚୁଛି ବୋଲି ଜାଣିବୁ ।' ଏହାକହି ସେ ଦୂତକୁ ବିଦାୟ ଦେଲେ ଏବଂ ଯୁଦ୍ଧଯାତ୍ରା ପାଇଁ ପ୍ରସ୍ତୁତି ଆରମ୍ଭ କଲେ ।''

ରାଜକୁଳର ଚନ୍ଦ୍ରମାତୁଲ୍ୟ ଭୀମଭଟ୍ଟ ନିଜର ପର୍ବତ ତୁଲ୍ୟ ହସ୍ତୀ ଉପରେ ଆରୋହଣ କରନ୍ତେ ତାଙ୍କର ସୈନ୍ୟବାହିନୀ ରୂପକ ସାଗର ଉତ୍‌ଫୁଲ୍ଲିତ ହୋଇ ଗର୍ଜନ କରିବାକୁ ଲାଗିଲା । ତାଙ୍କ ସେନାବାହିନୀରେ ଯୋଗଦେବାପାଇଁ ଆସିଥିବା ସାମନ୍ତ ରାଜା ଓ ରାଜପୁତ୍ରମାନଙ୍କ ଦ୍ୱାରା ଦିଗବିଦିଗ ପୂର୍ଣ୍ଣ ହୋଇଉଠିଲା । ଉନ୍ମତ୍ତ ହସ୍ତୀ ଏବଂ ବେଗଗାମୀ ଅଶ୍ୱମାନଙ୍କ ପଦାଘାତରେ ପୃଥିବୀ ପ୍ରକମ୍ପିତ ହେଲା । ରଥଚକ୍ରର ନିନାଦ

ଧ୍ୱନି ପୃଥିବୀର ବିଳାପ ଧ୍ୱନି ବୋଲି ମନେହେଉଥିଲା । ସେନାବାହିନୀର ପଦପାତରୁ ଯେଉଁ ଧୂଳିପଟଳ ଉତ୍‌ଥିତ ହେଉଥିଲା ଆକାଶ ଏବଂ ସୂର୍ଯ୍ୟ ତା'ଦ୍ୱାରା ଆଚ୍ଛାଦିତ ହୋଇପଡୁଥିଲେ । ଦିବସରେ ସୁଦ୍ଧା ରାତ୍ରିର ଭ୍ରମ ସୃଷ୍ଟି ହେଉଥିଲା । ଭୀମଭଟ୍ଟ ଏହିପରି ଭାବରେ ରାଢ଼ ନଗରୀର ନିକଟବର୍ତ୍ତୀ ହେଲେ ।

ସମରଭଟ୍ଟ ନିକଟରେ ଏ ସମ୍ବାଦ ପହଞ୍ଚିଲା । ସେ କିଛି ପରିମାଣରେ ଭୟଭୀତ ହୋଇପଡ଼ିଲା । କିନ୍ତୁ ନିଜର ବୀରତ୍ୱ ପ୍ରଦର୍ଶନ କରିବାପାଇଁ ନିଜର ସେନାବାହିନୀକୁ ଧରି ସେ ପ୍ରଥମେ ଆକ୍ରମଣ ଆରମ୍ଭ କଲା । ଉଭୟ ସେନାର ମିଳନ ପୂର୍ବ ଓ ପଶ୍ଚିମ ସାଗରର ମିଳନ ବୋଲି ମନେହେଲା । ପ୍ରଳୟ କାଳୀନ ଜଳାର୍ଣ୍ଣବ ପରି ଘମାଘୋଟ ଯୁଦ୍ଧ ଆରମ୍ଭ ହେଲା । କ୍ରୋଧାନ୍ୱିତ କାଳଭୈରବର ଦନ୍ତପଂକ୍ତି ପରି ସୈନ୍ୟମାନଙ୍କ ତରବାରିରୁ ନିର୍ଗତ ଅଗ୍ନିଶିଖା ଆକାଶକୁ ପ୍ରଜ୍ୱଳିତ କରୁଥିବା ପରି ମନେହେଲା । ଉଗ୍ରବେଗରେ ଗତି କରୁଥିବା ନାରାଚଗୁଡ଼ିକୁ ଦେଖିଲେ ମନେହେଉଥିଲା ଯୁଦ୍ଧ ଦେଖିବାପାଇଁ ଅବତରଣ କରିଥିବା ଦିବ୍ୟାଙ୍ଗନାମାନଙ୍କର କଟାକ୍ଷ ଚଞ୍ଚଳ ହୋଇଉଠୁଛି । ସଂଗ୍ରାମ ଭୂମି ରଙ୍ଗମଞ୍ଚ ପରି ଶୋଭାପାଇବାକୁ ଲାଗିଲା । ସୈନ୍ୟମାନଙ୍କର ପଦପାତରୁ ଉତ୍‌ଥିତ ଧୂଳିରାଶି ରୂପକ ବିତାନରେ ଏହା ଶୋଭାପାଉଥିଲା । ସେନାମାନଙ୍କର ରେରେକାର ଧ୍ୱନି ବାଦ୍ୟର କାର୍ଯ୍ୟ କରୁଥିଲା । ଛିନ୍ନଶିର କବନ୍ଧଗୁଡ଼ିକ ଏହି ରଙ୍ଗମଞ୍ଚରେ ନୃତ୍ୟ କରୁଥିଲେ । ସେନା ଓ ବାହନଗୁଡ଼ିକର ମୁଣ୍ଡମାଳା ବହନ କରି ଯେଉଁ ରକ୍ତନଦୀ ଏଠାରୁ ପ୍ରବାହିତ ହେଲା, ତାହା କାଳରାତ୍ରି ପରି ଉନ୍ମତ୍ତ ଭାବରେ ଜୀବିତ ପ୍ରାଣୀମାନଙ୍କୁ ମଧ୍ୟ ଭସାଇନେଲା ।

ଦେଖୁଦେଖୁ ଧନୁର୍ଦ୍ଧର ଭୀମଭଟ୍ଟ ଦୁର୍ମଦ ହସ୍ତୀ ତୁଲ୍ୟ ମହାବଳୀ ଶଂଖଦତ୍ତ, ଅକ୍ଷକ୍ଷପଣକ, ଚଣ୍ଡଭୁଜଙ୍ଗ ପ୍ରଭୃତି ମିତ୍ରମାନଙ୍କ ସହିତ ଶତ୍ରୁର ସେନାବାହିନୀ ଉପରେ ଲମ୍ଫ ଦେଲେ । ସେମାନଙ୍କ ଆକ୍ରମଣରେ ସମରଭଟ୍ଟର ସେନା ଦମ୍ଭ ଧରି ରହିବା ସମ୍ଭବ ହେଲା ନାହିଁ ।

ସେନାବାହିନୀ ପଳାୟନ କରୁଥିବା ଦେଖି ରଥାରୋହୀ ସମରଭଟ୍ଟ କ୍ରୋଧରେ ମନ୍ଦରାଚଳ ପରି ଶତ୍ରୁସୈନ୍ୟ ସାଗରକୁ ମନ୍ଥନ କରିବା ଆରମ୍ଭ କଲା । ତାକୁ ଯୁଦ୍ଧ କ୍ଷେତ୍ରରେ ଦେଖି ଭୀମଭଟ୍ଟ ପ୍ରଚଣ୍ଡ ବେଗରେ ଯାଇ ପ୍ରଥମେ ତାର ଧନୁର୍ବାଣକୁ ବିଖଣ୍ଡନ କଲେ । ପରେ ଗଜାରୂଢ଼ ଭୀମଭଟ୍ଟଙ୍କ ବାଣରେ ସମରଭଟ୍ଟର ରଥର ଚାରୋଟି ଅଶ୍ୱ ଆହତ ଓ ମୃତ ହେଲେ । ରଥ ଭଗ୍ନ ହେବାରୁ ସମରଭଟ୍ଟ ତୋମରାସ୍ତ୍ର ଧାରଣ ପୂର୍ବକ

ଦୌଡ଼ିଯାଇ ଭୀମଭଟଙ୍କ ମତ୍ତହସ୍ତୀର ଗଣ୍ଡ ଦେଶରେ ଆଘାତକଲା । ସେ ବାହନହୀନ ହୋଇ ଭୂପୃଷ୍ଠକୁ ଓହ୍ଲାଇ ଆସିଲେ । ଉଭୟ ଯୋଦ୍ଧାଙ୍କ ଭୂମି ଉପରେ ଆରମ୍ଭ ହେଲା ବାହୁଯୁଦ୍ଧ । ଭୀମଭଟ ନିଜ ବିଦ୍ୟାବଳରେ ଅଦୃଶ୍ୟ ହୋଇ ସମରଭଟଙ୍କୁ ହତ୍ୟା କରିପାରିଥାନ୍ତେ, କିନ୍ତୁ ଏହା କ୍ଷାତ୍ରୋଚିତ ଧର୍ମ ନୁହେଁ ବୋଲି ସେ ତା' ସହିତ ଖଡ଼ଗ୍ ଯୁଦ୍ଧରେ ପ୍ରବୃତ୍ତ ହେଲେ । ତାଙ୍କ ସମ୍ମୁଖରେ ଦୀର୍ଘ ସମୟ ରହିବା ସମରଭଟ ପକ୍ଷରେ ସମ୍ଭବ ହେଲା ନାହିଁ । ଭୀମଭଟଙ୍କ ପ୍ରଚଣ୍ଡ ପ୍ରହାରରେ ନର୍ତ୍ତକୀପୁତ୍ର ସମରଭଟର ମସ୍ତକ ଛିନ୍ନ ହୋଇ ଭୂପତିତ ହେଲା । ଭୀମଭଟଙ୍କ ବିଜୟରେ ଆକାଶ ମାର୍ଗରୁ ସିଦ୍ଧ ଓ ଚାରଣମାନେ ପୁଷ୍ପ ବୃଷ୍ଟି କଲେ । ରାଢ଼ଦେଶର ବନ୍ଦୀ ଓ ମାଗଧମାନେ ରାଜପୁତ୍ରଙ୍କ ସ୍ତୁତିଗାନ କରିବାକୁ ଲାଗିଲେ ।

ଦୀର୍ଘଦିନର ପ୍ରବାସ ପରେ ଭୀମଭଟ ମିତ୍ରମାନଙ୍କ ସହିତ ରାଢ଼ ନଗରୀରେ ପ୍ରବେଶ କଲେ । ନଗରୀ ଆନନ୍ଦ ମନରେ ତାଙ୍କୁ ସ୍ୱାଗତ କଲା । ସେ ମାତା ମନୋରମାଙ୍କ ସମ୍ମୁଖକୁ ଯାଇ ତାଙ୍କୁ ପ୍ରଣିପାତ କଲେ । ମହାରାଣୀଙ୍କ ଚକ୍ଷୁଯୁଗଳ ଆନନ୍ଦାଶ୍ରୁରେ ପରିପୂର୍ଣ୍ଣ ହୋଇଉଠିଲା । ବନବାସରୁ ଫେରି ଆସିଥିବା ରାମଚନ୍ଦ୍ରଙ୍କୁ ଦେଖି କୌଶଲ୍ୟାଙ୍କ ପରି ସେ ଭୀମଭଟଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ନାଗରିକମାନେ ଭୀମଭଟଙ୍କ ଅଭିନନ୍ଦନ କଲେ । ଗୁଣଗ୍ରାହୀ ପିତୃ ସଚିବମାନେ ତାଙ୍କର ସତ୍କାର କଲେ । ଶୁଭ ମୁହୂର୍ତ୍ତରେ ଭୀମଭଟ ପିତୃସିଂହାସନରେ ଅଭିଷିକ୍ତ ହୋଇ ନିଜର ପ୍ରଜାବୃନ୍ଦଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ସହିତ ରାଜ୍ୟରେ ମହୋତ୍ସବ ପାଳନ କଲେ ।

ଏହିପରି ମିତ୍ର ଓ ସଚିବମାନଙ୍କ ସହିତ ଆନନ୍ଦ ଉତ୍ସବରେ କିଛିଦିନ କଟିଗଲା । ଦିନେ ସେ ଶୁଭମୁହୂର୍ତ୍ତ ଦେଖି ଲାଟ ସାମ୍ରାଜ୍ୟ ଶଂଖଦତ୍ତଙ୍କୁ ପ୍ରଦାନ କଲେ । ଅକ୍ଷକ୍ଷପଣକ, ପ୍ରଚଣ୍ଡଶକ୍ତି ପ୍ରମୁଖ ମିତ୍ରମାନଙ୍କୁ ପ୍ରଚୁର ଧନସମ୍ପତ୍ତି ଓ ଗ୍ରାମଦାନ କରି ସେମାନଙ୍କ ପୂର୍ବଗୌରବ ଫେରାଇ ଆଣିଲେ । ଲାଟ ରାଜ୍ୟରୁ ଆସିଥିବା ସେନାବାହିନୀ ସହିତ ଶଂଖଦତ୍ତ ଲାଟ ରାଜଧାନୀକୁ ଫେରିଗଲେ । ଲାଟରାଜ ଚନ୍ଦ୍ରାଦିତ୍ୟଙ୍କ କନ୍ୟା ହଂସାବଳୀଙ୍କ ସହିତ ଭୀମଭଟ ପିତାଙ୍କ ରାଜ୍ୟକୁ ଅଧିକ ସମୃଦ୍ଧ କରିବାପାଇଁ ଉଦ୍ୟମ କଲେ ।

ଧୀରେ ଧୀରେ ସମଗ୍ର ପୃଥିବୀ ତାଙ୍କର କରଗତ ହେଲା । ବହୁ ରାଜକନ୍ୟା ଆସି ତାଙ୍କ ଅନ୍ତଃପୁର ମଣ୍ଡନ କରିବାକୁ ଲାଗିଲେ । ଧୀରେଧୀରେ ରାଜା ରାଣୀମାନଙ୍କ ସହିତ କେଳିବିଳାସ ପ୍ରତି ଅଧିକ ଆକୃଷ୍ଟ ହେବା ଦେଖାଗଲା । ରାଜ୍ୟଭାର ମନ୍ତ୍ରୀମାନଙ୍କ ହସ୍ତରେ

ସମର୍ପଣ କରିଦେଇ ସେ ମଦିରା, ଦ୍ୟୂତ ଇତ୍ୟାଦି ବ୍ୟସନରେ ଲିପ୍ତ ରହିଲେ । ଅନ୍ତଃପୁର ମଧ୍ୟରୁ ବାହାରକୁ ଆସିବାପାଇଁ ତାଙ୍କର ଆଉ ସମୟ ନଥିଲା ।

ଏକଦା ଉତ୍ତଂକ ନାମକ ଜଣେ ତପସ୍ୱୀ ସ୍ୱଇଚ୍ଛାରେ ଭୀମଭଟ୍ଟଙ୍କ ସହିତ ସାକ୍ଷାତ କରିବାପାଇଁ ଆସି ପହଞ୍ଚିଲେ । ସତେ ଯେପରି ଅତୀତରେ ଭଗବାନ ଶଙ୍କରଙ୍କଠାରୁ ପାଇଥିବା ଆଦେଶ ପାଳନର ସମୟ ଆସି ଉପସ୍ଥିତ ହେଲା । ଦ୍ୱାରପାଳଠାରୁ ମୁନିଙ୍କ ଆଗମନ ବାର୍ତ୍ତା ପାଇ ସୁଦ୍ଧା ରାଜା ରାଣୀମାନଙ୍କ ସହିତ କେଳିବିଳାସରେ ମତ୍ତ ଥିବା ଯୋଗୁଁ ତା' ପ୍ରତି କର୍ଣ୍ଣପାତ କଲେନାହିଁ । ମୁନି ଏଥିରେ କ୍ରୋଧ ପ୍ରକାଶ ପୂର୍ବକ ଅଭିଶାପ ଦେଲେ, 'ରେ ମଦାନ୍ଧ, ତୁ ରାଜ୍ୟଭ୍ରଷ୍ଟ ହୋଇ ବନ୍ୟହସ୍ତୀ ରୂପେ ଅରଣ୍ୟ ମଧ୍ୟରେ ବିଚରଣ କର ।'

ମୁନିଙ୍କ ଅଭିଶାପରେ ରାଜାଙ୍କ ଜ୍ଞାନୋଦୟ ହେଲା । ତାଙ୍କର ସମସ୍ତ ଗର୍ବ ଓ ଅଭିମାନ ଧ୍ୱଂସ ହେଲା । ସେ ଅନ୍ତଃପୁର ବାହାରକୁ ଆସି ମୁନିଙ୍କ ଚରଣକମଳରେ ପ୍ରଣିପାତ ପୂର୍ବକ ଅତ୍ୟନ୍ତ ଦୀନ ଭାବରେ କ୍ଷମାଭିକ୍ଷା କଲେ । ଧୀରେ ଧୀରେ ମୁନିଙ୍କ କ୍ରୋଧ ଶାନ୍ତ ହେଲା । ସେ କହିଲେ, 'ରାଜନ୍, ମୋର ବାକ୍ୟ ଅନ୍ୟଥା ହେବନାହିଁ । ତୁମକୁ ନିଶ୍ଚିତଭାବେ ହସ୍ତୀ ହେବାକୁ ହିଁ ପଡ଼ିବ । କିନ୍ତୁ କୌଣସି ସର୍ପର ଅଭିଶାପ ଦ୍ୱାରା ଅନ୍ଧୀଭୂତ ହୋଇ ମୃଗାଙ୍କଦତ୍ତଙ୍କ ମନ୍ତ୍ରୀ ପ୍ରଚଣ୍ଡଶକ୍ତି ତୁମ ନିକଟକୁ ଆସିବ ଏବଂ ତାକୁ ଆଶ୍ୱାସିତ କରି ତୁମେ ଯେତେବେଳେ ତା' ନିକଟରେ ନିଜର ଜୀବନ କାହାଣୀ ପ୍ରକାଶ କରିବ, ସେତେବେଳେ ଶାପମୁକ୍ତ ହେବ । ଭଗବାନ ଶଙ୍କରଙ୍କ ନିର୍ଦ୍ଦେଶ ଅନୁଯାୟୀ ଶାପମୁକ୍ତି ପରେ ତୁମେ ପୁଣି ଗନ୍ଧର୍ବ ରୂପ ପ୍ରାପ୍ତ ହେବ ଏବଂ ତୁମ ଅତିଥି ମଧ୍ୟ ତାଙ୍କର ଚକ୍ଷୁ ଫେରିପାଇବେ ।' ଏହା କହି ମୁନି ଉତ୍ତଂକ ଯେଉଁପରି ଆସିଥିଲେ ସେହିପରି ଚାଲିଗଲେ । ଚାହୁଁଚାହୁଁ ଭୀମଭଟ୍ଟଙ୍କ ରୂପ ମଧ୍ୟ ପରିବର୍ତ୍ତିତ ହେଲା । ସେ ଏକ ବନ୍ୟ ହସ୍ତୀରେ ପରିଣତ ହେଲେ ।

'ମିତ୍ର, ମୁଁ ହସ୍ତୀ ରୂପରେ ଥିବା ସେହି ଭୀମଭଟ୍ଟ ଏବଂ ତୁମେ ସେହି ପ୍ରଚଣ୍ଡ ଶକ୍ତି । ବର୍ତ୍ତମାନ ମୋର ଶାପର ଅବଧି ଶେଷ ହେଲାବୋଲି ମୁଁ ଜାଣିପାରୁଛି ।' ଏହିପରି କହୁଥିବା ବେଳେ ହସ୍ତୀର ଶରୀର ତ୍ୟାଗ କରି ଭୀମଭଟ୍ଟ ଦିବ୍ୟ ବିଭବ ସମ୍ପନ୍ନ ଗନ୍ଧର୍ବରେ ପରିଣତ ହେଲେ । ପ୍ରଚଣ୍ଡଶକ୍ତି ମଧ୍ୟ ନିଜର ଦୃଷ୍ଟିଶକ୍ତି ଫେରିପାଇ ସମ୍ମୁଖରେ ସେହି ଗନ୍ଧର୍ବ କୁମାରଙ୍କୁ ଦର୍ଶନ କଲେ ।

ମନ୍ତ୍ରୀମାନଙ୍କ ସହିତ ନିକଟସ୍ଥ ଲତା ଗହଳରେ ଆତ୍ମଗୋପନ କରି ରହିଥିବା ମୃଗାଙ୍କଦତ୍ତ ଉଭୟଙ୍କ କଥାବାର୍ତ୍ତାରୁ ଅନ୍ଧତ୍ୱରୁ ମୁକ୍ତିଲାଭ କରିଥିବା ବ୍ୟକ୍ତି ତାଙ୍କ ମନ୍ତ୍ରୀ ପ୍ରଚଣ୍ଡଶକ୍ତି ବ୍ୟତୀତ ଅନ୍ୟ କେହି ନୁହଁନ୍ତି ବୋଲି ନିଶ୍ଚିତ ହେଲେ । ସେ କ୍ଷଣମାତ୍ର ବିଳମ୍ବ ନକରି ହଠାତ୍ ଦୌଡ଼ିଯାଇ ମିତ୍ରଙ୍କୁ ଗଳାରେ ଲଗାଇଲେ । ମୃଗାଙ୍କଦତ୍ତଙ୍କୁ ଦେଖି ପ୍ରଚଣ୍ଡଶକ୍ତି ମନେକଲେ ସତେ ଯେପରି ସେ ଅମୃତସ୍ନାନ କରୁଅଛନ୍ତି । ମୃଗାଙ୍କଦତ୍ତଙ୍କ ଆଶ୍ଳେଷରୁ ନିଜକୁ ମୁକ୍ତ କରି ସେ ସହସା ସ୍ୱାମୀଙ୍କ ପଦତଳେ ପ୍ରଣିପାତ କଲେ । ଗନ୍ଧର୍ବ ଭୀମଭଟ୍ଟ ବହୁଦିନ ପରେ ମିଳିତ ହୋଇଥିବା ରାଜକୁମାର ଓ ତାଙ୍କ ମନ୍ତ୍ରୀଙ୍କୁ ସାନ୍ତ୍ୱନା ଦେଇ କହିଲେ, 'ଶୀଘ୍ର ତୁମର ଅନ୍ୟ ମନ୍ତ୍ରୀମାନେ ମଧ୍ୟ ଫେରିଆସିବେ । ଶଶାଙ୍କବତୀଙ୍କ ପାଣିଗ୍ରହଣ କରି ତୁମେ ସମଗ୍ର ପୃଥିବୀ ହସ୍ତଗତ କରିବ । ତେଣୁ ତୁମେ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ । ବର୍ତ୍ତମାନ ମୁଁ ବିଦାୟ ନେଉଛି । କିନ୍ତୁ ଯେତେବେଳେ ତୁମେ ମୋତେ ସ୍ମରଣ କରିବ ମୁଁ ତୁମ ନିକଟରେ ଆସି ପହଞ୍ଚିବି ।'

ଗନ୍ଧର୍ବଶ୍ରେଷ୍ଠ ଭୀମଭଟ୍ଟ ଏହିପରି ଶାପମୁକ୍ତ ହୋଇ ମୃଗାଙ୍କଦତ୍ତଙ୍କୁ ଆଶ୍ୱାସନା ଓ ଧୈର୍ଯ୍ୟ ପ୍ରଦାନ ପୂର୍ବକ ତାଙ୍କ ପ୍ରତି ମିତ୍ରଭାବ ପ୍ରକାଶ କରି ଅତ୍ୟନ୍ତ ଆନନ୍ଦରେ ନିଜର ମନୋହର ହାର ଓ କେୟୂରର ଗୁଞ୍ଜରଣରେ ଚତୁର୍ଦ୍ଦିଗକୁ ଅନୁରଣିତ କରି ଆକାଶମାର୍ଗରେ ଗନ୍ଧର୍ବ ଲୋକକୁ ପ୍ରତ୍ୟାବର୍ତ୍ତନ କରିଗଲେ ।

ମୃଗାଙ୍କଦତ୍ତ ମଧ୍ୟ ପ୍ରଚଣ୍ଡଶକ୍ତିଙ୍କ ସହିତ ମିଳନ ଘଟିଥିବା ଯୋଗୁଁ ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ ଅନ୍ୟ ମନ୍ତ୍ରୀମାନଙ୍କ ସହିତ ସେହି ଦିନଟି ପୂର୍ବୋକ୍ତ ବନ ମଧ୍ୟରେ ହିଁ କଟାଇଦେଲେ ।

## ଅଷ୍ଟମ ତରଙ୍ଗ

### (ବେତାଳ ପଞ୍ଚବିଂଶତି)

ଯେଉଁ ବିଘ୍ନ ବିନାଶକ ଗଣପତି ନୃତ୍ୟ କଲାବେଳେ ନିଜ ଶୁଣ୍ଢର ଆଘାତରେ ପୁଷ୍ପତୁଲ୍ୟ ଆକାଶର ତାରାଗୁଡ଼ିକୁ ବର୍ଷା କରାନ୍ତି, ତାଙ୍କର ଜୟ ହେଉ ।

ମୃଗାଙ୍କଦତ୍ତ ପ୍ରଚଣ୍ଡଶକ୍ତି, ବିଚିତ୍ରକଥ ପ୍ରଭୃତି ସଚିବମାନଙ୍କ ସହିତ ରାତ୍ରିଟି ସେହି ଅରଣ୍ୟ ମଧ୍ୟରେ ହିଁ ବିତାଇଦେଲେ । ପ୍ରଭାତରୁ ନିତ୍ୟକର୍ମ ସମାପନ କରି ସେମାନେ ଅନ୍ୟାନ୍ୟ ସଚିବଙ୍କ ଅନୁସନ୍ଧାନ ସହିତ ଶଶାଙ୍କବତୀଙ୍କୁ ଲାଭ କରିବା ନିମିତ୍ତ ଉଜ୍ଜୟିନୀ ନଗରୀ ପ୍ରତି ଅଗ୍ରସର ହେଲେ । କିଛି ପଥ ଅତିକ୍ରମ କଲାପରେ ସେମାନଙ୍କର ଅନ୍ୟତମ ମିତ୍ର ଓ ସଚିବ ବିକ୍ରମକେଶରୀ ଏକ ଅତିବିକୃତ ମନୁଷ୍ୟ ଉପରେ ବସି ସେମାନଙ୍କ ଆଡ଼କୁ ଆସୁଥିବା ସେମାନଙ୍କର ଦୃଷ୍ଟିପଥାରୂଢ଼ ହେଲା । ମୃଗାଙ୍କଦତ୍ତ ଅନ୍ୟମାନଙ୍କୁ ଏହି ଦୃଶ୍ୟ ଦେଖାଉଥିଲାବେଳେ ସେ ଆସି ଆକାଶମାର୍ଗରୁ ଅବତରଣ କଲେ । ବନ୍ଧୁ ଓ ପ୍ରଭୁଙ୍କର ବିସ୍ମୟଭାବ ଦୂରହେବା ପୂର୍ବରୁ ସେ ଅଶ୍ରୁସିକ୍ତ ନୟନରେ ମୃଗାଙ୍କଦତ୍ତଙ୍କ ପାଦତଳେ ପ୍ରଣିପାତ ଜଣାଇଲେ । ଅତ୍ୟନ୍ତ ଆନନ୍ଦରେ ପ୍ରତ୍ୟେକ ବନ୍ଧୁ ତାଙ୍କୁ ଆଲିଙ୍ଗନ କରି ନିଜନିଜର ସ୍ନେହ ଓ ପ୍ରସନ୍ନତା ପ୍ରକାଶ କରିବାକୁ ଲାଗିଲେ । ବିକ୍ରମକେଶରୀ ମୃଗାଙ୍କଦତ୍ତ ଓ ମିତ୍ରମାନଙ୍କ ସହିତ ମିଳିତ ହେବାପରେ ସେହି କଦାକାର ପୁରୁଷଟିକୁ, ସ୍ମରଣ କଲେ ଆସିବା ନିମିତ୍ତ ଆଦେଶ ଦେଇ, ବିଦାୟ କରିଦେଲେ ।

କିଛି ସମୟ ସେଠାରେ ବସି ସୁଖଦୁଃଖ ଓ କଥାବାର୍ତ୍ତା ହେବାପରେ ମୃଗାଙ୍କଦତ୍ତଙ୍କ ଜିଜ୍ଞାସା କ୍ରମେ ବିକ୍ରମକେଶରୀ ନିଜର ବିଚିତ୍ର ଅନୁଭୂତି ଶୁଣାଇବା ଆରମ୍ଭ କଲେ–

"ନାଗରାଜ ପାରାବତଙ୍କ ଅଭିଶାପ ଫଳରେ ମୁଁ ଆପଣମାନଙ୍କଠାରୁ ବିଚ୍ଛିନ୍ନ ହୋଇ ବହୁଦିନ ପର୍ଯ୍ୟନ୍ତ ଇତସ୍ତତଃ ସନ୍ଧାନ କରିବାକୁ ଲାଗିଲି । ଚତୁର୍ଦ୍ଦିଗରୁ ନିରାଶ

ହୋଇ ଶେଷରେ, ଆମେ ସମସ୍ତେ ଉଜ୍ଜୟିନୀ ଯିବାପାଇଁ ବାହାରିଥିବାରୁ ସେଠାରେ ଆପଣମାନଙ୍କ ସହିତ ମିଳିତ ହେବାର ଆଶା ଓ ବିଶ୍ୱାସ ନେଇ ସେହି ଲକ୍ଷ୍ୟରେ ଅଗ୍ରସର ହେଲି । ଉଜ୍ଜୟିନୀର ନିକଟବର୍ତ୍ତୀ ହେବାରୁ ମୁଁ ନଗର ମଧ୍ୟରେ ପ୍ରବେଶ ନକରି ସମୀପସ୍ଥ ବ୍ରହ୍ମସ୍ଥଳ ନାମକ ଏକ କ୍ଷୁଦ୍ର ପଲ୍ଲୀରେ ଯାଇ ଉପସ୍ଥିତ ହେଲି । ଗ୍ରାମ ଶେଷରେ ଗୋଟିଏ ସୁଶୋଭିତ ପୁଷ୍କରିଣୀ ଥାଏ । ମୁଁ ତା' ତଟରେ ଥିବା ଗୋଟିଏ ବୃକ୍ଷର ପାଦତଳେ ବିଶ୍ରାମ ନେଲି । କିଛି ସମୟ ସେଠାରେ ବସି ପଥଶ୍ରାନ୍ତି ଦୂର କରୁଛି, ସେ ସମୟରେ ଜଣେ ବୃଦ୍ଧ ବ୍ରାହ୍ମଣ ଶୋକାକୁଳ ଭାବେ ସେଠାରେ ଆସି ପହଞ୍ଚିଲେ । ସେ ସର୍ପାଘାତରେ ବିକଳ ହେଉଥାନ୍ତି । ମୋତେ ସେଠାରେ ବସିଥିବା ଦେଖି ସେ ବାତ୍ସଲ୍ୟଭରା କଣ୍ଠରେ କହିଲେ 'ପୁତ୍ର, ସେଠାରୁ ଉଠି ଚାଲିଯା', ନୋଚେତ୍ ତୋତେ ମଧ୍ୟ ମୋ ପରି ଦଶା ଭୋଗ କରିବାକୁ ପଡ଼ିବ । ଏହି ବୃକ୍ଷରେ ଗୋଟିଏ ବିଶାଳକାୟ ସର୍ପ ରହୁଛି । ତା'ର ବିଷଜ୍ୱାଳା ଅତ୍ୟନ୍ତ ଅସହ୍ୟ । ମୁଁ ସେହି ବିଷଜ୍ୱାଳାରେ ଦଗ୍ଧୀଭୂତ ହୋଇ ଏହି ପୁଷ୍କରିଣୀରେ ଆତ୍ମହତ୍ୟା କରିବାକୁ ଯାଉଛି ।'

ବ୍ରାହ୍ମଣଙ୍କୁ ଦେଖି ମୋର ଦୟା ହେଲା । ମୁଁ ତାଙ୍କୁ ଆତ୍ମହତ୍ୟା କରିବାରୁ ନିବୃତ୍ତ କରି ନିଜର ବିଷହରଣ ବିଦ୍ୟା ପ୍ରଭାବରେ ତାଙ୍କୁ ସୁସ୍ଥ କଲି । ବ୍ରାହ୍ମଣ ମୋ ସମ୍ପର୍କରେ ଜାଣିବାପାଇଁ କୌତୂହଳ ପ୍ରକାଶ କରନ୍ତେ ମୁଁ ତାଙ୍କର ଉତ୍କଣ୍ଠା ଓ ଆଗ୍ରହ ଦେଖି ସମସ୍ତ କଥା କହି ଶୁଣାଇଲି । ସେ ସମବେଦନା ପ୍ରକାଶକରି ଆନନ୍ଦର ସହିତ କହିଲେ, 'ପୁତ୍ର, ତୁମର ବୀରତ୍ୱ ମୋତେ ମୁଗ୍ଧ କରିଛି । ଏଣୁ ତୁମେ ମୋଠାରୁ ବେତାଳ ସାଧନ ମନ୍ତ୍ର ଶିକ୍ଷା କର । ଶେଷ ନିଶ୍ୱାସ ନେଲାବେଳେ ପିତା ମୋତେ ଏହି ମନ୍ତ୍ର ଶିକ୍ଷା ଦେଇଥିଲେ । ଏହି ମନ୍ତ୍ର ତୁମ ପରି ପରାକ୍ରମଶାଳୀ ବ୍ୟକ୍ତିମାନଙ୍କର ଯୋଗ୍ୟ । ମୋପରି ଦୁର୍ବଳ ବ୍ୟକ୍ତିମାନେ ଏହାକୁ ନେଇ କ'ଣ କରିବେ ? ଏହାଦ୍ୱାରା ତୁମେ ବିଭିନ୍ନ ସିଦ୍ଧିଲାଭ କରିପାରିବ ।'

ବ୍ରାହ୍ମଣଙ୍କ ସାଗ୍ରହ ନିବେଦନକୁ ମୁଁ ପ୍ରତ୍ୟାଖ୍ୟାନ କରି କହିଲି, 'ମହାଶୟ, ମୋର ଏକମାତ୍ର ଲକ୍ଷ୍ୟ ପ୍ରଭୁ ମୃଗାଙ୍କଦତ୍ତ । ତାଙ୍କୁ ନପାଇବା ପର୍ଯ୍ୟନ୍ତ ବେତାଳ ସାଧନା କରି ମୁଁ କ'ଣ କରିବି ?' ମୋର ମୂର୍ଖତା ଦେଖି ବ୍ରାହ୍ମଣ ହସିଉଠିଲେ । ବେତାଳ ସାଧନାର ମହତ୍ତ୍ୱ ପ୍ରକାଶ କରି ସେ ଉପଦେଶ ଦେଲେ, 'ବେତାଳ ଦ୍ୱାରା ସମସ୍ତ ଅଭୀଷ୍ଟ ସିଦ୍ଧ ହେବା ତୁମେ ବୋଧହୁଏ ଜାଣିନାହଁ । ବେତାଳ ତୁମକୁ ନେଇ ମିତ୍ର ଓ ରାଜକୁମାରଙ୍କ ସହିତ ସାକ୍ଷାତ କରାଇପାରିବ । ଅତୀତରେ ତ୍ରିବିକ୍ରମସେନ ଏହି ବେତାଳ ସାହାଯ୍ୟରେ କିପରି

ବିଦ୍ୟାଧରମାନଙ୍କ ବୈଭବ ପ୍ରାପ୍ତ ହୋଇଥିଲେ ତାହା ତୁମେ ଜାଣିନାହଁ । ପ୍ରଥମେ ସେ ସମ୍ପର୍କରେ ମୋଠାରୁ ତାଙ୍କ ଚରିତ ଶୁଣ–

## ରାଜା ତ୍ରିବିକ୍ରମସେନ କଥା

ଗୋଦାବରୀ ତଟରେ ପ୍ରତିଷ୍ଠାନ ବୋଲି ଏକ ନଗର ଅଛି । ପ୍ରାଚୀନ କାଳରେ ବିକ୍ରମସେନ ନାମରେ ଜଣେ ରାଜା ସେଠାରେ ରାଜତ୍ୱ କରୁଥିଲେ । ତ୍ରିବିକ୍ରମସେନ ତାଙ୍କର ସୁଯୋଗ୍ୟ ପୁତ୍ର । ସେ ଇନ୍ଦ୍ରଙ୍କ ତୁଲ୍ୟ ପରାକ୍ରମଶାଳୀ ଏବଂ ଯଶସ୍ୱୀ । ସେ ପ୍ରତିଦିନ ରାଜସଭାରେ ଯାଇ ସିଂହାସନ ଆରୋହଣ କରିବାମାତ୍ରେ ଜଣେ ଭିକ୍ଷୁ ଆସି ତାଙ୍କୁ ଗୋଟିଏ ଫଳ ପ୍ରଦାନ କରୁଥିଲା । ରାଜା ମଧ୍ୟ ଆଗ୍ରହର ସହିତ ତାଙ୍କଠାରୁ ଫଳଟି ଗ୍ରହଣ କରି ପାର୍ଶ୍ୱରେ ରହୁଥିବା କୋଷାଧ୍ୟକ୍ଷକୁ ସମର୍ପଣ କରିଦେଉଥିଲେ ।

ଏହିପରି ଦଶବର୍ଷ ବିତିଗଲା । ଦିନେ ଭିକ୍ଷୁ ଫଳଟି ପ୍ରଦାନ କରି ଚାଲିଯିବା ପରେ ରାଜା ତାଙ୍କ ପାଳିତ ମର୍କଟର ଶିଶୁପୁତ୍ର ହାତରେ ତାହା ଧରାଇଦେଲେ । ରକ୍ଷକମାନଙ୍କ ବନ୍ଧନରୁ କୌଣସିମତେ ଖସି ଆସି ସେ ରାଜସଭା ମଧ୍ୟରେ ବୁଲୁଥାଏ । ଫଳଟିକୁ ନେଇ ସେ କିଛି ସମୟ ଖେଳିବା ପରେ ତାକୁ ଖାଇବା ପାଇଁ ଆରମ୍ଭ କଲା । ଏ ସମୟରେ ସମସ୍ତଙ୍କୁ ବିସ୍ମିତ କରି ସେହି ଫଳ ମଧ୍ୟରୁ ଗୋଟିଏ ବହୁମୂଲ୍ୟ ରତ୍ନ ଖସିପଡ଼ିଲା । ରାଜା ତାକୁ ଗ୍ରହଣ କରି ପ୍ରତିଦିନ ଭିକ୍ଷୁଠାରୁ ପାଉଥିବା ଫଳଗୁଡ଼ିକ ସମ୍ପର୍କରେ କୋଷାଧ୍ୟକ୍ଷକୁ ଜିଜ୍ଞାସା କଲେ । ସେ ସଂତ୍ରସ୍ତ ଭାବେ କହିଲା, 'ପ୍ରଭୁ, ମୁଁ ରତ୍ନଭଣ୍ଡାରର ଦ୍ୱାର ଉନ୍ମୁକ୍ତ ନକରି ଫଳଗୁଡ଼ିକୁ ଝରକା ଦେଇ ତା' ଭିତରକୁ ଗଳାଇଦିଏ । ଯଦି ଆପଣଙ୍କର ଆଦେଶ ହୁଏ ତେବେ ରତ୍ନଭଣ୍ଡାର ଖୋଲି ଦେଖିବି ।'

ରାଜାଙ୍କଠାରୁ ସ୍ୱୀକୃତି ନେଇ କୋଷାଧ୍ୟକ୍ଷ ରତ୍ନଭଣ୍ଡାର ଖୋଲିବା ନିମିତ୍ତ ପ୍ରସ୍ଥାନ କଲା । ମୁହୂର୍ତ୍ତକ ପରେ ଫେରିଆସି ଜଣାଇଲା 'ପ୍ରଭୁ, ଫଳଗୁଡ଼ିକ ପଚିସଢ଼ି ଯାଇଛି । ସେଗୁଡ଼ିକ ଆଉ ଅକ୍ଷତ ଅବସ୍ଥାରେ ନାହିଁ । ତା' ପରିବର୍ତ୍ତେ ସେଠାରେ ଉଜ୍ଜ୍ୱଳ ଓ ମୂଲ୍ୟବାନ ରତ୍ନଗୁଡ଼ିଏ ଜମିରହିଛି ।' ଏଥିରେ ରାଜା କୋଷାଧ୍ୟକ୍ଷ ପ୍ରତି ସନ୍ତୁଷ୍ଟ ହୋଇ ତାକୁ ସେ ସମସ୍ତ ରତ୍ନ ଦାନ କରିଦେଲେ ।

ପରଦିନ ଭିକ୍ଷୁ ପୂର୍ବପରି ଆସି ରାଜସଭାରେ ଉପସ୍ଥିତ ହେଲା । ସେ ଅଭ୍ୟାସ ଅନୁଯାୟୀ ଫଳଟି ରାଜାଙ୍କ ହସ୍ତରେ ଅର୍ପଣ କଲାବେଳେ ରାଜା ତ୍ରିବିକ୍ରମସେନ କହିଲେ, 'ଭିକ୍ଷୁଶ୍ରେଷ୍ଠ, ତୁମେ ପ୍ରତିଦିନ ଏହିପରି ବହୁମୂଲ୍ୟ ରତ୍ନରାଶିଦ୍ୱାରା ମୋର ସେବା କରିବାର

କାରଣ କ'ଣ ହୋଇପାରେ ? ତୁମେ ନିଜର ଉଦ୍ଦେଶ୍ୟ ବ୍ୟକ୍ତ ନକରିବା ପର୍ଯ୍ୟନ୍ତ ମୁଁ ଏହି ଫଳ ଗ୍ରହଣ କରିବା ଆଉ ସମ୍ଭବ ନୁହେଁ ।'

ରାଜାଙ୍କ କଥାଶୁଣି ଭିକ୍ଷୁ ତାଙ୍କୁ ଗୋଟିଏ ଏକାନ୍ତ ସ୍ଥାନକୁ ନେଇଗଲା । କହିଲା, 'ରାଜନ୍, ମୋତେ ଏକ କଷ୍ଟସାଧ ମନ୍ତ୍ର ସିଦ୍ଧ କରିବାକୁ ହେବ । ସେଥିପାଇଁ ମୁଁ ଜଣେ ବୀରପୁରୁଷଙ୍କ ଅପେକ୍ଷାରେ ଅଛି । ଆପଣଙ୍କ ପରି ବୀର ପୃଥିବୀରେ ବିରଳ । ତେଣୁ ଏହି କାର୍ଯ୍ୟପାଇଁ ମୁଁ ଆପଣଙ୍କ ଅନୁଗ୍ରହ ପ୍ରାର୍ଥୀ ।' ରାଜା ତା'ର ସହାୟତା କରିବାପାଇଁ ସମ୍ମତି ପ୍ରଦାନ କଲେ । ସେ ସନ୍ତୁଷ୍ଟ ହୋଇ ପ୍ରହୃଷ୍ଟ ଚିତ୍ତରେ ରାଜାଙ୍କୁ ନିବେଦନ କଲା, 'ରାଜନ୍, ଆଗାମୀ କୃଷ୍ଣ ଚତୁର୍ଦ୍ଦଶୀ ଦିନ ମୁଁ ଏହି ନଗରର ମହାଶ୍ମଶାନରେ ଥିବା ଏକ ବିଶାଳ ବଟବୃକ୍ଷ ତଳେ ଆପଣଙ୍କୁ ଅପେକ୍ଷା କରିବି । ଆପଣ ଅନୁଗ୍ରହ ପୂର୍ବକ ସେଠାରେ ଆସି ପହଞ୍ଚିବେ ।' ରାଜା ସେପରି କରିବାପାଇଁ ସ୍ୱୀକୃତି ପ୍ରଦାନ କରନ୍ତେ ଭିକ୍ଷୁ ଶାନ୍ତିଶୀଳ ପ୍ରସନ୍ନ ଚିତ୍ତରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲା ।

କୃଷ୍ଣ ଚତୁର୍ଦ୍ଦଶୀ ଆସି ଉପସ୍ଥିତ ହେଲା । ରାଜା ଭିକ୍ଷୁକୁ ଦେଇଥିବା ପ୍ରତିଶ୍ରୁତି ସମ୍ପର୍କରେ ସଚେତନ ହୋଇଉଠିଲେ । ସୂର୍ଯ୍ୟାସ୍ତ ହେବାରୁ କୃଷ୍ଣବସ୍ତ୍ର ପରିଧାନ କରି କପାଳରେ ଚନ୍ଦନର ଚିତା ଏବଂ ହସ୍ତରେ ଖଡ୍‌ଗ ଧାରଣ ପୂର୍ବକ ସେ ଗୁପ୍ତଭାବେ ରାତ୍ରିର ଅନ୍ଧକାର ମଧ୍ୟରେ ରାଜପ୍ରାସାଦରୁ ନିଷ୍କ୍ରାନ୍ତ ହେଲେ ।

ମହାଶ୍ମଶାନର ମହାନ୍ଧକାର ମଧ୍ୟରେ ରାଜା ତ୍ରିବିକ୍ରମସେନ ସେହି ଭୟାନକ ଏବଂ ପୂତିଗନ୍ଧମୟ ରାସ୍ତା ଅତିକ୍ରମ କରୁଥାନ୍ତି । ବିଭିନ୍ନ ସ୍ଥାନରେ ପ୍ରଜ୍ୱଳିତ ଚିତାଗ୍ନି ସବୁ ଶ୍ମଶାନର ଚକ୍ଷୁରୁ ନିର୍ଗତ ବିଭୀଷିକାମୟ ଜ୍ୟୋତି ବୋଲି ମନେହେଉଥାଏ । ନରକଙ୍କାଳ, ନରକପାଳ ଏବଂ ଅର୍ଦ୍ଧଦଗ୍ଧ ଅସ୍ଥିସବୁ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥାଏ । ପ୍ରସନ୍ନଚିତ୍ତରେ ଭୂତ, ପ୍ରେତ, ବେତାଳ ସବୁ ଚତୁର୍ଦ୍ଦିଗରେ ନୃତ୍ୟ କରୁଥାନ୍ତି । ଶ୍ମଶାନ ମହାଭୈରବଙ୍କ ଦ୍ୱିତୀୟ ରୂପ ବୋଲି ମନେହେଉଥାଏ । ଶୃଗାଳମାନଙ୍କର ବିକଟ ଚିତ୍କାର ଆଗନ୍ତୁକମାନଙ୍କୁ ଦୂରରେ ରହିବାପାଇଁ ନିର୍ଦ୍ଦେଶ ଦେଉଥାଏ । ରାଜା ତ୍ରିବିକ୍ରମସେନ ନିର୍ଭୀକ ଭାବରେ ସେହି ମହାଶ୍ମଶାନ ମଧ୍ୟରେ ଭିକ୍ଷୁର ସନ୍ଧାନ ନେଉଥାନ୍ତି । ଶେଷରେ ଏକ ବିଶାଳ ବଟବୃକ୍ଷର ନିମ୍ନଦେଶରେ ଭିକ୍ଷୁ ଏକ ମଣ୍ଡଳ ପ୍ରସ୍ତୁତ କରୁଥିବା ତାଙ୍କର ଦୃଷ୍ଟିଗୋଚର ହେଲା । ସେ ତା' ନିକଟରେ ଯାଇ ପହଞ୍ଚିଲେ । କହିଲେ, 'ଭିକ୍ଷୁ, ଦେଖ ମୁଁ ଆସିଗଲି, ବର୍ତ୍ତମାନ କ'ଣ କରିବାକୁ ହେବ କୁହ ।' ରାଜାଙ୍କୁ ଦେଖି ଭିକ୍ଷୁ ଅତ୍ୟନ୍ତ ଆନନ୍ଦିତ ହେଲା । କହିଲା,

'ରାଜନ୍, ଯଦି ଆପଣ ମୋ ପ୍ରତି ଅନୁଗ୍ରହ କରୁଛନ୍ତି ତେବେ ଦୟାପୂର୍ବକ ଏଠାରୁ ଦକ୍ଷିଣକୁ ଯା'ନ୍ତୁ । ବହୁଦୂର ଯିବାପରେ ଆପଣ ଗୋଟିଏ ଏକାଟିଆ ଶିଂଶପା ବୃକ୍ଷ ଦେଖିବାକୁ ପାଇବେ । ଏହାର ଶାଖାରେ ଗୋଟିଏ ଶବ ଝୁଲୁଥିବ । ଆପଣ ଶବଟିକୁ ଏଠାକୁ ନେଇ ଆସିଲେ ମୋର କାର୍ଯ୍ୟ ସିଦ୍ଧ ହେବ ।'

ସତ୍ୟପ୍ରତିଜ୍ଞ ରାଜା ଭିକ୍ଷୁକୁ ପ୍ରତିଶ୍ରୁତି ଦେଇ ଦକ୍ଷିଣ ଦିଗକୁ ଅଗ୍ରସର ହେଲେ । ପ୍ରଜ୍ୱଳିତ ଚିତାଗ୍ନି ସବୁ ତାଙ୍କୁ ମାର୍ଗ ଦେଖାଉଥାନ୍ତି । ଏଣେତେଣେ ଦୃଷ୍ଟିପାତ କରି ଶେଷରେ ସେ ଯାଇ ଭିକ୍ଷୁ-କଥିତ ଶିଂଶପା ବୃକ୍ଷ ନିକଟରେ ପହଞ୍ଚିଲେ । ବୃକ୍ଷଟି ଶ୍ମଶାନ ଧୂମରେ କଳା ପଡ଼ିଯାଇଥାଏ । ବୃକ୍ଷ ଦେହରୁ ଦଗ୍ଧମାଂସର ଦୁର୍ଗନ୍ଧ ବାହାରୁଥାଏ । ତା'ର ଶାଖା ଉପରେ, ଭିକ୍ଷୁ କହିବା ପରି ଗୋଟିଏ ଶବ ଝୁଲୁଥିବା ତାଙ୍କର ଦୃଷ୍ଟିପଥାରୂଢ଼ ହେଲା । କୌଣସି ପ୍ରେତର ସ୍କନ୍ଧ ଉପରେ ଝୁଲିଲା ପରି ଶବଟି ଦେଖାଯାଉଥାଏ । ରାଜା ବୃକ୍ଷ ଉପରକୁ ଯାଇ ବନ୍ଧାଥିବା ରଜ୍ଜୁଟି କାଟିଦେବାରୁ ଶବଟି ଭୂମି ଉପରେ ପଡ଼ିଗଲା । ପଡ଼ିବାମାତ୍ରେ ତା' ମୁହଁରୁ ଏପରି ବିକଟ ଚିତ୍କାର ନିର୍ଗତ ହେଲା ଯେ, ମନେହେଲା ସତେ ଯେପରି ସେ ବିଶେଷଭାବେ ଆଘାତପ୍ରାପ୍ତ ହୋଇଛି । ରାଜା ଭାବିଲେ ମନୁଷ୍ୟଟି ଜୀବିତ ଅଛି । ତା' ପ୍ରତି ତାଙ୍କର ଦୟା ହେଲା । ବୃକ୍ଷରୁ ଅବତରଣ କରି ସେ ତା' ଶରୀରରେ ହାତ ବୁଲାଇବାକୁ ଲାଗିଲେ । ଏଥିରେ ଶବଟି ଅଟ୍ଟହାସ କରିବାକୁ ଲାଗିଲା ।

ରାଜା ବୁଝିପାରିଲେ ଯେ ଶବଟି ବର୍ତ୍ତମାନ ବେତାଳଦ୍ୱାରା ଆବିଷ୍ଟ । ରାଜା ତାକୁ ନିର୍ଭୟ ଚିତ୍ତରେ କହିଲେ 'ହସୁଛ କାହିଁକି ? ଚାଲ ଆମେ ଯିବା ।' ରାଜା ଏପରି କହି ଦେଖିଲା ବେଳକୁ ଶବଟି ସେଠାରେ ଆଉ ନାହିଁ । ସେ ପୁଣିଯାଇ ବୃକ୍ଷ ଶାଖାରେ ଝୁଲୁଛି । ସେ ପୁଣି ବୃକ୍ଷ ଆରୋହଣ କରି ତାକୁ ତଳେ ପକାଇଲେ । ଏହିପରି କିଛିଥର କଲାପରେ ରାଜା ଅନ୍ୟ ଉପାୟ ନଦେଖି ଶବଟିକୁ ନିଜ କାନ୍ଧରେ ଧରି ତଳକୁ ଓହ୍ଲାଇ ଆସିବା ପାଇଁ ବାଧ୍ୟ ହେଲେ । ଇନ୍ଦ୍ରଙ୍କ ବଜ୍ରାସ୍ତ୍ର ଭାଙ୍ଗିଯାଇପାରେ କିନ୍ତୁ ବୀରପୁରୁଷମାନଙ୍କ ମନୋବଳ କେବେହେଲେ ନଷ୍ଟ ହୁଏ ନାହିଁ ।

**ବଜ୍ରାଦପି ହି ବୀରାଣାଂ ଚିତ୍ତରତ୍ନମଖଣ୍ଡିତମ୍ ।**

ରାଜା ତ୍ରିବିକ୍ରମସେନ ଶବଟିକୁ ସେହିପରି ଭାବେ ସ୍କନ୍ଧରେ ଧାରଣ କରି ଚୁପ୍‌ଚାପ୍ ଭିକ୍ଷୁ ନିକଟକୁ ଫେରିବା ଆରମ୍ଭ କଲେ । ପଥ ଅତିକ୍ରମ କଲାବେଳେ ଶବ ମଧ୍ୟରେ ଥିବା ବେତାଳ କହିଲା, 'ରାଜନ୍, ରାସ୍ତା ଅତିକ୍ରମ କରିବାର ବିରକ୍ତି ଦୂର କରିବାପାଇଁ ମୁଁ ଗୋଟିଏ ଗଳ୍ପ କହୁଛି, ଶୁଣନ୍ତୁ—

## ପ୍ରଥମ ବେତାଳ : ପଦ୍ମାବତୀ କଥା

ବାରାଣସୀ ନାମରେ ଏକ ନଗରୀ ଅଛି । ଭଗବାନ ଗୌରୀପତିଙ୍କ ପ୍ରିୟ ବାସସ୍ଥଳ ରୂପେ ଏହାର ପ୍ରସିଦ୍ଧି ବିଶ୍ୱବିଖ୍ୟାତ । ପୁଣ୍ୟଜନ (ପୁଣ୍ୟାତ୍ମା ଓ ଯକ୍ଷ)ମାନଙ୍କ ବାସସ୍ଥଳୀ ରୂପେ ଏହା କୈଳାସ ତୁଲ୍ୟ ପବିତ୍ର । ଗଙ୍ଗାର ଗଭୀର ସ୍ରୋତ ରୂପକ ହାରଯଷ୍ଟି ଦ୍ୱାରା ଏହା ସୁଷମାନ୍ୱିତ । ପ୍ରାଚୀନ କାଳରେ ଏଠାରେ ପ୍ରତାପମୁକୁଟ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କରି ପ୍ରତାପଅଗ୍ନି ଶତ୍ରୁକୁଳ ରୂପକ ଅରଣ୍ୟକୁ ଦଗ୍ଧୀଭୂତ କରିଥିଲା । ବଜ୍ରମୁକୁଟ ତାଙ୍କର ଏକମାତ୍ର ପୁତ୍ର । ସେ ରୂପରେ କାମଦେବ ଏବଂ ଧୈର୍ଯ୍ୟରେ ଶତ୍ରୁମାନଙ୍କ ଗର୍ବକୁ ଚୂର୍ଣ୍ଣବିଚୂର୍ଣ୍ଣ କରୁଥିଲେ । ସଚିବ ପୁତ୍ର ବୁଦ୍ଧିଶରୀର ତାଙ୍କର ଅନ୍ତରଙ୍ଗ ବନ୍ଧୁ । ସେ ରାଜକୁମାରଙ୍କୁ ନିଜ ଶରୀର ଅପେକ୍ଷା ମଧ୍ୟ ଅଧିକ ଭଲ ପାଉଥିଲେ । ବୁଦ୍ଧି ଶରୀର ନିଜ ନାମାନୁରୂପ ବୁଦ୍ଧିମାନ ଓ ଶାସ୍ତ୍ରକୁଶଳ ।

ଦିନେ ମୃଗୟାରେ ବାହାରି ଉଭୟ ବନ୍ଧୁ ନଗରଠାରୁ ବହୁ ଦୂରକୁ ଚାଲିଗଲେ । ଶୌର୍ଯ୍ୟଲକ୍ଷ୍ମୀଙ୍କ ଚାମର ତୁଲ୍ୟ ଦୀର୍ଘକେଶର ଯୁକ୍ତ ସିଂହମାନଙ୍କୁ ଶିକାର କରି ଉଭୟେ ଧନୁର୍ବାଣ ହସ୍ତରେ ଏକ ନିଘଞ୍ଚ ଅରଣ୍ୟାନୀ ମଧ୍ୟରେ ଯାଇ ପ୍ରବେଶ କଲେ । ସେହି ଅରଣ୍ୟ କାମଦେବଙ୍କ ଉପବନ ପରି ଶୋଭା ପାଉଥିଲା । କୋକିଳ ରୂପୀ ବନ୍ଦୀମାନଙ୍କ ସ୍ତୁତିଗାନ ଏବଂ ବୃକ୍ଷମାନଙ୍କର ଆନ୍ଦୋଳିତ ପୁଷ୍ପମଞ୍ଜରୀଗୁଡ଼ିକର ଚାମର ସେବା, ଏହାକୁ ଏକ ରାଜପ୍ରାସାଦରେ ପରିଣତ କରିଥିଲା । ସେହି ଅରଣ୍ୟ ମଧ୍ୟରେ ସମୁଦ୍ରପରି ଏକ ବିଶାଳ ସରୋବର ବିକଶିତ ପଦ୍ମସମୂହ ଦ୍ୱାରା ଶୋଭା ପାଉଥାଏ । ଉଭୟ ମିତ୍ର ତା'ର ତଟଦେଶରେ ବିଶ୍ରାମ କରୁଥିବା ବେଳେ ଜଣେ ଦିବ୍ୟ ରୂପବତୀ କନ୍ୟା ସ୍ନାନ କରିବା ନିମିତ୍ତ ନିଜର ସଖୀମାନଙ୍କ ସହିତ ସେଠାରେ ଆସି ଉପସ୍ଥିତ ହେଲେ । ତାଙ୍କ ଲାବଣ୍ୟ ନିର୍ଝରିଣୀରେ ସରୋବର ପରିପୂର୍ଣ୍ଣ ହୋଇଉଠିଲା । ତାଙ୍କ କଟାକ୍ଷର ଚଞ୍ଚଳତା ସରୋବରଟିକୁ ନୀଳକମଳରେ ଆଚ୍ଛାଦନ କଲା । ଚନ୍ଦ୍ରମା ତୁଲ୍ୟ ତାଙ୍କର ମୁଖମଣ୍ଡଳ ସରୋବରର ପୁଷ୍ପିତ କମଳଗୁଡ଼ିକୁ ତିରସ୍କାର କରୁଥିଲେ । ଯୁବରାଜ କନ୍ୟାଟିର ରୂପରାଶିରେ ବିମୁଗ୍ଧ ହୋଇପଡ଼ିଲେ । ସେ କନ୍ୟାଟିର ପରିଚୟ ସମ୍ପର୍କରେ ଚିନ୍ତା କରୁଥିବା ବେଳେ ରୂପସୀ ତାଙ୍କ ପ୍ରତି ଆକୃଷ୍ଟ ହୋଇ ସ୍ନାନକ୍ରୀଡ଼ା ମାଧ୍ୟମରେ ନିଜର ପରିଚୟ ଜଣାଇଲା ।

ପ୍ରଥମେ ସେ ନିଜର ଶିରୋଭୂଷା ପୁଷ୍ପସ୍ତବକରୁ ଗୋଟିଏ ପଦ୍ମଫୁଲ ବାହାର କରି କାନରେ ଲଗାଇଲା, କିଛି ସମୟ ଗୋଟିଏ ମୃଣାଳ ଖଣ୍ଡରେ ନିଜର ଦନ୍ତପଂକ୍ତିକୁ

ମାର୍ଜନା କଲା, ଅନ୍ୟ ଏକ ପଦ୍ମପୁଷ୍ପକୁ ନେଇ ନିଜର ମସ୍ତକ ଉପରେ ରଖି ଉଭୟ ହସ୍ତଦ୍ୱାରା ନିଜ ହୃଦୟକୁ ଆଚ୍ଛାଦନ କଲା । ରାଜକୁମାର ଏହାକୁ ତା'ର ଆତ୍ମ ପରିଚୟ ପାଇଁ ଏକ ଇଙ୍ଗିତ ବୋଲି ବୁଝିପାରିଲେ ନାହିଁ । କିନ୍ତୁ ବୁଦ୍ଧିମାନ ସଚିବପୁତ୍ର କନ୍ୟାଟିର ଇଙ୍ଗିତକୁ ଠିକ୍ ଭାବରେ ବୁଝିନେଲେ ।

ଦୁଇଜଣ ଯୁବକଙ୍କୁ ସେଠାରେ ଉପସ୍ଥିତ ଥିବା ଦେଖି ସଖୀମାନେ କନ୍ୟାଟିକୁ ନେଇ ଯଥାଶୀଘ୍ର ସେଠାରୁ ପ୍ରସ୍ଥାନ କଲେ । କନ୍ୟା ଗୃହ ମଧ୍ୟରେ ପ୍ରବେଶ କରି ନିଜକୁ ଶଯ୍ୟା ଉପରେ ଲୋଟାଇ ଦେଲା, କିନ୍ତୁ ତା'ର ହୃଦୟ ଇଙ୍ଗିତର ଅର୍ଥ ସମ୍ପର୍କରେ ଚିନ୍ତା କରୁଥିବା ରାଜପୁତ୍ରଙ୍କ ନିକଟରେ ରହିଗଲା ।

ରାଜକୁମାର ନିଜ ରାଜଧାନୀକୁ ଫେରିଯାଇ ବିରହ ଜ୍ୱାଳାରେ ସନ୍ତପ୍ତ ହେବାକୁ ଲାଗିଲେ । ମନେହେଲା ଜଣେ ବିଦ୍ୟାଧର ଯେପରି ତା'ର ମନ୍ତ୍ର ବିସ୍ମୃତ ହୋଇପଡ଼ିଛି ।

ଦିନେ ମିତ୍ର ବୁଦ୍ଧିଶରୀର ରାଜକୁମାରଙ୍କ ମନୋବେଦନାର କାରଣ ଶୁଣି କନ୍ୟାଟି ସହିତ ପୁଣି ଯାଇ ସାକ୍ଷାତ କରିବା କଷ୍ଟକର ନୁହେଁ ବୋଲି ଆଶ୍ୱାସନା ଦେଲେ । କିନ୍ତୁ ରାଜକୁମାର ଏଥିରେ ଆଶ୍ୱସ୍ତ ନହୋଇ ଦୁଃଖର ସହିତ କହିଲେ, 'ମିତ୍ର, ଯାହାର ନାମ, ଧାମ, କୁଳ, ଗୋତ୍ର କିଛି ଆମେ ଜାଣିନେ ତା' ସହିତ ଯାଇ ଦେଖାକରିବା ଏକ ଅସମ୍ଭବ ବ୍ୟାପାର । ତୁମେ ମୋତେ ଏପରି ଅଯଥା ଆଶ୍ୱାସନା ଦେବାରେ ଲାଭ କ'ଣ ଅଛି ?' ମନ୍ତ୍ରୀପୁତ୍ର ମିତ୍ରଙ୍କର ଏପରି ହତାଶ ଭାବ ଦେଖି ଶାନ୍ତ ଭାବରେ କହିଲେ, 'ମିତ୍ର, ଇଙ୍ଗିତରେ ସେ ଯାହାସବୁ କହିଗଲା ସେଥିରୁ କ'ଣ ତୁମେ କିଛି ବୁଝିପାରିଲ ନାହିଁ ? କନ୍ୟାଟି ମସ୍ତକରୁ ବାହାର କରି ଉତ୍ପଳଟିଏ କାନ ଉପରେ ରଖିବା ଦ୍ୱାରା ଜଣାଇଦେଲା ଯେ ସେ ରାଜା କର୍ଣ୍ଣୋତ୍ପଳଙ୍କ ଦେଶରେ ରହେ । ଦନ୍ତ ମାର୍ଜନ ଦ୍ୱାରା ସେ ସୂଚନା ଦେଲା ଯେ ସେ ଜଣେ ଦନ୍ତଚିକିତ୍ସକଙ୍କ କନ୍ୟା । କାନରେ ପଦ୍ମଫୁଲଟିଏ ଖୋସିବା ଯୋଗୁଁ ତା'ର ନାମ ପଦ୍ମାବତୀ । ଉଭୟ ହସ୍ତକୁ ନିଜର ହୃଦୟ ଉପରେ ଛନ୍ଦି କହିଛି ମୋର ହୃଦୟ ଆପଣଙ୍କୁ ସମର୍ପିତ ହେଲା ।

କଳିଙ୍ଗ ଦେଶରେ କର୍ଣ୍ଣୋତ୍ପଳ ନାମକ ଜଣେ ରାଜା ରାଜତ୍ୱ କରନ୍ତି । ତାଙ୍କ ରାଜଦରବାରେ ସଂଗ୍ରାମବର୍ଦ୍ଧନ ନାମରେ ଜଣେ ଦନ୍ତଚିକିତ୍ସକ ଅତ୍ୟନ୍ତ ଖ୍ୟାତିସମ୍ପନ୍ନ ଓ ସ୍ୱନାମଧନ୍ୟ । ସେ ରାଜାଙ୍କର ଅତ୍ୟନ୍ତ ପ୍ରିୟପାତ୍ର । ତାଙ୍କର ପ୍ରାଣପ୍ରିୟା କନ୍ୟା ପଦ୍ମାବତୀ ରୂପରେ ମଣିତୁଲ୍ୟ ଦେଦୀପ୍ୟମାନା । ମିତ୍ର, ମୁଁ ତାଙ୍କର ରୂପ ଐଶ୍ୱର୍ଯ୍ୟ ସମ୍ପର୍କରେ କଳିଙ୍ଗରୁ ଆସୁଥିବା ଲୋକମାନଙ୍କଠାରୁ ଶୁଣିଥିଲି ବୋଲି ଏହି ଇଙ୍ଗିତ ବୁଝିପାରିଛି ।'

ମିତ୍ରଙ୍କ ମଧୁର ବାକ୍ୟରେ ରାଜକୁମାର କିଛି ଆଶ୍ୱସ୍ତ ହେଲେ । ପ୍ରଣୟିନୀର ସୁସମ୍ବାଦ କାହାକୁ ବା ଆନନ୍ଦ ନଦିଏ । ପରଦିନ ପ୍ରଭାତରୁ ଉଭୟ ମିତ୍ର ମୃଗୟାଛଳରେ ପୁଣି ସେହି ଦିଗକୁ ଯାତ୍ରା କଲେ । କିଛିଦୂର ଯିବାପରେ ନିଜ ଅଶ୍ୱଗୁଡ଼ିକୁ ବାୟୁବେଗରେ ପ୍ରଧାବିତ କରାଇ ସେମାନେ ସୈନ୍ୟମାନଙ୍କଠାରୁ ଦୂରେଇଗଲେ । କିଛିଦିନ ମଧ୍ୟରେ କଳିଙ୍ଗ ରାଜଧାନୀ ସେମାନଙ୍କର ଦୃଷ୍ଟିଗୋଚର ହେଲା । ନଗର ମଧ୍ୟରେ ପ୍ରବେଶ କରି ସେମାନେ ଦନ୍ତବୈଦ୍ୟ ସଂଗ୍ରାମବର୍ଦ୍ଧନଙ୍କ ବାସଗୃହ ଠାବ କଲେ । ତାଙ୍କ ଗୃହ ନିକଟରେ ହିଁ ରହିବାର ଅଭିଳାଷ ପୋଷଣ କରି ନିକଟସ୍ଥ ଏକ ବୃଦ୍ଧା ବ୍ରାହ୍ମଣୀ ଗୃହରେ ଯାଇ ଆଶ୍ରୟ ଭିକ୍ଷା କଲେ ।

ବୃଦ୍ଧା ଉଭୟଙ୍କୁ ନିଜ ଗୃହରେ ଆଶ୍ରୟ ଦେଲା । ମନ୍ତ୍ରୀ କୁମାର ଅଶ୍ୱଦୁଇଟିର ଖାଦ୍ୟପେୟ ବ୍ୟବସ୍ଥା କରି ଗୁପ୍ତ ସ୍ଥାନରେ ନେଇ ବାନ୍ଧିଦେଲେ । କଥା ପ୍ରସଙ୍ଗରେ ସେ ବୃଦ୍ଧାଠାରୁ ଦନ୍ତ ଚିକିତ୍ସକ ସଂଗ୍ରାମବର୍ଦ୍ଧନଙ୍କ ସମ୍ପର୍କରେ ଜାଣିବାପାଇଁ ଚାହାଁନ୍ତେ ବୃଦ୍ଧା ଶ୍ରଦ୍ଧାର ସହିତ କହିଲା, 'ସଂଗ୍ରାମବର୍ଦ୍ଧନଙ୍କୁ କ'ଣ ମୁଁ ଜାଣିନି ? ମୁଁ ତାଙ୍କ ଧାତ୍ରୀ (ଧାୟୀ) । ବୟସ ବଢ଼ିଯିବାରୁ ସେ ଏବେ ମୋତେ ତାଙ୍କ କନ୍ୟା ପଦ୍ମାବତୀର ଦେଖାଶୁଣାପାଇଁ ନିଯୁକ୍ତ କରିଛନ୍ତି । କିନ୍ତୁ ପିନ୍ଧିବାପାଇଁ ମୋ ନିକଟରେ ବସ୍ତ୍ରଟିଏ ନଥାଏ ବୋଲି ମୁଁ ପ୍ରତିଦିନ ସେଠାକୁ ଯାଇପାରେ ନାହିଁ । ମୋର ଗୋଟିଏ ବୋଲି ପୁତ୍ର । ସେ ଦୁଶ୍ଚରିତ୍ର ଓ ଜୁଆଡ଼ି । ମୋର ଲୁଗାଟିଏ ଦେଖିଲେ ହିଁ ସେ ତାକୁ ଉଠାଇ ନେଇଯାଏ । ତେଣୁ ମୋ ଭାଗ୍ୟରେ ଏହି ଛିଣ୍ଡା ଲୁଗା ହିଁ ଅଛି ।'

ବୃଦ୍ଧାଠାରୁ ଏହା ଶୁଣି ଉଭୟେ ଆନନ୍ଦରେ ତାକୁ ନିଜର ଉତ୍ତରୀୟ ବସ୍ତ୍ର ଓ ପ୍ରଚୁର ଧନ ସମ୍ପତ୍ତି ଦେଇ ସନ୍ତୁଷ୍ଟ କଲେ । ମନ୍ତ୍ରୀ ପୁତ୍ର ଏହି ସୁଯୋଗରେ ବୃଦ୍ଧାକୁ କହିଲେ, 'ମା, ତୁମେ ତ ଆମର ମାତା ସମାନ । ତେଣୁ ଆମେ ଯାହା କହୁଛୁ ତାକୁ ଗୁପ୍ତ ଭାବରେ ଆମପାଇଁ କରିଦିଅ । ଏହି ଦନ୍ତବୈଦ୍ୟଙ୍କ କନ୍ୟା ପଦ୍ମାବତୀଙ୍କୁ ଖାଲି ଯାଇ କହିଦିଅ ଯେ ଯେଉଁ ରାଜକୁମାରଙ୍କୁ ସେ ସରୋବର ତଟରେ ଦେଖିଥିଲେ ସେହି ରାଜକୁମାର ଏଠାରେ ଆସି ପହଞ୍ଚିଛନ୍ତି ଏବଂ ତୁମକୁ ଜଣାଇବାପାଇଁ ମୋଦ୍ୱାରା ଏହି ସନ୍ଦେଶ ପଠାଇଛନ୍ତି ।'

ଧନରାଶିରେ ସନ୍ତୁଷ୍ଟ ବୃଦ୍ଧା, 'ଇଏବା କି ଛାର କଥା' କହି ସଙ୍ଗେସଙ୍ଗେ ପଦ୍ମାବତୀଙ୍କ ନିକଟକୁ ଚାଲିଲା । କିନ୍ତୁ ଉଭୟ ମିତ୍ର ଏ ସମ୍ପର୍କରେ କିଛି କଥାବାର୍ତ୍ତା ଆରମ୍ଭ କରିବା ପୂର୍ବରୁ ସେ ଫେରିଆସିଲା । ଏତେ ଶୀଘ୍ର ଫେରିଆସିବାର କାରଣ ପଚାରିବାରୁ ସେ

କହିଲା, 'ମୁଁ ତୁମମାନଙ୍କ ଆସିବାର କଥା ତାକୁ ଗୋପନରେ ଜଣାଇଲି । ଏହା ଶୁଣିବା ମାତ୍ରେ ସେ ମୋତେ ବହୁତ ଗାଳିମନ୍ଦ କଲା । ପୁଣି ନିଜ ହାତରେ କର୍ପୂର ଲଗାଇ ମୋ ଗାଲରେ ଦୁଇ ଚାପୁଡ଼ା ମାରିଲା । ଏହି ଅପମାନରେ ମୁଁ କାନ୍ଦିକାନ୍ଦି ଫେରିଆସିଲି । ମୋ ମୁହଁରେ ତା'ର ମାରିବା ଚିହ୍ନ ମଧ୍ୟ ଦେଖ ।'

ବୃଦ୍ଧାର କଥାରେ ରାଜକୁମାର ଉଦାସ ହୋଇପଡ଼ିଲେ କିନ୍ତୁ ମନ୍ତ୍ରୀପୁତ୍ର ହସିହସି ତାଙ୍କୁ ଏକାନ୍ତରେ କହିଲେ, 'ମିତ୍ର, ତୁମର ମନୋରଥ ସିଦ୍ଧ ହେବ । ତେଣୁ ତୁମେ ଆଉ ଦୁଃଖ କର ନାହିଁ । ପଦ୍ମାବତୀ ବୁଢ଼ୀକୁ ଭର୍ତ୍ସନା କରି ତାଙ୍କ ହୃଦୟର ଭାବକୁ ଗୋପନ ରଖିଛନ୍ତି । ବୁଢ଼ୀର ଗାଲରେ ଆଘାତ ଦେବା ଛଳରେ କର୍ପୂରର ଦଶଟି ଅଙ୍ଗୁଳି ଚିହ୍ନ ଦେଇ ସୂଚାଇଛନ୍ତି ଯେ ଆଗାମୀ ଶୁକ୍ଳଦଶମୀ ଦିନ ମିଳନର ଶୁଭ ମୁହୂର୍ତ୍ତ ଅଛି । ସେହିଦିନ ରାତିରେ ସେ ତୁମକୁ ସାକ୍ଷାତ କରିବେ । ଶୁକ୍ଳଦଶମୀ ପର୍ଯ୍ୟନ୍ତ ଆମକୁ ଅପେକ୍ଷା କରିବାକୁ ପଡ଼ିବ ।'

ରାଜକୁମାରଙ୍କୁ ଏପରି ଆଶ୍ୱାସନା ଦେଇ ମନ୍ତ୍ରୀପୁତ୍ର ବଜାରଆଡ଼େ ଚାଲିଗଲେ । ନିଜ ପାଖରେ ଥିବା କିଛି ଅଳଙ୍କାର ବିକ୍ରୟ କରି ଉତ୍ତମ ଭୋଜନ ସାମଗ୍ରୀ ସବୁ କିଣି ଆଣିଲେ । ବୃଦ୍ଧାଦ୍ୱାରା ସୁମିଷ୍ଟ ଖାଦ୍ୟ ପ୍ରସ୍ତୁତ କରାଇ ଉଭୟେ ତା' ଗୃହରେ ଦଶମୀ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଲାଗିଲେ ।

ଏହିପରି ଦଶଦିନ ବିତିଗଲା । ବୁଦ୍ଧିଶରୀର ବୈଦ୍ୟକୁମାରୀଙ୍କ ମନୋଭାବ ଜାଣିବାପାଇଁ ପୁଣି ସେ ବୃଦ୍ଧା ବ୍ରାହ୍ମଣୀକୁ ପଠାଇଲେ । ସେ ମଧ୍ୟ ଉତ୍ତମ ଖାଦ୍ୟପେୟ ଓ ବସ୍ତ୍ରଭୂଷଣ ଲୋଭରେ ତାଙ୍କ ଅନୁରୋଧ ରକ୍ଷାକଲା । କିନ୍ତୁ ଏଥର ମଧ୍ୟ ସଙ୍ଗେସଙ୍ଗେ ଫେରିଆସି ଅପମାନିତ ହୋଇଥିବା କଥା ପ୍ରକାଶ କଲା । କହିଲା, 'ଆଜି ମଧ୍ୟ ମୁଁ ଯାଇ ପଦ୍ମାବତୀ ଆଗରେ ଚୁପ୍‌ଚାପ୍ ଠିଆ ହେଲି । ମୋତେ ଦେଖି ତୁମମାନଙ୍କ ସମ୍ପର୍କରେ କହିଥିବା ଅପରାଧକୁ ମନେପକାଇ ଦେଇ ଧିକ୍‌କାର କଲା । କେବଳ ସେତିକି ନୁହେଁ, ସେ ତାର ତିନୋଟି ଅଙ୍ଗୁଳିକୁ ଅଳତା ରଙ୍ଗରେ ବୁଡ଼ାଇ ମୋ ଛାତିରେ ତିନୋଟି ଗାର ଟାଣିଦେଲା । ତାର ଏହି ବ୍ୟବହାରରେ କ୍ଷୁଣ୍ଣ ହୋଇ ମୁଁ ସଙ୍ଗେସଙ୍ଗେ ଫେରିଆସିଲି ।'

ବୃଦ୍ଧା ପ୍ରତି ପଦ୍ମାବତୀର ଆଚରଣ ବିଶ୍ଳେଷଣ କରିବାକୁ ଯାଇ ମନ୍ତ୍ରୀକୁମାର ଏକାନ୍ତରେ ମିତ୍ରଙ୍କୁ କହିଲେ, 'ମିତ୍ର, ଆପଣ ଏଥିରେ ଶଙ୍କିତ ହେବା ଉଚିତ ନୁହେଁ । ବୁଦ୍ଧିମତୀ ଅଳତା ରଙ୍ଗରେ ଏହାର ଛାତିରେ ତିନୋଟି ଗାର ଟାଣିଦେଇ କୌଶଳରେ

ସୂଚନା ଦେଇଛନ୍ତି ଯେ ସେ ବର୍ତ୍ତମାନ ରଜସ୍ୱଳା । ତେଣୁ ତିନିରାତି ପର୍ଯ୍ୟନ୍ତ ଆପଣ ତାଙ୍କୁ ଦେଖା କରିପାରିବେ ନାହିଁ ।'

ତିନିଦିନ ବିତିଯିବା ପରେ ମନ୍ତ୍ରୀପୁତ୍ର ବ୍ରାହ୍ମଣୀଙ୍କୁ ପ୍ରଲୋଭିତ କରି ପୁଣି ପଦ୍ମାବତୀଙ୍କ ନିକଟକୁ ପଠାଇଲେ । ବୃଦ୍ଧା ଏହିଥର ସେଠାରେ ଯାଇ ପହଞ୍ଚିବାରୁ ପଦ୍ମାବତୀ ତାଙ୍କୁ ସ୍ୱାଗତ କରି ଉତ୍ତମ ଖାଦ୍ୟପେୟ ଦ୍ୱାରା ଆପ୍ୟାୟିତ କଲେ । କଥାବର୍ତ୍ତାରେ ଦିନଟି ବିତିଗଲା । ସଂଧ୍ୟାହେବାରୁ ବୃଦ୍ଧା ନିଜ ବାସଗୃହକୁ ଫେରି ଆସିବାପାଇଁ ଉଦ୍ୟତ ହେଲାବେଳେ ବାହାରୁ ଭୀତିପୂର୍ଣ୍ଣ କୋଳାହଳ ଶୁଣାଗଲା । କେହିଜଣେ ଲୋକମାନଙ୍କୁ ସତର୍କ କରି କହୁଥାଏ, 'ରାଜଭବନର ଗୋଟିଏ ହାତୀ ପାଗଳ ହୋଇଯାଇଛି । ବନ୍ଧନ ଛିଣ୍ଡାଇ ହାତୀଟି ରାଜରାସ୍ତାରେ ଲୋକମାନଙ୍କୁ ମାଡ଼ିମକଚି ଏଣେତେଣେ ଦୌଡୁଛି । ଏଣୁ, ସାବଧାନ୍, କେହି ରାଜରାସ୍ତାକୁ ଆସନ୍ତୁ ନାହିଁ ।' ଏଥିରେ ବୃଦ୍ଧା ବିବ୍ରତ ହୋଇପଡ଼ିବାରୁ ପଦ୍ମାବତୀ କହିଲେ, 'ରାଜମାର୍ଗକୁ ସେହି ପାଗଳା ହାତୀ ଆକ୍ରାନ୍ତ କରି ରଖିଛି । ତେଣୁ ସେହି ବାଟଦେଇ ଯିବା ନିରାପଦ ନୁହେଁ । ତେଣୁ ମୁଁ ଗୋଟିଏ ଉପାୟ କରୁଛି । ଦଉଡ଼ି ବନ୍ଧାଥିବା ଗୋଟିଏ ପିଢ଼ା ଉପରେ ବସାଇ ଏହି ଝରକା ବାଟରେ ତୋତେ ତଳେ ଥିବା ବଗିଚା ମଧ୍ୟକୁ ଓହ୍ଲାଇ ଦେଉଛି । ଏହାପରେ ତୁ ଗୋଟିଏ ବୃକ୍ଷ ସାହାଯ୍ୟରେ ପାଚେରି ଉପରକୁ ଉଠିଯିବୁ । ସେଠାରୁ ଅନ୍ୟ ଏକ ବୃକ୍ଷଶାଖା ଧରି ତଳକୁ ଓହ୍ଲାଇଗଲେ ଘରଦ୍ୱାରରେ ଯାଇ ପହଞ୍ଚିବୁ ।' ବୈଦ୍ୟକନ୍ୟା ଏହିପରି କହି ସେ ବୃଦ୍ଧା ବ୍ରାହ୍ମଣୀଙ୍କୁ ଦାସୀମାନଙ୍କ ଦ୍ୱାରା ତଳକୁ ଓହ୍ଲାଇଦେଲା ।

ପଦ୍ମାବତୀଦ୍ୱାରା ନିର୍ଦ୍ଦିଷ୍ଟ ମାର୍ଗରେ ଆସି ବ୍ରାହ୍ମଣୀ ସମସ୍ତ ଘଟଣା ବୁଦ୍ଧିଶରୀରଙ୍କ ଆଗରେ ବର୍ଣ୍ଣନା କଲା । ଏଥିରେ ଆନନ୍ଦିତ ହୋଇ ମନ୍ତ୍ରୀପୁତ୍ର ଏକାନ୍ତରେ ମିତ୍ରଙ୍କୁ କହିଲେ, 'ମିତ୍ର, ଆଜି ତୁମର ମନୋରଥ ସମ୍ପୂର୍ଣ୍ଣ ହେଲା । ପ୍ରଣୟିନୀ କୌଶଳରେ ତୁମପାଇଁ ରାସ୍ତା ନିର୍ଦ୍ଦେଶ କରିଛନ୍ତି । ଆଜି ସଂଧ୍ୟାବେଳେ ତୁମେ ସେହି ମାର୍ଗରେ ଯାଇ ତାଙ୍କୁ ସାକ୍ଷାତ କର ।'

ସୂର୍ଯ୍ୟ ଅସ୍ତ ହେବାରୁ ଅନ୍ଧକାର ମଧ୍ୟରେ ରାଜକୁମାର ମିତ୍ର ସହିତ ବୃଦ୍ଧା କହିଥିବା ମାର୍ଗରେ ଯାଇ ପୂର୍ବୋକ୍ତ ଉଦ୍ୟାନ ମଧ୍ୟରେ ପହଞ୍ଚିଲେ । ସେଠାରେ ଛାତ ଉପରୁ ରଜ୍ଜୁରେ ବନ୍ଧାଥିବା ଗୋଟିଏ ପିଢ଼ା ଝୁଲୁଥିବା ସେମାନଙ୍କର ଦୃଷ୍ଟିଗୋଚର ହେଲା । ରାଜକୁମାର ବଜ୍ରମୁକୁଟ ସେଥିରେ ବସିବାମାତ୍ରେ ଛାତ ଉପରେ ଅପେକ୍ଷା କରିଥବା ଦାସୀମାନେ

ତାଙ୍କୁ ଉପରକୁ ଉଠାଇ ନେଇ ପଦ୍ମାବତୀଙ୍କ ନିକଟରେ ପହଞ୍ଚାଇ ଦେଲେ । ରାଜକୁମାର ଭିତରକୁ ଚାଲିଯିବା ପରେ ମନ୍ତ୍ରୀପୁତ୍ର ନିଜର ନିବାସ ସ୍ଥାନକୁ ଫେରିଆସିଲେ ।

ଝରକା ନିକଟରୁ ପଦ୍ମାବତୀଙ୍କୁ ଦେଖି ରାଜକୁମାର ଆନନ୍ଦ ବିହ୍ୱଳ ହୋଇଉଠିଲେ । ପଦ୍ମାବତୀଙ୍କ ମୁଖଚନ୍ଦ୍ରର କାନ୍ତି ପ୍ରକୋଷ୍ଠର ଅନ୍ଧକାରକୁ ଦୂରୀଭୂତ କରୁଥିଲା । ବହୁଦିନ ଧରି ଉତ୍କଣ୍ଠିତା ପଦ୍ମାବତୀ ରାଜକୁମାରଙ୍କୁ ଦେଖିବା ମାତ୍ରେ ଗାଢ଼ ଆଲିଙ୍ଗନ କଲା । ରାଜକୁମାର ବିଭିନ୍ନ ଭାବରେ ପ୍ରିୟାଦ୍ୱାରା ସତ୍କୃତ ହୋଇ ତାକୁ ଗାନ୍ଧର୍ବ ରୀତିରେ ବିବାହ କଲେ । ପ୍ରିୟାମିଳନରେ ଆତ୍ମବିସ୍ମୃତ ରାଜକୁମାର ପଦ୍ମାବତୀ ନିକଟରେ ହିଁ ଗୋପନରେ ରହୁଥାନ୍ତି ।

ଏହିପରି କିଛିଦିନ ବିତିଗଲା । ଦିନେ ରାତିରେ ରାଜକୁମାର ପଦ୍ମାବତୀଙ୍କୁ ଜଣାଇଲେ ଯେ ତାଙ୍କ ସହିତ ତାଙ୍କର ଅନ୍ୟଜଣେ ମିତ୍ର ମଧ୍ୟ ସେଠାକୁ ଆସିଅଛନ୍ତି । ସେ ଏଠାକୁ ଆସିଯିବା ପରେ ମିତ୍ର ଏକାକୀ ହୋଇପଡ଼ିଥିବେ । ପଦ୍ମାବତୀଙ୍କ ଧାତ୍ରୀ ଗୃହରେ ରହୁଥିବା ସେହି ମିତ୍ରଙ୍କୁ ସେ ଯାଇ ଦେଖାସାକ୍ଷାତ ଓ କଥାବାର୍ତ୍ତା କରି ପୁଣି ଯଥାଶୀଘ୍ର ଫେରିଆସିବେ । ପଦ୍ମାବତୀ ଥିଲେ ପ୍ରଖର ବୁଦ୍ଧିସମ୍ପନ୍ନା । ତେଣୁ ସେ ରାଜକୁମାରଙ୍କୁ ଜିଜ୍ଞାସା କଲେ, 'ଆର୍ଯ୍ୟପୁତ୍ର, ସତ କହନ୍ତୁ, ମୁଁ ଯେଉଁସବୁ ଇଙ୍ଗିତ ଦେଉଥିଲି, ସେସବୁ ଆପଣ ନିଜେ ବୁଝୁଥିଲେ ନା ମନ୍ତ୍ରୀପୁତ୍ର ଆପଣଙ୍କୁ ବୁଝାଇ ଦେଉଥିଲେ ।' ଏଥିରେ ସରଳବିଶ୍ୱାସୀ ରାଜକୁମାର କହିଲେ, 'ମୁଁ ଏସବୁ ବିଲ୍‌କୁଲ୍ ବୁଝୁନଥିଲି । ମୋର ଏହି ବିଜ୍ଞ ଓ ବିଚକ୍ଷଣ ମିତ୍ର ମୋତେ ତୁମ ଇଙ୍ଗିତର ଅର୍ଥ ବୁଝାଇ ଦେଉଥିଲେ ।'

ଏହାଶୁଣି ପଦ୍ମାବତୀ କିଛି ସମୟ ଚିନ୍ତିତା ହେବା ଜଣାଗଲା । ଚିନ୍ତାକରି ସେ କହିଲା, 'ଏହି ବିଷୟ ଆପଣ ମୋତେ ଏ ପର୍ଯ୍ୟନ୍ତ ନକହି ବଡ଼ ଭୁଲ୍ କରିଛନ୍ତି । କାରଣ ଆପଣଙ୍କ ମିତ୍ର ହେବା ଫଳରେ ସେ ମୋର ଭାଇ । ପାନଗୁଆ ଦେଇ ତାଙ୍କର ସତ୍କାର କରିବା ମୋର କର୍ତ୍ତବ୍ୟ ଥିଲା ।'

ଏହାକହି ପଦ୍ମାବତୀ ରାଜକୁମାରଙ୍କୁ ଯିବାପାଇଁ ଅନୁମତି ଦେଲା । ବଜ୍ରମୁକୁଟ ଯାଇଥିବା ମାର୍ଗରେ ଫେରିଆସି ବ୍ରାହ୍ମଣୀ ଗୃହରେ ମିତ୍ରଙ୍କୁ ସାକ୍ଷାତ କଲେ । ଉଭୟ ମିତ୍ର ବସି ବିଶ୍ରମ୍ଭାଳାପ କଲାବେଳେ ରାଜକୁମାର ଇଙ୍ଗିତର ଅର୍ଥ ସମ୍ପର୍କରେ ପଦ୍ମାବତୀଙ୍କୁ କହିଥିବା ବିଷୟ ମଧ୍ୟ ମିତ୍ର ନିକଟରେ ପ୍ରକାଶ କଲେ । ବୁଦ୍ଧିଶରୀର କିନ୍ତୁ ଏହାକୁ ସମର୍ଥନ କରିପାରିଲେ ନାହିଁ । କହିଲେ 'ଯୁବରାଜ, ମୋ ସମ୍ପର୍କରେ ପଦ୍ମାବତୀଙ୍କୁ ଜଣାଇ ଆପଣ ଉଚିତ କରିନାହାଁନ୍ତି । ଏହା ଆମ ପାଇଁ ଶୁଭଙ୍କର ନହୋଇପାରେ ।'

କଥାବାର୍ତ୍ତା ଭିତରେ ରାତିଟି କଟିଗଲା । ପ୍ରଭାତରୁ ନିତ୍ୟକର୍ମ ସମାପନ କରି ଦେବନୀତି ଶେଷ କଲାବେଳକୁ ପଦ୍ମାବତୀଙ୍କଠାରୁ ଜଣେ ଦାସୀ ପାନପତ୍ର ଓ ଖାଦ୍ୟପଦାର୍ଥ ନେଇ ସେଠାରେ ଆସି ଉପସ୍ଥିତ ହେଲା । ସେ ପଦ୍ମାବତୀଙ୍କ ପକ୍ଷରୁ ମନ୍ତ୍ରୀକୁମାରଙ୍କ କୁଶଳମଙ୍ଗଳ ଜିଜ୍ଞାସା କରି ନିଜ ସ୍ୱାମିନୀ ପଠାଇଥିବା ଭୋଜନ ସାମଗ୍ରୀ ତାଙ୍କ ହସ୍ତରେ ଅର୍ପଣ କଲା । ରାଜକୁମାରଙ୍କୁ ସେଥିରୁ କିଛି ନ ଖାଇବାପାଇଁ ଅନୁରୋଧ କରି କୌଶଳରେ କହିଲା ଯେ ପଦ୍ମାବତୀ ତାଙ୍କ ସହିତ ଭୋଜନ କରିବାପାଇଁ ନିଜ ପ୍ରକୋଷ୍ଠରେ ଅପେକ୍ଷା କରିଛନ୍ତି । ତେଣୁ ଯଥାଶୀଘ୍ର ତାଙ୍କୁ ଯିବାପାଇଁ ଅନୁରୋଧ କରି ସେ ଆଖିପିଛୁଳାକ ମଧ୍ୟରେ ସେଠାରୁ ଗୁପ୍ତ ମାର୍ଗ ଦେଇ ପ୍ରସ୍ଥାନ କଲା ।

ସେ ଚାଲିଯିବା ପରେ ରାଜକୁମାରଙ୍କୁ ଲକ୍ଷ୍ୟ କରି ବୁଦ୍ଧିଶରୀର କହିଲେ, 'ମିତ୍ର, ମୁଁ ତୁମକୁ ବର୍ତ୍ତମାନ ଗୋଟିଏ କୌତୁକ ଦେଖାଉଛି ଦେଖ । ଏହା କହି ସେ ଦାସୀ ଆଣିଥିବା ଖାଦ୍ୟପଦାର୍ଥରୁ କିଛି ନେଇ ନିକଟରେ ଶୋଇଥିବା ଗୋଟିଏ କୁକୁରକୁ ପ୍ରଦାନ କଲେ । କୁକୁରଟି ତାହା ଖାଇବା ମାତ୍ରେ ସେଠାରେ ପ୍ରାଣତ୍ୟାଗ କଲା । ଏହି ରହସ୍ୟ ବୁଝି ନପାରି ରାଜକୁମାର ଜିଜ୍ଞାସୁ ନୟନରେ ଚାହିଁ ରହିବାରୁ ମିତ୍ର ବୁଝାଇ ଦେଲେ, 'ମୁଁ ପଦ୍ମାବତୀଙ୍କ ଇଙ୍ଗିତ ସବୁକୁ ବୁଝାଇ ଦେଇପାରୁଥିଲି ବୋଲି ସେ ମୋତେ ଜଣେ ଧୂର୍ତ୍ତ ଓ ପ୍ରବଞ୍ଚକ ବୋଲି ଧରିନେଲେ । ଏଥିପାଇଁ ମୋତେ ହତ୍ୟା କରିବା ତାଙ୍କର ଅଭିଳାଷ ଥିଲା । ମୋ ପ୍ରତି ତୁମର ଅତ୍ୟନ୍ତ ଶ୍ରଦ୍ଧା ଓ ସ୍ନେହ ଦୃଷ୍ଟିରୁ ସେ ମୋ ପାଇଁ ଏହି ବିଷ ମିଶ୍ରିତ ଖାଦ୍ୟ ପଠାଇଥିଲେ । ତାଙ୍କର ଆଶଙ୍କା ହେଉଛି ଯେ, ମୁଁ ଜୀବିତ ଥିବା ପର୍ଯ୍ୟନ୍ତ ଆପଣ ତାଙ୍କୁ ସମ୍ପୂର୍ଣ୍ଣ ରୂପେ ପ୍ରୀତି ପ୍ରଦର୍ଶନ କରିପାରିବେ ନାହିଁ । ତାଙ୍କ ପ୍ରତି ଆପଣଙ୍କ ଅନୁରାଗ ନିଶ୍ଚିତ ଭାବେ ଖଣ୍ଡିତ ହେଉଥିବ । ମୋର ମନ୍ତ୍ରଣାରେ ବଶୀଭୂତ ହୋଇ କାଳେ ଆପଣ ମୋ ସହିତ ନିଜ ରାଜଧାନୀକୁ ଫେରିଯାଇପାରନ୍ତି ବୋଲି ମଧ୍ୟ ତାଙ୍କ ମନରେ ଭୟଜାତ ହେଉଛି । ତେଣୁ ଯୁବରାଜ, ଆପଣ ତାଙ୍କ ପ୍ରତି କ୍ରୋଧ ପ୍ରକାଶ କରନ୍ତୁ ନାହିଁ । ଆପଣଙ୍କ ପ୍ରତି ଅତ୍ୟଧିକ ଅନୁରାଗ ହିଁ ତାଙ୍କୁ ଏପରି ଆଚରଣ କରିବାପାଇଁ ବାଧ୍ୟ କରିଛି । ଏ ସୁଯୋଗରେ ବରଂ ଆପଣ ତାଙ୍କୁ ତାଙ୍କ ମାତାପିତାଙ୍କଠାରୁ ଦୂରେଇ ନେବାପାଇଁ ଚେଷ୍ଟା କରନ୍ତୁ । ତାଙ୍କୁ ଏଠାରୁ ଅପହରଣ କରିନେବାପାଇଁ ଆମେ ଉଦ୍ୟମ କରିବା । ମୁଁ କହିବା ଅନୁଯାୟୀ ଆପଣ କାର୍ଯ୍ୟକଲେ ଆମର ମନୋରଥ ସମ୍ପୂର୍ଣ୍ଣ ହେବ ।'

ମନ୍ତ୍ରୀପୁତ୍ର ବୁଦ୍ଧିଶରୀରଙ୍କଠାରୁ ଏହାଶୁଣି ବଜ୍ରମୁକୁଟ ତାଙ୍କର ଅଜସ୍ର ପ୍ରଶଂସା କଲେ । ସେ କେବଳ ନାମତଃ ନୁହଁନ୍ତି ପରିଣାମରେ ମଧ୍ୟ ବୁଦ୍ଧିଶରୀର ବୋଲି କହି ତାଙ୍କୁ

ଆଲିଙ୍ଗନ କରୁଥିବା ବେଳେ ବାହାରୁ କୋଳାହଳ ଶୁଣାଗଲା । ଲୋକମାନେ ଆର୍ତ୍ତଚିତ୍କାର କରି ରାଜାଙ୍କର କନିଷ୍ଠପୁତ୍ର ମରିଯାଇଥିବା ଘୋଷଣା କରୁଥିଲେ ।

ଏଥିରେ ଶୋକ ପ୍ରକାଶ କରିବା ପରିବର୍ତ୍ତେ ମନ୍ତ୍ରୀପୁତ୍ର ପ୍ରସନ୍ନ ଥିବା ଜଣାଗଲା । ସେ ରାଜକୁମାରଙ୍କୁ କହିଲେ, 'ମିତ୍ର, ଆପଣ ଆଜି ରାତିରେ ପଦ୍ମାବତୀଙ୍କ ଗୃହକୁ ଫେରିଯାନ୍ତୁ । ଅତ୍ୟଧିକ ସ୍ନେହ ଓ ଆଦର ପ୍ରଦର୍ଶନ ପୂର୍ବକ ଯଥେଷ୍ଟ ପରିମାଣରେ ସୁରାପାନ କରାଇ ଆପଣ ତାଙ୍କୁ ସଂଜ୍ଞାହୀନ, ନିଶ୍ଚେଷ୍ଟ, ବିକାରହୀନ ଓ ମୃତପ୍ରାୟ କରିଦିଅନ୍ତୁ । ସେ ଏହିପରି ଶୋଇ ରହିଥିବା ବେଳେ ଏହି ତ୍ରିଶୂଳଟିକୁ ଉତ୍ତପ୍ତ କରି ତାଙ୍କର କଟି ପ୍ରଦେଶର ନିମ୍ନଭାଗରେ ଆପଣ ଗୋଟିଏ ଚିହ୍ନ ଅଙ୍କନ କରନ୍ତୁ । ଏବଂ ତା'ପରେ ସେ ପିନ୍ଧିଥିବା ଅଳଙ୍କାର ସବୁକୁ ତାଙ୍କରି ଉତ୍ତରୀୟ ବସ୍ତ୍ରରେ ହିଁ ବାନ୍ଧି ଗବାକ୍ଷ ମାର୍ଗରେ ଏଠାକୁ ଚାଲିଆସନ୍ତୁ । ଏହାପରେ ମୁଁ ଆମପାଇଁ ମଙ୍ଗଳପ୍ରଦ ହେବାପରି କିଛି କାର୍ଯ୍ୟାନୁଷ୍ଠାନ କରିବି ।' ଏହା କହି ମନ୍ତ୍ରୀ ପୁତ୍ର ଗୋଟିଏ ତୀକ୍ଷ୍ଣ ଧାର ତ୍ରିଶୂଳ ରାଜକୁମାରଙ୍କ ହସ୍ତରେ ଧରାଇଦେଲେ ।

ନିଜର ସ୍ତ୍ରୀ ଓ ମିତ୍ରଙ୍କ ହୃଦୟ ପରି କୁଟିଳ ଓ କଠୋର ଏବଂ କାଳଲୌହ ପରି ଦୃଢ଼ ତ୍ରିଶୂଳଟିକୁ ଧାରଣ କରି ରାଜକୁମାର ପଦ୍ମାବତୀଙ୍କ ଶୟନ କକ୍ଷରେ ଯାଇ ପୂର୍ବପରି ପ୍ରବେଶ କଲେ । ପ୍ରକୃତରେ ରାଜାମାନେ ନିର୍ମଳ ହୃଦୟ ଓ ପ୍ରଭୁଭକ୍ତ ମନ୍ତ୍ରୀମାନଙ୍କର ଉପଦେଶ ପାଳନ କରିବାରେ କଦାପି ଦ୍ୱିଧା କରନ୍ତି ନାହିଁ ।

ସେଠାରେ ପଦ୍ମାବତୀକୁ ମଦ୍ୟପାନରେ ଚେତନାଶୂନ୍ୟ କରି ରାଜକୁମାର ତା'ର ଜଂଘରେ ତପ୍ତ ତ୍ରିଶୂଳଦ୍ୱାରା ଏକ ଚିହ୍ନ ଅଙ୍କନ କଲେ ଏବଂ ତା'ର ଅଳଙ୍କାରଗୁଡ଼ିକୁ ଗୋଟିଏ ପୁଟୁଳି କରି ସ୍ୱ ସ୍ଥାନକୁ ଫେରିଆସିଲେ । ମନ୍ତ୍ରୀପୁତ୍ର ମିତ୍ରଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଏବଂ ଅଳଙ୍କାରଗୁଡ଼ିକ ଦେଖି ନିଜର ଅଭିଳାଷ ପୂର୍ଣ୍ଣ ହେଲା ବୋଲି ମନେକଲେ । ରାତ୍ରି ଶେଷରେ ସେ ଶ୍ମଶାନକୁ ଯାଇ ଏକ ଯୋଗୀର ଛଦ୍ମବେଶ ଧାରଣ କଲେ । ରାଜକୁମାର ମଧ୍ୟ ତାଙ୍କ ନିର୍ଦ୍ଦେଶରେ ଜଣେ ଶିଷ୍ୟର ବେଶ ଧାରଣ କରି ସେଠାରେ ବସି ରହିଲେ । ଧୀରେଧୀରେ ଦିନ ବଢ଼ିବାକୁ ଲାଗିଲା । ମନ୍ତ୍ରୀପୁତ୍ର ରାଜକୁମାରଙ୍କୁ ପଦ୍ମାବତୀଙ୍କ ଗହଣା ଭିତରୁ ଗୋଟିଏ ମୋତି ହାର ଦେଇ କହିଲେ, 'ଆପଣ ଏହାକୁ ନେଇ ବଜାରରେ ବିକ୍ରି କରିବାକୁ ଯା'ନ୍ତୁ । କିନ୍ତୁ ମାଳାଟିର ଦାମ୍ ଏତେ ଅଧିକ କରି କହିବେ ଯେ ଯେପରି କୌଣସି ଗ୍ରାହକ ତାକୁ କିଣିବାପାଇଁ ସମର୍ଥ ହେବେ ନାହିଁ । ଆପଣ ସମସ୍ତେ ଦେଖିଲା ପରି ମାଳାଟିକୁ ଧରି ବିଭିନ୍ନ ସ୍ଥାନ ବୁଲିବେ । ଯଦି ନଗର ରକ୍ଷକମାନେ ଆପଣଙ୍କୁ ଧରନ୍ତି

ତେବେ ବିଚଳିତ ନହୋଇ କହିବେ ଯେ ବିକ୍ରୟ କରିବା ନିମିତ୍ତ ଏହା ଗୁରୁଦେବ ଆପଣଙ୍କୁ ଦେଇ ପଠାଇଛନ୍ତି ।' ବୁଦ୍ଧିଶରୀରଙ୍କ ନିର୍ଦ୍ଦେଶ କ୍ରମେ ବଜାରକୁ ଯାଇ ରାଜକୁମାର ମୋତିମାଳାଟିକୁ ବିଭିନ୍ନ ଲୋକଙ୍କୁ ଦେଖାଇବାକୁ ଲାଗିଲେ ।

ଏଣେ ବୈଦ୍ୟ କନ୍ୟାଙ୍କ ଅଳଙ୍କାର ସବୁ ଚୋରିଯାଇଥିବା କଥା ନଗର ମଧ୍ୟରେ ପ୍ରଚାରିତ ହୋଇଯାଇଥାଏ । ନଗର ରକ୍ଷକମାନେ ସେସବୁର ସନ୍ଧାନପାଇଁ ଛଦ୍ମବେଶରେ ବୁଲୁଥାନ୍ତି । ହାର ସହିତ ରାଜକୁମାରଙ୍କୁ ଦେଖି ସେମାନେ ତାଙ୍କୁ ଧରିନେଲେ । ସେମାନେ ତାଙ୍କୁ ସଙ୍ଗରେ ନେଇ ନଗରପାଳଙ୍କ ନିକଟରେ ଉପସ୍ଥିତ କରାଇବାରୁ ସେ ତପସ୍ୱୀରୂପୀ ରାଜକୁମାରଙ୍କୁ ଆଦରପୂର୍ବକ ପଚାରିଲେ, 'ଭଗବନ୍, ଆପଣ ଏହି ବହୁମୂଲ୍ୟ ମୋତି ମାଳାଟି କେଉଁଠୁ ପାଇଲେ ? ଗତ ରାତିରେ ଦନ୍ତବୈଦ୍ୟଙ୍କ ଗୃହରୁ ତାଙ୍କ କନ୍ୟାର ଅଳଙ୍କାର ସବୁ ଚୋରି ହୋଇଯାଇଛି । ଆମେ ତା'ର ଅନୁସନ୍ଧାନ କରୁଛୁ ।' ଛଦ୍ମବେଶୀ ରାଜକୁମାର ମିତ୍ରର ନିର୍ଦ୍ଦେଶ ଅନୁଯାୟୀ କହିଲେ ଯେ ସେ ଏ ସମ୍ପର୍କରେ କିଛି ଜାଣନ୍ତି ନାହିଁ । ତାଙ୍କ ଗୁରୁଦେବ ମାଳାଟି ବିକ୍ରି କରିବାପାଇଁ ପଠାଇଛନ୍ତି । ତାଙ୍କୁ ଯାଇ ପଚାରିଲେ ସେ ହୁଏତ ଏ ସମ୍ପର୍କରେ କିଛି କହିପାରିବେ । ନଗରପାଳ ରାଜକୁମାରଙ୍କ କଥାରେ ବିଶ୍ୱାସ କରି ଶ୍ମଶାନରେ ଆସି ଉପସ୍ଥିତ ହେଲେ । ତାଙ୍କ ଜିଜ୍ଞାସା କ୍ରମେ ଛଦ୍ମବେଶୀ ମନ୍ତ୍ରୀକୁମାର ନଗରପାଳଙ୍କୁ କିଛି ଦୂର ନେଇଯାଇ ଧୀର ସ୍ୱରରେ କହିଲେ—

''ମୁଁ ତ ତପସ୍ୱୀ ଲୋକ, ସଂସାର ବିରାଗୀ । ଅରଣ୍ୟରୁ ଅରଣ୍ୟକୁ ବୁଲି ତପଃ ସାଧନା କରିବା ମୋର ଅଭ୍ୟାସ । କାଲି ରାତିରେ ଦୈବଯୋଗରୁ ଆସି ଏହି ଶ୍ମଶାନରେ ପହଞ୍ଚିଛି । ମୁଁ ଏଠାରେ ବସି ଜପ କରୁଥାଏ । ବିଭିନ୍ନ ଦିଗରୁ ଯୋଗିନୀମାନେ ଆସି ସେମାନଙ୍କ ବିକଟ ନୃତ୍ୟ ଗୀତରେ ଏହି ନିର୍ଜନ ଶ୍ମଶାନକୁ ମୁଖରିତ କରୁଥାନ୍ତି । ସେମାନଙ୍କ ମଧ୍ୟରେ ଗୋଟିଏ ଯୋଗିନୀ ଅତ୍ୟନ୍ତ ଦୁର୍ଦ୍ଦଣ୍ଡୀ ବୋଲି ମନେହେଉଥିଲା । ସେ ଗୋଟିଏ ରାଜପୁତ୍ରକୁ ନେଇଆସିଥାଏ । ସେହି ଶିଶୁପୁତ୍ରର ହୃଦୟ କମଳ ବାହାର କରି ସେ ଭୈରବଙ୍କୁ ଅର୍ପଣ କଲା । ପରେ ମଦିରା ସହିତ ତାକୁ ମିଶାଇ ପାନ କରିବା ଫଳରେ ଉନ୍ମାଦିନୀ ହୋଇଉଠିଲା । ମୁଖ ବିକୃତ କରି ସେ ମୁଁ ଜପକରୁଥିବା ମାଳାଟିକୁ ନେବାପାଇଁ ବାରମ୍ବାର ଚେଷ୍ଟା କରୁଥାଏ । କିନ୍ତୁ ମୋର ତପଃ ପ୍ରଭାବରୁ ତା'ର ସମସ୍ତ ଚେଷ୍ଟା ବିଫଳ ହେଉଥାଏ । ତା'ର ଏପ୍ରକାର ଆଚରଣରେ ମୁଁ ବିରକ୍ତ ହୋଇଉଠିଲି । ତାକୁ ଶାନ୍ତ କରିବାପାଇଁ ମନ୍ତ୍ରାଗ୍ନି ପ୍ରଜ୍ୱଳନ କଲି । ସେଥିରେ ମୋର ଏ ମନ୍ତ୍ରସିଦ୍ଧ ତ୍ରିଶୂଳକୁ ଉତ୍ତପ୍ତ କରି ତା'ର ଜଂଘରେ ଗୋଟିଏ ଚିଆଁ ଦେଲି । ଏ ସମୟରେ ତା' ଗଳାରୁ ମୋତିମାଳାଟିଏ

ଖସିପଡ଼ିଲା । ଏ ମାଳାରେ ମୋର ବା କି କାମ ? ତେଣୁ ତାକୁ ବିକ୍ରି କରିଦେଲେ ଅନ୍ତତଃ ଦରିଦ୍ରମାନଙ୍କର ସେବାରେ ଲାଗିପାରିବ ।'

ବୁଦ୍ଧିଶରୀରଙ୍କଠାରୁ ଏପରି ଛଳନାପୂର୍ଣ୍ଣ ବିବରଣୀ ଶୁଣି ନଗରପାଳ ରାଜାଙ୍କ ନିକଟରେ ଯାଇ ସମସ୍ତ ଘଟଣା ନିବେଦନ କଲା । ରାଜା ମାଳାଟିକୁ ଚିହ୍ନିପାରି ପଦ୍ମାବତୀର ଜଂଘରେ ପ୍ରକୃତରେ ତ୍ରିଶୂଳ ଚିହ୍ନ ଅଛି କି ନାହିଁ ଜାଣିବାପାଇଁ ଜଣେ ବିଶ୍ୱସ୍ତା ଦାସୀକୁ ପଠାଇଲେ । ଦାସୀ ଫେରିଆସି ରାଜାଙ୍କ ସନ୍ଦେହ ସତ୍ୟଥିବା ଜଣାଇଲା । ରାଜା ତାଙ୍କର କନିଷ୍ଠ ପୁତ୍ରକୁ ଏହି ଡାହାଣୀ ଖାଇଯାଇଥିବା ବିଶ୍ୱାସ କରିନେଲେ । ସେ ପଦ୍ମାବତୀକୁ କି ପ୍ରକାର ଦଣ୍ଡ ଦେବେ ତାହା ନିର୍ଣ୍ଣୟ କରିବାପାଇଁ ଶ୍ମଶାନସ୍ଥ ଛଦ୍ମ ତପସ୍ୱୀ ନିକଟରେ ଯାଇ ପହଞ୍ଚିଲେ । ତପସ୍ୱୀ ତାକୁ ମୃତ୍ୟୁଦଣ୍ଡ ନଦେଇ ନଗରରୁ ନିର୍ବାସନ କରିଦେବାପାଇଁ ଉପଦେଶ ଦେଲେ । ରାଜା ମଧ୍ୟ ପଦ୍ମାବତୀଙ୍କୁ ଅନୁରୂପ ଦଣ୍ଡରେ ଦଣ୍ଡିତ କରି ନଗର ବାହାରକୁ ପଠାଇଦେଲେ । କନ୍ୟାର ଦୁର୍ଦ୍ଦଶା ଦେଖି ବୈଦ୍ୟ ଓ ତାଙ୍କ ପତ୍ନୀ ବ୍ୟାକୁଳ ହୋଇଉଠିଲେ ।

ପଦ୍ମାବତୀ ଏକ ବସ୍ତ୍ରରେ ନିର୍ବାସିତ ହୋଇ ମଧ୍ୟ ଆତ୍ମହତ୍ୟା କଥା ଚିନ୍ତା କରିପାରୁ ନଥାନ୍ତି । ଏସବୁ ମନ୍ତ୍ରୀକୁମାରଙ୍କ କୌଶଳ ବୋଲି ତାଙ୍କର ଧାରଣା ହେଉଥାଏ । ସେ ଦୁଃଖିତ ମନରେ ଗୋଟିଏ ଗଛତଳେ ବସିଥାନ୍ତି । ଦିନଟି ଏହିପରି ଚିନ୍ତା ଓ ଦୁଃଖରେ ବିତିଗଲା । ସୂର୍ଯ୍ୟ ଅସ୍ତ ହେବାରୁ ଉଭୟ ରାଜକୁମାର ଓ ମନ୍ତ୍ରୀପୁତ୍ର ଛଦ୍ମବେଶ ପରିତ୍ୟାଗ ପୂର୍ବକ ଅଶ୍ୱ ପୃଷ୍ଠରେ ଆସି ତାଙ୍କ ସମ୍ମୁଖରେ ପହଞ୍ଚିଲେ । ବିଭିନ୍ନ ଚାଟୁ ବାକ୍ୟରେ ପଦ୍ମାବତୀଙ୍କ ମାନ ଭଙ୍ଗ କରି ଏବଂ ତାଙ୍କୁ ଆଶ୍ୱାସନା ଦେଇ ଉଭୟେ ତାଙ୍କ ସହିତ ନିଜ ରାଜ୍ୟକୁ ଫେରିଗଲେ । ସେଠାରେ ରାଜକୁମାର ବଜ୍ରମୁକୁଟଙ୍କ ସହିତ ପଦ୍ମାବତୀଙ୍କ ବିବାହ ସମ୍ପନ୍ନ ହେଲା । ସେମାନେ ବୁଦ୍ଧିଶରୀରଙ୍କ ସାହଚର୍ଯ୍ୟରେ ଅତ୍ୟନ୍ତ ଆନନ୍ଦରେ କାଳକ୍ଷେପଣ କରିବାକୁ ଲାଗିଲେ ।

ଏଣେ ଦନ୍ତବୈଦ୍ୟ କନ୍ୟାର ବିଚ୍ଛେଦରେ ଅତ୍ୟନ୍ତ ବ୍ୟାକୁଳ ହୋଇଉଠିଲେ । କନ୍ୟାଟି ବନ୍ୟଜନ୍ତୁମାନଙ୍କର ଆହାର ହୋଇଥିବ ଭାବିବା ମାତ୍ରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ପତିଙ୍କ ମୃତ୍ୟୁରେ ପଦ୍ମାବତୀଙ୍କ ମାତା ମଧ୍ୟ ଶରୀର ତ୍ୟାଗ କଲେ ।

କଥାଟି ଏଠାରେ ଶେଷ କରି ବେତାଳ ରାଜା ତ୍ରିବିକ୍ରମସେନଙ୍କୁ ପଚାରିଲା, 'ରାଜନ୍, ତୁମେ ଅତ୍ୟନ୍ତ ବୁଦ୍ଧିମାନ୍ । ତେଣୁ ମୋର ସନ୍ଦେହ ଦୂରକରିବାପାଇଁ କୁହନ୍ତୁ ଏହି ଦନ୍ତ ଚିକିତ୍ସକ ଓ ତାର ପତ୍ନୀଙ୍କ ମୃତ୍ୟୁରେ ହତ୍ୟାଜନିତ ପାପର ଭାଗୀ କିଏ ହେବ ?

ମନ୍ତ୍ରୀପୁତ୍ର, ରାଜପୁତ୍ର ନା ପଦ୍ମାବତୀ ? ସଠିକ୍ ଉତ୍ତର ଜାଣି ମଧ ତୁମେ ଯଦି ମୋର ସନ୍ଦେହ ଦୂର ନକର, ତେବେ ତୁମର ମସ୍ତକ ଶତଧା ଚୂର୍ଣ୍ଣିତ ହେବ ।' ବେତାଳର କଥା ଶୁଣି ଅଭିଶାପଭୀତ ରାଜା ସବୁକିଛି ଜାଣି ମଧ କହିଲେ, 'ଯୋଗେଶ୍ୱର, ଏଥିରେ ଜାଣିବାର କଥା କ'ଣ ଅଛି ? ଏ ତିନିଜଣଙ୍କ ମଧ୍ୟରୁ କେହି ପାପୀ ନୁହଁନ୍ତି । କେବଳ ରାଜା କର୍ଣ୍ଣୋତ୍ପଳ ହିଁ ଏଥିରେ ପାପର ଫଳ ଭୋଗ କରିବା କଥା ।' ବେତାଳ ରାଜାଙ୍କ ପରୀକ୍ଷା ନେବା ପାଇଁ ପୁଣି କହିଲା, 'ଏଥିରେ ରାଜାଙ୍କର ବା ପାପ କ'ଣ ? ଯାହା ସବୁ ତ ଏହି ତିନିଜଣ କଲେ । ହଂସମାନେ ଯଦି ଶସ୍ୟ ସବୁ ଖାଇଯାନ୍ତି ତେବେ କୁଆମାନଙ୍କର ଅପରାଧ କ'ଣ ?'

ରାଜା ତ୍ରିବିକ୍ରମସେନ ନିଜ ସିଦ୍ଧାନ୍ତର କାରଣ ବୁଝାଇବାକୁ ଯାଇ କହିଲେ, 'ଏହି ତିନିଜଣଙ୍କର କୌଣସି ଦୋଷ ନାହିଁ । ମନ୍ତ୍ରୀପୁତ୍ର ନିଜ ସ୍ୱାମୀଙ୍କ ସେବା କରିଥିବା ଯୋଗୁଁ ସେ ନିର୍ଦ୍ଦୋଷ । ରାଜକୁମାର ଓ ପଦ୍ମାବତୀ କାମାଗ୍ନିରେ ଦଗ୍ଧୀଭୂତ ଥିଲେ । ସେମାନେ ନିଜନିଜର ସ୍ୱାର୍ଥ ସାଧନ ମାତ୍ର କରିଛନ୍ତି । ଅନ୍ୟର ଅନିଷ୍ଟ କରିବା ଅଭିଳାଷ ସେମାନଙ୍କ ମନରେ କଦାଚିତ୍ ସ୍ଥାନ ପାଇନାହିଁ । ତେଣୁ ସେମାନଙ୍କ କଥା ବିଚାରକୁ ନେବା ଉଚିତ୍ ନୁହେ । ତେଣୁ ରାଜା କର୍ଣ୍ଣୋତ୍ପଳ ଅବଶ୍ୟ ପାପର ଭାଗୀ । ରାଜା ହୋଇ ସୁଦ୍ଧା ସେ ରାଜନୀତି ଶାସ୍ତ୍ର ସମ୍ପର୍କରେ ଅଜ୍ଞ । ସେ ନିଜର ଗୁପ୍ତଚରମାନଙ୍କ ଦ୍ୱାରା ଘଟଣାର ସତ୍ୟାସତ୍ୟ ଜାଣିବାପାଇଁ ଚାହିଁ ନାହାଁନ୍ତି । ଧୂର୍ତ୍ତମାନଙ୍କ ଚରିତ୍ର କିମ୍ବା ସେମାନଙ୍କ ଇଙ୍ଗିତ ପ୍ରଭୃତିକୁ ଚିହ୍ନିବା ବା ଜାଣିବାପାଇଁ ସେ ଅସମର୍ଥ । ପୁଣି ନିଜେ କୌଣସି ବିଚାର ନକରି ଅନ୍ୟର ଉପଦେଶ ଅନୁଯାୟୀ ସିଦ୍ଧାନ୍ତ ଗ୍ରହଣ କରିଥିବା ଯୋଗୁଁ କର୍ଣ୍ଣୋତ୍ପଳ ହିଁ ଏଥିପାଇଁ ଏକମାତ୍ର ପାପର ଭାଗୀ ।'

ରାଜା ମୌନଭଙ୍ଗ କରି ବେତାଳର ସନ୍ଦେହମୋଚନ କରିବା ଯୋଗୁଁ ଶବ ମଧ୍ୟରେ ଥିବା ବେତାଳ ରାଜାଙ୍କ ମନୋବଳ ଓ ଦୃଢ଼ତା ପରୀକ୍ଷା କରିବାପାଇଁ ନିଜର ମାୟାବଳରେ ହଠାତ୍ ଅଦୃଶ୍ୟ ହୋଇଗଲା । ରାଜା ତ୍ରିବିକ୍ରମସେନ କିନ୍ତୁ ଏଥିରେ ବିଚଳିତ ହେଲେ ନାହିଁ । ସେ ତାକୁ ଖୋଜି ବାହାର କରିବାପାଇଁ ପୁଣି ଦୃଢ଼ପରିକର ହେଲେ ।

# ନବମ ତରଙ୍ଗ

## ଦ୍ୱିତୀୟ ବେତାଳ କଥା : ତିନିବ୍ରାହ୍ମଣ ଯୁବକ କଥା

ବେତାଳଙ୍କୁ ଖୋଜି ବାହାର କରିବା ନିମିତ୍ତ ରାଜା ତ୍ରିବିକ୍ରମସେନ ପୁଣି ସେହି ଶିଂଶପା ବୃକ୍ଷ ନିକଟକୁ ଗଲେ । ରାତ୍ରିର ଘନଅନ୍ଧକାର ମଧ୍ୟରେ କେବଳ ନିକଟସ୍ଥ ଚିତାଗ୍ନିଗୁଡ଼ିକ ସ୍ଥାନଟିକୁ କିଛି ପରିମାଣରେ ଆଲୋକିତ କରୁଥିଲା । ସେହି ଆଲୋକରେ ତ୍ରିବିକ୍ରମସେନ ପୂର୍ବୋକ୍ତ ଶବଟିକୁ ସେଠାରେ ପଡ଼ିଥିବା ଦେଖିବାକୁ ପାଇଲେ । ସେ ତା' ମଧ୍ୟରେ ଥିବା ବେତାଳକୁ ନେବାପାଇଁ ଶବଟିକୁ ନିଜର ସ୍କନ୍ଧ ଉପରେ ସ୍ଥାପନ କରି ଦ୍ରୁତ ଗତିରେ ଅଗ୍ରସର ହେବାକୁ ଲାଗିଲେ ।

କିଛିଦୂର ଯିବାପରେ ରାଜାଙ୍କ ସ୍କନ୍ଧସ୍ଥିତ ଶବ ମଧ୍ୟରୁ ବେତାଳ ପୁଣି କହିବା ଆରମ୍ଭ କଲା, 'ରାଜନ୍, ତୁମେ ଏକ କଷ୍ଟସାଧ କାର୍ଯ୍ୟ ହାତକୁ ନେଇଛ । କିନ୍ତୁ ଏହା କରିବା ତୁମପାଇଁ ଉଚିତ ହେଉନାହିଁ । ଯାହାହେଉ, ତୁମର ମନୋରଞ୍ଜନ ନିମିତ୍ତ ମୁଁ କଥାଟିଏ କହୁଛି ଶୁଣ—

ଯମୁନା ତଟରେ ବ୍ରହ୍ମସ୍ଥଳ ବୋଲି ଗୋଟିଏ ସ୍ଥାନ ଅଛି । କୌଣସି ରାଜା ଏହାକୁ ବ୍ରାହ୍ମଣମାନଙ୍କ ପାଇଁ ଦାନ କରିଥିଲେ । ସେଠାରେ ଅଗ୍ନିସ୍ୱାମୀ ନାମରେ ଜଣେ ବେଦଜ୍ଞ ବ୍ରାହ୍ମଣ ବାସ କରୁଥାନ୍ତି । ତାଙ୍କ ଔରସରୁ ଏକ ଅନିନ୍ଦ୍ୟସୁନ୍ଦରୀ କନ୍ୟା ଜନ୍ମ ନେଇଥିଲା । ଏହାକୁ ସୃଷ୍ଟିକରି ବିଧାତା ନିଶ୍ଚୟ ପୂର୍ବରୁ ସୃଷ୍ଟି କରିଥିବା ଅପ୍‌ସରାମାନଙ୍କ ନିର୍ମାଣ କୌଶଳକୁ ତିରସ୍କାର କରିଥିବେ ।

ସମୟକ୍ରମେ କନ୍ୟାଟି ଯୌବନରେ ପଦାର୍ପଣ କଲା । ତାକୁ ବିବାହ କରିବାପାଇଁ କାନ୍ୟକୁବ୍‌ଜରୁ ତିନିଜଣ ବ୍ରାହ୍ମଣ କୁମାର ଆସି ସେଠାରେ ପହଞ୍ଚିଲେ । ତିନିହେଁ ଥିଲେ ସମାନ ଭାବରେ ସର୍ବଗୁଣ ସମ୍ପନ୍ନ । ସେମାନେ ମନ୍ଦାରବତୀର ପିତାଙ୍କ ନିକଟରେ ତା'ର

ପାଣି ପ୍ରାର୍ଥନା କଲେ । ମନ୍ଦାରବତୀର ବିବାହ ଅନ୍ୟ କାହା ସହିତ ହେବା ଚାହୁଁ ନଥିବା ଯୋଗୁଁ ସେମାନେ ଜୀବନଦେବାକୁ ମଧ୍ୟ ପ୍ରସ୍ତୁତ ଥିଲେ । କିନ୍ତୁ ଅଗ୍ନିସ୍ୱାମୀ ଏମାନଙ୍କ ମଧ୍ୟରୁ କାହା ହସ୍ତରେ କନ୍ୟା ସମର୍ପଣ କଲେ ନାହିଁ । ତାଙ୍କର ଭୟହେଲା ସେ ଯଦି ଜଣକ ସହିତ ମନ୍ଦାରବତୀର ବିବାହ ଦିଅନ୍ତି ତେବେ ଅନ୍ୟ ଦୁଇଜଣ ପ୍ରାଣତ୍ୟାଗ କରିପାରନ୍ତି । ତେଣୁ କନ୍ୟାଟି ଅବିବାହିତା ରହିଗଲା । ବ୍ରାହ୍ମଣକୁମାରମାନେ ସେଠାରେ ଚକୋର ବ୍ରତ ପାଳନ ପୂର୍ବକ କନ୍ୟାଟିର ମୁଖଚନ୍ଦ୍ରକୁ ଚାହିଁ ଦିନଯାପନ କରିବାକୁ ଲାଗିଲେ ।

ଏକଦା ମନ୍ଦାରବତୀ ଅସାଧ୍ୟ ଦାହ ଜ୍ୱରରେ ପୀଡ଼ିତ ହୋଇ କୁମାରୀ ଅବସ୍ଥାରେ ହିଁ ମୃତ୍ୟୁବରଣ କଲା । ବ୍ରାହ୍ମଣ ଯୁବକମାନେ ଅତ୍ୟନ୍ତ ଶୋକାକୁଳ ଚିତ୍ତରେ ତାକୁ ବେଶଭୂଷାରେ ସଜାଇ ଶ୍ମଶାନକୁ ନେଇଗଲେ । ସେଠାରେ ମନ୍ଦାରବତୀର ଦାହ ସଂସ୍କାର କରାଗଲା ।

ସେମାନଙ୍କ ମଧ୍ୟରୁ ଜଣେ ବ୍ରାହ୍ମଣ ଯୁବକ ମନ୍ଦାରବତୀକୁ ଦାହ କରିଥିବା ସ୍ଥାନରେ ମଠଟିଏ ନିର୍ମାଣ କଲା । ତାର ଚିତାଭସ୍ମକୁ ଶଯ୍ୟାରୂପେ ବ୍ୟବହାର କରି ସେଠାରେ ଭିକ୍ଷାନ୍ନ ଦ୍ୱାରା ସେ ଜୀବନ ନିର୍ବାହ କରୁଥାଏ ।

ଦ୍ୱିତୀୟ ବ୍ରାହ୍ମଣ ଯୁବକ କିଛି ଚିତାଭସ୍ମ ଧରି ଗଙ୍ଗାନଦୀରେ ବିସର୍ଜନ କରିବା ନିମିତ୍ତ ପ୍ରସ୍ଥାନ କଲା ।

ତୃତୀୟ ନିରାଶ ମନରେ ସନ୍ନ୍ୟାସ ଗ୍ରହଣ କରି ତୀର୍ଥାଟନରେ ବାହାରି ପଡ଼ିଲା । ବହୁ ତୀର୍ଥ ଭ୍ରମଣ କରି ସେ ବକ୍ରୋଳକ ନାମକ ଏକ ଗାଁରେ ଯାଇ ପହଞ୍ଚିଲା । ସେଠାରେ ଜଣେ ବ୍ରାହ୍ମଣ ତାକୁ ଅତିଥି ରୂପେ ସ୍ୱାଗତ କଲେ । ତାଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ବ୍ରାହ୍ମଣ ଯୁବକ ଭୋଜନ କରିବା ପାଇଁ ଯାଇ ବସିଲେ । ଏ ସମୟରେ ଗୃହସ୍ୱାମୀଙ୍କ ଶିଶୁପୁତ୍ରଟି ଖୁବ୍‌ଜୋର୍‌ରେ ଚିତ୍କାର କରି କାନ୍ଦିବାକୁ ଲାଗିଲା । ବହୁ ପ୍ରକାର ବୁଝାସୁଝା କରିବା ପରେ ମଧ୍ୟ ତା'ର କାନ୍ଦ ବନ୍ଦ ହେଲା ନାହିଁ । ଗୃହସ୍ୱାମୀ ଏଥିରେ ବିରକ୍ତ ହୋଇ ତାକୁ ଜଳନ୍ତା ଅଗ୍ନି କୁଣ୍ଡରେ ନେଇ ନିକ୍ଷେପ କଲେ । ଚାହୁଁଚାହୁଁ ଶିଶୁଟିର ଶରୀର ପୋଡ଼ି ଭସ୍ମୀଭୂତ ହୋଇଗଲା । କୋମଳ ଶିଶୁଟିର ଏ ଅବସ୍ଥା ଦେଖି ଅତିଥି ଭୟରେ କମ୍ପି ଉଠିଲେ । ସେ ଗୃହସ୍ଥଙ୍କୁ ଲକ୍ଷ୍ୟ କରି କହିଲେ, 'ଏ କି ନୃଶଂସ କାଣ୍ଡ କଲ ? ତୁମେ ବ୍ରାହ୍ମଣ ନୁହଁ ଜଣେ ବ୍ରହ୍ମରାକ୍ଷସ । ତୁମର ଏହି ଭୋଜନ ସାମଗ୍ରୀ ସାକ୍ଷାତ୍ ପାପ ବୋଲି ମନେହେଉଛି । ମୁଁ ଏହାକୁ ସ୍ପର୍ଶ କରିବା ସମ୍ଭବ ନୁହେଁ ।' ଏହା କହି ସେ ଆସନରୁ ଉଠିବାପାଇଁ ଉଦ୍ୟତ

ହେଲାବେଳେ ଗୃହସ୍ଥ ବିନମ୍ର ସ୍ୱରରେ କହିଲେ, ‘‘ବ୍ରହ୍ମନ୍, ଆପଣ କ୍ରୋଧ ସମ୍ବରଣ କରନ୍ତୁ । ଶିଶୁର ମୃତ୍ୟୁରେ ବିଚଳିତ ହେବାର କିଛି ନାହିଁ । ମୁଁ ଏପରି ଏକ ମନ୍ତ୍ର ଜାଣେ ଯାହାଦ୍ୱାରା ଯେକୌଣସି ମୃତବ୍ୟକ୍ତି ଜୀବନଲାଭ କରିଉଠିବ । ଆପଣ ଏହି ମନ୍ତ୍ରର ପ୍ରଭାବ ଦେଖନ୍ତୁ ।’’

ଗୃହସ୍ଥ ଏହା କହି ଏହି ଅଦ୍ଭୁତ ମନ୍ତ୍ରଲେଖା ଥିବା ପୋଥିଟିଏ ନେଇ ଆସିଲେ । ମନ୍ତ୍ରଟିକୁ ପଢ଼ି ସେ କିଛି ଅଭିମନ୍ତ୍ରିତ ଧୂଳି ସେହି ଅଗ୍ନିକୁଣ୍ଡରେ ନିକ୍ଷେପ କରିବାମାତ୍ରେ ଶିଶୁ ପୁତ୍ରଟି ପୂର୍ବ ରୂପରେ ତା’ ମଧ୍ୟରୁ ଉଠିଆସିଲା । ବ୍ରାହ୍ମଣ କୁମାର ଏହା ଦେଖି ବିସ୍ମିତ ଓ ଶାନ୍ତ ହେଲେ । ସେ ସେହିଦିନଟି ବ୍ରାହ୍ମଣଙ୍କ ଗୃହରେ ବିତଇଦେବା ପାଇଁ ନିଶ୍ଚୟ କଲେ ।

ଗୃହସ୍ଥ ପୋଥିଟିକୁ ବାନ୍ଧି ନିକଟସ୍ଥ ଭାଡ଼ି ଉପରେ ରଖିଦେଇ ଅତିଥିଙ୍କ ସହିତ ସେଠାରେ ଶୟନ କଲେ । ଗୃହସ୍ୱାମୀ ଗାଢ଼ନିଦ୍ରାରେ ଶୋଇଯିବା ଦେଖି ତପସ୍ୱୀ ବ୍ରାହ୍ମଣ କୁମାର ଚୁପ୍‌ଚାପ୍ ଉଠିବସିଲେ । ନିଜର ପ୍ରଣୟିନୀ ମନ୍ଦାରବତୀକୁ ପୁନର୍ଜୀବିତ କରିବାର ଆଶା ତାଙ୍କ ମନରେ ଜାଗ୍ରତ ହେଲା । ସେ ଡରିଡରି ପୋଥିଟିକୁ ଭାଡ଼ି ଉପରୁ ନେଇ ଆସିଲେ ଏବଂ ନିଃଶବ୍ଦରେ ଯଥାଶୀଘ୍ର ସେଠାରୁ ପଳାୟନ କଲେ ।

ପ୍ରିୟାମିଳନର ଆଶାରେ ପଥକ୍ଳାନ୍ତି ତାଙ୍କୁ ଜଣାପଡୁନଥାଏ । ସେ ଦ୍ରୁତ ଗତିରେ ଦିନରାତି ଚାଲିଥାନ୍ତି । ଶେଷରେ ସେ ମନ୍ଦାରବତୀଙ୍କୁ ଦାହ କରାଯାଇଥିବା ସ୍ଥାନରେ ଆସି ଉପସ୍ଥିତ ହେଲେ । ସେତିକିବେଳକୁ ଗଙ୍ଗାରେ ଭସ୍ମ ବିସର୍ଜନ କରିବାପାଇଁ ଯାଇଥିବା ଅନ୍ୟ ବ୍ରାହ୍ମଣ କୁମାର ମଧ୍ୟ ଆସି ପହଞ୍ଚିଥାନ୍ତି । ମନ୍ତ୍ରପୁସ୍ତିକା ଧରି ଆସିଥିବା ବ୍ରାହ୍ମଣ କୁମାର ମନ୍ଦାରବତୀର ଚିତାଭସ୍ମକୁ ଶଯ୍ୟାରୂପେ ବ୍ୟବହାର କରି ଶୋଉଥିବା ମିତ୍ରଙ୍କୁ ମଠଟି ଭାଙ୍ଗିଦେବାପାଇଁ ଅନୁରୋଧ କଲେ । ପ୍ରଥମେ ସେ ବନ୍ଧୁଙ୍କ ଅଦ୍ଭୁତ କଥାରେ ବିଶ୍ୱାସ କରିପାରିଲେ ନାହିଁ, ତଥାପି ବହୁପ୍ରକାର ବୁଝାସୁଝା କରିବା ପରେ ସେ ସେଥିରେ ସମ୍ମତ ହେଲେ । ମଠଟିକୁ ଭାଙ୍ଗି ଦିଆଗଲା । ତପସ୍ୱୀ ବ୍ରାହ୍ମଣ ଯୁବକ ପୁସ୍ତିକା ଉନ୍ମୋଚନ କରି ମନ୍ତ୍ରପାଠ କରିବାକୁ ଲାଗିଲେ । ସେହି ମନ୍ତ୍ରଦ୍ୱାରା କିଛି ଧୂଳିକୁ ଅଭିମନ୍ତ୍ରଣ କରି ଚିତାଭସ୍ମ ଉପରେ ନିକ୍ଷେପ କରିବା ମାତ୍ରେ ମନ୍ଦାରବତୀ ପୂର୍ବ ରୂପରେ ତା’ ମଧ୍ୟରୁ ବାହାରି ଆସିଲା । ତାର ଶାରୀରିକ ସୌନ୍ଦର୍ଯ୍ୟ ଏବଂ ତେଜ ପୂର୍ବ ଅପେକ୍ଷା ଅଧିକ ଉଜ୍ଜ୍ୱଳ ଓ ମନୋରମ ଦେଖାଯାଉଥାଏ । ମନେହେଉଥିଲା ତା’ର ଶରୀର ଅଗ୍ନିଦଗ୍ଧ ସୁବର୍ଣ୍ଣ ପରି ତେଜୀୟାନ୍ ହୋଇଉଠିଛି ।

ମନ୍ଦାରବତୀକୁ ଜୀବିତ ଦେଖି ତିନିଜଣଯାକ ବ୍ରାହ୍ମଣ ଯୁବକ ପୁଣି କାମପୀଡ଼ିତ ହୋଇଉଠିଲେ । ତାକୁ ପାଇବାପାଇଁ ସେମାନଙ୍କ ମଧ୍ୟରେ ପୁଣି ବାଦବିବାଦ ଆରମ୍ଭ ହେଲା । ଜଣେ କହିଲା ମନ୍ତ୍ର ବଳରେ ଜୀବନ ଦେଇଥିବା ଯୋଗୁଁ ମନ୍ଦାରବତୀ ତା'ର ହିଁ ପ୍ରାପ୍ୟ । ଅନ୍ୟଜଣକ ତୀର୍ଥାଟନର ପୁଣ୍ୟ ପ୍ରଭାବରୁ ମନ୍ଦାରବତୀ ପୁନର୍ଜୀବନ ଲାଭ କରିଥିବାରୁ ସେ ତାର ହିଁ ସ୍ତ୍ରୀ ହେବା ସପକ୍ଷରେ ଯୁକ୍ତି କଲା । ତୃତୀୟ ଜଣକ ଯୁକ୍ତି ଦେଖାଇଲା ଯେ ସେ ଚିତାଭସ୍ମ ଉପରେ ବସି ତପସ୍ୟା କରିଥିବାରୁ ମନ୍ଦାରବତୀ ଜୀବନଲାଭ କରିଛି । ଏଣୁ ସେ ତା'ରି ହିଁ ଭାର୍ଯ୍ୟା ।

କଥାଟିକୁ ଏହିଠାରେ ରଖି ବେତାଳ ପ୍ରଶ୍ନ କଲା, "ରାଜନ୍, ଏମାନଙ୍କର ଏହି ବିବାଦର ସମାଧାନ କରି ମନ୍ଦାରବତୀ କାହାର ପ୍ରାପ୍ୟ ତାହା ଠିକ୍‌ଠିକ୍ କହ ? ଯଦି ଏହା ଜାଣି ମଧ୍ୟ ତୁମେ ନ କହ, ତା'ହେଲେ ତୁମର ମସ୍ତକ ଶତଧାବିଦୀର୍ଣ୍ଣ ହେବ ।"

ରାଜା ମୌନଭଙ୍ଗ କରିବାପାଇଁ ବାଧ୍ୟ ହେଲେ । କହିଲେ "ଯିଏ କଷ୍ଟ ସ୍ୱୀକାର କରି ମନ୍ତ୍ରବଳରେ କନ୍ୟାଟିକୁ ଜୀବନଦାନ ଦେଲା ସେ ତାର ଜନ୍ମଦାତା ପିତା । ଏପରି କାର୍ଯ୍ୟ କରିଥିବା ଯୋଗୁଁ ସେ କଦାପି ତା'ର ପତି ହୋଇପାରିବ ନାହିଁ । ଗଙ୍ଗାରେ ଭସ୍ମକୁ ନେଇ ବିସର୍ଜନ କରିଥିବା ଯୁବକ ତା'ର ପୁତ୍ରସ୍ଥାନୀୟ । କିନ୍ତୁ ଯିଏ ଭସ୍ମ ଶଯ୍ୟା ଉପରେ ତା' ଶରୀରର ଭସ୍ମରାଶିକୁ ଆଲିଙ୍ଗନ କରି ତପସ୍ୟା କରୁଥିଲା, ସେହିଁ ତାର ପତି ହେବା ପାଇଁ ଯୋଗ୍ୟ । ସେ ହିଁ ପତ୍ନୀଗତପ୍ରାଣ ଉପଯୁକ୍ତ ସ୍ୱାମୀ ତୁଲ୍ୟ ଆଚରଣ କରିଥିଲା ।"

ରାଜା ତ୍ରିବିକ୍ରମସେନ ମୌନଭଙ୍ଗ କରି ଏହା କହିବାମାତ୍ରେ ବେତାଳ ଅତର୍କିତ ଭାବରେ ତାଙ୍କ ସ୍କନ୍ଧରୁ ପୁଣି ନିଜ ସ୍ଥାନକୁ ଫେରିଗଲା । ରାଜା କିନ୍ତୁ ନିଜ ପ୍ରତିଜ୍ଞାରେ ଅଟଳ । ସଜ୍ଜନମାନେ ପ୍ରାଣ ବିନିମୟରେ ସୁଦ୍ଧା ଦେଇଥିବା ବଚନ ରକ୍ଷା କରିଥାନ୍ତି ।

**ପ୍ରାଣାତ୍ୟୟେଽପି ପ୍ରତିପନ୍ନମର୍ଥଂ**
**ତିଷ୍ଠନ୍ତ୍ୟନିର୍ବାହ୍ୟ ନ ଧୀରସତ୍ତ୍ୱାଃ ।**

ତ୍ରିବିକ୍ରମସେନ ପୁଣି ବେତାଳକୁ କରାୟତ୍ତ କରିବା ପାଇଁ ପଛକୁ ଫେରିଲେ ।

## ଦଶମ ତରଙ୍ଗ

### ତୃତୀୟ ବେତାଳ କଥା : ଶୁକ ଓ ଶାରିକା କଥା

ରାଜା ତ୍ରିବିକ୍ରମସେନ ବେତାଳର ସନ୍ଧାନରେ ପୁଣି ଯାଇ ପୂର୍ବୋକ୍ତ ଶିଂଶପା ବୃକ୍ଷ ନିକଟରେ ପହଞ୍ଚିଲେ । ମୃତ ଶରୀର ମଧ୍ୟରେ ଥିବା ବେତାଳକୁ ପୁଣି ସ୍କନ୍ଧରେ ଧରି ସେ ମୌନଭାବରେ ଚାଲିବା ଆରମ୍ଭ କଲେ । ବେତାଳ କିଛିଦୂର ପରେ ତାଙ୍କ ପିଠି ଉପରେ ବସିଯାଇ କହିବା ଆରମ୍ଭ କଲା, 'ରାଜନ୍, ରାତ୍ରିର ଅନ୍ଧକାର ମଧ୍ୟରେ ତୁମେ ଯେ ନିର୍ଭୟ ହୋଇ ଏତେଥର ଯିବାଆସିବା କରୁଛ ତାହାହିଁ ଆଶ୍ଚର୍ଯ୍ୟର କଥା । ତୁମର କଷ୍ଟ ଦୂର କରିବାପାଇଁ ମୁଁ ଗୋଟିଏ କଥା କହୁଛି ଶୁଣ—

ପାଟଳିପୁତ୍ର ନାମରେ ଏକ ଜଗତ୍‌ବିଖ୍ୟାତ ନଗରୀ ଅଛି । ପ୍ରାଚୀନ କାଳରେ ସେଠାରେ ବିକ୍ରମକେଶରୀ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ଯେପରି ସର୍ବଗୁଣସମ୍ପନ୍ନ ଥିଲେ ସେହିପରି ଅମାପ ଐଶ୍ୱର୍ଯ୍ୟର ମଧ୍ୟ ଅଧିକାରୀ ଥିଲେ । ତାଙ୍କ ନିକଟରେ ଗୋଟିଏ ପାଳିତ ଶୁକପକ୍ଷୀ ଥିଲା । ପୂର୍ବ ଜନ୍ମରେ ବୋଧହୁଏ ଅଭିଶପ୍ତ ହୋଇ ସେ ଏପରି ଶୁକ ଜନ୍ମ ପାଇଥାଏ । ଶୁଆଟି ସମସ୍ତ ଶାସ୍ତ୍ରରେ ନିପୁଣ ଏବଂ ଦିବ୍ୟଜ୍ଞାନ ସମ୍ପନ୍ନ ଥିଲା । ତାର ନାମ ଥିଲା ବିଦଗ୍ଧ ଚୂଡ଼ାମଣି । ଶୁକ ପକ୍ଷୀର ପରାମର୍ଶ ଅନୁଯାୟୀ ରାଜା ନିଜର ଅନୁରୂପ କୁଳୀନା ଓ ଗୁଣବତୀ ମଗଧ ରାଜକୁମାରୀ ଚନ୍ଦ୍ରପ୍ରଭାଙ୍କୁ ବିବାହ କରିଥିଲେ । ରାଜକୁମାରୀଙ୍କ ନିକଟରେ ମଧ୍ୟ ରାଜାଙ୍କ ଶୁକପକ୍ଷୀ ପରି ଗୋଟିଏ ଶାରିକା ଥିଲା । ସେ ମଧ୍ୟ ସମସ୍ତ ଜ୍ଞାନ ବିଜ୍ଞାନରେ ଥିଲା ନିପୁଣା । ରାଜକୁମାରୀ ତା'ର ନାମ ରଖିଥିଲେ ସୋମିକା ।

ଶୁଆ ଶାରୀ ଦୁଇଟି ନିଜନିଜ ବିଚାରବୁଦ୍ଧି ଓ ଶାସ୍ତ୍ରଜ୍ଞାନ ବଳରେ ସ୍ୱାମୀ ଓ ସ୍ୱାମିନୀଙ୍କ ସେବା କରି ଗୋଟିଏ ପଞ୍ଜୁରି ମଧ୍ୟରେ ହିଁ ରହୁଥିଲେ । ଦିନେ ଶୁଆ ଉତ୍କଣ୍ଠିତ

ଭାବରେ ନିଜର ଅଭିଳାଷ ବ୍ୟକ୍ତ କରି ଶାରୀକୁ କହିଲା, 'ଶୁଭଗେ, ତୁମେ ମୋ ସହିତ ଗୋଟିଏ ଶଯ୍ୟାରେ ଶୟନ କର, ଗୋଟିଏ ଆସନରେ ବସ, ଏକାସଙ୍ଗରେ ଭୋଜନକର, ଏବେ ସମ୍ପୂର୍ଣ୍ଣଭାବେ ମୋର ହୋଇଯାଅ ।' ଉତ୍ତରରେ ଶାରୀ କହିଲା, 'ମୁଁ ପୁରୁଷ ସଂସର୍ଗ ଚାହେଁ ନାହିଁ । କାରଣ ପୁରୁଷମାନେ ଦୁଷ୍ଟ ଓ କୃତଘ୍ନ ।' କିନ୍ତୁ ଏହାର ପ୍ରତିବାଦ କରି ଶୁଆ ପୁଣି କହିଲା, 'ପୁରୁଷମାନେ କଦାପି ଦୁଷ୍ଟ ନୁହଁନ୍ତି । ନାରୀମାନେ ହିଁ ସାଧାରଣତଃ ଦୁଷ୍ଟ ପ୍ରକୃତିର । ସେମାନେ ଯେପରି ନିଷ୍ଠୁର, ସେପରି କ୍ରୂର ।' ଏହିପରି ଉଭୟଙ୍କ ମଧ୍ୟରେ କଳହ ଆରମ୍ଭ ହେଲା । ସେମାନେ ନିଜନିଜ କଥାର ସତ୍ୟତା ପାଇଁ ବାଜି ଲଗାଇଲେ– ଶାରୀର କଥା ମିଛ ହେଲେ ସେ ଶୁଆକୁ ବିବାହ କରିବ ଏବଂ ଶୁଆର କଥା ଯଦି ମିଛ ହୁଏ ସେ ଜୀବନସାରା ଶାରୀର ଦାସ ହୋଇ ରହିବ । କଳହର ସମାଧାନ ପାଇଁ ସେମାନେ ରାଜସଭାରେ ବସିଥିବା ରାଜପୁତ୍ରଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ପିତାଙ୍କ ସହିତ ରାଜସଭାରେ ବସିଥିବା ରାଜପୁତ୍ର ଉଭୟଙ୍କ କଳହର ସମସ୍ତ ବିବରଣୀ ଶୁଣି ଶାରୀକୁ ନିର୍ଦ୍ଦେଶ ଦେଲେ, 'ପୁରୁଷମାନେ କିପରି କୃତଘ୍ନ ତା ସମ୍ପର୍କରେ ତୁ ପ୍ରଥମେ ପ୍ରମାଣ ଦେ ?' ଶାରୀ 'ତାହାହେଲେ ଶୁଣନ୍ତୁ' କହି ନିଜ ପକ୍ଷର ସମର୍ଥନ ପାଇଁ ପୁରୁଷମାନଙ୍କ ଦୋଷ ଦର୍ଶାଉଥବା ଗୋଟିଏ ଗଳ୍ପ କହିବା ଆରମ୍ଭ କଲା–

## ଶାରିକା କଥିତ ଗଳ୍ପ

''ପୃଥିବୀ ପୃଷ୍ଠରେ କାମନ୍ଦିକା ନାମକ ଯେଉଁ ମହାନଗରୀ ଅଛି ସେଠାରେ ଅର୍ଥଦତ୍ତ ନାମରେ ଜଣେ ମହାଧନଶାଳୀ ବଣିକ ରହୁଥିଲେ । ଧନଦତ୍ତ ତାଙ୍କର ଏକମାତ୍ର ପୁତ୍ର । ପିତାଙ୍କ ମୃତ୍ୟୁପରେ ସେ ଅତ୍ୟନ୍ତ ଉଚ୍ଛୃଙ୍ଖଳ ହୋଇପଡ଼ିଥିଲେ । ଯୌବନରେ କିଛି ଜଣ ଧୂର୍ତ୍ତ ବନ୍ଧୁଙ୍କ ପ୍ରରୋଚନାରେ ଦ୍ୟୂତକ୍ରୀଡ଼ା ପ୍ରତି ତାଙ୍କ ଆସକ୍ତି ବଢ଼ିଗଲା । ବାସ୍ତବରେ ଦୁର୍ଜନ ସଙ୍ଗତି ହିଁ ବ୍ୟସନରୂପୀ ବୃକ୍ଷକୁ ପୁଷ୍ପିତ କରିଥାଏ ।

କାମଂ ବ୍ୟସନବୃକ୍ଷସ୍ୟ ମୂଳଂ ଦୁର୍ଜନସଂଗତିଃ ।

କିଛିଦିନ ମଧ୍ୟରେ ବିଳାସୀ ଧନଦତ୍ତ ସର୍ବସ୍ୱାନ୍ତ ହୋଇଗଲେ । ଦୁର୍ଦ୍ଦଶାଗ୍ରସ୍ତ ଧନିକ ବଣିକପୁତ୍ର ଲଜ୍ଜାବଶତଃ ସ୍ୱଜନ ଓ ସ୍ୱଦେଶ ଛାଡ଼ିବାପାଇଁ ବାଧ୍ୟ ହେଲେ । ବିଦେଶରେ ଭ୍ରମଣ କରୁଥିବା ବେଳେ ସେ ଚନ୍ଦନପୁର ନାମକ ଗୋଟିଏ ଗ୍ରାମରେ ଆସି ଉପସ୍ଥିତ ହେଲେ । ସେଠାରେ ଜଣେ ବଣିକଙ୍କ ଗୃହରେ ଭୋଜନ ପାଇଁ ବିବଶ ଧନଦତ୍ତ ପ୍ରବେଶ କରନ୍ତେ ସେ ତାଙ୍କର ସୁକୁମାର ରୂପ ଦେଖି ନିଜ ଗୃହରେ ଆଶ୍ରୟ ଦେଲେ । କଥାବାର୍ତ୍ତାରୁ ସେ କୁଳୀନ ବଣିକ ପରିବାରର ବୋଲି ଜାଣି ତାଙ୍କ ସହିତ ନିଜ କନ୍ୟା ରତ୍ନାବଳୀର

ବିବାହ ମଧ ସମ୍ପନ୍ନ କଲେ । ଧନଦତ୍ତ ଶ୍ୱଶୁରଙ୍କଠାରୁ ପ୍ରଚୁର ସମ୍ପତ୍ତି ଲାଭ କରି ତାଙ୍କରି ବାସଭବନରେ ସମୟ କଟାଉଥାଆନ୍ତି ।

ପ୍ରାଚୁର୍ଯ୍ୟ ଭିତରେ ରହି କିଛିଦିନ ମଧ୍ୟରେ ସେ ନିଜର ଅତୀତ ଦୁର୍ଗତି କଥା ଭୁଲିଗଲେ । ପୁଣି ବିଳାସବ୍ୟସନ ପ୍ରତି ତାଙ୍କର ମୋହ ଆରମ୍ଭ ହେଲା । ସେ ସ୍ୱଦେଶକୁ ଫେରିଯିବାପାଇଁ ବାହାରିଲେ ।

ରତ୍ନାବଳୀ ପିତାଙ୍କର ଏକମାତ୍ର କନ୍ୟା ଥିଲା । ତେଣୁ ବଣିକ ତାକୁ ନିଜ ନିକଟରୁ ଦୂରେଇବାପାଇଁ ଚାହୁଁନଥିଲେ । କିନ୍ତୁ ଦୁଷ୍ଟବୁଦ୍ଧି ଧନଦତ୍ତ ତାଙ୍କୁ ବିବଶ କରିବାଯୋଗୁଁ ଶେଷରେ ସେ ଅନୁମତି ଦେବାପାଇଁ ବାଧ ହେଲେ । ଧନଦତ୍ତ ଜଣେ ବୃଦ୍ଧା ପରିଚାରିକା ସହିତ ବିଭିନ୍ନ ରତ୍ନାଳଙ୍କାରରେ ବିଭୂଷିତା ରତ୍ନାବଳୀକୁ ନେଇ ନିଜ ଗୃହ ଅଭିମୁଖରେ ଯାତ୍ରା କଲେ ।

ଦୀର୍ଘପଥ ଅତିକ୍ରମ କରି ସେମାନେ ଯାଇ ଏକ ନିଘଞ୍ଚ ଅରଣ୍ୟ ମଧ୍ୟରେ ପହଞ୍ଚିଲେ । ସେଠାରେ ଧନଦତ୍ତ ଦସ୍ୟୁମାନଙ୍କର ଭୟ ଦେଖାଇ ରତ୍ନାବଳୀ ନିକଟରେ ଥିବା ସମସ୍ତ ଅଳଙ୍କାର ଓ ଧନସମ୍ପତ୍ତି ନିଜ ହାତକୁ ନେଇଆସିଲେ । ପ୍ରକୃତରେ, ଦ୍ୟୁତ ଓ ବେଶ୍ୟା ପ୍ରଭୃତି ଦୁଃଖଦ ବିଳାସରେ ଲିପ୍ତ କୃତଘ୍ନ ପୁରୁଷମାନଙ୍କର ହୃଦୟ ଲୌହ ନିର୍ମିତ ଅସ୍ତ୍ର ପରି ଅତ୍ୟନ୍ତ କଠୋର ।

ଦୃଶ୍ୟତାଂ ଦ୍ୟୂତବେଶ୍ୟାଦିକଷ୍ଟବ୍ୟସନସଂଗିନାମ୍
ହୃଦୟଂ ହା କୃତଘ୍ନାନାଂ ପୁଂସାଂ ନିସ୍ତ୍ରିଂଶକର୍କଶମ୍ ।

ଧନଲୋଭରେ ସେହି ପାପିଷ୍ଠ ନିଜର ସ୍ତ୍ରୀ ଓ ସେହି ବୃଦ୍ଧାକୁ ଧକ୍କା ମାରି ପାହାଡ଼ ତଳକୁ ନିକ୍ଷେପ କଲା । ଏଥିରେ ବୃଦ୍ଧାର ତ ପ୍ରାଣବାୟୁ ଉଡ଼ିଗଲା, କିନ୍ତୁ ସୌଭାଗ୍ୟବଶତଃ ଲତାଗୁଳ୍ମ ଭିତରେ ଲାଗିରହି ରତ୍ନାବଳୀ କୌଣସିମତେ ବଞ୍ଚିଗଲା । ସେ ସେହି ପର୍ବତ ଗହ୍ୱର ମଧ୍ୟରୁ ଧୀରେ ଧୀରେ ବାହାରକୁ ଆସିବାପାଇଁ ସମର୍ଥ ହେଲେ ମଧ ତାର ସମଗ୍ର ଶରୀର କ୍ଷତବିକ୍ଷତ ହୋଇଯାଇଥାଏ । ଶୋକବିହ୍ୱଳା ରତ୍ନାବଳୀ ପଥିକମାନଙ୍କଠାରୁ ମାର୍ଗର ସନ୍ଧାନ ନେଇ ବହୁକଷ୍ଟରେ ପିତୃଗୃହରେ ଆସି ପହଞ୍ଚିଲା । କନ୍ୟାକୁ ଅଚାନକ ଭାବେ ଏପରି ଅବସ୍ଥାରେ ଦେଖି ପିତାମାତା କାତର ହୋଇପଡ଼ିଲେ । ସତୀ ସାଧ୍ୱୀ ରତ୍ନାବଳୀ ନିଜ ଦୁର୍ଦ୍ଦଶାର କାରଣ ସମ୍ପର୍କରେ କହିଲା ଯେ ପଥ ମଧ୍ୟରେ ସେମାନେ ଦସ୍ୟୁମାନଙ୍କ ଦ୍ୱାରା ଆକ୍ରାନ୍ତ ହେଲେ । ସେମାନଙ୍କ ଆଘାତରେ ବୃଦ୍ଧାର ମୃତ୍ୟୁ ହେଲା ଏବଂ ସେମାନେ ଧନଦତ୍ତଙ୍କୁ ବାନ୍ଧି ନେଇଗଲେ । ମୁଁ ପାହାଡ଼ ତଳକୁ ପଡ଼ିଯାଇ ମଧ

ବଞ୍ଚିଗଲି । ଜଣେ ପଥିକ ମୋତେ ସେଠାରୁ ଉଦ୍ଧାର କଲେ ।.କୌଣସିମତେ ଭାଗ୍ୟବଳରୁ ମୁଁ ତୁମ ପାଖରେ ଆସି ପହଞ୍ଚିଛି । କନ୍ୟାଠାରୁ ନିଜ ଦୁର୍ଦ୍ଦଶାର ଏହି ମିଥ୍ୟା କାହାଣୀ ଶୁଣି ପିତାମାତା ତାକୁ ବିଭିନ୍ନ ଭାବରେ ସାନ୍ତ୍ୱନା ଦେଲେ । ରତ୍ନାବଳୀ ପତିଙ୍କୁ ସ୍ମରଣ କରି ପିତୃଗୃହରେ ବାସ କରିବାକୁ ଲାଗିଲା ।

ଏଣେ ଧନଦତ୍ତ ନିଜ ନଗରରେ ଯାଇ ପହଞ୍ଚିଲା । ପତ୍ନୀଠାରୁ ଆଣିଥିବା ପ୍ରଚୁର ଧନସମ୍ପତ୍ତି ଦେଖି ପୂର୍ବ ବନ୍ଧୁମାନେ ପୁଣି ଆସି ଜୁଟିଗଲେ । କିଛିଦିନ ମଧ୍ୟରେ ଦ୍ୟୁତ କ୍ରୀଡ଼ାଦ୍ୱାରା ସେ ପୁଣି ସମସ୍ତ ସମ୍ପତ୍ତି ହରାଇ ବସିଲା । ପୂର୍ବପରି ସେ ପୁଣି ଯେଉଁ ନିଃସ୍ୱକୁ ସେହି ନିଃସ୍ୱ । କିନ୍ତୁ ବିଳାସପ୍ରତି ତାର ମୋହ ତୁଟିନଥାଏ । ତେଣୁ ସେ ପୁଣି ଶ୍ୱଶୁରାଳୟକୁ ଯିବାପାଇଁ ନିଶ୍ଚୟ କଲା । ରତ୍ନାବଳୀ ତା' ସହିତ ଅତ୍ୟନ୍ତ ଆନନ୍ଦରେ ରହୁଛି ବୋଲି କହି ଶ୍ୱଶୁରଙ୍କଠାରୁ ଆଉକିଛି ଅର୍ଥ ଆହରଣ କରିବା ଥିଲା ତା'ର ଦୁରାକାଙ୍କ୍ଷା । ସେ ଏପରି କୁତ୍ସିତ ଅଭିଳାଷ ନେଇ ଶ୍ୱଶୁରାଳୟକୁ ଯାତ୍ରାକଲା । ଦୂରରୁ ରତ୍ନାବଳୀ ପତିଙ୍କୁ ଦେଖିପାରି ପୂର୍ବର ସବୁକିଛି ଭୁଲିଯାଇ ପାପିଷ୍ଠର ପାଦତଳେ ପଡ଼ି ପିତାମାତାଙ୍କୁ କହିଥିବା ଦସ୍ୟୁ ଉପଦ୍ରବର ମିଥ୍ୟା ସମାଚାର ସମ୍ପର୍କରେ ତାକୁ ଅବଗତ କରାଇଦେଲା ।

ପତିବ୍ରତା ନାରୀମାନେ ନିଜର ଦୁଷ୍ଟ ଓ କୃତଘ୍ନ ପତିମାନଙ୍କ ପ୍ରତି ଅନ୍ୟଥା ଭାବ ପୋଷଣ କରନ୍ତି ନାହିଁ ।

ଦୁଷ୍ଟେଽପି ପତୌ ସାଧ୍ୱୀନାଂ ନାନ୍ୟଥାବୃତ୍ତି ମାନସମ୍ ।

ପତ୍ନୀଠାରୁ ସମସ୍ତ ଘଟଣା ଜାଣିସାରିବା ପରେ ସେ ନିର୍ଭୟ ଓ ନିଃଶଙ୍କ ଚିତ୍ତରେ ଶ୍ୱଶୁରଙ୍କ ସମ୍ମୁଖରେ ଯାଇ ଉପସ୍ଥିତ ହେଲା । ଶାଶୁ, ଶ୍ୱଶୁର ଅକ୍ଷତ ଶରୀରରେ ଜାମାତାଙ୍କୁ ଫେରିଆସିବା ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ଦସ୍ୟୁମାନଙ୍କ କବଳରୁ ମୁକ୍ତି ଲାଭ କରି ଫେରିଆସିଥିବାରୁ ଜାମାତାଙ୍କ ପାଇଁ ସେ ଏକ ଆଡ଼ମ୍ବରପୂର୍ଣ୍ଣ ବନ୍ଧୁମିଳନର ଆୟୋଜନ ମଧ୍ୟ କଲେ । ଧନଦତ୍ତ ଶ୍ୱଶୁର ଗୃହରେ ପୁଣି ଆନନ୍ଦର ସହିତ କାଳକ୍ଷେପଣ କରିବାକୁ ଲାଗିଲା ।

କିନ୍ତୁ ଦିନେ ରାତ୍ରିରେ ସେହି ନୃଂଶସ ଯାହା କଲା ତାହା କହିବାର ଯୋଗ୍ୟ ନୁହେଁ । କିନ୍ତୁ ପ୍ରସଙ୍ଗ ଉପରୋଧରେ କହିବା ପାଇଁ ମୁଁ ବାଧ୍ୟ ହେଉଛି । ସେ କୋଳରେ ଶୋଇଥିବା ପତ୍ନୀକୁ ହତ୍ୟାକରି ଶ୍ୱଶୁରଙ୍କ ସମସ୍ତ ସମ୍ପତ୍ତି ଅପହରଣ ପୂର୍ବକ ସ୍ୱଦେଶକୁ ପଳାୟନ କଲା ।''

ପୁରୁଷମାନଙ୍କ କୃତଘ୍ନତା ଓ ନିଷ୍ଠୁରତା ସମ୍ପର୍କରେ ଶାରୀ ସୋମିକା ଏହିପରି ଗଳ୍ପଟି ଶୁଣାଇଲା ପରେ ରାଜପୁତ୍ର ଶୁକ ପକ୍ଷୀକୁ ତା'ର ଯୁକ୍ତି ଉପସ୍ଥାପନ କରିବାପାଇଁ ନିର୍ଦ୍ଦେଶ ଦେଲେ ।

## ଶୁକ କଥିତ ଗଳ୍ପ

ରାଜପୁତ୍ରଙ୍କ ନିର୍ଦ୍ଦେଶରେ ଶୁକ ବିଦଗ୍ଧ ଚୂଡ଼ାମଣି କହିବା ଆରମ୍ଭ କଲା–

''ଦେବ, ସ୍ତ୍ରୀମାନେ ଯେପରି ଦୁଶ୍ଚରିତ୍ରା, ପାପିନୀ ସେହିପରି ଭୟଙ୍କର ଦୁଃସାହସିନୀ ମଧ୍ୟ । ସେମାନଙ୍କର ଏହି କଳଙ୍କିତ ଚରିତ୍ର ସମ୍ପର୍କରେ ଗୋଟିଏ ଗଳ୍ପ ଶୁଣନ୍ତୁ ।

ହର୍ଷବତୀ ନଗରୀରେ ଅଗ୍ରଦତ୍ତ ନାମକ ଜଣେ ବହୁକୋଟିପତି ବଣିକ ବାସ କରୁଥିଲେ । ବସୁଦତ୍ତା ତାଙ୍କର ଏକମାତ୍ର କନ୍ୟା । ସେ ଅନନ୍ୟ ସୁନ୍ଦରୀ ଏବଂ ପିତାଙ୍କର ଅତ୍ୟନ୍ତ ପ୍ରିୟପାତ୍ରୀ । ଅଗ୍ରଦତ୍ତ ତାମ୍ରଲିପ୍ତିରେ ରହୁଥିବା ଜଣେ ଅନୁରୂପ ରୂପ ଯୌବନଶାଳୀ ବଣିକ ପୁତ୍ର ସମୁଦ୍ରଦତ୍ତ ସହିତ କନ୍ୟାର ବିବାହ ସମ୍ପନ୍ନ କରାଇଥିଲେ । ସମୁଦ୍ରଦତ୍ତ ଅତ୍ୟନ୍ତ ସଜ୍ଜନ ଏବଂ ପତ୍ନୀପ୍ରିୟ ଥିଲେ । ତାଙ୍କ ରୂପବିଭବ କୁଳୀନା ସ୍ତ୍ରୀମାନଙ୍କୁ ମଧ୍ୟ ତାଙ୍କ ଉପରେ ଦୃଷ୍ଟିପାତ କରିବାପାଇଁ ବାଧ୍ୟ କରୁଥିଲା ।

ଏକଦା ବସୁଦତ୍ତା ପିତୃଗୃହରେ ରହୁଥାଏ । ସମୁଦ୍ରଦତ୍ତ ତାମ୍ରଲିପ୍ତିରେ ତାଙ୍କର ବ୍ୟବସାୟ ଦେଖୁଥାନ୍ତି । ଦିନେ ଦୂରରୁ ଆସୁଥିବା ଜଣେ ସୁନ୍ଦର ଯୁବକଙ୍କ ଉପରେ ବସୁଦତ୍ତାର ଦୃଷ୍ଟିପାତ ହେଲା । ତାକୁ ଦେଖି ସେ ହଠାତ୍ କନ୍ଦର୍ପ ପୀଡ଼ାରେ ବ୍ୟଥିତ ହୋଇଉଠିଲା । ନିଜର ଚିତ୍ତ ଚାଞ୍ଚଲ୍ୟକୁ କୌଣସିମତେ ନିୟନ୍ତ୍ରଣ କରିନପାରି ସେ ନିଜର ଜଣେ ଅନ୍ତରଙ୍ଗା ସଖୀ ଦ୍ୱାରା ସେହି ଯୁବକକୁ ଗୋପନରେ ନିଜ ଶୟନକକ୍ଷକୁ ଆମନ୍ତ୍ରଣ କରି ଆଣି ତା' ସହିତ ଯଥେଚ୍ଛ ଭାବରେ କାମକ୍ରୀଡ଼ା କରିବାକୁ ଲାଗିଲା । ପ୍ରତିଦିନ ସେହି କାମୁକ ଯୁବକ ଏକାନ୍ତରେ ଆସି ବଣିକ କନ୍ୟା ସହିତ ରାତ୍ରିଟି କେଳିବିଳାସରେ ବିତାଉଥାଏ ।

ଦିନେ ଅଗ୍ରଦତ୍ତଙ୍କ ପାଇଁ ମୂର୍ତ୍ତିମାନ୍ ଆନନ୍ଦ ତୁଲ୍ୟ ସମୁଦ୍ରଦତ୍ତ ଶ୍ୱଶୁରାଳୟରେ ଆସି ପହଞ୍ଚିଲେ । ଦିନସାରା ଆନନ୍ଦଉତ୍ସବ ଲାଗି ରହିଲା । ସଂଧ୍ୟାବେଳେ ମାତା କନ୍ୟାକୁ ବିଭିନ୍ନ ବେଶଭୂଷାରେ ବିଭୂଷିତା କରାଇ ତାର ସ୍ୱାମୀଙ୍କ ନିକଟକୁ ପଠାଇଦେଲେ । କିନ୍ତୁ ଗୋଟିଏ ଶଯ୍ୟାରେ ଶୟନ କରି ମଧ୍ୟ ନିଜ ପତିଙ୍କ ପ୍ରତି ବସୁଦତ୍ତା ଆସକ୍ତ ହୋଇପାରିଲା ନାହିଁ । ଅନ୍ୟ ପୁରୁଷ ପ୍ରତି ଆସକ୍ତ ହୋଇଥିବା ଯୋଗୁଁ ପତିଙ୍କ ସମସ୍ତ ଆଗ୍ରହକୁ

ପ୍ରତ୍ୟାଖ୍ୟାନ କରି ସେ ଗାଢ଼ ନିଦ୍ରାର ଛଳନା କଲା । ସମୁଦ୍ରଦତ୍ତ ମଧ୍ୟ ପଥଶ୍ରାନ୍ତି ଏବଂ ମଦିରା ପ୍ରଭାବରୁ ଗଭୀର ନିଦ୍ରାରେ ଶୋଇଗଲେ ।

ଧୀରେଧୀରେ ଆନନ୍ଦ ଉତ୍ସବ ଶେଷ ହେଲା । ଘରର ସମସ୍ତେ କ୍ଲାନ୍ତି ଯୋଗୁଁ ଗାଢ଼ନିଦରେ ଶୋଇଗଲେ । ଏ ସମୟରେ ଗୋଟିଏ ଚୋର ସିନ୍ଧିମାର୍ଗରେ ଆସି ବସୁଦତ୍ତାର ଶୟନକକ୍ଷରେ ପ୍ରବେଶ କଲା । ଏ ସମୟରେ ଘରର ସମସ୍ତଙ୍କୁ ନିଦ୍ରିତ ଦେଖି ବସୁଦତ୍ତା ମଧ୍ୟ ନିଜର ପ୍ରେମିକ ଦେଇଥିବା ସଙ୍କେତ ସ୍ଥଳକୁ ଯିବାପାଇଁ ବାହାରିଥାଏ । ବ୍ୟଗ୍ରତାଯୋଗୁଁ ଚୋରର ଉପସ୍ଥିତି ସେ ଜାଣିପାରିଲା ନାହିଁ ।

ଚୋର ଦେଖିଲା ଯେ ସେ ଯେଉଁ ସବୁ ଅଳଙ୍କାର ନେବାପାଇଁ ଆସିଥିଲା ବସୁଦତ୍ତା ସେ ସବୁ ପିନ୍ଧି ବାହାରକୁ ଚାଲିଯାଉଛି । ତେଣୁ ଏହାର କାର୍ଯ୍ୟକଳାପ ଦେଖିବାପାଇଁ ଚୋରଟିର ମନରେ କୌତୂହଳ ଜାତ ହେଲା । ସେ ନିଜକୁ ଗୁପ୍ତ ରଖି ଦୂରରୁ ବସୁଦତ୍ତାର ଅନୁଗମନ କଲା । ବସୁଦତ୍ତା ହାତରେ ପୁଷ୍ପ ଫଳ ପ୍ରଭୃତି ଧରି ଜଣେ ବିଶ୍ୱସ୍ତା ସଖୀ ସହିତ ଉଦ୍ୟାନ ମଧ୍ୟରେ ଯାଇ ପ୍ରବେଶ କଲା । କିନ୍ତୁ ନିଜ ପ୍ରେମିକକୁ ସେ ଯେଉଁ ଅବସ୍ଥାରେ ଦେଖିଲା ସେଥିରେ ତାର ସମସ୍ତ ଆନନ୍ଦ ଧୂଳିସାତ୍ ହୋଇଗଲା । ପ୍ରେମିକଟିର ଶବ ଗୋଟିଏ ବୃକ୍ଷ ଶାଖାରୁ ଝୁଲୁଥାଏ । ସଙ୍କେତ ଅନୁଯାୟୀ ପ୍ରେମିକଟି ସଂଧ୍ୟାରୁ ସେହି ଉଦ୍ୟାନ ମଧ୍ୟରେ ପ୍ରବେଶ କରିଥିଲା । ନଗର ରକ୍ଷକମାନେ ତାକୁ ଚୋର ବୋଲି ଭାବି ରଜ୍ଜୁ ସାହାଯ୍ୟରେ ଏହି ବୃକ୍ଷ ଶାଖାରେ ଓହଳାଇ ଦେଇଥିଲେ । ସେ ଅବସ୍ଥାରେ ତାର ମୃତ୍ୟୁ ଘଟିଥିଲା ।

ପ୍ରେମିକର ଏ ଅବସ୍ଥା ଦେଖି ବସୁଦତ୍ତା ବିହ୍ୱଳ ଓ ଉଦ୍‌ଭ୍ରାନ୍ତ ଭାବରେ ଛାତିରେ ହାତମାରି କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲା । କିଛି ସମୟ ପରେ ସେ ସଖୀ ସାହାଯ୍ୟରେ ପ୍ରେମିକର ଶବଟିକୁ ବୃକ୍ଷରୁ ଓହ୍ଲାଇ ଭୂମି ଉପରେ ସ୍ଥାପନ କଲା । ତାକୁ ବିଭିନ୍ନ ପୁଷ୍ପ ଓ ଅଙ୍ଗରାଗରେ ସଜାଇବା ପରେ କାମସନ୍ତପ୍ତା ତଥା ଶୋକବିହ୍ୱଳା ବଣିକ ପୁତ୍ରୀ ବିବେକଶୂନ୍ୟ ଭାବରେ ସେହି ନିଷ୍ପ୍ରାଣ ଶରୀରଟିକୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧକଲା । ସେ ତାକୁ ଜୀବନ୍ତ ପୁରୁଷ ପରି ବାରମ୍ବାର ଚୁମ୍ବନ କରୁଥାଏ । ଏ ସମୟରେ ବୃକ୍ଷ ଉପରେ ଥିବା ଗୋଟିଏ ବେତାଳ ସେହି ଶବ ମଧ୍ୟରେ ପ୍ରବେଶ କରି ତାର ଆଲିଙ୍ଗନ ଓ ଚୁମ୍ବନ ଗ୍ରହଣ କରୁଥାଏ । ସେ ତାକୁ ଉଚିତ ଶିକ୍ଷା ଦେବାପାଇଁ ବସୁଦତ୍ତାର ନାକଟିକୁ ଦାନ୍ତରେ କାମୁଡ଼ି ଛିଣ୍ଡାଇ ଦେଲା । ପୀଡ଼ାରେ ବ୍ୟଥିତ ହୋଇ ବସୁଦତ୍ତା ହଠାତ୍ କିଛିଦୂର ହଟିଯିବା ପରେ ପ୍ରେମିକ ଜୀବିତ ଥିବା ଦେଖି ଆନନ୍ଦରେ ପୁଣି ତା'ର ମୁଖ ଚୁମ୍ବନ କରିବାକୁ ଉଦ୍ୟତ ହେଲା । ସେତେବେଳକୁ ବେତାଳ ଶବ ଦେହରୁ ଚାଲିଯାଇଥାଏ ।

ନିଶ୍ଚେଷ୍ଟ ପ୍ରେମିକ ଶରୀରକୁ ଦେଖି ବସୁଦତ୍ତା ଭୟରେ ସେଠାରୁ ନିଜର ଶୟନକକ୍ଷକୁ ପ୍ରତ୍ୟାବର୍ତ୍ତନ କଲା ।

ଚୋରଟି ଲୁଚି ଲୁଚି ନାରୀଟିର ଏ ସମସ୍ତ ଆଚରଣ ଦେଖୁଥାଏ । ଭାବୁଥାଏ ''ପାପିଷ୍ଠା ଏ ସବୁ କ'ଣ କରୁଛି ? ସ୍ତ୍ରୀମାନଙ୍କ ହୃଦୟ ପ୍ରକୃତରେ ଭୟଙ୍କର, ଘନ ଅନ୍ଧକାରାଚ୍ଛନ୍ନ ଅନ୍ଧକୂପ ପରି ଗଭୀର ଓ ହିଂସ୍ରଜନ୍ତୁ ପୂର୍ଣ୍ଣ । ହଉ ଚାଲ ! ଦେଖାଯାଉ ଏବେ ସେ ଆଉ କଣ କରୁଛି ?'' ଏହିପରି ଚିନ୍ତାକରି ଚୋରଟି ନିଜକୁ ପ୍ରଚ୍ଛନ୍ନ ରଖି ପୁଣି ତାର ଅନୁସରଣ କଲା ।

ବସୁଦତ୍ତା ନିଜ ଶୟନ କକ୍ଷରେ ଯାଇ ପ୍ରବେଶ କଲା । ସେପର୍ଯ୍ୟନ୍ତ ସମୁଦ୍ରଦତ୍ତ ଗାଢ଼ ନିଦ୍ରାରେ ଶୋଇଥାନ୍ତି । ସେ ପଲଙ୍କ ଉପରେ ବସି ଉଚ୍ଚସ୍ୱରରେ ବିଳାପ କରିବାକୁ ଲାଗିଲା । ଚିତ୍କାର କରି କହୁଥାଏ 'ମୋତେ ଏହି ପାଷଣ୍ଡଠାରୁ ରକ୍ଷାକର । ଇଏ ସ୍ୱାମୀ ନୁହେଁ ମୋର ଶତ୍ରୁ । କୌଣସି ଅପରାଧ ବିନା ଇଏ ମୋର ନାକ କାଟିଦେଇଛି ।'

ତାର ଏପରି ଚିତ୍କାର ଶୁଣି ସ୍ୱାମୀ, ପିତାମାତା ଏବଂ ସଖୀ ପରିଚାରିକାମାନେ ଉଠିପଡ଼ିଲେ । କନ୍ୟାର ନାକ କଟିଯାଇଥିବା ଏବଂ ସେଥିରୁ ଧାର ଧାର ରକ୍ତ ବହୁଥିବା ଦେଖି ଅଗ୍ରଦତ୍ତ ଜାମାତାକୁ ଭାର୍ଯ୍ୟାଦ୍ରୋହୀ ମନେକରି ବାନ୍ଧିଦେବାପାଇଁ ନିର୍ଦ୍ଦେଶ ଦେଲେ । ବସୁଦତ୍ତାର ଛଳନାପୂର୍ଣ୍ଣ ବିବରଣୀରେ ଉପସ୍ଥିତ ସମସ୍ତେ ତାକୁ ଅପରାଧୀ ବିବେଚନା କରୁଥିବା ଯୋଗୁଁ ସମୁଦ୍ରଦତ୍ତ ବନ୍ଧନରେ ପଡ଼ି ସୁଦ୍ଧା ପାଟି ଫିଟାଉ ନଥାନ୍ତି ।

ଏହିପରି ହୋ-ହଲ୍ଲା ମଧ୍ୟରେ ରାତିଟି ବିତିଗଲା । ଚୋରଟିର ଅଭିଳାଷ ପୂର୍ଣ୍ଣ ହୋଇନଥିଲେ ସୁଦ୍ଧା ସେ ଏ ସମସ୍ତ ଘଟଣା ଦେଖି ନୀରବରେ ସେଠାରୁ ଚାଲିଗଲା ।

ପ୍ରଭାତରୁ ଅଗ୍ରଦତ୍ତ ନିଜର ଛିନ୍ନନାସିକା କନ୍ୟା ଏବଂ ରଜ୍ଜୁବଦ୍ଧ ଜାମାତା ସହିତ ରାଜାଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ସମସ୍ତ ଘଟଣା ଅବହିତ ହେବାପରେ ରାଜା ସ୍ତ୍ରୀର ନାସିକା ଛେଦନ କରିଥିବା ଦୋଷରେ ସମୁଦ୍ରଦତ୍ତଙ୍କୁ ପ୍ରାଣଦଣ୍ଡର ଆଦେଶ ଶୁଣାଇଲେ । ସମୁଦ୍ରଦତ୍ତଙ୍କ କୌଣସି କୈଫିୟତ୍ ପ୍ରତି ସେ କର୍ଣ୍ଣପାତ କଲେ ନାହିଁ ।

ଘାତୁକମାନେ ରାଜାଙ୍କ ଆଦେଶ ପାଳନ ପୂର୍ବକ ନାଗରା ବଜାଇ ସମୁଦ୍ରଦତ୍ତଙ୍କୁ ବଧ ଭୂମିକୁ ନେଇଚାଲିଲେ । ଚୋରଟି ଏସବୁ ଦେଖି ବିଚଳିତ ହୋଇପଡ଼ିଲା । ସେ ଘାତୁକମାନଙ୍କ ନିକଟକୁ ଯାଇ ନିବେଦନ କଲା, 'ଅକାରଣରେ ଏହି ଲୋକଟିକୁ ମାରନାହିଁ । ଏହାର କୌଣସି ଅପରାଧ ନାହିଁ । ମୁଁ ପ୍ରକୃତ ଘଟଣା ଦେଖିଛି ଓ ଜାଣିଛି । ରାଜାଙ୍କ ନିକଟକୁ ନେଲେ ମୁଁ ତାଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରିବି ।' ତା'ର କଥାଶୁଣି

ଘାତୁକମାନେ ତାକୁ ନେଇ ରାଜାଙ୍କ ନିକଟରେ ପହଞ୍ଚାଇଲେ । ସେ ରାଜାଙ୍କଠାରୁ ଅଭୟ ପ୍ରାର୍ଥନା କରି ରାତିରେ ଦେଖିଥିବା ସମସ୍ତ ଘଟଣା ଗୋଟି ଗୋଟି କରି ନିବେଦନ କଲା । ଶେଷରେ ପ୍ରାର୍ଥନା କଲା 'ମହାରାଜ, ଏହି ପୁରୁଷ ଜଣକ ସମ୍ପୂର୍ଣ୍ଣ ନିରପରାଧ । ଆପଣ ଯଦି ମୋ କଥାର ସତ୍ୟତା ପରୀକ୍ଷା କରିବାପାଇଁ ଚାହାଁନ୍ତି ତା'ହେଲେ କୌଣସି ବିଶ୍ୱସ୍ତ ଅନୁଚରକୁ ମୁଁ କହିଥିବା ବୃକ୍ଷନିକଟକୁ ପଠାନ୍ତୁ । ଏପର୍ଯ୍ୟନ୍ତ ଶବଟିର ଦାନ୍ତରେ ଏହି ପାପିନୀ ବିଟପୀର ନାକଟି ଲାଗିରହିଛି ।' ରାଜା ଅନୁଚରମାନଙ୍କୁ ପଠାଇ ଚୋର ବର୍ଣ୍ଣନା କରିଥିବା ଘଟଣାର ସତ୍ୟତା ଉପଲବ୍ଧି କଲେ । ସମୁଦ୍ରଦତ୍ତ ପ୍ରାଣଦଣ୍ଡରୁ ମୁକ୍ତିଲାଭ କଲେ । ରାଜାଙ୍କ ଆଦେଶରେ ତାଙ୍କ ହୀନଚରିତ୍ରା ପତ୍ନୀର କାନ ଦୁଇଟି ମଧ୍ୟ କଟାଯାଇ ତାକୁ ନିର୍ବାସନ ଦଣ୍ଡ ଦିଆଗଲା । ଅଗ୍ରଦତ୍ତଙ୍କ ସମସ୍ତ ସମ୍ପତ୍ତି ମଧ୍ୟ ବାଜ୍ୟାପ୍ତ ହେଲା । ଚୋରର କାର୍ଯ୍ୟ ଓ ଉଦାରତାରେ ପ୍ରୀତ ହୋଇ ରାଜା ତାକୁ ନଗରର ଅଧକ୍ଷ ପଦରେ ନିଯୁକ୍ତ କଲେ ।''

ଗଳ୍ପଟି ଶୁଣାଇ ଶୁକ ଶେଷରେ କହିଲା– ''ସଂସାରରେ ସମସ୍ତ ନାରୀ ଏହିପରି ଧୂର୍ତ୍ତା ଏବଂ ବିଷମ ଚରିତ୍ରବତୀ । ଏହା ଏମାନଙ୍କର ସ୍ୱାଭାବିକ ଆଚରଣ ।''

ଏହିପରି କହୁଥିବା ବେଳେ ଶୁକ ପ୍ରତିଥିବା ଇନ୍ଦ୍ରଙ୍କର ଅଭିଶାପ କ୍ଷୀଣ ହୋଇଆସିଲା । ସେ ଚିତ୍ରରଥ ଗନ୍ଧର୍ବ ପୂର୍ବ ରୂପ ପ୍ରାପ୍ତ ହୋଇ ସ୍ୱର୍ଗ ଅଭିମୁଖରେ ଚାଲିଗଲା । ସେହିପରି, ଶୁକର ମୁକ୍ତି ପରେ ଶାରିକାର ମଧ୍ୟ ଶାପମୁକ୍ତି ଘଟିଲା । ସେ ନିଜ ରୂପ ତ୍ୟାଗ କରି ଅପ୍ସରା ତିଳୋତ୍ତମାର ରୂପ ଧାରଣ ପୂର୍ବକ ସ୍ୱର୍ଗକୁ ଫେରିଗଲା ।

ଫଳରେ ରାଜସଭା ମଧ୍ୟରେ ସେମାନଙ୍କ ବିବାଦର ସମାଧାନ ହୋଇପାରିଲା ନାହିଁ ।''

କଥାଟି ଶୁଣାଇ ବେତାଳ ପ୍ରଶ୍ନ କଲା, ''ରାଜନ୍, ବର୍ତ୍ତମାନ୍ ତୁମେ କହ, ସ୍ତ୍ରୀ ନା ପୁରୁଷ କେଉଁମାନେ ପାପାସକ୍ତ ? ସଠିକ୍ ଉତ୍ତର ଜାଣିସୁଦ୍ଧା ତୁମେ ଯଦି ମୌନରହ, ତା'ହେଲେ ତୁମର ମସ୍ତକ ଖଣ୍ଡବିଖଣ୍ଡିତ ହୋଇଯିବ ।''

ସ୍କନ୍ଧ ଉପରେ ଥିବା ବେତାଳର ପ୍ରଶ୍ନରେ ରାଜା ବାଧ୍ୟ ହୋଇ କହିଲେ, ''ଯୋଗେଶ୍ୱର, ସ୍ତ୍ରୀମାନେ ହିଁ ସର୍ବଦା ନିନ୍ଦନୀୟ । ପୁରୁଷ କେତେବେଳେ କେଉଁଠି ଜଣେ ଜଣେ ଏପରି ଦୁରାଚାରୀ ହୋଇଥାନ୍ତି । କିନ୍ତୁ ସ୍ତ୍ରୀମାନେ ପ୍ରାୟତଃ ସର୍ବଦା ସବୁଠାରେ ଏହିପରି ଆଚରଣ କରିଥାନ୍ତି ।''

ରାଜା ତ୍ରିବିକ୍ରମସେନ ଏହିପରି କହୁଥିବା ବେଳେ ସ୍କନ୍ଧସ୍ଥିତ ବେତାଳ ପୂର୍ବପରି ଅଦୃଶ୍ୟ ହୋଇଗଲା । ରାଜା ତାକୁ ପୁଣି ଆଣିବା ପାଇଁ ତତ୍ପର ହୋଇଉଠିଲେ ।

# ଏକାଦଶ ତରଙ୍ଗ

## ଚତୁର୍ଥ ବେତାଳ କଥା : ବୀରବର କଥା

ବେତାଳ ଚାଲିଯିବା ଦେଖି ତ୍ରିବିକ୍ରମସେନ ପୁଣି ସେହି ଶ୍ମଶାନସ୍ଥିତ ଶିଂଶପା ବୃକ୍ଷ ନିକଟରେ ଯାଇ ପହଞ୍ଚିଲେ । ତାଙ୍କୁ ଦେଖି ଶବମଧ୍ୟସ୍ଥିତ ବେତାଳ ଅଟ୍ଟହାସ କରିବାକୁ ଲାଗିଲା । ରାଜା ସେଥିରେ ଭୟଭୀତ ନହୋଇ ଶବଟିକୁ ସ୍କନ୍ଧରେ ଧରି ଚୁପ୍‌ଚାପ୍ ଚାଲିବାକୁ ଲାଗିଲେ । ରାଜାଙ୍କୁ ନିର୍ଭୟ ଭାବରେ ଯାଉଥିବା ଦେଖି ବେତାଳ ପୁଣି କହିବା ଆରମ୍ଭ କଲା—

''ରାଜନ୍, ସେହି ଦୁଷ୍ଟ ଭିକ୍ଷୁପାଇଁ ତୁମେ ଏତେ କଷ୍ଟକରିବା ଉଚିତ ମନେହେଉନାହିଁ । ତୁମର ବିବେକ ମଧ୍ୟ ଏଥିରେ କିପରି ବାଧା ଦେଉନି, ତାହା ମୁଁ ବୁଝିପାରୁନି ? ତଥାପି ତୁମର କଷ୍ଟ ଲାଘବ ନିମିତ୍ତ ମୋ'ଠାରୁ କଥାଟିଏ ଶୁଣ—

ପୃଥିବୀ ପୃଷ୍ଠରେ ଶୋଭାବତୀ ନାମକ ଏକ ସ୍ୱନାମଧନ୍ୟ ନଗରୀ ଅଛି । ସେଠାରେ ଶୂଦ୍ରକ ବୋଲି ଜଣେ ମହାପରାକ୍ରମଶାଳୀ ରାଜା ଥିଲେ । ପରାଜିତ ଓ ବନ୍ଦିନୀ କରି ଆଣିଥିବା ଶତ୍ରୁ-ନାରୀମାନଙ୍କର ଚାମର ଚାଳନାରେ ତାଙ୍କର ପ୍ରତାପାଗ୍ନି ଦିନରାତି ପ୍ରଜ୍ୱଳିତ ଥିଲା । ରାଜା ଧର୍ମାଚରଣରେ ଦୃଢ଼ତା ରକ୍ଷା କରିଥିବା ଯୋଗୁଁ ପୃଥିବୀ ରାମଚନ୍ଦ୍ର ପ୍ରଭୃତି ପୂର୍ବ ରାଜାମାନଙ୍କ କୀର୍ତ୍ତି ବିସ୍ମୃତ ହୋଇପଡ଼ିଥିଲା । ଶୂର ଏବଂ ବୀରମାନଙ୍କୁ ଆଶ୍ରୟ ଦେବାରେ ସେ ଥିଲେ ଅତ୍ୟନ୍ତ ଉଦାର ।

ଶୂଦ୍ରକଙ୍କ ଆଶ୍ରୟ ବତ୍ସଳତା ସମ୍ପର୍କରେ ପରିବ୍ରାଜକମାନଙ୍କଠାରୁ ଶୁଣି ବୀରବର ନାମକ ଜଣେ ମାଳବ ଦେଶବାସୀ ବ୍ରାହ୍ମଣ ରାଜାଙ୍କ ସେବକ ଭାବେ ରହିବାପାଇଁ ଆସି ପହଞ୍ଚିଲେ । ତାଙ୍କ ପରିବାର ମଧ୍ୟରେ ଥିଲେ ମାତ୍ର ତିନିଜଣ—ତାଙ୍କ ସ୍ତ୍ରୀ ଧର୍ମବତୀ, ପୁତ୍ର ସତ୍ତ୍ୱବର ଏବଂ କନ୍ୟା ବୀରବତୀ । ସେହିପରି ଅନ୍ୟ ତିନୋଟି ଉପକରଣ ଥିଲା ତାଙ୍କର

ସେବା ସହାୟକ—କଟିରେ କୃପାଣ, ଏକ ହସ୍ତରେ ଖଡ୍‌ଗ ଏବଂ ଅନ୍ୟ ହସ୍ତରେ ଏକ ଚର୍ମ ନିର୍ମିତ ଆଢ଼େଣି । ପରିବାର ମଧ୍ୟରେ ମାତ୍ର ତିନିଜଣ ଥିଲେ ସୁଦ୍ଧା ସେ ବେତନ ସ୍ୱରୂପ ରାଜାଙ୍କଠାରୁ ପ୍ରତିଦିନ ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା ପ୍ରାର୍ଥନା କଲେ । ରାଜା ତାଙ୍କର ଉଦାର ବ୍ୟକ୍ତିତ୍ୱ, ନମ୍ର ଆଚରଣ ଏବଂ ଦୃଢ଼ ଆତ୍ମବିଶ୍ୱାସରେ ପ୍ରୀତ ହୋଇ ପ୍ରାର୍ଥିତ ବେତନ ଦେବାପାଇଁ ସ୍ୱୀକୃତ ହେଲେ ।

ବୀରବର ସେବାରେ ଯୋଗଦେଲେ । କିନ୍ତୁ ଏପରି ଏକ ଛୋଟ ପରିବାରପାଇଁ ଏତେ ପରିମାଣର ସ୍ୱର୍ଣ୍ଣମୁଦ୍ରାର ଆବଶ୍ୟକତା ରାଜାଙ୍କ ମନରେ କୌତୂହଳ ସୃଷ୍ଟି କଲା । ବୀରବର ଦୁର୍ବ୍ୟସନ କିମ୍ବା ଧର୍ମକାର୍ଯ୍ୟରେ ଏହି ଅର୍ଥ ବ୍ୟୟ କରୁଛନ୍ତି, ଜାଣିବାପାଇଁ ରାଜା ନିଜର ଗୁପ୍ତଚରମାନଙ୍କୁ ନିଯୁକ୍ତ କଲେ ।

ବୀରବର ପ୍ରତିଦିନ ପ୍ରାତଃକାଳରୁ ଆସି ରାଜାଙ୍କୁ ସାକ୍ଷାତ କରନ୍ତି । ତା'ପରେ ମଧ୍ୟାହ୍ନ ପର୍ଯ୍ୟନ୍ତ ଖଡ୍‌ଗ ଧାରଣପୂର୍ବକ ରାଜାଙ୍କ ସିଂହଦ୍ୱାରରେ ଦଣ୍ଡାୟମାନ ରହନ୍ତି । ମଧ୍ୟାହ୍ନ ପରେ ଘରକୁ ଫେରି ପରିବାର ପରିଚାଳନାପାଇଁ ପତ୍ନୀ ହସ୍ତରେ ଏକଶତ ସ୍ୱର୍ଣ୍ଣ ମୁଦ୍ରା ଅର୍ପଣ କରନ୍ତି । ଆଉ ଏକଶତ ସ୍ୱର୍ଣ୍ଣମୁଦ୍ରାରେ ସେ ବସ୍ତ୍ର, ଅଙ୍ଗରାଗ, ତାମ୍ବୁଳ ଇତ୍ୟାଦି କିଣୁଥିଲେ । ସ୍ନାନପରେ ବିଷ୍ଣୁ ଓ ଶିବ ମନ୍ଦିରରେ ଦେବ ପୂଜାପାଇଁ ଆଉ ଏକଶତ ସ୍ୱର୍ଣ୍ଣମୁଦ୍ରା ବ୍ୟୟ କରାଯାଉଥିଲା । ଅବଶିଷ୍ଟ ଦୁଇଶତ ସ୍ୱର୍ଣ୍ଣମୁଦ୍ରା ସେ ବ୍ରାହ୍ମଣ ଓ ଦରିଦ୍ରମାନଙ୍କ ମଧ୍ୟରେ ବିତରଣ କରିଦେଉଥିଲେ । ପ୍ରତିଦିନ ସେ ପାଉଥିବା ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା ଏହିପରି ହିଁ ବ୍ୟୟିତ ହେଉଥିଲା । ଏହାପରେ ସେ ସଂଧ୍ୟା, ତର୍ପଣ, ହୋମ ପ୍ରଭୃତି ଶେଷ କରି ଭୋଜନ କରୁଥିଲେ । ସଂଧ୍ୟା ହେଲେ ଏକାକୀ କୃପାଣ ହସ୍ତରେ ରାଜଦ୍ୱାରରେ ପ୍ରହରୀ ରୂପେ ତାଙ୍କର କାର୍ଯ୍ୟ ଆରମ୍ଭ ହେଉଥିଲା । ରାଜା ଶୂଦ୍ରକ ଗୁପ୍ତଚରମାନଙ୍କଠାରୁ ବୀରବରଙ୍କ ଦୈନନ୍ଦିନ ଦିନଚର୍ଯ୍ୟା ସମ୍ପର୍କରେ ଜାଣି ସନ୍ତୁଷ୍ଟ ହେଲେ । ରାଜା ତାଙ୍କୁ ଜଣେ ବୀରପୁରୁଷ ଏବଂ ବିଶ୍ୱାସ ଓ ଆଦରର ପାତ୍ର ଜାଣି ଗୁପ୍ତଚରମାନଙ୍କୁ ତାଙ୍କଠାରୁ ଦୂରେଇନେଲେ ।

ଏହିପରି କିଛିଦିନ ବିତିଗଲା । ବୀରବର ପ୍ରଚଣ୍ଡ ଗ୍ରୀଷ୍ମଋତୁରେ ମଧ୍ୟ ନିଜର ସେବାରେ ତ୍ରୁଟି କଲେ ନାହିଁ । ଏଥିରେ ଈର୍ଷାନ୍ୱିତ ହୋଇ, ମନେହେଲା ବର୍ଷାଋତୁ, ବଜ୍ର, ବିଦ୍ୟୁତ୍, କରକାପାତ ସହିତ ବୀରବରଙ୍କ ସେବା କାର୍ଯ୍ୟରେ ବିଘ୍ନ ଘଟାଇବାପାଇଁ ଆସି ଉପସ୍ଥିତ ହେଲା । ଦିନରାତି ପ୍ରବଳ ବୃଷ୍ଟିପାତ ହେଉଥିଲେ ସୁଦ୍ଧା ବୀରବର ଅଟଳ ଭାବରେ ରାଜଦ୍ୱାରରେ ଦଣ୍ଡାୟମାନ ଥା'ନ୍ତି । ଶୂଦ୍ରକ ଦିନବେଳେ ବୀରବରଙ୍କ ଉପସ୍ଥିତି

ଜାଣିବାପାଇଁ ପ୍ରାସାଦ ଉପରକୁ ଯା'ନ୍ତି । ରାତିରେ ମଧ୍ୟ ସେ ତାଙ୍କର ଉପସ୍ଥିତି ଜାଣିବାପାଇଁ ପ୍ରାସାଦର ଅଳିନ୍ଦ ଉପରୁ 'ସେଠାରେ କିଏ ଅଛ ?' ବୋଲି ପ୍ରଶ୍ନ କଲେ ସଦା ଜାଗ୍ରତ ବୀରବରଙ୍କଠାରୁ ଅବିଳମ୍ବେ ଉତ୍ତର ପା'ନ୍ତି 'ମୁଁ ଏଠାରେ ଉପସ୍ଥିତ ଅଛି ମହାରାଜ' । ରାଜା ବୀରବରଙ୍କ ସାହସ ଓ ରାଜଭକ୍ତି ଦେଖି ତାଙ୍କୁ କୌଣସି ଉଚ୍ଚପଦବୀ ଦେବାପାଇଁ ମନେମନେ ଚିନ୍ତା କରୁଥାଆନ୍ତି ।

ଗୋଟିଏ ଦିନର କଥା । ସଂଧ୍ୟାରୁ ଭୟଙ୍କର ବୃଷ୍ଟି ଆରମ୍ଭ ହୋଇଥାଏ । ଚତୁର୍ଦ୍ଦିଗ ନିରନ୍ଧ୍ର ଅନ୍ଧକାର । ରାସ୍ତାଘାଟ ଜନମାନବଶୂନ୍ୟ । ରାତ୍ରିର ବିଳମ୍ବିତ ପ୍ରହରରେ ରାଜା କୌତୂହଳବଶତଃ ପ୍ରାସାଦ ଉପରୁ ଜିଜ୍ଞାସା କଲେ 'ସିଂହ ଦ୍ୱାରରେ କିଏ ?' ସେଠାରେ ଏକାକୀ ପହରା ଦେଉଥିବା ବୀରବର ଅବିଳମ୍ବେ ଉତ୍ତର ଦେଲେ 'ମୁଁ ମହାରାଜ୍' । ବ୍ରାହ୍ମଣ ଯୁବକଙ୍କ ସାହସ ଓ ଧୈର୍ଯ୍ୟ ରାଜାଙ୍କୁ ବିସ୍ମିତ କଲା । ରାଜା ଶୟନ କକ୍ଷକୁ ପ୍ରତ୍ୟାବର୍ତ୍ତନ କଲେ ।

ଶୟନ କକ୍ଷର ଦ୍ୱାରରେ ଆସି ଉପସ୍ଥିତ ହେବାବେଳେ ଦୂରରୁ କୌଣସି ନାରୀର କ୍ରନ୍ଦନ ଧ୍ୱନି ତାଙ୍କର କର୍ଣ୍ଣଗୋଚର ହେଲା । ସ୍ତ୍ରୀଟି ଦୁଃଖରେ ବିହ୍ୱଳ ଓ ଏକାକିନୀ ଥିବା ମନେହେଉଥିଲା । ତା'ର ବିଳାପ ଧ୍ୱନି ଥିଲା ଅତ୍ୟନ୍ତ କରୁଣ । ରାଜା ମନେମନେ ଭାବିଲେ ଯେ ତାଙ୍କ ରାଜ୍ୟରେ ତ କେହି ଦରିଦ୍ର, ଦୁଃଖୀ କିମ୍ବା ପୀଡ଼ିତ ନାହାଁନ୍ତି; ତା'ହେଲେ ଏ ସ୍ତ୍ରୀଟି କିଏ ହୋଇପାରେ ? କାହିଁକି ବା ଏକାକିନୀ କାନ୍ଦିଥାଏ ? ତା ପ୍ରତି ରାଜାଙ୍କର ଦୟା ଜାତ ହେଲା । ସେ ସିଂହଦ୍ୱାରରେ ଏକାକୀ ପହରା ଦେଉଥିବା ବୀରବରଙ୍କୁ ଡାକି ଆଦେଶ ଦେଲେ 'ବୀରବର, ଶୁଣ, ଦୂରରେ କୌଣସି ଜଣେ ସ୍ତ୍ରୀ ଲୋକ କାନ୍ଦୁଥିବା ପରି ମନେହେଉଛି । ତୁମେ ଯାଇ ତା'ର ପରିଚୟ ଓ କାନ୍ଦିବାର କାରଣ ବୁଝିଆସ ।'

ଆଦେଶ ପ୍ରାପ୍ତ ମାତ୍ରେ ବୀରବର 'ମହାରାଜଙ୍କ ଯେପରି ଆଜ୍ଞା' କହି କୃପାଣଟିକୁ କୋଷବଦ୍ଧ କରି ତରବାରି ହସ୍ତରେ ସେହି ଦିଗକୁ ଅଗ୍ରସର ହେଲେ । ବିଜୁଳି ରୂପକ ଚକ୍ଷୁ ଏବଂ ଜଳବିନ୍ଦୁ ରୂପକ ପ୍ରସ୍ତର ଖଣ୍ଡଦ୍ୱାରା ଭୟଭୀତ କରୁଥିବା ଅନ୍ଧକାରରୂପୀ ରାକ୍ଷସ ପ୍ରତି ଭ୍ରୂକ୍ଷେପ ନକରି ସେ ଚାଲିଥାନ୍ତି । ବୀରବରଙ୍କୁ ଏପରି ଏକାକୀ ଯାଉଥିବା ଦେଖି ରାଜାଙ୍କ ମନରେ କରୁଣା ଜାଗ୍ରତ ହେଲା । କୌତୂହଳାକ୍ରାନ୍ତ ହୋଇ ସେ ପ୍ରାସାଦ ଉପରୁ ଅବତରଣ କଲେ । ତରବାରି ହସ୍ତରେ ନିଜକୁ ଗୁପ୍ତ ରଖି ସେହି ଅନ୍ଧକାର ମଧ୍ୟରେ ରାଜା ଶୂଦ୍ରକ ଭୃତ୍ୟର ଅନୁସରଣ କରିବାକୁ ଲାଗିଲେ ।

ବିଳାପ ଧ୍ୱନିର ଅନୁସରଣ କରି ବୀରବର ନଗର ବାହାରେ ଆସି ଏକ ସରୋବର ନିକଟରେ ପହଞ୍ଚିଲେ । ସରୋବରର ଜଳ ମଧ୍ୟରେ ଜଣେ ସ୍ତ୍ରୀ 'ହା ବୀର', 'ହା କୃପାଳୁ',

'ହା ତ୍ୟାଗୀ', 'ତୁମ ବ୍ୟତୀତ ମୁଁ କିପରି ରହିବି ?' ବୋଲି ଉଚ୍ଚ ସ୍ୱରରେ କ୍ରନ୍ଦନ କରୁଥାଏ । ବୀରବର ନିକଟକୁ ଯାଇ ପ୍ରଶ୍ନ କଲେ 'ଦେବି, ତୁମେ କିଏ ? ଏପରି କରୁଣ ଭାବେ ବିଳାପ କରିବାର କାରଣ କ'ଣ ହୋଇପାରେ ?' ଏଥିରେ ତାଙ୍କୁ ବିସ୍ମିତ କରି ନାରୀଟି କହିଲା 'ବୀରବର, ମୋତେ ଏହି ପୃଥିବୀ ବୋଲି ଜାଣ । ବର୍ତ୍ତମାନ ଧର୍ମାତ୍ମା ନରପତି ଶୂଦ୍ରକ ମୋର ସ୍ୱାମୀ । ଆଜିଠାରୁ ତୃତୀୟ ଦିବସରେ ତାଙ୍କର ମୃତ୍ୟୁ ହେବ । ତାଙ୍କପରି ମୁଁ ଆଉଜଣେ ସ୍ୱାମୀଙ୍କୁ କୋଉଠୁ ବା ପାଇବି ? ତେଣୁ ଦୁଃଖିତ ମନରେ ମୁଁ ତାଙ୍କପାଇଁ ଓ ମୋପାଇଁ ଏପରି ଶୋକ କରୁଛି ।' ବୀରବରଙ୍କ ପଛରେ ରହି ରାଜା ମଧ ଏହା ଶୁଣୁଥାନ୍ତି ।

ବୀରବର ପୃଥିବୀଙ୍କ ଭବିଷ୍ୟତବାଣୀ ଶୁଣି ମର୍ମାହତ ହୋଇପଡ଼ିଲେ । ସେ ଉତ୍କଣ୍ଠିତ ଭାବେ ରାଜାଙ୍କର ଜୀବନ ରକ୍ଷାପାଇଁ କୌଣସି ଉପାୟ କହିବା ନିମିତ୍ତ ତାଙ୍କୁ ଅନୁରୋଧ କଲେ । ପୃଥିବୀ ଉତ୍ତରରେ କହିଲେ, 'ଏହାର ଏକମାତ୍ର ଉପାୟ ଅଛି ଏବଂ ତାକୁ ତୁମେ ହିଁ କରିପାରିବ ।' ବୀରବରଙ୍କ ଉତ୍କଣ୍ଠା ଆହୁରି ବଢ଼ିଗଲା । ସେ ନମ୍ରତାର ସହିତ ନିବେଦନ କଲେ, 'ଦେବି, ସେହି ଉପାୟଟି ଯଥାଶୀଘ୍ର ପ୍ରକାଶ କରନ୍ତୁ । ମୁଁ ଏହିକ୍ଷଣି ଯଦି ତାହା କରି ନପାରେ ତା' ହେଲେ ମୋ ଜୀବନ ନିରର୍ଥକ ।' ଏଥିରେ ଆଶ୍ୱସ୍ତା ହୋଇ ପୃଥିବୀ କହିଲେ, 'ବତ୍ସ, ତୁମପରି ବୀର ଓ ସ୍ୱାମୀଭକ୍ତ ଆଉ କିଏ ଅଛି ? ତେଣୁ ରାଜାଙ୍କ କଲ୍ୟାଣପାଇଁ ମୁଁ ଉପାୟଟି ତୁମକୁ କହୁଛି ଶୁଣ । ରାଜଭବନ ନିକଟରେ ରାଜା ଏକ ଉତ୍ତମ ଦେବୀ ମନ୍ଦିର ପ୍ରତିଷ୍ଠା କରିଛନ୍ତି । ତାଙ୍କ ସାନ୍ନିଧ ହିଁ କଲ୍ୟାଣକର । ତୁମେ ଯଦି ତୁମ ପୁତ୍ର ସତ୍ତ୍ୱବରକୁ ବଳିରୂପେ ସେହି ଦେବୀ ଚଣ୍ଡିକାଙ୍କୁ ପ୍ରଦାନ କର ତେବେ ରାଜାଙ୍କର ମୃତ୍ୟୁ ହେବ ନାହିଁ; ସେ ଆଉ ଶହେ ବର୍ଷ ଜୀବିତ ରହିବେ । ତୁମେ ଯଦି ଆଜି ରାତିରେ ହିଁ ଏହି କାର୍ଯ୍ୟଟି କରିଦେଇପାରିବ ତାହାହେଲେ ରାଜାଙ୍କର ଅଶେଷ କଲ୍ୟାଣ ହେବ । ନୋଚେତ୍ ତୃତୀୟ ଦିବସରେ ରାଜାଙ୍କ ମୃତ୍ୟୁ ସୁନିଶ୍ଚିତ ।'

ପୃଥିବୀଙ୍କ କଥା ଶେଷ ହେବା ମାତ୍ରେ ବୀରବର କହିଲେ, 'ଦେବି, ଇଏ ବା କି ଛାର କଥା । ମୁଁ ବର୍ତ୍ତମାନ ହିଁ ଯାଇ ଆପଣଙ୍କ ନିର୍ଦ୍ଦେଶ ପାଳନ କରୁଛି ।'

ବୀରବରଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ପାଇ ପୃଥିବୀ ସେଠାରୁ ଅନ୍ତର୍ହିତା ହେଲେ । ରାଜା ନିକଟରେ ରହି ଗୋପନରେ ଏସବୁ କଥା ଶୁଣୁଥାନ୍ତି । ବୀରବର ଦ୍ରୁତ ଗତିରେ ନିଜର ନିବାସ ସ୍ଥାନ ଦିଗକୁ ଅଗ୍ରସର ହୁଅନ୍ତେ ରାଜା ମଧ କୌତୂହଳ ଦମନ କରିବାପାଇଁ ତାଙ୍କରି ପଛେ ପଛେ ଚାଲିଲେ ।

ବୀରବର ଘରେ ଆସି ନିଜ ପତ୍ନୀ ଧର୍ମବତୀଙ୍କୁ ଉଠାଇଲେ । ରାଜାଙ୍କପାଇଁ ପୃଥିବୀ ଯାହା କହିଥିଲେ ସେ ସବୁ ବୃତ୍ତାନ୍ତ ସ୍ୱାମୀଙ୍କ ଠାରୁ ଶୁଣିଲା ପରେ ସେ କହିଲେ, 'ଆର୍ଯ୍ୟପୁତ୍ର, ରାଜା ଆମର ପ୍ରଭୁ । ତାଙ୍କର କଲ୍ୟାଣପାଇଁ ଏହା ଅବଶ୍ୟ କରିବା ଉଚିତ । ଆପଣ ସତ୍ତ୍ୱବରକୁ ଉଠାଇ ତାକୁ ଏକଥା କହନ୍ତୁ ।' ବୀରବର ସତ୍ତ୍ୱବରକୁ ନିଦରୁ ଉଠାଇ ସମସ୍ତ ବୃତ୍ତାନ୍ତ ଶୁଣାଇଲେ । ଶେଷରେ କହିଲେ, 'ପୁତ୍ର, ଭଗବତୀ ଚଣ୍ଡିକାଙ୍କ ନିକଟରେ ତୋତେ ବଳି ଦେଲେ ରାଜା ଶହେ ବର୍ଷ ବଞ୍ଚିବେ । ତା' ନହେଲେ ଆଜିଠାରୁ ତୃତୀୟ ଦିବସରେ ତାଙ୍କର ମୃତ୍ୟୁ ନିଶ୍ଚିତ ।'

ଏହା ଶୁଣିବା ମାତ୍ରେ ସାର୍ଥକନାମା ସତ୍ତ୍ୱବର ନିର୍ଭୀକ ଭାବରେ ପିତାଙ୍କୁ କହିଲା, 'ଯଦି ମୋର ପ୍ରାଣ ବଦଳରେ ରାଜାଙ୍କ ଜୀବନ ରକ୍ଷା ପାଇପାରିବ ତେବେ ମୁଁ କୃତାର୍ଥ ହେବି । ମୁଁ ତାଙ୍କର ଯେଉଁ ଅନ୍ନ ଖାଇଛି ସେଥିରୁ ନିରଣୀ ହୋଇପାରିବି । ଆପଣ ଆଉ ବିଳମ୍ବ କାହିଁକି କରୁଛନ୍ତି ? ମୋତେ ଶୀଘ୍ର ଭଗବତୀଙ୍କ ମନ୍ଦିରକୁ ନେଇ ବଳି ଚଢ଼ାନ୍ତୁ । ଏଥିରେ ହିଁ ମୁଁ ଶାନ୍ତି ପାଇପାରିବି ।' ସତ୍ତ୍ୱବରର କଥାରେ ବୀରବର ପ୍ରସନ୍ନ ହୋଇ ଗର୍ବର ସହିତ କହିଲେ, 'ପୁତ୍ର, ତୋର ଜୀବନ ଧନ୍ୟ । ତୁ ମୋର ପ୍ରକୃତ ଆତ୍ମଜ ।' ଗୁପ୍ତ ଭାବରେ ବୀରବରଙ୍କୁ ଅନୁସରଣ କରି ଆସିଥିବା ରାଜା ଶୂଦ୍ରକ ଏ ସମସ୍ତ କଥା ଦେଖି ଓ ଶୁଣି ଆଶ୍ଚର୍ଯ୍ୟ ହେଲେ । ପତି, ପତ୍ନୀ, ପୁତ୍ର ସମସ୍ତେ ଯେ ଏକ ପ୍ରକାର ସତ୍ତ୍ୱଶୀଳ, ଏକଥା ତାଙ୍କର ହୃଦ୍‌ବୋଧ ହେଲା । ସେ ପରବର୍ତ୍ତୀ ଘଟଣାପାଇଁ ଅପେକ୍ଷା କଲେ ।

ଏ ସମୟରେ ବୀରବର ପୁତ୍ରକୁ କାନ୍ଧରେ ବସାଇଲେ ଏବଂ ପତ୍ନୀ ଧର୍ମବତୀ କନ୍ୟା ବୀରବତୀକୁ କାଖରେ ଧରିଲେ । ଉଭୟ ପତିପତ୍ନୀ ରାତ୍ରିର ସେହି ଗଭୀର ଅନ୍ଧକାରକୁ ଭ୍ରୂକ୍ଷେପ ନକରି ଚଣ୍ଡିକା ମନ୍ଦିର ଅଭିମୁଖରେ ଅଗ୍ରସର ହେଲେ । ରାଜା ଶୂଦ୍ରକ ମଧ୍ୟ ତାଙ୍କର ଅନୁସରଣ କରି ମନ୍ଦିର ଅଭିମୁଖରେ ଚାଲିଲେ ।

ବୀରବର ମନ୍ଦିର ମଧ୍ୟରେ ପ୍ରବେଶ କରି ଚଣ୍ଡିକାଙ୍କ ସମ୍ମୁଖରେ ପୁତ୍ରକୁ ସ୍କନ୍ଧରୁ ଓହ୍ଲାଇବା ମାତ୍ରେ ସତ୍ତ୍ୱବର ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା, 'ଦେବି, ମୋର ମସ୍ତକକୁ ଉପହାର ରୂପେ ଗ୍ରହଣ କରିବାଦ୍ୱାରା ଆପଣ ରାଜାଙ୍କୁ ଶତାୟୁକରନ୍ତୁ ଏବଂ ନିଷ୍କଣ୍ଟକ ରାଜ୍ୟ ଭୋଗ କରିବାପାଇଁ ଆଶୀର୍ବାଦ ପ୍ରଦାନ କରନ୍ତୁ ।' ପୁତ୍ରର ପ୍ରାର୍ଥନା ଶେଷରେ ବୀରବର ସାଧୁ ସାଧୁ କହି ତରବାରିକୁ କୋଷମୁକ୍ତ କଲେ ଏବଂ କ୍ଷଣମାତ୍ର ବିଳମ୍ବ ନକରି ପୁତ୍ରର ଛିନ୍ନ ମସ୍ତକ ଦେବୀଙ୍କ ପାଦତଳେ ସମର୍ପଣ କଲେ । କୃତାଞ୍ଜଳି ପୁଟରେ ଦେବୀଙ୍କୁ ଜଣାଇଲେ 'ଦେବି, ମୋ ପୁତ୍ରକୁ ବଳି ରୂପେ ଗ୍ରହଣ କରି ଆପଣ

ରାଜା ଶୂଦ୍ରକଙ୍କୁ ଜୀବିତ ରଖନ୍ତୁ ।' ଏ ସମୟରେ ଆକାଶରୁ ଶୁଣାଗଲା 'ବୀରବର, ତୁମେ ଧନ୍ୟ । ତୁମପରି ପ୍ରଭୁଭକ୍ତ ପୃଥିବୀରେ ବିରଳ । ଏକମାତ୍ର ପୁତ୍ରକୁ ନିଜ ହସ୍ତରେ ବଳି ଚଢ଼ାଇ ତୁମେ ଧୈର୍ଯ୍ୟ, ବୀରତ୍ୱ ଓ ପ୍ରଭୁଭକ୍ତିର ଯେଉଁ ନିଦର୍ଶନ ଦେଇଛ, ତା'ର ପଟାନ୍ତର ନାହିଁ ।'

ରାଜା ଶୂଦ୍ରକ ଗୁପ୍ତ ସ୍ଥାନରୁ ଏହା ଲକ୍ଷ୍ୟ କରୁଥାନ୍ତି । ବୀବରଙ୍କ କନ୍ୟା ବୀରବତୀ ଶୋକାବେଗରେ ଯାଇ ଭାଇର ମସ୍ତକକୁ କୋଳରେ ଧରି ବିକଳ ଭାବେ କାନ୍ଦିବାକୁ ଲାଗିଲା । ନିଜକୁ ସମ୍ଭରଣ କରି ନପାରି ସେହିଠାରେ ହିଁ ସେ ମୃତ୍ୟୁବରଣ କଲା । ଧର୍ମବତୀ ଉଭୟ ସନ୍ତାନର ମୃତ୍ୟୁରେ ବିଚଳିତ ପ୍ରାୟ ହୋଇ ବୀରବରଙ୍କୁ କହିଲେ, 'ଆର୍ଯ୍ୟପୁତ୍ର, ରାଜାଙ୍କ କଲ୍ୟାଣ ତ ସିଦ୍ଧ ହୋଇଗଲା । ବର୍ତ୍ତମାନ ମୁଁ ତୁମକୁ କିଛି କହିବାକୁ ଚାହୁଁଛି । ପୁତ୍ରକୁ ତ ଆମେ ବଳିଦେଲେ । ସେହି ଶୋକରେ ତା'ର ଭଗିନୀ ମଧ ପ୍ରାଣତ୍ୟାଗ କଲା । ଉଭୟ ସନ୍ତାନଙ୍କ ମୃତ୍ୟୁ ପରେ ମୁଁ ଆଉ ବଞ୍ଚିରହି କ'ଣ ବା କରିବି ? ରାଜାଙ୍କ କଲ୍ୟାଣପାଇଁ ମୁଁ ପ୍ରଥମେ ଦେବୀଙ୍କ ନିକଟରେ ମୋର ମସ୍ତକ ସମର୍ପଣ କରିବା ଉଚିତ ଥିଲା । କିନ୍ତୁ ମୂର୍ଖତା ଯୋଗୁଁ ମୁଁ ଏହା କରିପାରିଲି ନାହିଁ । ବର୍ତ୍ତମାନେ ମୋତେ ଆଜ୍ଞା ଦିଅନ୍ତୁ, ମୁଁ ଏମାନଙ୍କ ଶରୀର ସହିତ ଅଗ୍ନିରେ ପ୍ରବେଶ କରିବି ।'

ଧର୍ମବତୀଙ୍କ ଆଗ୍ରହ ଲକ୍ଷ୍ୟ କରି ବୀରବର କହିଲେ, 'ଭଦ୍ରେ, ଠିକ୍ ଅଛି, ତୁମେ ଏହାହିଁ କର । ଏହାଦ୍ୱାରା ହିଁ ତୁମର ମଙ୍ଗଳ ହେବ । ବର୍ତ୍ତମାନ ତୁମ ନିକଟରେ ସନ୍ତାନ ଶୋକ ବ୍ୟତୀତ ଆଉ କିଛି ସମ୍ବଳ ନାହିଁ । ତୁମେ ପ୍ରଥମେ ଚଣ୍ଡୀଙ୍କ ନିକଟରେ ନିଜକୁ ବଳି ଚଢ଼ାଇ ପାରିନାହଁ ବୋଲି ଦୁଃଖ କରିବା ଯଥାର୍ଥ ନୁହେଁ । ଯଦି ଅନ୍ୟକାହାର ଜୀବନ ବିନିମୟରେ ରାଜାଙ୍କ ଜୀବନ ରକ୍ଷା ପାଇବାର ସମ୍ଭାବନା ଥା'ନ୍ତା ତେବେ ମୁଁ କ'ଣ ପ୍ରଥମେ ମୋର ଜୀବନ ଉତ୍ସର୍ଗ କରିନଥାନ୍ତି । ତୁମେ ଟିକିଏ ଅପେକ୍ଷା କର । ମୁଁ ଚଣ୍ଡୀ ମନ୍ଦିରକୁ ବେଢ଼ାଯାଇଥିବା ବାଡ଼ରୁ କିଛି କାଠ ସଂଗ୍ରହ କରି ତୁମପାଇଁ ଚିତାଗ୍ନି ପ୍ରସ୍ତୁତ କରୁଛି ।' ବୀରବର ସଙ୍ଗେସଙ୍ଗେ କିଛି କାଠ ସଂଗ୍ରହ କରି ଆଣିଲେ । ଚିତା ପ୍ରସ୍ତୁତ ହେଲା । ସେ ଚଣ୍ଡୀ ମନ୍ଦିରରେ ଜଳୁଥିବା ଦୀପ ସାହାଯ୍ୟରେ ତାକୁ ପ୍ରଜ୍ୱଳିତ କଲେ । ଉଭୟ ସନ୍ତାନଙ୍କ ଶବକୁ ନିଜ ହାତରେ ଆଣି ତା ଉପରେ ଶୁଆଇଲେ । ଏ ସମୟରେ ତାଙ୍କ ଧର୍ମପରାୟଣା ପତ୍ନୀ ତାଙ୍କ ପଦତଳେ ଆସି ପ୍ରଣିପାତ କଲେ । ସେହି ପତିବ୍ରତା ଭଗବତୀ ଚଣ୍ଡିକାଙ୍କୁ ଭକ୍ତିପୂତ ଭାବେ ପ୍ରଣାମ ଜଣାଇ କହିଲେ, 'ଦେବି, ଆଗାମୀ ଜନ୍ମରେ ମଧ ଆର୍ଯ୍ୟପୁତ୍ରଙ୍କୁ ମୋତେ ପତିରୂପେ ପ୍ରଦାନ କରନ୍ତୁ । ସେହି ଜନ୍ମରେ ରାଜା ଶୂଦ୍ରକଙ୍କୁ

ସେବା କରିବାର ସୌଭାଗ୍ୟ ଆମକୁ ମିଳୁ । ମୋର ପ୍ରାଣ ବିନିମୟରେ ରାଜାଙ୍କର ମଙ୍ଗଳ ହେଉ ।' ଏହା କହି ସତୀସାଧ୍ୱୀ ଧର୍ମବତୀ ବିକଟ ଭାବେ ପ୍ରଜ୍ୱଳିତ ହେଉଥିବା ସେହି ଚିତାଗ୍ନି ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ମନେହେଲା ସତେ ଯେପରି ସେ ସରୋବରର ଶୀତଳ ଜଳରାଶି ମଧ୍ୟରେ ପ୍ରବେଶ କରୁଛନ୍ତି ।

ଏହାପରେ ପରାକ୍ରମଶାଳୀ ବୀରବର ଚିନ୍ତାକଲେ 'ପୃଥିବୀଙ୍କ ନିର୍ଦ୍ଦେଶ ଅନୁସାରେ ରାଜାଙ୍କ କାର୍ଯ୍ୟ ତ ସମ୍ପୂର୍ଣ୍ଣ ହେଲା । ତାଙ୍କର ଯେଉଁ ଅନ୍ନରେ ମୁଁ ଜୀବନ ଧାରଣ କରିଥିଲି ତାହା ସାର୍ଥକ ହେଲା । ବର୍ତ୍ତମାନ ରାଜାଙ୍କ ନିକଟରେ ମୁଁ ନିରଣୀ । ପତ୍ନୀ ଓ ସନ୍ତାନମାନେ ଚାଲିଯିବା ପରେ ମୋର ଜୀବନଧାରଣ କରିବାର ଅର୍ଥ କ'ଣ ? ଯେଉଁମାନଙ୍କୁ ଭରଣ ପୋଷଣ କରିବାକଥା ସେମାନେ ତ ଚାଲିଗଲେ । ମୁଁ ଜୀବିତ ରହିବାର ଆଉ ଆବଶ୍ୟକତା ବା କ'ଣ ? ତେଣୁ ମୁଁ ନିଜକୁ ବଳି ସ୍ୱରୂପ ଉତ୍ସର୍ଗ କରି ମାତା ଭଗବତୀଙ୍କ ସନ୍ତୁଷ୍ଟି ବିଧାନ କରିବି ।' ଏହିପରି ଚିନ୍ତାକରି ବୀରବର ପ୍ରଥମେ ଭଗବତୀଙ୍କ ସ୍ତୁତିଗାନ କରିବା ଆରମ୍ଭ କଲେ– 'ହେ ଭଗବତୀ, ଆପଣ ମହିଷାସୁରମର୍ଦ୍ଦିନୀ, ରୁରୁଦାନବ ସଂହାରକାରିଣୀ, ଶୂଳଧାରିଣୀ, ଦେବତାମାନଙ୍କର ଆନନ୍ଦ ବିଧାୟିନୀ ଏବଂ ତ୍ରିଭୁବନ ଧାରିଣୀ, ହେ ଜଗତ୍‌ଜନନୀ, ଆପଣଙ୍କର ଜୟ ହେଉ । ଆପଣ ସମଗ୍ର ସଂସାରବାସୀଙ୍କଦ୍ୱାରା ବନ୍ଦିତା, ଭକ୍ତମାନଙ୍କପାଇଁ ଆପଣ ଏକମାତ୍ର ଆଶ୍ରୟର ସ୍ଥଳୀ, ଆପଣ ସୂର୍ଯ୍ୟଙ୍କ ପରି ତେଜସ୍ୱିନୀ, ପାପରୂପକ ଅନ୍ଧକାର ଆପଣଙ୍କ ଜ୍ୟୋତିରେ ସମୂଳେ ବିନଷ୍ଟ ହୋଇଥାଏ । ହେ ମାତେ, ଆପଣଙ୍କ ଏହି ରୂପର ଜୟ ହେଉ । ଜୟ କାଳୀ ! ଜୟ କପାଳିନୀ ! ଜୟ କଙ୍କାଳିନୀ ! ହେ ସର୍ବାର୍ଥସାଧିକେ ଶିବେ, ମୁଁ ବୀରବର ଆପଣଙ୍କୁ ନମସ୍କାର କରୁଅଛି । ମୋର ମସ୍ତକ ବିନିମୟରେ ଆପଣ ରାଜା ଶୂଦ୍ରକଙ୍କ ପ୍ରତି ସଦା ପ୍ରସନ୍ନ ରହନ୍ତୁ ।'

ଜୟ ମହିଷାସୁରମାରିଣି ଦାରିଣି ରୁରୁଦାନବସ୍ୟ ଶୂଳକରେ
ଜୟ ବିବୁଧୋତ୍ସବକାରିଣି ଧାରିଣି ଭୁବନତ୍ରୟସ୍ୟ ମାତୃବରେ ।
ଜୟ ଜଗଦର୍ଚ୍ଚିତଚରଣେ ଶରଣେ ନିଃଶ୍ରେୟସସ୍ୟ ଭକ୍ତାନାମ୍
ଜୟ ଧୃତଭାସ୍କରକିରଣେ ହରଣେ ଦୁରିତାନ୍ଧକାର ବୃନ୍ଦାନାମ୍ ।
ଜୟ କାଳି ଜୟ କପାଳିନି ଜୟ କଙ୍କାଳିନି ଶିବେ ନମସ୍ତେ ।

ଏହିପରି ଭାବେ ଦେବୀଙ୍କୁ ସ୍ତୁତି କରି ବୀରବର ମୁହୂର୍ତ୍ତକ ମଧ୍ୟରେ ସ୍ୱହସ୍ତରେ ଧାରଣ କରିଥିବା ତରବାରିଦ୍ୱାରା ଶରୀରରୁ ନିଜ ମସ୍ତକକୁ ଛିନ୍ନ କଲେ । ରାଜା ଶୂଦ୍ରକ ଗୁପ୍ତ ଭାବରେ ରହି ଏସବୁ ଦେଖୁଥାନ୍ତି । ତାଙ୍କ ହୃଦୟ ଏଥିରେ ଶୋକାକୁଳ ହୋଇଉଠିଲା ।

ବିସ୍ମୟ ବିମୂଢ଼ ହୋଇ ସେ ଚିନ୍ତା କଲେ, 'କି ଅଦ୍‌ଭୁତ ସାହସ ! କି ଅଦ୍‌ଭୁତ ବୀରତ୍ୱ ! ଏହି ପ୍ରଭୁଭକ୍ତିର ପଟାନ୍ତର ଅନ୍ୟତ୍ର ବିରଳ । ବୀରବର ନିଜର ପରିବାର ସହିତ ମୋପାଇଁ କି ଦୁଷ୍କର କାର୍ଯ୍ୟ ସାଧନ କରିଛନ୍ତି ! ସ୍ୱାମୀଙ୍କର ଅଜ୍ଞାତରେ, ତାଙ୍କର ବିନା ଆଦେଶରେ ତାଙ୍କରି ମଙ୍ଗଳପାଇଁ ଜୀବନ ଉତ୍ସର୍ଗ କରିବା ଏହିପରି ସଜ୍ଜନ ପୁରୁଷ ଏହି ବିଚିତ୍ର ସଂସାରରେ ଆଉ କିଏ ବା ଥାଇପାରେ ! ଏହି ଉପକାରର ପ୍ରତ୍ୟୁପକାର ଯଦି ମୁଁ ନକରିପାରିଲି ତେବେ ମୁଁ ରାଜା ହେବାର କିମ୍ବା ପଶୁ ତୁଲ୍ୟ ଜୀବନ ଧାରଣ କରିବାର ଅର୍ଥ କ'ଣ ?' ଏହିପରି ଚିନ୍ତା କରି ରାଜା ଶୂଦ୍ରକ ନିଜ ତରବାରିକୁ କୋଷମୁକ୍ତ କଲେ । ଦେବୀଙ୍କ ନିକଟକୁ ଯାଇ ଯୋଡ଼ ହସ୍ତରେ ପ୍ରାର୍ଥନା କଲେ, 'ଦେବି, ଭଗବତି, ମୁଁ ସର୍ବଦା ଆପଣଙ୍କ ଶରଣାଗତ । ଆଜି ଆପଣ ମୋର ମସ୍ତକ ଗ୍ରହଣ କରି ମୋ ପ୍ରତି ଅନୁଗ୍ରହ କରନ୍ତୁ । ସ୍ୱନାମ ଅନୁରୂପ ବୀରତ୍ୱସମ୍ପନ୍ନ ଏହି ବୀରବର ମୋର ଜୀବନ ରକ୍ଷାପାଇଁ ନିଜର ପ୍ରାଣ ବିସର୍ଜନ କରିଛନ୍ତି । ଆପଣ କୃପାକରି ତାଙ୍କୁ ଏବଂ ତାଙ୍କ ପରିବାରର ସମସ୍ତଙ୍କୁ ଜୀବନଦାନ ଦିଅନ୍ତୁ ।' ଏହା କହି ରାଜା ଯେତେବେଳେ ତରବାରି ସାହାଯ୍ୟରେ ଶିରଛେଦନ କରିବାକୁ ଗଲେ ସେତେବେଳେ ଶୂନ୍ୟବାଣୀ ଶୁଭିଲା, 'ରାଜନ୍, ଏପରି ଦୁଃସାହସ କରନାହିଁ । ମୁଁ ତୁମ ପ୍ରତି ପ୍ରସନ୍ନ । ଏହି ବ୍ରାହ୍ମଣ ବୀରବର ନିଜର ପତ୍ନୀ ଓ ସନ୍ତାନ ସହିତ ପୁନର୍ଜୀବନ ଲାଭ କରିବ । ତୁମେ ନିଶ୍ଚିନ୍ତ ରହ ।'

ଶୂନ୍ୟବାଣୀ ଶେଷହେବା ମାତ୍ରେ ବୀରବର ନିଜର ପରିବାର ସହିତ ଅକ୍ଷତ ଶରୀରରେ ଉଠିବସିଲେ । ରାଜା ଏହି ଅଦ୍ଭୁତ ଦୃଶ୍ୟ ଦେଖିବା ପରେ ପୁଣି ଲୁଚିଥିବା ସ୍ଥାନକୁ ଚାଲିଗଲେ । ଆନନ୍ଦ ଓ କୃତଜ୍ଞତାରେ ତାଙ୍କ ଚକ୍ଷୁ ସଜଳ ହୋଇଉଠିଲା ।

ତାଙ୍କ ପତ୍ନୀ ଓ ପୁତ୍ରକନ୍ୟା ନିଦରୁ ଉଠିଲାପରି ଉଠି ବସିଥିବା ଦେଖି ବୀରବର ଭ୍ରମରେ ପଡ଼ିଗଲେ । ସେ ପ୍ରତ୍ୟେକଙ୍କୁ ପଚାରିବାକୁ ଲାଗିଲେ ଯେ ସେମାନେ ସମସ୍ତେ ତ ଚିତା ଭିତରେ ଦଗ୍ଧୀଭୂତ ହୋଇଯାଇଥିଲେ । ସେ ନିଜେ ମଧ୍ୟ ତରବାରି ସାହାଯ୍ୟରେ ନିଜର ମସ୍ତକ ଛେଦନ କରିଥିଲେ । ସମସ୍ତଙ୍କୁ ସେ ଜୀବିତ ଦେଖୁଛନ୍ତି କିପରି ? ଏ ସମସ୍ତ ତାଙ୍କର ଭ୍ରାନ୍ତି ନା ଦେବୀଙ୍କର କୃପା ? ସମସ୍ତେ ଏକ ସ୍ୱରରେ କହିଲେ, ''ଆମେ ସମସ୍ତେ ଯେ ପୁନର୍ଜୀବନ ଲାଭ କରିଛେ, ତାହା ଦେବୀଙ୍କ ଅପାର କୃପା ବ୍ୟତୀତ ଅନ୍ୟ କିଛି ନୁହେଁ । ଦେବୀଙ୍କ ଅନୁଗ୍ରହକୁ ବୁଝିବାର ସାମର୍ଥ୍ୟ ଆମର ନାହିଁ । ଆମେ ତାଙ୍କର ଚରଣ କମଳରେ ଆଶ୍ରୟ ନେବାହିଁ ଏକମାତ୍ର ପନ୍ଥା ।'' ବୀରବର ଦେବୀ ଚଣ୍ଡିକାଙ୍କ କୃପା ଅନୁଭବ କଲେ । ତାଙ୍କର କାର୍ଯ୍ୟ ପୂର୍ଣ୍ଣ ହୋଇଥିଲା । ଦେବୀଙ୍କୁ ପ୍ରଣିପାତ କରି ସେ ନିଜ ବାସସ୍ଥାନକୁ ଫେରିଚାଲିଲେ ।

ବୀରବର ସ୍ତ୍ରୀ ଓ ସନ୍ତାନମାନଙ୍କୁ ଘରେ ଛାଡ଼ିଦେଇ ପୁଣି ରାଜଦ୍ୱାରକୁ ଫେରିଆସିଲେ । ସିଂହଦ୍ୱାରରେ ପୁଣି ତାଙ୍କର ପହରା ଦେବା କାର୍ଯ୍ୟ ଆରମ୍ଭ ହେଲା । ରାଜା ଶୂଦ୍ରକ ମଧ୍ୟ ସମସ୍ତଙ୍କ ଦୃଷ୍ଟି ଅନ୍ତରାଳରେ ନିଜ ଶୟନ କକ୍ଷକୁ ଫେରିଆସିଲେ । ସେ ପୁଣି ପ୍ରାସାଦର ଛାତ ଉପରକୁ ଯାଇ ଡାକିଲେ 'ସିଂହ ଦ୍ୱାରରେ କିଏ ?' ବୀରବର ପୂର୍ବପରି ଉତ୍ତର ଦେଲେ, 'ପ୍ରଭୁ, ମୁଁ ବୀରବର । ଆପଣଙ୍କ ଆଦେଶରେ ମୁଁ ସେହି ସ୍ତ୍ରୀକୁ ଦେଖିବା ପାଇଁ ଯାଇଥିଲି । ମୁଁ ତା ନିକଟକୁ ଯିବାରୁ ସେ ମାୟାବିନୀ ପରି ମୋ ଚକ୍ଷୁ ସମ୍ମୁଖରୁ ଅଦୃଶ୍ୟ ହୋଇଗଲା ।'

ବୀରବରଙ୍କ କଥା ଶୁଣି ରାଜା ଶୂଦ୍ରକଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ ଘଟଣା ନିଜ ଚକ୍ଷୁରେ ଦେଖିଥିଲେ । ମନେମନେ ସେ ଭାବିଲେ 'ପ୍ରକୃତରେ ମନସ୍ୱୀ ପୁରୁଷମାନେ କେଡ଼େ ଧୀର ଓ ଶାନ୍ତ । ସମୁଦ୍ର ପରି ସେମାନଙ୍କର ମନୋରାଜ୍ୟ ଅତୀବ ଗଭୀର ଓ ଗମ୍ଭୀର । ଅଚିନ୍ତନୀୟ ଓ ଅତ୍ୟନ୍ତ କଷ୍ଟସାଧ କାର୍ଯ୍ୟ କରି ସୁଦ୍ଧା ଏମାନେ ତା'ର କ୍ଷୀଣ ଆଭାସ ସୁଦ୍ଧା ଅନ୍ୟକୁ ନଦେବା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ।'

ରାଜା ଶୂଦ୍ରକ ବୀରବରଙ୍କ କଥା ମନେମନେ ଚିନ୍ତା କରି ଶୟନ କକ୍ଷକୁ ଅବତରଣ କରିଆସିଲେ । ସେହି ଚିନ୍ତାରେ ହିଁ ଅବଶିଷ୍ଟ ରଜନୀ ବିତିଗଲା ।

ପ୍ରଭାତରୁ ବୀରବର ରାଜଦର୍ଶନ ପାଇଁ ଆସି ପହଞ୍ଚିଲେ । ବୀରବରଙ୍କ କାର୍ଯ୍ୟରେ ଅତ୍ୟନ୍ତ ପ୍ରସନ୍ନଚିତ୍ତ ରାଜା ତାଙ୍କ ସମ୍ମୁଖରେ ହିଁ ମନ୍ତ୍ରୀମାନଙ୍କୁ ପୂର୍ବ ରଜନୀର ସମସ୍ତ ଘଟଣା ଆମୂଳଚୂଳ ବର୍ଣ୍ଣନା କରି ଶୁଣାଇଲେ । ସଭାସଦ୍‌ମାନେ ରାଜାଙ୍କ କଥାଶୁଣି କିଛି ସମୟ ପାଇଁ ଚିତ୍ରାର୍ପିତ ପରି ରହିଗଲେ । ବୀରବରଙ୍କ ପ୍ରତି କୃତଜ୍ଞତା ପ୍ରକାଶପାଇଁ ରାଜା ତାଙ୍କୁ ଓ ତାଙ୍କ ପୁତ୍ରକୁ ଲାଟ ଓ କର୍ଣ୍ଣାଟ ଦୁଇଟି ରାଜ୍ୟ ପ୍ରଦାନ କଲେ । ବର୍ତ୍ତମାନ ଏମାନେ ସମାନ ବିଭବଶାଳୀ ହୋଇ ପରସ୍ପରର ସହାୟତାରେ ଅଖଣ୍ଡ ରାଜ୍ୟ ଶାସନ କରିବାକୁ ଲାଗିଲେ ।''

ବେତାଳ ଏହିପରି ଏକ ଅତ୍ୟନ୍ତ ଅଦ୍ଭୁତ କଥା ଶୁଣାଇ ରାଜା ତ୍ରିବିକ୍ରମସେନଙ୍କୁ ପ୍ରଶ୍ନ କଲା, 'ରାଜନ୍, ଏବେ କହ, ଏମାନଙ୍କ ମଧ୍ୟରୁ ସବୁଠାରୁ ବଡ଼ ବୀର କିଏ ? ଜାଣି ଜାଣି ତମେ ଯଦି ଏହା ନକହ ତେବେ ପୂର୍ବ ପରି ଅଭିଶାପର ଶିକାର ହେବ ।' ରାଜା ଉତ୍ତରରେ ଶୂଦ୍ରକଙ୍କୁ ସବୁଠାରୁ ବଡ଼ ବୀର ବୋଲି ପ୍ରକାଶ କରନ୍ତେ ବେତାଳ ଯୁକ୍ତି କଲା 'ରାଜନ୍, ବୀରବର କ'ଣ ସବୁଠାରୁ ବଡ଼ ବୀର ନୁହେଁ ? ସ୍ୱାର୍ଥରା ସଂସାରରେ ତା'ପରି

ଆଉ କିଏ ହେବ ? ତା' ସ୍ତ୍ରୀ ମଧ ତା ଅପେକ୍ଷା ଅଧିକ ନୁହେଁ କି ? ସେ ତ ପତିଙ୍କ କଥା ସଙ୍ଗେସଙ୍ଗେ ମାନି ନେଇଥିଲା ଏବଂ ନିଜ ସମ୍ମୁଖରେ ପୁତ୍ରର ହତ୍ୟା ଦେଖୁଥିଲା ? ବୀରବରର ପୁତ୍ର ସତ୍ତ୍ୱବର ତା' ଅପେକ୍ଷା ମଧ ବଡ଼ ନୁହେଁ କି ? ଶିଶୁ ହେଲେ ମଧ ତା'ର ବୀରତ୍ୱ କମ୍ ନୁହେଁ । ତା'ହେଲେ ତୁମେ ଶୂଦ୍ରକଙ୍କୁ ସବୁଠାରୁ ବଡ଼ ବୀର ବୋଲି କିପରି କହିବ ?'

ବେତାଳଠାରୁ ଏହାଶୁଣି ରାଜା ଉତ୍ତରରେ କହିଲେ, 'ତୁମ କଥା ଯଥାର୍ଥ ନୁହେଁ । ବୀରବର ଏପରି ଏକ ବଂଶ ପରମ୍ପରାର ଦାୟାଦ ଥିଲା ଯେଉଁ ବଂଶର ପୂର୍ବଜମାନେ ନିଜର ପ୍ରାଣ, ପତ୍ନୀ ଓ ସନ୍ତାନ ବିନିମୟରେ ପ୍ରଭୁମାନଙ୍କର ରକ୍ଷା କରିବା କାର୍ଯ୍ୟକୁ ନିଜର କର୍ତ୍ତବ୍ୟ ବୋଲି ମନେକରୁଥିଲେ । ତା'ର ପତ୍ନୀ ମଧ ଏକ କୁଳୀନ ବଂଶରେ ଜନ୍ମଗ୍ରହଣ କରିଥିଲା । ସେ ଅତ୍ୟନ୍ତ ପତିବ୍ରତା । ପତିଙ୍କୁ ହିଁ ସେ ଏକମାତ୍ର ଦେବତା ବୋଲି ସ୍ୱୀକାର କରୁଥିଲା । ପତିଙ୍କ ମାର୍ଗ ଅନୁସରଣ କରିବା ବ୍ୟତୀତ ଅନ୍ୟ କିଛିକୁ ସେ ନିଜର ଧର୍ମ ବୋଲି ଭାବି ପାରୁନଥିଲା । ସେମାନଙ୍କଠାରୁ ଜନ୍ମ ନେଇଥିବା ପୁତ୍ର ମଧ ପିତାମାତାଙ୍କର ଅନୁରୂପ ଥିଲା । ବସ୍ତ୍ର ସବୁବେଳେ ସୂତ୍ରର ଅନୁରୂପ ହିଁ ହୋଇଥାଏ । କିନ୍ତୁ ସେବକମାନଙ୍କ ସେବା ଓ ଜୀବନଦ୍ୱାରା ନିଜର ପ୍ରାଣରକ୍ଷା କରୁଥିବା ରାଜା ଶୂଦ୍ରକ ସେବକ ପାଇଁ ଆତ୍ମୋତ୍ସର୍ଗ କରିବା ନିମିତ୍ତ ଉଦ୍ୟତ ହୋଇଥିଲେ । ତେଣୁ ସେ ହିଁ ସମସ୍ତଙ୍କ ଅପେକ୍ଷା ଗରୀୟାନ୍ ।'

ରାଜାଙ୍କ କଥା ଶୁଣି ବେତାଳ ମାୟାବଳରେ ପୁଣି ତାଙ୍କ ସ୍କନ୍ଧରୁ ବିଚ୍ୟୁତ ହୋଇ ନିଜ ସ୍ଥାନକୁ ଫେରିଗଲା । ରାଜା ତ୍ରିବିକ୍ରମସେନ ଏଥିରେ ଅଧୀର ନହୋଇ ପୁଣି ରାତ୍ରିର ଅନ୍ଧକାର ମଧ୍ୟରେ ଗତି ପରିବର୍ତ୍ତନ କଲେ ।

# ଦ୍ୱାଦଶ ତରଙ୍ଗ

## ପଞ୍ଚମ ବେତାଳ କଥା : ସୋମପ୍ରଭା କଥା

ରାଜା ତ୍ରିବିକ୍ରମସେନ ପୁଣି ଆସି ଶିଂଶପା ବୃକ୍ଷ ନିକଟରେ ପହଞ୍ଚିଲେ । ଶବ ଦେହରେ ପ୍ରବେଶ କରିଥିବା ବେତାଳ ବୃକ୍ଷଶାଖାରେ ଓହଳୁଥାଏ । ରାଜା ତାକୁ ତଳକୁ ଆଣି ତାର ଶରୀରକୁ ସଫାସୁତରା କଲେ, ଏବଂ ଦ୍ରୁତ ଗତିରେ ଭିକ୍ଷୁର ଉପାସନା ପୀଠ ଆଡ଼କୁ ଅଗ୍ରସର ହେଲେ ।

ମହାଶ୍ମଶାନର ସେହି ଭୟଙ୍କର ଅନ୍ଧକାର ମଧ୍ୟରେ ପଥ ଅତିକ୍ରମ କରୁଥିଲା ବେଳେ ସ୍କନ୍ଧ ଉପରେ ବସି ବେତାଳ ରାଜା ତ୍ରିବିକ୍ରମସେନଙ୍କୁ ପୂର୍ବପରି କହିବା ଆରମ୍ଭ କଲା ''ରାଜନ୍, ତୁମେ ଭିକ୍ଷୁପାଇଁ ବହୁତ କଷ୍ଟ ସ୍ୱୀକାର କରୁଛ । ମୋତେ ନେବାଆଣିବା ଭିତରେ ତୁମେ ମୋର ଅତି ପ୍ରିୟ ହୋଇଉଠିଲଣି । ତୁମର ପଥକ୍ଳେଶ ଦୂର କରିବାପାଇଁ କଥାଟିଏ କହୁଛି, ଶୁଣ—

ଉଜ୍ଜୟିନୀରେ ହରିସ୍ୱାମୀ ବୋଲି ଜଣେ ସଦ୍‌ଗୁଣଶାଳୀ ବ୍ରାହ୍ମଣ ବାସ କରୁଥିଲେ । ରାଜା ପୁଣ୍ୟସେନଙ୍କ ସେ ଥିଲେ ଅତ୍ୟନ୍ତ ବିଶ୍ୱସ୍ତ କର୍ମଚାରୀ ଏବଂ ସଚିବ । ହରିସ୍ୱାମୀଙ୍କ ପତ୍ନୀ ମଧ୍ୟ ଅନୁରୂପ ଭାବେ ଗୁଣବତୀ ଥିଲେ । ସେମାନଙ୍କର ପୁତ୍ର ଦେବସ୍ୱାମୀ । ପୁତ୍ରର ଜନ୍ମପରେ ବ୍ରାହ୍ମଣ ଦମ୍ପତିଙ୍କଠାରୁ ଅନ୍ୟ ଏକ କନ୍ୟା ମଧ୍ୟ ଜନ୍ମଗ୍ରହଣ କରିଥିଲା । ପିତାମାତା ଏହି ଅପରୂପା ଲାବଣ୍ୟମୟୀ କନ୍ୟାଟିର ନାମ ରଖିଥିଲେ ସୋମପ୍ରଭା ।

କନ୍ୟାଟିର ବିବାହ ବୟସ ହେଲା । ଯୌବନରେ ତାର ରୂପ ଆହୁରି ବୃଦ୍ଧିଲାଭ କଲା । କନ୍ୟାଟି ରୂପ ଗର୍ବରେ ମାତା, ପିତା ଓ ଭ୍ରାତାକୁ କହିଲା ଯେ ସେ କେବଳ ଜଣେ ବୀର କିମ୍ବା ଜଣେ ଜ୍ଞାନୀ କିମ୍ବା ଜଣେ ବିଜ୍ଞାନୀକୁ ହିଁ ବିବାହ କରିବ । ଏମାନଙ୍କ ବ୍ୟତୀତ ଅନ୍ୟ କାହାରି ହସ୍ତରେ ତାକୁ ସମର୍ପଣ କଲେ ସେ ପ୍ରାଣ ବିସର୍ଜନ କରିବ । କନ୍ୟାର ପ୍ରତିଜ୍ଞାରେ ହରିସ୍ୱାମୀ ଚିନ୍ତିତ ହୋଇପଡ଼ିଲେ ।

ଏହିପରି କିଛିଦିନ ବିତିଗଲା । ଦାକ୍ଷିଣାତ୍ୟର ରାଜା ଉଜ୍ଜୟିନୀ ଆକ୍ରମଣ କରିବାପାଇଁ ପ୍ରସ୍ତୁତ ହେଉଥିବା କଥା ରାଜା ପୁଣ୍ୟସେନ ଗୁପ୍ତଚରମାନଙ୍କଠାରୁ ଶୁଣିବାକୁ ପାଇଲେ । ସେ ତାଙ୍କ ସହିତ ଯୁଦ୍ଧ ଚାହୁଁ ନଥିବାରୁ ସନ୍ଧି ପ୍ରସ୍ତାବ ଉପସ୍ଥାପନ କରିବାପାଇଁ ବିଶ୍ୱସ୍ତ ହରିସ୍ୱାମୀଙ୍କୁ ନିଜର ଦୂତ ରୂପେ ପ୍ରେରଣ କଲେ । ସେ ଦାକ୍ଷିଣାତ୍ୟରେ ନିଜ କାର୍ଯ୍ୟ ଶେଷ କଲାବେଳେ ତାଙ୍କ ନିକଟରେ ଜଣେ ବ୍ରାହ୍ମଣ ଯୁବକ ଆସି ପହଞ୍ଚିଲା । ସେ ପୂର୍ବରୁ ତାଙ୍କ କନ୍ୟା ସୋମପ୍ରଭାର ରୂପ ଓ ଗୁଣ ସମ୍ପର୍କରେ ଶୁଣିଥାଏ । ତେଣୁ ସେ ସୋମପ୍ରଭାକୁ ତା'ର ପତ୍ନୀରୂପେ ସମର୍ପଣ କରିବା ନିମିତ୍ତ ହରିସ୍ୱାମୀଙ୍କୁ ଭିକ୍ଷା କଲା ।

ହରିସ୍ୱାମୀ ତାକୁ କନ୍ୟାର ପ୍ରତିଜ୍ଞା କଥା ଶୁଣାଇଲେ । ବୀର, ଜ୍ଞାନୀ ଏବଂ ବିଜ୍ଞାନୀ ମଧ୍ୟରୁ ସେ କେଉଁ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ହେବ ଜାଣିବା ପାଇଁ ଚାହିଁବାରୁ ବ୍ରାହ୍ମଣ ଯୁବକ ନିଜକୁ ବିଜ୍ଞାନୀ ରୂପେ ପରିଚିତ କରାଇଲା । ସେ ଜାଣିଥିବା ଅଲୌକିକ ବିଦ୍ୟା ସବୁର ପ୍ରମାଣ ଦେବାପାଇଁ ହରିସ୍ୱାମୀ ନିର୍ଦ୍ଦେଶ ଦେବାରୁ ସୋମପ୍ରଭାକୁ ପତ୍ନୀ ରୂପେ ଲାଭ କରିବାପାଇଁ ଆଗ୍ରହ ପ୍ରକାଶ କରୁଥିବା ଯୁବକ ନିଜ ବିଦ୍ୟାବଳରେ ଏକ ଆକାଶଚାରୀ ବିମାନ ପ୍ରସ୍ତୁତ କଲା । ଚାହୁଁଚାହୁଁ ସେହି ମାୟାଯନ୍ତ୍ରଚାଳିତ ବିମାନ ହରିସ୍ୱାମୀଙ୍କୁ ସ୍ୱର୍ଗ ପାତାଳ ଇତ୍ୟାଦି ବୁଲାଇ ଆଣିଲା । ହରିସ୍ୱାମୀ ଦାକ୍ଷିଣାତ୍ୟର ଅଧିପତିଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ତାଙ୍କ ସମ୍ମୁଖରେ ସେ ବିଜ୍ଞାନୀ ବ୍ରାହ୍ମଣ ଯୁବକକୁ ଜାମାତା ରୂପେ ଗ୍ରହଣ କରିବାପାଇଁ ପ୍ରତିଶ୍ରୁତି ଦେଇ ସପ୍ତମ ଦିନରେ ବିବାହ ତିଥି ସ୍ଥିର କଲେ ।

ଏହି ସମୟ ମଧ୍ୟରେ ଅନ୍ୟଜଣେ ବ୍ରାହ୍ମଣ ଯୁବକ ସୋମପ୍ରଭାର ଜ୍ୟେଷ୍ଠଭ୍ରାତା ନିକଟରେ ଆସି ତାଙ୍କ ଭଗିନୀର ପାଣିପ୍ରାର୍ଥନା କରିଥାନ୍ତି । ଉଜ୍ଜୟିନୀରେ ରହିଥିବା ଦେବସ୍ୱାମୀ ନିଜ ଭଗିନୀର ପ୍ରତିଜ୍ଞା କଥା ତାକୁ ଶୁଣାଇବାରୁ ଯୁବକ ନିଜକୁ ବୀର ବୋଲି ପରିଚିତ କରାଇଲା । ସେ ନିଜ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନପାଇଁ ଯେତେବେଳେ ଅସ୍ତ୍ରଶସ୍ତ୍ରର ବିଭିନ୍ନ କୌଶଳ ଦେଖାଇବା ଆରମ୍ଭ କଲା ସେଥିରେ ସନ୍ତୁଷ୍ଟ ଓ ପ୍ରୀତ ହୋଇ ଦେବସ୍ୱାମୀ ତାକୁ ନିଜର ଭଗିନୀପତି କରିବା ନିମିତ୍ତ ପ୍ରତିଶ୍ରୁତିବଦ୍ଧ ହେଲା । ମା'ଙ୍କ ଅଜ୍ଞାତସାରରେ ସେ ଜ୍ୟୋତିଷୀମାନଙ୍କ ସହିତ ପରାମର୍ଶ କରି ସପ୍ତମ ଦିନରେ ବିବାହ ମୁହୂର୍ତ୍ତ ନିଶ୍ଚୟ କରିଥାଏ ।

ଏ ମଧ୍ୟରେ ଅନ୍ୟଜଣେ ବ୍ରାହ୍ମଣ ଯୁବକ ହରିସ୍ୱାମୀଙ୍କ ପତ୍ନୀଙ୍କ ନିକଟରେ ଆସି ପହଞ୍ଚିଥାଏ । ଯୁବକଜଣକ ତାଙ୍କ କନ୍ୟାକୁ ବିବାହ କରିବା ନିମିତ୍ତ ଆଗ୍ରହ ପ୍ରକାଶ କରନ୍ତେ ସେ କନ୍ୟାର ପ୍ରତିଜ୍ଞା କଥା ତାକୁ କହି ଶୁଣାଇଲେ । ଯୁବକ କହିଲା, 'ମା, ମୁଁ ଜଣେ

ଜ୍ଞାନୀ' । ତା'ଠାରୁ ଭୂତ, ଭବିଷ୍ୟ ସମ୍ପର୍କରେ ବହୁକଥା ଶୁଣିବା ପରେ ସପ୍ତମ ଦିନରେ ତା' ସହିତ କନ୍ୟାର ବିବାହ ଦେବାପାଇଁ ବ୍ରାହ୍ମଣପତ୍ନୀ ବଚନବଦ୍ଧା ହେଲେ ।

ପରଦିନ ହରିସ୍ୱାମୀ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରି ପତ୍ନୀ ଓ ପୁତ୍ରକୁ ତାଙ୍କ ନିର୍ବାଚିତ ଜାମାତା କଥା କହିଶୁଣାଇଲେ । ସେମାନେ ମଧ୍ୟ ନିଜ ନିଜର ପ୍ରତିଶ୍ରୁତି କଥା ପ୍ରକାଶ କରନ୍ତେ ସମସ୍ତେ ସମସ୍ୟାରେ ପଡ଼ିଗଲେ; ତିନିତିନୋଟି ବରଯାତ୍ରୀଙ୍କୁ ସେମାନେ କିପରି ସ୍ୱାଗତ କରିବେ, ତାହା ବୁଝିପାରିଲେ ନାହିଁ ।

ସପ୍ତମ ଦିନ ଆସି ଉପସ୍ଥିତ ହେଲା । ବିବାହ ତିଥିରେ ବୀର, ଜ୍ଞାନୀ ଓ ବିଜ୍ଞାନୀ ଯୁବକ ହରିସ୍ୱାମୀଙ୍କ ଗୃହପ୍ରାଙ୍ଗଣରେ ଆସି ଉପସ୍ଥିତ ହେଲେ ।

ଏ ସମୟରେ ଏକ ବିଚିତ୍ର ଘଟଣା ଘଟିଗଲା । ହରିସ୍ୱାମୀଙ୍କ କନ୍ୟା ସୋମପ୍ରଭା ବିବାହ ବେଦୀକୁ ବଧୂବେଶରେ ଆସିବା ପରିବର୍ତ୍ତେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ବିଭିନ୍ନ ଦିଗରେ ତା'ର ଅନୁସନ୍ଧାନ କରି ହରିସ୍ୱାମୀ ନିରସ୍ତ ହେଲେ । ସେ ବିଚଳିତ ଓ ବିବ୍ରତ ହୋଇ ଜ୍ଞାନୀ ଯୁବକଙ୍କୁ କନ୍ୟାର ସନ୍ଧାନ ଦେବା ପାଇଁ ଅନୁରୋଧ ଜଣାଇବାରୁ ସେ ଆଶ୍ୱାସନା ଦେଇ କହିଲା, 'ଧୂମଶିଖ ନାମକ ରାକ୍ଷସ ଆପଣଙ୍କ କନ୍ୟାକୁ ଅପହରଣ କରିନେଇ ବିନ୍ଧ୍ୟାଚଳ ସ୍ଥିତ ନିଜ ଗୃହରେ ଲୁଚାଇ ରଖିଛି ।'

ଏଥିରେ ହରିସ୍ୱାମୀ ଭୟଭୀତ ହୋଇଗଲେ । ସେ କନ୍ୟାକୁ କିପରି ଉଦ୍ଧାର କରିବେ ଏବଂ ତା'ର ବିବାହ କିପରି ସମ୍ପନ୍ନ ହେବ, ଏହି କଥା ବାରମ୍ବାର କହି ଶୋକ କରିବାକୁ ଲାଗିଲେ । ଏହା ଶୁଣିବା ମାତ୍ରେ ବିଜ୍ଞାନୀ ଯୁବକ ତାଙ୍କୁ ସାହସ ପ୍ରଦାନପୂର୍ବକ କହିଲା, 'ଆପଣ ଧୈର୍ଯ୍ୟରକ୍ଷା କରନ୍ତୁ । ମୁଁ ଏହି ମୁହୂର୍ତ୍ତରେ ଗୋଟିଏ ଅଲୌକିକ ରଥ ନିର୍ମାଣ କରି ଆପଣଙ୍କ କନ୍ୟାଥିବା ସ୍ଥାନକୁ ନେଇଯିବି ।' ଏହାକହି ସେ ସଙ୍ଗେସଙ୍ଗେ ଗୋଟିଏ ଅସ୍ତ୍ରଶସ୍ତ୍ର ସଜ୍ଜିତ ଆକାଶଗାମୀ ବିମାନ ନିର୍ମାଣ କଲା । ଏହି ମାୟାଯନ୍ତ୍ର ବଳରେ ହରିସ୍ୱାମୀ, ଜ୍ଞାନୀ ଓ ବୀର ନିର୍ଦ୍ଦିଷ୍ଟ ରାକ୍ଷସ ଗୃହ ସମୀପରେ ଯାଇ ଉପସ୍ଥିତ ହେଲେ ।

ଏମାନଙ୍କୁ ଦେଖି ରାକ୍ଷସ ଅତ୍ୟନ୍ତ କ୍ରୋଧରେ ଦୌଡ଼ି ଆସିଲା । ହରିସ୍ୱାମୀଙ୍କ ନିର୍ଦ୍ଦେଶରେ ବୀର ଯୁବକ ତା' ସହିତ ଯୁଦ୍ଧ କରିବାପାଇଁ ଅଗ୍ରସର ହେଲେ । ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ନର ଓ ରାକ୍ଷସ ମଧ୍ୟରେ ଯୁଦ୍ଧ ଅତ୍ୟନ୍ତ ବିସ୍ମୟକର ଥିଲା । ମନେ ହେଉଥିଲା ସ୍ତ୍ରୀପାଇଁ ରାମ ଓ ଲକ୍ଷ୍ମଣ ରାବଣ ସହିତ ଯେପରି ସଂଗ୍ରାମ କରୁଛନ୍ତି । ମୁହୂର୍ତ୍ତକ ମଧ୍ୟରେ ସେହି ବୀର ବ୍ରାହ୍ମଣଯୁବକ ଅର୍ଦ୍ଧଚନ୍ଦ୍ର ବାଣ ପ୍ରୟୋଗ କରି ରାକ୍ଷସର ମସ୍ତକ ଛିନ୍ନ କଲେ । ରାକ୍ଷସର ମୃତ୍ୟୁରେ ସମସ୍ତେ ବିଜ୍ଞାନୀ ନିର୍ମିତ ଆକାଶଚାରୀ ବିମାନ ସାହାଯ୍ୟରେ

ହରିସ୍ୱାମୀଙ୍କ ଗୃହକୁ ପ୍ରତ୍ୟାବର୍ତ୍ତନ କରିଆସିଲେ । ବିବାହର ଲଗ୍ନ ମୁହୂର୍ତ୍ତ ଆସି ପହଞ୍ଚିଲା । ସେତେବେଳେ ଏହି ତିନିଜଣ ବ୍ରାହ୍ମଣ ଯୁବକ ସୋମପ୍ରଭାକୁ ବିବାହ କରିବା ନିମିତ୍ତ ନିଜନିଜର ଯୁକ୍ତି ଉପସ୍ଥାପନ କଲେ । ସେମାନଙ୍କ ମଧ୍ୟରେ କଳହ ଆରମ୍ଭ ହେଲା ।

ଜ୍ଞାନୀ କହିଲା, ''ମୁଁ ଯଦି ସୋମପ୍ରଭାକୁ ଲୁଚାଇ ରଖିଥିବା ଗୁପ୍ତ ସ୍ଥାନର ସନ୍ଧାନ ଦେଇନଥାନ୍ତି, ତା'ହେଲେ ତୁମେ ତାକୁ ପାଇଥାନ୍ତ କୋଉଠୁ ? ତେଣୁ ସୋମପ୍ରଭା ମୋରହିଁ ପ୍ରାପ୍ୟ ।''

ବିଜ୍ଞାନୀ ଯୁବକ ଯୁକ୍ତି କଲା, ''ମୁଁ ଯଦି ଆକାଶଗାମୀ ବିମାନ ପ୍ରସ୍ତୁତ କରିନଥାନ୍ତି ତେବେ ମୁହୂର୍ତ୍ତକ ମଧ୍ୟରେ ଆମେ ଧୂମଶିଖର ସୁଦୂର ବାସଭବନକୁ ଯାଇଥାନ୍ତେ କିପରି ? ବିମାନ ଉପରେ ବସି ଯୁଦ୍ଧ କରୁଥିବା ରାକ୍ଷସ ସହିତ ବିନା ବିମାନରେ ଯୁଦ୍ଧ କିପରି ସମ୍ଭବ ହୋଇପାରନ୍ତା ? ତେଣୁ ସୋମପ୍ରଭାର ବିବାହ ମୋ ସହିତ ହିଁ ହେବା ଉଚିତ । ମୁଁ ହିଁ ତାକୁ ଜୟ କରିଛି ।''

ଶେଷରେ ବୀର ଯୁବକ ନିଜର ଯୁକ୍ତି ଉପସ୍ଥାପନ କଲା, ''ମୁଁ ଯଦି ଯୁଦ୍ଧରେ ରାକ୍ଷସକୁ ବଧ କରିନଥାନ୍ତି ଆପଣମାନେ ଶତପ୍ରୟାସ କଲେ ସୁଦ୍ଧା ସୋମପ୍ରଭାକୁ କିପରି ଫେରାଇ ଆଣିପାରିଥାନ୍ତେ ? ତେଣୁ ସୋମପ୍ରଭା କେବଳ ମୋର ହିଁ ପ୍ରାପ୍ୟ ।''

ତିନିବ୍ରାହ୍ମଣ ଯୁବକଙ୍କ କଳହରେ ହରିସ୍ୱାମୀ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ତିନିଜଣଙ୍କ ଯୁକ୍ତି ତାଙ୍କୁ ଉଦ୍‌ଭ୍ରାନ୍ତ କରିପକାଇଲା । ସେ ନିର୍ଜୀବ ତୁଲ୍ୟ ବସିରହିଲେ ।''

ଏହିପରି କଥାଟି ଶୁଣାଇ ବେତାଳ ପୂର୍ବରୀତିରେ ପ୍ରଶ୍ନ କଲା, ''ରାଜନ୍, ଏବେ କହ ବ୍ରାହ୍ମଣ କନ୍ୟା କାହାକୁ ବିବାହ କରିବା ଉଚିତ ? ଏହା ଜାଣି ମଧ୍ୟ ଯଦି ତୁମେ ଚୁପ୍ ରହ ତେବେ ତୁମର ମସ୍ତକ ବିଦୀର୍ଣ୍ଣ ହେବ ।''

ବେତାଳର କଥାଶୁଣି ରାଜା ତ୍ରିବିକ୍ରମସେନ ମୌନଭଙ୍ଗ କଲେ । କହିଲେ, ''କନ୍ୟାଟି ସେହି ବୀର ବ୍ରାହ୍ମଣ ଯୁବକର ହିଁ ପ୍ରାପ୍ୟ । ସେ ପ୍ରାଣପଣ କରି ରାକ୍ଷସ ସହିତ ଯୁଦ୍ଧ କରିଛି । ନିଜ ବାହୁବଳରେ କନ୍ୟାକୁ ଅର୍ଜନ କରିଥିବାରୁ ସେ ହିଁ ତାର ପତି ହେବାପାଇଁ ଯୋଗ୍ୟ । ଜ୍ଞାନୀ ଓ ବିଜ୍ଞାନୀକୁ ବିଧାତା ବୀରର ସହାୟତାପାଇଁ ସୃଷ୍ଟି କରିଛନ୍ତି । ଜ୍ୟୋତିଷୀ ଓ ଶିଳ୍ପକାର ଅନ୍ୟକୁ ସାହାଯ୍ୟ କରିବାପାଇଁ କଣ ନିଜ ନିଜର ବିଦ୍ୟା ପ୍ରୟୋଗ କରନ୍ତିନାହିଁ କି ?''

ତିବିକ୍ରମସେନଙ୍କ କଥା ଶୁଣି ବେତାଳ ଆଖି ପିଛୁଳାକେ ତାଙ୍କ ସ୍କନ୍ଧରୁ ନିଜ ସ୍ଥାନକୁ ଚାଲିଗଲା । ରାଜା ମଧ୍ୟ ତା'ର ଅନୁଧାବନ କଲେ ।

# ତ୍ରୟୋଦଶ ତରଙ୍ଗ

## ଷଷ୍ଠ ବେତାଳ କଥା : ରଜକକନ୍ୟା କଥା

ରାଜା ତ୍ରିବିକ୍ରମସେନ ପୁଣି ସେହି ଶିଂଶପା ବୃକ୍ଷ ନିକଟକୁ ଯାଇ ବେତାଳକୁ ଦେଖିବାକୁ ପାଇଲେ । ପୂର୍ବପରି ସେ ତାକୁ ସ୍କନ୍ଧରେ ଧାରଣ ପୂର୍ବକ ଚୁପ୍‌ଚାପ୍ ଶ୍ମଶାନ ପଥ ଅତିକ୍ରମ କଲାବେଳେ ବେତାଳ ପୁଣି କହିବା ଆରମ୍ଭ କଲା—

‘‘ରାଜନ୍, ତୁମେ ବୁଦ୍ଧିମାନ୍ ଓ ବୀର; ସେଥିପାଇଁ ତୁମେ ମୋର ପ୍ରିୟ । ଏଣୁ ତୁମର ମନୋରଞ୍ଜନ କରିବାପାଇଁ ମୁଁ ଏପରି କଥା ସବୁ କହୁଛି । ଏବେ ଆଉ ଗୋଟିଏ କଥା ଶୁଣ—

ଯଶଃକେତୁ ନାମରେ ଜଣେ ସୁଖ୍ୟାତି ସମ୍ପନ୍ନ ରାଜା ଥିଲେ । ଶୋଭାବତୀ ଥିଲା ତାଙ୍କର ରାଜଧାନୀ । ଏହି ନଗରୀରେ ପାର୍ବତୀଙ୍କର ଏକ ବିଶାଳ ମନ୍ଦିର ଥିଲା । ମନ୍ଦିରର ଦକ୍ଷିଣରେ ଗୌରୀତୀର୍ଥ ନାମକ ଏକ ଦିବ୍ୟ ସରୋବର । ସେଠାରେ ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ ଦିନ.ଏକ ବିରାଟ ମେଳା ହେଉଥାଏ । ସରୋବରରେ ସ୍ନାନକରି ମେଳା ଦେଖିବାପାଇଁ ଦୂରଦୂରାନ୍ତରରୁ ବିଶିଷ୍ଟ ବ୍ୟକ୍ତିମାନେ ସେଠାରେ ସମବେତ ହେଉଥାନ୍ତି ।

ଥରେ ଏହି ନିର୍ଦ୍ଦିଷ୍ଟ ଦିନ ବ୍ରହ୍ମସ୍ଥଳ ନାମକ ଏକ ଗାଁରୁ ଜଣେ ଧୋବା ମେଳା ଦେଖିବାପାଇଁ ଆସିଥାଏ । ସେ ସ୍ନାନ କରିବାପାଇଁ ସେଠାକୁ ଆସିଥିବା ଶୁଦ୍ଧପଟର କୁମାରୀକନ୍ୟା ମଦନସୁନ୍ଦରୀର ରୂପରେ ମୋହିତ ହୋଇପଡ଼ିଲା । କନ୍ୟାଟିର ରୂପରାଶି ଚନ୍ଦ୍ରମାତୁଲ୍ୟ ସ୍ନିଗ୍ଧ ଓ ମନୋରମ । ତା'ର ଦର୍ଶନରେ ରଜକପୁତ୍ର ଧବଳ କାମାର୍ତ୍ତ ହୋଇ ତାର ନାମ, କୁଳ, ଗୋତ୍ର ପ୍ରଭୃତିର ସନ୍ଧାନ ନେଲା । ଘରକୁ ଫେରିଆସି ମଦନସୁନ୍ଦରୀର ବିରହରେ ସେ ଭୋକଶୋକ ଭୁଲିଯାଇ ନିଶ୍ଚେଷ୍ଟ ଭାବେ ପଡ଼ିରହିଥାଏ । ପୁତ୍ରର ଏପରି ଅବସ୍ଥା ଦେଖି ମାତା ବିକଳ ଭାବେ ନିଜ ସ୍ୱାମୀକୁ ଏହାର ସୂଚନା ଦେଲେ । ପିତା ବିମଳ

ଗୃହକୁ ଆସି ପୁତ୍ରର ଏ ଅବସ୍ଥାରେ ତାକୁ ଆଶ୍ୱାସନା ଦେଇ କହିଲେ, ''ପୁତ୍ର, ଯାହାକୁ ପାଇବା ଆଦୌ କଷ୍ଟକର ନୁହେଁ, ତା' ପାଇଁ ତୁ ଏତେ ଚିନ୍ତା କାହିଁକି କରୁଛୁ ? ମୁଁ ଯାଇ ଅନୁରୋଧ କଲେ ଶୁଦ୍ଧପଟ ନିଶ୍ଚୟ ତାର କନ୍ୟା ସହିତ ତୋର ବିବାହ ପାଇଁ ସମ୍ମତ ହେବ । କୁଳ, କର୍ମ ଓ ଧନରେ ଆମେ ଉଭୟେ ସମାନ । ମୁଁ ତାକୁ ଜାଣେ । ସେ ମଧ ମୋତେ ଭଲକରି ଜାଣିଛି । ତେଣୁ ଏହା ମୋ ପାଇଁ କଷ୍ଟକର ହେବନାହିଁ ।'' ପୁଅକୁ ଏହିପରି ବୁଝାସୁଝା କରି ସେ ତାକୁ ଖାଇବାପାଇଁ ରାଜି କରାଇଲା ।

ପରଦିନ ପୁତ୍ରକୁ ସଙ୍ଗରେ ଧରି ବିମଳ ଶୁଦ୍ଧପଟ ନିକଟରେ ଯାଇ ପହଞ୍ଚିଲା । ନିଜର ପୁତ୍ରପାଇଁ ତାର କନ୍ୟା ମଦନସୁନ୍ଦରୀକୁ ଯାଚନା କରିବା ମାତ୍ରେ ଶୁଦ୍ଧପଟ ଆଦରର ସହିତ ଏଥିରେ ସମ୍ମତ ହେଲା । ପରଦିନ ଅନୁରୂପ ଧନ, ରୂପ ଓ ଗୁଣଶାଳୀ ଧବଳ ସହିତ ମଦନସୁନ୍ଦରୀର ବିବାହ ଉତ୍ସବ ପାଳନ କରାଗଲା । ଦେଖିବା ମାତ୍ରେ ଯାହା ପ୍ରତି ଆକୃଷ୍ଟ ହୋଇପଡ଼ିଥିଲା, ତାକୁ ପତ୍ନୀ ରୂପରେ ଲାଭ କରି ଧବଳ ଆନନ୍ଦର ସହିତ ସ୍ୱଗୃହକୁ ଫେରିଆସିଲା ।

ପିତୃଗୃହରେ ଉଭୟେ ସୁଖରେ କାଳ କଟାଉଥାନ୍ତି । ଦିନେ ଧବଳର ଶାଳକ ଅର୍ଥାତ୍ ମଦନସୁନ୍ଦରୀର ଭାଇ ଆସି ସେଠାରେ ପହଞ୍ଚିଲା । ପରିବାରର ସମସ୍ତେ ତା'ର ଆଦର ସତ୍କାର କଲେ । ଭଉଣୀକୁ ଗଳାରେ ଲଗାଇ ସେ ତାର ଅଭିନନ୍ଦନ କଲା । କୁଶଳବାର୍ତ୍ତା ବିନିମୟ ପରେ କିଛି ସମୟ ବିଶ୍ରାମ କରି ସେ କହିଲା ଯେ ବାପା ତାକୁ ଧବଳ ଓ ମଦନସୁନ୍ଦରୀକୁ ସାଙ୍ଗରେ ନେଇଯିବାପାଇଁ ପଠାଇଛନ୍ତି । ତାଙ୍କ ଗୃହରେ ଦେବୀ ପୂଜାର ଆୟୋଜନ କରାଯାଇଥିବା ଯୋଗୁଁ ଏମାନଙ୍କ ଉପସ୍ଥିତି ଆବଶ୍ୟକ ହେଉଛି । ଶୁଦ୍ଧପଟ ଓ ପରିବାରର ଅନ୍ୟମାନେ ଏହି ନିମନ୍ତ୍ରଣ ଗ୍ରହଣ କଲେ । ଦିନଟି ଖୁସିବାସିରେ କଟିଗଲା । ପ୍ରଭାତରୁ ଧବଳ ସ୍ତ୍ରୀ ଓ ଶାଳକ ସହିତ ଶ୍ୱଶୁରାଳୟ ଯିବାପାଇଁ ବାହାରିଲା ।

ଶୋଭାବତୀ ନଗରୀ ନିକଟରେ ପହଞ୍ଚି ଧବଳ ପାର୍ବତୀଙ୍କର ବିଶାଳ ମନ୍ଦିର ଦେଖିବାକୁ ପାଇଲା । ସ୍ତ୍ରୀ ଓ ଶାଳକକୁ ଦେବୀଙ୍କ ଦର୍ଶନପାଇଁ ଡାକିବାରୁ ସେମାନେ ଖାଲି ହାତରେ ଦେବୀଙ୍କ ଦର୍ଶନପାଇଁ ଯିବେ ନାହିଁ ବୋଲି କହିଲେ । ଧବଳ କିନ୍ତୁ ସେମାନଙ୍କ ବାରଣ ନମାନି ଏକାକୀ ଦେବୀ ମନ୍ଦିରରେ ପ୍ରବେଶ କଲା । ସ୍ତ୍ରୀ ଓ ଶାଳକ ମନ୍ଦିର ଦ୍ୱାରରେ ଅପେକ୍ଷା କରି ରହିଲେ । ମନ୍ଦିର ମଧ୍ୟରେ ଅଷ୍ଟାଦଶଭୁଜା ଦେବୀଙ୍କର ସଂହାର ମୂର୍ତ୍ତି ସିଂହାସନ ଉପରେ ଶୋଭା ପାଉଥାଏ । ଗୋଟିଏ ପାଦପଦ୍ମରେ ସେ ମହିଷାସୁରକୁ ଦଳନ କରୁଥାନ୍ତି । ଧବଳ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କ

ସମ୍ମୁଖରେ ଧ୍ୟାନସ୍ଥ ହେଲା । ଦୈବୀ ପ୍ରେରଣାରୁ ହଠାତ୍ ତା' ମନରେ ଏକ ଶୁଭଙ୍କର ଚିନ୍ତା ଜାଗ୍ରତ ହେଲା । ସେ ଭାବିଲା, 'ଦେବୀଙ୍କର କୃପାଲାଭ ନିମିତ୍ତ ବିବିଧ ପଶୁବଳି ଦେଇ ଲୋକମାନେ ତାଙ୍କର ଆରାଧନା କରିଥାନ୍ତି । ମୁଁ ସିଦ୍ଧିଲାଭ ପାଇଁ ନିଜକୁ ବଳିରୂପେ ଅର୍ପଣ କଲେ କ୍ଷତି କ'ଣ ?' ଏ ପ୍ରକାର ଚିନ୍ତାକରି ସେ ଏକାନ୍ତରେ ମନ୍ଦିରର ଗର୍ଭଗୃହ ମଧ୍ୟରୁ ତୀକ୍ଷ୍ଣ ତରବାରିଟିଏ ନେଇ ଆସିଲା । ତରବାରିଟି ବୋଧହୁଏ କୌଣସି ଭକ୍ତ ସଦ୍ୟ ରଖିଦେଇ ଯାଇଥାଏ । ଦେବୀଙ୍କ ସମ୍ମୁଖରେ ଝୁଲୁଥିବା ଘଣ୍ଟାର ଶିକୁଳିରେ ସେ ତାର ମସ୍ତକକୁ ଦୃଢ଼ ରୂପେ କେଶପାଶ ଦ୍ୱାରା ବାନ୍ଧିଦେଲା । ତା'ପରେ ତାକୁ ତରବାରିଦ୍ୱାରା ଶରୀରରୁ ଛିନ୍ନ କରିଦେଲା । ଗଳା କଟିଯିବା ପରେ ତା'ର ପ୍ରାଣହୀନ ଶରୀର ଭୂମି ଉପରେ ଲୋଟି ପଡ଼ିଲା ।

ଦୀର୍ଘ ସମୟ ଅପେକ୍ଷା କରିବା ପରେ ଯେତେବେଳେ ଧବଳ ଫେରିଲା ନାହିଁ ସେତେବେଳେ ତା'ର ଶାଳକ କାରଣ ଜାଣିବାପାଇଁ ମନ୍ଦିର ମଧ୍ୟରେ ପ୍ରବେଶ କଲା । ଧବଳକୁ ଏହି ଅବସ୍ଥାରେ ଦେଖି ସେ ପ୍ରଥମେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲା । ପରେ ଏ ଦୁଃସମ୍ବାଦ ଭଉଣୀକି ଦେବାପାଇଁ ସାହସ କରିନପାରି ସେ ପଡ଼ିଥିବା ତରବାରି ସାହାଯ୍ୟରେ ନିଜ ମସ୍ତକ କର୍ତ୍ତନ କଲା ।

ପତି ଓ ଭ୍ରାତା ଉଭୟେ ଫେରିଆସୁନଥିବା ଦେଖି ମଦନସୁନ୍ଦରୀ କାତର ହୋଇପଡ଼ିଲା । ସେ ମଧ୍ୟ ମନ୍ଦିର ମଧ୍ୟରେ ପ୍ରବେଶକରି ଦେବୀଙ୍କ ସନ୍ନିଧିରେ ଯାଇ ପହଞ୍ଚିଲା । ଉଭୟଙ୍କ ମସ୍ତକହୀନ ଶରୀର ଦେଖି ତା'ର ଧୈର୍ଯ୍ୟ ରହିଲା ନାହିଁ । ସେ ଭୂମି ଉପରେ ମୂର୍ଚ୍ଛିତା ହୋଇପଡ଼ିଲା । କିଛି ସମୟ ପରେ ମୂର୍ଚ୍ଛାଭଙ୍ଗ ହେବାରୁ ସେ ମଧ୍ୟ ଆତ୍ମବିସର୍ଜନ ପାଇଁ ପ୍ରସ୍ତୁତ ହେଲା । ଦେବୀଙ୍କୁ ପ୍ରଣାମ କରି ସ୍ତୁତି କଲା–

''ହେ ଦେବି ! ତୁମେ ସୌଭାଗ୍ୟ ଓ ସତୀତ୍ୱର ଅଧିଷ୍ଠାତ୍ରୀ ଦେବୀ । ଅର୍ଦ୍ଧାଙ୍ଗିନୀ ରୂପେ ତୁମେ ନିଜର ପତି କନ୍ଦର୍ପଶତ୍ରୁ ଶିବଙ୍କ ଶରୀରରେ ହିଁ ଅବସ୍ଥାନ କରୁଅଛ । ସଂସାରର ସମସ୍ତ ସ୍ତ୍ରୀ ତୁମର ଶରଣାର୍ଥିନୀ । ସେମାନଙ୍କର ଅଶେଷ ଦୁଃଖ ତୁମେ ହିଁ ଦୂର କରିଥାଅ । ତଥାପି ମୋର ଭାଇ ଓ ସ୍ୱାମୀଙ୍କୁ ମୋଠାରୁ କାହିଁକି ଏପରି ଛଡ଼ାଇ ନେଲ ? ମୁଁ ତ ସବୁବେଳେ ତୁମକୁ ଭକ୍ତି କରିଆସିଛି । ମୋ ପ୍ରତି ତୁମର ଏ ଅବିଚାର ଯଥାର୍ଥ ହେଲାନାହିଁ । ମୁଁ ବର୍ତ୍ତମାନ ତୁମର ଶରଣାଗତ । ମୋର ଏକମାତ୍ର କରୁଣ ପ୍ରାର୍ଥନା ଶୁଣ । ଦୁର୍ଭାଗ୍ୟଗ୍ରସ୍ତ ଏହି ଶରୀର ମୁଁ ବର୍ତ୍ତମାନ ତ୍ୟାଗ କରୁଛି । ପରଜନ୍ମରେ ମୁଁ ଯେଉଁ ରୂପରେ ଯେଉଁଠାରେ ବା ଜନ୍ମହୁଏ ଏ ଦୁଇଜଣଙ୍କୁ ଯେପରି ଭ୍ରାତା ଓ ପତି ରୂପରେ ପାଏ ।''

ଏହିପରି ସ୍ତୁତିପୂର୍ବକ ଦେବୀଙ୍କୁ ନିବେଦନ କରି ସେ ପୁଣି ସାଷ୍ଟାଙ୍ଗ ପ୍ରଣିପାତ କଲା । ମନ୍ଦିର ବେଢ଼ାରେ ଥିବା ଅଶୋକ ବୃକ୍ଷର ଏକ ଉଚ୍ଚଶାଖାରେ ଲତାରଜ୍ଜୁ ଦ୍ୱାରା ଫାଶଟିଏ ତିଆରି କରି ତା' ଭିତରେ ମୁଣ୍ଡ ଗଳାଇବାପାଇଁ ଉଦ୍ୟତ ହେଲାବେଳେ ଶୂନ୍ୟବାଣୀ ହେଲା, 'ପୁତ୍ରି, ଏପରି ଦୁଃସାହସ କରନାହିଁ । ଅଳ୍ପବୟସ୍କା ହୋଇସୁଦ୍ଧା ଏପରି ସାହସ ପ୍ରଦର୍ଶନ କରୁଥିବା ଯୋଗୁଁ ମୁଁ ତୋ ପ୍ରତି ପ୍ରସନ୍ନ । ଫାଶ ଖୋଲିଦେ । ଭାଇ ଓ ସ୍ୱାମୀର ଶରୀରରେ ସେମାନଙ୍କର ମସ୍ତକ ଯୋଡ଼ିଦେଲେ ସେମାନେ ମୋର ବର ପ୍ରଭାବରେ ଜୀବନ ଲାଭ କରିଉଠିବେ ।'

ଦିବ୍ୟ ବାଣୀ ଶୁଣି ମଦନସୁନ୍ଦରୀ ଆନନ୍ଦରେ ଅଧୀର ହୋଇପଡ଼ିଲା । କଣ୍ଠରୁ ଫାଶ ଖୋଲିଦେଇ ସେ ନିର୍ଜୀବ ଶରୀରଗୁଡ଼ିକ ନିକଟକୁ ଦୌଡ଼ିଗଲା । ଅତ୍ୟଧିକ ଉତ୍କଣ୍ଠା ଯୋଗୁଁ ସେ କ'ଣ କରିବ ନ କରିବ ବୁଝିନପାରି ଭାଇ ମସ୍ତକ ପତିର ଶରୀରରେ ଏବଂ ପତିର ମସ୍ତକ ଭାଇର ଶରୀରରେ ଯୋଡ଼ିଦେଲା । ବୋଧହୁଏ ଏହାହିଁ ଥିଲା ବିଧିର ବିଧାନ ।

ଦେବୀଙ୍କ ବର ପ୍ରଭାବରେ ଉଭୟେ ଜୀବିତ ହୋଇଉଠିଲେ । ସେମାନଙ୍କ ଶରୀରରେ କ୍ଷତର କୌଣସି ଚିହ୍ନ ନଥିଲା । କିନ୍ତୁ ମସ୍ତକଗୁଡ଼ିକ ବଦଳିଯିବା ଫଳରେ ରୂପରେ ବ୍ୟତିକ୍ରମ ଆସିଯାଇଥିଲା । ଜୀବନ ଲାଭ କରି ସେମାନେ ନିଜ ନିଜର ଅନୁଭୂତି ବର୍ଣ୍ଣନା କଲେ । ଭଗବତୀଙ୍କ କୃପାଲାଭ କରିଥିବାରୁ ପ୍ରସନ୍ନ ଚିତ୍ତରେ ସେମାନେ ସେଠାରୁ ଗୃହ ଅଭିମୁଖରେ ଅଗ୍ରସର ହେଲେ । ପଥ ମଧ୍ୟରେ ମଦନସୁନ୍ଦରୀ ସେମାନଙ୍କର ମସ୍ତକ ବଦଳି ଯାଇଥିବା ଲକ୍ଷ୍ୟ କଲା । ଏଥିରେ ସେ କ'ଣ କରିବ କିଛି ବୁଝିପାରିଲା ନାହିଁ । ତାର ଚେତନା ଶକ୍ତି ଲୋପ ପାଇଗଲା ।''

ଗଳ୍ପଟି ଶୁଣାଇ ବେତାଳ ପ୍ରଶ୍ନକଲା, ''ରାଜନ୍, ଏବେ କୁହ, ଏ ଉଭୟଙ୍କ ମଧ୍ୟରୁ କିଏ ମଦନସୁନ୍ଦରୀର ପତି ହେବ ? ଜାଣି ମଧ୍ୟ ଯଦି ନ କହ ତେବେ ଆଗରୁ କହିଥିବା ଅଭିଶାପ ଭୋଗିବାକୁ ପଡ଼ିବ ।''

ତ୍ରିବିକ୍ରମସେନ ବେତାଳର କଥା ଓ ପ୍ରଶ୍ନ ଶୁଣି ମୌନଭଙ୍ଗ କରିବାପାଇଁ ବାଧ୍ୟ ହେଲେ । କହିଲେ, ''ଏ ଉଭୟଙ୍କ ମଧ୍ୟରୁ ଯେଉଁ ଶରୀରରେ ପତିର ମସ୍ତକ ଅଛି ସେ ହିଁ ତାର ସ୍ୱାମୀ ହେବ । ମସ୍ତକ ହିଁ ଶରୀରର ଶ୍ରେଷ୍ଠ ଅଙ୍ଗ; ତା'ଦ୍ୱାରା ହିଁ ବ୍ୟକ୍ତି ପରିଚିତ ହୋଇଥାଏ ।''

ରାଜାଙ୍କ କଥା ଶୁଣି ବେତାଳ ପୁଣି ପୂର୍ବ ସ୍ଥାନକୁ ଫେରିଗଲା । ରାଜା ପୁଣି ସେ ଦିଗକୁ ମୁହଁ ଫେରାଇଲେ ।

## ଚତୁର୍ଦ୍ଦଶ ତରଙ୍ଗ

### ସପ୍ତମ ବେତାଳ କଥା : ସତ୍ତ୍ୱଶୀଳ କଥା

ରାଜା ତ୍ରିବିକ୍ରମସେନ ପୁଣି ଶିଂଶପା ବୃକ୍ଷ ମୂଳକୁ ଯାଇ ବେତାଳକୁ ସ୍କନ୍ଧରେ ସ୍ଥାପନ କଲେ । ବେତାଳ ପୂର୍ବପରି ରାଜାଙ୍କ ମନୋବିନୋଦନ ପାଇଁ ଆଉ ଗୋଟିଏ ଗଳ୍ପ ଆରମ୍ଭ କଲା ।

''ପୂର୍ବ ସମୁଦ୍ର ତଟରେ ତାମ୍ରଲିପ୍ତି ବୋଲି ଏକ ନଗରୀ ଅଛି । ଅତୀତରେ ଚଣ୍ଡସେନ ନାମରେ ଜଣେ ରାଜା ସେଠାରେ ରାଜତ୍ୱ କରୁଥିଲେ । ସେ ପରସ୍ତ୍ରୀ ପ୍ରତି ଯେପରି ବିମୁଖ ଥିଲେ ଶତ୍ରୁମାନଙ୍କ ପ୍ରତି ସେହିପରି ଆସକ୍ତ ଥିଲେ । ସେ ଶତ୍ରୁମାନଙ୍କଠାରୁ ବିଜୟଲକ୍ଷ୍ମୀକୁ ଅପହରଣ କରୁଥିଲେ, କିନ୍ତୁ ପରଦ୍ରବ୍ୟକୁ ସ୍ପର୍ଶ ମଧ୍ୟ କରୁନଥିଲେ ।

ଏକଦା ସତ୍ତ୍ୱଶୀଳ ନାମକ ଜଣେ ଦାକ୍ଷିଣାତ୍ୟବାସୀ ଜନପ୍ରିୟ ରାଜକୁମାର ସିଂହ ଦ୍ୱାରରେ ଆସି ଉପସ୍ଥିତ ହେଲେ । ରାଜାଙ୍କୁ ନିଜର ଆସିବା ସୂଚନା ଦେଇ ସେ ଅନ୍ୟ ମିତ୍ରମାନଙ୍କ ସହିତ ରାଜାଙ୍କ ସମ୍ମୁଖରେ ଯାଇ ଉପସ୍ଥିତ ହେଲେ । ନିଜର ନିର୍ଧନତା ଜଣାଇବା ନିମିତ୍ତ ସତ୍ତ୍ୱଶୀଳ ନିଜର ପରିଧେୟ ବସ୍ତ୍ରକୁ ଦୁଇଫାଳ କରି ଚିରି ପକାଇଲେ । କିନ୍ତୁ ଧନ ପ୍ରତ୍ୟାଶାରେ ସେ ବହୁବର୍ଷ ଧରି ସେବା କରି ସୁଦ୍ଧା ରାଜାଙ୍କଠାରୁ କୌଣସି ଫଳ ପାଇବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ସେ ଦୁଃଖର ସହିତ ଚିନ୍ତା କରିବାକୁ ଲାଗିଲେ, 'ରାଜବଂଶରେ ଜନ୍ମ ହୋଇ ସୁଦ୍ଧା ମୋର ଏ ଦାରିଦ୍ର୍ୟ କାହିଁକି ? ଦରିଦ୍ର ହୋଇ ସୁଦ୍ଧା ମୋ ମନରେ ବିଧାତା କାହିଁକି ଏପରି ମହତ୍ତ୍ୱାକାଂକ୍ଷା ଜାଗ୍ରତ ରଖିଛି ? ମିତ୍ରମାନଙ୍କ ସହିତ ଏତେ ବର୍ଷ ଧରି ରାଜାଙ୍କ ସେବା କରିଆସୁଥିଲେ ସୁଦ୍ଧା ଆମର ଅନ୍ନବସ୍ତ୍ରର କଷ୍ଟ ଦୂର ହେଉନାହିଁ । ରାଜା ଥରକପାଇଁ ସୁଦ୍ଧା ଆମ ଆଡ଼କୁ ଚାହୁଁ ନାହାଁନ୍ତି ।'

ସେ ଏହିପରି ଚିନ୍ତା କରୁଥିବା ବେଳେ ଦିନେ ରାଜା ଶିକାର କରିବାପାଇଁ ରାଜ ପ୍ରାସାଦରୁ ବାହାରିଲେ । ଅଶ୍ୱ ଓ ପଦାତିକ ସେନାବାହିନୀ ଧରି ସେ ଅରଣ୍ୟ ଅଭିମୁଖରେ ଅଗ୍ରସର ହେଉଥାଆନ୍ତି । ସତ୍ତ୍ୱଶୀଳ ମଧ୍ୟ ହାତରେ ବାଡ଼ିଟିଏ ଧରି ରାଜାଙ୍କ ଆଗରେ ଦୌଡୁଥାନ୍ତି । ଶିକାର ଅବସରରେ ରାଜା ବନ ମଧ୍ୟରେ ଏକ ବିରାଟକାୟ ମଦମତ୍ତ ବରାହର ଅନୁଧାବନ କଲେ । ବରାହ ତାଙ୍କୁ ବହୁଦୂରକୁ ନେଇଯାଇ ଅନ୍ୟ ଏକ ବନରେ ପହଞ୍ଚାଇଲା । ସେହି ବନ ମଧ୍ୟରେ ବରାହଟି ଲତାଗୁଳ୍ମ ମଧ୍ୟରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା, ରାଜା ଜାଣିପାରିଲେ ନାହିଁ । ମହାରଣ୍ୟ ମଧ୍ୟରେ ରାଜା ଦିଗଭ୍ରଷ୍ଟ ହୋଇପଡ଼ିଲେ । ପବନ ବେଗରେ ଗତିକରୁଥିବା ଅଶ୍ୱପୃଷ୍ଠରେ ବସିଥିବା ରାଜାଙ୍କୁ କ୍ଷୁଧା ଓ ତୃଷାକ୍ଳିଷ୍ଟ ସତ୍ତ୍ୱଶୀଳ ପାଦ ଗତିରେ ଅନୁସରଣ କରୁଥାନ୍ତି । ରାଜା ସେହି ମହାରଣ୍ୟ ମଧ୍ୟରେ ଏକାକୀ ତାଙ୍କୁ ଅନୁସରଣ କରୁଥିବା ସେହି କାର୍ପଟିକ ସତ୍ତ୍ୱଶୀଳଙ୍କୁ ସେମାନେ ଆସିଥିବା ମାର୍ଗ ମନେ ଅଛି କି ବୋଲି ଶ୍ରଦ୍ଧାପୂର୍ବକ ଜିଜ୍ଞାସା କଲେ । ସତ୍ତ୍ୱଶୀଳ ଯୋଡ଼ ହସ୍ତରେ ଉତ୍ତର ଦେଲେ, 'ମହାରାଜ, ଆମେ ଆସିଥିବା ମାର୍ଗ ମୋର ମନେଅଛି । କିନ୍ତୁ ବର୍ତ୍ତମାନ ସୂର୍ଯ୍ୟ ମଧ୍ୟାକାଶକୁ ଉଠିଗଲେଣି । ତାଙ୍କର ପ୍ରଖର କିରଣଜାଳରେ ଚତୁର୍ଦ୍ଦିଗ ଉତ୍ତପ୍ତ ହୋଇଉଠୁଛି । ଆପଣ ଏଠାରେ କିଛି ସମୟ ବିଶ୍ରାମ କରନ୍ତୁ । ସୂର୍ଯ୍ୟ ପଶ୍ଚିମକୁ ଢଳିଲେ ଆମେ ଫେରିବାର ଉପକ୍ରମ କରିବା ।'

ରାଜା ଅନୁଗ୍ରହ ପ୍ରଦର୍ଶନ ପୂର୍ବକ ସତ୍ତ୍ୱଶୀଳଙ୍କୁ ଜଳର ଅନୁସନ୍ଧାନ କରିବାପାଇଁ ଅନୁରୋଧ କଲେ । ସେ ମଧ୍ୟ ତତ୍‌କ୍ଷଣାତ୍ ଏକ ଉଚ୍ଚ ବୃକ୍ଷ ଶାଖା ଉପରକୁ ଉଠିଯାଇ ଦୂରରେ ଏକ ନଦୀର ସନ୍ଧାନ ନେଲେ ଏବଂ ବୃକ୍ଷରୁ ଅବତରଣ କରି ରାଜାଙ୍କୁ ସେହି ନଦୀ ନିକଟକୁ ନେଇଚାଲିଲେ । ନଦୀ ତୀରରେ ରାଜା ଚଣ୍ଡସେନ ଅଶ୍ୱରୁ ଅବତରଣ କରନ୍ତେ ସତ୍ତ୍ୱଶୀଳ ଅଶ୍ୱଟିକୁ ଆଭରଣମୁକ୍ତ କରିଦେଇ ଜଳପାନ କରାଇଲେ । ଘାସ ପତ୍ର ଦେବା ଫଳରେ ଘୋଡ଼ାଟି ଆଶ୍ୱସ୍ତ ହେଲା । ରାଜା ମଧ୍ୟ ନଦୀର ଶୀତଳ ଜଳରେ ସ୍ନାନକରି ଉପରକୁ ଉଠିଆସିଲେ । ସତ୍ତ୍ୱଶୀଳ ନିଜର ଛିନ୍ନ ପରିଧାନ ମଧ୍ୟରୁ କିଛି ମଧୁର ଅଁଳାକୋଳି ରାଜାଙ୍କ ସମ୍ମୁଖରେ ପରିବେଷଣ କଲେ ।

ରାଜା ସତ୍ତ୍ୱଶୀଳ ଏସବୁ କେଉଁଠୁ ଆଣିଲେ ବୋଲି ପଚାରିବାରେ ସେ ସେହି ଅଁଳା କୋଳିଗୁଡ଼ିକୁ ଅଞ୍ଜଳିରେ ଧରି ରାଜାଙ୍କ ପାଦତଳେ ଆଣ୍ଠୁ ମାଡ଼ି ବସିଗଲେ । କହିଲେ, 'ମୁଁ ଗତ ଦଶବର୍ଷ ଧରି ଏହି ଅଁଳା କୋଳି ହିଁ ଖାଇ ବୌଦ୍ଧଭିକ୍ଷୁର ବ୍ରତ ଆଚରଣ ପୂର୍ବକ ଆପଣଙ୍କ ସେବା କରିଆସୁଛି ।' ତାଙ୍କ କଥା ଶୁଣି ରାଜା ଚମତ୍କୃତ ହେଲେ ।

ତାଙ୍କ ହୃଦୟ ଦୟାରେ ତରଳିଗଲା । ସେ ଲଜ୍ଜିତ ହୋଇ ଚିନ୍ତା କଲେ ଯେ ସେବକମାନଙ୍କର ସୁଖଦୁଃଖ ବୁଝୁନଥିବା ରାଜାମାନେ ଧିକ୍କାର ଯୋଗ୍ୟ । ସେହିପରି ଏ ସମ୍ପର୍କରେ ଯେଉଁମାନେ ରାଜାଙ୍କୁ ଅବହିତ ନ କରାନ୍ତି ସେମାନେ ମଧ୍ୟ ଧିକ୍କାର ଯୋଗ୍ୟ । ଏହିପରି ଚିନ୍ତା କରି ସେ ସତ୍ତ୍ୱଶୀଳଙ୍କୁ କହିଲେ, 'ତୁମେ କେବଳ ନାମରେ ନୁହଁ, ଧୈର୍ଯ୍ୟ ଓ ବ୍ୟକ୍ତିତ୍ୱରେ ମଧ୍ୟ ସତ୍ତ୍ୱଶୀଳ ।' ନିଜଠାରୁ ଅଁଳା କୋଳି ଗ୍ରହଣ କରୁନଥିବା ଦେଖି ସତ୍ତ୍ୱଶୀଳ ରାଜାଙ୍କୁ ବହୁ ପ୍ରକାର ଅନୁରୋଧ କରି ସେଥିରୁ କିଛି ଗ୍ରହଣ କରିବାପାଇଁ ରାଜି କରାଇଲେ । ରାଜା ଦୁଇଚାରୋଟି ମଧୁର କୋଳି ଖାଇ ଜଳପାନ କରିବା ପରେ କାର୍ପଟିକ ନିଜେ କିଛି ଅଁଳା କୋଳି ଦ୍ୱାରା ନିଜର କ୍ଷୁଧା ନିବାରଣ କଲେ ।

ନଦୀ ତଟରେ ବିଶ୍ରାମ କରି ଉଭୟେ ସେଠାରେ କିଛି ସମୟ କଟାଇ ଦେବାପରେ ସତ୍ତ୍ୱଶୀଳ ଘୋଡ଼ା ଉପରେ ଜିନ୍‌ବାନ୍ଧି ରାଜାଙ୍କୁ ତା' ଉପରେ ଆରୋହଣ କରିବାପାଇଁ ପ୍ରାର୍ଥନା କଲେ । ସେ ନିଜେ ମାର୍ଗଦର୍ଶନ ପୂର୍ବକ ପଦବ୍ରଜରେ ଯିବାପାଇଁ ପ୍ରସ୍ତୁତ ହେଉଥିବା ଦେଖି ରାଜା ତାଙ୍କୁ ଅଶ୍ୱପୃଷ୍ଠରେ ବସିବାପାଇଁ ନିର୍ଦ୍ଦେଶ ଦେଲେ । ତଥାପି ସତ୍ତ୍ୱଶୀଳ ଘୋଡ଼ା ପଛରେ ନ ବସି ଆଗେ ଆଗେ ଚାଲିଥାନ୍ତି । କିଛି ଦୂରରେ ସେମାନେ ସେନାବାହିନୀ ସହିତ ଯୋଗ ଦେଲେ । ରାଜାଙ୍କର ମୃଗୟା ଶେଷ ହେଲା । ସେ ନିଜ ରାଜଧାନୀରେ ଆସି ପ୍ରବେଶ କଲେ ।

ପରଦିନ ରାଜା ଚଣ୍ଡସେନ ସତ୍ତ୍ୱଶୀଳଙ୍କ ପ୍ରଭୁଭକ୍ତି ଏବଂ ଏକନିଷ୍ଠ ସେବା ସମ୍ପର୍କରେ ରାଜସଭାରେ ଉପସ୍ଥିତ ଥିବା ସମସ୍ତଙ୍କୁ ଜଣାଇ ଚମତ୍କୃତ କଲେ । ସେ ସତ୍ତ୍ୱଶୀଳଙ୍କୁ ମଧ୍ୟ ପ୍ରଚୁର ଧନରାଶି ଓ କିଛି ଗ୍ରାମ ଦାନ କରି ନିଜେ ଋଣମୁକ୍ତ ହେବାପାଇଁ ଚେଷ୍ଟାକଲେ । ସେହିଦିନଠାରୁ ସତ୍ତ୍ୱଶୀଳ କାର୍ପଟିକ ରୂପ ପରିତ୍ୟାଗ କରି ରାଜାଙ୍କ ନିକଟରେ ଜଣେ ବିଶ୍ୱସ୍ତ କର୍ମଚାରୀ ଭାବେ ରହୁଥାନ୍ତି ।

ଏକଦା ରାଜା ଚଣ୍ଡସେନ ସିଂହଳ ରାଜକୁମାରୀଙ୍କ ପାଣିପ୍ରାର୍ଥନା କରିବାପାଇଁ ସତ୍ତ୍ୱଶୀଳଙ୍କୁ ସିଂହଳ ଦ୍ୱୀପ ପଠାଇଲେ । ସମୁଦ୍ର ମାର୍ଗରେ ଯାତ୍ରା କରିବାପାଇଁ ସେ ଅଭୀଷ୍ଟ ଦେବତାଙ୍କ ଉପାସନା କରି ରାଜାଙ୍କ ଅନୁଜ୍ଞା କ୍ରମେ ବ୍ରାହ୍ମଣମାନଙ୍କ ସହିତ ନୌକା ଆରୋହଣ କଲେ । ସମୁଦ୍ର ମଧ୍ୟରେ ଅର୍ଦ୍ଧପଥ ଅତିକ୍ରମ କଲାପରେ ତାଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ଗୋଟିଏ ଧ୍ୱଜ ଉପରକୁ ଉଠିବା ଦେଖାଗଲା । ପତାକାଟି ଆକାଶମାର୍ଗକୁ ସ୍ପର୍ଶ କରୁଥିଲା । ଧ୍ୱଜର ଦଣ୍ଡ ସୁବର୍ଣ୍ଣନିର୍ମିତ ଥିଲା ଏବଂ ତା' ଉପରେ ବିଭିନ୍ନ ରଙ୍ଗର ପତାକା ଉଡୁଥିଲା । ଏ ସମୟରେ ହଠାତ୍ ଆକାଶ ମେଘାଚ୍ଛନ୍ନ ହୋଇ ପ୍ରବଳ ବୃଷ୍ଟି ଆରମ୍ଭ ହେଲା ।

ବାୟୁର ବେଗ ମଧ୍ୟ ବଢ଼ିବାକୁ ଲାଗିଲା । ବର୍ଷା ଓ ପବନ ନୌକାଟିକୁ ନେଇ ଧ୍ୱଜରେ ବାନ୍ଧିଦେଲା । ମନେହେଲା କୌଣସି 'ମତ୍ତହସ୍ତୀକୁ ଯେପରି ବଳାତ୍କାରରେ ନେଇ ଶୃଙ୍ଖଳାବଦ୍ଧ କରାଯାଉଛି । ଦେଖୁଦେଖୁ ନୌକାଟି ଧ୍ୱଜ ସ୍ତମ୍ଭ ସହିତ ବିକ୍ଷୁବ୍ଧ ସାଗର ମଧ୍ୟରେ ବୁଡ଼ିବାକୁ ଲାଗିଲା । ନୌକାରେ ବସିଥିବା ବ୍ରାହ୍ମଣମାନେ ଚଣ୍ଡସେନଙ୍କୁ ସ୍ମରଣ କରି ବିକଳ ଚିତ୍କାର କରିବାକୁ ଲାଗିଲେ । ସେମାନଙ୍କର କରୁଣ ଚିତ୍କାର ସତ୍ତ୍ୱଶୀଳଙ୍କ ସହ୍ୟ ହେଲାନାହିଁ । ସେ ଉତ୍ତରୀୟଟିକୁ ଅଣ୍ଟାରେ ଭିଡ଼ି ତରବାରି ହସ୍ତରେ ସେହି ବିକ୍ଷୁବ୍ଧ ଜଳରାଶି ମଧ୍ୟକୁ ଲମ୍ଫ ଦେଲେ । ପ୍ରକୃତ କାରଣ ଜାଣିନଥିଲେ ସୁଦ୍ଧା ଏହି ସାମୁଦ୍ରିକ ଉପଦ୍ରବକୁ ଶାନ୍ତ କରିବାପାଇଁ ସେ ନିଜ ଜୀବନକୁ ବାଜି ଲଗାଇଦେଲେ ।

ସତ୍ତ୍ୱଶୀଳ ସମୁଦ୍ରଗର୍ଭକୁ ଲମ୍ଫ ଦେବାପରେ ନୌକାଟି ପବନ ଓ ଲହରୀର ବେଗରେ ଖଣ୍ଡବିଖଣ୍ଡ ହୋଇଗଲା । ବ୍ରାହ୍ମଣମାନେ ଜଳଚରମାନଙ୍କ ମୁହଁରେ ଯାଇ ପଡ଼ିଲେ । ସତ୍ତ୍ୱଶୀଳ ସମୁଦ୍ରର ଅତଳ ଗର୍ଭକୁ ଯିବାକୁ ଲାଗିଲେ ।

ସମୁଦ୍ରର ନିମ୍ନଭାଗରେ ପହଞ୍ଚି ସତ୍ତ୍ୱଶୀଳ ଯାହା ଦେଖିଲେ ସେଥିରେ ତାଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସମୁଦ୍ର ଗର୍ଭରେ ଏକ ସୁରମ୍ୟ ନଗରୀ ତାଙ୍କର ଦୃଷ୍ଟିଗୋଚର ହେଲା । ନଗରୀ ମଧ୍ୟରେ ମଣିମାଣିକ୍ୟ ନିର୍ମିତ ସ୍ତମ୍ଭ ଉପରେ ଏକ ସ୍ୱର୍ଣ୍ଣଭୁବନ ଦେଖାଯାଉଥିଲା । ସ୍ୱଚ୍ଛ ଜଳପୂର୍ଣ୍ଣ ସରୋବର ମୂଲ୍ୟବାନ ମଣିମୁକ୍ତାର ସୋପାନ ଶ୍ରେଣୀରେ ମନୋହରଣ କରୁଥିଲା । ନଗରୀର ପ୍ରମୋଦ ଉଦ୍ୟାନ ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା । ସେଠାରେ ମେରୁ ପର୍ବତ ତୁଲ୍ୟ ଏକ ନବଶୃଙ୍ଗୀ ଦେବ ମନ୍ଦିର ତାଙ୍କର ଦୃଷ୍ଟି ଆକର୍ଷଣ କଲା । ଏହାର ପ୍ରାଚୀର ଓ ଧ୍ୱଜା ସବୁ ବହୁମୂଲ୍ୟ ରତ୍ନରେ ନିର୍ମିତ ହୋଇଥିଲା । ସେ ଦେବୀଙ୍କୁ ସ୍ତୁତିପୂର୍ବକ ଆରାଧନା କରି ଏହାକୁ ଇନ୍ଦ୍ରଜାଲ ବୋଲି ମନେକଲେ । ଦେବୀଙ୍କ ସମ୍ମୁଖରେ ବସିଥିବା ବେଳେ ଏକ ପ୍ରଭାମଣ୍ଡଳ ମଧ୍ୟରୁ ହଠାତ୍ ଏକ ଅଲୌକିକ ରୂପବତୀ କନ୍ୟା ଦ୍ୱାର ଉଦ୍‌ଘାଟନ କରି ମନ୍ଦିର ମଧ୍ୟରେ ପ୍ରବେଶ କଲା । ତା'ର ନୟନଯୁଗଳ ନୀଳ ଇନ୍ଦିବର ପରି ସୁନ୍ଦର ଥିଲା । ମୁଖମଣ୍ଡଳ ଆନ୍ଦୋଳିତ କମଳ ତୁଲ୍ୟ ଶୋଭା ପାଉଥିଲା । ତାର ହାସ୍ୟ ପୁଷ୍ପ ପରି ଧବଳ ଥିଲା । ତା'ର ଶରୀର ମୃଣାଳ ତୁଲ୍ୟ କୋମଳ ଓ ମସୃଣ ଥିଲା । ସତ୍ତ୍ୱଶୀଳଙ୍କ ମନେହେଲା ସତେ ଯେପରି ପଦ୍ମପୁଷ୍ପଟିଏ ଧୀରେଧୀରେ ଗତିକରି ଆସୁଛି । ଏକସହସ୍ର ଦାସୀ ପରିଚାରିକାଙ୍କଦ୍ୱାରା ପରିବେଷ୍ଟିତ କନ୍ୟାଟି ଧୀରେଧୀରେ ମନ୍ଦିରର ଗର୍ଭଗୃହ ମଧ୍ୟରେ ପ୍ରବେଶ କଲା । ସତ୍ତ୍ୱଶୀଳଙ୍କ ହୃଦୟ ମଧ୍ୟ ତା' ସହିତ ଚାଲିଗଲା ପରି ମନେହେଲା । ଦେବୀ କାତ୍ୟାୟନୀଙ୍କ ପୂଜା ଶେଷକରି

ସେହି କନ୍ୟା ଗର୍ଭଗୃହରୁ ନିଷ୍କ୍ରାନ୍ତ ହେଲା, କିନ୍ତୁ ସତ୍ତ୍ୱଶୀଳଙ୍କ ହୃଦୟରୁ ବାହାରିବା ତା' ପକ୍ଷରେ ଆଉ ସମ୍ଭବ ହେଲାନାହିଁ । ସେ ପୁଣି ସେହି ପ୍ରଭାମଣ୍ଡଳ ମଧ୍ୟରେ ପ୍ରବେଶ କରିଗଲା । ସତ୍ତ୍ୱଶୀଳ ଉଦ୍‌ବିଗ୍ନ ଭାବରେ ତା'ର ଅନୁସରଣ କଲେ ।

ପ୍ରଭାମଣ୍ଡଳ ମଧ୍ୟରେ ପ୍ରବେଶ କରି ସତ୍ତ୍ୱଶୀଳ ଦେବଯୋଗ୍ୟ ଅନ୍ୟ ଏକ ନଗରରେ ଆସି ପହଞ୍ଚିଲେ । ନଗରଟି ସମସ୍ତ ବିଳାସ ଓ ଉପଭୋଗର ମିଳନ ସ୍ଥଳୀ ବୋଲି ମନେହେଉଥିଲା । ସେଠାରେ ସେ କନ୍ୟାଟିକୁ ଏକ ମଣିଖଚିତ ପଲଙ୍କ ଉପରେ ବସିଥିବା ଦେଖିବାକୁ ପାଇଲେ । ସେ ମଧ୍ୟ ଯାଇ ତା' ନିକଟରେ ବସିଗଲେ ଏବଂ ଚିତ୍ରାର୍ପିତ ପରି ତାକୁ ନିର୍ନିମେଷ ନୟନରେ ଚାହିଁବାକୁ ଲାଗିଲେ । ତାଙ୍କ ଶରୀରରେ ବେପଥୁ ଦେଖାଦେଉଥିଲା ଏବଂ ସମଗ୍ର ଶରୀର ରୋମାଞ୍ଚିତ ହୋଇଉଠୁଥିଲା । ସେ କନ୍ୟାଟିକୁ ଆଲିଙ୍ଗନ କରିବାପାଇଁ ଉତ୍କଣ୍ଠିତ ଥିଲେ ।

ସତ୍ତ୍ୱଶୀଳଙ୍କୁ ଏପରି କାମାତୁର ଦେଖି କନ୍ୟାଟି ତାର ସଖୀମାନଙ୍କ ପ୍ରତି ଦୃଷ୍ଟିପାତ କଲା । ସେମାନେ ତା'ର ଇଙ୍ଗିତ ବୁଝିପାରି କହିଲେ, 'ଆପଣ ଅତିଥି ଭାବରେ ଏଠାରେ ପଦାର୍ପଣ କରିଛନ୍ତି । ଏଣୁ ଆମ ସ୍ୱାମିନୀଙ୍କ ଆତିଥ୍ୟ ସ୍ୱୀକାର କରନ୍ତୁ । ଚାଲନ୍ତୁ, ସ୍ନାନକରି ଭୋଜନ କରିବେ ।' ସଖୀମାନଙ୍କ କଥାରେ ସତ୍ତ୍ୱଶୀଳ କିଛି ଆଶ୍ୱସ୍ତ ହେଲେ । ତାଙ୍କ ମନରେ ଆଶା ଜାଗ୍ରତ ହେଲା । ସେ କୌଣସିମତେ ସେଠାରୁ ଉଠି ଦାସୀମାନଙ୍କଦ୍ୱାରା ପ୍ରଦର୍ଶିତ ଏକ ସରୋବର ନିକଟରେ ଆସି ପହଞ୍ଚିଲେ । ସରୋବର ମଧ୍ୟରେ ବୁଡ଼ି ଉଠିବା ବେଳକୁ ସେ ଦେଖିଲେ ଯେ ସେ ଚଣ୍ଡସେନଙ୍କ ତାମ୍ରଲିପ୍ତିସ୍ଥିତ ପ୍ରମୋଦ ଉଦ୍ୟାନର ଏକ ସରୋବର ମଧ୍ୟରୁ ବିବ୍ରତ ଭାବେ ଉପରକୁ ଉଠିଆସୁଛନ୍ତି । ସେ ଚିନ୍ତାରେ ପଡ଼ିଗଲେ । ଆଶ୍ଚର୍ଯ୍ୟ ହୋଇ ଭାବିଲେ, 'କାହିଁ ସେହି ଅଲୌକିକ ନଗରୀ ଏବଂ କାହିଁ ଏହି ଚଣ୍ଡସେନଙ୍କ ରାଜୋଦ୍ୟାନ ! କାହିଁ ସେହି କନ୍ୟାର ଅମୃତ ତୁଲ୍ୟ ରୂପରାଶି ଏବଂ କାହିଁ ଏହି ବିରହ ରୂପକ ବିଷମ ବିଷଜ୍ୱାଳା ! ଏହା ମୋର ସ୍ୱପ୍ନ ମଧ୍ୟ ନୁହେଁ କାରଣ ନିଜେ ମୁଁ ସ୍ପଷ୍ଟ ରୂପରେ ଏହା ଅନୁଭବ କରିଥିଲି । ପାତାଳବାସିନୀ ଏହି କନ୍ୟା ମୋତେ ନିଶ୍ଚିତଭାବେ ପ୍ରବଞ୍ଚିତ କରିଛନ୍ତି ।' ସତ୍ତ୍ୱଶୀଳ କନ୍ୟାଟିର ବିଚ୍ଛେଦରେ ଅତ୍ୟଧିକ କାମାର୍ତ୍ତ ହୋଇ ପାଗଳଙ୍କ ପରି ଉଦ୍ୟାନ ମଧ୍ୟରେ ଇତସ୍ତତଃ ଦୌଡ଼ିବାକୁ ଲାଗିଲେ । ପବନର ହିଲ୍ଲୋଳରେ ତାଙ୍କ ଶରୀର ଉପରେ ଝରିପଡୁଥିବା ପୁଷ୍ପଗୁଡ଼ିକ ପ୍ରଳୟକାଳୀନ ଅଗ୍ନି ବୋଲି ତାଙ୍କର ମନେହେଉଥିଲା । ତାଙ୍କର ଏପରି ପାଗଳାମି ଦେଖି ଉଦ୍ୟାନ ରକ୍ଷକମାନେ ରାଜାଙ୍କ ନିକଟରେ ଯାଇ ନିବେଦନ କଲେ ।

ରାଜା ସ୍ୱୟଂ ଉଦ୍ୟାନ ମଧ୍ୟକୁ ଆସି ସତ୍ତ୍ୱଶୀଳଙ୍କ ଅବସ୍ଥା ନିରୀକ୍ଷଣ କଲେ । ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, 'ମିତ୍ର, ତୁମେ ଯାଇଥିଲ କୁଆଡ଼େ ଏବଂ ଆସି ପହଞ୍ଚିଛ କେଉଁଠି ? କେଉଁ ଲକ୍ଷ୍ୟରେ ବାଣ ପ୍ରୟୋଗ କରାଯାଇଥିଲା ଏବଂ ତାହା କେଉଁଠି ଯାଇ ବିଦ୍ଧ ହେଲା ? ତୁମର ଏ କ'ଣ ହୋଇଛି ?' ସତ୍ତ୍ୱଶୀଳ ରାଜାଙ୍କ ନିକଟରେ ସମଗ୍ର ବୃତ୍ତାନ୍ତ ବର୍ଣ୍ଣନା କଲେ । ରାଜା ଭାବିଲେ ଯେ ସେ ବୀର ଓ ଶୂର ହେଲେ ସୁଦ୍ଧା ମୋର କାର୍ଯ୍ୟ ନିର୍ବାହ କରିବାପାଇଁ ଯାଇ କନ୍ଦର୍ପର ଏପରି ଶରବ୍ୟ ହୋଇଛନ୍ତି । ବର୍ତ୍ତମାନ ମୁଁ ତାଙ୍କଠାରୁ ଋଣମୁକ୍ତ ହେବା ଆବଶ୍ୟକ । ମନେମନେ ଏହିପରି ଚିନ୍ତାକରି ରାଜା ସତ୍ତ୍ୱଶୀଳଙ୍କୁ ଧୈର୍ଯ୍ୟ ଦେବାପାଇଁ କହିଲେ, 'ମିତ୍ର, ତୁମେ ଆଉ ଅଯଥା ଦୁଃଖ କରନାହିଁ । ମୁଁ ତୁମକୁ ତୁମଦ୍ୱାରା କଥିତ ମାର୍ଗରେ ନେଇ ତୁମର ମନୋହରଣ କରିଥିବା ସେହି ଦିବ୍ୟ କନ୍ୟା ନିକଟରେ ପହଞ୍ଚାଇ ଦେବି ।' ଏହାକହି ଚଣ୍ଡସେନ ତାଙ୍କୁ ନିଜ ସଙ୍ଗରେ ନେଇ ପାନଭୋଜନ କରାଇଲେ ।

ପରଦିନ ମନ୍ତ୍ରୀଙ୍କ ଉପରେ ରାଜ୍ୟଭାର ନ୍ୟସ୍ତକରି ରାଜା ସତ୍ତ୍ୱଶୀଳଙ୍କ ସହିତ ନୌଯାତ୍ରା ଆରମ୍ଭ କଲେ । ସେମାନେ ସମୁଦ୍ର ମଧ୍ୟରେ ଗତି କଲାବେଳେ ପୂର୍ବପରି ଗୋଟିଏ ପତାକା ସ୍ତମ୍ଭ ସମୁଦ୍ରଗର୍ଭରୁ ଉଠୁଥିବା ଦୃଶ୍ୟମାନ ହେଲା । ତାକୁ ଦେଖି ସତ୍ତ୍ୱଶୀଳ ଆନନ୍ଦରେ ଚିତ୍କାର କରି କହିଲେ, 'ମହାରାଜ, ଏହାହିଁ ସେହି ଦିବ୍ୟ ଧ୍ୱଜା । ଏହାର ନିକଟରେ ମୁଁ ସମୁଦ୍ର ମଧ୍ୟକୁ ଲମ୍ଫ ଦେବି । ଆପଣ ମଧ୍ୟ ମୋ ସହିତ ସେତେବେଳେ ଜଳରାଶି ମଧ୍ୟକୁ ଲମ୍ଫ ଦେବେ ।' ଏହାକହି ଧ୍ୱଜାର ନିକଟବର୍ତ୍ତୀ ହେବାମାତ୍ରେ ଉଭୟେ ସମୁଦ୍ର ଗର୍ଭରେ ନିମଜ୍ଜିତ ହୋଇ ସେହି ଦିବ୍ୟନଗରୀ ନିକଟରେ ଆସି ପହଞ୍ଚିଲେ । ରାଜା ବିସ୍ମିତ ଭାବରେ ନଗରର ଶୋଭା ଦର୍ଶନ କରି ଦେବୀ କାତ୍ୟାୟିନୀଙ୍କ ମନ୍ଦିରରେ ଯାଇ ପ୍ରବେଶ କଲେ । ସତ୍ତ୍ୱଶୀଳଙ୍କ ସହିତ ସେଠାରେ ଧ୍ୟାନସ୍ଥ ଥିବାବେଳେ ଦେବୀଙ୍କ ପ୍ରଭାମଣ୍ଡଳ ମଧ୍ୟରୁ ମୂର୍ତ୍ତିମତୀ ରମଣୀୟତା ପରି ସେହି କନ୍ୟା ଆବିର୍ଭୂତ ହେଲା । ସତ୍ତ୍ୱଶୀଳଙ୍କଦ୍ୱାରା କନ୍ୟାର ପରିଚୟ ଲାଭକରି ରାଜା ତାଙ୍କ ମିତ୍ର କନ୍ୟାଟି ପ୍ରତି ଆକୃଷ୍ଟ ହୋଇ ଆଦୌ ଅନୁଚିତ କାର୍ଯ୍ୟ କରିନାହାଁନ୍ତି ବୋଲି ଭାବିଲେ ।

କନ୍ୟାଟି ରାଜା ଚଣ୍ଡସେନଙ୍କ ଶରୀରରେ ଶୁଭଲକ୍ଷଣମାନ ଦେଖି ମନେମନେ ତାଙ୍କ ପରିଚୟ ଜାଣିବାପାଇଁ ଆଗ୍ରହୀ ହୋଇଉଠିଲେ । ନିଜର ମନୋଭାବକୁ ଗୁପ୍ତ କରି ଦେବୀ କାତ୍ୟାୟିନୀଙ୍କ ଉପାସନାପାଇଁ ମନ୍ଦିରର ଗର୍ଭ ଗୃହରେ ପ୍ରବେଶ କରିବା ପରେ ରାଜା ତାଙ୍କୁ ଉପେକ୍ଷା କରିବା ପରି ସତ୍ତ୍ୱଶୀଳଙ୍କ ସହିତ ଉଦ୍ୟାନ ମଧ୍ୟକୁ ଚାଲିଗଲେ ।

କନ୍ୟାଟି କିଛି ସମୟ ଦେବୀ କାତ୍ୟାୟିନୀଙ୍କ ପୂଜା କରି ଶ୍ରେଷ୍ଠପତି ପ୍ରାପ୍ତି ପାଇଁ ବର ଭିକ୍ଷା କଲା । ପୂଜା ଶେଷରେ ମନ୍ଦିର ବାହାରକୁ ଆସି ନିଜର ଜଣେ ଅନ୍ତରଙ୍ଗା ସଖୀକୁ କହିଲା, 'ସଖି, ମୁଁ ଏଠାରେ ଯେଉଁ ମହାପୁରୁଷଙ୍କୁ ଦେଖିଥିଲି, ସେ କୁଆଡ଼େ ଗଲେ, ଟିକିଏ ଯାଇ ଅନୁସନ୍ଧାନ କର । ସେ ନିଶ୍ଚିତ ଭାବେ ଜଣେ ପୁରୁଷଶ୍ରେଷ୍ଠ ଓ ଆମର ପୂଜ୍ୟ । ତାଙ୍କୁ ମୋ ପକ୍ଷରୁ ଅନୁରୋଧ କର ଯେ ସେ ଏଠାକୁ ଆସି ଆମର ଆତିଥ୍ୟ ଗ୍ରହଣ କରନ୍ତୁ ।' ସଖୀ ଉଦ୍ୟାନ ମଧ୍ୟରେ ଉଭୟଙ୍କୁ ବସିଥିବା ଦେଖି ଅସୁର କନ୍ୟାଙ୍କ ଅନୁରୋଧ ନିବେଦନ କଲା । ବୀରଶ୍ରେଷ୍ଠ ଚଣ୍ଡସେନ ଉପେକ୍ଷାର ସହିତ ତାଙ୍କୁ ଜଣାଇଲେ ଯେ ଏତିକି ଆତିଥ୍ୟ ତାଙ୍କପାଇଁ ଯଥେଷ୍ଟ । ଆଉ ଅଧିକର ଆବଶ୍ୟକତା କ'ଣ ? ରାଜାଙ୍କ କଥାରେ ସଖୀ ଫେରିଯାଇ ଦୈତ୍ୟକନ୍ୟାଙ୍କୁ ସମସ୍ତ କଥା ଶୁଣାଇଲା । ଦୈତ୍ୟକନ୍ୟା ସବୁ ଶୁଣି ରାଜାଙ୍କୁ ପ୍ରୟୋଜନଠାରୁ ଅଧିକ ଆଦରଣୀୟ ବୋଲି ମନେକଲେ । ରାଜା ଅତିମାନବୀୟ ଆତିଥ୍ୟ ପ୍ରତି ବୀତସ୍ପୃହ ଭାବ ଦେଖାଇଥିଲେ । ଦୈତ୍ୟ କନ୍ୟାଙ୍କୁ ଜଣାଗଲା ରାଜାଙ୍କ ଏହି ଧୈର୍ଯ୍ୟ ରୂପକ ପାଶଦ୍ୱାରା ସେ ତାଙ୍କ ଆଡ଼କୁ ଟାଣି ହୋଇଯାଉଛନ୍ତି । ପାର୍ବତୀଙ୍କୁ ମାଗିଥିବା ବର ସଫଳ ହେବାକୁ ଯାଉଛି ବୋଲି ତାଙ୍କର ମନେହେଲା । ରାଜାଙ୍କୁ ତାଙ୍କ ଉଦ୍ଦେଶ୍ୟ ସିଦ୍ଧିପାଇଁ ଆସିଥିବା ମନେକରି ଅସୁର କନ୍ୟା ନିଜେ ଯାଇ ଉଦ୍ୟାନରେ ପହଞ୍ଚିଲେ । ପକ୍ଷୀମାନଙ୍କର କଳକୂଜନ, ବାୟୁର ହିଲ୍ଲୋଳରେ ସଞ୍ଚାଳିତ ଲତାପୁଞ୍ଜ ଏବଂ ବୃକ୍ଷରୁ ଝରି ପଡୁଥିବା ପୁଷ୍ପାଞ୍ଜଳିଦ୍ୱାରା ଉଦ୍ୟାନ ତାଙ୍କୁ ଅଭିନନ୍ଦନ ଜଣାଇଲା । ସେ ରାଜାଙ୍କ ନିକଟରେ ବିନୀତ ଭାବେ ଉପସ୍ଥିତ ହୋଇ ଆତିଥ୍ୟ ସ୍ୱୀକାର କରିବା ନିମିତ୍ତ ଅନୁରୋଧ ଜଣାଇଲେ ।

ରାଜା କନ୍ୟାଟିର ରୂପ ଓ ଗୁଣ ଲକ୍ଷ୍ୟକରି ସତ୍ତ୍ୱଶୀଳଙ୍କ ପ୍ରତି ଅଙ୍ଗୁଳି ପ୍ରଦର୍ଶନ ପୂର୍ବକ କହିଲେ, 'ମୋର ଏହି ମିତ୍ର କହିବା ଯୋଗୁଁ ଦେବୀ କାତ୍ୟାୟିନୀଙ୍କ ଦର୍ଶନପାଇଁ ଧ୍ୱଜ-ମାର୍ଗରେ ଏଠାକୁ ଆସିଥିଲି । ମୁଁ ଦେବୀ ପାର୍ବତୀଙ୍କ ଏହି ପରମ ଅଦ୍ଭୁତ ମନ୍ଦିର ଏବଂ ତା'ପରେ ତୁମକୁ ଦେଖିଛି । ଏହାପରେ ମଧ୍ୟ ଆମର ଆଉକିଛି ଆତିଥ୍ୟର ଆବଶ୍ୟକତା ଅଛି କି ?' ରାଜାଙ୍କର ଅନାସକ୍ତ ଉତ୍ତରରେ ଦୈତ୍ୟ କନ୍ୟା ପୁଣି ଅନୁରୋଧ ଜଣାଇଲେ, 'ତାହାହେଲେ ଆପଣ ମୋର ତ୍ରିଲୋକ ସୁନ୍ଦର ଅନ୍ୟ ନଗରଟିକୁ ଦେଖିବାପାଇଁ ଚାଲନ୍ତୁ ।' ରାଜା ଏଥିରେ ସ୍ମିତହାସ୍ୟ ପ୍ରକାଶ କରି କହିଲେ ଯେ ସେ ସତ୍ତ୍ୱଶୀଳଙ୍କଠାରୁ ସେହି ନଗରର ବୈଭବ କଥା ଶୁଣିଛନ୍ତି । ସେଠାରେ ଏକ ସ୍ନାନବାପିକା ଅଛି ।

ଦୈତ୍ୟକନ୍ୟା ରାଜାଙ୍କ ହାସ୍ୟ ଦେଖି କହିଲେ, 'ଦେବ, ଆପଣ ଏପରି କହନ୍ତୁ ନାହିଁ । ମୁଁ ଆପଣଙ୍କୁ ପ୍ରବଞ୍ଚିତ କରିବାପାଇଁ ଏପରି କହୁନାହିଁ । ପୁଣି ଆପଣଙ୍କ ପରି ପୂଜ୍ୟ ଲୋକମାନଙ୍କୁ ମୁଁ କିପରି ବା ବିଡ଼ମ୍ବିତ କରିବି ? ଆପଣମାନଙ୍କ ବୀରତ୍ୱରେ ମୁଁ ସେବାପ୍ରାର୍ଥିନୀ ହୋଇପଡ଼ିଛି । ତେଣୁ ମୋର ଏହି ସାମାନ୍ୟ ପ୍ରାର୍ଥନା ଅସ୍ୱୀକାର କରିବା ଆପଣଙ୍କ ପକ୍ଷେ ଉଚିତ ହେଉନାହିଁ ।'

ରାଜା ଦୈତ୍ୟ କୁମାରୀଙ୍କ ଅନୁରୋଧକୁ ଆଉ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ । ସତ୍ତ୍ୱଶୀଳଙ୍କୁ ସଙ୍ଗରେ ନେଇ ସେ ତାଙ୍କ ସହିତ ପ୍ରଭାମଣ୍ଡଳ ନିକଟରେ ଯାଇ ଉପସ୍ଥିତ ହେଲେ । ପୂର୍ବପରି କନ୍ୟାଟି ସେମାନଙ୍କୁ ଉନ୍ମୁକ୍ତ ଦ୍ୱାର ଦେଇ ଭିତରକୁ ନେଇଗଲେ । ତାଙ୍କର ଅଲୌକିକ ନଗରୀ ରାଜାଙ୍କ ବିସ୍ମୟ ଉତ୍ପାଦନ କଲା । ନଗରୀ ମଧ୍ୟରେ ଛଅଟି ଯାକ ଋତୁ ଏକତ୍ର ରହିଥାନ୍ତି । ବୃକ୍ଷ ସବୁ ଫୁଲ ଓ ଫଳରେ ପରିପୂର୍ଣ୍ଣ । ବିଭିନ୍ନ ରତ୍ନ ଓ ସୁବର୍ଣ୍ଣରେ ନିର୍ମିତ ନଗରୀଟି ମେରୁ ଶିଖରୀର ଭ୍ରମ ସୃଷ୍ଟି କରୁଥାଏ । ଦୈତ୍ୟ କନ୍ୟା ରାଜାଙ୍କୁ ନିଜର ଅନ୍ତଃପୁର ମଧ୍ୟକୁ ନେଇଯାଇ ଏକ ବହୁମୂଲ୍ୟ ଆସନ ଉପରେ ବସାଇଲେ । ଉଚିତ ପାଦ୍ୟ ଓ ଅର୍ଘ୍ୟଦ୍ୱାରା ତାଙ୍କର ସତ୍କାର କରାଗଲା । କୁମାରୀ ତାଙ୍କର ପରିଚୟ ଓ ଅଭିଳାଷ ରାଜାଙ୍କ ନିକଟରେ ନିବେଦନ କରି କହିଲେ, 'ଦେବ, ମୁଁ ଅସୁରରାଜ ମହାତ୍ମା କାଳନେମୀଙ୍କ ପୁତ୍ରୀ । ଭଗବାନ ବିଷ୍ଣୁଙ୍କ ଚକ୍ର ପ୍ରହାରରେ ସେ ସ୍ୱର୍ଗଲୋକ ପ୍ରାପ୍ତ ହୋଇଛନ୍ତି । ଏ ଦୁଇଟି ନଗରୀ ମୋର ପୈତୃକ ସମ୍ପତ୍ତି । ଉଭୟ ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ । ଏଠାରେ ଜରା ଓ ମୃତ୍ୟୁର ପ୍ରବେଶ ଅଧିକାର ନାହିଁ । କୌଣସି ମନସ୍କାମନା ଏଠାରେ ଅପୂର୍ଣ୍ଣ ରହେନାହିଁ । ଆପଣ ମୋର ପିତା ସଦୃଶ । ଏଣୁ ମୁଁ ନିଜକୁ ଏହି ଉଭୟ ନଗରୀ ସହିତ ଆପଣଙ୍କ ନିକଟରେ ସମର୍ପଣ କରୁଛି ।' କନ୍ୟାଟିର ଏପରି ଆଚରଣ ରାଜାଙ୍କୁ ମୁଗ୍ଧ କଲା ।

ରାଜା ଚଣ୍ଡସେନ ଅସୁର ରାଜକୁମାରୀଙ୍କ ମନୋଭାବ ଓ ମନୋରଥ ବୁଝିପାରିଲେ । ମମତାଭରା କଣ୍ଠରେ କହିଲେ, 'ପୁତ୍ରି, ତୁମେ ଯଦି ମୋତେ ପିତା ରୂପରେ ଗ୍ରହଣ କରିଛ, ତେବେ ମୋରି ଆଦେଶରେ ଏହି ସତ୍ତ୍ୱଶୀଳଙ୍କୁ ପତିରୂପରେ ବରଣ କର । ସେ ଯେପରି ଦୋଷ ରହିତ, ସେହିପରି ଶୌର୍ଯ୍ୟଶାଳୀ । ପୁଣି ସେ ମୋର ମିତ୍ର ଓ ସମ୍ପର୍କୀୟ ।' ଦୈତ୍ୟକୁମାରୀ ଏହାକୁ ଭଗବତୀଙ୍କର ମୂର୍ତ୍ତିମାନ୍ ଅନୁଗ୍ରହ ମନେକରି ନତମସ୍ତକରେ ରାଜାଙ୍କ ଆଦେଶ ସ୍ୱୀକାର କଲେ ।

ସତ୍ତ୍ୱଶୀଳଙ୍କ ମନସ୍କାମନା ପୂର୍ଣ୍ଣ ହେଲା । ସେ ଅସୁର କନ୍ୟାଙ୍କ ପାଣିଗ୍ରହଣ କରି ଉଭୟ ଅଲୌକିକ ନଗରୀର ଅଧିପତି ହେଲେ । ସେମାନଙ୍କ ଆନନ୍ଦ ଉତ୍ସବରେ ଯୋଗ ଦେବା ପରେ ରାଜା ସତ୍ତ୍ୱଶୀଳଙ୍କୁ କହିଲେ, 'ମିତ୍ର, ତୁମଠୁ ଯେଉଁ ଦୁଇଟି ମଧୁର ଅଁଳା କୋଳି ମୁଁ ଖାଇଥିଲି ସେଥିରୁ ଗୋଟିକର ଋଣ ବର୍ତ୍ତମାନ୍ ଶୁଝିଗଲା । ଆଉ ଗୋଟିକର ଋଣ ମୋ ଉପରେ ରହିଛି ।' ସତ୍ତ୍ୱଶୀଳ ରାଜାଙ୍କ ପ୍ରତି ନିଜର ଅନୁଗୃହୀତ ଭାବ ପ୍ରକାଶ କଲେ ।

ରାଜା ବର୍ତ୍ତମାନ ନିଜ ରାଜ୍ୟକୁ ଫେରିଯିବାପାଇଁ ବ୍ୟଗ୍ରତା ପ୍ରକାଶ କରି ଦୈତ୍ୟ ପୁତ୍ରୀଙ୍କୁ ମାର୍ଗ ପ୍ରଦର୍ଶନ ନିମିତ୍ତ ଅନୁରୋଧ କରନ୍ତେ ସେ ତାଙ୍କୁ ଅପରାଜିତ ନାମକ ଏକ ଖଡ୍‌ଗ ଏବଂ ଖାଇବା ପାଇଁ ଏକ ଦିବ୍ୟ ଫଳ ପ୍ରଦାନ କଲେ । ଖଡ୍‌ଗଟି ଧାରଣ କଲେ ପରାଜୟର ଭୟ ନଥିଲା ଏବଂ ଫଳଟିରେ ଜରା ଓ ମୃତ୍ୟୁକୁ ଦୂରେଇ ଦେବାର ଶକ୍ତି ଥିଲା । ରାଜା ଏହି ଉଭୟ ପଦାର୍ଥକୁ ଧରି ସେହି ଉଦ୍ୟାନ ବାପିକା ମାର୍ଗ ଦେଇ ପଲକପାତ ମାତ୍ରେ ନିଜ ନଗରରେ ଆସି ପହଞ୍ଚିଲେ । ଅପରାଜିତ ଖଡ୍‌ଗ ତାଙ୍କର ସକଳ ମନୋରଥ ସିଦ୍ଧ କଲା ।

ସତ୍ତ୍ୱଶୀଳ ଅସୁର କନ୍ୟାଙ୍କ ସହିତ ଉଭୟ ନଗରୀକୁ ଶାସନ କରି ଆନନ୍ଦରେ କାଳାତିପାତ କଲେ ।''

କଥାଟିକୁ ଶେଷ କରି ବେତାଳ ପ୍ରଶ୍ନ କଲା, 'ରାଜା, ଏବେ କହ ସମୁଦ୍ରରେ ଲମ୍ଫ ଦେଇ ଏହି ଉଭୟଙ୍କ ମଧ୍ୟରୁ କିଏ ଅଧିକ ସାହସ ପ୍ରଦର୍ଶନ କରିଛି ।' ବେତାଳର ପ୍ରଶ୍ନ ଶୁଣି ରାଜା ଅଭିଶାପ ଭୟରେ ମୌନଭଙ୍ଗ କଲେ । ସେ କହିଲେ, 'ମୋ ମତରେ ସତ୍ତ୍ୱଶୀଳ ହିଁ ଅଧିକ ସାହସୀ । କାରଣ ସେ ବାସ୍ତବ ସ୍ଥିତି ନଜାଣି ଏବଂ କୌଣସି ଆଶା ନରଖି ସମୁଦ୍ର ମଧ୍ୟକୁ ଲମ୍ଫ ପ୍ରଦାନ କରିଥିଲା । କିନ୍ତୁ ରାଜା ସବୁକିଛି ଜାଣିଥିଲେ । ତାଙ୍କ ଜୀବନ ପ୍ରତି ଯେ ବିପଦ ନାହିଁ ଏକଥା ମଧ୍ୟ ତାଙ୍କୁ ଜଣାଥିଲା । ସେ ମଧ୍ୟ ଜାଣିଥିଲେ ଯେ ଇଚ୍ଛାକଲେ ମଧ୍ୟ ଦୈତ୍ୟକନ୍ୟାକୁ ଲାଭ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।'

ରାଜା ମୌନଭଙ୍ଗ କରିବାମାତ୍ରେ ବେତାଳ ପୂର୍ବପରି ତାଙ୍କ ସ୍କନ୍ଧରୁ ଶିଂଶପା ବୃକ୍ଷ ଶାଖାକୁ ଫେରିଗଲା । ରାଜା ଦ୍ରୁତପଦରେ ପୁଣି ତାର ଅନୁଗମନ କଲେ । ବାସ୍ତବରେ ବିଜ୍ଞ ବ୍ୟକ୍ତିମାନେ ଆରମ୍ଭ କରିଥିବା କାର୍ଯ୍ୟକୁ ଶେଷ ନକରି ଛାଡ଼ନ୍ତି ନାହିଁ ।

**ପ୍ରାରବ୍ଧେ ହ୍ୟସମାପ୍ତେ କାର୍ଯ୍ୟେ ଶିଥିଳୀଭବନ୍ତି କିଂ ସୁଧିୟଃ ।**

# ପଞ୍ଚଦଶ ତରଙ୍ଗ

## ଅଷ୍ଟମ ବେତାଳ କଥା : ତିନି ସୁକୁମାର କଥା

ରାଜା ତ୍ରିବିକ୍ରମସେନ ପୁଣି ଶିଂଶପା ବୃକ୍ଷଶାଖାରୁ ବେତାଳକୁ ସ୍କନ୍ଧରେ ଧରି ରାତ୍ରିର ଅନ୍ଧକାରରେ ଚାଲିବାକୁ ଲାଗିଲେ । ସ୍କନ୍ଧ ଉପରୁ ବେତାଳ ପୂର୍ବପରି କଥାଟିଏ ଶୁଣାଇ କହିଲା, ''ରାଜନ୍, ଥକି ପଡୁଛ କି ? ତା'ହେଲେ ମୁଁ କହୁଥିବା କଥାଟି ଶୁଣି ମୋ ପ୍ରଶ୍ନର ଉତ୍ତର ଦେବାପାଇଁ ପ୍ରସ୍ତୁତ ହୁଅ ।

ଅଙ୍ଗ ଦେଶରେ ବୃକ୍ଷଘଟ ନାମକ ଏକ ବଡ଼ ବ୍ରାହ୍ମଣଶାସନ ଥିଲା । ସେଥିରେ ବିଷ୍ଣୁସ୍ୱାମୀ ବୋଲି ଜଣେ ବିତ୍ତଶାଳୀ ଯାଜ୍ଞିକ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର ଅନୁରୂପ ଗୁଣବତୀ ଧର୍ମପତ୍ନୀ ଥିଲେ ତିନୋଟି ପୁତ୍ର ସନ୍ତାନର ଜନନୀ । ପୁତ୍ରମାନେ ସମୟକ୍ରମେ ଯୌବନରେ ପଦାର୍ପଣ କରି ପିତାଙ୍କ ପରି ବିଦ୍ୱାନ୍ ହୋଇଉଠିଲେ ।

ଏକଦା ବିଷ୍ଣୁସ୍ୱାମୀ କୌଣସି ଏକ ଯଜ୍ଞ ଅନୁଷ୍ଠାନ ପାଇଁ ଆୟୋଜନ କରୁଥାନ୍ତି । ସେଥିନିମିତ୍ତ ଗୋଟିଏ କଇଁଚ ଆବଶ୍ୟକ ହେଉଥାଏ । ପିତାଙ୍କ ଆଦେଶ କ୍ରମେ ତିନି ଭାଇ ଯାଇ ସମୁଦ୍ର ତୀରରେ ପହଞ୍ଚିଲେ । କଇଁଚଟିଏ ସଂଗ୍ରହ କରି ବଡ଼ଭାଇ ଅନ୍ୟ ଦୁଇଜଣଙ୍କୁ କହିଲେ, 'ପିତାଙ୍କ ଯଜ୍ଞପାଇଁ ତୁମ ଭିତରୁ କେହି ଜଣେ କଇଁଚଟିକୁ ନେଇଯାଅ । ଗନ୍ଧ ଓ ମସୃଣତା ଯୋଗୁଁ ମୁଁ ଏହାକୁ ନେଇ ପାରିବି ନାହିଁ ।' ବଡ଼ଭାଇଠାରୁ ଏହା ଶୁଣି ଛୋଟମାନେ କହିଲେ, 'ଏଥିରେ ଯଦି ତୁମର ଘୃଣା ହେଉଛି ତେବେ ଆମର ବା ନହେବ କାହିଁକି ?' ବଡ଼ଭାଇ ସେମାନଙ୍କୁ ଆଦେଶ ଦେବା ସ୍ୱରରେ କହିଲେ, 'ଦେଖ, ମୋ କଥା ମାନି ତୁମେ ଏହାକୁ ନେଇ ପିତାଙ୍କ ନିକଟକୁ ଯାଅ । ତୁମେ ଯଦି ଏହା ନକର, ତାହା ହେଲେ ପିତାଙ୍କର ଯଜ୍ଞ ସମ୍ପୂର୍ଣ୍ଣ ହୋଇପାରିବ ନାହିଁ । ଏଥିପାଇଁ ପିତାଙ୍କ ସହିତ ତୁମେମାନେ ମଧ୍ୟ ନର୍କଗାମୀ ହେବ ।' ବଡ଼ଭାଇଙ୍କ କଥାରେ ସାନ ଦୁଇଭାଇ ହସି ହସି

କହିଲେ, 'ଭାଇ, ତମେ ଆମମାନଙ୍କ ଧର୍ମକଥା ଜାଣିପାରୁଛ । କିନ୍ତୁ ତାହା ମଧ ତୁମର ଯେ ଧର୍ମ, ସେକଥା ବୁଝିପାରୁନାହଁ ।' ଭାଇମାନଙ୍କ କଥା ଶୁଣି ସେ ନିଜର ଅସୁବିଧା ଜଣାଇ କହିଲେ, 'ଦେଖ, ତମେ ମୋ କଥା ଜାଣିଛ । ମୁଁ ଭୋଜନ ସୁକୁମାର । ତେଣୁ ଘୃଣିତ ବସ୍ତୁକୁ ଛୁଇଁବା ମୋ ପକ୍ଷରେ ସମ୍ଭବ ନୁହେଁ ।'

ବଡ଼ଭାଇ କଥା ଶୁଣି ମଝିଆଭାଇ କହିଲା 'ଭାଇ, ତା'ହେଲେ ତ ମୁଁ ତମ ଅପେକ୍ଷା ଅଧିକ ସୁକୁମାର; କାରଣ ମୁଁ ବିଲକ୍ଷଣ ନାରୀ ସୁକୁମାର ।'

ମଝିଆଭାଇଠାରୁ ଏହାଶୁଣି ବଡ଼ଭାଇ ସବା ସାନଭାଇକୁ କଇଁଚଟି ଧରି ପିତାଙ୍କ ନିକଟକୁ ଯିବା ନିମିତ୍ତ ନିର୍ଦ୍ଦେଶ ଦେଲା । କିନ୍ତୁ ସେ ମଧ ନାକଟେକି କହିଲା, 'ଭାଇମାନେ ମୁଁ ତ ତୂଳିକା ସୁକୁମାର । ତେଣୁ ତୁମମାନଙ୍କ ଅପେକ୍ଷା ଆହୁରି ଅଧିକ ସୁକୁମାର ।'

ଏହିପରି ତିନିଜଣଯାକ ନିଜନିଜର ସ୍ୱାଭିମାନକୁ ନେଇ କଳହ ଆରମ୍ଭ କରିଦେଲେ । ସେମାନେ ଏହାର ସମାଧାନପାଇଁ କଇଁଚଟିକୁ ସେଠାରେ ଛାଡ଼ିଦେଇ ନିକଟସ୍ଥ ବିଟଙ୍କପୁର ନଗରର ରାଜସଭାରେ ଯାଇ ଉପସ୍ଥିତ ହେଲେ । ପ୍ରତିହାରଦ୍ୱାରା ସୂଚନା ଦେଇ ସେମାନେ ରାଜାଙ୍କ ନିକଟରେ ସେମାନଙ୍କର ବିବାଦ ସମ୍ପର୍କରେ ସମସ୍ତ କଥା ନିବେଦନ କଲେ । ନୀତିନିପୁଣ ରାଜା ହଠାତ୍ ନିଜର ନିଷ୍ପତ୍ତି ନଶୁଣାଇ ସେମାନଙ୍କୁ ସେଠାରେ କିଛିଦିନ ଅପେକ୍ଷା କରି ରହିବାପାଇଁ ନିର୍ଦ୍ଦେଶ ଦେଲେ; ତା'ହେଲେ ସେ ସ୍ୱତନ୍ତ୍ରଭାବେ ପ୍ରତ୍ୟେକଙ୍କର ପରୀକ୍ଷା ନେଇପାରିବେ ।

ରାଜାଙ୍କ ନିର୍ଦ୍ଦେଶ କ୍ରମେ ତିନିଭାଇ ରାଜପ୍ରାସାଦ ମଧସ୍ଥ ଅତିଥିଶାଳାରେ ରହୁଥାନ୍ତି । ଦିନେ ରାଜା ଭୋଜନ ସମୟରେ ତିନିଜଣ ବ୍ରାହ୍ମଣ କୁମାରଙ୍କୁ ନିମନ୍ତ୍ରଣ କରି ଉପଯୁକ୍ତ ଆସନରେ ନେଇ ବସାଇଲେ । ସେମାନଙ୍କୁ ରାଜଯୋଗ୍ୟ ରସାଳଭୋଜନ ପରିବେଷଣ କରାଗଲା । ସମସ୍ତେ ଭୋଜନ କରିବା ଆରମ୍ଭ କଲେ, କିନ୍ତୁ ବଡ଼ଭାଇ ଘୃଣାରେ ଭୋଜନ ପାତ୍ରରୁ ମୁହଁ ଫେରାଇନେଲା । ରାଜା ତା'ର ଆଚରଣ ଦେଖି ବ୍ରାହ୍ମଣ କୁମାରଙ୍କୁ ଜିଜ୍ଞାସା କଲେ, 'ମହାଭାଗ, ଖାଦ୍ୟପଦାର୍ଥ ତ ଅତ୍ୟନ୍ତ ସ୍ୱାଦିଷ୍ଟ ଓ ସୁବାସିତ । ଆପଣଙ୍କର ଅସୁବିଧା କ'ଣ ?' ବ୍ରାହ୍ମଣପୁତ୍ର ଉତ୍ତର ଦେଲେ, 'ପ୍ରଭୁ, ଏହି ଅନ୍ନରୁ ଶବଦାହର ଗନ୍ଧ ମୁଁ ବାରିପାରୁଛି । ତେଣୁ ଏହା ଖାଇବା ମୋ ପକ୍ଷରେ ସମ୍ଭବ ନୁହେଁ ।' ରାଜାଙ୍କ ଆଦେଶରେ ସମସ୍ତେ ଅନ୍ନକୁ ଆଘ୍ରାଣ କଲେ । ଏହା କଳମ ଧାନ୍ୟର ସ୍ୱାଭାବିକ ଗନ୍ଧ ବୋଲି ମତ ଦେଲେ ସୁଦ୍ଧା ଭୋଜନସୁକୁମାର ତାକୁ ଖାଇଲା ନାହିଁ । ରାଜା ଅଧିକ ଅନୁସନ୍ଧାନ କରିବା ଯୋଗୁଁ ଜଣାଗଲା ଯେ ଏହି ଅନ୍ନ ଯେଉଁ ଚାଉଳରୁ ରନ୍ଧାଯାଇଛି

ତା'ର ଧାନ ଶ୍ମଶାନ ନିକଟବର୍ତ୍ତୀ କ୍ଷେତ୍ରରେ ଫଳିଥିଲା । ରାଜା ଏଥିରେ ଯେତିକି ବିସ୍ମିତ ହେଲେ ସେତିକି ସନ୍ତୁଷ୍ଟ ମଧ୍ୟ ହେଲେ । କହିଲେ, 'ପ୍ରକୃତରେ ଆପଣ ଭୋଜନ ସୁକୁମାର । ତେଣୁ ଅନ୍ୟ ଅନ୍ନ ଭୋଜନ କରନ୍ତୁ ।'

ଭୋଜନ ପରେ ରାଜା ବ୍ରାହ୍ମଣ କୁମାରମାନଙ୍କୁ ନିଜ ନିଜ ପ୍ରକୋଷ୍ଠ ମଧ୍ୟକୁ ପଠାଇଦେଲେ । ଏହାପରେ ସେ ଜଣେ ସର୍ବାଙ୍ଗସୁନ୍ଦରୀ ଗଣିକାକୁ ଆକର୍ଷଣୀୟ ବେଶଭୂଷାରେ ସଜ୍ଜିତ କରି ମଧ୍ୟମ ଭ୍ରାତାଙ୍କ ପ୍ରକୋଷ୍ଠକୁ ପ୍ରେରଣ କଲେ । ପୂର୍ଣ୍ଣଚନ୍ଦ୍ର ତୁଲ୍ୟ କାମବାସନା ଉଦ୍ରେକ କରୁଥିବା ଗଣିକା ଅନୁଚରମାନଙ୍କ ସହିତ ଯାଇ ନାରୀସୁକୁମାରଙ୍କ ପ୍ରକୋଷ୍ଠରେ ପ୍ରବେଶ କଲା । ତା'ର ପ୍ରବେଶ ମାତ୍ରେ କୋଠରିଟି ଉଜ୍ଜ୍ୱଳ ଦେଖାଗଲା । କିନ୍ତୁ ନାରୀସୁକୁମାର ମୂର୍ଚ୍ଛିତ ପ୍ରାୟ ହୋଇଗଲେ । ସେ ବାମହସ୍ତରେ ନାସିକା ବନ୍ଦକରି ଅନୁଚରମାନଙ୍କୁ କହିଲେ, 'ଏହାକୁ ଯଥାଶୀଘ୍ର ଏଠାରୁ ନେଇଯାଅ । ନହେଲେ ମୋର ଜୀବନ ଚାଲିଯିବ । ଏହାର ଶରୀରରୁ ଛାଗଳର ଉତ୍କଟ ଗନ୍ଧ ବାହାରୁଛି ।' ତା କଥାରେ ଅନୁଚରମାନେ ଗଣିକାକୁ ଧରି ରାଜାଙ୍କ ନିକଟକୁ ଚାଲିଗଲେ । ରାଜା ସମସ୍ତ ବୃତ୍ତାନ୍ତ ଶୁଣି ସଙ୍ଗେସଙ୍ଗେ ନାରୀସୁକୁମାରଙ୍କୁ ଡକାଇ କହିଲେ, 'ଗଣିକା ତ ଚନ୍ଦନ, କର୍ପୂର, ଅଗୁରୁ ପ୍ରଭୃତି ଦ୍ୱାରା ନିଜ ଶରୀରକୁ ଲିପ୍ତ କରିଛି । ତା' ଦେହରୁ ବାହାରୁଥିବା ସୁଗନ୍ଧି ଚତୁର୍ଦ୍ଦିଗକୁ ଆମୋଦିତ କରୁଛି । ଏହି ସୁଗନ୍ଧିତ ପ୍ରଲେପ ମଧ୍ୟରୁ ତୁମେ ଛାଗଳର ଗନ୍ଧ ପାଇଲ କୋଉଠୁ ?' ନାରୀସୁକୁମାର ରାଜାଙ୍କ କଥାକୁ ସ୍ୱୀକାର କଲେ ନାହିଁ । ରାଜା ଚିନ୍ତାରେ ପଡ଼ିଗଲେ । ଗଣିକାର ପୂର୍ବ ଇତିହାସ ସଂଗ୍ରହ କରି ସେ ଜାଣିବାକୁ ପାଇଲେ ଯେ ଶୈଶବରେ ତାର ମାତା ଓ ଧାତ୍ରୀ ମୃତ୍ୟୁବରଣ କରିବା ଯୋଗୁଁ ସ୍ୱଜନମାନେ ଛାଗଳ ଦୁଗ୍ଧ ଦ୍ୱାରା ତା'ର ଜୀବନ ରକ୍ଷା କରିଥିଲେ । ରାଜା ନାରୀସୁକୁମାରର ସୌକୁମାର୍ଯ୍ୟରେ ବିସ୍ମିତ ହେଲେ । ସେ ତାକୁ ପ୍ରଶଂସା ନକରି ରହିପାରିଲେ ନାହିଁ ।

ବର୍ତ୍ତମାନ ତୃତୀୟ ଭ୍ରାତାର ପରୀକ୍ଷା ନେବା କଥା । ରାଜା ଶଯ୍ୟାସୁକୁମାରର ପ୍ରକୋଷ୍ଠ ମଧ୍ୟରେ ଏକ ବହୁମୂଲ୍ୟ ଶଯ୍ୟାର ବ୍ୟବସ୍ଥା କରାଇଲେ । ଶଯ୍ୟା ଉପରେ ସାତଟି ଗଦି ପକାଗଲା । ସଦ୍ୟ-ଧୌତ କୋମଳ ଚଦର ଦ୍ୱାରା ଶଯ୍ୟାଟି ଆଚ୍ଛାଦିତ ହୋଇଥାଏ । ଶଯ୍ୟାସୁକୁମାର ତା ଉପରେ ଯାଇ ଶୟନ କଲା । ଅଧରାତି ବେଳକୁ ହଠାତ୍ ସେ ଉଠିପଡ଼ି କାନ୍ଦିବାକୁ ଲାଗିଲା । ଶରୀରର ଗୋଟିଏ ପାର୍ଶ୍ୱରେ ଭୟଙ୍କର ପୀଡ଼ା ହେଉଥିବା ଯୋଗୁଁ ସେ ତାକୁ ଚାପି ଧରିଥାଏ । ରାଜାଙ୍କ ଅନୁଚରମାନେ ତା'ର ରୀତିନୀତି ଜାଣିବାପାଇଁ ସେଠାରେ ଅପେକ୍ଷା କରିଥାନ୍ତି । ସେମାନେ ଦେଖିଲେ ବ୍ରାହ୍ମଣ କୁମାରର ପଞ୍ଜରା ତଳେ

ଗୋଟିଏ ସୂକ୍ଷ୍ମ କେଶତୁଲ୍ୟ ଗଭୀର ଓ କଠୋର ରକ୍ତବର୍ଣ୍ଣ ଦାଗଟିଏ ସୃଷ୍ଟି ହୋଇଅଛି । ଅନୁଚରମାନେ ରାଜାଙ୍କୁ ଏହା ଜଣାଇବାରୁ ସେ ଶଯ୍ୟାଉପରେ କିଛି ପଡ଼ିଛି କି ନାହିଁ ଦେଖିବାପାଇଁ ନିର୍ଦ୍ଦେଶ ଦେଲେ । ସେମାନେ ଗୋଟି ଗୋଟି କରି ସାତଟିଯାକ ଗଦି ବାହାର କରି ଦେଖିଲେ ସବାତଳ ଗଦିତଳେ ପଲଙ୍କର ପଟା ଉପରେ ଗୋଟିଏ ସୂକ୍ଷ୍ମ କେଶ ପଡ଼ିଛି । ସେମାନେ ତାକୁ ନେଇ ରାଜାଙ୍କୁ ଦେଖାଇଲେ । ସେମାନଙ୍କ ସହିତ ଆସିଥିବା ଶଯ୍ୟାସୁକୁମାରର ଶରୀରରେ ଅନୁରୂପ ଚିହ୍ନଟିଏ ଦେଖି ରାଜାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସାତଟି ଗଦିତଳେ ପଡ଼ିଥିବା ସୂକ୍ଷ୍ମକେଶର ଦାଗ କଥା ଚିନ୍ତା କରି ରାଜା କୌଣସିମତେ ରାତିଟି ବିତାଇଲେ ।

ପରଦିନ ରାଜା ସଭା ମଧ୍ୟରେ ଉପସ୍ଥିତ ହୋଇ ଏମାନଙ୍କ ବିଚିତ୍ର ସୁକୁମାରତା ସମ୍ପର୍କରେ ସମସ୍ତଙ୍କୁ କହି ଶୁଣାଇଲେ । ବ୍ରାହ୍ମଣ କୁମାରମାନଙ୍କ ଦକ୍ଷତା ଓ ସୁକୁମାରତା ସମସ୍ତଙ୍କୁ ବିମୁଗ୍ଧ କଲା । ରାଜା ପ୍ରତ୍ୟେକଙ୍କୁ ତିନିତିନି ଲକ୍ଷ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କଲେ । ଏହିପରି ପ୍ରଚୁର ଧନରାଶି ଲାଭ କରି ବ୍ରାହ୍ମଣ କୁମାରମାନେ ପିତାଙ୍କ ଯଜ୍ଞାନୁଷ୍ଠାନପାଇଁ କଇଁଚ ନେବା କଥା ଭୁଲିଯାଇ ବିଟଙ୍କପୁରରେ ହିଁ ବାସ କରିବାକୁ ଲାଗିଲେ । ଯଜ୍ଞରେ ବିଘ୍ନଜନିତ ପାପକଥା ସେମାନଙ୍କର ଆଉ ମନେପଡ଼ିଲା ନାହିଁ ।''

ଏହିପରି ବିଚିତ୍ର କଥା ଶୁଣାଇ ବେତାଳ ତ୍ରିବିକ୍ରମସେନଙ୍କୁ ପ୍ରଶ୍ନ କଲା, ''ରାଜନ୍, ଅଭିଶାପ କଥା ସ୍ମରଣ କରି ବର୍ତ୍ତମାନ କହ ଏହି ତିନିଜଣଙ୍କ ମଧ୍ୟରୁ କିଏ ଅଧିକ ସୁକୁମାର ?''

ରାଜା ମୌନଭଙ୍ଗ କରି ଉତ୍ତର ଦେଲେ, ''ମୋ ମତରେ ଶଯ୍ୟା-ସୁକୁମାର ହିଁ ଶ୍ରେଷ୍ଠ । କାରଣ ତା' କଥାରେ କୌଣସି ଗୋପନୀୟତା ନଥିଲା । ତା' ଶରୀରରେ କେଶର ଦାଗ ସ୍ପଷ୍ଟ ଦେଖାଯାଉଥିଲା । ଅନ୍ୟମାନେ ଯାହା କହିଲେ ସେମାନେ ପୂର୍ବରୁ ତାହା ଅନ୍ୟଠାରୁ ଶୁଣିଥିବା ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ ।''

ରାଜାଙ୍କର ମୌନଭଙ୍ଗ ହେବାଯୋଗୁଁ ବେତାଳ ତାଙ୍କ ସ୍କନ୍ଧରୁ ସ୍ୱସ୍ଥାନକୁ ଫେରିଗଲା । ରାଜା ଆଦୌ ବିଚଳିତ ନହୋଇ ତାର ପଶ୍ଚାତ୍‌ଗମନ କଲେ ।

# ଷୋଡ଼ଶ ତରଙ୍ଗ

## ନବମ ବେତାଳ କଥା : ରାଜକୁମାରୀ ଅନଙ୍ଗରତି କଥା

ଶିଂଶପା ବୃକ୍ଷଶାଖାରୁ ଶବଟିକୁ ଓହ୍ଲାଇ ଆଣି ରାଜା ତ୍ରିବିକ୍ରମସେନ ପୁଣି ଭିକ୍ଷୁର ଯଜ୍ଞସ୍ଥଳ ପ୍ରତି ଅଗ୍ରସର ହେଲେ । ଶବମଧ୍ୟସ୍ଥିତ ବେତାଳ ସ୍କନ୍ଧ ଉପରୁ ପୁଣି ତା'ର କହିବା ଆରମ୍ଭ କଲା–

''ରାଜନ୍, ତୁମେ ନିଜର ରାଜଭୋଗ ତ୍ୟାଗକରି ଅଯଥା ଏ ଶ୍ମଶାନ ମଧ୍ୟରେ ଭ୍ରମଣ କରୁଛ । ଶ୍ମଶାନର ଏହି ଭୂତପ୍ରେତ ଏବଂ ଚିତାଗ୍ନିରୁ ଉଠୁଥିବା ଧୂମରାଶି ତୁମ ମନରେ କ'ଣ କିଛି ବିକାର ଜାତ କରୁନାହିଁ ? ସେହି ଦୁଷ୍ଟ ଭିକ୍ଷୁର ଅନୁରୋଧକୁ ତମେ କାହିଁକି ଯେ ଗ୍ରହଣ କଲ ମୁଁ ଜାଣିପାରୁନାହିଁ । ଯାହା ହେଉ, ତମର କଷ୍ଟଲାଘବ କରିବାପାଇଁ ମୁଁ ଅନ୍ୟ ଗୋଟିଏ କଥା କହୁଛି, ଶୁଣ–

ସୃଷ୍ଟିର ଆରମ୍ଭରେ ଦେବତାମାନେ ଅବନ୍ତୀ ନାମରେ ଏକ ନଗରୀ ନିର୍ମାଣ କରିଥିଲେ । ଭୋଗୀ ଓ ଭୂତି ଅର୍ଥାତ୍ ସର୍ପ ଓ ଭସ୍ମ ଦ୍ୱାରା ବିଭୂଷିତ ଦେବଦେବ ମହାଦେବଙ୍କ ବିଶାଳ ମୂର୍ତ୍ତିପରି ଏହି ନଗରୀ ଭୋଗୀ ବା ବିଳାସୀ ନାଗରିକ ଏବଂ ଭୂତି ଅର୍ଥାତ୍ ବିଭିନ୍ନ ଐଶ୍ୱର୍ଯ୍ୟରେ ସୁଶୋଭିତ ଥିଲା । ଏହା ସତ୍ୟ ଯୁଗରେ ପଦ୍ମାବତୀ, ତ୍ରେତୟାରେ ଭୋଗବତୀ ଏବଂ ଦ୍ୱାପରରେ ହିରଣ୍ୟବତୀ ନାମରେ ପରିଚିତ ଥିଲା । କଳିଯୁଗରେ ଏହା ଉଜ୍ଜୟିନୀ ନାମରେ ବିଖ୍ୟାତ ।

ଏହି ଉଜ୍ଜୟିନୀ ନଗରୀରେ ବୀରଦେବ ବୋଲି ଜଣେ ସ୍ୱନାମଧନ୍ୟ ରାଜା ରାଜତ୍ୱ କରୁଥିଲେ । ତାଙ୍କର ପଟ୍ଟମହିଷୀ ଥିଲେ ପଦ୍ମରତି । ପୁତ୍ର ପ୍ରାପ୍ତି ନିମିତ୍ତ ରାଜା ଓ ରାଣୀ ମନ୍ଦାକିନୀ ତଟରେ ଭଗବାନ କୈଳାଶପତିଙ୍କ ଆରାଧନା କରୁଥାନ୍ତି । ବହୁଦିନ ଧରି ପୂଜା କରିବା ପରେ ଦିନେ ଯେତେବେଳେ ସେମାନେ ଅଭିଷେକ ଓ ଅର୍ଚ୍ଚନା ଶେଷକଲେ

ସେତେବେଳେ ଭଗବାନଙ୍କ ଦିବ୍ୟ ବାଣୀ ଶୁଣାଗଲା, 'ରାଜା, ତୁମ ବଂଶରେ ଏକ ପରାକ୍ରମଶାଳୀ ପୁତ୍ର ଜନ୍ମ ନେବ । ତା' ସହିତ ରୂପରେ ଅପସରାମାନଙ୍କୁ ପରାଜିତ କରୁଥିବା ଏକ କନ୍ୟା ମଧ୍ୟ ତୁମ ଔରସରୁ ଜାତ ହେବ ।' ଦିବ୍ୟବାଣୀରେ ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ମନୋରଥ ସିଦ୍ଧ ହୋଇଥିବା ଯୋଗୁଁ ରାଣୀଙ୍କ ସହିତ ସେ ରାଜ ପ୍ରାସାଦକୁ ଫେରିଆସିଲେ ।

ସମୟ କ୍ରମେ, ପ୍ରଥମେ ରାଜାଙ୍କର ଏକ ପୁତ୍ର ଜନ୍ମ ହେଲା । ପିତାମାତା ପୁତ୍ରଟିର ନାମ ରଖିଲେ ଶୂରଦେବ । ଏହାପରେ ପଦ୍ମରତିଙ୍କ ଗର୍ଭରୁ ଏକ କନ୍ୟା ସନ୍ତାନ ଜନ୍ମନେଲା । କନ୍ୟାଟି ନିଜ ସୌନ୍ଦର୍ଯ୍ୟରେ କନ୍ଦର୍ପଙ୍କୁ ମଧ୍ୟ ବିଚଳିତ କରିବା ପରି ମନେହେଉଥାଏ । ତେଣୁ ତା'ର ନାମକରଣ କରାଗଲା ଅନଙ୍ଗରତି । କନ୍ୟାଟି ଧୀରେ ଧୀରେ ଯୌବନରେ ପଦାର୍ପଣ କଲା । ତା' ନିମିତ୍ତ ଏକ ଯୋଗ୍ୟ ପତି ନିର୍ବାଚନ କରିବାପାଇଁ ପିତା ପୃଥିବୀର ସମସ୍ତ ରାଜାଙ୍କ ପଟ୍ଟଚିତ୍ର ମଗାଇ ଆଣିଲେ । ତା ମଧ୍ୟରୁ ଗୋଟିଏ ବୋଲି ଚିତ୍ର ରାଜାଙ୍କର ମନୋନୀତ ହୋଇପାରିଲା ନାହିଁ । ଏଥିରେ ଦୁଃଖିତ ହୋଇ ରାଜା ମମତାଭରା କଣ୍ଠରେ କନ୍ୟାକୁ ସ୍ୱୟଂବରଣଦ୍ୱାରା ନିଜର ପତି ନିର୍ବାଚନ କରିବାପାଇଁ ଅନୁରୋଧ କଲେ ।

ପିତାଙ୍କ ଅସହାୟତା ଦେଖି ଅନଙ୍ଗରତି କହିଲା, 'ଲଜ୍ଜାବଶତଃ ସ୍ୱୟଂବରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ଯଦି ଆପଣ ଅପୂର୍ବ ବିଦ୍ୟା ଜାଣିଥିବା କୌଣସି ଯୁବକର ସନ୍ଧାନ ପା'ନ୍ତି, ତେବେ ତା' ସହିତ ମୋର ବିବାହ କରାଇଦିଅନ୍ତୁ । ଏହା ବ୍ୟତୀତ ମୋର ଅନ୍ୟ କୌଣସି ଅଭିଳାଷ ନାହିଁ ।' କନ୍ୟାର ଆଗ୍ରହ ଅନୁଯାୟୀ ରାଜା ଏପରି ଏକ ବରପାତ୍ରର ଅନୁସନ୍ଧାନ କରିବାକୁ ଲାଗିଲେ ।

ଲୋକମୁଖରୁ ରାଜକୁମାରୀଙ୍କ ପ୍ରତିଜ୍ଞା କଥା ଶୁଣି ଦକ୍ଷିଣାପଥରୁ ଚାରିଜଣ ଯୁବକ ଆସି ପହଞ୍ଚିଲେ । ସେମାନେ ଯେପରି ବୀର ଥିଲେ ସେହିପରି କଳାନିପୁଣ ଓ ରୂପବାନ ଥିଲେ । ରାଜା ଏମାନଙ୍କର ସ୍ୱାଗତ ସତ୍କାର କଲେ । ସେମାନେ ରାଜପୁତ୍ରୀଙ୍କୁ ବିବାହ କରିବା ନିମିତ୍ତ ଜଣକ ପରେ ଜଣେ ନିଜ ନିଜର କଳାକୌଶଳ ବର୍ଣ୍ଣନା କରିବାକୁ ଲାଗିଲେ ।

ସେମାନଙ୍କ ମଧ୍ୟରୁ ପ୍ରଥମ ଜଣକ କହିଲା– "ମୁଁ ଜାତିରେ ଶୂଦ୍ର । ମୋର ନାମ ପଞ୍ଚପଟ୍ଟିକ । ମୁଁ ପ୍ରତିଦିନ ପାଞ୍ଚଯୋଡ଼ା ଉତ୍ତମ ବସ୍ତ୍ର ବୟନ କରେ । ଏଥିରୁ ଗୋଟିଏ ଯୋଡ଼ି ଦେବତାଙ୍କୁ ଲାଗି କରାଏ, ଦ୍ୱିତୀୟ ଯୋଡ଼ିଟି ବ୍ରାହ୍ମଣମାନଙ୍କୁ ଦାନ କରେ, ଗୋଟିଏ

ଯୋଡ଼ା ନିଜେ ପିନ୍ଧିବା ପାଇଁ ରଖେ । ରାଜକନ୍ୟା ଯଦି ମୋତେ ବିବାହ କରନ୍ତି ସେଥିରୁ ଗୋଟିଏ ଯୋଡ଼ା ମୁଁ ତାଙ୍କୁ ଦେବି ଏବଂ ଶେଷ ଯୋଡ଼ିଟି ବିକ୍ରିକରି ଖାଦ୍ୟପେୟର ପ୍ରବନ୍ଧ କରିବି । ଏଣୁ ଆପଣ ମୋ ସହିତ ଅନଙ୍ଗରତିର ବିବାହ କରାନ୍ତୁ ।'

ପ୍ରଥମ ଯୁବକର ବକ୍ତବ୍ୟ ଶେଷ ହେବା ପରେ ଦ୍ୱିତୀୟ ଜଣକ କହିଲା, 'ମୁଁ ଜଣେ ବୈଶ୍ୟ, ମୋର ନାଭ ଭାଷାଜ୍ଞ । ମୁଁ ସମସ୍ତ ପଶୁପକ୍ଷୀଙ୍କ ଭାଷା ବୁଝିପାରେ । ତେଣୁ ଆପଣ ନିଜ କନ୍ୟାକୁ ମୋତେ ଦାନ କରନ୍ତୁ ।'

ଦ୍ୱିତୀୟର କଥା ଶେଷ ହେବା ପରେ ତୃତୀୟ ଯୁବକ କହିଲା 'ମୁଁ କ୍ଷତ୍ରିୟ ଏବଂ ପରାକ୍ରମଶାଳୀ ରାଜକୁମାର । ମୋର ନାମ ଖଡ୍‌ଗଧର । ପୃଥିବୀରେ ମୋ ପରି ଖଡ୍‌ଗ ବିଦ୍ୟା ଜାଣିଥିବା ଅନ୍ୟ କୌଣସି ପୁରୁଷ ବର୍ତ୍ତମାନ ଆଉ ନାହାଁନ୍ତି । ତେଣୁ ଆପଣ ନିଜ କନ୍ୟା ସହିତ ମୋର ବିବାହ ସମ୍ପନ୍ନ କରନ୍ତୁ ।'

ଶେଷରେ ଚତୁର୍ଥ ଯୁବକ କହିଲା, 'ମୁଁ ଜଣେ ବ୍ରାହ୍ମଣ । ମୋର ନାମ ଜୀବଦତ୍ତ । ମୁଁ ଏପରି ବିଦ୍ୟାଜାଣେ ଯାହାଦ୍ୱାରା ଯେକୌଣସି ମୃତ ପ୍ରାଣୀକୁ ଜୀବିତ କରି ଆପଣଙ୍କ ସମ୍ମୁଖରେ ଉପସ୍ଥିତ କରାଇ ପାରିବି । ଏଣୁ ଏପରି ଅପୂର୍ବ ବିଦ୍ୟା ଜାଣିଥିବା ମୋପରି କୁଳୀନ ଯୁବକକୁ ଆପଣ ନିଜ କନ୍ୟାର ପତି ରୂପେ ସ୍ୱୀକାର କରନ୍ତୁ ।'

ଦିବ୍ୟ ବେଶ ଓ ରୂପଧାରୀ ଚାରିଜଣ ଯୁବକ ଏହିପରି କହିବା ଫଳରେ ରାଜା ବୀରବର କନ୍ୟାର ଭବିଷ୍ୟତ ନେଇ ଦ୍ୱନ୍ଦ୍ୱରେ ପଡ଼ିଗଲେ । ତାଙ୍କର ମନସ୍ଥିତି ଦୋଳାୟମାନ ହେବାକୁ ଲାଗିଲା ।''

ଏହିପରି କଥାଟିଏ ଶୁଣାଇ ବେତାଳ ଶାପଭୀତ ରାଜା ତ୍ରିବିକ୍ରମସେନଙ୍କୁ ପ୍ରଶ୍ନ କଲା, ''ରାଜନ୍, ଏବେ ତୁମେ କୁହ, ଅନଙ୍ଗରତିର ବିବାହ କାହା ସହିତ ହେବା ଉଚିତ ହେବ ?''

ରାଜା ଉତ୍ତରରେ କହିଲେ, ''ଯୋଗେଶ୍ୱର, ତୁମେ କାଳକ୍ଷେପଣ କରିବାପାଇଁ କେବଳ ମୋର ମୌନବ୍ରତ ଭଙ୍ଗ କରୁଛ । ଅନ୍ୟଥା ତୁମ ପ୍ରଶ୍ନର ଉତ୍ତର କିବା ଛାର କଥା । ଶୂଦ୍ର ହସ୍ତରେ କ୍ଷତ୍ରିୟ କନ୍ୟାକୁ କିପରି ବା ସମର୍ପଣ କରାଯାଇ ପାରିବ । ସେହିପରି ବୈଶ୍ୟ ସହିତ କ୍ଷତ୍ରିୟ କନ୍ୟାର ବିବାହ ମଧ୍ୟ ନୀତିବିରୁଦ୍ଧ । ପୁଣି ପଶୁପକ୍ଷୀଙ୍କ ଭାଷା ତା'ର କେଉଁ କାର୍ଯ୍ୟରେ ଲାଗିବ ? ପୁଣି ବ୍ରାହ୍ମଣ କୁମାର ମଧ୍ୟ ରାଜାଙ୍କ ଜାମାତା ହେବାର ଯୋଗ୍ୟ ନୁହେଁ । ସେ ବୀର ନିଶ୍ଚୟ କିନ୍ତୁ ନିଜ ବିଦ୍ୟାର ଅପବ୍ୟବହାର କରି ସେ ଏକ

ଐନ୍ଦ୍ରଜାଲିକ ପାଲଟିଯାଇଛି । ତେଣୁ ବ୍ରାହ୍ମଣ ସ୍ତରରୁ ସେ ପତିତ । ଏସବୁ ଦୃଷ୍ଟିରୁ କ୍ଷତ୍ରିୟ ଯୁବକ ହିଁ ରାଜକୁମାରୀଙ୍କ ଏକମାତ୍ର ଯୋଗ୍ୟ ପତି । ସେ ସମାନ କୁଳରେ ଜାତ । ପୁଣି ନିଜ ବିଦ୍ୟାରେ ପ୍ରବୀଣ ଓ ପରାକ୍ରମୀ ।''

ରାଜାଙ୍କ କଥା ଶୁଣି ପୂର୍ବପରି ବେତାଳ ନିଜ ମାୟାବଳରେ ବୃକ୍ଷଶାଖାକୁ ପ୍ରତ୍ୟାବର୍ତ୍ତନ କଲା । ରାଜା ମଧ୍ୟ ତା' ପଛରେ ଚାଲିଲେ । ବୀରମାନେ ସର୍ବଦା ଉତ୍ସାହୀ । କାର୍ଯ୍ୟସିଦ୍ଧି ପାଇଁ କଷ୍ଟ ସ୍ୱୀକାର କଲେ, ସେମାନଙ୍କ ମନରେ ଦୁଃଖ ହୁଏ ନାହିଁ ।

ଉତ୍ସାହୈକଧନେ ହି ବୀରହୃଦୟେ ନାପ୍ନୋତି ଖେଦୋଽନ୍ତରମ ।

# ସପ୍ତଦଶ ତରଙ୍ଗ

## ଦଶମ ବେତାଳ କଥା : ମଦନସେନା କଥା

ରାଜା ତ୍ରିବିକ୍ରମସେନ ପୁଣି ଶିଂଶପା ବୃକ୍ଷ ନିକଟରେ ଉପସ୍ଥିତ ହୋଇ ବେତାଳ ସହିତ ଗନ୍ତବ୍ୟ ପଥରେ ବାହାରିଲେ । ବେତାଳ ପୂର୍ବଥର ପରି ଏଥର ମଧ୍ୟ ଗଳ୍ପଟିଏ କହିବା ଆରମ୍ଭ କଲା—

''ରାଜନ୍, ତୁମେ ବୋଧହୁଏ ଥକିଯିବଣି । ତୁମର ପଥଶ୍ରମ ଦୂର କରିବାପାଇଁ ମୁଁ ଗୋଟିଏ ଗଳ୍ପ କହୁଛି, ଶୁଣ—

ବୀରବାହୁ ନାମରେ ଜଣେ ଶ୍ରେଷ୍ଠ ନରପତି ଥିଲେ । ତାଙ୍କ ସୁରମ୍ୟ ରାଜଧାନୀର ନାମ ଅନଙ୍ଗପୁର । ସେଠାରେ ଅର୍ଥଦତ୍ତ ନାମକ ଜଣେ ଅତ୍ୟନ୍ତ ଧନଶାଳୀ ସାର୍ଥବାହ ରହୁଥାନ୍ତି । ତାଙ୍କ ଜ୍ୟେଷ୍ଠ ପୁତ୍ରର ନାମ ଧନଦତ୍ତ ଏବଂ କନିଷ୍ଠା କନ୍ୟାର ନାମ ମଦନସେନା । ମଦନସେନା ଥିଲା ଏକ କନ୍ୟାରତ୍ନ । ସେ ଏକଦା ନିଜର ସଖୀମାନଙ୍କ ସହିତ ଉଦ୍ୟାନ ମଧ୍ୟରେ କ୍ରୀଡ଼ା କରୁଥାଏ । ଏ ସମୟରେ ଧନଦତ୍ତର ମିତ୍ର ଧର୍ମଦତ୍ତ ସେଠାରେ ତାକୁ ଦେଖି ମୁଗ୍ଧ ହେଲା । କନ୍ୟାଟିର ଶରୀରରୁ ଲାବଣ୍ୟର ନିର୍ଝରିଣୀ ଝରୁଥାଏ । ତାର ସ୍ତନଯୁଗଳ ପୂର୍ଣ୍ଣକୁମ୍ଭ ଯୁଗଳର ଭ୍ରମ ସୃଷ୍ଟି କରୁଥାଏ । ଉଦରସ୍ଥ ତ୍ରିବଳୀ ତରଙ୍ଗ ପରି ଶୋଭା ପାଉଥାଏ । ସତେ ଯେପରି ମଦନସେନା ଯୌବନରୂପକ ମତ୍ତହସ୍ତୀର ଏକ କ୍ରୀଡ଼ା ସରୋବର । ତାକୁ ଦେଖିବା ମାତ୍ରେ ଧର୍ମଦତ୍ତର ହୃଦୟ କନ୍ଦର୍ପର ପଞ୍ଚବାଣରେ ଛିନ୍ନଭିନ୍ନ ହୋଇଗଲା । କନ୍ୟାଟିର ରୂପ ତା'ର ମନୋରାଜ୍ୟକୁ ଜୟ କରିବାପାଇଁ କନ୍ଦର୍ପର ଶରଜାଳ ବୋଲି ମନେକଲା । ଏହିପରି ଚିନ୍ତାହତ ହୋଇ ସେ ଚକ୍ରବାକ ତୁଲ୍ୟ ତାକୁ ଦୃଷ୍ଟିପଥରୁ ଦୂରନକରି ଦିନଟି ସେଠାରେ ବିତାଇ ଦେଲା ।

ସଂଧ୍ୟା ହେବାରୁ ମଦନସେନା ସ୍ୱଗୃହକୁ ଫେରିଗଲା । ତାର ଅଦର୍ଶନରେ ସୂର୍ଯ୍ୟ ଯେପରି ଦୁଃଖାଗ୍ନିର ଜ୍ୱାଳାରେ ରକ୍ତବର୍ଣ୍ଣ ଧାରଣ ପୂର୍ବକ ପଶ୍ଚିମ ସମୁଦ୍ରରେ ଆତ୍ମବିସର୍ଜନ

କଲେ । ସୁନ୍ଦରୀ ଗୃହ ମଧ୍ୟରେ ପ୍ରବେଶ କରିଯିବାରୁ ତା'ର ମୁଖ କମଳର ସୌନ୍ଦର୍ଯ୍ୟରାଶି ଦ୍ୱାରା ପରାଜିତ ହୋଇଥିବା ଚନ୍ଦ୍ରମା ପୁଣି ଧୀରେ ଧୀରେ ଉପରକୁ ଉଠିବାକୁ ଲାଗିଲେ । ଧର୍ମଦତ୍ତ କନ୍ୟାର ରୂପ ଦର୍ଶନରୁ ବଞ୍ଚିତ ହୋଇ ନିଜ ଗୃହକୁ ଫେରିଆସିଲା । ତାର ସ୍ମୃତି ଏବଂ ଚନ୍ଦ୍ରର ଜ୍ୟୋସ୍ନାଦ୍ୱାରା ବ୍ୟଥିତ ଓ ପୀଡ଼ିତ ହୋଇ ସେ ଶଯ୍ୟା ଉପରେ ପଡ଼ିରହିଲା । ସେ ପ୍ରାୟ ମୂର୍ଚ୍ଛିତ ଥିବାରୁ ମିତ୍ର ଓ ସ୍ୱଜନମାନେ ତାର ମନୋବେଦନାର କାରଣ ଜାଣିପାରିଲେ ନାହିଁ । ରାତ୍ରିର ଶେଷ ପ୍ରହରରେ ବହୁକଷ୍ଟରେ ସେ ନିଦ୍ରାଗଲା । ତଥାପି ସ୍ୱପ୍ନରେ ସେ ନିଜର ପ୍ରିୟ ମଦନସେନାକୁ ହିଁ ଦେଖୁଥାଏ ଏବଂ ତା ନିକଟରେ ବହୁ ଅନୁନୟ ବିନୟ କରୁଥାଏ । କାମାର୍ତ୍ତ ପୁରୁଷମାନେ କ'ଣ ବା ନକରନ୍ତି !

ପ୍ରତ୍ୟୁଷରୁ ଧର୍ମଦତ୍ତ ଶଯ୍ୟାତ୍ୟାଗ ପୂର୍ବକ ପୂର୍ବୋକ୍ତ ଉଦ୍ୟାନ ମଧ୍ୟରେ ଯାଇ ପହଞ୍ଚିଲା । ସେଠାରେ ମଦନସେନା ଏକାକିନୀ ପ୍ରିୟ ସହଚରୀକୁ ପ୍ରତୀକ୍ଷା କରୁଥାଏ । ଧର୍ମଦତ୍ତ ଆଲିଙ୍ଗନ କରିବାର ବ୍ୟଗ୍ରତା ନେଇ ତା' ନିକଟକୁ ଗଲା । ତାର ପାଦତଳେ ନତଜାନୁ ହୋଇ ଚାଟୁବାକ୍ୟରେ ତାର ମନୋହରଣ କରିବା ନିମିତ୍ତ ଚେଷ୍ଟା କଲା । କିନ୍ତୁ ଏଥିରେ ଟିକିଏ ମାତ୍ର ବିଚଳିତ ନହୋଇ ମଦନସେନା କହିଲା, 'ମୁଁ ଅବିବାହିତା କୁମାରୀ । ପୁଣି ଅନ୍ୟର ବାକ୍‌ଦତ୍ତା ପତ୍ନୀ । ମୁଁ ଆପଣଙ୍କର ହେବା ସମ୍ଭବ ନୁହେଁ । ପିତା ସମୁଦ୍ରଦତ୍ତ ନାମକ ବଣିକ ପୁତ୍ରଙ୍କ ସହିତ ମୋର ବିବାହପାଇଁ ବାକ୍‌ଦାନ କରିସାରିଛନ୍ତି । ସ୍ୱଳ୍ପଦିନ ମଧ୍ୟରେ ଆମର ବିବାହ ସମ୍ପନ୍ନ ହେବ । ଏଣୁ ଆପଣ ଏଠାରୁ ଯଥାଶୀଘ୍ର ଚାଲିଯାନ୍ତୁ । କେହି ଦେଖିଲେ ଅମଙ୍ଗଳ ହେବ ।'

ଏହିପରି ବିଭିନ୍ନ ଭାବରେ ବୁଝାଇଲେ ସୁଦ୍ଧା ଧର୍ମଦତ୍ତ ସେଠାରୁ ଯିବାପାଇଁ ଉଦ୍ୟତ ହେଲାନାହିଁ । ବରଂ କହିଲା, 'ମୋର ଯାହା ହେବାର ଅଛି ପଛେ ହେଉ କିନ୍ତୁ ମୁଁ ତୁମ ବିନା ବଞ୍ଚିପାରିବି ନାହିଁ ।' ତା କଥାରେ ମଦନସେନା କାଳେ ସେ ବଳାତ୍କାର କରିବ ବୋଲି ଭୟଭୀତା ହୋଇପଡ଼ିଲା । ନିଜକୁ ରକ୍ଷା କରିବାପାଇଁ କହିଲା, 'ଆପଣ ନିଜର ସ୍ନେହ ଓ ପ୍ରେମରେ ମୋତେ କିଣିନେଇଛନ୍ତି । କିନ୍ତୁ ପ୍ରଥମେ ମୋର ବିବାହ ହୋଇଯିବାପାଇଁ ଦିଅନ୍ତୁ । ପିତା ତାଙ୍କର ବହୁ ଆକାଂକ୍ଷିତ କନ୍ୟାଦାନର ପୁଣ୍ୟ ଫଳ ପ୍ରଥମେ ପାଇଯାନ୍ତୁ । ତା'ପରେ ମୁଁ ଆପଣଙ୍କ ନିକଟକୁ ଆସିବି ।' ଧର୍ମଦତ୍ତ କିନ୍ତୁ ଏଥିରେ ଆଶ୍ୱସ୍ତ ହେଲାନାହିଁ । କହିଲା, 'ମୋର ହେବା ପୂର୍ବରୁ ମୋର ପ୍ରଣୟିନୀ ଅନ୍ୟ କାହାର ହେବା ମୁଁ ଚାହେଁ ନାହିଁ । ଗୋଟିଏ ଭ୍ରମର ମଧୁ ଚୋଷଣ କରିସାରିବା ପରେ ଅନ୍ୟ ଭ୍ରମର କ'ଣ ସେହି ପୁଷ୍ପ ନିକଟକୁ ଯାଏ ?'

ଧର୍ମଦତ୍ତର ଜିଦ୍‌ଖୋର ମନୋବୃତ୍ତି ଦେଖି ମଦନସେନା ବିଚଳିତ ଓ ଭୟଭୀତ ହୋଇପଡ଼ିଲା । ନିଜକୁ ତା'ଠାରୁ ମୁକ୍ତ କରିବାପାଇଁ କହିଲା, 'ତେବେ ବିବାହ ମାତ୍ରେ ମୁଁ ଆପଣଙ୍କ ନିକଟକୁ ଆସିବି ଓ ପରେ ପତି ନିକଟକୁ ଯିବି ।' ତଥାପି ଧର୍ମଦତ୍ତ ତା' କଥାରେ ପୂରା ବିଶ୍ୱାସ କରିପାରିଲା ନାହିଁ । ବହୁ କଷ୍ଟରେ ମଦନସେନା ରାଣ ଶପଥ ପ୍ରଦାନପୂର୍ବକ ସତ୍ୟ କରିବାରୁ ସେ ସେଠାରୁ ଫେରିଗଲା ।

ଭୀତତ୍ରସ୍ତା ମଦନସେନା ଧର୍ମଦତ୍ତଠାରୁ ମୁକ୍ତିପାଇ ଅତ୍ୟନ୍ତ ବିଚଳିତ ଭାବରେ ନିଜ ବାସଭବନରେ ଯାଇ ପ୍ରବେଶ କଲା । ବିବାହ ଦିବସ ଉପଗତ ହେବାରୁ ପିତା ଯଥାବିଧି କନ୍ୟାଦାନ କଲେ । ମଦନସେନା ପତିଙ୍କ ସହିତ ଶ୍ୱଶୁରାଳୟକୁ ଯାତ୍ରା କଲା । ଭୋଜିଭାତ ଓ ଆନନ୍ଦ ଉତ୍ସବରେ ଦିନଟି କଟିଗଲା । ସେ ନବବଧୂ ବେଶରେ ରାତ୍ରିର ଦ୍ୱିତୀୟ ପ୍ରହରରେ ଯାଇ ପତିଙ୍କ ଶୟନ କକ୍ଷରେ ପହଞ୍ଚିଲା । ସୁସଜ୍ଜିତ ପଲଙ୍କ ଉପରେ ସମୁଦ୍ରଦତ୍ତଙ୍କ ସହିତ ବସିଥିଲେ ସୁଦ୍ଧା ସେ ଆଲିଙ୍ଗନ ଚୁମ୍ବନ ଆଦିକୁ ସ୍ୱୀକାର କରିପାରୁ ନଥିଲା । ସମୁଦ୍ରଦତ୍ତ ସ୍ନେହପୂର୍ଣ୍ଣ ଚାଟୁବାକ୍ୟ ଦ୍ୱାରା ଅନୁନୟ ବିନୟ କରୁଥିବା ଦେଖି ତା'ର ଚକ୍ଷୁ ସଜଳ ହୋଇଉଠିଲା । ସମୁଦ୍ରଦତ୍ତ ଏଥିରେ କ୍ଷୁଣ୍ଣ ହୋଇ ଭାବିଲା ଯେ ସେ ମଦନସେନାର ମନୋମତ ପୁରୁଷ ନୁହେଁ । କହିଲା, 'ସୁନ୍ଦରି, ମୁଁ ଯଦି ତୁମର ମନୋମତ ନୁହେଁ, ତେବେ ତୁମ ନିକଟରେ ମୋର ମଧ୍ୟ କୌଣସି କାମନା ନାହିଁ । ଯେଉଁ ପୁରୁଷ ତୁମର ପ୍ରିୟ, ତୁମେ ତା' ନିକଟକୁ ଚାଲିଯାଇପାର ।'

ସ୍ୱାମୀଙ୍କ କଥାଶୁଣି ମଦନସେନା ମସ୍ତକନତ କରି ଧୀରସ୍ୱରରେ କହିଲା, 'ଆର୍ଯ୍ୟପୁତ୍ର, ଆପଣ ମୋର ପ୍ରାଣଠାରୁ ମଧ୍ୟ ଅଧିକ ପ୍ରିୟ । କିନ୍ତୁ ଆପଣଙ୍କ ନିକଟରେ ମୋର କିଛି କହିବାର ଅଛି । ଦୟାକରି ଆପଣ ମୋ କଥା ଶୁଣନ୍ତୁ । ଆପଣ ଆନନ୍ଦରେ ମୋତେ ଶପଥ ପୂର୍ବକ ଅଭୟ ଦାନ କଲେ ମୁଁ ସେହିକଥା ଆପଣଙ୍କ ନିକଟରେ ବ୍ୟକ୍ତ କରିପାରିବି ।'

ବହୁ ଅନୁନୟବିନୟ ଓ ଅନୁରୋଧ କ୍ରମେ ସମୁଦ୍ରଦତ୍ତ ଯେତେବେଳେ ବହୁକଷ୍ଟରେ ଶପଥ କଲା, ସେତେବେଳେ ଲଜ୍ଜା, ବିଷାଦ ଓ ଭୟର ସହିତ ମଦନସେନା କହିଲା, 'ଦିନେ ଯେତେବେଳେ ମୁଁ ଆମ ଗୃହର ପାର୍ଶ୍ୱରେ ଥିବା ଉଦ୍ୟାନ ମଧ୍ୟରେ ଏକାକିନୀ ଠିଆ ହୋଇଥିଲି ସେତେବେଳେ ମୋ ଭାଇର ଜଣେ ମିତ୍ର ମୋ ପ୍ରତି କାମାସକ୍ତ ହୋଇ ସେଠାରେ ଆସି ପହଞ୍ଚିଲେ । ମୋର ସମସ୍ତ ବାରଣ ସତ୍ତ୍ୱେ ସେ ଯେତେବେଳେ ଜିଦ୍ ଧରି ବସିଲେ ସେତେବେଳେ ମୁଁ ନିଜେ ଅପଖ୍ୟାତିରୁ ତ୍ରାହି ପାଇବାପାଇଁ ଏବଂ ପିତାଙ୍କୁ

ମଧ୍ୟ କନ୍ୟାଦାନର ଫଳ ଦେବାପାଇଁ ତାଙ୍କୁ କଥା ଦେଲି ଯେ ବିବାହ ପରେ ପ୍ରଥମେ ମୁଁ ତାଙ୍କ ନିକଟକୁ ଯିବି ଏବଂ ପରେ ସ୍ୱାମୀଙ୍କ ନିକଟକୁ ଆସିବି । ତେଣୁ ଆପଣ ମୋତେ ମୋର ସତ୍ୟରକ୍ଷା କରିବାପାଇଁ ଅନୁମତି ପ୍ରଦାନ କରନ୍ତୁ । ମୁଁ ତାଙ୍କ ନିକଟକୁ ଯାଇ ମୁହୂର୍ତ୍ତକ ମଧ୍ୟରେ ଫେରିଆସିବି । ଶୈଶବରୁ ମୁଁ ମୋର ବଚନରକ୍ଷା କରିଆସିଛି । ବର୍ତ୍ତମାନ ସତ୍ୟ ଭଙ୍ଗ କରିବାପାଇଁ ମୋତେ ବାଧ୍ୟ କରନ୍ତୁ ନାହିଁ ।'

ମଦନସେନାଙ୍କ ଅନୁରୋଧ ବଜ୍ରପାତ ପରି ସମୁଦ୍ରଦତ୍ତକୁ ଆହତ କଲା । କିନ୍ତୁ ସେ ମଧ୍ୟ ସତ୍ୟବଦ୍ଧ ଥିବା ଯୋଗୁଁ ଚିନ୍ତାକଲା, 'ପରପୁରୁଷ ପ୍ରତି ଆକୃଷ୍ଟା ସ୍ତ୍ରୀମାନଙ୍କୁ ଧିକ୍ । ଇଏତ ନିଶ୍ଚୟ ଯିବ ହିଁ ଯିବ । ମୁଁ କାହିଁକି ତାକୁ ସତ୍ୟଭଙ୍ଗ କରାଇବି ? ଏହା ସହିତ ମୋର ବିବାହ ହୋଇଛି । କିନ୍ତୁ ଏହା ପ୍ରତି ମୋର ଆଉ ଆସକ୍ତି କାହିଁକି ?'

ଏହା ଚିନ୍ତାକରି ସମୁଦ୍ରଦତ୍ତ ନିଜ ସ୍ତ୍ରୀକୁ ଯେଉଁଆଡ଼େ ଇଚ୍ଛା ସେଇଆଡ଼େ ଯିବାପାଇଁ ଅନୁମତି ଦେଲା । ମଦନସେନା ପତିଙ୍କ ପ୍ରତି ସସ୍ନେହ ଦୃଷ୍ଟିପାତ କରି ଶୟନ କକ୍ଷରୁ ନିର୍ଗତ ହେଲା । ବାହାରେ ଚନ୍ଦ୍ର ଜ୍ୟୋତ୍ସ୍ନା ବିଛାଡ଼ି ହୋଇପଡ଼ିଥାଏ । ହସହସ ମୁଖରେ ଦିଗଙ୍ଗନାମାନଙ୍କର ହସ୍ତଧାରଣ ପୂର୍ବକ ଚନ୍ଦ୍ର ଉଦୟାଚଳ ରୂପ ପ୍ରାସାଦ ଶିଖରୀ ଆରୋହଣ କରୁଥାନ୍ତି । ଗିରିଗୁହା ରୂପୀ ପ୍ରଣୟିନୀକୁ ଆଲିଙ୍ଗନ କରି ଅନ୍ଧକାର ଶୋଇଯାଇଥାଏ । ଭ୍ରମରମାନେ ନୀଳ ଓ ରକ୍ତ କଇଁଗୁଡ଼ିକୁ ବିବ୍ରତ କରୁଥାନ୍ତି । ମଦନସେନା ଏହିପରି ପରିବେଶରେ ମାର୍ଗ ଅତିକ୍ରମ କରୁଥାଏ ।

କିଛି ଦୂର ଯିବାପରେ ହଠାତ୍ ଗୋଟିଏ ଚୋର ଆସି ତାକୁ ସେଠାରେ ବାଧା ଦେଇ ତାର ପରିଚୟ ଓ ଏକାକୀ ଏପରି ଯିବାର ଉଦ୍ଦେଶ୍ୟ ଜିଜ୍ଞାସା କଲା । ମଦନସେନା ଡରିଯାଇ କହିଲା, 'ସେଥିରେ ତୁମର କ'ଣ ଅଛି । ମୋତେ ଛାଡ଼ । ମୋର ଏଠାରେ କାମ ଅଛି ।' ଚୋର କହିଲା 'ମୁଁ ତ ଚୋର, ମୋଠାରୁ ମୁକୁଳିବା କ'ଣ ସମ୍ଭବ ।' ମଦନସେନା ତାକୁ ନିଜର ଗହଣା ସବୁ ଦେଇ ଚାଲିଯିବା ପାଇଁ ଉଦ୍ୟତ ହେବାରୁ ସେ ପୁଣି କହିଲା, 'ସୁନ୍ଦରି, ମୁଁ ଏସବୁ ପଥରକୁ ନେଇ କ'ଣ କରିବି ? ତୋର ମୁଖ ତ ଚନ୍ଦ୍ରକାନ୍ତ ମଣି । ତୋର କେଶପାଶ ନାଗମଣି, କଟି ହୀରା, ଶରୀର ସୁବର୍ଣ୍ଣ, ହସ୍ତ ଓ ପାଦ ପଦ୍ମରାଗ ମଣି, ତୁ ତ ନିଜେ ଜଗତର ଆଭୂଷଣ । ତେଣୁ ଏପରି ଏକ ଚଳନ୍ତା ରତ୍ନପ୍ରତିମାକୁ ଛାଡ଼ିବା ମୋପକ୍ଷରେ କ'ଣ ଉଚିତ ହେବ ?'

ଚୋରର ମନୋଭାବ ଜାଣି ବିବଶ ମଦନସେନା ତା' ନିକଟରେ ନିଜର ସମସ୍ତ ବୃତ୍ତାନ୍ତ ପ୍ରକାଶ କଲା । ଶେଷରେ କହିଲା, 'କ୍ଷଣକପାଇଁ ତୁମେ ମୋତେ କ୍ଷମାକର । ମୁଁ

ମୋର ସତ୍ୟ ରକ୍ଷା କରି ତୁମ ନିକଟକୁ ଫେରିଆସୁଛି । ଏହିଠାରେ ହିଁ ତୁମେ ମୋର ପ୍ରତୀକ୍ଷା କରି ରହ । ମୁଁ କଦାପି ମୋର ସତ୍ୟଭଙ୍ଗ କରିବି ନାହିଁ ।' ମଦନସେନାକୁ ଏବଂ ତାର ସତ୍ୟରକ୍ଷା ଧର୍ମରେ ବିଶ୍ୱାସ କରି ଚୋର ଯିବାପାଇଁ ଅନୁମତି ଦେଲା ।

ଚୋରଟି ସେଠାରେ ଅପେକ୍ଷା କରିଥାଏ । ମଦନସେନା ଯାଇ ଧର୍ମଦତ୍ତ ନିକଟରେ ପହଞ୍ଚିଲା । ଏହି ନିର୍ଜନ ରାତ୍ରିରେ ଏକାକିନୀ ଆସିଥିବାରୁ ଧର୍ମଦତ୍ତ ମଦନସେନାର ସତ୍ୟବଦ୍ଧତାରେ ମୁଗ୍ଧ ଓ ବିସ୍ମିତ ହେଲା । ତା'ଠାରୁ ସମସ୍ତ ବିଷୟ ଜାଣି କିଛି ସମୟ ଚିନ୍ତା କରିବା ପରେ ଧର୍ମଦତ୍ତ ତାକୁ ଆଶ୍ୱାସିତ କରି କହିଲା, 'ତୋର ସତ୍ୟ ରକ୍ଷାରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ । ତୁ ବର୍ତ୍ତମାନ ଅନ୍ୟର ସ୍ତ୍ରୀ । ତେଣୁ ପରସ୍ତ୍ରୀଠାରେ ମୋର ବା ପ୍ରୟୋଜନ କ'ଣ ? କେହି ଦେଖିବା ପୂର୍ବରୁ ଯେଉଁ ରାସ୍ତାରେ ଆସିଥିଲୁ ସେହି ରାସ୍ତାରେ ପୁଣି ଫେରିଯାଅ ।'

ଧର୍ମଦତ୍ତଠାରୁ ଏହିପରି ମୁକ୍ତିଲାଭ କରି ମଦନସେନା ରାସ୍ତାରେ ପ୍ରତୀକ୍ଷା କରିଥିବା ଚୋର ନିକଟରେ ଆସି ପହଞ୍ଚିଲା । ଚୋରର ଜିଜ୍ଞାସା କ୍ରମେ ସେ ଧର୍ମଦତ୍ତ ସହିତ ହୋଇଥିବା ସମସ୍ତ କଥାବାର୍ତ୍ତାର ବିବରଣୀ ତାକୁ କହି ଶୁଣାଇଲା । ଚୋର ଏଥିରେ ସନ୍ତୁଷ୍ଟ ହୋଇ କହିଲା, 'ଯଦି ଏପରି କଥା, ତେବେ ମୁଁ ମଧ୍ୟ ତୋତେ ଛାଡ଼ି ଦେଉଛି । ତୁ ନିଜର ଅଳଙ୍କାରଗୁଡ଼ିକୁ ନେଇ ଘରକୁ ଫେରିଯା' । ନିଜର ବଚନ ରକ୍ଷା କରିଥିବାଯୋଗୁଁ ମୁଁ ତୋର ଅମଙ୍ଗଳ ଚାହେଁ ନାହିଁ ।' ଚୋର ଏହା କହିବା ସଙ୍ଗେସଙ୍ଗେ ତାକୁ ଅନ୍ୟ ବିପଦରୁ ରକ୍ଷା କରିବାପାଇଁ ତା' ସହିତ ଘର ପର୍ଯ୍ୟନ୍ତ ଗଲା । ମଦନସେନା ନିଜର ସତୀତ୍ୱ ରକ୍ଷା କରିଥିବାଯୋଗୁଁ ପ୍ରସନ୍ନତା ପୂର୍ବକ ସ୍ୱାମୀଙ୍କ ସମ୍ମୁଖରେ ଯାଇ ଉପସ୍ଥିତ ହେଲା । ସମୁଦ୍ରଦତ୍ତଙ୍କ ପ୍ରଶ୍ନର ଉତ୍ତର କ୍ରମେ ସେ ସମଗ୍ର ବୃତ୍ତାନ୍ତ ତାଙ୍କୁ କହି ଶୁଣାଇଲା । ସମୁଦ୍ରଦତ୍ତ ମଧ୍ୟ ମଦନସେନାର ମୁଖମଣ୍ଡଳର ଜ୍ୟୋତି ମ୍ଳାନ ହୋଇନଥିବା, ଶରୀରରେ ସମ୍ଭୋଗର ଚିହ୍ନ ନଥିବା, କେଶପାଶ ବନ୍ଧନମୁକ୍ତ ହୋଇନଥିବା ଏବଂ ତାର ହୃଦୟ ଓ ମନ ବିଶୁଦ୍ଧ ଥିବା ଦେଖି ତାକୁ ଆଦରରେ ଗ୍ରହଣ କଲା । ଏହି ଅଖଣ୍ଡିତ ଚରିତ୍ରବତୀ, ସତ୍ୟପାଳନ ତତ୍ପରା ଏବଂ ପତିବ୍ରତା ମଦନସେନା ସହିତ ସମୁଦ୍ରଦତ୍ତ ବହୁଦିନ ପର୍ଯ୍ୟନ୍ତ ଆନନ୍ଦରେ ଗୃହସ୍ଥର ପବିତ୍ର ଜୀବନ ନିର୍ବାହ କରିବାକୁ ଲାଗିଲା ।''

ଶ୍ମଶାନ ଭୂମିର ନିର୍ଜନତା ମଧ୍ୟରେ ଏହିପରି ଗୋଟିଏ କଥା ଶୁଣାଇ ବେତାଳ ପ୍ରଶ୍ନ କଲା, ''ରାଜନ୍, ଏ ତିନିଜଣଙ୍କ ମଧ୍ୟରୁ ଅଧିକ ତ୍ୟାଗ କାହାର ? ବଣିକ୍‌ପୁତ୍ର ଧର୍ମଦତ୍ତର ନା ସମୁଦ୍ରଦତ୍ତର ନା ସେହି ଚୋରର । କାହାର ତ୍ୟାଗ ତୁମ ମତରେ

ସର୍ବାଧିକ ? ଜାଣିଶୁଣି ତୁମେ ଯଦି ମୌନ ରହ ତେବେ ତୁମର ମସ୍ତକ ଶତଧାବିଦୀର୍ଣ୍ଣ ହେବ ।''

ରାଜା ତ୍ରିବିକ୍ରମସେନ ଉତ୍ତର ଦେବାପାଇଁ ବାଧ ହେଲେ–''ସର୍ବାଧିକ ତ୍ୟାଗୀ ହେଉଛି ସେହି ଚୋର; ଦୁଇ ବଣିକ ପୁତ୍ର ନୁହଁନ୍ତି । ଏପରି ଏକ ଗୁଣଶାଳିନୀ ସ୍ତ୍ରୀକୁ ବିବାହ କରି ମଧ ସମୁଦ୍ରଦତ୍ତ ତାକୁ ପରିତ୍ୟାଗ କରିବାପାଇଁ ପଶ୍ଚାତ୍‌ପଦ ହୋଇନଥିଲା । ସେ ନିଜର ସ୍ତ୍ରୀକୁ ଅନ୍ୟପୁରୁଷ ପ୍ରତି ଆସକ୍ତ ଦେଖି ଅବଶ୍ୟ କିପରି ଆପଣେଇ ନେଇଥାନ୍ତା ? ଅନ୍ୟ ବଣିକ ଯୁବକର ଆବେଗ ସମୟକ୍ରମେ ମନ୍ଦୀଭୂତ ହୋଇଯାଇଥିଲା । ପୁଣି ମଦନସେନାର ବିବାହିତ ପତି ତା' ସମ୍ପର୍କରେ ସବୁକିଛି ଜାଣି ପରଦିନ ରାଜାଙ୍କ ଠାରେ ଅଭିଯୋଗ କରିବାର ଭୟ ମଧ ଥିଲା । ତେଣୁ ସେ ମଦନସେନାକୁ ଛାଡ଼ିଦେଇଥିଲା । କିନ୍ତୁ ଚୋରର କାହା ପ୍ରତି ଭୟ ନଥିଲା । ସେ ଗୋପନରେ ପାପକର୍ମରେ ଲିପ୍ତ ଥିଲା । ବହୁମୂଲ୍ୟ ରତ୍ନାଳଙ୍କାର ସହିତ ସୁନ୍ଦରୀ ସ୍ତ୍ରୀକୁ ତ୍ୟାଗ କରି ସେ ପ୍ରକୃତ ତ୍ୟାଗୀର ପରିଚୟ ଦେଇଅଛି । ତେଣୁ ତାକୁ ହିଁ ସର୍ବଶ୍ରେଷ୍ଠ ତ୍ୟାଗୀ ବୋଲି ଗ୍ରହଣ କରାଯିବ ।''

ରାଜାଙ୍କ କଥାରେ ବେତାଳ ଯାଇ ପୁଣି ଶିଂଶପା ବୃକ୍ଷର ଶାଖାରେ ଓହଳିଲା । ରାଜା ମଧ ଧୈର୍ଯ୍ୟରହିତ ନହୋଇ ପୁଣି ତାକୁ ଆଣିବାପାଇଁ ଚାଲିଲେ ।

# ଅଷ୍ଟାଦଶ ତରଙ୍ଗ

## ଏକାଦଶ ବେତାଳ : ରାଜା ଧର୍ମଧ୍ୱଜ କଥା

ରାଜା ପୁଣି ଶିଂଶପା ବୃକ୍ଷ ନିକଟକୁ ଯାଇ ଶବଟିକୁ କାନ୍ଧରେ ଉଠାଇଲେ । ଭିକ୍ଷୁ ନିକଟକୁ ଯାଉଥିବା ରାଜାଙ୍କୁ ବେତାଳ କହିଲା–

"ରାଜନ୍, ଏଥର ତୁମକୁ ଗୋଟିଏ ବିଚିତ୍ର କଥା ଶୁଣାଇବି, ଶ୍ରବଣ କର ।

ପୁରାକଳରେ ଧର୍ମଧ୍ୱଜ ବୋଲି ଜଣେ ରାଜା ଉଜ୍ଜୟିନୀରେ ରାଜତ୍ୱ କରୁଥିଲେ । ସେ ବିବାହ କରିଥିବା ତିନୋଟି ରାଜ୍ୟର ରାଜକନ୍ୟା ଥିଲେ ତାଙ୍କର ପ୍ରିୟତମା ରାଣୀ । ସେମାନଙ୍କ ମଧ୍ୟରୁ ଜଣେ ଥିଲେ ଇନ୍ଦୁଲେଖା, ଅନ୍ୟଜଣେ ତାରାବଳୀ ଏବଂ ତୃତୀୟ ରାଣୀଙ୍କ ନାମ ଥିଲା ମୃଗାଙ୍କବତୀ । ଏମାନେ ରୂପରେ କେହି କାହାଠାରୁ କମ୍ ନଥିଲେ । ସମସ୍ତ ଶତ୍ରୁଙ୍କୁ ପରାଜିତ କରି ରାଜା ଏହି ତିନିଜଣ ରାଣୀଙ୍କ ସହିତ ସୁଖପୂର୍ବକ ବିହାର କରୁଥାନ୍ତି ।

ରାଜ୍ୟରେ ଏକଦା ବସନ୍ତ ଉତ୍ସବ ପାଳିତ ହେଉଥାଏ । ଏହି ଉତ୍ସବରେ ଯୋଗ ଦେବାପାଇଁ ରାଜା ରାଣୀମାନଙ୍କ ସହିତ ପ୍ରମୋଦ ଉଦ୍ୟାନରେ ପ୍ରବେଶ କଲେ । ଉଦ୍ୟାନଟି ମିତ୍ର ବସନ୍ତଦ୍ୱାରା ସଜ୍ଜିତ କନ୍ଦର୍ପର ଧନୁପରି ମନେହେଉଥିଲା । ପୁଷ୍ପଭାରରେ ନମ୍ରୀଭୂତ ଲତାଗୁଡ଼ିକ ଧନୁର ହୁଳପରି ଏବଂ ସେଗୁଡ଼ିକର ଚତୁର୍ଦ୍ଦିଗରେ ଗୁଞ୍ଜରଣ କରି ଘୂରିବୁଲୁଥିବା ଭ୍ରମର ସବୁ ଧନୁର ଗୁଣ ପରି ଦେଖାଯାଉଥିଲେ । କନ୍ଦର୍ପର ନିର୍ଦ୍ଦେଶରେ ସତେ ଯେପରି ଦେବରାଜ ଇନ୍ଦ୍ରଙ୍କ ତୁଲ୍ୟ ରାଜାଙ୍କ ମନୋରଞ୍ଜନପାଇଁ ଉଚ୍ଚ ବୃକ୍ଷଶାଖାରୁ କୋକିଳମାନେ ପଞ୍ଚମ ତାନରେ ମଧୁର ସଙ୍ଗୀତ ଗାନ କରୁଥିଲେ । ପୁଷ୍ପଗୁଡ଼ିକରୁ ଝରୁଥିବା ପୁଷ୍ପମଧୁ ରାଜାଙ୍କର ଥିଲା ଅତ୍ୟନ୍ତ ପ୍ରିୟ । ତାହା କାମୋଦ୍ରେକ ପାଇଁ ଅତ୍ୟନ୍ତ ଅନୁକୂଳ ଥିଲା । ରାଣୀମାନେ ପାନ କରିଥିବା ସେହି ମଦିରାର ଅବଶିଷ୍ଟ ଭାଗ ଗ୍ରହଣ କରି ରାଜା ଅତ୍ୟନ୍ତ ଆନନ୍ଦଲାଭ କରୁଥିଲେ । ତାହା ରାଣୀମାନଙ୍କ ନିଶ୍ୱାସରେ ସୁଗନ୍ଧିତ ଏବଂ ଅଧର ରାଗରେ ରଞ୍ଜିତ ଥିଲା ।

ରାଜା କ୍ରୀଡ଼ା ଅବସରରେ ଇନ୍ଦୁଲେଖାଙ୍କ କେଶପାଶକୁ ଟାଣିବାକୁ ଲାଗିଲେ । ରାଣୀଙ୍କ କର୍ଣ୍ଣଭୂଷଣ ପଦ୍ମଫୁଲଟି ଏଥିରେ ଛିଣ୍ଡିଯାଇ ତାଙ୍କ କୋଳରେ ଯାଇ ପଡ଼ିଲା । ପୁଷ୍ପଟିର ଆଘାତରେ ରାଣୀ ଆର୍ତ୍ତଚିତ୍କାର କରି ମୂର୍ଚ୍ଛା ଗଲେ । ରାଜା ଏବଂ ଅନୁଚରମାନେ ଏଥିରେ ବିକଳ ଓ ବିବ୍ରତ ହୋଇ ପ୍ରାଥମିକ ଚିକିତ୍ସା ସ୍ୱରୂପ ତାଙ୍କ ମୁହଁରେ ଜଳ ସିଞ୍ଚନ କରି ଚାମର ବ୍ୟଜନ କରିବାକୁ ଲାଗିଲେ । ରାଣୀ ଚେତନା ଫେରିପାଇବାରୁ ରାଜା ପ୍ରିୟତମା ରାଣୀଙ୍କୁ ରାଜପ୍ରାସାଦ ମଧ୍ୟକୁ ନେଇଆସି ବୈଦ୍ୟମାନଙ୍କ ଦ୍ୱାରା କ୍ଷତସ୍ଥାନର ଚିକିତ୍ସା କରାଇଲେ । ନିଜ ଦୁଷ୍କୃତିରୁ ସୃଷ୍ଟି ହୋଇଥିବା ରାଣୀଙ୍କ କ୍ଷତ ସ୍ଥାନରେ ନିଜେ ସ୍ୱହସ୍ତରେ ବ୍ରଣ ପଟିକା ବାନ୍ଧିବାଦ୍ୱାରା ରାତି ସୁଦ୍ଧା ରାଣୀ ସମ୍ପୂର୍ଣ୍ଣ ଆରୋଗ୍ୟଲାଭ କଲେ ।

ଇନ୍ଦୁଲେଖାଙ୍କୁ ସୁସ୍ଥ ଦେଖି ରାଜା ଦ୍ୱିତୀୟାରାଣୀ ତାରାବଳୀଙ୍କ ସହିତ ବସନ୍ତ ଉତ୍ସବ ଉପଭୋଗପାଇଁ ଚନ୍ଦ୍ରପ୍ରାସାଦ ମହଲରେ ଯାଇ ଉପସ୍ଥିତ ହେଲେ । ତାରାବଳୀ ରାଜାଙ୍କ ସହିତ ବିଳାସ କ୍ରୀଡ଼ା କରି ସେଠାରେ ତାଙ୍କ କୋଳରେ ହିଁ ଶୋଇଗଲେ । ଚନ୍ଦ୍ର ଧୀରେ ଧୀରେ ଉପରକୁ ଉଠିବାରୁ ଚନ୍ଦ୍ରକିରଣ ଗବାକ୍ଷ ମାର୍ଗରେ ଆସି ତାଙ୍କ ଶରୀରରେ ପଡ଼ିବାକୁ ଲାଗିଲା । ସୁପ୍ତ ଅବସ୍ଥାରେ ରାଣୀଙ୍କ ଅଙ୍ଗରୁ ପରିଧେୟ ବସ୍ତ୍ରଟି ଖସି ପଡ଼ିଥାଏ । ସେଠାରେ ଚନ୍ଦ୍ରକିରଣ ପଡ଼ିବା ମାତ୍ରେ ରାଣୀ ଆର୍ତ୍ତଚିତ୍କାର କରି ଉଠିବସିଲେ । ଜଳିଲା ଜଳିଲା କହି ସେ ସେହି ସ୍ଥାନଟିକୁ ଘଷୁଥାନ୍ତି । ଏଥିରେ ରାଜାଙ୍କର ମଧ୍ୟ ନିଦ୍ରାଭଙ୍ଗ ହେଲା । ସେ ବିବ୍ରତ ହୋଇ ଦେଖିଲା ବେଳକୁ ରାଣୀଙ୍କର ଯେଉଁ ଅଙ୍ଗରେ ଚନ୍ଦ୍ରକିରଣ ପଡୁଥିଲା ସେଠାରେ ଫୋଟକା ସବୁ ହୋଇଯାଇଛି । ରାଣୀଙ୍କଠାରୁ ସେ ଜାଣିପାରିଲେ ଯେ ତାଙ୍କ ଶରୀରର ଅନାବୃତ ଅଂଶରେ ଚନ୍ଦ୍ରକିରଣ ପଡ଼ିବାଦ୍ୱାରା ଏ ଅବସ୍ଥା ସୃଷ୍ଟି ହୋଇଛି । ସେ ବିକଳରେ କ୍ରନ୍ଦନ କରୁଥାନ୍ତି । ରାଜା ପରିଚାରିକାମାନଙ୍କୁ ଡକାଇ ଆଣି ରାଣୀଙ୍କର ପ୍ରାଥମିକ ଉପଚାର କରାଇଲେ । ସେମାନେ ବିକଳ ଓ ବିହ୍ୱଳ ଭାବରେ ତାରାବଳୀଙ୍କୁ ପଦ୍ମପତ୍ରର ଶଯ୍ୟାରେ ଶୁଆଇ ସେହି ବିସ୍ଫୋଟକ ଉପରେ ଚନ୍ଦନର ପ୍ରଲେପ ଦେଉଥାନ୍ତି । ଅନ୍ତଃପୁରରେ ହାହାକାର ପଡ଼ିଯାଇଥାଏ ।

ଏହା ମଧ୍ୟରେ ଏସବୁ କୋଳାହଳ ଶୁଣି ତୃତୀୟାରାଣୀ ମୃଗାଙ୍କବତୀଙ୍କ ନିଦ୍ରାଭଙ୍ଗ ହୋଇଥାଏ । ସେ ରାଜାଙ୍କ ନିକଟକୁ ଆସିବାପାଇଁ ନିଜ ମହଲରୁ ବାହାରିଲେ । ଏକାକିନୀ ରାତ୍ରିର ନିର୍ଜନତା ମଧ୍ୟରେ ଆସୁଥିବା ବେଳେ ନିକଟବର୍ତ୍ତୀ କୌଣସି ବହିଃସ୍ଥ କୁଟୀରରୁ ଧାନ କୁଟିବାର ଶବ୍ଦ ରାଣୀଙ୍କ କାନରେ ଆସି ପଡ଼ିଲା । ସେ ''ମାଲୋ ମରିଗଲି'' ବୋଲି କହି ବେଦନାରେ ଆର୍ତ୍ତଚିତ୍କାର କରି ରାସ୍ତା ମଝିରେ ହିଁ ବସିଗଲେ । ପରିଚାରିକାମାନଙ୍କ ଦ୍ୱାରା ସେ କଷ୍ଟ କଷ୍ଟରେ ସେଠାରୁ ଅନ୍ତଃପୁର ମଧ୍ୟକୁ ଫେରିଆସିଲେ ।

ବେଦନାଗ୍ରସ୍ତ ରାଣୀ ହାତ ଦୁଇଟି ଚାପିଧରି ନିଜର ଶଯ୍ୟା ଉପରେ ପଡ଼ିଗଲେ । ପରିଚାରିକାମାନେ ବିକଳ ଭାବେ ଏହାର କାରଣ ଜାଣିବାକୁ ଯାଇ ଦେଖିଲେ ଯେ ରାଣୀଙ୍କ ହାତ ପାପୁଲିରେ କଳାଦାଗ ସବୁ ଦେଖାଯାଉଛି । ମନେହେଉଛି କମଳ ପୁଷ୍ପ ଉପରେ ଭ୍ରମରମାନେ ଆଶ୍ରୟ ନେଇଛନ୍ତି । ସେମାନେ ରାଜାଙ୍କ ନିକଟରେ ଯାଇ ଏହା ନିବେଦନ କଲେ । ରାଜା ଧର୍ମଧ୍ୱଜ ବିବ୍ରତଭାବେ ଦୌଡ଼ିଆସି ରାଣୀଙ୍କ ଏ ଅବସ୍ଥା ଦର୍ଶନ କଲେ । ତାଙ୍କର ଅତ୍ୟନ୍ତ ଦୁଃଖ ଜାତ ହେଲା । ରୋଗିଣୀ ରାଣୀଙ୍କ ଠାରୁ ଏହାର କାରଣ ଜାଣିଲେ ଯେ ଧାନକୁଟା ଯାଉଥିବାର ମୂଷଳ ପାହାରର ଶବ୍ଦ ଶୁଣିବା ମାତ୍ରେ ତାଙ୍କ ହାତରେ ଏହିପରି ଚିହ୍ନସବୁ ଦେଖାଦେଲା । ରାଜା ଆଶ୍ଚର୍ଯ୍ୟ ଓ ବିଷାଦଗ୍ରସ୍ତ ହୋଇ ରାଣୀଙ୍କ କରକମଳରେ ଦାହପ୍ରଲେପ ଲଗାଇବାକୁ ଲାଗିଲେ ।

ଏ ସମୟରେ ସେ ଚିନ୍ତା କରୁଥାନ୍ତି ଯେ ତାଙ୍କର ଜଣେ ରାଣୀ ପଦ୍ମପୁଷ୍ପର ଆଘାତରେ ଆହତ ହେଲେ, ଅନ୍ୟ ଜଣେ ରାଣୀଙ୍କର ଶରୀର ଚନ୍ଦ୍ର କିରଣରେ ଜଳିଗଲା ଏବଂ ଏହି ତୃତୀୟ ରାଣୀଙ୍କ ହାତ ମୂଷଳ ପାହାରର ଶବ୍ଦରେ ହିଁ କ୍ଷତବିକ୍ଷତ ହୋଇପଡ଼ିଲା । ବିଧାତାର ବିଡ଼ମ୍ବନା ଏହି ତିନିଜଣଯାକ ରାଣୀଙ୍କପାଇଁ ସେମାନଙ୍କ ଆଭିଜାତ୍ୟ ଏବଂ ସୁକୁମାରତା ଶେଷରେ ଗୋଟିଏ ଗୋଟିଏ ଦୋଷରେ ହିଁ ପରିଣତ ହୋଇଛି । ଏହିପରି ଚିନ୍ତାକରି ରାଜା ଅନ୍ତଃପୁର ମଧ୍ୟରେ ପଦଚାରଣା କରୁଥାନ୍ତି । ରାତିର ତିନୋଟି ପ୍ରହର ତାଙ୍କ ପାଇଁ ତିନୋଟି ଯୁଗ ବୋଲି ମନେହେଲା । ପ୍ରଭାତରୁ ରାଜା ବୈଦ୍ୟ ଓ ଶୈଲ୍ୟ ବିଶାରଦମାନଙ୍କୁ ଡକାଇ ଆଣି ରାଣୀମାନଙ୍କର ଚିକିତ୍ସା କରାଇଲେ । ଧୀରେଧୀରେ ସେମାନେ ଆରୋଗ୍ୟ ଲାଭ କରିବାରୁ ରାଜାଙ୍କ ଦୁଶ୍ଚିନ୍ତା ଦୂର ହେଲା । ସେ ନିଶ୍ଚିନ୍ତ ହେଲେ ।''

ସ୍କନ୍ଧସ୍ଥିତ ବେତାଳ ଏହିପରି ଏକ ବିଚିତ୍ର କଥା ଶୁଣାଇ ରାଜା ତ୍ରିବିକ୍ରମ ସେନଙ୍କୁ ପ୍ରଶ୍ନ କଲା, ''ରାଜା, ଏବେ କୁହ ଏ ତିନିଜଣ ରାଣୀଙ୍କ ମଧ୍ୟରୁ କିଏ ସବୁଠାରୁ ଅଧିକ ସୁକୁମାରୀ ? ଜାଣିଶୁଣି ମୌନ ରହିଲେ ଅଭିଶାପର ଭାଗୀ ହେବ ।''

ରାଜା ଉତ୍ତର ଦେଲେ, ''ଏଥିରେ ନଜାଣିବାର କ'ଣ ଅଛି ! ସବୁଠାରୁ ସୁକୁମାରୀ ତ ମୃଗାଙ୍କବତୀ । ସେ ମୂଷଳକୁ ନଦେଖି ମଧ୍ୟ ତାର ଶବ୍ଦରେ କ୍ଷତବିକ୍ଷତ ହୋଇପଡ଼ିଲା । ଅନ୍ୟଦୁଇଜଣ ତ ପଦ୍ମପୁଷ୍ପ ଓ ଚନ୍ଦ୍ରକିରଣର ସ୍ପର୍ଶରେ ବେଦନାଗ୍ରସ୍ତ ହୋଇଛନ୍ତି । ସେମାନଙ୍କୁ ମୃଗାଙ୍କବତୀ ସହିତ କିପରି ତୁଳନା କରିବା ?''

ବେତାଳକୁ ଏପରି କହୁଥିବା ବେଳେ ସେ ରାଜାଙ୍କ ସ୍କନ୍ଧଚ୍ୟୁତ ହୋଇ ନିଜ ସ୍ଥାନକୁ ଫେରିଗଲା । ଦୃଢ଼ପ୍ରତିଜ୍ଞ ରାଜା ପୂର୍ବପରି ପୁଣି ତାକୁ ଆଣିବାପାଇଁ ଅଗ୍ରସର ହେଲେ ।

# ଊନବିଂଶ ତରଙ୍ଗ

## ଦ୍ୱାଦଶ ବେତାଳ : ଯଶଃକେତୁ କଥା

ରାଜା ତ୍ରିବିକ୍ରମସେନ ଶିଂଶପା ବୃକ୍ଷରୁ ବେତାଳକୁ ଧରି ପୁଣି ଶ୍ମଶାନ ମାର୍ଗରେ ଚାଲିଲେ । ବେତାଳ ତାଙ୍କୁ ଚୁପ୍‌ଚାପ୍ ଚାଲିଥିବା ଦେଖି ପୁଣି କହିବା ଆରମ୍ଭ କଲା—

''ରାଜା, ତୁମେ ଆଦୌ ଉଦ୍‌ବେଗ ପ୍ରକାଶ ନକରି ନିଜର କାର୍ଯ୍ୟ କରିଚାଲିଥିବା ଯୋଗୁଁ ମୁଁ ଅତ୍ୟନ୍ତ ଆନନ୍ଦିତ । ତୁମକୁ ମଧ୍ୟ ଆନନ୍ଦ ଦେବାପାଇଁ ଏକ ରୋଚକ କଥା କହୁଛି, ଶୁଣ—

ପୁରାକାଳରେ ଯଶଃକେତୁ ନାମରେ ଜଣେ ରାଜା ଅଙ୍ଗଦେଶକୁ ଶାସନ କରୁଥିଲେ । ସେ ବୋଧହୁଏ ରୂପରେ ଶିବଙ୍କ କୋପାନଳରୁ ବର୍ତ୍ତିଯାଇଥିବା ଅନ୍ୟଜଣେ କାମଦେବ । ରାଜା ନିଜ ବାହୁବଳରେ ସମସ୍ତ ଶତ୍ରୁଙ୍କୁ ନିପାତ କରିଥିଲେ । ଇନ୍ଦ୍ରଙ୍କ ବୃହସ୍ପତି ପରି ତାଙ୍କର ମଧ୍ୟ ଜଣେ ଅତ୍ୟନ୍ତ ବୁଦ୍ଧିମାନ୍ ଓ ଶାସ୍ତ୍ରଜ୍ଞ ମନ୍ତ୍ରୀ ଥିଲେ । ତାଙ୍କ ନାମ ଥିଲା ଦୀର୍ଘଦର୍ଶୀ । ରାଜା ମନ୍ତ୍ରୀଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ବୟସ ଓ ରୂପ ମଦରେ ଉନ୍ମତ୍ତ ହୋଇ କେବଳ ଭୋଗ ବିଳାସରେ ନିମଜ୍ଜିତ ରହିଥାନ୍ତି । ଅନ୍ତଃପୁରରୁ ରାଜସଭାକୁ ଆସିବା ତାଙ୍କ ପକ୍ଷେ ସମ୍ଭବ ହେଉନଥାଏ । ସେ ହିତାକାଂକ୍ଷୀମାନଙ୍କ ଉପଦେଶ ଅପେକ୍ଷା ନର୍ତ୍ତକୀମାନଙ୍କର ମଧୁର ସଙ୍ଗୀତ ଶୁଣିବା ଶ୍ରେୟସ୍କର ମନେକରୁଥିଲେ । ଗବାକ୍ଷର ଛିଦ୍ର ଦେଇ ସେ ନୃତ୍ୟ ଓ ଉତ୍ସବ ଉପଭୋଗ କରୁଥିଲେ । କିନ୍ତୁ ରାଜ୍ୟଭିତରେ ଯେ ବହୁ ଛିଦ୍ର ସୃଷ୍ଟି ହେଲାଣି, ତା' ପ୍ରତି ସେ ଧ୍ୟାନ ଦେଉନଥିଲେ ।

ଅବଶ୍ୟ ମନ୍ତ୍ରୀ ଦୀର୍ଘଦର୍ଶୀ ରାଜାଙ୍କର ସମସ୍ତ ଦାୟିତ୍ୱ ନିଜ ସ୍କନ୍ଧକୁ ନେଇଥିଲେ । ଏଥିପାଇଁ ତାଙ୍କୁ ଦିନରାତି ପରିଶ୍ରମ କରିବାକୁ ପଡୁଥିଲା । ତଥାପି ଲୋକାପବାଦ ଦୁର୍ନିବାର । ଦୁଷ୍ଟ ପ୍ରକୃତି ନାଗରିକମାନେ ମନ୍ତ୍ରୀଙ୍କ ଅପଯଶ ରଟନା କରି କହୁଥାନ୍ତି ଯେ

ଯଶଃକେତୁ ନାମକୁ ମାତ୍ର ରାଜା ହୋଇ ରହିଛନ୍ତି । ମନ୍ତ୍ରୀ ତାଙ୍କୁ ଭୋଗବିଳାସ ମଧ୍ୟରେ ନିମଜ୍ଜିତ କରାଇ ନିଜେ ଆଜିକାଲି ରାଜ୍ୟଶ୍ରୀ ଭୋଗ କରୁଛନ୍ତି । ରାଜ୍ୟରେ ପ୍ରଚାରିତ ଏହି ଅପବାଦ ଦୀର୍ଘଦର୍ଶୀଙ୍କ ମଧ୍ୟ କର୍ଣ୍ଣଗୋଚର ହେଲା ।

ଦୀର୍ଘଦର୍ଶୀ ଜନାପବାଦ ଶୁଣି ଦୁଃଖିତ ହେଲେ । ଦିନେ ବ୍ୟଥିତ କଣ୍ଠରେ ସେ ନିଜର ସ୍ତ୍ରୀଙ୍କୁ ଦୁଃଖ ଜଣାଇ କହିଲେ, 'ପ୍ରିୟେ, ରାଜା ଯଦିଓ ବିଳାସ ଭିତରେ ବୁଡ଼ି ରହିଛନ୍ତି ଏବଂ ମୁଁ ରାଜ୍ୟ ରକ୍ଷାପାଇଁ ତାଙ୍କର କାର୍ଯ୍ୟଭାର କରିଚାଲିଛି ତଥାପି ଲୋକମାନେ କହୁଛନ୍ତି ଯେ ମୁଁ ତାଙ୍କ ରାଜ୍ୟ ଅପହରଣ କରିନେବାପାଇଁ ଚେଷ୍ଟା କରୁଛି । ଜନାପବାଦ ମିଥ୍ୟା ହେଲେ ସୁଦ୍ଧା ଅନେକ ସମୟରେ ବଡ଼ ଭୟଂକର । ଏହି ଜନାପବାଦଯୋଗୁଁ ରାମଚନ୍ଦ୍ର ମଧ୍ୟ ସୀତାଙ୍କୁ ପରିତ୍ୟାଗ କରିଥିଲେ । ତେଣୁ ମୁଁ ଏବେ କଣ କରିବି କିଛି ଚିନ୍ତା କରିପାରୁନାହିଁ ।' ସ୍ୱାମୀଙ୍କ ଠାରୁ ଏହା ଶୁଣି ପତ୍ନୀ ମେଧାବିନୀ ଧୀର ପ୍ରଶାନ୍ତ ସ୍ୱରରେ ପ୍ରସ୍ତାବ ଦେଲେ, 'ଆର୍ଯ୍ୟପୁତ୍ର, କୌଣସି ଉପାୟରେ ରାଜାଙ୍କଠାରୁ ଅନୁମତି ନେଇ ଆପଣ କିଛିଦିନ ସକାଶେ ତୀର୍ଥଯାତ୍ରାରେ ଚାଲିଯିବା ଉଚିତ ହେବ । ଏହିପରି ନିସ୍ପୃହତା ପ୍ରକାଶ କଲେ ଆପଣଙ୍କ ସମ୍ପର୍କରେ ଯେଉଁ ଲୋକାପବାଦ ଚାଲିଛି ତାହା ଦୂର ହୋଇଯିବ । ପୁଣି ଆପଣଙ୍କ ଅନୁପସ୍ଥିତିରେ ରାଜା ମଧ୍ୟ ନିଜର କାର୍ଯ୍ୟଭାର ସମ୍ଭାଳିବାପାଇଁ ବାଧ୍ୟ ହେବେ । ଧୀରେଧୀରେ ରାଜାଙ୍କ ଭୋଗତୃଷ୍ଣା ଦୂର ହେବ । ଆପଣ ସେତେବେଳେ ଫେରିଆସି ପୁଣି ମନ୍ତ୍ରୀପଦ ଗ୍ରହଣ କଲେ କେହି ଆପଣଙ୍କୁ ଦୋଷ ଦେବେ ନାହିଁ ।'

ପତ୍ନୀଙ୍କ ପ୍ରସ୍ତାବକୁ ମନ୍ତ୍ରୀ ଉଚିତ ମନେକଲେ । ସେ ରାଜାଙ୍କ ନିକଟକୁ ଯାଇ ପ୍ରସଙ୍ଗ ଛଳରେ କହିଲେ, 'ମହାରାଜ୍, ମୋତେ କିଛିଦିନପାଇଁ ରାଜକାର୍ଯ୍ୟରୁ ଅବସର ଦିଅନ୍ତୁ । ମୁଁ ତୀର୍ଥ ଯାତ୍ରାରେ ଯାଇ ଅବିଳମ୍ବେ ଫେରିଆସିବି । ଧର୍ମପ୍ରତି ମୋର କାହିଁକି ଆଗ୍ରହ ଧୀରେ ଧୀରେ ବଢ଼ିବାରେ ଲାଗିଛି ।' ରାଜା ଯଶଃକେତୁ ମନ୍ତ୍ରୀଙ୍କୁ ବାରଣ କରି କହିଲେ, 'ଆପଣ ଏପରି କରନ୍ତୁ ନାହିଁ । ବିନା ତୀର୍ଥଯାତ୍ରାରେ ମଧ୍ୟ ଆପଣ କ'ଣ ଘର ମଧ୍ୟରେ ରହି ଦାନ ଧର୍ମ ଦ୍ୱାରା ସ୍ୱର୍ଗଲାଭ କରିପାରିବେ ନାହିଁ ?' ରାଜା ଜାଣିଥିଲେ ମନ୍ତ୍ରୀଙ୍କ ଅନୁପସ୍ଥିତିରେ ତାଙ୍କର ବିଳାସମୟ ଜୀବନ ବ୍ୟାହତ ହେବ ।

ଦୀର୍ଘଦର୍ଶୀ ରାଜାଙ୍କୁ ସମ୍ମତ କରାଇବାପାଇଁ ପୁଣି ଚେଷ୍ଟା କଲେ । କହିଲେ, 'ଦାନ ପ୍ରଭୃତି ଦ୍ୱାରା ଅର୍ଥ ଶୁଦ୍ଧି ମିଳିପାରେ କିନ୍ତୁ ନିତ୍ୟଶୁଦ୍ଧିପାଇଁ ତୀର୍ଥଯାତ୍ରାର ଆବଶ୍ୟକତା ରହିଛି । ଏଣୁ ବୁଦ୍ଧିମାନ ଲୋକମାନେ ଯୌବନ ନିଃଶେଷ ହେବା ପୂର୍ବରୁ ତୀର୍ଥ ଭ୍ରମଣ

ଶେଷ କରିଥାନ୍ତି । ଶରୀର ଉପରେ ଭରସା କ'ଣ ? ବୟସ ଗଡ଼ିଗଲେ ତୀର୍ଥଯାତ୍ରାର କଷ୍ଟ କ'ଣ ଆଉ ସହ୍ୟ କରିହେବ ?'

ମନ୍ତ୍ରୀ ଏହିପରି କହୁଥିବା ଏବଂ ରାଜା ତାଙ୍କୁ ବାରମ୍ବାର ମନାକରୁଥିବା ସମୟରେ ପ୍ରତିହାର ଆସି ଜଣାଇଲା, 'ମହାରାଜ୍, ସୂର୍ଯ୍ୟ ଆକାଶ ସରୋବରରେ ସ୍ନାନ କଲେଣି । ଏଣୁ ଆପଣ ବି ଉଠନ୍ତୁ । ସ୍ନାନ ସମୟ ଗଡ଼ିଯାଉଛି ।' ପ୍ରତିହାରର ସୂଚନାରେ ରାଜା ଆଉ ବିଳମ୍ବ ନକରି ଅନ୍ତଃପୁରରେ ପ୍ରବେଶ କଲେ । ମନ୍ତ୍ରୀ ମଧ୍ୟ ଯାତ୍ରାପାଇଁ ପ୍ରସ୍ତୁତ ହୋଇ ପ୍ରଣାମ ପୂର୍ବକ ରାଜାଙ୍କ ଠାରୁ ବିଦାୟ ନେଲେ ।

ମନ୍ତ୍ରୀ ଦୀର୍ଘଦର୍ଶୀ ତୀର୍ଥଯାତ୍ରାପାଇଁ ବାହାରିବା ବେଳେ ପତ୍ନୀ ମେଧାବିନୀ ମଧ୍ୟ ତାଙ୍କ ସହିତ ଯିବାପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ନିଜର ଯୁକ୍ତି ବଳରେ ତାଙ୍କୁ ସେଥିରୁ ନିବୃତ୍ତ କରି ଏବଂ କିଛି ଉପଦେଶ ଦେଇ ସେ ଏକାକୀ ହିଁ ନଗରରୁ ନିଷ୍କ୍ରାନ୍ତ ହେଲେ । ତାଙ୍କ ଯିବା କଥା ଦାସଦାସୀ ମଧ୍ୟ ଜାଣିପାରିଲେ ନାହିଁ । ମନୋବଳ ଦୃଢ଼ ଥିଲେ କାର୍ଯ୍ୟସିଦ୍ଧି କଷ୍ଟସାଧ୍ୟ ହୁଏ ନାହିଁ ।

ଦୀର୍ଘଦର୍ଶୀ ଏକାକୀ ବହୁଦେଶ ଭ୍ରମଣ ଏବଂ ବହୁତୀର୍ଥରେ ସ୍ନାନ କରି ପୌଣ୍ଡ୍ର ଦେଶରେ ଆସି ପହଞ୍ଚିଲେ । ଏହି ଦେଶର ସମୁଦ୍ର ତଟବର୍ତ୍ତୀ ଏକ ନଗରରେ ଗୋଟିଏ ଶିବ ମନ୍ଦିର ତାଙ୍କର ଦୃଷ୍ଟି ଆକର୍ଷଣ କଲା । ସେ ମନ୍ଦିର ମଧ୍ୟରେ ପ୍ରବେଶ କରି ତାର ବିସ୍ତୃତ ପ୍ରାଙ୍ଗଣରେ ବିଶ୍ରାମ ନେଲେ । ଦୂରପଥ ଅତିକ୍ରମ କରିଥିବାଯୋଗୁଁ ତାଙ୍କ ଶରୀର ଧୂଳିଧୂସରିତ ଥିଲା । ସୂର୍ଯ୍ୟ କିରଣରେ ତାଙ୍କ ରୂପ ମ୍ଳାନ ପଡ଼ିଯାଉଥିଲା । ଏ ସମୟରେ ସେଠାରେ ପୂଜା ଉପକରଣ ନେଇ ଜଣେ ବଣିକ ଆସି ପହଞ୍ଚିଲେ । ବଣିକ ନିଧିଦତ୍ତ ମନ୍ତ୍ରୀଙ୍କୁ ଏହି ଅବସ୍ଥାରେ ଦେଖି ଏବଂ ତାଙ୍କ ସ୍କନ୍ଧରେ ଯଜ୍ଞୋପବିତ ଓ ଶରୀରରେ ଉତ୍ତମ ଲକ୍ଷଣମାନ ଲକ୍ଷ୍ୟ କରି, ତାଙ୍କୁ ଜଣେ ଶ୍ରେଷ୍ଠ ବ୍ରାହ୍ମଣ ବୋଲି ମନେକଲେ । ପୂଜା ଶେଷରେ ବଣିକ ସ୍ୱାଗତ ସତ୍କାର ପୂର୍ବକ ଦୀର୍ଘଦର୍ଶୀଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କରିନେଲେ । ସ୍ନାନ ଓ ଭୋଜନରେ ଆପ୍ୟାୟିତ କରାଇ ନିଧିଦତ୍ତ ଅତିଥିଙ୍କ ପରିଚୟ ଏବଂ ତାଙ୍କ ପରିଭ୍ରମଣର କାରଣ ଜିଜ୍ଞାସା କରନ୍ତେ ଦୀର୍ଘଦର୍ଶୀ ଯଥୋଚିତ ଗାମ୍ଭୀର୍ଯ୍ୟର ସହିତ କହିଲେ ଯେ ସେ ଅଙ୍ଗଦେଶବାସୀ ଜଣେ ବ୍ରାହ୍ମଣ, ତୀର୍ଥଯାତ୍ରାରେ ବାହାରି ବିଭିନ୍ନ ସ୍ଥାନ ଭ୍ରମଣ କରୁଛନ୍ତି ।

ନିଧିଦତ୍ତ ଜଣେ ବିଶିଷ୍ଟ ବ୍ୟବସାୟୀ । ବିଭିନ୍ନ ରାଜ୍ୟ ସହିତ ତାଙ୍କର ବାଣିଜ୍ୟ କାରବାର ଥାଏ । ଦୀର୍ଘଦର୍ଶୀଙ୍କୁ ଜଣେ ଉନ୍ନତ ବ୍ୟକ୍ତିତ୍ୱ ସମ୍ପନ୍ନ ପୁରୁଷ ଦେଖି ସେ କହିଲେ,

'ମହାଶୟ, ମୁଁ ବ୍ୟବସାୟ ଉଦ୍ଦେଶ୍ୟରେ ସୁବର୍ଣ୍ଣ ଦ୍ୱୀପ ଯିବାର ଅଛି । ଆପଣ ମୁଁ ଫେରିଆସିବା ପର୍ଯ୍ୟନ୍ତ ମୋ ଗୃହରେ ଅବସ୍ଥାନ କରନ୍ତୁ । ତୀର୍ଥଯାତ୍ରାରେ ଶ୍ରାନ୍ତ ହୋଇପଡ଼ିଛନ୍ତି । ଏଣୁ କିଛିଦିନ ଏଠାରେ ବିଶ୍ରାମ କରିବାପାଇଁ ଅନୁରୋଧ କରୁଛି ।' କିନ୍ତୁ ଦୀର୍ଘଦର୍ଶୀ ଏଥିରେ ସମ୍ମତ ନହୋଇ ସାର୍ଥବାହଙ୍କୁ କହିଲେ, 'ତେବେ ମୁଁ ଏକାକୀ ଏଠାରେ ରହି କ'ଣ କରିବି ? ବରଂ ତୁମ ସହିତ ସୁବର୍ଣ୍ଣଦ୍ୱୀପ ଯାଇପାରିଲେ ମୁଁ ଆନନ୍ଦିତ ହେବି ।' ସଜ୍ଜନ ବଣିକ ଦୀର୍ଘଦର୍ଶୀଙ୍କୁ ନିଜ ସହିତ ନେବାପାଇଁ ସ୍ୱୀକୃତ ହେଲେ । ବହୁଦିନ ପରେ ଶଯ୍ୟାଟିଏ ମିଳିଥିବାରୁ ଦୀର୍ଘଦର୍ଶୀଙ୍କ ରାତ୍ରିଟି ସୁଖନିଦ୍ରାରେ କଟିଗଲା ।

ପରଦିନ ବଣିକ ନିଧିଦତ୍ତ ସମୁଦ୍ରତଟରେ ଯାଇ ଉପସ୍ଥିତ ହେଲେ । ସେଠାରେ ବିବିଧ ପଣ୍ୟଦ୍ରବ୍ୟରେ ପରିପୂର୍ଣ୍ଣ ଜାହାଜ ତାଙ୍କୁ ଅପେକ୍ଷା କରିଥାଏ । ନିଧିଦତ୍ତ ଦୀର୍ଘଦର୍ଶୀଙ୍କ ସହିତ ଯାଇ ବସିବା ମାତ୍ରେ ଜଳଯାତ୍ରା ଆରମ୍ଭ ହେଲା । ଅଦ୍ଭୁତ ଓ ଭୟଙ୍କର ସାମୁଦ୍ରିକ ଜୀବମାନଙ୍କୁ ଦେଖିଦେଖି ସେମାନେ ସୁବର୍ଣ୍ଣ ଦ୍ୱୀପରେ ଯାଇ ପହଞ୍ଚିଲେ । କାହିଁ ମୁଖ୍ୟମନ୍ତ୍ରୀ ପଦବୀ ଏବଂ କାହିଁ ସମୁଦ୍ର ଲଙ୍ଘନ । ଅପଖ୍ୟାତିକୁ ଭୟ କରୁଥିବା ସଜ୍ଜନ ବ୍ୟକ୍ତିମାନେ କଣ ବା ନକରି ପାରନ୍ତି !

ଅଯଶୋଭୀରବଃ କିଂ ନ କୁର୍ବତେ ବତ ସାଧବଃ ।

ଦୀର୍ଘଦର୍ଶୀ ସେହି ଦ୍ୱୀପ ମଧ୍ୟରେ ବଣିକ ନିଧିଦତ୍ତଙ୍କ ସହିତ ପଦାର୍ଥଗୁଡ଼ିକର କ୍ରୟ-ବିକ୍ରୟରେ କିଛିଦିନ ବିତାଇଦେଲେ । ବ୍ୟବସାୟ ବାଣିଜ୍ୟ ଶେଷ ହେବାରୁ ନିଧିଦତ୍ତ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ନିମିତ୍ତ ପୁଣି ଜଳଯାତ୍ରା ଆରମ୍ଭ କଲେ । ପଥ ମଧ୍ୟରେ ସମୁଦ୍ର ତରଙ୍ଗର ପଶ୍ଚାତ୍ ଭାଗରେ ଏକ କଳ୍ପବୃକ୍ଷ ଉପରକୁ ଉଠୁଥିବା ଦୀର୍ଘଦର୍ଶୀଙ୍କ ଦୃଷ୍ଟିଗୋଚର ହେଲା । ବୃକ୍ଷଟିର ଶାଖାଗୁଡ଼ିକ ପ୍ରବାଳ ପରି ସୁନ୍ଦର ଦେଖାଯାଉଥିଲା । ତାର କାଣ୍ଡ ସୁବର୍ଣ୍ଣ ତୁଲ୍ୟ ଉଜ୍ଜ୍ୱଳ ଥିଲା । ସେଥିରେ ରମଣୀୟ ମଣିମାଣିକ୍ୟର ଫଳପୁଷ୍ପ ସବୁ ଶୋଭାପାଉଥିଲେ । ବୃକ୍ଷର କାଣ୍ଡ ଉପରେ ଏକ ସୁନ୍ଦର ରତ୍ନପଲଙ୍କ ପଡ଼ିଥାଏ । ତା' ଉପରେ ଜଣେ ଦିବ୍ୟସୁନ୍ଦରୀ କନ୍ୟା ଶୋଇଥାନ୍ତି ।

କନ୍ୟାଟି ସମ୍ପର୍କରେ ଦୀର୍ଘଦର୍ଶୀ ଚିନ୍ତା କରୁଥିବା ବେଳେ କନ୍ୟାଟି ନିଜର ବୀଣା ସାହାଯ୍ୟରେ ଗୋଟିଏ ଗୀତ ଗାଇବା ଆରମ୍ଭ କଲା ।

**ଯତ୍‌କର୍ମବୀଜମୁପ୍ତଂ ଯେନ ପୁରା ନିଶ୍ଚିତଂ ସ ତଦ୍‌ଭୁଙ୍‌କ୍ତେ**
**ପୂର୍ବକୃତସ୍ୟ ହି ଶକ୍ୟୋ ବିଧିନାପି ନ କର୍ତ୍ତୁମନ୍ୟଥାଭାବଃ ।**

ଅର୍ଥାତ୍ ମନୁଷ୍ୟ ପୂର୍ବରୁ ଯେଉଁ କର୍ମର ବୀଜ ବପନ କରିଥାଏ ସେ ନିଶ୍ଚିତ ଭାବେ ତାର ଫଳ ଭୋଗ କରେ । ପୂର୍ବକର୍ମର ଫଳକୁ ବିଧାତା ମଧ୍ୟ ଟାଳିପାରିବ ନାହିଁ । ଗୀତଟି ଶେଷ କରି ଚକ୍ଷୁ ପଲକରେ କଳ୍ପବୃକ୍ଷ, ଶଯ୍ୟା ଏବଂ ବୀଣା ସହିତ ସେ ସମୁଦ୍ର ଗର୍ଭରେ ବିଲୀନ ହୋଇଗଲା ।

ଦୀର୍ଘଦର୍ଶୀ ଚିନ୍ତାନ୍ୱିତ ହୋଇପଡ଼ିଲେ । ଏହି ଅଦ୍ଭୁତ ଓ ଅପୂର୍ବ ଦୃଶ୍ୟ ତାଙ୍କ ମନରେ ଭାବାନ୍ତର ସୃଷ୍ଟିକଲା । କନ୍ୟାଟି ସମୁଦ୍ର ମଧ୍ୟରେ କୁଆଡୁ ଆସିଲା ଏବଂ ଗୀତଟିଏ ଗାଇଦେଇ ବୃକ୍ଷ ସହିତ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା, ସେ କିଛି ବୁଝିପାରିଲେ ନାହିଁ । ଏପରି ବହୁ ଆଶ୍ଚର୍ଯ୍ୟଜନକ ଘଟଣାର ଆବାସସ୍ଥଳୀ ସମୁଦ୍ରକୁ ସେ ମନେମନେ ନମସ୍କାର ଜଣାଇଲେ । ସମୁଦ୍ର ତ ପୁଣି ଲକ୍ଷ୍ମୀ, ଚନ୍ଦ୍ରମା, ପାରିଜାତ ପ୍ରଭୃତିର ଜନ୍ମସ୍ଥଳୀ ।

ଦୀର୍ଘଦର୍ଶୀଙ୍କ ବିସ୍ମୟ ଭାବ ଦେଖି ନାବିକମାନେ କହିଲେ ଯେ ସେହି ଦିବ୍ୟସୁନ୍ଦରୀ କନ୍ୟା ସର୍ବଦା ସେଠାରେ ଦେଖାଦିଏ । ପୁଣି ଚକ୍ଷୁ ପଲକରେ ଅନ୍ତର୍ହିତ ହୋଇଯାଏ । ସେ ତାକୁ ପ୍ରଥମେ ଦେଖିଥିବା ଯୋଗୁଁ ଏପରି ଆଶ୍ଚର୍ଯ୍ୟ ହେଉଛନ୍ତି । ତଥାପି ଦୀର୍ଘଦର୍ଶୀଙ୍କ ବିସ୍ମୟଭାବ କଟିଲା ନାହିଁ । ସେ ନିଧିଦତ୍ତଙ୍କ ସହିତ ସମୁଦ୍ର ତଟରେ ଆସି ପହଞ୍ଚିଲେ । ଭୃତ୍ୟମାନେ ଆନନ୍ଦରେ ଜାହାଜରୁ ସମସ୍ତ ଜିନିଷପତ୍ର ବାହାର କରିଆଣିଲେ । ନିଧିଦତ୍ତ ମିତ୍ରଙ୍କ ସହିତ ସ୍ୱଗୃହରେ ଆସି ପହଞ୍ଚିବାରୁ ପରିବାରରେ ଆନନ୍ଦର ଉତ୍ସ ଖେଳିଗଲା ।

କିଛିଦିନ ସେଠାରେ ବିଶ୍ରାମ କରି ଦୀର୍ଘଦର୍ଶୀ ସ୍ୱଦେଶକୁ ଫେରିଯିବାପାଇଁ ପ୍ରସ୍ତୁତ ହେଲେ । ନିଧିଦତ୍ତଙ୍କୁ, 'ସାର୍ଥବାହ ! ମୁଁ ତୁମ ସହିତ ବହୁଦିନ ଏଠାରେ କଟାଇଲି । ମୋର ସମସ୍ତ ସୁଖସୁବିଧା ପ୍ରତି ଦୃଷ୍ଟି ଦେଇଥିବା ଯୋଗୁଁ ଆପଣଙ୍କୁ ଅଶେଷ ଧନ୍ୟବାଦ । ମୁଁ ବର୍ତ୍ତମାନ ନିଜ ଦେଶକୁ ଫେରିଯିବାପାଇଁ ଚାହେଁ । ଆପଣଙ୍କର କଲ୍ୟାଣ ହେଉ ।' ବୋଲି କହି ସେ ବିଦାୟ ନେବାକୁ ଚାହିଁବାରୁ ସଜ୍ଜନ ବଣିକ ତାଙ୍କୁ ଆଉ କିଛିଦିନ ଅଟକାଇ ରଖିବା ନିମିତ୍ତ ଅନୁରୋଧ ଜଣାଇଲେ । ଦୀର୍ଘଦର୍ଶୀ କିନ୍ତୁ ନମ୍ରତାର ସହିତ ତାଙ୍କୁ ଆଶ୍ୱାସନା ଦେଇ ଯାତ୍ରା ଆରମ୍ଭ କଲେ । ତାଙ୍କର ମନୋବଳ ଓ ବୀରତ୍ୱ ହିଁ ଥିଲା ତାଙ୍କ ଯାତ୍ରାର ସହାୟକ ।

ଦୀର୍ଘପଥ ଅତିକ୍ରମ କରି ଦୀର୍ଘଦର୍ଶୀ ନିଜର ମାତୃଭୂମି ଅଙ୍ଗଦେଶ ନିକଟରେ ଆସି ପହଞ୍ଚିଲେ । ନଗର ବାହାରେ ହିଁ ତାଙ୍କ ଅନୁସନ୍ଧାନ ପାଇଁ ନିଯୁକ୍ତ ଥିବା ଗୁପ୍ତଚରମାନଙ୍କ ସହିତ ସାକ୍ଷାତ ହେଲା । ସେମାନେ ଯଥାଶୀଘ୍ର ଯାଇ ରାଜା ଯଶଃକେତୁଙ୍କୁ ମନ୍ତ୍ରୀଙ୍କ ଆଗମନ ବାର୍ତ୍ତା ଜଣାଇଲେ । ପ୍ରିୟ ମନ୍ତ୍ରୀଙ୍କ ବିଚ୍ଛେଦରେ ରାଜା

ଅତ୍ୟନ୍ତ ଦୁଃଖିତ ଥିଲେ । ତେଣୁ ତାଙ୍କ ଆଗମନ ବାର୍ତ୍ତା ଶୁଣିବା ମାତ୍ରେ ନଗର ବାହାରକୁ ଚାଲିଆସି ମନ୍ତ୍ରୀପ୍ରବରଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରି ଅଭିନନ୍ଦନ ଜଣାଇଲେ । ଦୀର୍ଘଦର୍ଶୀଙ୍କ ଶରୀର ଓ ରୂପ ଦୀର୍ଘ ଭ୍ରମଣ ଯୋଗୁଁ କ୍ଷୀଣ ଓ ମ୍ଳାନ ପଡ଼ିଯାଇଥାଏ । ରାଜା ତାଙ୍କୁ ନିଜ ଅନ୍ତଃପୁର ମଧ୍ୟକୁ ସ୍ୱାଗତ କରିନେଇ ସ୍ନେହସିକ୍ତ କଣ୍ଠରେ କହିଲେ, 'ତୁମେ ଆମ୍ଭମାନଙ୍କୁ କାହିଁକି ଯେ ତ୍ୟାଗକରି ଚାଲିଗଲ, ମୁଁ ଜାଣିପାରିଲି ନାହିଁ । ଖାଲି ସେତିକି ନୁହେଁ, ତୁମେ ତୁମ ମନରୁ ମଧ୍ୟ ଆମମାନଙ୍କ ପ୍ରତି ସ୍ନେହ ତୁଟାଇ ଦେଲ । ମନେହେଉଛି ତୁମେ ତୁମ ଶରୀର ପ୍ରତି ମଧ୍ୟ ଧ୍ୟାନ ଦେଇନାହଁ । ତୁମ ଶରୀର ଓ ରୂପର ଦଶା କ'ଣ ହୋଇଛି ନିଜେ ଦେଖ । ଅବଶ୍ୟ ବିଧିନିର୍ଦ୍ଦିଷ୍ଟ ଭବିତବ୍ୟର ଗତି କିଏ ବା ଜାଣିପାରିବ ! ତୀର୍ଥଯାତ୍ରା ପାଇଁ ତୁମ ମନରେ ଉତ୍ସୁକତା ସୃଷ୍ଟିହେବା ମଧ୍ୟ ବିଧିନିର୍ଦ୍ଦିଷ୍ଟ ବୋଲି ମନେହୁଏ । ହଉ, ଛାଡ଼ ସେ କଥା, ବର୍ତ୍ତମାନ କହ ତୁମେ କେଉଁ କେଉଁ ଦେଶ ସବୁ ଭ୍ରମଣ କରିଆସିଲ ? କ'ଣ ସବୁ ଆଶ୍ଚର୍ଯ୍ୟ ଜିନିଷ ତମ ଦୃଷ୍ଟିରେ ପଡ଼ିଲା ? ଏତେଦିନ ଧରି ଭ୍ରମଣ କରିବା ଭିତରେ କଣ ସବୁ ସୁବିଧା ଅସୁବିଧା ହେଲା ?'

ଦୀର୍ଘଦର୍ଶୀ କ୍ରମଶଃ ନିଜର ସମଗ୍ର ଭ୍ରମଣ ବୃତ୍ତାନ୍ତ ରାଜାଙ୍କ ସମ୍ମୁଖରେ ଜ୍ଞାପନ କଲେ । ସୁବର୍ଣ୍ଣଦ୍ୱୀପ ଯିବା କଥା ମଧ୍ୟ ସେଥିରୁ ବାଦ୍ ପଡ଼ିଲା ନାହିଁ । ସମୁଦ୍ର ଗର୍ଭରୁ ଉଦ୍‌ଗତ ହୋଇଥିବା ସେହି ଅପୂର୍ବ ରୂପବତୀ କନ୍ୟା, ତା'ର ସଙ୍ଗୀତ ଗାନ, କଳ୍ପବୃକ୍ଷ ଇତ୍ୟାଦି ସମ୍ପର୍କରେ ମଧ୍ୟ ସେ ରାଜାଙ୍କ ନିକଟରେ ବିସ୍ତୃତଭାବେ ବର୍ଣ୍ଣନା କଲେ ।

ଦୀର୍ଘଦର୍ଶୀଙ୍କ ସୁବର୍ଣ୍ଣଦ୍ୱୀପ ଯାତ୍ରା କଥା ଶୁଣିବାମାତ୍ରେ ରାଜା ଯଶଃକେତୁ ହଠାତ୍ କାମପୀଡ଼ିତ ହୋଇପଡ଼ିଲେ । ସାଗରୋତ୍‌ଥିତା କନ୍ୟାଟି ବିନା ତାଙ୍କ ରାଜ୍ୟ ଓ ଜୀବନ ନିଷ୍ଫଳ ମନେହେଲା । ସେ ମନ୍ତ୍ରୀଙ୍କୁ ରାଜସଭାରୁ ଅନ୍ତଃପୁରକୁ ନେଇଯାଇ ଏକାନ୍ତରେ କହିଲେ, 'ଦେଖ, ତୁମେ ଦେଖିଥିବା ସେହି କନ୍ୟାର ଦର୍ଶନ ବିନା ମୁଁ ବଞ୍ଚିପାରିବି ନାହିଁ । ତେଣୁ ଭବିତବ୍ୟକୁ ପ୍ରଣାମ ଜଣାଇ ତୁମେ କହିଥିବା ମାର୍ଗ ଅନୁସରଣ କରି ମୁଁ ବାହାରିଲି । ତୁମେ ମୋତେ ଏଥିରେ ବାଧା ଦିଅ ନାହିଁ କି ମୋ ସହିତ ଆସ ନାହିଁ । ମୁଁ ଗୋପନରେ ଏଠାରୁ ଚାଲିଯିବି । ତୁମକୁ ମୋର ଏହି ରାଜ୍ୟ ରକ୍ଷା କରିବାକୁ ପଡ଼ିବ । ମୋ କଥା ଟାଳି ଦିଅ ନାହିଁ । ମୋର ଗନ୍ତବ୍ୟ ପଥରେ ବାଧା ସୃଷ୍ଟିକଲେ ମୋତେ ଆଉ ଜୀବିତ ପାଇବ ନାହିଁ ।' ରାଜା ଆଉ କିଛି କହିବାପାଇଁ ଦୀର୍ଘଦର୍ଶୀଙ୍କୁ ସୁଯୋଗ ଦେଲେ ନାହିଁ । ସେ ତାଙ୍କୁ ବହୁଦିନ ଧରି ଉତ୍ସୁକତାର ସହିତ ଅପେକ୍ଷା କରିଥିବା ପତ୍ନୀ ଓ ବନ୍ଧୁବାନ୍ଧବମାନଙ୍କ ନିକଟକୁ ପଠାଇଦେଲେ । ତାଙ୍କୁ ଦେଖି ସମସ୍ତଙ୍କ ମନରେ ଆନନ୍ଦ ଉତ୍ସାହ ଖେଳିଗଲେ

ମଧ୍ୟ ସେ ଉଦାସ ହିଁ ରହିଥିଲେ । ତାଙ୍କ ମନ ଶାନ୍ତ ନଥିଲା । ରାଜା ଯଦି ଅସାଧ୍ୟ କାର୍ଯ୍ୟ କରିବାପାଇଁ ତତ୍ପର ହୋଇଉଠନ୍ତି, ତେବେ ବିଶ୍ୱସ୍ତ ମନ୍ତ୍ରୀ କିପରି ବା ଆନନ୍ଦ ଉପଭୋଗ କରିବ !

ପରଦିନ ରାଜା ଯଶଃକେତୁ ଦୀର୍ଘଦର୍ଶୀଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କଲେ । ନିଜେ ଜଣେ ତପସ୍ୱୀର ଛଦ୍ମବେଶ ଧାରଣ ପୂର୍ବକ ସେ ରାତ୍ରିର ଅନ୍ଧକାର ମଧ୍ୟରେ ନଗରରୁ ନିଷ୍କ୍ରାନ୍ତ ହେଲେ । ପଥମଧ୍ୟରେ କୁଶଦତ୍ତ ନାମକ ଜଣେ ଋଷିଙ୍କ ସହିତ ରାଜାଙ୍କର ସାକ୍ଷାତ ହେଲା । ରାଜା ତାଙ୍କୁ ପ୍ରଣାମ କରନ୍ତେ ସେ ତପସ୍ୱୀ ବେଶରେ ଥିବା ରାଜାଙ୍କୁ ଆଶୀର୍ବାଦ ପ୍ରଦାନ କରି କହିଲେ, 'ତୁମେ ନିଶ୍ଚିନ୍ତ ମନରେ ଅଗ୍ରସର ହୁଅ । ମାର୍ଗରେ ବଣିକ ଲକ୍ଷ୍ମୀଦତ୍ତଙ୍କ ସହିତ ତୁମର ସାକ୍ଷାତ ହେବ । ତାଙ୍କ ଜାହାଜରେ ସମୁଦ୍ର ଯାତ୍ରା କଲେ ତୁମେ ତୁମର ଈପ୍ସିତ କନ୍ୟାକୁ ଲାଭ କରିପାରିବ ।' ଋଷିଙ୍କ ଆଶୀର୍ବାଦ ରାଜାଙ୍କ ମନରେ ହର୍ଷ ଓ ସାହସ ସୃଷ୍ଟି କଲା । ସେ ତାଙ୍କୁ ପ୍ରଣାମ କରି ଆଗକୁ ବଢ଼ିଲେ ।

ବହୁ ନଦନଦୀ, ବନପର୍ବତ ଅତିକ୍ରମ କରି ରାଜା ଯଶଃକେତୁ ଚାଲିଥାନ୍ତି । ବିଭିନ୍ନ ଦେଶ ଭ୍ରମଣ ପୂର୍ବକ ସେ ଶେଷରେ ଆସି ସମୁଦ୍ର ନିକଟରେ ପହଞ୍ଚିଲେ । ସମୁଦ୍ର ଯେପରି ତାଙ୍କୁ ଆତିଥ୍ୟ ଦେବାପାଇଁ ନିଜର ଭ୍ରମରୀ ରୂପକ ଚକ୍ଷୁ ନେଇ ସମ୍ଭ୍ରମର ସହିତ ଅପେକ୍ଷା କରିଥିଲା । ଶଙ୍ଖରୂପକ ଚକ୍ଷୁ ଏବଂ ଲହରୀରୂପକ ଭ୍ରୂଲତା ରାଜାଙ୍କ ଦର୍ଶନରେ ଯେପରି ନାଚି ଉଠୁଥିଲେ ।

ସମୁଦ୍ର ତଟରେ ଋଷିକଥିତ ବଣିକ ଲକ୍ଷ୍ମୀଦତ୍ତଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଲକ୍ଷ୍ମୀଦତ୍ତ ସୁବର୍ଣ୍ଣଦ୍ୱୀପ ଯାତ୍ରାପାଇଁ ପ୍ରସ୍ତୁତ ହେଉଥିଲେ । ରାଜାଙ୍କ ପାଦରେ ଚକ୍ର ଚିହ୍ନ ଏବଂ ମୁଖମଣ୍ଡଳରେ ରାଜୋଚିତ ଲକ୍ଷଣ ଦେଖି ବଣିକ ପ୍ରଣାମ ଜଣାଇଲେ । ଯଶଃକେତୁ ଲକ୍ଷ୍ମୀଦତ୍ତଙ୍କୁ ମିତ୍ର ଭାବେ ଗ୍ରହଣ କରି ତାଙ୍କ ସହିତ ସୁବର୍ଣ୍ଣଦ୍ୱୀପ ଅଭିମୁଖରେ ଅଗ୍ରସର ହେଲେ ।

ଜାହାଜ ଯେତେବେଳେ ସମୁଦ୍ରର ମଧ୍ୟସ୍ଥଳରେ ଯାଇ ପହଞ୍ଚିଲା ସେତେବେଳେ ସମୁଦ୍ରର ଜଳରାଶି ମଧ୍ୟରୁ ନିଜ ସ୍କନ୍ଧରେ ପୂର୍ବୋକ୍ତ ଦିବ୍ୟ ସୁନ୍ଦରୀ କନ୍ୟାକୁ ଧାରଣ କରି କଳ୍ପବୃକ୍ଷ ଉଦ୍‌ଗତ ହୋଇଆସିଲା । ଚକୋର ଚନ୍ଦ୍ରକୁ ଦେଖିବା ପରି ରାଜା ତାକୁ ନିର୍ନିମେଷ ନୟନରେ ଚାହିଁ ରହିଲେ । କନ୍ୟାଟି ନିଜ ଉତ୍ସଙ୍ଗରେ ଧାରଣ କରିଥିବା ବୀଣାଟିକୁ ବାଦନ କରି ପୂର୍ବପରି ଏକ ମଧୁର ସଙ୍ଗୀତ ଗାନ କଲା । 'ମନୁଷ୍ୟ ପୂର୍ବରୁ ଯେଉଁ କର୍ମର ବୀଜ ବପନ କରିଥାଏ ସେ ନିଶ୍ଚୟ ତାର ଫଳ ଭୋଗ କରେ । ପୂର୍ବ କର୍ମର ଫଳକୁ ବିଧାତା

ମଧ୍ୟ ଅନ୍ୟଥା କରିପାରେ ନାହିଁ । ଏଣୁ ଦୈବବଶରୁ ଯାହାପାଇଁ ଯେଉଁଠି ଓ ଯେପରି ଭବିତବ୍ୟ ନିର୍ଦ୍ଦିଷ୍ଟ ଅଛି, ସେ ସେହିଠାରେ ଅନୁରୂପ ଫଳପ୍ରାପ୍ତି ନିମିତ୍ତ ବିବଶ ହୋଇଥାଏ– ଏଥିରେ କୌଣସି ସନ୍ଦେହ ନାହିଁ ।' ରାଜା ଭବିତବ୍ୟର ସୂଚନା ଥିବା ଗୀତଟି ଶୁଣି କନ୍ଦର୍ପ ବାଣରେ ଆହତ ହେଲେ । କିଛି ସମୟ ପର୍ଯ୍ୟନ୍ତ ସେ ସେହି କନ୍ୟାକୁ ଦେଖି ଚିତ୍ରାର୍ପିତ ପରି ରହିଗଲେ । ସେ କଣ କରିବେ ବୁଝିନପାରି ବ୍ୟାକୁଳ ଭାବରେ ସମୁଦ୍ରର ସ୍ତୁତି ଗାନ କଲେ । 'ହେ ରତ୍ନାକର ! ହେ ଅଗାଧ ହୃଦୟ ! ମୁଁ ଯଶଃକେତୁ ତୁମକୁ ପ୍ରଣାମ କରୁଅଛି । ତୁମେ ଏହି କନ୍ୟାକୁ ନିଜ ମଧ୍ୟରେ ଲୁକ୍କାୟିତ କରି ଭଗବାନ ବିଷ୍ଣୁଙ୍କୁ ଲକ୍ଷ୍ମୀଙ୍କ ଠାରୁ ବଞ୍ଚିତ କରିଛ । ତୁମେ ଯେତେବେଳେ ପକ୍ଷଯୁକ୍ତ ପର୍ବତମାନଙ୍କୁ ତୁମ ଗର୍ଭରେ ଆଶ୍ରୟ ଦେଲ, ସେତେବେଳେ ଦେବତାମାନେ ସୁଦ୍ଧା ତୁମର ଅନ୍ତଃ ପାଇଲେ ନାହିଁ । ମୁଁ ତୁମର ଶରଣାଗତ । ମୋର କାମନା ପୂରଣ କର ।'

ରାଜା ଏହିପରି ସ୍ତୁତି କରୁଥିବା ବେଳେ କନ୍ୟାଟି ବୃକ୍ଷ ସହିତ ସମୁଦ୍ର ମଧ୍ୟରେ ନିମଜ୍ଜିତ ହେଲା । ରାଜା ମଧ୍ୟ ତାର ଅଦର୍ଶନରେ ନିଜର କାମାଗ୍ନି ପ୍ରଶମନ କରିବାପାଇଁ ସମୁଦ୍ର ମଧ୍ୟକୁ ଲମ୍ଫ ଦେଲେ । ସଜ୍ଜନ ସାର୍ଥବାହ ଲକ୍ଷ୍ମୀଦତ୍ତ ଏହା ଦେଖି ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । ରାଜା ନିଶ୍ଚିତ ଭାବେ ମୃତ୍ୟୁବରଣ କରିଛନ୍ତି ବୋଲି ତାଙ୍କର ଧାରଣା ହେଲା । ସେ ମଧ୍ୟ ସମୁଦ୍ର ଗର୍ଭରେ ପ୍ରାଣ ବିସର୍ଜନ କରିବାପାଇଁ ଉଦ୍ୟତ ହେଲେ ।

ଏ ସମୟରେ ଆକାଶ ମାର୍ଗରୁ ଶୂନ୍ୟବାଣୀ ଶୁଣାଗଲା–'ଲକ୍ଷ୍ମୀଦତ୍ତ, ଏପରି ଦୁଃସାହସ କରନାହିଁ । ସମୁଦ୍ର ମଧ୍ୟରେ ଲମ୍ଫ ପ୍ରଦାନ କରିଥିବା ବ୍ୟକ୍ତିଟିପାଇଁ ତୁମେ ଚିନ୍ତା କରିବା ଅନାବଶ୍ୟକ । ତପସ୍ୱୀବେଶଧାରୀ ଏହି ରାଜାଙ୍କ ନାମ ଯଶଃକେତୁ । କନ୍ୟାଟି ପୂର୍ବଜନ୍ମରେ ତାଙ୍କର ସ୍ତ୍ରୀ ଥିଲା । ସେ ତାପାଇଁ ଏଠାକୁ ଆସିଅଛନ୍ତି । ସେ ନିଜ ସ୍ତ୍ରୀକୁ ଲାଭ କରି ପୁଣି ଅଙ୍ଗ ଦେଶକୁ ଫେରିଯିବେ ।' ଲକ୍ଷ୍ମୀଦତ୍ତ ଶୂନ୍ୟବାଣୀ ଦ୍ୱାରା ଆଶ୍ୱାସିତ ହୋଇ ନିଜର ଗନ୍ତବ୍ୟ ପଥରେ ଚାଲିଗଲେ ।

ଏଣେ ରାଜା ଯଶଃକେତୁ ସମୁଦ୍ର ଗର୍ଭରେ ନିମଜ୍ଜିତ ହୋଇ ଏକ ଅଲୌକିକ ନଗର ନିକଟରେ ଆସି ପହଞ୍ଚିଲେ । ନଗରଟିକୁ ଦେଖି ରାଜାଙ୍କ ବିସ୍ମୟର ସୀମା ରହିଲା ନାହିଁ । ନଗର ମଧ୍ୟରେ ପ୍ରବେଶ କରିବାରେ ପ୍ରଭାଯୁକ୍ତ ମଣିନିର୍ମିତ ସ୍ତମ୍ଭ, ସୁବର୍ଣ୍ଣ ନିର୍ମିତ ଭିତ୍ତି ଏବଂ ମୁକ୍ତା ଜାଲଦ୍ୱାରା ରୁଚିର ଗବାକ୍ଷଯୁକ୍ତ ଏକ ସୁରମ୍ୟ ପ୍ରାସାଦ ତାଙ୍କର ଦୃଷ୍ଟିଗୋଚର ହେଲା । ସେଠାରେ ରତ୍ନନିର୍ମିତ ସୋପାନଶ୍ରେଣୀଦ୍ୱାରା ଆବଦ୍ଧ ଏକ ପୁଷ୍କରିଣୀ ଥିଲା । ନିକଟସ୍ଥ ଉଦ୍ୟାନରେ ସମସ୍ତ ଅଭିଳାଷ ପୂରଣ କରୁଥିବା ବିଶାଳ

କଳ୍ପବୃକ୍ଷ ଦଣ୍ଡାୟମାନ ଥିଲା । ଏ ସବୁ ଦେଖି ରାଜା ନଗରର ସମୃଦ୍ଧି ସମ୍ପର୍କରେ ଚିନ୍ତା କରୁଥିଲେ । କିନ୍ତୁ ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଭାବେ ନଗରଟି ଥିଲା ସମ୍ପୂର୍ଣ୍ଣ ନୀରବ ଓ ନିର୍ଜନ । ରାଜା ନଗରର ପ୍ରତ୍ୟେକଟି ଘରେ ପ୍ରବେଶ କରି ନିଜର ଅଭିଳଷିତ କନ୍ୟାକୁ ଖୋଜିବାକୁ ଲାଗିଲେ । ତାଙ୍କର ସମସ୍ତ ପ୍ରୟାସ ବ୍ୟର୍ଥ ହେଲା । ଶେଷରେ ସେ ଯାଇ ଏକ ମଣିଭବନର ସୋପାନ ଆରୋହଣ କଲେ । ତାର ଦ୍ୱାର ଅର୍ଗଳବଦ୍ଧ ନଥିଲା । ରାଜା ଦ୍ୱାର ଉନ୍ମୁକ୍ତ କରି ତା' ମଧ୍ୟରେ ପ୍ରବେଶ କଲେ । ଭିତରେ ଏକ ସୁସଜ୍ଜିତ ବହୁମୂଲ୍ୟ ରତ୍ନ ପଲଙ୍କ ପଡ଼ିଥାଏ । ତା' ଉପରେ କେହିଜଣେ ଆପାଦମସ୍ତକ ନିଜକୁ ବସ୍ତ୍ରଦ୍ୱାରା ଆବୃତ କରି ଶୋଇଥାଏ । ରାଜା ଉତ୍କଣ୍ଠାର ସହିତ ନିକଟକୁ ଯାଇ ଆଚ୍ଛାଦନଟିକୁ ହଟାଇଦେଲେ । ଶୋଇଥିବା ବ୍ୟକ୍ତିଟି ତାଙ୍କ ଈପ୍ସିତା କନ୍ୟା ବ୍ୟତୀତ ଅନ୍ୟ କେହି ନଥିଲା ।

ଅନ୍ଧକାର ତୁଲ୍ୟ କୃଷ୍ଣ ବସ୍ତ୍ରଟି ଦୂର ହେବା ପରେ କନ୍ୟାଟିର ସ୍ମିତହାସ୍ୟପୂର୍ଣ୍ଣ ମୁଖମଣ୍ଡଳ ଝଲସି ଉଠିଲା । ମନେହେଲା ଜ୍ୟୋତ୍ସ୍ନା ବିଧୌତ ରଜନୀ, ସୂର୍ଯ୍ୟୋଦୟ ହେବାରୁ, ପାତାଳପୁରକୁ ଚାଲିଆସିଛି । ପ୍ରଚଣ୍ଡ ଗ୍ରୀଷ୍ମ ମଧ୍ୟାହ୍ନରେ ମରୁଭୂମିର ତୃଷାର୍ତ୍ତ ପଥିକଟିଏ ସ୍ୱଚ୍ଛ ଜଳପୂର୍ଣ୍ଣ ନିର୍ଝରିଣୀଟିଏ ଦେଖିଲେ ତା'ର ଅବସ୍ଥା ଯାହା ହୁଏ, ରାଜାଙ୍କ ଅବସ୍ଥା ମଧ୍ୟ ସେହିପରି ହିଁ ଜଣାଗଲା ।

କନ୍ୟାଟି ଚକ୍ଷୁ ଉନ୍ମୀଳନ କରି ଯେତେବେଳେ ରାଜାଙ୍କ ଶୁଭ ଲକ୍ଷଣଯୁକ୍ତ ମଙ୍ଗଳମୟ ଆକୃତି ଦର୍ଶନ କଲା, ସେତେବେଳେ ସେ ସମ୍ଭ୍ରମର ସହିତ ଶଯ୍ୟା ଉପରେ ଉଠି ବସିଲା । ସେହି ନିର୍ଜ୍ଜନ ପ୍ରାସାଦରେ ରାଜାଙ୍କୁ ପ୍ରବେଶ କରିଥିବା ଦେଖି ତା'ର ପ୍ରଥମ ବିସ୍ମୟ ଭାବ କଟିଯିବା ପରେ କନ୍ୟାଟି ରାଜାଙ୍କର ଯଥୋଚିତ ଅତିଥି ସତ୍କାର କଲା । ନତମସ୍ତକରେ ରାଜାଙ୍କ ପଦଯୁଗଳକୁ ଚାହୁଁଥିବା ବେଳେ ମନେହେଉଥିଲା ସତେ ଯେପରି ସେ ନିଜର ପୁଷ୍ପିତ ନୟନ କମଳଦ୍ୱାରା ତାଙ୍କର ପାଦପୂଜା କରୁଅଛି । ସେ ଧୀର ଓ ନମ୍ର ସ୍ୱରରେ ପ୍ରଶ୍ନ କଲା, 'ମହାଭାଗ, ଆପଣଙ୍କ ଶୁଭ ପରିଚୟ କ'ଣ ? ଏହି ଅଗମ୍ୟ ରସାତଳକୁ ଆପଣ କାହିଁକି ଆସିଥିଲେ ? ଆପଣଙ୍କ ଶରୀରରେ ସମସ୍ତ ରାଜଚିହ୍ନ ଶୋଭାପାଉଛି, ତଥାପି ଆପଣଙ୍କର ଏ ତପସ୍ୱୀ ବେଶ କାହିଁକି ? ଯଦି ଆପଣଙ୍କର ମୋ ପ୍ରତି କୃପା ଥାଏ, ତେବେ ପ୍ରକୃତ ପରିଚୟ ପ୍ରଦାନ କରି ମୋତେ କୃତାର୍ଥ କରନ୍ତୁ ।'

କନ୍ୟାଟିର ମଧୁର ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ଯାଇ ରାଜା ଜଣାଇଲେ, 'ସୁନ୍ଦରି, ମୁଁ ଅଙ୍ଗଦେଶର ରାଜା । ମୋର ନାମ ଯଶଃକେତୁ । ମୋର ଜଣେ ବିଶ୍ୱସ୍ତ

କର୍ମଚାରୀଙ୍କ ନିକଟରୁ ଶୁଣିଲି ଯେ ତୁମେ ପ୍ରତିଦିନ ସମୁଦ୍ର ମଧ୍ୟରେ ଦେଖାଯାଉଛ । ତୁମକୁ ପାଇବାପାଇଁ ମୁଁ ଏହି ବେଶ ଧାରଣ କରିଛି । ରାଜ୍ୟ ତ୍ୟାଗ କରି ସମୁଦ୍ର ପଥରେ ଆସୁଥିବା ବେଳେ ତୁମକୁ ଦେଖି ମୁଁ ତୁମର ଅନୁସରଣ କଲି । ସମୁଦ୍ର ମଧ୍ୟକୁ ଲମ୍ଫ ପ୍ରଦାନ କରି ଆସି ଏଠାରେ ପହଞ୍ଚିଛି । ବର୍ତ୍ତମାନ ତୁମେ ତୁମର ପରିଚୟ ଦିଅ ।'

ରାଜାଙ୍କର ପରିଚୟ ଲାଭ କରି କନ୍ୟାଟି ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଲଜ୍ଜିତ ମଧ୍ୟ ହେଲା । ଅନୁରାଗ ମିଶ୍ରିତ ସ୍ୱରରେ କହିଲା, 'ମୁଁ ବିଦ୍ୟାଧରମାନଙ୍କ ଅଧିପତି ସୌଭାଗ୍ୟଶାଳୀ ମୃଗାଙ୍କସେନଙ୍କ କନ୍ୟା ମୃଗାଙ୍କବତୀ । ମୋର ପିତା କେଉଁ କାରଣରୁ ମୋତେ ଏହି ନଗର ମଧ୍ୟରେ ଏକାକିନୀ ଛାଡ଼ିଦେଇ ନଗରବାସୀମାନଙ୍କ ସହିତ କେଉଁଆଡ଼େ ଚାଲିଗଲେ ମୁଁ ଜାଣେ ନାହିଁ । ଏଣୁ ଏହି ନିର୍ଜନ ନଗରୀରେ ରହି ଯେତେବେଳେ ବିରକ୍ତି ବୋଧ କରେ ସେତେବେଳେ ମୋ ନିକଟରେ ଥିବା ଯାନ୍ତ୍ରିକ କଳ୍ପବୃକ୍ଷ ଉପରେ ବସି ସମୁଦ୍ରର ଜଳରାଶି ଉପରକୁ ଚାଲିଯାଏ । ସେଠାରେ ବୀଣାବାଦନ ପୂର୍ବକ କିଛି ସମୟ ଭବିତବ୍ୟର ସଙ୍ଗୀତ ଗାନ କରି ଆଶ୍ୱସ୍ତ ହେଲେ ପୁଣି ଏହି ନିର୍ଜନତା ଭିତରକୁ ଫେରିଆସେ ।'

ମୃଗାଙ୍କବତୀଠାରୁ ତା'ର ପରିଚୟ ଜାଣି ରାଜାଙ୍କ ମନରେ ମୁନି କୁଶଦତ୍ତଙ୍କ ଆଶୀର୍ବାଦ ଜାଗ୍ରତ ହେଲା । ସେ ବିଦ୍ୟାଧର କନ୍ୟା ସହିତ ଏହିପରି ପ୍ରେମ ପ୍ରଣୟପୂର୍ଣ୍ଣ କଥାବାର୍ତ୍ତା ଆରମ୍ଭ କଲେ ଯେ ମୃଗାଙ୍କବତୀ ସେହିଠାରେ ହିଁ ତାଙ୍କୁ ପତିପଦରେ ବରଣ କରିବା ନିମିତ୍ତ ସ୍ୱୀକୃତ ହେଲା । କିନ୍ତୁ ତାଙ୍କର ଗୋଟିଏ ସର୍ତ୍ତ ରହିଲା । ସେ କହିଲା, 'ଆର୍ଯ୍ୟପୁତ୍ର, ପ୍ରତ୍ୟେକ ମାସର ଶୁକ୍ଳ ଏବଂ କୃଷ୍ଣ ଅଷ୍ଟମୀ ଓ ଚତୁର୍ଦ୍ଦଶୀ ତିଥିରେ ମୁଁ ଆପଣଙ୍କ ଆୟତ୍ତରେ ରହିବି ନାହିଁ । ଏହି ଚାରିଦିନ ମୁଁ ମୋ ଇଚ୍ଛାନୁସାରେ ଯେଉଁଆଡ଼େ ଚାହିଁବି ଯାଇପାରିବି । ଆପଣ ଏଥିରେ ବାଧା ଦେବେ ନାହିଁ କି ଏ ସମ୍ପର୍କରେ କୌଣସି ପ୍ରଶ୍ନ ମଧ୍ୟ ପଚାରିବେ ନାହିଁ । ଏହାର କିଛି କାରଣ ଅଛି ।'

ରାଜା ଏହି ଦିବ୍ୟ କନ୍ୟାଟିର ସର୍ତ୍ତରେ ସ୍ୱୀକୃତ ହୋଇ ଗାନ୍ଧର୍ବରୀତିରେ ତାକୁ ବିବାହ କଲେ । ସେ ତା' ସହିତ ସେଠାରେ ରହି ଏପରି ସମ୍ଭୋଗ ସୁଖ ଲାଭ କଲେ ଯେ ମନେହେଉଥିଲା ସେ ଦ୍ୱିତୀୟ କନ୍ଦର୍ପରେ ରୂପାନ୍ତରିତ ହୋଇଯାଇଛନ୍ତି । ସମ୍ଭୋଗ କାଳରେ ମୃଗାଙ୍କବତୀର କେଶପାଶରୁ ପୁଷ୍ପମାଳା ସବୁ ଝରି ପଡୁଥିଲା, କେଶାକର୍ଷଣ ବେଳେ ଶରୀରରେ ନଖ କ୍ଷତ ସୃଷ୍ଟି ହେଉଥିଲା; ବିମ୍ବୋଷ୍ଠୀର ଅଧର ପାନ ବେଳେ ଅଧରର ରକ୍ତିମା ନଷ୍ଟ ହୋଇଯାଉଥିଲା, ଏବଂ ତା' ଉପରେ ଦନ୍ତକ୍ଷତର ଚିହ୍ନ ଅଙ୍କିତ ହୋଇପଡୁଥିଲା,

ସ୍ତନ ମଣ୍ଡଳସ୍ଥିତ ମଣିମାଳା ଛିନ୍ନବିଚ୍ଛିନ୍ନ ହୋଇଯାଉଥିଲା ଏବଂ ସ୍ତନଯୁଗଳ ନଖକ୍ଷତରେ ଅପୂର୍ବଶୋଭା ଧାରଣ କରୁଥିଲା ।

ରାଜା ଏହିପରି ଦିବ୍ୟ ସମ୍ଭୋଗ ସୁଖରେ କାଳାତିପାତ କରୁଥାନ୍ତି । ଦିନେ ମୃଗାଙ୍କବତୀ ତାଙ୍କୁ କହିଲା, 'ମୁଁ ଆପଣଙ୍କୁ ଯେଉଁ କଥା କହୁଥିଲି ଆଜି ସେହି କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥି । କୌଣସି କାର୍ଯ୍ୟାନୁଷ୍ଠାନ ପାଇଁ ମୁଁ ବର୍ତ୍ତମାନ ଯାଉଛି । ଆପଣ ଏଠାରେ ମୋର ପ୍ରତୀକ୍ଷା କରିବେ । କିନ୍ତୁ ଆର୍ଯ୍ୟପୁତ୍ର, ଏଠାରେ ଏକାକୀ ଥିବାବେଳେ ଆପଣ କଦାପି ସେହି ସ୍ଫଟିକ ଭବନକୁ ଯିବେ ନାହିଁ, କାରଣ ତା' ମଧ୍ୟରେ ପଡ଼ିଗଲେ ଆପଣ ଯାଇ ମର୍ତ୍ତ୍ୟ ଲୋକରେ ପହଞ୍ଚିଯିବେ ।'

ରାଜାଙ୍କୁ ଏହିପରି ନିର୍ଦ୍ଦେଶ ଦେଇ ମୃଗାଙ୍କବତୀ ନବରରୁ ନିଷ୍କ୍ରାନ୍ତ ହେଲା । ତା'ର ଗୋପନ ରହସ୍ୟ ଜାଣିବାପାଇଁ ରାଜା କୌତୂହଳୀ ହୋଇ ଉଠିଲେ । ତେଣୁ ସେ ମଧ୍ୟ ତରବାରି ହସ୍ତରେ ନିଜକୁ ଗୁପ୍ତ ରଖି ମୃଗାଙ୍କବତୀର ଅନୁସରଣ କଲେ । ପଥ ମଧ୍ୟରେ ଗୋଟିଏ ଭୀଷଣ ରାକ୍ଷସ ଆସୁଥିବା ତାଙ୍କର ଦୃଷ୍ଟିଗୋଚର ହେଲା । ତା' ଶରୀରର ବର୍ଣ୍ଣ ଅମାବାସ୍ୟାର ଅନ୍ଧକାରକୁ ମଧ୍ୟ ତିରସ୍କାର କରୁଥିଲା । ତାର ମୁଖଗହ୍ୱର ପାତାଳର ଭ୍ରମ ସୃଷ୍ଟି କରୁଥିଲା । ରାକ୍ଷସ ଘୋର ଗର୍ଜନ କରି ମୃଗାଙ୍କବତୀକୁ ଉଠାଇ ନେଇ ଗିଳିଦେଲା । ଏହା ଦେଖି ରାଜା ହଠାତ୍ କ୍ରୋଧରେ ଜଳିଉଠିଲେ । ସେ ଉତ୍ଫଣ ସର୍ପତୁଲ୍ୟ ନିଜର ଶ୍ୟାମଳ ବର୍ଣ୍ଣ ତରବାରିକୁ କୋଷମୁକ୍ତ କରି ଦ୍ରୁତ ପଦକ୍ଷେପରେ ରାକ୍ଷସର ମସ୍ତକ ଛେଦନ କଲେ । ରାକ୍ଷସର ଶରୀରରୁ ନିର୍ଝରିତ ରକ୍ତ ରାଜାଙ୍କ କ୍ରୋଧାଗ୍ନି ଶାନ୍ତ କଲା, କିନ୍ତୁ ତାହାଦ୍ୱାରା ବିରହାଗ୍ନି ଅଧିକ ପ୍ରଜ୍ୱଳିତ ହେଲା । ରାଜା କ୍ଷଣକ ପାଇଁ ଅନ୍ଧୀଭୂତ ହୋଇଗଲେ । କିଂକର୍ତ୍ତବ୍ୟବିମୂଢ଼ ଭାବରେ ସେ ସେଠାରେ ଠିଆ ହୋଇଥାନ୍ତି । ତାଙ୍କର ବିସ୍ମୟ ଉତ୍ପାଦନ କରି ମେଘମାଳା ମଧ୍ୟରୁ ମୁକ୍ତ ହୋଇ ଚନ୍ଦ୍ର ଯେପରି ନିଜର ନିର୍ମଳ ଜ୍ୟୋତି ପ୍ରକାଶ କରନ୍ତି, ସେହିପରି ରାକ୍ଷସର କୃଷ୍ଣବର୍ଣ୍ଣ ଶରୀର ବିଦାରଣ କରି ମୃଗାଙ୍କବତୀ ଅକ୍ଷତ ଶରୀରରେ ବାହାରି ଆସିଲା । ରାଜା ମୃତାପତ୍ନୀକୁ ଫେରିଆସିଥିବା ଦେଖି ବିହ୍ୱଳିତ ଭାବେ ଦୌଡ଼ିଯାଇ ତାକୁ ଆଲିଙ୍ଗନ କଲେ ।

ରାଜା ଯେତେବେଳେ ଏହା ସ୍ୱପ୍ନ ନା ମାୟା ଜାଣିବାପାଇଁ ମୃଗାଙ୍କବତୀକୁ ପ୍ରଶ୍ନ କଲେ, ବିଦ୍ୟାଧରୀ ନିଜର ଅତୀତ ସ୍ମରଣ କରି କହିଲା—

'ଆର୍ଯ୍ୟପୁତ୍ର, ଶୁଣନ୍ତୁ । ଏହା ସ୍ୱପ୍ନ ନୁହେଁ କି ମାୟା ନୁହେଁ । ବିଦ୍ୟାଧର ଅଧିପତି ମୋର ପିତାଙ୍କ ଅଭିଶାପର ଏହା ହେଉଛି ପରିଣାମ ।

ପୂର୍ବେ ମୋର ପିତା ଏଠାରେ ରହୁଥିଲେ । ଅନେକ ପୁତ୍ର ଥିଲେ ସୁଦ୍ଧା ମୋ ପ୍ରତି ତାଙ୍କ ସ୍ନେହ ଥିଲା ଅମାପ । ମୋତେ ଛାଡ଼ି ସେ କେବେ ଭୋଜନ କରୁନଥିଲେ । ଭଗବାନ ଶଙ୍କରଙ୍କ ପ୍ରତି ମୋର ବିଶେଷ ଭକ୍ତି ଥିବାରୁ ମୁଁ ଉଭୟ ଶୁକ୍ଳ ଓ କୃଷ୍ଣପକ୍ଷର ଅଷ୍ଟମୀ ଓ ଚତୁର୍ଦ୍ଦଶୀ ତିଥିରେ ଆସି ଏହି ନିର୍ଜନ ସ୍ଥାନରେ ତାଙ୍କର ପୂଜା କରୁଥାଏ । ଦିନେ ଚତୁର୍ଦ୍ଦଶୀ ତିଥିରେ ମୁଁ ଭଗବାନ ଶଙ୍କରଙ୍କ ପୂଜାପାଇଁ ଆସିଥାଏ । ସେଦିନ ପୂଜା ଭିତରେ ମୁଁ ଏପରି ତଲ୍ଲୀନ ହୋଇଗଲି ଯେ ସମୟ ଜାଣିପାରିଲି ନାହିଁ । ଦିନ ଗଡ଼ିଯାଇ ସଂଧ୍ୟା ହୋଇଗଲା । ପିତା ମୋତେ ଅପେକ୍ଷା କରି ଉପବାସ ରହିଗଲେ । ଅତ୍ୟଧିକ କ୍ଷୁଧାତୁର ହୋଇ ସେ ମୋ ପ୍ରତି କ୍ରୋଧାନ୍ୱିତ ହୋଇଥାନ୍ତି । ରାତିରେ ମୁଁ ମୁଣ୍ଡ ପୋତି ଘରକୁ ଫେରିଲି । ମୋର ଅପରାଧ ଜାଣି ମୁଁ କ୍ଷମାଭିକ୍ଷା କଲି । କିନ୍ତୁ ଭବିତବ୍ୟ ଏତେ ପ୍ରବଳ ଥିଲା ଯେ ସେ ଆମ ପିତା ଓ କନ୍ୟାଙ୍କ ମଧ୍ୟରେ ଥିବା ସ୍ନେହକୁ ନିଷ୍ଠୁରଭାବେ ନଷ୍ଟ କରିଦେଇଥିଲା । ସେ ମୋତେ ଅଭିଶାପ ଦେଲେ—

'ତୁ ଯେହେତୁ ଆଜି ମୋତେ ଉପେକ୍ଷା କରି ଦିନସାରା ଉପବାସ ରଖିଲୁ, ତେଣୁ ପ୍ରତି ମାସର କେବଳ ଶୁକ୍ଳ ଓ କୃଷ୍ଣ ଅଷ୍ଟମୀ ଓ ଚତୁର୍ଦ୍ଦଶୀ ତିଥିରେ ଶିବ ପୂଜା କରିବାପାଇଁ ନଗର ବାହାରକୁ ଯିବୁ । ସେତେବେଳେ କୃତାନ୍ତସନ୍ତ୍ରାସ ନାମକ ରାକ୍ଷସ ତୋତେ ଗିଳି ଦେଉଥିବ । କିନ୍ତୁ ବାରମ୍ବାର ତୁ ତାର ହୃଦୟ ବିଦୀର୍ଣ୍ଣ କରି ଜୀବିତ ଅବସ୍ଥାରେ ତା ଭିତରୁ ବାହାରି ଆସୁଥିବୁ । ତୁ ଏଠାରେ ଏକାକିନୀ ହିଁ ରହିବୁ । ଅଭିଶାପ କଥା ତୋର ମନେରହିବ ନାହିଁ । ରାକ୍ଷସ ଗିଳିବାର କଷ୍ଟ ମଧ୍ୟ ତୁ ଅନୁଭବ କରିବୁ ନାହିଁ ।'

ଅଭିଶାପ ଦେବା ପରେ ପିତାଙ୍କ ମନରୁ କ୍ରୋଧଭାବ ଧୀରେ ଧୀରେ ଅପସରି ଗଲା । ମୁଁ ମଧ୍ୟ ବହୁ ଅନୁନୟ ବିନୟ କରି ତାଙ୍କୁ ଶାନ୍ତ କଲି । ସେ କିଛି ସମୟ ଧ୍ୟାନ କରି କହିଲେ ଯେ ଅଙ୍ଗଦେଶର ରାଜା ଯଶଃକେତୁ ମୋତେ ବିବାହ କରିବେ । କୃତାନ୍ତସନ୍ତ୍ରାସ ମୋତେ ଗିଳିଦେଉଥିବା ଦେଖି ସେ ଯେତେବେଳେ ତାର ମସ୍ତକ ଛିନ୍ନ କରିବେ ସେତେବେଳେ ତା' ଗର୍ଭରୁ ନିର୍ଗତ ହୋଇ ମୁଁ ଶାପମୁକ୍ତ ହେବି । ମୋତେ ମୋର ଅଭିଶାପ ଏବଂ ସମସ୍ତ ବିଦ୍ୟାଧରୀ ବିଦ୍ୟା ସ୍ମରଣ ହେବ ।

ଶାପାନ୍ତ ସମ୍ପର୍କରେ ଏହିପରି କହିବାପରେ ମୋତେ ଏଠାରେ ଏକାକିନୀ ଛାଡ଼ି ପିତା ନିଜର ସମସ୍ତ ପ୍ରଜା ସହିତ ମର୍ତ୍ତ୍ୟଲୋକର ନିଷଧ ପର୍ବତ ଉପରକୁ ଚାଲିଗଲେ । ସେହିଦିନଠାରୁ ଶାପ ମୋହିତ ହୋଇ ଅଭିଶପ୍ତ ଜୀବନ କଟାଇ ଆସୁଛି । ଆଜି ମୋର ଶାପର ଅବଧି ଶେଷ ହେଲା । ମୁଁ ମୋର ଅତୀତ କଥା ଏବଂ ବିଦ୍ୟାସବୁ ସ୍ମରଣ

କରିପାରିଛି । ବର୍ତ୍ତମାନ ମୁଁ ନିଷଧ ପର୍ବତ ଉପରେ ରହୁଥିବା ପିତାଙ୍କ ନିକଟକୁ ଫେରିଯିବି । ଶାପ ମୁକ୍ତହେଲେ ପୂର୍ବଗତି ଲାଭ କରିବା ଆମ ବିଦ୍ୟାଧରମାନଙ୍କ କୁଳରୀତି । ଆପଣ ଚାହିଁଲେ ଏଠାରେ ରହିପାରନ୍ତି କିମ୍ବା ଆପଣଙ୍କ ନିଜ ଦେଶକୁ ଚାଲିଯାଇ ପାରନ୍ତି ।'

ମୃଗାଙ୍କବତୀର ଶେଷକଥା ରାଜାଙ୍କ ହୃଦୟରେ ଶେଳାସ୍ତ୍ର ତୁଲ୍ୟ ବିଦ୍ଧ ହେଲା । ସେ ଦୁଃଖରେ ଭାଙ୍ଗିପଡ଼ି ଅନୁରୋଧ କଲେ, 'ପ୍ରିୟେ, ତୁମେ ମୋର ଅନୁରୋଧ ରକ୍ଷାକରି ଏଠାରେ ଗୋଟିଏ ମାତ୍ର ସପ୍ତାହ ଅଟକିଯାଅ । ଏହା ମୋ ପ୍ରତି ତୁମର ଅଶେଷ କୃପା ହେବ । ନିଜ ନିଜର ଉତ୍ସୁକତା ଦୂର କରିବାପାଇଁ ଏହି ସପ୍ତାହଟି ଆମେ ଉଦ୍ୟାନ ମଧ୍ୟରେ ବିଳାସ କ୍ରୀଡ଼ାଦ୍ୱାରା କଟାଇଦେବା । ତା'ପରେ ତୁମେ ତୁମ ପିତାଙ୍କ ନିକଟକୁ ଫେରିଯିବ ଓ ମୁଁ ମୋ ନିଜ ଦେଶକୁ ଚାଲିଯିବି ।' ପ୍ରଣୟମୁଗ୍ଧା ମୃଗାଙ୍କବତୀ ରାଜାଙ୍କ ଅନୁରୋଧ ସ୍ୱୀକାର କଲା ।

ଛଅଦିନ ପର୍ଯ୍ୟନ୍ତ ରାଜା ଯଶଃକେତୁ ନିଜର ପ୍ରିୟତମା ଭାର୍ଯ୍ୟା ସହିତ ଉଦ୍ୟାନ ଓ ଜଳକ୍ରୀଡ଼ା କରି ସମୟ ବିତାଇ ଦେଲେ । ପୁଷ୍କରିଣୀର କମଳ-ନୟନ ସବୁ ଭାବୀ ବିଚ୍ଛେଦ ଯୋଗୁଁ ଅଶ୍ରୁସଜଳ ହୋଇଉଠୁଥିଲା । ତରଙ୍ଗ ସମୂହ ହସ୍ତ ଉତ୍ତୋଳନ କରି ହଂସ ଓ ସାରସମାନଙ୍କ ସ୍ୱରରେ ସେମାନଙ୍କୁ ସେଠାରୁ ଯିବାପାଇଁ ବାରଣ କରୁଥିଲେ । ସପ୍ତମ ଦିନ ଯଶଃକେତୁ କୌଶଳରେ ମୃଗାଙ୍କବତୀ ସହିତ ଯାଇ ପୂର୍ବୋକ୍ତ ସ୍ଫଟିକ ଭବନରେ ପ୍ରବେଶ କଲେ । ସେଠାରେ ମର୍ତ୍ତ୍ୟଲୋକରେ ପହଞ୍ଚିବାପାଇଁ ଯନ୍ତ୍ରନିର୍ମିତ ମାର୍ଗତୁଲ୍ୟ ସରୋବରଟିଏ ଶୋଭା ପାଉଥିଲା । ରାଜା ବିଦ୍ୟାଧର କୁମାରୀକୁ କଣ୍ଠାଶ୍ଳେଷ କରି ସେହି ସରୋବର ମଧ୍ୟକୁ ଡେଇଁ ପଡ଼ିଲେ । ପର ମୁହୂର୍ତ୍ତରେ ଅଙ୍ଗ ରାଜଧାନୀର ଉଦ୍ୟାନ ମଧ୍ୟରେ ସେମାନେ ନିଜକୁ ଆବିଷ୍କାର କଲେ । ଉଦ୍ୟାନ ରକ୍ଷକମାନେ ରାଜାଙ୍କୁ ସପତ୍ନୀକ ଫେରିଆସିଥିବା ଦେଖି ଅତ୍ୟନ୍ତ ଉତ୍ସାହର ସହିତ ମନ୍ତ୍ରୀ ଦୀର୍ଘଦର୍ଶୀଙ୍କୁ ଯାଇ ଜଣାଇଲେ । ନିଜର ଈପ୍‌ସିତା ସ୍ତ୍ରୀ ସହିତ ରାଜା ଫେରିଆସିଥିବା ଯୋଗୁଁ କେବଳ ଦୀର୍ଘଦର୍ଶୀ ନୁହନ୍ତି, ସମଗ୍ର ରାଜ୍ୟବାସୀ ଅତୀବ ଆନନ୍ଦ ଓ ଉତ୍କଣ୍ଠାର ସହିତ ଉଦ୍ୟାନ ମଧ୍ୟକୁ ଚାଲିଲେ । ସମସ୍ତଙ୍କ ଦ୍ୱାରା ଅଭିନନ୍ଦିତ ହୋଇ ଯଶଃକେତୁ ମୃଗାଙ୍କବତୀ ସହିତ ଅବଲୀଳାକ୍ରମେ ସ୍ୱୀୟ ପ୍ରାସାଦ ମଧ୍ୟରେ ଯାଇ ପ୍ରବେଶ କଲେ ।

ଦୀର୍ଘଦର୍ଶୀ ରାଜାଙ୍କ କାର୍ଯ୍ୟସିଦ୍ଧିରେ ଭାବୁଥାନ୍ତି 'ସମୁଦ୍ର ମଧ୍ୟରେ ବିଜୁଳିର ଚମକ ପରି କ୍ଷଣକପାଇଁ ଏହି କନ୍ୟାଟି ମୋ ଦୃଷ୍ଟିକୁ ଆସିଥିଲା । ନାବିକମାନେ ମଧ୍ୟ ତାକୁ

ସେହିପରି ହିଁ ଦେଖୁଥିବା ପ୍ରକାଶ କରୁଥିଲେ । ରାଜା କନ୍ୟାଟିକୁ ପାଇବା ବିସ୍ମୟକର ମନେହେଉଛି । ଅବଶ୍ୟ ବିଧାତା ଯାହା ଭାଗ୍ୟରେ ଯାହା ଲେଖିଥାଏ ତାହା ଯେତେ ଅସମ୍ଭବ ହେଲେ ସୁଦ୍ଧା ସେହି ବ୍ୟକ୍ତିକୁ ହିଁ ମିଳିଥାଏ ।' କେବଳ ମନ୍ତ୍ରୀ ନୁହଁନ୍ତି ସମଗ୍ର ରାଜ୍ୟବାସୀ ମଧ୍ୟ ଏହି ବିଷୟ ନେଇ ବିଚାର ଆଲୋଚନା କରୁଥାନ୍ତି ।

ଏଣେ ଗୋଟିଏ ସପ୍ତାହ ବିତିଗଲା । ମୃଗାଙ୍କବତୀ ରାଜାଙ୍କୁ ନିଜ ବାସଭବନରେ ଆସି ଉପସ୍ଥିତ ହୋଇଥିବା ଦେଖି ନିଜେ ବିଦ୍ୟାଧର ଲୋକକୁ ଫେରିଯିବା ନିମିତ୍ତ ଅନୁମତି ପ୍ରାର୍ଥନା କଲା । କିନ୍ତୁ ମନୁଷ୍ୟ ଲୋକକୁ ଆସିବା ପରେ ଆକାଶ ବିଚରଣ ବିଦ୍ୟା ତା'ର ଆଉ ସ୍ମରଣ ହେଲାନାହିଁ । ପ୍ରବଞ୍ଚିତା ହେଲାପରି ସେ ଉଦାସ ହୋଇପଡ଼ିଲା । ସେ ହଠାତ୍ ଏପରି ଉଦାସିନା ଦେଖାଯାଉଥିବାର କାରଣ ଜିଜ୍ଞାସା କରନ୍ତେ ମୃଗାଙ୍କବତୀ ଦୁଃଖର ସହିତ ରାଜାଙ୍କୁ କହିଲା, 'ଆର୍ଯ୍ୟପୁତ୍ର, ଶାପମୁକ୍ତ ହେବାପରେ ମଧ୍ୟ ଏତେ ଦିନ ଧରି ତୁମ ନିକଟରେ ରହିବା ଯୋଗୁଁ ମୁଁ ନିଜର ସମସ୍ତ ବିଦ୍ୟା ଭୁଲିଯାଇଛି । ତା' ସହିତ ମୋର ଅଲୌକିକ ଗତି ମଧ୍ୟ ରୁଦ୍ଧ ହୋଇଯାଇଛି ।' ଏହାଶୁଣି ଯଶଃକେତୁ ମନେମନେ ଅତ୍ୟନ୍ତ ଆନନ୍ଦିତ ହେଲେ । ବର୍ତ୍ତମାନ ବିଦ୍ୟାଧରୀ ସମ୍ପୂର୍ଣ୍ଣତଃ ତାଙ୍କରି ହୋଇଗଲା । ତାଙ୍କ ଜୀବନର ଅଭିଳାଷ ପୂର୍ଣ୍ଣ ହେଲା ।

ରାଜାଙ୍କୁ ମୃଗାଙ୍କବତୀ ସହିତ ଆନନ୍ଦିତ ଥିବା ଦେଖି ଦୀର୍ଘଦର୍ଶୀ ସ୍ୱବାସଭବନକୁ ଫେରିଗଲେ । ରାତିରେ ସେ ବିଛଣାରେ ଶୋଇଥିବା ବେଳେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ଅକସ୍ମାତ୍ ଦୀର୍ଘଦର୍ଶୀ ପ୍ରାଣତ୍ୟାଗ କଲେ । ମନ୍ତ୍ରୀଙ୍କ ମୃତ୍ୟୁରେ ରାଜା ବହୁଦିନ ଧରି ଦୁଃଖିତ ରହିଲେ । ଶେଷରେ ଅନନ୍ୟୋପାୟ ହୋଇ ମୃଗାଙ୍କବତୀ ସହିତ ନିଜେ ରାଜକାର୍ଯ୍ୟ ପରିଚାଳନା କରିବାପାଇଁ ପ୍ରସ୍ତୁତ ହେଲେ ।''

ପଥ ମଧ୍ୟରେ ଏହିପରି ବିଚିତ୍ରକଥା ଶୁଣାଇ ବେତାଳ ପ୍ରଶ୍ନ କଲା, 'ରାଜନ୍, ଏବେ କୁହ ରାଜା ଯଶଃକେତୁର ଅଭ୍ୟୁଦୟ ଦେଖି ମହାମନ୍ତ୍ରୀ ଦୀର୍ଘଦର୍ଶୀର ହୃଦୟ ଆନନ୍ଦରେ ନାଚିଉଠିବା ପରିବର୍ତ୍ତେ କାହିଁକି ବିଦୀର୍ଣ୍ଣ ହେଲା ? ସେ ମୃଗାଙ୍କବତୀ ପରି ଅଲୌକିକ ସ୍ତ୍ରୀଲାଭରୁ ବଞ୍ଚିତ ହେବାରୁ ତା'ର ଏପରି ଦଶା ହେଲା କି ? ନା ସେ ରାଜ୍ୟ ପ୍ରାପ୍ତିର ଲାଳସା ରଖିଥିଲା, କିନ୍ତୁ ରାଜା ଫେରିଆସିବାରୁ ମନୋରଥ ବ୍ୟର୍ଥ ହୋଇଥିବା ଦେଖି ଦୁଃଖରେ ସେ ମୃତ୍ୟୁଲାଭ କଲା ? ରାଜନ୍, ଯଦି ଯଥାର୍ଥ ଉତ୍ତର ଜାଣିସୁଦ୍ଧା ତୁମେ ପ୍ରକାଶ ନକର, ତୁମର ସମସ୍ତ ଧର୍ମ ନଷ୍ଟ ହେବ ଏବଂ ତୁମ ମସ୍ତକ ମଧ୍ୟ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବ ।'

ବେତାଳର ପ୍ରଶ୍ନରେ ରାଜା ଉତ୍ତର ଦେଲେ, 'ବେତାଳ, ରାଜାଙ୍କର ଶୁଭଚିନ୍ତକ ମନ୍ତ୍ରୀବର ଦୀର୍ଘଦର୍ଶୀର ମୃତ୍ୟୁ ପାଇଁ ଏ ଉଭୟ କାରଣରୁ କୌଣସିଟି ଉଚିତ ମନେ ହେଉନାହିଁ । ବିପରୀତ କ୍ରମେ ସେ ବୋଧହୁଏ ଭାବି ଥାଇପାରେ ଯେ ରାଜା ତ ସାଧାରଣ ସ୍ତ୍ରୀମାନଙ୍କ ପ୍ରତି ଆକୃଷ୍ଟ ହୋଇ ରାଜକାର୍ଯ୍ୟ ପ୍ରତି ଅବହେଳା ପ୍ରଦର୍ଶନ କରୁଥିଲେ, ବର୍ତ୍ତମାନ ଏହି ଅଲୌକିକ ବିଦ୍ୟାଧରୀ ପତ୍ନୀକୁ ଲାଭ କରି ସେ କ'ଣ ବା ନହେବେ ! ପୁଣି ଯେଉଁଥିପାଇଁ ମୁଁ ଏତେ କଷ୍ଟ ସ୍ୱୀକାର କରିଥିଲି ସେଥିରେ ଲାଭ ବ୍ୟତୀତ କ୍ଷତି ହିଁ ଅଧିକ ହେଲା । ଏହିପରି ଦୁଶ୍ଚିନ୍ତା ହିଁ ଦୀର୍ଘଦର୍ଶୀର ମୃତ୍ୟୁପାଇଁ ଯଥାର୍ଥ କାରଣ ।'

ରାଜାଙ୍କ କଥା ଶୁଣି ମାୟାବୀ ବେତାଳ ପୁଣି ନିଜ ସ୍ଥାନରେ ଯାଇ ପହଞ୍ଚିଲା । ତାକୁ ବଳପୂର୍ବକ ଫେରାଇ ଆଣିବାପାଇଁ ସୁସ୍ଥିରମନା ତ୍ରିବିକ୍ରମସେନ ପୁଣି ଶିଂଶପା ବୃକ୍ଷ ନିକଟକୁ ଚାଲିଲେ ।

# ବିଂଶ ତରଙ୍ଗ

## ତ୍ରୟୋଦଶ ବେତାଳ : ବ୍ରାହ୍ମଣ ହରିସ୍ୱାମୀ କଥା

ରାଜା ତ୍ରିବିକ୍ରମସେନ ଶିଂଶପା ବୃକ୍ଷ ଶାଖାରୁ ବେତାଳକୁ ସ୍କନ୍ଧରେ ଧାରଣ କରି ପୁଣି ଲକ୍ଷ୍ୟସ୍ଥଳ ପ୍ରତି ଅଗ୍ରସର ହେଲେ । ବେତାଳ ପୁଣି ତା'ର ସ୍ୱାଭାବିକ ରୀତିରେ ରାଜାଙ୍କୁ ଗୋଟିଏ କ୍ଷୁଦ୍ର ଗଳ୍ପ ଶୁଣାଇବା ଆରମ୍ଭ କଲା–

''ବାରାଣସୀ ନାମରେ ଏକ ପ୍ରସିଦ୍ଧ ନଗରୀ ଅଛି । କୈଳାସପତି ଭଗବାନ ଶଙ୍କର ଏଠାରେ ଆସି ବାସ କରୁଥିବା ଯୋଗୁଁ ଏହା ଅତ୍ୟନ୍ତ ପବିତ୍ର । ସେଠାରେ ଜଣେ ମହାଧନଶାଳୀ ବ୍ରାହ୍ମଣ ବାସ କରୁଥିଲେ । ହରିସ୍ୱାମୀ ତାଙ୍କର ଏକମାତ୍ର ପୁତ୍ର । ତାଙ୍କ ସ୍ତ୍ରୀଙ୍କ ନାମ ଲାବଣ୍ୟବତୀ । ସେ ନିଜର ନାମ ଅନୁରୂପ ରୂପବତୀ ଥିଲେ । ମନେହେଉଥିଲା ରମ୍ଭା, ତିଳୋତ୍ତମା ପ୍ରଭୃତି ଅପ୍‌ସରାମାନଙ୍କୁ ନିର୍ମାଣ କରି ବିଧାତା ଯେଉଁ ଶିଳ୍ପ କୁଶଳତା ଲାଭ କରିଥିଲେ ତାକୁ ପ୍ରୟୋଗ କରି ସେ ଏହି ଅପୂର୍ବ ରୂପଶାଳିନୀ ଲାବଣ୍ୟବତୀଙ୍କ ଶରୀର ନିର୍ମାଣ କରିଥିଲେ ।

ଦିନେ ରତିଶ୍ରାନ୍ତ ହରିସ୍ୱାମୀ ନିଜର ବାସଭବନ ଉପରେ ଶୟନ କରିଥାନ୍ତି । ଉଜ୍ଜ୍ୱଳ ଚନ୍ଦ୍ରକିରଣରେ ଲାବଣ୍ୟବତୀଙ୍କ ରୂପ ଉଜ୍ଜ୍ୱଳତର ଦେଖାଯାଉଥାଏ । ସେ ମଧ୍ୟ ରତିକ୍ଳାନ୍ତା ହୋଇ ଗାଢ଼ନିଦ୍ରାରେ ଅଭିଭୂତା ଥାନ୍ତି । ତାଙ୍କ ଶରୀରରୁ ପରିଧେୟ ବସ୍ତ୍ର ଖସି ପଡ଼ିଥାଏ ।

ଏ ସମୟରେ ମଦନବେଗ ନାମକ ଜଣେ ବିଦ୍ୟାଧର କୁମାର ନିଜ ବିଦ୍ୟାବଳରେ ଆକାଶ ମାର୍ଗରେ ବିଚରଣ କରୁଥାନ୍ତି । ଲାବଣ୍ୟବତୀଙ୍କ ଅର୍ଦ୍ଧନଗ୍ନ ଶରୀର ଉପରେ ତାଙ୍କର ଦୃଷ୍ଟିପାତ ହେବାମାତ୍ରେ ସେ କାମବିହ୍ୱଳ ହୋଇପଡ଼ିଲେ । ତାଙ୍କର ବିବେଚନା ଶକ୍ତି ଲୋପ ପାଇଲା । ସେ ହଠାତ୍ ଆକାଶ ମାର୍ଗରୁ ଅବତରଣ କରି ନିଦ୍ରିତା ଲାବଣ୍ୟବତୀଙ୍କୁ ଉଠାଇନେଇ ଚାଲିଗଲେ ।

କିଛି ସମୟ ପରେ ହରିସ୍ୱାମୀଙ୍କ ନିଦ୍ରାଭଙ୍ଗ ହେଲା । ନିଜର ପ୍ରାଣପ୍ରିୟା ଭାର୍ଯ୍ୟାକୁ ସେଠାରେ ନଦେଖି ସେ ବିବ୍ରତ ହୋଇପଡ଼ିଲେ । ଲାବଣ୍ୟବତୀ କେଉଁଆଡ଼େ ଗଲା, ତାଙ୍କ ପ୍ରତି ଆଉ ଅଭିମାନ କରିଛି କି, କିମ୍ବା ନିଜକୁ କୌଣସି ସ୍ଥାନରେ ଗୋପନ ରଖି ତାଙ୍କ ମନୋଭାବ ପରୀକ୍ଷା କରିବାପାଇଁ ପରିହାସ କରୁଛି ସେ ବୁଝିପାରିଲେ ନାହିଁ । ଆଶଙ୍କିତ ହୋଇ ବ୍ୟାକୁଳ ଭାବରେ ସେ ଗୃହ, ଛାତ, ପ୍ରକୋଷ୍ଠ ଇତ୍ୟାଦି ବିଭିନ୍ନ ସ୍ଥାନରେ ରାତିସାରା ଖୋଜିବାକୁ ଲାଗିଲେ । କାଳେ ଉଦ୍ୟାନକୁ ଚାଲିଯାଇଥିବ ଭାବି ସେ ସେଠାରେ ମଧ୍ୟ ଅନୁସନ୍ଧାନ କଲେ । କିନ୍ତୁ କୌଣସି ସ୍ଥାନରେ ଲାବଣ୍ୟବତୀଙ୍କ ସନ୍ଧାନ ମିଳିଲା ନାହିଁ । ଶେଷରେ ସେ ଦୁଃଖରେ କେବଳ ବିଳାପ କରିବାକୁ ଲାଗିଲେ । ବିକଳ ଭାବେ ସେ କହୁଥାନ୍ତି, 'ହେ ଚନ୍ଦ୍ରବଦନି ! ହେ ଜ୍ୟୋତ୍ସ୍ନାଗୌରି ! ହେ ପ୍ରିୟେ ! ଚନ୍ଦ୍ର ବୋଧହୁଏ ତୁମକୁ ସହ୍ୟ କରିପାରିଲେ ନାହିଁ । ରୂପ ଓ କାନ୍ତିରେ ତୁମେ ଚନ୍ଦ୍ରକୁ ବଳିଯାଇଥିଲ । ସେ ଭୟରେ କେବଳ ମତେ ଆନନ୍ଦ ଦେଉଥିଲା । ବର୍ତ୍ତମାନ ତୁମର ଅନୁପସ୍ଥିତିରେ ଦୁଷ୍ଟ ଚନ୍ଦ୍ରମା ନିଜର ବିଷାକ୍ତ ଶରଜାଳରେ ମୋତେ ବାରମ୍ବାର ଆହତ କରୁଛି ।'

ଏହିପରି ଚିନ୍ତା ଓ ବିଳାପ ଭିତରେ ରାତ୍ରିଶେଷ ହେଲା, କିନ୍ତୁ ତାଙ୍କର ବିରହବ୍ୟଥା ଶେଷ ହେଲା ନାହିଁ । ପ୍ରଭାତରୁ ସୂର୍ଯ୍ୟକିରଣ ସମଗ୍ର ସଂସାରର ଅନ୍ଧକାର ଦୂରକଲା, କିନ୍ତୁ ତାଙ୍କର ମୋହାନ୍ଧକାର ଦୂରୀଭୂତ ହୋଇପାରିଲା ନାହିଁ । ରାତ୍ରିଶେଷରେ ଚକ୍ରବାକ ଚକ୍ରବାକୀଙ୍କର ପୁନର୍ମିଳନ ଘଟିଲା, ସେମାନଙ୍କ ବିଳାପ ଧ୍ୱନି ଆଉ ଶୁଣାଗଲା ନାହିଁ । ତାହା ହରିସ୍ୱାମୀଙ୍କ ବିଳାପ ଧ୍ୱନିକୁ ଅଧିକ କରୁଣ ଓ ଶତଗୁଣିତ କରିଦେଲା । ସ୍ୱଜନମାନେ ତାଙ୍କୁ ଯେତେ ସାନ୍ତ୍ୱନା ଦେଲେ ମଧ୍ୟ ସେ ଗୃହର ପ୍ରତ୍ୟେକ ସ୍ଥାନରେ ପ୍ରିୟାର ସ୍ମୃତିକୁ ମନେପକାଇ ଅଧିକ ଶୋକବିହ୍ୱଳ ହୋଇଉଠୁଥାନ୍ତି ।

ତାଙ୍କର ଏପରି ଅବସ୍ଥାରେ ମିତ୍ରମାନେ ସାନ୍ତ୍ୱନା ଦେଇ ବୁଝାଉଥାନ୍ତି, 'ମିତ୍ର, ଲାବଣ୍ୟବତୀ ତ ମରିନାହାଁନ୍ତି । ତେଣୁ ତୁମେ ଏପରି ଭାଙ୍ଗିପଡ଼ି ନିଜ ପ୍ରାଣ ବିସର୍ଜନ କରିବାରେ ଲାଭ କ'ଣ ? ଜୀବିତ ଥିଲେ କେବେହେଲେ କେଉଁଠି ନା କେଉଁଠି ତାଙ୍କୁ ପାଇପାରିବ । ତେଣୁ ଧୈର୍ଯ୍ୟଧରି ତାଙ୍କର ଅନୁସନ୍ଧାନ କର । ଉଦ୍ୟମଶୀଳ ବିଦ୍ୱାନ୍ ପୁରୁଷମାନଙ୍କପାଇଁ କୌଣସି ବସ୍ତୁ ଅପ୍ରାପ୍ୟ ନୁହେଁ ।' ମିତ୍ରମାନଙ୍କ ହିତୋପଦେଶରେ ହରିସ୍ୱାମୀ କିଛିଦିନ ମଧ୍ୟରେ ଟିକିଏ ଆଶ୍ୱସ୍ତ ହେଲେ । କିନ୍ତୁ ସେ ମନେମନେ ଚିନ୍ତାକଲେ ଯେ ଏସବୁ ତାଙ୍କ ପୂର୍ବ ସଞ୍ଚିତ ପାପର ପରିଣାମ । ଯଦି ସେ ବ୍ରାହ୍ମଣମାନଙ୍କୁ ସର୍ବସ୍ୱ ଦାନ କରିଦିଅନ୍ତି, ତାହାହେଲେ ତାଙ୍କର ପାପ ସବୁ କ୍ଷୟ ହେବ । ଫଳରେ ସେ ଇତସ୍ତତଃ

ଭ୍ରମଣ କରି କେଉଁଠି ହେଲେ ପ୍ରିୟତମା ପତ୍ନୀକୁ ଲାଭ କରିପାରିବେ । ଏ ପ୍ରକାର ଚିନ୍ତା ଜାତ ହୁଅନ୍ତେ ସେ ଉଠି ନିତ୍ୟକର୍ମ ଶେଷ କଲେ । ପରଦିନ ଏକ ଯଜ୍ଞ ଅନୁଷ୍ଠାନପୂର୍ବକ ବ୍ରହ୍ମଣମାନଙ୍କୁ ଖାଦ୍ୟପେୟରେ ସନ୍ତୁଷ୍ଟ କରି ନିଜର ସମସ୍ତ ସମ୍ପତ୍ତି ଦାନ କରିଦେଲେ ।

ବର୍ତ୍ତମାନ ହରିସ୍ୱାମୀଙ୍କ ଏକମାତ୍ର ସମ୍ପତ୍ତି ହେଉଛି ତାଙ୍କ ବ୍ରହ୍ମତ୍ୱ । ସେ ତା' ସାହାଯ୍ୟରେ ନିଖୋଜ ହୋଇଯାଇଥିବା ପତ୍ନୀକୁ ଲାଭ କରିବାପାଇଁ ତୀର୍ଥାଟନରେ ବାହାରିଗଲେ । ଭ୍ରମଣ କାଳରେ ସମୟକ୍ରମେ ଋତୁମାନଙ୍କ ମଧ୍ୟରେ ସିଂହତୁଲ୍ୟ ଭୟଙ୍କର ଗ୍ରୀଷ୍ମ ଋତୁ ଆସି ପହଞ୍ଚିଲା । ବିରହୀ ପଥିକମାନଙ୍କ ଶ୍ୱାସରେ ଗ୍ରୀଷ୍ମ ପ୍ରବାହ ଅତ୍ୟନ୍ତ ଉତ୍ତପ୍ତ ହୋଇଉଠୁଥିଲା । ପ୍ରଚଣ୍ଡ ସୂର୍ଯ୍ୟ ପରି ତା'ର ମୁଖଗହ୍ୱର ପ୍ରଜ୍ୱଳିତ ଥିଲା । ଦୀପ୍ତ କିରଣ ଜାଳ ରୂପକ କେଶରଦ୍ୱାରା ତା'ର ଶରୀର ଭୟାନକ ମନେହେଉଥିଲା । ଜଳାଶୟଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଶୁଖିଯାଇ ଫାଟିଯାଇଥିବା ଯୋଗୁଁ ମନେହେଉଥିଲା ଜଳପାନ ନକରି ତୃଷାର୍ତ୍ତମାନଙ୍କର ହୃଦୟ ବିଦୀର୍ଣ୍ଣ ହୋଇଯାଇଛି । ବାସନ୍ତିକ ସୌନ୍ଦର୍ଯ୍ୟ ବିରହରେ ପଥ ମଧ୍ୟ ସ୍ଥିତ ବୃକ୍ଷଗୁଡ଼ିକ ସତେ ଯେପରି ଝଡ଼ି ପଡୁଥିବା ପତ୍ରର ଶବ୍ଦରେ ରୋଦନ କରୁଥିଲେ ।

ଏହି ସମୟରେ ପ୍ରଚଣ୍ଡ ଗ୍ରୀଷ୍ମ, ପ୍ରିୟା ବିୟୋଗ, କ୍ଷୁଧାତୃଷା ଏବଂ ପଥଶ୍ରାନ୍ତିରେ ରୁକ୍ଷ, ଦୁର୍ବଳ ତଥା ମଳିନ ହରିସ୍ୱାମୀ ଇତସ୍ତତଃ ଭ୍ରମଣ କରି କୌଣସି ଏକ ଗ୍ରାମରେ ଆସି ପହଞ୍ଚିଲେ । ସେଠାରେ ପଦ୍ମନାଭ ନାମକ ଜଣେ ବ୍ରାହ୍ମଣ ଯଜ୍ଞ ଅନୁଷ୍ଠାନ କରୁଥାନ୍ତି । ହରିସ୍ୱାମୀ ଭୋଜନ ଆଶାରେ ସେଠାରେ ଯାଇ ପହଞ୍ଚିଲେ । ଗୃହ ପ୍ରାଙ୍ଗଣରେ ବହୁ ବ୍ରାହ୍ମଣ ଭୋଜନ କରୁଥାନ୍ତି । ହରିସ୍ୱାମୀ କାହାକୁ କିଛି ନ କହି ଗୃହଦ୍ୱାରରେ ନିଶ୍ଚଳ ଭାବେ ଠିଆ ହୋଇରହିଲେ ।

ହରିସ୍ୱାମୀଙ୍କୁ ଦ୍ୱାରଦେଶରେ ଏହିପରି ଠିଆ ହୋଇଥିବା ଦେଖି ପଦ୍ମନାଭଙ୍କ ପତ୍ନୀଙ୍କ ମନରେ ଦୟା ହେଲା । ସେ ଭାବିଲେ, 'କ୍ଷୁଧା ସତେ କି ଭୟଙ୍କର ଭାବେ ବଳବତୀ ! ଏହା ମନୁଷ୍ୟକୁ କେତେ ଛୋଟ କରିଦିଏ ? ଏହି ପୁରୁଷ ଜଣକ କେବଳ କ୍ଷୁଧାରେ ପୀଡ଼ିତ ହୋଇ ଏହିପରି ମୁହଁ ପୋତି ଠିଆ ହୋଇଛନ୍ତି । ତାଙ୍କ ରୂପରୁ ମନେହେଉଛି ସେ ବହୁ ଦୂରପଥ ଅତିକ୍ରମ କରି ଆସିଛନ୍ତି । ତେଣୁ ଇନ୍ଦ୍ରିୟଗୁଡ଼ିକ ତାଙ୍କର ଅତ୍ୟନ୍ତ ଶିଥିଳ ହୋଇପଡ଼ିଥିବା ପରି ମନେହେଉଛି । ତେଣୁ ସେ ଯିଏ ହୁଅନ୍ତୁ ନା କାହିଁକି ଅନ୍ନଦାନ ପାଇବାର ଯୋଗ୍ୟ ।'

ଏହିପରି ଚିନ୍ତା କରି ଦୟାଶୀଳା ବ୍ରାହ୍ମଣ ପତ୍ନୀ ଘୃତ ଓ ଶର୍କରାଯୁକ୍ତ କିଛି ପାୟସାନ୍ନ ନେଇ ଆସିଲେ । ହରିସ୍ୱାମୀଙ୍କ ନିକଟକୁ ଯାଇ ପାତ୍ରଟି ନମ୍ରତା ପୂର୍ବକ ତାଙ୍କ ହାତକୁ

ବଢ଼ାଇଦେଇ କହିଲେ 'କୌଣସି ପୁଷ୍କରିଣୀ ତଟକୁ ଯାଇ ଏହାକୁ ଭୋଜନ କରିନିଅନ୍ତୁ । ବ୍ରାହ୍ମଣମାନେ ଖାଇସାରିଥିବାରୁ ଏହି ସ୍ଥାନଟି ଶଂଖୁଡ଼ି ହୋଇଯାଇଛି ।' ହରିସ୍ୱାମୀ କୃତଜ୍ଞତାପୂର୍ବକ ଅନ୍ନ ପାତ୍ରଟି ଗ୍ରହଣ କରି ନିକଟସ୍ଥ ସରୋବର କୂଳକୁ ଚାଲିଗଲେ । ସେ ତଟସ୍ଥିତ ଗୋଟିଏ ବଟବୃକ୍ଷ ତଳେ ପାତ୍ରଟିକୁ ରଖିଦେଇ ସରୋବର ମଧ୍ୟରେ ସ୍ନାନ କରିବାକୁ ଯାଇଛନ୍ତି, ଏ ସମୟରେ ଗୋଟିଏ ସଞ୍ଚାଣ ଆସି ସେଠାରେ ପହଞ୍ଚିଲା । ସେ ତା'ର ନଖ ଓ ଚଞ୍ଚୁରେ ଗୋଟିଏ କୃଷ୍ଣ ସର୍ପକୁ ଧରିଥାଏ । ପକ୍ଷୀଟିର ଆଘାତରେ ସର୍ପଟି ମରିଯାଇଥିଲେ ସୁଦ୍ଧା ତା' ଜିହ୍ୱାରୁ ବିଷାକ୍ତ ଲାଳ ସବୁ ତଥାପି ଝରୁଥାଏ । ସଂଯୋଗ ବଶରୁ ସେହି ଲାଳସବୁ ଆସି ହରିସ୍ୱାମୀ ରଖିଥିବା ଅନ୍ନପାତ୍ର ଉପରେ ପଡ଼ିବାକୁ ଲାଗିଲା । ବ୍ରାହ୍ମଣ ଏ ସମ୍ପର୍କରେ କିଛି ଜାଣିପାରିଲେ ନାହିଁ ।

ସ୍ନାନ ଶେଷ କରି ହରିସ୍ୱାମୀ ବୃକ୍ଷ ମୂଳକୁ ଫେରିଆସିଲେ । କ୍ଷୁଧାର୍ତ୍ତ ଥିବାରୁ ମୁହୂର୍ତ୍ତକ ମଧ୍ୟରେ ବ୍ରାହ୍ମଣପତ୍ନୀ ଦେଇଥିବା ସମସ୍ତ ଖାଦ୍ୟ ଉଦରସ୍ଥ କରି ସେ କିଛି ଆଶ୍ୱସ୍ତ ହେଲେ କିନ୍ତୁ ସଙ୍ଗେସଙ୍ଗେ ବିଷକ୍ରିୟା ଆରମ୍ଭ ହେଲା । ତାଙ୍କ ଶରୀରରେ କମ୍ପନ ଦେଖାଦେଲା । ସେ ଭାବିଲେ ଯେ ବିଧାତା ପ୍ରତିକୂଳ ହେଲେ ସଂସାରର ସମସ୍ତ ବସ୍ତୁ ପ୍ରତିକୂଳ ହିଁ ହୋଇଯାନ୍ତି । ତା' ନହେଲେ ବ୍ରାହ୍ମଣପତ୍ନୀ ଆଗ୍ରହର ସହିତ ଦେଇଥିବା ଦୁଧ, ଘିଅ ଓ ଶର୍କରାରେ ପ୍ରସ୍ତୁତ ଏହି ପାୟସାନ୍ନ ମୋପାଇଁ କାହିଁକି ବିଷ ହୋଇଯାନ୍ତା । ଏହିପରି ଚିନ୍ତାକରି ସେ କଷ୍ଟକଷ୍ଟରେ ବ୍ରାହ୍ମଣ ପଦ୍ମନାଭଙ୍କ ଦ୍ୱାରରେ ଯାଇ ଉପସ୍ଥିତ ହେଲେ । ଯେଉଁ ସାଧ୍ୱୀ ପତିବ୍ରତା ପାୟସାନ୍ନ ପ୍ରଦାନ କରିଥିଲେ ତାଙ୍କୁ ଡାକି ସେ କହିଲେ ଯେ ସୁମିଷ୍ଟ ପାୟସାନ୍ନ ତାଙ୍କ ଶରୀରରେ ବିଷକ୍ରିୟା ଆରମ୍ଭ କରିଛି । ତେଣୁ ଯଥାଶୀଘ୍ର କୌଣସି ଜଣେ ବିଷବୈଦ୍ୟଙ୍କୁ ଡକାଇ ତାଙ୍କ ଜୀବନ ରକ୍ଷାପାଇଁ ଚେଷ୍ଟା କରନ୍ତୁ । ନୋଚେତ୍ ସେ ବ୍ରହ୍ମହତ୍ୟା ପାପର ଭାଗିନୀ ହେବେ ।

ଏହା କହୁଥିବା ବେଳେ ହରିସ୍ୱାମୀଙ୍କ ଚକ୍ଷୁ ଓଲଟିଗଲା । ସେ ସେହିଠାରେ ହିଁ ମୃତ୍ୟୁବରଣ କଲେ । ବ୍ରାହ୍ମଣପତ୍ନୀ କିଛି ବୁଝି ନ ପାରି କେବଳ 'ଇଏ କଣ ହେଲା' ବୋଲି କହି ବିସ୍ମିତ ହେଲେ । ଯଦିଓ ସେ ନିର୍ଦ୍ଦୋଷ ଥିଲେ ଏବଂ ଅତିଥିଙ୍କର ସମୁଚିତ ସତ୍କାର କରିଥିଲେ, ତଥାପି ପଦ୍ମନାଭ ତାଙ୍କୁ ଅତିଥି ଓ ବ୍ରହ୍ମଘାତିନୀ ବୋଲି କହି ଗୃହରୁ ବହିଷ୍କାର କରିଦେଲେ । ବ୍ରାହ୍ମଣପତ୍ନୀ ଉଚିତ କାର୍ଯ୍ୟକରି ମିଥ୍ୟା ଅପବାଦ ପାଇଥିବା ଯୋଗୁଁ ଅପମାନ ସହ୍ୟ କରିନପାରି ତପସ୍ୟା ନିମିତ୍ତ କୌଣସି ତୀର୍ଥକ୍ଷେତ୍ରକୁ ଚାଲିଗଲେ ।

ହରିସ୍ୱାମୀ ଯେତେବେଳେ ଧର୍ମରାଜ ଯମଙ୍କ ଦରବାରରେ ପହଞ୍ଚିଲେ ସେତେବେଳେ ପ୍ରଶ୍ନ ଉଠିଲା, ସର୍ପ, ସଞ୍ଚାଣ ଏବଂ ପାୟସାନ୍ନ ପ୍ରଦାନ କରିଥିବା ସ୍ତ୍ରୀ– ଏହି ତିନିଜଣଙ୍କ ମଧ୍ୟରୁ ବ୍ରହ୍ମହତ୍ୟା ପାପର ଭାଗୀ କିଏ ହେବ ? କିନ୍ତୁ ଧର୍ମରାଜଙ୍କ ଦରବାରରେ ଏହାର ସମାଧାନ ହୋଇପାରିଲା ନାହିଁ ।''

ତେଣୁ, ରାଜନ୍, ବର୍ତ୍ତମାନ ତମେ କହ, 'ଏ ବ୍ରହ୍ମହତ୍ୟା ପାପ କାହାକୁ ଲାଗିବ ? ଯଦି ଜାଣିଶୁଣି ଉତ୍ତର ନଦିଅ ତେବେ ଅଭିଶାପର ଫଳ ତମେ ଜାଣ ।'

ଶାପ ନିୟନ୍ତ୍ରିତ ରାଜା ତ୍ରିବିକ୍ରମସେନ ବେତାଳର କଥାଶୁଣି କହିଲେ, 'ସର୍ପକୁ ଏହି ପାପ ଲାଗିବା ସମ୍ଭବ ନୁହେଁ । ସେ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ବିବଶ ଓ ମୃତ ଥିଲା । ସଞ୍ଚାଣର ମଧ୍ୟ ଏଥିରେ କିଛି ଦୋଷ ନାହିଁ । ସେ ଭୋକିଲା ଥିଲା ଏବଂ ହଠାତ୍ ନିଜର ଆହାର ରୂପକ ସର୍ପକୁ ଦେଖି ତାକୁ ଖାଉଥିଲା । ପାୟସାନ୍ନ ଦେଇଥିବା ଦମ୍ପତି ମଧ୍ୟରୁ କେହି ଏ ପାପର ଭାଗୀ ନୁହଁନ୍ତି । ସେମାନେ ଧର୍ମାନୁରାଗୀ ଥିଲେ ଏବଂ କୌଣସି ଦୂଷିତ ଅନ୍ନ ସେମାନେ ପ୍ରଦାନ କରିନଥିଲେ । ତେଣୁ ମୋ ମତରେ ନବୁଝି ନସୁଝି ଏମାନଙ୍କ ମଧ୍ୟରୁ ଜଣକୁ ଦୋଷୀ ବୋଲି ସାବ୍ୟସ୍ତ କରିବା ବ୍ୟକ୍ତି ହିଁ ବ୍ରହ୍ମହତ୍ୟା ପାପର ଭାଗୀ ହେବ ।'

ଉତ୍ତର ଶୁଣି ବେତାଳ ମୁହୂର୍ତ୍ତକ ମଧ୍ୟରେ ତାର ପୂର୍ବ ସ୍ଥାନରେ ଯାଇ ପହଞ୍ଚିଗଲା । ଦୃଢ଼ପ୍ରତିଜ୍ଞ ରାଜା ତା'ର ପଶ୍ଚାଦ୍ଧାବନ କରିବାପାଇଁ ବାଧ୍ୟ ହେଲେ ।

# ଏକବିଂଶ ତରଙ୍ଗ

## ଚତୁର୍ଦ୍ଦଶ ବେତାଳ : ବଣିକ କନ୍ୟା କଥା

ରାଜା ତ୍ରିବିକ୍ରମସେନ ପୁଣି ଯାଇ ଶିଂଶପା ବୃକ୍ଷ ଶାଖାରେ ଶବ ଅନ୍ତର୍ଗତ ବେତାଳକୁ ଦେଖିବାକୁ ପାଇଲେ । ତାକୁ ସ୍କନ୍ଧରେ ଧରି ପଥ ଅତିକ୍ରମ କଲାବେଳେ ବେତାଳ ପୂର୍ବଥରଗୁଡ଼ିକ ପରି ଏଥର ମଧ୍ୟ କହିବା ଆରମ୍ଭ କଲା—

''ରାଜନ୍, ତୁମେ ବୋଧହୁଏ ଥକି ପଡ଼ିଲଣି । ତେଣୁ ତୁମକୁ ଗୋଟିଏ ବିଚିତ୍ର କଥା ଶୁଣାଉଛି, ଶୁଣ ।

ଅଯୋଧ୍ୟା ନାମରେ ଏକ ନଗରୀ ଅଛି । ସ୍ୱୟଂ ନାରାୟଣ ରାମଚନ୍ଦ୍ର ଅବତାରରେ ସେଠାରେ ଅବତୀର୍ଣ୍ଣ ହୋଇଥିଲେ । ବହୁଦିନ ପୂର୍ବେ ସେଠାରେ ବୀରକେତୁ ନାମରେ ଜଣେ ରାଜା ରାଜତ୍ୱ କରୁଥାନ୍ତି । ରାଜ୍ୟରକ୍ଷା କରିବାରେ ସେ ନଗର ରକ୍ଷାକାରୀ ପ୍ରଶସ୍ତ ପ୍ରାଚୀରଠାରୁ କମ୍ ନଥିଲେ । ତାଙ୍କ ରାଜତ୍ୱ କାଳରେ ରତ୍ନଦତ୍ତ ବୋଲି ଜଣେ ପ୍ରସିଦ୍ଧ ବଣିକ ସେଠାରେ ବାସ କରୁଥାନ୍ତି । ବଣିକ ସମାଜ ମଧ୍ୟରେ ସେ ଥିଲେ ଅତ୍ୟନ୍ତ ସୁଖ୍ୟାତି ସମ୍ପନ୍ନ । ତାଙ୍କ ପତ୍ନୀ ନନ୍ଦୟନ୍ତୀ । ସେ ଦେବତା ପ୍ରସାଦରୁ ଗୋଟିଏ କନ୍ୟା ପ୍ରାପ୍ତ ହୋଇଥିଲେ । କନ୍ୟାଟିର ନାମ ଥିଲା ରତ୍ନବତୀ । କନ୍ୟାଟି ଯେପରି ରୂପଲାବଣ୍ୟ ସମ୍ପନ୍ନା, ସେହିପରି ବିନୟ ଆଦି ସ୍ୱାଭାବିକ ଗୁଣରେ ଗୁଣବତୀ । ମନସ୍ୱିନୀ ରତ୍ନବତୀ ପିତୃ ଗୃହରେ ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହେଉଥାନ୍ତି । ଯୌବନରେ ପଦାର୍ପଣ କରିବାମାତ୍ରେ ବହୁ ବିଶିଷ୍ଟ ବଣିକ କେବଳ ନୁହଁନ୍ତି, ରାଜାମାନେ ମଧ୍ୟ ତାଙ୍କୁ ପାଇବାପାଇଁ ଆଶାୟୀ ହୋଇଉଠିଲେ ।

ବିଧାତାର ସୃଷ୍ଟି ବଡ଼ ବିଚିତ୍ର । ରୂପ ଓ ଗୁଣରେ ଅଦ୍ୱିତୀୟା ଥିଲେ ମଧ୍ୟ ରତ୍ନବତୀ ଥିଲେ ପୁରୁଷ ବିଦ୍ୱେଷିଣୀ । ସେ ପତିରୂପରେ ଇନ୍ଦ୍ରଙ୍କୁ ମଧ୍ୟ ଘୃଣା କରୁଥିଲେ । ସେ ତ ବିବାହ ସମ୍ପର୍କରେ ଶୁଣିବାପାଇଁ ଚାହୁଁନଥାନ୍ତି, ଅଧିକନ୍ତୁ ବିବାହ କଥା ପଡ଼ିଲେ

ଆତ୍ମହତ୍ୟାପାଇଁ ଉଦ୍ୟତ ହେଉଥାନ୍ତି । ପିତାଙ୍କର କନ୍ୟା ପ୍ରତି ଯଦିଓ ଅଧିକ ମମତା ରହିଥିଲା, ତଥାପି ସେ ନୀରବ ରହିବା ପାଇଁ ବାଧ୍ୟ ହେଉଥିଲେ । କିନ୍ତୁ ସମଗ୍ର ଅଯୋଧ୍ୟାରେ ଏକଥା କାହାରିକୁ ଅଛପା ନଥିଲା ।

ଏହା ମଧ୍ୟରେ ଅଯୋଧ୍ୟାବାସୀମାନେ ଚୋର ଭୟରେ କ୍ରମାଗତ ଅତିଷ୍ଠ ହୋଇଉଠୁଥାନ୍ତି । ସେମାନେ ରାଜା ବୀରକେତୁଙ୍କ ନିକଟରେ ସେମାନଙ୍କର ଅସହାୟତା ଜଣାଇ କିଛି ପ୍ରତିକାରର ଉପାୟ କରିବା ନିମିତ୍ତ ନିବେଦନ କଲେ ।

ନଗରବାସୀଙ୍କୁ ସୁରକ୍ଷା ଦେବାପାଇଁ ରାଜା ପ୍ରହରୀମାନଙ୍କୁ ଚତୁର୍ଦ୍ଦିଗରେ ଅନୁସନ୍ଧାନ କରି ଚୋରର ପତ୍ତା ଲଗାଇବା ପାଇଁ ନିର୍ଦ୍ଦେଶ ଦେଲେ । ତଥାପି ଚୋର ଧରାପଡ଼ିଲା ନାହିଁ । ନଗରରେ ବାରମ୍ବାର ଚୋରି ହେବାକୁ ଲାଗିଲା ।

ପ୍ରହରୀମାନେ ନିରସ୍ତ ହେବାରୁ ରାଜା ନିଜେ ଦିନେ ଚୋରର ସନ୍ଧାନରେ ବାହାରିଲେ । ଛଦ୍ମବେଶ ଧାରଣ ପୂର୍ବକ ସେ ଏକାକୀ ଶସ୍ତ୍ର ହସ୍ତରେ ରାତିରେ ବୁଲୁଥାନ୍ତି । ଗୋଟିଏ ସ୍ଥାନରେ ସେ ଜଣେ ବ୍ୟକ୍ତିକୁ ନଗରର ପ୍ରାଚୀର କଡ଼େ କଡ଼େ ସନ୍ଦେହଜନକ ଭାବେ ଯାଉଥିବା ଦେଖିବାକୁ ପାଇଲେ । ସେ ନିଃଶବ୍ଦ ପଦପାତରେ ଅତ୍ୟନ୍ତ ସାବଧାନତାର ସହିତ ଚାଲିଥାଏ । ତା'ର ଦୃଷ୍ଟି ଯେପରି ଶଙ୍କିତ, ସେହିପରି ଚଞ୍ଚଳ ମନେହେଉଥାଏ । ସେ ବାରମ୍ବାର ପଛକୁ ମଧ୍ୟ ଫେରି ଚାହୁଁଥାଏ । ରାଜା ତାକୁ ହିଁ ଚୋର ବୋଲି ନିଶ୍ଚୟ କରି ତା' ନିକଟକୁ ଅଗ୍ରସର ହେଲେ । ଚୋର ରାଜାଙ୍କୁ ଦେଖି ପ୍ରଶ୍ନ କଲା, 'ତୁ କିଏ ?' ରାଜା ଉତ୍ତର ଦେଲେ, 'ମୁଁ ଚୋର ।' ଚୋରଟି କ'ଣ ଭାବିଲା କେଜାଣି ରାଜାଙ୍କୁ କହିଲା, 'ତାହେଲେ ତୋର ମୋର କାମ ତ ଏକା । ଏଣୁ ତୁ ମୋର ମିତ୍ର । ଏବେ ଚାଲ୍ ଆମ ଘରକୁ ଯିବା । ସେଠାରେ ମିତ୍ରପରି ମୁଁ ତୋର ସତ୍କାର କରିବି ।'

ରାଜା ଚୋରର କଥାରେ ତା' ସହିତ ଚାଲିଲେ । ସେମାନେ ଭୂଗର୍ଭ ମଧ୍ୟରେ ଥିବା ଚୋରର ସେହି ଗୁପ୍ତ ଆଡ଼୍ଡା ମଧ୍ୟରେ ଯାଇ ପ୍ରବେଶ କରନ୍ତେ ରାଜାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଭୂଗୃହଟି ଅନନ୍ତ ବିଭବରେ ପରିପୂର୍ଣ୍ଣ ଥିଲା । ଉଜ୍ଜ୍ୱଳ ଦୀପଦାନି ଗୁଡ଼ିକଦ୍ୱାରା ତାହା ଥିଲା ଆଲୋକିତ । ମନେହେଉଥିଲା ସେ ଅନ୍ୟ ଏକ ପାତାଳପୁରୀରେ ଆସି ପହଞ୍ଚିଛନ୍ତି । କେବଳ ପାର୍ଥକ୍ୟ ଏତିକି ଏଠାରେ ରାଜା ବଳି ନାହାଁନ୍ତି । ରାଜା ଯାଇ ଚୋରନିର୍ଦ୍ଦିଷ୍ଟ ଆସନରେ ବସିଲେ । ଚୋର ଗୃହ ମଧ୍ୟକୁ ଚାଲିଗଲା ।

ଚୋର ସେଠାରୁ ଚାଲିଯିବା ପରେ ଜଣେ ଦାସୀ ଆସି ରାଜାଙ୍କୁ ଧୀରସ୍ୱରରେ କହିଲା, 'ମହାଭାଗ, ଆପଣ ଏହି ମରଣ ଯନ୍ତା ମଧ୍ୟକୁ କାହିଁକି ଆସିଗଲେ ? ଆପଣଙ୍କୁ

ଆଣିଥିବା ବ୍ୟକ୍ତିଟି ଏକ କୁଖ୍ୟାତ ଦସ୍ୟୁ । ସେ ଫେରିଆସିବା ମାତ୍ରେ ନିଶ୍ଚିତ ଭାବେ ଆପଣଙ୍କ ସହିତ ବିଶ୍ୱାସଘାତକତା କରିବ । ତେଣୁ ଆପଣ ଶୀଘ୍ର ଏଠାରୁ ଚାଲିଯାନ୍ତୁ ।' ଦାସୀର କଥାଶୁଣି ରାଜା ତୁରନ୍ତ ସେଠାରୁ ବାହାରି ଆସି ନିଜ ନବରରେ ପହଞ୍ଚିଲେ । ରାତାରାତି ସେନାବାହିନୀ ସଜ୍ଜିତ କରି ସେ ଚୋରର ସେହି ଭୂଗହ୍ୱର ନିକଟରେ ପହଞ୍ଚିଲେ । ସୈନିକମାନଙ୍କଦ୍ୱାରା ବିବର ଦ୍ୱାର ଘେରାଉ କରାଗଲା । ସେମାନଙ୍କର ତୂରୀନାଦରେ ଚୋର ଜାଣିପାରିଲା ଯେ ତା'ର ସମସ୍ତ ରହସ୍ୟ ପଦାରେ ପଡ଼ିଯାଇଛି । ସେ ବୀରତ୍ୱର ସହିତ ମରିବାପାଇଁ ପ୍ରସ୍ତୁତ ହେଲା ।

ହାତରେ ଢାଲ ଓ ଅସ୍ତ୍ରଶସ୍ତ୍ର ଧରି ଚୋରଟି ବିଳ ମଧ୍ୟରୁ ଉପରକୁ ଉଠି ଆସିବା ମାତ୍ରେ ଏକାକୀ ଆକ୍ରମଣ ଆରମ୍ଭ କରିଦେଲା । ତା'ର ଖଡ୍‌ଗାଘାତରେ ହସ୍ତୀମାନଙ୍କର ଶୁଣ୍ଡ, ଅଶ୍ୱମାନଙ୍କର ପାଦ ଏବଂ ସୈନିକମାନଙ୍କର ମସ୍ତକ ଛିନ୍ନବିଚ୍ଛିନ୍ନ ହେବାକୁ ଲାଗିଲା । ସେନାବାହିନୀ ନଷ୍ଟଭ୍ରଷ୍ଟ ହେବା ଦେଖି ରାଜା ନିଜେ ତା' ନିକଟକୁ ଅଗ୍ରସର ହେଲେ । ବୀରକେତୁ ଖଡ୍‌ଗ ବିଦ୍ୟାରେ ଥିଲେ ଅତ୍ୟନ୍ତ କୁଶଳୀ । ସେ ନାଟକୀୟ କୌଶଳରେ ପ୍ରଥମେ ଚୋର ହସ୍ତରୁ ଖଡ୍‌ଗ ଓ ପରେ ଛୁରୀକା ଛଡ଼ାଇ ନେଲେ । ଚୋରକୁ ନିରସ୍ତ୍ର ଦେଖି ରାଜା ନିଜର ଅସ୍ତ୍ରଶସ୍ତ୍ର ମଧ ପରିତ୍ୟାଗ କରି ବାହୁଯୁଦ୍ଧରେ ପ୍ରବୃତ୍ତ ହେଲେ । ଚୋରଟି ରାଜାଙ୍କ ଦ୍ୱାରା ପରାସ୍ତ ହେଲା । ରାଜା ତାକୁ ହତ୍ୟା ନକରି ଜୀବିତାବସ୍ଥାରେ ହିଁ ବନ୍ଦୀ କଲେ । ତା'ର ସମସ୍ତ ଧନସମ୍ପତ୍ତି ବାଜ୍ୟାପ୍ତ ହେଲା । ରାଜା ତା' ସହିତ ରାଜଧାନୀକୁ ଫେରିଆସିଲେ ।

ପରଦିନ ପ୍ରଭାତରୁ ରାଜା ଚୋରଟିର ପ୍ରାଣଦଣ୍ଡ ଆଦେଶ ଶୁଣାଇଲେ । ଘାତୁକମାନେ ବାଜା ବଜାଇ ତାକୁ ବଧ ଭୂମିକୁ ନେଇଚାଲିଥାନ୍ତି । କୌତୂହଳବଶତଃ ବଣିକ କନ୍ୟା ରତ୍ନାବତୀ ନିଜର ଅଟ୍ଟାଳିକା ଉପରେ ଠିଆ ହୋଇ ଚୋରଟି ଉପରେ ଦୃଷ୍ଟିପାତ କଲା । ଚୋରଟିର ଶରୀର କ୍ଷତବିକ୍ଷତ ଥିଲା, କ୍ଷତରୁ ଝରୁଥିବା ରକ୍ତ ଉପରେ ଧୂଳି ଜମାଟ ବାନ୍ଧି ତା'ର ଚେହେରାକୁ ଅତ୍ୟନ୍ତ ବିକୃତ କରିଦେଇଥିଲା । ତଥାପି ତାକୁ ଦେଖି ରତ୍ନାବତୀ ହଠାତ୍ କାମପୀଡ଼ିତ ହୋଇପଡ଼ିଲା । ସେ ପିତାଙ୍କ ନିକଟକୁ ଯାଇ କହିଲା, 'ପିତା, ଏମାନେ ଯେଉଁ ଲୋକଟିକୁ ପ୍ରାଣଦଣ୍ଡ ଦେବାପାଇଁ ନେଇଯାଉଛନ୍ତି ମୁଁ ତାକୁ ହିଁ ପତିରୂପରେ ବରଣ କରିଛି । ଆପଣ ରାଜାଙ୍କୁ ପ୍ରାର୍ଥନା କରି ତା'ର ଜୀବନ ରକ୍ଷା କରନ୍ତୁ । ତା' ନହେଲେ ମୁଁ ମଧ ତା' ପଛେପଛେ ପ୍ରାଣ ବିସର୍ଜନ କରିବି ।' ପିତା ରତ୍ନଦତ୍ତ ତାକୁ ବୁଝାଇବାପାଇଁ କହିଲେ, 'ପୁତ୍ରି, ଇଏ ତୁ କ'ଣ କହୁଛୁ ? ଯେଉଁ

ରାଜାମାନେ ତୋତେ ପାଇବାର ଇଚ୍ଛା ରଖିଥିଲେ ସେମାନଙ୍କୁ ତ ତୁ ସ୍ୱୀକାର କରିନଥିଲୁ । ଏବେ ବଧ ଭୂମିକୁ ଯାଉଥିବା ଏହି ଚୋରଟି ପ୍ରତି ତୁ କିପରି ଆକୃଷ୍ଟ ହୋଇପଡୁଚୁ ?' କିନ୍ତୁ କନ୍ୟା ପିତାଙ୍କ ବାକ୍ୟରେ ନିଜ ପ୍ରତିଜ୍ଞାରୁ ଟଳିଲା ନାହିଁ ।

କନ୍ୟାର ଜିଦ୍ ଦେଖି ରତ୍ନଦତ୍ତ ରାଜାଙ୍କ ନିକଟରେ ଯାଇ ପହଞ୍ଚିଲେ । ସେ ନିଜର ସର୍ବସ୍ୱ ବିନିମୟରେ ଚୋରର ପ୍ରାଣଭିକ୍ଷା କରନ୍ତେ ରାଜା ଶତକୋଟି ସ୍ୱର୍ଣ୍ଣମୁଦ୍ରା ବଦଳରେ ମଧ ଚୋରକୁ ମୁକ୍ତିଦେବାପାଇଁ ରାଜି ହେଲେ ନାହିଁ । ଯିଏ ସମଗ୍ର ରାଜ୍ୟବାସୀଙ୍କୁ ଲୁଣ୍ଠନ କରୁଥିଲା ଏବଂ ନିଜର ପ୍ରାଣକୁ ପଣ କରି ଯାହାକୁ ସେ ଧରିଥିଲେ, ତାକୁ କିପରି ବା ମୁକ୍ତି ଦିଅନ୍ତେ ? ରତ୍ନାବତୀ ପିତାଙ୍କୁ ବିଫଳ ମନୋରଥ ହୋଇ ଫେରିଆସିବା ଦେଖି ସହଗମନପାଇଁ ପ୍ରସ୍ତୁତ ହେଲା । ସ୍ନାନ ଓ ଶୁଭ୍ର ବସ୍ତ୍ର ପରିଧାନ କରି ସେ ସବାରିରେ ବଧ ଭୂମି ପ୍ରତି ଅଗ୍ରସର ହେବାକୁ ଲାଗିଲା । ପିତାମାତା ଓ ବନ୍ଧୁସ୍ୱଜନ କାନ୍ଦି କାନ୍ଦି ତା'ର ଅନୁସରଣ କରିବାକୁ ଲାଗିଲେ ।

ଏ ମଧରେ ଘାତୁକମାନେ ଚୋରଟିକୁ ଶୂଳୀ ଖୁଣ୍ଟରେ ଚଢ଼ାଇ ଦେଇଥାନ୍ତି । ସେ ଛଟପଟ ହେଉଥାଏ । ଏ ଅବସ୍ଥାରେ ବନ୍ଧୁସ୍ୱଜନଙ୍କ ମଧରେ ଆସୁଥିବା ରତ୍ନାବତୀ ଉପରେ ତାର ଦୃଷ୍ଟି ପଡ଼ିଲା । ଉପସ୍ଥିତ ଲୋକମାନଙ୍କୁ ଦେଖି ଚୋରଟି କ୍ଷଣକପାଇଁ ଦୁଃଖ ପ୍ରକାଶ କଲେ ମଧ ରତ୍ନାବତୀର ନିଷ୍ପତ୍ତିରେ ନହସି ରହିପାରିଲା ନାହିଁ । କିଛି ସମୟ ମଧରେ ଚୋରଟିର ପ୍ରାଣବାୟୁ ଉଡ଼ିଗଲା ।

ସତୀସାଧ୍ୱୀ ବଣିକ କନ୍ୟା ବରଣ କରିଥିବା ପତିର ମୃତ ଶରୀରକୁ ଶୂଳୀ ଖୁଣ୍ଟ ଉପରୁ ଆଣି ଚିତା ଉପରେ ସ୍ଥାପନ କଲା ଏବଂ ନିଜେ ମଧ ତା' ନିକଟରେ ଯାଇ ବସିଲା । ତାର ସତୀତ୍ୱରେ ପ୍ରୀତ ହୋଇ ଭଗବାନ ଶଙ୍କର ଅଦୃଶ୍ୟ ରୂପରେ ଆସି ଶ୍ମଶାନରେ ଉପସ୍ଥିତ ହେଲେ । ସେ ଦିବ୍ୟବାଣୀ ପ୍ରକାଶ କରି କହିଲେ, 'ରତ୍ନାବତୀ, ତୁ ନିଜେ ବରଣ କରିଥିବା ସ୍ୱାମୀ ପ୍ରତି ଯେଉଁ ଭକ୍ତି ପ୍ରଦର୍ଶନ କରିଛୁ ସେଥିରେ ମୁଁ ଅତ୍ୟନ୍ତ ପ୍ରୀତ । ତୁ ମୋଠାରୁ କିଛି ବର ଭିକ୍ଷା କର ।' ଏହାଶୁଣି ରତ୍ନାବତୀ ଦେବାଧିଦେବ ମହାଦେବଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇଲା । କୃତାଞ୍ଜଳି ପୁଟରେ ବର ଭିକ୍ଷା କରି କହିଲା, 'ପ୍ରଭୁ, ମୋ ପିତାଙ୍କର କୌଣସି ପୁତ୍ର ନାହିଁ । ମୋ ବିନା ତାଙ୍କର ଅନ୍ୟ କେହି କନ୍ୟା ମଧ ନାହାଁନ୍ତି । ତେଣୁ ମୋ ବ୍ୟତୀତ ତାଙ୍କର ଜୀବନଧାରଣ କରି ରହିବା ସମ୍ଭବ ନୁହେଁ । ଆପଣ ଯଦି ମୋ ପ୍ରତି ସନ୍ତୁଷ୍ଟ ତେବେ କୃପାକରି ତାଙ୍କୁ ଶହେ ପୁତ୍ର ଦିଅନ୍ତୁ ।' ଭଗବାନ ତା'ର ବରଭିକ୍ଷାରେ ଅଧିକ ପ୍ରୀତ ହେଲେ, କହିଲେ, 'ତୋ ପିତାଙ୍କ ଶତ ପୁତ୍ର ଲାଭ

ହେବ । କିନ୍ତୁ ତୋ ପରି ଦୃଢ଼ବ୍ରତା କନ୍ୟାପାଇଁ ଏତିକ ଯଥେଷ୍ଟ ନୁହେଁ । ତେଣୁ ଅନ୍ୟ ବର ଭିକ୍ଷା କର ।' ରତ୍ନାବତୀ ନମ୍ରତାର ସହିତ ନିବେଦନ କଲା, 'ପ୍ରଭୁ, ଆପଣ ଯଦି ଆଉ ବର ଦେବାକୁ ଚାହାଁନ୍ତି ତେବେ ମୋର ପତିଙ୍କୁ ଜୀବନଦାନ କରନ୍ତୁ ଏବଂ ତାଙ୍କ ମତି ଧର୍ମ ମାର୍ଗରେ ସ୍ଥିର ରହୁ ।'

ମହାଦେବ ବରଦାନ ପୂର୍ବକ କହିଲେ, 'ତଥାସ୍ତୁ । ତୋର ପତି ଅକ୍ଷତ ଶରୀରରେ ଜୀବନ ଧରି ଉଠିବ । ସେ ଚୌର୍ଯ୍ୟବୃତ୍ତି ତ୍ୟାଗ କରି ଧର୍ମ ମାର୍ଗରେ ଗତି କରିବ । ରାଜା ବୀରକେତୁ ମଧ୍ୟ ତା' ପ୍ରତି ପ୍ରସନ୍ନ ହେବେ ।' ଦେବଦେବଙ୍କ ଏହି ଶୂନ୍ୟବାଣୀ ଶେଷ ନହେଉଣୁ ଚୋର ଅକ୍ଷତ ଶରୀରରେ ଉଠି ଠିଆହେଲା ।

ଏସବୁ ଦେଖି ବଣିକ ରତ୍ନଦତ୍ତ ବିସ୍ମିତ ହୋଇପଡ଼ିଲେ । ଆନନ୍ଦ ମନରେ ସେ ପ୍ରସନ୍ନଚିତ୍ତ ସ୍ୱଜନମାନଙ୍କ ସହ କନ୍ୟା ଓ ଜାମାତାଙ୍କୁ ନେଇ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ପୁତ୍ରଲାଭର ବରପ୍ରାପ୍ତି ଯୋଗୁଁ ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ପରିବାର ସହିତ ଭଗବାନ ଶଙ୍କରଙ୍କ ଆରାଧନା କରି ଉତ୍ସବ ପାଳନ କଲେ । ରାଜାଙ୍କ ନିକଟରେ ଏସବୁ ଘଟଣାର ବୃତ୍ତାନ୍ତ ପହଞ୍ଚିଲା । ସେ ରୋଷ ପରିତ୍ୟାଗ ପୂର୍ବକ ସେହି ପରମବୀର ଚୋରଟିକୁ ନିଜର ସେନାପତି ପଦରେ ନିଯୁକ୍ତ କଲେ । ଚୋର ମଧ୍ୟ ନିଜର ପୂର୍ବ ବୃତ୍ତି ପରିତ୍ୟାଗ କରି ବଣିକ କୁମାରୀ ସହିତ ରାଜାଙ୍କ ସେବାରେ ଦିନଯାପନ କଲା ।''

ରାଜା ତ୍ରିବିକ୍ରମସେନଙ୍କୁ କଥାଟି ଶୁଣାଇ ବେତାଳ ପ୍ରଶ୍ନ କଲା, 'ରାଜା, ବର୍ତ୍ତମାନ କହ, ବଣିକ କନ୍ୟା ପିତାମାତାଙ୍କ ସହିତ ଆସୁଥିବା ଦେଖି ଶୂଳୀଦଣ୍ଡ ଉପରେ ଥିବା ଚୋରଟି ପ୍ରଥମେ କାନ୍ଦିଲା କାହିଁକି ? ଏବଂ ପରେ ହସିଲା ବା କାହିଁକି ?'

ରାଜା ଉତ୍ତରରେ କହିଲେ, 'ବଣିକ କନ୍ୟାଟିର ବିବାହ ଦେଇପାରୁ ନଥିଲେ । ବର୍ତ୍ତମାନ ତାଙ୍କ କନ୍ୟା ତାକୁ ବରଣ କରିଥିବା ଯୋଗୁଁ ସେ ଚୋରର ଅକାରଣ ବନ୍ଧୁରେ ପରିଣତ ହେଲେ, କିନ୍ତୁ ଚୋର ଏହି ଜୀବନରେ ତାଙ୍କ ଋଣରୁ ମୁକ୍ତ ହୋଇପାରିଲା ନାହିଁ ବୋଲି ପ୍ରଥମେ ଦୁଃଖ ପ୍ରକାଶ କଲା । କିନ୍ତୁ ପରେ ନାରୀମାନଙ୍କ ମନୋବୃତ୍ତିର ବିଚିତ୍ର ଗତି ତାକୁ ବିସ୍ମିତ କରିବାଯୋଗୁଁ ସେ ହସିବାକୁ ଲାଗିଲା । ଯେଉଁ କନ୍ୟା ରାଜାମାନଙ୍କୁ ସୁଦ୍ଧା ପ୍ରତ୍ୟାଖ୍ୟାନ କରିଥିଲା ସେ ମୃତ୍ୟୁମୁଖକୁ ଯାଉଥିବା ଗୋଟିଏ ଚୋରକୁ ପତି ରୂପରେ ବରଣ କରିବା ହାସ୍ୟଉଦ୍ଦୀପକ ନୁହେଁ କି ?'

ରାଜାଙ୍କ କଥାରେ ମାୟାବୀ ବେତାଳ ପୁଣି ବୃକ୍ଷ ଶାଖାକୁ ଫେରିଗଲା । ରାଜା ତା'ର ଅନୁଗମନ କଲେ ।

# ଦ୍ୱାବିଂଶ ତରଙ୍ଗ

## ପଞ୍ଚଦଶ ବେତାଳ : ଶଶିପ୍ରଭା କଥା

ରାଜା ତ୍ରିବିକ୍ରମସେନ ଶିଂଶପା ବୃକ୍ଷ ଶାଖାରୁ ବେତାଳକୁ ଓହ୍ଲାଇ ଆଣି ପୁଣି ଗନ୍ତବ୍ୟ ପଥରେ ଚାଲିବାକୁ ଲାଗିଲେ । ତାଙ୍କ ସ୍କନ୍ଧରେ ଥିବା ବେତାଳ ପୁଣି କହିବା ଆରମ୍ଭ କଲା—

''ରାଜା, ତୁମେ ଆଉ ଗୋଟିଏ କଥାଶୁଣ । ନେପାଳ ରାଜ୍ୟରେ ଶିବପୁର ନାମକ ଏକ ନଗର ଥିଲା । ସେଠାରେ ଯଶଃକେତୁ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ପ୍ରକୃତରେ ଥିଲେ ଯଶସ୍ୱୀ । ମନ୍ତ୍ରୀ ପ୍ରଜ୍ଞାସାଗରଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ସେ ରାଣୀ ରତ୍ନପ୍ରଭାଙ୍କ ସହିତ ସାଂସାରିକ ବିଭବ ଉପଭୋଗ କରୁଥାନ୍ତି । ସମୟକ୍ରମେ ରାଣୀଙ୍କ ଗର୍ଭରୁ କନ୍ୟାଟିଏ ଜାତ ହେଲା । ରାଜା କନ୍ୟାଟିର ନାମ ରଖିଲେ ଶଶିପ୍ରଭା । ସେ ଦର୍ଶକମାନଙ୍କ ଚକ୍ଷୁପାଇଁ ପ୍ରକୃତରେ ଚନ୍ଦ୍ରତୁଲ୍ୟ ଆନନ୍ଦପ୍ରଦ ଥିଲା । କ୍ରମଶଃ କନ୍ୟାଟି ଯୌବନରେ ପଦାର୍ପଣ କଲା ।

ଏକଦା ନଗରରେ ବସନ୍ତ ଉତ୍ସବ ପାଳିତ ହେଉଥାଏ । ଶଶିପ୍ରଭା ସଖୀମାନଙ୍କ ସହିତ ଯାତ୍ରାରେ ଲାଗିଥିବା ମେଳା ଦେଖିବାପାଇଁ ବାହାରିଲା । ମେଳାକୁ ସେହି ନଗରର ଜଣେ ଧନିକ ବ୍ରାହ୍ମଣପୁତ୍ର ମନଃସ୍ୱାମୀ ମଧ୍ୟ ଆସିଥାନ୍ତି । ବୃକ୍ଷରୁ ପୁଷ୍ପ ଚୟନ କରୁଥିବା ଶଶିପ୍ରଭା ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ହାତ ଦୁଇଟି ଉପରକୁ ଉଠିଥିବାରୁ ତାର ସ୍ତନଯୁଗଳ ଉନ୍ନତ ଭାବେ ଦେଖାଯାଉଥାଏ । ଅଙ୍ଗୁଳିଗୁଡ଼ିକର ଶୋଭା ମଧ୍ୟ ଦର୍ଶକ ମନକୁ ଆକୃଷ୍ଟ କରୁଥାଏ । ରାଜକୁମାରୀଙ୍କୁ ଦେଖି ନାମତଃ ମନଃସ୍ୱାମୀ ହେଲେ ମଧ୍ୟ ବ୍ରାହ୍ମଣ ପୁତ୍ର ଆଉ ନିଜ ମନର ସ୍ୱାମୀ ରହିପାରିଲା ନାହିଁ । ତା'ର ମନେହେଲା ସତେ ଯେପରି କନ୍ଦର୍ପ ପତ୍ନୀ ରତି ସ୍ୱାମୀଙ୍କ ଧନୁର୍ବାଣପାଇଁ ବସନ୍ତଦ୍ୱାରା ଆହୃତ ପୁଷ୍ପରାଶିକୁ ନିଜେ

ଚୟନ କରୁଛନ୍ତି । କିମ୍ବା ସ୍ୱୟଂ ବନଦେବୀ ବସନ୍ତର ଉପାସନା ପାଇଁ ପୁଷ୍ପଚୟନରେ ବ୍ୟାପୃତ ଅଛନ୍ତି ।

ଏ ସମୟରେ ଶଶିପ୍ରଭାଙ୍କ ଦୃଷ୍ଟି ମଧ ମନଃସ୍ୱାମୀ ଉପରେ ପଡ଼ିଲା । ନୂତନ କନ୍ଦର୍ପ ତୁଲ୍ୟ ବ୍ରାହ୍ମଣ ପୁତ୍ରଙ୍କୁ ଦେଖି ସେ ମଧ ବିଚଳିତ ହୋଇଉଠିଲେ । ପୁଷ୍ପଗୁଚ୍ଛ, ନିଜ ଅଙ୍ଗପ୍ରତ୍ୟଙ୍ଗ ଏବଂ ନିଜ ସମ୍ପର୍କରେ ତାଙ୍କର ଜ୍ଞାନ ରହିଲା ନାହିଁ । ଏପରି ଉଭୟେ ଉଭୟଙ୍କୁ ନିର୍ନିମେଷ ନୟନରେ ଚାହିଁ ରହିଥିଲାବେଳେ ହଠାତ୍ ସେଠାରେ ଭୀଷଣ କୋଳାହଳ ଶୁଣାଗଲା ।

ଆସନ୍ନ ବିପତ୍ତିରେ ଉଭୟଙ୍କର ଧ୍ୟାନ ଭଙ୍ଗ ହେଲା । କାରଣ ଜାଣିବାପାଇଁ ଉଭୟେ ଉତ୍ସୁକତାର ସହିତ ଏଣେତେଣେ ଚାହିଁବାକୁ ଲାଗିଲେ । ଦେଖିଲେ, ଗୋଟିଏ ଉନ୍ମତ୍ତ ହସ୍ତୀ ସେମାନଙ୍କ ଆଡ଼କୁ ଦୌଡ଼ି ଆସୁଛି । ଅନ୍ୟ ହସ୍ତୀର ଗନ୍ଧ ବାରି ସେ କ୍ରୋଧରେ ପାଦରେ ବନ୍ଧା ଥିବା ଶୃଙ୍ଖଳକୁ ଛିନ୍ନ କରିଦେଇଥାଏ । ତା'ର ଗଣ୍ଡ ଦେଶରେ ଅଙ୍କୁଶଟିଏ ଝୁଲି ରହିଥାଏ । ପ୍ରବଳ ବେଗରେ ଆସୁଥିବା ହସ୍ତୀଟିକୁ ଦେଖି ରାଜକୁମାରୀଙ୍କ ଅଙ୍ଗରକ୍ଷକମାନେ ପଳାୟନ କଲେ । ସନ୍ତ୍ରସ୍ତ ଭାବେ ଏକାକିନୀ ଠିଆ ହୋଇଥିବା ଦେଖି ମନଃସ୍ୱାମୀ ଦୌଡ଼ିଯାଇ ରାଜକୁମାରୀଙ୍କୁ ଦୁଇହାତରେ ଉଠାଇ ନେଲେ । ତାଙ୍କ ବାହୁ ଆଲିଙ୍ଗନ ମଧରେ ରହି ଭୟ, ପ୍ରୀତି ଓ ଲଜ୍ଜାରେ ରାଜକୁମାରୀ ବିହ୍ୱଳ ହୋଇପଡୁଥାନ୍ତି । ମନଃସ୍ୱାମୀ ତାଙ୍କୁ ହାତୀଠାରୁ ବହୁ ଦୂରକୁ ନେଇଗଲେ । ଏ ସମୟରେ ରାଜକୁମାରୀଙ୍କ ରକ୍ଷକମାନେ ମଧ ସେଠାରେ ଆସି ପହଞ୍ଚିଲେ । ତାଙ୍କୁ ସୁରକ୍ଷିତ ଦେଖି ସେମାନେ ବ୍ରାହ୍ମଣ କୁମାରଙ୍କ ବୀରତ୍ୱର ପ୍ରଶଂସା କରିବା ସହିତ ରାଜକୁମାରୀଙ୍କୁ ନେଇ ରାଜପ୍ରାସାଦକୁ ଫେରିଗଲେ । ରାଜକୁମାରୀ ଯିବାବେଳେ ବାରମ୍ବାର ପଛକୁ ଫେରି ଚାହୁଁଥାନ୍ତି ।

ରାଜ ଅନ୍ତଃପୁରରେ ଶଶିପ୍ରଭାଙ୍କ ଅବସ୍ଥା କହିଲେ ନସରେ । ନିଜର ପ୍ରାଣରକ୍ଷକଙ୍କୁ ସ୍ମରଣ କରି କାମାଗ୍ନିରେ ଦଗ୍ଧୀଭୂତା ଶଶିପ୍ରଭାଙ୍କ ଜୀବନ କଣ୍ଠାଗ୍ରତ ମନେହେଉଥାଏ ।

ଏଣେ ରାଜକୁମାରୀ ଚାଲିଯିବା ପରେ ମନଃସ୍ୱାମୀ ମଧ ସ୍ୱ ବାସଭବନକୁ ଫେରିଆସିଲେ । ଶଶିପ୍ରଭାଙ୍କ ବ୍ୟତୀତ ତାଙ୍କର ଜୀବନଧାରଣ ଅସମ୍ଭବ ମନେହେଲା । ସେ ମନେମନେ ତାଙ୍କ ସିଦ୍ଧଗୁରୁ କୁଶଳୀ ଶ୍ରୀମୂଳଦେବଙ୍କୁ ସ୍ମରଣ କଲେ । ଏହି ପରିସ୍ଥିତିରେ ସେ ହିଁ ତାଙ୍କର ସହାୟତା କରିପାରନ୍ତି ବୋଲି ବିଶ୍ୱାସ ଥିଲା । କୌଣସିମତେ ସେହି ଦିନଟି ବିତାଇ ଦେଇ, ପରଦିନ ପ୍ରଭାତରୁ ମନଃସ୍ୱାମୀ ଗୁରୁଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କଲେ । ଗୁରୁ ମୂଳଦେବ ସର୍ବଦା ନିଜର ମିତ୍ର ଶଶୀ ସହିତ ରହୁଥାନ୍ତି । ମାୟା-

ବିଦ୍ୟାର ବିଭିନ୍ନ ଦିଗରେ ସେ ଥିଲେ ଅତ୍ୟନ୍ତ ଧୁରୀଣ । ତାଙ୍କୁ ଦେଖିଲେ ମନେହେଉଥିଲା ସତେ ଯେପରି ସେ ଶରୀରଧାରୀ ଆକାଶ । ଜଣେ ସିଦ୍ଧଯୋଗୀ ଭାବରେ ତାଙ୍କର ବହୁ ପ୍ରସିଦ୍ଧି ମଧ୍ୟ ରହିଥିଲା ।

ଶ୍ରୀମୂଳଦେବଙ୍କ ନିକଟରେ ଉପସ୍ଥିତ ହୋଇ ମନଃସ୍ୱାମୀ ପ୍ରଣିପାତ ପୂର୍ବକ ନିଜର ମନସ୍କାମନା ନିବେଦନ କଲେ । ବିନା ଦ୍ୱିଧାରେ ଶ୍ରୀମୂଳଦେବ ମଧ୍ୟ ହସିହସି ବ୍ରାହ୍ମଣ କୁମାରଙ୍କ ଅଭିଳାଷ ପୂରଣ କରିବାପାଇଁ ପ୍ରତିଶ୍ରୁତି ଦେଲେ ।

ଏହାପରେ ମାୟାବୀ ଶିରୋମଣି ମୂଳଦେବ ନିଜ ପାଟିରେ ଗୋଟିଏ ଯୋଗସିଦ୍ଧ ବଟିକା ପକାଇଲେ । ଚାହୁଁଚାହୁଁ ତାଙ୍କ ରୂପ ପରିବର୍ତ୍ତିତ ହୋଇଗଲା । ସେ ଜଣେ ବୃଦ୍ଧ ବ୍ରାହ୍ମଣର ରୂପନେଇ ଠିଆ ହେଲେ । ଅନ୍ୟ ଏକ ବଟିକା ଗ୍ରହଣ କରିବାରୁ ମନଃସ୍ୱାମୀଙ୍କ ରୂପ ମଧ୍ୟ ବଦଳିଗଲା । ସେ ଜଣେ ସୁନ୍ଦରୀ ବ୍ରାହ୍ମଣ କନ୍ୟାର ରୂପ ଧାରଣ କଲେ ।

ଯୋଗବଟିକା ବଳରେ ଉଭୟଙ୍କ ରୂପ ପରିବର୍ତ୍ତିତ ହୋଇଯିବା ପରେ କାର୍ଯ୍ୟକୁଶଳୀ ଶ୍ରୀମୂଳଦେବ କନ୍ୟା ସହିତ ଯାଇ ରାଜା ଯଶଃକେତୁଙ୍କ ସମୀପରେ ପହଞ୍ଚିଲେ । ତାଙ୍କଦ୍ୱାରା ଉଚିତ ଭାବେ ସତ୍‌କୃତ ହୋଇ ସେ ରାଜାଙ୍କୁ କହିଲେ, 'ରାଜନ୍, ମୋର ଗୋଟିଏ ମାତ୍ର ପୁତ୍ର । ମୁଁ ତା ପାଇଁ ବହୁଦୂରରୁ ଏହି କନ୍ୟାଟିକୁ ପସନ୍ଦ କରି ଆଣିଥିଲି । କିନ୍ତୁ ମୁଁ ଫେରିବାବେଳକୁ ମୋର ପୁତ୍ର କେଉଁଆଡ଼େ ଚାଲିଯାଇଛି । ମୁଁ ତାକୁ ଖୋଜି ଆଣିବାପାଇଁ ବାହାରିଲି । ତେଣୁ ଆପଣ ଏହାକୁ ନିଜ ନିକଟରେ ରଖନ୍ତୁ । ଆପଣଙ୍କ ଉପରେ ମୋର ଅଖଣ୍ଡ ବିଶ୍ୱାସ ଥିବାରୁ ମୁଁ ଏହାକୁ ଆପଣଙ୍କ ଆଶ୍ରୟରେ ଛାଡ଼ିଦେଇ ପୁତ୍ରର ଅନ୍ୱେଷଣରେ ଯିବି ।'

ଅଭିଶାପ ଭୟରେ ରାଜା ଯଶଃକେତୁ ଛଦ୍ମବେଶିନୀ ବ୍ରାହ୍ମଣ କନ୍ୟାକୁ ଆଶ୍ରୟ ଦେବାପାଇଁ ସ୍ୱୀକୃତ ହେଲେ । ନିଜ କନ୍ୟାକୁ ଡାକି ନିର୍ଦ୍ଦେଶ ଦେଲେ ଯେ ସେ ଏହି ବ୍ରାହ୍ମଣ କନ୍ୟାକୁ ନେଇ ନିଜ ପାଖରେ ହିଁ ରଖିବ ଏବଂ ତା' ସହିତ ହିଁ ଭୋଜନ ଶୟନ କରିବ । ପିତାଙ୍କ ଆଦେଶରେ ଶଶିପ୍ରଭା କନ୍ୟାଟିକୁ ନେଇ ନିଜ ଅନ୍ତଃପୁରକୁ ଚାଲିଗଲେ । କୌଶଳ କାର୍ଯ୍ୟକାରୀ ହୋଇଥିବାରୁ ମାୟାବୀ ସିଦ୍ଧଯୋଗୀ ମଧ୍ୟ ନିଜ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କରିଗଲେ ।

ମନଃସ୍ୱାମୀ ନାରୀ ବେଶରେ ନିଜର ପ୍ରାଣପ୍ରିୟା ପ୍ରିୟତମା ନିକଟରେ ରହୁଥାନ୍ତି । ନବାଗତା କନ୍ୟା ସହିତ ରାଜକୁମାରୀଙ୍କ ଆନ୍ତରିକତା ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହେଉଥାଏ । ଏଥିପାଇଁ ଅନ୍ୟାନ୍ୟ ସଖୀ ପରିଚାରିକାମାନଙ୍କର ମଧ୍ୟ ସେ ବିଶ୍ୱସ୍ତା ହୋଇଉଠିଥାନ୍ତି ।

ଦିନେ ମନଃସ୍ୱାମୀ ରାଜକନ୍ୟାଙ୍କ ଶଯ୍ୟା ନିକଟରେ ଶୋଇଥାନ୍ତି । ରାଜକୁମାରୀ ଶଯ୍ୟାଉପରେ ପଡ଼ିରହି ବିରହ ବେଦନାରେ ଛଟପଟ ହେଉଥିବା ଦେଖି ଏକାନ୍ତରେ ପଚାରିଲେ, 'ସଖି, ତୁମର ଶରୀର ଦିନକୁଦିନ ଅତ୍ୟନ୍ତ କ୍ଷୀଣ ହୋଇଯାଉଛି । ତୁମ କାନ୍ତି ମଧ୍ୟ ଆଉ ନାହିଁ । ତୁମକୁ ଦେଖିଲେ ମନେହେଉଛି ସତେ ଯେପରି ତୁମର ପ୍ରିୟତମ ତୁମଠାରୁ ଦୂରକୁ ଚାଲିଯାଇଛନ୍ତି । ତୁମେ ବିରହିଣୀ ନାୟିକା ପରି ମନେହେଉଛ । ତୁମ କଷ୍ଟ ସହ୍ୟ କରିବା ମୋ ପକ୍ଷରେ ସମ୍ଭବ ହେଉନାହିଁ । ତେଣୁ, ସଖି, ତମ ମନର କଥା ସତସତ କହି ମୋର ଦୁଶ୍ଚିନ୍ତା ଦୂରକର । ସହୃଦୟ ଓ ଅନ୍ତରଙ୍ଗ ସଖୀମାନଙ୍କ ବ୍ୟତୀତ ଅନ୍ୟ କାହା ନିକଟରେ ତମର ମନୋବେଦନା ପ୍ରକାଶ କରିବ ? ଦେଖ, ସଖି, ତମେ ଯଦି ତମ ଦୁଃଖର କାରଣ ନକହ, ତେବେ ମୁଁ ଜଳ ମଧ୍ୟ ସ୍ପର୍ଶ କରିବି ନାହିଁ ।' ଏହାଶୁଣି ରାଜକୁମାରୀ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ, 'ସଖି, ତୁମ ପ୍ରତି ମୋର ଅବିଶ୍ୱାସ କାହିଁ ? ତୁମେ ତ ମୋର ଅତ୍ୟନ୍ତ ଆପଣାର । ଶୁଣ, ମୁଁ ମୋର ହୃଦୟର କଥା ତୁମକୁ କହୁଛି ।'

'ଏକଦା ବସନ୍ତ ଉଦ୍ୟାନରେ ହେଉଥିବା ଯାତ୍ରା ଦେଖିବାପାଇଁ ଯାଇଥାଏ । ସେଠାରେ ଜଣେ ଭବ୍ୟ ବ୍ରାହ୍ମଣ କୁମାରଙ୍କ ସହିତ ମୋର ସାକ୍ଷାତ ହେଲା । ସେ ରୂପରେ ମେଘମୁକ୍ତ ଚନ୍ଦ୍ରମା ପରି ଦେଖାଯାଉଥାନ୍ତି । ତାଙ୍କୁ ଦେଖିବା ମାତ୍ରେ ମନରେ କାମଭାବ ଉଦ୍ରେକ ହେଉଥାଏ । ସେ ଋତୁରାଜ ବସନ୍ତର ଆଲୋକ ସଜ୍ଜିତ ଉପବନ ବୋଲି ମନେହେଉଥାନ୍ତି । ତାଙ୍କ ମୁଖଚନ୍ଦ୍ରରୁ ସୌନ୍ଦର୍ଯ୍ୟ ରୂପକ ସୁଧାପାନ କରିବାପାଇଁ ମୋର ଚକ୍ଷୁଯୁଗଳ ଚକୋରବ୍ରତ ଅବଲମ୍ବନ କଲେ । ଏ ସମୟରେ, ଦୁର୍ଭାଗ୍ୟବଶତଃ ଗୋଟିଏ ମତ୍ତହସ୍ତୀ ଘୋର ଗର୍ଜନ କରି ସେଠାରେ ଆସି ପହଞ୍ଚିଲା । ସତେ ଯେପରି ମୁଖଚନ୍ଦ୍ରକୁ ଗ୍ରାସ କରିବାପାଇଁ ତାହା ଥିଲା ଅକାଳରେ କାଳମେଘ ସଦୃଶ । ସେ ତାର ବନ୍ଧନ ଛିନ୍ନ କରି ପ୍ରବଳ ବେଗରେ ଇତସ୍ତତଃ ଦୌଡୁଥାଏ । ମଦଜଳଦ୍ୱାରା ତାର ଗଣ୍ଡଦେଶ ନିର୍ଝରିଣୀର ଭ୍ରମ ସୃଷ୍ଟି କରୁଥାଏ । ତାକୁ ଦେଖି ରକ୍ଷକମାନେ ମୋତେ ଏକାକିନୀ ଛାଡ଼ିଦେଇ ସେଠାରୁ ପଳାୟନ କଲେ । ଭୟରେ ମୋର ଶରୀର କମ୍ପିବାକୁ ଲାଗିଲା । ଏ ସମୟରେ ସେହି ବ୍ରାହ୍ମଣ କୁମାର ତାଙ୍କର ଦୁଇ ବାହୁରେ ମୋତେ ଉଠାଇ ନେଇ ଦୂରକୁ ଚାଲିଗଲେ । ତାଙ୍କର ଚନ୍ଦନଲିପ୍ତ ଶରୀରର ଅମୃତ ସ୍ପର୍ଶରେ ମୋର ଅଙ୍ଗପ୍ରତ୍ୟଙ୍ଗ କ'ଣ ଯେ ହୋଇଗଲା ତାହା ଶବ୍ଦଦ୍ୱାରା ପ୍ରକାଶ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ପର ମୁହୂର୍ତ୍ତରେ ମୋର ରକ୍ଷକମାନେ ଆସି ମୋତେ ଏଠାକୁ ନେଇଆସିଲେ । ମୁଁ ସ୍ୱର୍ଗ ରାଜ୍ୟରୁ ବିଚ୍ୟୁତ ହୋଇ ପୃଥିବୀ ଉପରେ ଆସି ପଡ଼ିଲି । ସେହି ସମୟଠାରୁ ମୋର

ଜୀବନ ରକ୍ଷକ ସେହି ବ୍ରାହ୍ମଣ କୁମାରଙ୍କ ସହିତ ସ୍ୱପ୍ନରେ ହିଁ ମିଳନ ଘଟୁଛି । ଜାଗ୍ରତ ଅବସ୍ଥାରେ ମଧ ସେ ମୋ ନିକଟରୁ ଦୂରହେଉ ନାହାଁନ୍ତି । ମୁଁ ଶୋଇ ଶୋଇ ସ୍ୱପ୍ନ ଦେଖୁଛି ଯେ ସେ ତାଙ୍କର ମଧୁର ଚାଟୁ ବାକ୍ୟ, ଚୁମ୍ବନ, ଆଲିଙ୍ଗନ ଇତ୍ୟାଦି ଦ୍ୱାରା ମୋର ଲଜ୍ଜା ଦୂର କରିବାପାଇଁ ଚେଷ୍ଟା କରୁଛନ୍ତି । କିନ୍ତୁ ମୁଁ ଅଭାଗିନୀ ତାଙ୍କ ନାମ, ଧାମ, କୁଳ, ଗୋତ୍ର କିଛି ଜାଣେ ନାହିଁ । ତେଣୁ ପ୍ରିୟତମଙ୍କ ବିରହ ଅଗ୍ନିରେ ଏହିପରି ଜଳୁଥିବା ବ୍ୟତୀତ ମୋର ଆଉ ଅନ୍ୟ ଗତି କ'ଣ ଅଛି ?'

ରାଜକନ୍ୟାଙ୍କଠାରୁ ଏହା ଶୁଣି ଛଦ୍ମବେଶରେ ଥିବା ବ୍ରାହ୍ମଣ ମନଃସ୍ୱାମୀ ଆନନ୍ଦରେ ବିହ୍ୱଳ ହୋଇପଡ଼ିଲେ । ଶଶିପ୍ରଭାଙ୍କ ସୁଧାତୁଲ୍ୟ ଆତ୍ମକଥନ କର୍ଣ୍ଣ ମାଧ୍ୟମରେ ତାଙ୍କର କ୍ଷୁଧା ନିବାରଣ କଲା । ନିଜର ପ୍ରକୃତ ରୂପ ପ୍ରକଟନ କରିବାପାଇଁ ଏହା ପ୍ରକୃଷ୍ଟ ଅବସର ମନେକରି ସେ ଗୁରୁପ୍ରଦତ୍ତ ଯୋଗସିଦ୍ଧ ବଟିକାଟିକୁ ପାଟିରୁ ବାହାର କରିଦେଲେ । ସଙ୍ଗେ ସଙ୍ଗେ ତାଙ୍କର ପୂର୍ବ ରୂପ ଫେରିଆସିଲା । ସେ କହିଲେ, 'ହେ ମୃଗନୟନି, ମୁଁ ହିଁ ସେହି ଅଭାଗା ବ୍ରାହ୍ମଣ କୁମାର । ମୁହୂର୍ତ୍ତକର ଦର୍ଶନଦ୍ୱାରା ମୁଁ ତୁମର କ୍ରୀତଦାସ ହୋଇପଡ଼ିଥିଲି । କ୍ଷଣିକ ପରିଚୟ ପରେ ମୋ ମନରେ ଯେଉଁ ଅପାର କଷ୍ଟ ହୋଇଥିଲା, ମୋର ଏହି ନାରୀ ବେଶ ତାରହିଁ ପରିଣାମ । ତେଣୁ ହେ ସୁନ୍ଦରି, ବର୍ତ୍ତମାନ ଆମ ଉଭୟଙ୍କର କନ୍ଦର୍ପ ପୀଡ଼ା ଦୂରହେଉ । ତା' ନହେଲେ କାମଦେବଙ୍କ ଅମୋଘ ଅସ୍ତ୍ର ଆମକୁ ଜୀବିତ ରଖିବ ନାହିଁ ।'

ନିଜର ଅଭିଳଷିତ ପ୍ରିୟତମଙ୍କୁ ନିକଟରେ ପାଇ ଏବଂ ତାଙ୍କ ଚାଟୁବାକ୍ୟ ଶ୍ରବଣ କରି ଶଶିପ୍ରଭା ଲଜ୍ଜା, ବିସ୍ମୟ ଏବଂ ପ୍ରଣୟ ଭାବନାରେ ଆକୁଳ ହୋଇଉଠିଲେ । କିଛି ସମୟ ମଧ୍ୟରେ ଉଭୟେ ପ୍ରକୃତିସ୍ଥ ହୋଇ ଗାନ୍ଧର୍ବ ରୀତିରେ ବିବାହ ଅନୁଷ୍ଠାନ ସମ୍ପନ୍ନ କଲେ ।

ମନଃସ୍ୱାମୀ ଉଭୟ ରୂପରେ ସେଠାରେ ବାସ କରୁଥାନ୍ତି । ଦିନରେ ସିଦ୍ଧ ବଟିକାଦ୍ୱାରା ସ୍ତ୍ରୀ ରୂପ ଓ ରାତ୍ରିରେ ପୁରୁଷ ରୂପ ଧାରଣ କରି ଶଶିପ୍ରଭାଙ୍କ ସହିତ ବିଭିନ୍ନ କେଳି ବିଳାସରେ ତାଙ୍କର ସମୟ ବିତି ଯାଉଥାଏ ।

କିଛିଦିନ ପରେ ଯଶଃକେତୁଙ୍କର ଶାଳକ ମୃଗାଙ୍କଦତ୍ତ ତାଙ୍କ କନ୍ୟା ମୃଗାଙ୍କବତୀଙ୍କର ବିବାହ ମହାମନ୍ତ୍ରୀ ବ୍ରାହ୍ମଣ ପ୍ରଜ୍ଞାସାଗରଙ୍କ ପୁତ୍ର ସହିତ ସମ୍ପନ୍ନ କଲେ । ଯୌତୁକ ସ୍ୱରୂପ ପ୍ରଚୁର ଧନରାଶି ମଧ ପ୍ରଦାନ କରାଗଲା । ରାଜକୁମାରୀ ଶଶିପ୍ରଭା ନିମନ୍ତ୍ରିତା ହୋଇ ସେଠାକୁ ଯାଇଥାନ୍ତି । ମାମୁଝିଅ ଭଉଣୀର ବିବାହରେ ତାଙ୍କ ମନ ଅତ୍ୟନ୍ତ ପ୍ରସନ୍ନ ଥାଏ ।

ଦାସୀ ପରିଜନମାନଙ୍କ ସହିତ ରହୁଥିଲେ ସୁଦ୍ଧା ଛଦ୍ମବେଶୀ ବ୍ରାହ୍ମଣ କୁମାରଙ୍କୁ କ୍ଷଣକ ପାଇଁ ମଧ୍ୟ ସେ ନିଜ ନିକଟରୁ ଦୂର କରୁନଥାନ୍ତି ।

ବିବାହ କରିବାପାଇଁ ଆସିଥିବା ମନ୍ତ୍ରୀ ପୁତ୍ର ଛଦ୍ମବେଶୀ ମନଃସ୍ୱାମୀଙ୍କୁ ଦେଖି ତା' ପ୍ରତି ଆକୃଷ୍ଟ ହୋଇପଡ଼ିଲା । ନିଜ ନବବିବାହିତା ପତ୍ନୀ ପରିବର୍ତ୍ତେ ଏହି କପଟ କନ୍ୟାହିଁ ତାକୁ ବିଶେଷ ଭାବେ କାମପୀଡ଼ିତ କରିବାକୁ ଲାଗିଲା । ପୁତ୍ର ଓ ପୁତ୍ରବଧୂ ସହିତ ମନ୍ତ୍ରୀ ସ୍ୱଗୃହକୁ ଫେରିଆସିଲେ । ପୁତ୍ର କିନ୍ତୁ ସର୍ପାହତ ପରି ନିଶ୍ଚେଷ୍ଟ ହୋଇପଡ଼ିଥାଏ । ଛଦ୍ମବେଶୀ ସୁନ୍ଦରୀ ବ୍ୟତୀତ ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଯାଉଥାଏ । ପୁତ୍ରକୁ ଏପରି ବିକାରଗ୍ରସ୍ତ ଦେଖି ମନ୍ତ୍ରୀ ପ୍ରଜ୍ଞାସାଗର ଏବଂ ପରିବାର ବର୍ଗ ବ୍ୟଥିତ ହୋଇପଡ଼ିଲେ । ଆନନ୍ଦଉତ୍ସବ ମ୍ଳାନ ପଡ଼ିଗଲା । ପିତାଙ୍କ ଆଶ୍ୱାସନାରେ ପୁତ୍ର କିଛି ଆଶ୍ୱସ୍ତ ହୋଇ ପାଗଳର ପ୍ରଳାପ ତୁଲ୍ୟ ତା'ର ମନସ୍କାମନା ପ୍ରକାଶ କରିବାକୁ ଲାଗିଲା । ପିତା ଦେଖିଲେ ପୁତ୍ରର ମନୋଭିଳାଷ ତାଙ୍କ ଶକ୍ତିର ବାହାରେ । ସେ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଥିବାବେଳେ ରାଜା ମଧ୍ୟ ପରିସ୍ଥିତି ଜାଣିବାପାଇଁ ସେଠାରେ ଆସି ପହଞ୍ଚିଲେ । ସେ ଲକ୍ଷ୍ୟ କଲେ ଯେ ତାଙ୍କ ପ୍ରିୟ ମନ୍ତ୍ରୀଙ୍କ ପୁତ୍ର କନ୍ଦର୍ପର ସପ୍ତମ ଦଶାରେ ଆସି ପହଞ୍ଚିସାରିଛି । ବୃଦ୍ଧ ବ୍ରାହ୍ମଣଙ୍କଦ୍ୱାରା ତାଙ୍କ ନିକଟରେ ରଖାଯାଇଥିବା କନ୍ୟାଟି ବିନା ସେ କନ୍ଦର୍ପର ଦଶମ ଦଶାରେ ପହଞ୍ଚିଯିବ । (କର୍ନ୍ଦପର ଦଶଟି ଦଶା ହେଲା—ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକୀର୍ତ୍ତନ, ଉଦ୍‌ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ଓ ମୃତ୍ୟୁ) । କିନ୍ତୁ ନିଜ ପୁତ୍ରପାଇଁ ବୃଦ୍ଧ ବ୍ରାହ୍ମଣ ଖୋଜି ଆଣିଥିବା କନ୍ୟାଟି ପ୍ରତି ସେ କିପରି ବା ଅନ୍ୟାୟ ଆଚରଣ କରିବେ ? ପୁତ୍ରର ଯଦି ମୃତ୍ୟୁ ହୋଇଯାଏ ତେବେ ପ୍ରଜ୍ଞାସାଗର ମଧ୍ୟ ସେହି ଦୁଃଖରେ ପ୍ରାଣତ୍ୟାଗ କରିବେ । ମନ୍ତ୍ରୀଙ୍କ ମୃତ୍ୟୁରେ ରାଜ୍ୟ ନଷ୍ଟଭ୍ରଷ୍ଟ ହୋଇଯିବ । ତେଣୁ ରାଜା ନିଜେ କିଛି ଚିନ୍ତା କରିନପାରି ଏ ସମସ୍ୟାର ସମାଧାନ ସମ୍ପର୍କରେ ଉପସ୍ଥିତ ପ୍ରଜାମାନଙ୍କୁ ଜିଜ୍ଞାସା କଲେ ।

ବିଜ୍ଞ ପ୍ରଜାବୃନ୍ଦ ରାଜା ସମ୍ମୁଖୀନ ହୋଇଥିବା ବିଷମ ସମସ୍ୟାର ଗୁରୁତ୍ୱ ଉପଲବ୍ଧି କରିପାରିଲେ । ପରସ୍ପର ମଧ୍ୟରେ ଆଲୋଚନା କରି ସେମାନେ ଶେଷ ନିଷ୍ପତ୍ତି ଶୁଣାଇ କହିଲେ, 'ମହାରାଜ, ଧର୍ମଶାସ୍ତ୍ରରେ କୁହାଯାଇଛି ଯେ ପ୍ରଜାମାନଙ୍କୁ ରକ୍ଷା କରିବା ରାଜାଙ୍କର ପ୍ରକୃତ ଧର୍ମ । ଧର୍ମରକ୍ଷାର ଉପାୟ ହେଲା ପରାମର୍ଶ । ଏହାହିଁ ରାଜନୀତିର ମୂଳକେନ୍ଦ୍ର । ଏହି ପରାମର୍ଶ କେବଳ ମନ୍ତ୍ରୀମାନେ ହିଁ ଦେଇପାରନ୍ତି । ତେଣୁ ବର୍ତ୍ତମାନ ମନ୍ତ୍ରୀ ପ୍ରଜ୍ଞାସାଗରଙ୍କର ଯଦି ମୃତ୍ୟୁ ହୁଏ ତେବେ ଆପଣଙ୍କ.ରାଜ୍ୟ ଶାସନର ମୂଳ କେନ୍ଦ୍ରଟି

ନଷ୍ଟ ହୋଇଯିବ । ଏଣୁ ଧର୍ମହାନି ଘଟାଇବା ଉଚିତ ନୁହେଁ । ପୁତ୍ର ସହିତ ମନ୍ତ୍ରୀଙ୍କ ମୃତ୍ୟୁ ହେଲେ ଆପଣ ସେହି ପାପରେ ଭାଗୀ ହେବେ । ଏ ଦୃଷ୍ଟିରୁ ମଧ୍ୟ ସେମାନଙ୍କୁ ମୃତ୍ୟୁମୁଖରୁ ବଞ୍ଚାଇବା ଏବଂ ଆସନ୍ନ ଧର୍ମବିପ୍ଳବରୁ ନିଜକୁ ରକ୍ଷା କରିବା ଆପଣଙ୍କପାଇଁ ଉଚିତ ହେବ । ଆପଣ ସେହି ବୃଦ୍ଧ ବ୍ରାହ୍ମଣଙ୍କଦ୍ୱାରା ଆନୀତ କନ୍ୟାକୁ ମନ୍ତ୍ରୀପୁତ୍ରଙ୍କ ସହିତ ବିବାହ କରାଇଦିଅନ୍ତୁ । ବ୍ରାହ୍ମଣ ଫେରିଆସି ଯଦି କ୍ରୋଧ ପ୍ରକାଶ କରନ୍ତି, ତେବେ, ସେତେବେଳେ ତା'ର ବ୍ୟବସ୍ଥା କରାଯିବ ।'

ଦେଶବାସୀଙ୍କ ଏହି ସମାଧାନକୁ ରାଜା ଗ୍ରହଣ କଲେ । ଛଦ୍ମବେଶୀ କନ୍ୟାଟିକୁ ମନ୍ତ୍ରୀପୁତ୍ରଙ୍କ ହସ୍ତରେ ସମର୍ପଣ କରିବାପାଇଁ ନିଶ୍ଚୟ କରାଗଲା । ରାଜକୁମାରୀଙ୍କ ନିକଟରୁ କନ୍ୟାଟିକୁ ଆଣି ମନ୍ତ୍ରୀଙ୍କ ବାସଭବନରେ ରଖାଗଲା । ରାଜା ବିବାହର ଶୁଭମୁହୂର୍ତ୍ତ ନିର୍ଣ୍ଣୟ କରିବାପାଇଁ ଜ୍ୟୋତିଷୀମାନଙ୍କୁ ନିର୍ଦ୍ଦେଶ ଦେଲେ । ଜୀବନର ଗତି ପରିବର୍ତ୍ତନ ଦେଖି ନାରୀ ରୂପରେ ଥିବା ମନଃସ୍ୱାମୀ ବିଚଳିତ ହୋଇପଡ଼ିଲେ । ସେ ରାଜାଙ୍କ ସମ୍ମୁଖକୁ ଆସି ନିବେଦନ କଲେ, 'ମୁଁ ଅନ୍ୟଦ୍ୱାରା ଅନ୍ୟ କୌଣସି ଜଣେ ପୁରୁଷଙ୍କପାଇଁ ଏଠାକୁ ଅଣାଯାଇଛି । ତଥାପି, ମହାରାଜ, ଆପଣ ଯଦି ମୋତେ ଅନ୍ୟଜଣେ ତୃତୀୟ ପୁରୁଷଙ୍କ ହସ୍ତରେ ସମର୍ପଣ କରିବାପାଇଁ ଚାହୁଁଛନ୍ତି ତେବେ ମୁଁ ଆପଣଙ୍କୁ ସେଥିରେ ବାଧା ଦେବି ନାହିଁ । ଏହି କାର୍ଯ୍ୟରେ ଧର୍ମ ଅଧର୍ମ ସବୁ ଆପଣଙ୍କର । କିନ୍ତୁ ମୁଁ ଗୋଟିଏ ସର୍ତ୍ତରେ ବିବାହ କରିବି । ମୋତେ ଆଣିଥିବା ସେହି ବୃଦ୍ଧ ବ୍ରାହ୍ମଣ ଛଅମାସ ତୀର୍ଥ ଭ୍ରମଣ କରି ଫେରିବେ । ସେପର୍ଯ୍ୟନ୍ତ ମୁଁ ମନ୍ତ୍ରୀକୁମାରଙ୍କ ସହିତ ଗୋଟିଏ ଶଯ୍ୟାରେ ଶୟନ କରିବି ନାହିଁ । ଯଦି ମୋର ପ୍ରତିଜ୍ଞା ଭଙ୍ଗ ହୁଏ ତେବେ ନିଜ ଦନ୍ତରେ ଜିହ୍ୱା ଛେଦନ କରି ମୃତ୍ୟୁବରଣ କରିବି ।'

ନାରୀବେଶୀ ମନଃସ୍ୱାମୀଙ୍କଠାରୁ ଏହି ସର୍ତ୍ତ ଶୁଣି ରାଜା ଯଶଃକେତୁ ମନ୍ତ୍ରୀ ପୁତ୍ରକୁ ଯାଇ ଏଥିପାଇଁ ସମ୍ମତ କରାଇଲେ । ସେ ମଧ୍ୟ ନିଜର ଅଭିଳଷିତ କନ୍ୟାଲାଭରେ ନିଶ୍ଚିନ୍ତ ହୋଇ ସମ୍ମତି ପ୍ରଦାନ କଲା । ଉଭୟଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା । ଏକ ସୁରକ୍ଷିତ ପ୍ରାସାଦ ମଧ୍ୟରେ ଛଦ୍ମବେଶୀ ମନଃସ୍ୱାମୀ ଏବଂ ପୂର୍ବ ବିବାହିତା ମୃଗାଙ୍କବତୀ ଏକତ୍ର ରହିବାକୁ ଲାଗିଲେ । ସେମାନଙ୍କୁ ପ୍ରସନ୍ନ କରିବାପାଇଁ ମନ୍ତ୍ରୀକୁମାର କିଛିଦିନ ନିମିତ୍ତ ତୀର୍ଥଯାତ୍ରାରେ ଚାଲିଗଲା ।

ସ୍ତ୍ରୀ ରୂପଧାରୀ ବ୍ରାହ୍ମଣ ଯୁବକ ଏବଂ ମୃଗାଙ୍କବତୀ ଗୋଟିଏ ଗୃହ ମଧ୍ୟରେ ଏକତ୍ର ଖାଇପିଇ ଗୋଟିଏ ଶଯ୍ୟାରେ ଶୋଉଥାନ୍ତି । ଏହିପରି କିଛିଦିନ ବିତିଗଲା । ଦିନେ ବ୍ରାହ୍ମଣ

ଯୁବକ ମୃଗାଙ୍କବତୀ ସହିତ ଗୋଟିଏ ଶଯ୍ୟାରେ ଶୋଇଥାନ୍ତି । ପରିଚାରିକାମାନେ ପ୍ରକୋଷ୍ଠ ବାହାରେ ଗାଢ଼ନିଦ୍ରାରେ ଅଭିଭୂତା । ଏ ସମୟରେ ମନଃସ୍ୱାମୀଙ୍କୁ ମୃଗାଙ୍କବତୀ ଏକାନ୍ତରେ କହିଲା, 'ସଖି, ଆଜି କାହିଁକି ନିଦ ଆସୁନାହିଁ । ଗୋଟିଏ କିଛି କଥା କହ ।' ଏଥିରେ ମନଃସ୍ୱାମୀ ପୁରାଣର ଗୋଟିଏ ଗଳ୍ପ କହିବା ଆରମ୍ଭ କଲେ । ଗଳ୍ପଟି ଥିଲା ପୁରୂରବାଙ୍କ ଜନ୍ମବୃତ୍ତାନ୍ତ । ପୂର୍ବେ ସୂର୍ଯ୍ୟବଂଶରେ ଐଳ ନାମକ-ଜଣେ ପ୍ରବଳ ପ୍ରତାପୀ ରାଜର୍ଷି ଥିଲେ । ସେ ଭଗବତୀ ପାର୍ବତୀଙ୍କ ଅଭିଶାପରୁ ଏକ ଦିବ୍ୟ ପରମା ସୁନ୍ଦରୀ ନାରୀରେ କିଛିଦିନପାଇଁ ପରିବର୍ତ୍ତିତ ହୋଇଯାଇଥିଲେ । ସେ ନନ୍ଦନ ବନରେ ବିଚରଣ କରୁଥିବା ବେଳେ ଗ୍ରହାଧିପତି ବୁଧ ତାଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ଉଭୟଙ୍କର ବିବାହ ସମ୍ପନ୍ନ ହେଲା । ସେମାନଙ୍କଠାରୁ ପୁରୂରବାଙ୍କ ଜନ୍ମ । ଏହିପରି ଦେବତାମାନଙ୍କ ଆଶୀର୍ବାଦ ବା ଅଭିଶାପରୁ ହେଉ କିମ୍ବା ମନ୍ତ୍ର ବା ଔଷଧୀ ପ୍ରଭାବରୁ ହେଉ ବେଳେବେଳେ ସ୍ତ୍ରୀ ପୁରୁଷ ଓ ପୁରୁଷ ସ୍ତ୍ରୀରେ ପରିଣତ ହୋଇଯାଇଥାନ୍ତି । ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ନିଜର କାମବାସନା ପରିତୃପ୍ତିପାଇଁ ଏପରି ଆଚରଣ କରୁଥିବା ଦେଖାଯାଏ ।

ମୃଗାଙ୍କବତୀ ବିବାହ କରିଥିଲେ ସୁଦ୍ଧା ପତିଙ୍କ ସହିତ ସମ୍ଭୋଗ ସୁଖ ଲାଭ କରିନଥିଲା । ଉଦ୍ଦାମ ଯୌବନରେ ମଧ୍ୟ ସେ ଥିଲା ମୁଗ୍ଧା । ଏକତ୍ର ରହିବା ଫଳରେ ମନଃସ୍ୱାମୀ ପ୍ରତି ତା'ର ବିଶ୍ୱାସ ଓ ଆନ୍ତରିକତା ଆସିଯାଇଥାଏ । ମନଃସ୍ୱାମୀର କଥାଶୁଣି ସେ କହିଲା, 'ସଖି, ତୁମର କଥାଶୁଣି ମୋ ଶରୀରରେ କାହିଁକି କମ୍ପନ ସୃଷ୍ଟି ହେଉଛି, ହୃଦୟର ସ୍ପନ୍ଦନ ବଢ଼ିଯାଉଛି, ମୋ ଭିତରଟା କ'ଣ ହୋଇଯାଉଛି ମୁଁ ଜାଣିପାରୁନାହିଁ ? ତୁମେ ଯଦି ଏହାର କିଛି ପ୍ରତିକାର ଜାଣିଥାଅ ତାହାହେଲେ ମୋତେ ଏଥିରୁ ରକ୍ଷାକର ।'

ମୃଗାଙ୍କବତୀର ମନୋଭାବ ବୁଝିପାରି ବ୍ରାହ୍ମଣ ଯୁବକ କହିଲେ, 'ସଖି, ତୁମ ଭିତରେ କାମଭାବ ଜାଗ୍ରତ ହେବାରୁ ଏସବୁ ଅପୂର୍ବ ଲକ୍ଷଣ ଦେଖାଯାଉଛି । ତୁମର ପୂର୍ବରୁ ପୁରୁଷ ସହିତ ସଂସର୍ଗ ହୋଇନାହିଁ କିନ୍ତୁ ମୋର ଏ ପ୍ରକାର ଅନୁଭୂତି ଅଛି । ତୁମେ କାଳେ ଅନ୍ୟଥା ଭାବିବ ବୋଲି ମୁଁ ତୁମକୁ ଏହା କହିନଥିଲି ।' ଏଥିରେ ମୃଗାଙ୍କବତୀର କାମବାସନା ଆହୁରି ପ୍ରବଳତର ହୋଇଉଠିଲା । ସେ ଧୀରେ ଧୀରେ କହିଲା, 'ସଖି, ତୁମେ ମୋର ପ୍ରାଣସମା ବାନ୍ଧବୀ । ତୁମକୁ ବା କ'ଣ ଲୁଚାଇବି । ତୁମେ କାଳୋଚିତ କାର୍ଯ୍ୟ କରିବାରେ ମଧ୍ୟ ନିପୁଣା । ତେଣୁ କୌଣସି ଉପାୟରେ ପୁରୁଷଟିଏ ଯଦି ବର୍ତ୍ତମାନ ଏଠାକୁ ଆସିପାରନ୍ତା ତେବେ ଆମେ ତାଠାରୁ ସମ୍ଭୋଗ ସୁଖଲାଭ କରିପାରନ୍ତେ ।'

ଯୋଗସିଦ୍ଧ ଶ୍ରୀମୂଳରାଜଙ୍କ ଶିଷ୍ୟ ମନଃସ୍ୱାମୀ ମୃଗାଙ୍କବତୀର କାମାବେଗ ଉପଲବ୍ଧି କରି ଏହାକୁ ଏକ ଅପୂର୍ବ ସୁଯୋଗ ମନେକଲା । କହିଲା, 'ଯଦି ତୁମେ ଏପରି ଭାବୁଥାଅ, ତେବେ ମୁଁ ଗୋଟିଏ ଗୁପ୍ତ ରହସ୍ୟ କହୁଛି ଶୁଣ । ଭଗବାନ ବିଷ୍ଣୁଙ୍କ କୃପାରୁ ମୁଁ ରାତିରେ ପୁରୁଷ ହେବାର ବରଲାଭ କରିପାରିଛି । ତେଣୁ ଅନ୍ୟ ପୁରୁଷକୁ ଏଠାକୁ ଆଣିବା ପରିବର୍ତ୍ତେ ମୁଁ ହିଁ ଆଜି ତୁମପାଇଁ ପୁରୁଷ ରୂପ ଧାରଣ କରୁଛି । ଏହା କିନ୍ତୁ ଅତ୍ୟନ୍ତ ଗୋପନୀୟ ।'

ଏହାକହି ମନଃସ୍ୱାମୀ ନିଜ ମୁଖରୁ ସିଦ୍ଧ ବଟିକାଟି ବାହାର କରିଦେଲେ । ତାଙ୍କୁ ଏକ ଦିବ୍ୟସୁନ୍ଦର ପୁରୁଷ ରୂପରେ ଦେଖି ମୃଗାଙ୍କବତୀ ନିଜକୁ ଆଉ ଆୟତ୍ତରେ ରଖିପାରିଲା ନାହିଁ । ତାଙ୍କ ସହିତ ଉନ୍ମତ୍ତ କାମକ୍ରୀଡ଼ାରେ ନିମଜ୍ଜିତ ରହି ନିଜର ସମସ୍ତ ବେଦନା ଦୂରକଲା । ଉଭୟେ ଏହିପରି ଭୋଗ ବିଳାସରେ ଦିନ କଟାଇବାକୁ ଲାଗିଲେ ।

କିଛିଦିନ ପରେ ମନ୍ତ୍ରୀ ପୁତ୍ରର ଫେରିବା ସମୟ ନିକଟ ହୋଇଆସିଲା । ସେମାନେ ବିପଦର ଆଶଙ୍କା କରି ଦିନେ ରାତ୍ରିର ଅନ୍ଧକାର ମଧ୍ୟରେ ସେଠାରୁ ପଳାୟନ କଲେ । ଗୁରୁ ମୂଳଦେବ ଶିଷ୍ୟର ସମସ୍ତ ବୃତ୍ତାନ୍ତ ଜାଣିପାରି ବୃଦ୍ଧବ୍ରାହ୍ମଣର ଛଦ୍ମବେଶରେ ପୁଣି ଆସି ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କ ସହିତ, ପୁତ୍ରର ଛଦ୍ମବେଶରେ, ତାଙ୍କ ମିତ୍ର ଶଶୀ ମଧ୍ୟ ଥାନ୍ତି । ସେ ରାଜାଙ୍କୁ ନିବେଦନ କରି କହିଲେ, 'ମହାରାଜ, ମୁଁ ବର୍ତ୍ତମାନ ମୋ ପୁତ୍ର ସହିତ ଫେରିଆସିଲି । ଆପଣ ମୋର ପୁତ୍ରବଧୂକୁ ମୋତେ ଫେରାଇ ଦିଅନ୍ତୁ ।' ରାଜା ଅଭିଶାପ ଭୟରେ ପ୍ରଥମେ କିଛି କହିପାରିଲେ ନାହିଁ; ପରେ ସାହସ ସଞ୍ଚୟ କରି କହିଲେ 'ମହାଭାଗ, ଆପଣଙ୍କର ସେହି ପୁତ୍ରବଧୂ ଏଠାରୁ କେଉଁଆଡ଼େ ପଳାୟନ କରିଛି । ଏଥିପାଇଁ ଆପଣ ମୋତେ କ୍ଷମା କରିବା ହେବେ । ମୋର ଏହି ଅପରାଧପାଇଁ ମୁଁ ମୋର କନ୍ୟାକୁ ଆପଣଙ୍କ ପୁତ୍ର ହସ୍ତରେ ସମର୍ପଣ କରୁଛି ।' ବୃଦ୍ଧ ବ୍ରାହ୍ମଣବେଶୀ ମୂଳଦେବ କପଟ କ୍ରୋଧରେ ରାଜାଙ୍କୁ ନିଷ୍ଠୁର ବାଣୀ ଶୁଣାଇବାକୁ ଲାଗିଲେ । ରାଜା ତାଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ଅନୁନୟ ବିନୟ କରୁଥାନ୍ତି । ଶେଷରେ ସେ ନିଜ କନ୍ୟା ଶଶିପ୍ରଭା ସହିତ ମୂଳଦେବଙ୍କ ଛଦ୍ମବେଶୀ ବନ୍ଧୁ ଶଶୀଙ୍କ ବିବାହ ସମ୍ପନ୍ନ କଲେ । ମୂଳଦେବ ନବବିବାହିତ ବରବଧୂଙ୍କୁ ନେଇ ନିଜ ଆଶ୍ରମକୁ ଫେରିଆସିଲେ । ସେ ଯୌତୁକ ସ୍ୱରୂପ ରାଜାଙ୍କଠାରୁ କୌଣସି ଧନସମ୍ପତ୍ତି ଗ୍ରହଣ କଲେ ନାହିଁ ।

ମୂଳଦେବଙ୍କ ଆଶ୍ରମରେ ମନଃସ୍ୱାମୀ ଓ ଶଶୀଙ୍କ ମଧ୍ୟରେ ଭୟଙ୍କର କଳହ ଆରମ୍ଭ ହେଲା । ମନଃସ୍ୱାମୀ କହିଲେ, 'ଶଶିପ୍ରଭାକୁ ମୋ ହାତରେ ସମର୍ପଣ କରିଦିଅନ୍ତୁ । ଗୁରୁଙ୍କ

କୃପାରୁ ମୁଁ ଏହାଙ୍କ ସହିତ ପ୍ରଥମେ ବିବାହ କରିଥିଲି ।' କିନ୍ତୁ ଶଶୀ ମଧ୍ୟ ଉତ୍‌କ୍ଷିପ୍ତ ହୋଇ କହୁଥାନ୍ତି, 'ମୂର୍ଖ, ତୁମେ ତାର କିଏ ? ସେ ତ ମୋର ବିବାହିତା ଭାର୍ଯ୍ୟା । ତାଙ୍କ ପିତା ଅଗ୍ନିକୁ ସାକ୍ଷୀ ରଖି ଜଳଦାନ ପୂର୍ବକ ମୋ ହସ୍ତରେ କନ୍ୟା ସମର୍ପଣ କରିଛନ୍ତି ।'

ଗୁରୁ ଶ୍ରୀମୂଳଦେବଙ୍କ କପଟାଚାର ବଳରେ ଲାଭ କରିଥିବା ଶଶିପ୍ରଭାଙ୍କୁ ଘେନି ଉଭୟଙ୍କ ମଧ୍ୟରେ ତୁମୁଳ ବଚସା ଚାଲିଥାଏ । ଏହାର ସମାଧାନ କରିବାପାଇଁ କେହି ସମର୍ଥ ହୋଇପାରିଲେ ନାହିଁ ।''

ତେଣୁ ରାଜନ୍, 'ତୁମେ ଏବେ ମୋର ସଂଶୟ ଦୂରକରି କହ, ରାଜକୁମାରୀ ଶଶିପ୍ରଭା ପ୍ରକୃତରେ କାହାର ପତ୍ନୀ ?'

ସ୍କନ୍ଧସ୍ଥିତ ବେତାଳର କଥା ଶୁଣି ରାଜା ତ୍ରିବିକ୍ରମସେନ ଶାପ ଭୟରୁ ମୌନତା ଭଙ୍ଗ କଲେ । କହିଲେ, 'ମୋ ବିଚାରରେ ରାଜକୁମାରୀ ଶଶିପ୍ରଭା ନ୍ୟାୟତଃ ଶଶୀଙ୍କର ହିଁ ସ୍ତ୍ରୀ । କାରଣ ରାଜା ଯଶଃକେତୁ ସମସ୍ତଙ୍କ ସମ୍ମୁଖରେ ଧର୍ମକୁ ସାକ୍ଷୀ ରଖି ଶଶୀଙ୍କ ସହିତ ନିଜ କନ୍ୟାର ବିବାହ ଦେଇଛନ୍ତି । ମନଃସ୍ୱାମୀ ତ ଚୋର ଭାବରେ ଗନ୍ଧର୍ବ ବିବାହ କରି ଶଶିପ୍ରଭାଙ୍କୁ ଲାଭ କରିଥିଲେ । ଅନ୍ୟର ସମ୍ପତ୍ତି ଉପରେ ଚୋରର ନ୍ୟାୟସଙ୍ଗତ ଅଧିକାର କଦାପି ହୋଇପାରେ ନାହିଁ ।'

ରାଜାଙ୍କ କଥାଶୁଣି ବେତାଳ ସହସା ରାଜାଙ୍କ ସ୍କନ୍ଧରୁ ଖସି ସ୍ୱସ୍ଥାନକୁ ଚାଲିଗଲା । ରାଜା କାଳବିଳମ୍ବ ନକରି ପୁଣି ତା'ର ଅନୁସରଣ କଲେ ।

# ତ୍ରୟୋବିଂଶ ତରଙ୍ଗ

## ଷୋଡ଼ଶ ବେତାଳ : ଜୀମୂତବାହନ କଥା

ରାଜା ତ୍ରିବିକ୍ରମସେନ ଶିଂଶପା ବୃକ୍ଷ ନିକଟକୁ ଯାଇ ବେତାଳକୁ ପୁଣି ସ୍କନ୍ଧ ଉପରକୁ ଉଠାଇ ନେଲେ । ତାକୁ ଧରି ଭିକ୍ଷୁ ନିକଟକୁ ଯାଉଥିବା ବେଳେ ବେତାଳ ପୁଣି ଏକ ଗଳ୍ପ କହିବା ଆରମ୍ଭ କଲା–

''ରାଜନ୍, ମୁଁ ଏବେ ତୁମକୁ ଏକ ଉଦାର ଗଳ୍ପ ଶୁଣାଇବି, ତୁମର ଶ୍ରମ ଲାଘବ ହେବ ।

ପୃଥିବୀ ପୃଷ୍ଠରେ ହିମବାନ୍ ନାମକ ଏକ ବିଶାଳ ପର୍ବତ ଅଛି । ପର୍ବତମାନେ ତାକୁ ରାଜା ରୂପେ ସ୍ୱୀକାର କରନ୍ତି । ଏହା ରତ୍ନଗର୍ଭ; ସମସ୍ତ ବହୁମୂଲ୍ୟ ରତ୍ନରାଶିର ଆକର । ଭଗବାନ ଶଙ୍କରଙ୍କ ଅତ୍ୟନ୍ତ ପ୍ରିୟତମା ଗୌରୀ ଏବଂ ଗଙ୍ଗା ଉଭୟଙ୍କର ଏହା ଜନ୍ମଭୂମି । ଶୂରବୀରମାନେ ମଧ୍ୟ ଏହାର ଶିଖର ସ୍ପର୍ଶ କରିପାରି ନାହାଁନ୍ତି । ସ୍ୱାଭିମାନ-ବଶତଃ ହିମାଳୟ ଅନ୍ୟ ପର୍ବତମାନଙ୍କ ଠାରୁ ଉଚ୍ଚ ହେବାପାଇଁ ମସ୍ତକ ଉତ୍ତୋଳନ କରି ରଖିଛି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ–ତିନି ଭୁବନରେ ଏହାର ମହିମା ସମାନ ଭାବରେ କୀର୍ତ୍ତିତ ।

ଏହାର ଏକ ଶିଖର ଉପରେ କାଞ୍ଚନପୁର ବୋଲି ଏକ ନଗର ଅଛି । କେବଳ ନାମରେ ନୁହେଁ, ପ୍ରକୃତରେ ଏହା ସୁବର୍ଣ୍ଣ ଦ୍ୱାରା ନିର୍ମିତ । ନଗରମଧ୍ୟରୁ ବିଚ୍ଛୁରିତ ହେଉଥିବା ଜ୍ୟୋତିରେଖାଗୁଡ଼ିକୁ ଦେଖିଲେ ମନେହୁଏ ସତେ ଯେପରି ଭଗବାନ ମାର୍ତ୍ତଣ୍ଡ ତାଙ୍କ କିରଣ ରାଶିକୁ ଏହି ନଗରଠାରେ ବନ୍ଧକ ରଖି ଯାଇଛନ୍ତି ।

ପ୍ରାଚୀନ କାଳରେ ଏହି କାଞ୍ଚନପୁର ନଗରୀରେ, ମେରୁ ପର୍ବତ ଶିଖରସ୍ଥିତ ଇନ୍ଦ୍ରଙ୍କ ତୁଲ୍ୟ, ବିଦ୍ୟାଧରମାନଙ୍କର ଅଧୀଶ୍ୱର ଶ୍ରୀମାନ୍ ଜୀମୂତକେତୁ ବାସ କରୁଥିଲେ । ତାଙ୍କ

ପ୍ରାସାଦ ମଧ୍ୟସ୍ଥିତ ଉପବନରେ ବଂଶ ପରମ୍ପରା କ୍ରମେ ରହିଆସିଥିବା ସମସ୍ତ ମନୋବାଞ୍ଛା ପୂରଣକାରୀ ଏକ ବିଶାଳ କଳ୍ପବୃକ୍ଷ ଶୋଭା ପାଉଥିଲା । ଏହି ଦେବ ବୃକ୍ଷର ଆରାଧନା କରି ରାଜା ଗୋଟିଏ ପୁତ୍ର ସନ୍ତାନ ଲାଭ କରିଥିଲେ । ସେ ଭଗବାନ୍ ବୋଧିସତ୍ତ୍ୱଙ୍କ ଅଂଶରେ ଜନ୍ମଗ୍ରହଣ କରିଥିଲା । ପୂର୍ବଜନ୍ମର ସୁକୃତ ଯୋଗୁଁ ଏ ଜନ୍ମରେ ସେ ଥିଲା ଜାତିସ୍ମର । ରାଜା ଏହାର ନାମକରଣ କରିଥିଲେ ଜୀମୂତବାହନ । ଜୀମୂତବାହନ ଯୌବନରେ ପଦାର୍ପଣ କରନ୍ତେ ତାଙ୍କର ସଦ୍‌ଗୁଣଗୁଡ଼ିକ ବିକଶିତ ହେବାକୁ ଲାଗିଲା । ସେ ଯେପରି ପରାକ୍ରମୀ ଥିଲେ ସେହିପରି ଦାନଶୀଳ ଏବଂ ନମ୍ର ଥିଲେ । ଜୀବେଦୟା ଓ ଗୁରୁଭକ୍ତି ତାଙ୍କୁ ସମସ୍ତଙ୍କର ପ୍ରିୟପାତ୍ର କରିଥିଲା । ପୁତ୍ରର ସାମର୍ଥ୍ୟ ଦେଖି ମନ୍ତ୍ରୀମାନଙ୍କ ପରାମର୍ଶ କ୍ରମେ ରାଜା ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ ।

ଯୁବରାଜ ପଦବୀରେ ଅଧିଷ୍ଠିତ ହେବାପରେ ତାଙ୍କର କଲ୍ୟାଣ ଚିନ୍ତା କରୁଥିବା ଜୀମୂତକେତୁଙ୍କ ମନ୍ତ୍ରୀ ଉପଦେଶ ଛଳରେ କହିଲେ ଯେ ତାଙ୍କ ପ୍ରାସାଦ ମଧ୍ୟରେ ଥିବା କଳ୍ପବୃକ୍ଷଟି ଯେପରି ସମସ୍ତ ମନୋକାମନାର ପୂରଣକାରୀ ସେହିପରି ତିନିଲୋକରେ ଅଜେୟ । ତେଣୁ ବୃକ୍ଷଟିର ଉପାସନା କରିବାପାଇଁ ସେ ଯେପରି ଭୁଲି ନଯାନ୍ତି । ବୃକ୍ଷଟି ଥିବା ପର୍ଯ୍ୟନ୍ତ, ଅନ୍ୟକାହା କଥା ଛାଡ଼ନ୍ତୁ, ସ୍ୱୟଂ ଇନ୍ଦ୍ର ମଧ୍ୟ ଆମର କୌଣସି କ୍ଷତି କରିପାରିବେ ନାହିଁ । ମନ୍ତ୍ରୀଙ୍କ କଥାଶୁଣି ଜୀମୂତବାହନ ମନେମନେ ଭାବିଲେ, 'ଆଶ୍ଚର୍ଯ୍ୟର କଥା, ଏପରି ଏକ ଅମର ବାଞ୍ଛିତ ବୃକ୍ଷଟିଏ ପାଇ ସୁଦ୍ଧା ଆମର ପୂର୍ବଜମାନେ ଏହାଠାରୁ କୌଣସି ଉଚିତ ଲାଭ ଉଠାଇ ନାହାଁନ୍ତି । ଏମାନେ କେବଳ କୃପଣ ତୁଲ୍ୟ ନିଜର ସ୍ୱାର୍ଥ ରକ୍ଷାପାଇଁ ଏହାଠାରୁ କିଛି ଅର୍ଥ ଯାଚନା କରି ନିଜର ଏବଂ ଏହି ବୃକ୍ଷର ମହତ୍ତ୍ୱ କ୍ଷୁଣ୍ଣ କରିଛନ୍ତି । ତେଣୁ ମୁଁ ଏହାଦ୍ୱାରା ଉତ୍ତମ ରୂପେ ମୋର ମନୋମତ କାମନା ପୂରଣ କରିବି ।'

ଏହିପରି ଚିନ୍ତା କରି ଉଦାର ଚରିତ ଜୀମୂତବାହନ ପିତାଙ୍କ ନିକଟରେ ଯାଇ ପହଞ୍ଚିଲେ । ପିତା ଆନନ୍ଦ ମନରେ ବସିଥାନ୍ତି । ଜୀମୂତବାହନ ବିଭିନ୍ନ ସେବା ଦ୍ୱାରା ତାଙ୍କର ସନ୍ତୋଷ ବିଧାନ କରି ଏକାନ୍ତରେ କହିଲେ, 'ପିତା, ଆପଣ ସମସ୍ତ ଶାସ୍ତ୍ରରେ ନିପୁଣ । ମୁଁ ବା ଆପଣଙ୍କୁ କ'ଣ କହିବି ? ଆପଣ ଜାଣନ୍ତି ଏହି ସଂସାର ସାଗରରେ ଶରୀର ସହିତ ସମସ୍ତ ବସ୍ତୁ ଲହରୀ ପରି କ୍ଷଣସ୍ଥାୟୀ—

**ଆଶରୀରମିଦଂ ସର୍ବଂ ବୀଚିବିଭ୍ରମଚଞ୍ଚଳମ୍ ।**

ପୁଣି ସଂଧ୍ୟା, ବିଜୁଳି ତଥା ଲକ୍ଷ୍ମୀ ବିଶେଷ ରୂପେ କ୍ଷଣସ୍ଥାୟୀ । ଦେଖୁ ଦେଖୁ ଏମାନେ ବିଲୀନ ହୋଇଯାନ୍ତି । ଏମାନଙ୍କୁ କେହି କେବେ ସ୍ଥିର ହେବା ଦେଖିଛନ୍ତି କି ?

ସଂଧ୍ୟା ବିଦ୍ୟୁଚ୍ଚ ଲକ୍ଷ୍ମୀଶ୍ଚ ଦୃଷ୍ଟ୍ୱା କୁତ୍ର କଦା ସ୍ଥିରା ।

ସଂସାରରେ ଏକମାତ୍ର ପରୋପକାର ହିଁ ବନ୍ଦନୀୟ । ଏହାଦ୍ୱାରା ଧର୍ମ ଓ ଯଶ ଉଭୟ ଲାଭ ହୋଇଥାଏ । ଏସବୁ ହିଁ ସହସ୍ର ଯୁଗ ବ୍ୟାପୀ ଚିରସ୍ଥାୟୀ । ଆପଣ ଦେଖୁଛନ୍ତି ଆମେ ଏପରି କ୍ଷଣିକ ଭୋଗ ବିଳାସପାଇଁ ଏହି କଳ୍ପବୃକ୍ଷକୁ ବ୍ୟବହାର କରୁଅଛୁ । ଆମର ଯେଉଁ ପୂର୍ବଜମାନେ ଏହାକୁ 'ମୋର ମୋର' କହି ଗର୍ବ କରୁଥିଲେ ସେମାନେ ଆଜି କାହାଁନ୍ତି ? ତେଣୁ ଆପଣ ଯଦି ଆଜ୍ଞା ଦିଅନ୍ତି ତେବେ ସମସ୍ତ ଅଭିଳାଷ ପୂରଣ କରୁଥିବା ଏହି କଳ୍ପବୃକ୍ଷକୁ ମୁଁ କେବଳ ପରୋପକାର ରୂପ ଫଳସିଦ୍ଧି ନିମିତ୍ତ ବିନିଯୋଗ କରନ୍ତି ।'

ପିତା ପୁତ୍ରର କଥାଶୁଣି ଗର୍ବ ଅନୁଭବ କଲେ । ସେ ଆନନ୍ଦର ସହିତ ଅନୁଜ୍ଞା ଦିଅନ୍ତେ ଜୀମୂତବାହନ କଳ୍ପବୃକ୍ଷ ନିକଟକୁ ଯାଇ ଜଣାଇଲେ, 'ଦେବ, ଆପଣ ଆମ ପୂର୍ବପୁରୁଷମାନଙ୍କ ସମସ୍ତ କାମନା ପୂର୍ଣ୍ଣ କରିଛନ୍ତି । ବର୍ତ୍ତମାନ ମୋର ଏକମାତ୍ର କାମନା ପୂରଣ କରିବେ ବୋଲି ଜୀମୂତବାହନର ବିନମ୍ର ପ୍ରାର୍ଥନା । ଆପଣ ଏପରି କିଛି ଉପାୟ କରନ୍ତୁ ଯାହାଦ୍ୱାରା ମୁଁ ସମଗ୍ର ପୃଥିବୀକୁ ଦାରିଦ୍ର୍ୟରହିତ ଦେଖିବି । ଜଣେ କେହି ଦରିଦ୍ର ପୃଥିବୀରେ ରହିବେ ନାହିଁ । ଯା'ନ୍ତୁ, ଆପଣଙ୍କର କଲ୍ୟାଣ ହେଉ, ଧନପ୍ରାପ୍ତିର ଆଶା ରଖୁଥିବା ସମଗ୍ର ପୃଥିବୀବାସୀଙ୍କପାଇଁ ମୁଁ ଆପଣଙ୍କୁ ପ୍ରଦାନ କରୁଛି ।'

ଯୋଡ଼ ହସ୍ତରେ ଜୀମୂତବାହନ ଏପରି ପ୍ରାର୍ଥନା କରନ୍ତେ ବୃକ୍ଷ ମଧ୍ୟରୁ ଶୁଣାଗଲା, 'ତୁମେ ମୋତେ ତ୍ୟାଗ କରିଦେଲ । ତେଣୁ ମୁଁ ବର୍ତ୍ତମାନ ଯାଉଛି ।' ମୁହୂର୍ତ୍ତକ ମଧ୍ୟରେ ବୃକ୍ଷଟି ଆକାଶ ମାର୍ଗରେ ଉଡ଼ିଗଲା । ଆକାଶରୁ ଏତେ ସ୍ୱର୍ଣ୍ଣମୁଦ୍ରା ବୃଷ୍ଟି ହେଲା ଯେ ପୃଥିବୀର କୌଣସି ଲୋକ ଆଉ ଗରିବ ରହିଲେ ନାହିଁ । ସ୍ୱର୍ଣ୍ଣ ବୃଷ୍ଟି ଫଳରେ ଜୀମୂତବାହନଙ୍କ କୀର୍ତ୍ତି ଓ ଯଶ ତିନି ଭୁବନରେ ପରିବ୍ୟାପ୍ତ ହୋଇଗଲା ।

ଜୀମୂତବାହନଙ୍କ ଯଶ ତାଙ୍କ ଗୋତ୍ରଜମାନଙ୍କୁ ଈର୍ଷାନ୍ୱିତ କରିଦେଲା । ସେମାନେ ଏକତ୍ର ହୋଇ ତାଙ୍କ ବିରୋଧରେ ଚକ୍ରାନ୍ତର ଯୋଜନା କଲେ । ସମସ୍ତ ବିପତ୍ତିଠାରୁ ଦୂରରେ ରଖୁଥିବା କଳ୍ପବୃକ୍ଷ ଲୋକକଲ୍ୟାଣ ପାଇଁ ସମର୍ପିତ ହୋଇଯିବା ପରେ ବର୍ତ୍ତମାନ ସେ ଆଉ ଅଜେୟ ନୁହଁନ୍ତି, ତାଙ୍କୁ ପରାଜିତ କରିବା କଷ୍ଟସାଧ୍ୟ ନୁହେଁ—ଏହିପରି ଚିନ୍ତାକରି ସେମାନେ ଜୀମୂତକେତୁଙ୍କ ସହିତ ଯୁଦ୍ଧ କରିବାପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ ।

ସ୍ୱଜନମାନଙ୍କ ମନ୍ତ୍ରଣା ସମ୍ପର୍କରେ ଜାଣିପାରି ଜୀମୂତବାହନ ପିତାଙ୍କ ନିକଟକୁ ଯାଇ ଜଣାଇଲେ, 'ପିତା, ଅସ୍ତ୍ରଧାରଣ କଲେ କିଏ ବା ଆପଣଙ୍କର ସମ୍ମୁଖୀନ ହେବ ? କିନ୍ତୁ ସ୍ୱଜନମାନଙ୍କୁ ହତ୍ୟା କରି ଏହି ବିନାଶଶୀଳ ପ୍ରାପମୟ ଶରୀରପାଇଁ କେଉଁ ସଜ୍ଜନ ପୁରୁଷ ବା ରାଜ୍ୟ କାମନା କରିବ ? ଏହି ଅନିତ୍ୟ ରାଜ୍ୟରେ ବା ଆମର ଲାଭ କ'ଣ ? ଆମେ, ଚାଲନ୍ତୁ, କୌଣସି ଅନ୍ୟ ସ୍ଥାନକୁ ଯାଇ ଧର୍ମ ଆଚରଣ କରିବା । ଏହାଦ୍ୱାରା ଆମର ଇହଲୋକ ଓ ପରଲୋକ ଆନନ୍ଦମୟ ହେବ । ରାଜ୍ୟଲୋଭୀ ଆମର ଏହି ଦାୟାଦମାନେ ମଧ୍ୟ ରାଜ୍ୟ ଅଧିକାର କରି ଆନନ୍ଦିତ ହେବେ ।'

ଜୀମୂତବାହନଙ୍କ ଲୋଭଶୂନ୍ୟତା ପିତାଙ୍କୁ ପ୍ରଭାବିତ କଲା । ସେ ସରଳଭାବେ କହିଲେ, 'ପୁତ୍ର, ମୁଁ ତୁମପାଇଁ କେବଳ ରାଜ୍ୟର କାମନା ରଖିଛି । ଯଦି ତୁମେ ସ୍ୱଜନମାନଙ୍କ ପ୍ରତି କୃପାବିଷ୍ଟ ହୋଇ ଏହାକୁ ତ୍ୟାଗ କରିବାପାଇଁ ଚାହୁଁଛ ତେବେ ମୋ ପରି ବୃଦ୍ଧ ତା'ର ପ୍ରତିରୋଧ କରିବ ବା କାହିଁକି ? ପିତାଙ୍କ ସମ୍ମତି ଜାଣି ଜୀମୂତବାହନ ରାଜ୍ୟ ପରିତ୍ୟାଗ ପୂର୍ବକ ପିତାମାତାଙ୍କ ସହିତ ମଳୟ ପର୍ବତକୁ ଚାଲିଗଲେ । ସେଠାରେ ଏକ ନିର୍ଝରିଣୀ ତଟସ୍ଥିତ ଚନ୍ଦନ ବନ ମଧ୍ୟସ୍ଥ ଗୋଟିଏ ଗୁହା ମଧ୍ୟରେ ଆଶ୍ରମ ନିର୍ମାଣ ପୂର୍ବକ ପିତାମାତାଙ୍କ ସେବାରେ ସମୟ କଟାଇବାକୁ ଲାଗିଲେ ।

ମଳୟ ପର୍ବତରେ ବିଶ୍ୱାବସୁ ନାମକ ସିଦ୍ଧମାନଙ୍କର ଜଣେ ରାଜା ରହୁଥାନ୍ତି । ତାଙ୍କ ପୁତ୍ର ମିତ୍ରାବସୁଙ୍କ ସହିତ ଜୀମୂତବାହନଙ୍କ ମିତ୍ରତା ହେଲା । ଦିନେ ସେଠାରେ ଭ୍ରମଣ କରୁଥିବା ବେଳେ ସେ ନିକଟସ୍ଥ ଉପବନ ମଧ୍ୟରେ ଥିବା ଭଗବତୀ ଭବାନୀଙ୍କ ମନ୍ଦିର ଦର୍ଶନପାଇଁ ଯାଇଥାନ୍ତି । ସେଠାରେ ଭଗବତୀଙ୍କ ସନ୍ତୋଷ ବିଧାନପାଇଁ ଜଣେ ସୁନ୍ଦରୀ କନ୍ୟା ସଖୀମାନଙ୍କ ଗହଣରେ ବୀଣାବାଦନ କରୁଥାନ୍ତି । ବୀଣାର ମଧୁର ସ୍ୱର ସହିତ ସଙ୍ଗୀତର ଲଳିତ ସ୍ୱର ଲହରୀ ମୃଗମାନଙ୍କୁ ଆକୃଷ୍ଟ କରି ଆଣିଥାଏ । ସେମାନେ ସୁନ୍ଦରୀଙ୍କ ନୟନ ସୌନ୍ଦର୍ଯ୍ୟରେ ଲଜ୍ଜିତ ହୋଇ ସେଠାରେ ନିଶ୍ଚଳ ଭାବେ ଠିଆ ହୋଇଥାନ୍ତି । ଉଜ୍ଜ୍ୱଳ ଘନକୃଷ୍ଣ ତାରକା ବିଶିଷ୍ଟ ତାଙ୍କର ନୟନଯୁଗଳ କର୍ଣ୍ଣ ମଧ୍ୟରେ ପ୍ରବେଶ କରୁଥିବା ଦେଖି ମନେହେଉଥାଏ ଶ୍ରୀକୃଷ୍ଣଙ୍କ ସହିତ ଅର୍ଜୁନଙ୍କ ପାଣ୍ଡବୀ ସେନା କର୍ଣ୍ଣଙ୍କ ସେନାବାହିନୀ ମଧ୍ୟରେ ପ୍ରବେଶ କରିବାପାଇଁ ଉତ୍କଣ୍ଠିତ ହୋଇଉଠୁଛନ୍ତି । ମୁଖଚନ୍ଦ୍ରକୁ ଦର୍ଶନ କରିବା ନିମିତ୍ତ ତାଙ୍କର ସ୍ତନଯୁଗଳ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହେଉଥିବା ଯୋଗୁଁ ସେମାନେ ଅତୃପ୍ତ ଭାବେ ଉନ୍ନତରୁ ଉନ୍ନତତର ହେବାକୁ ଲାଗିଥାନ୍ତି । ବିଧାତା ମୁଷ୍ଟିବଦ୍ଧ କରି ତାଙ୍କ ଶରୀର ନିର୍ମାଣ କରିଥିବା ଯୋଗୁଁ ମଧ୍ୟସ୍ଥିତ କଟି ଅତ୍ୟନ୍ତ କ୍ଷୀଣ ଦେଖାଯାଉଥାଏ, ଏବଂ

ତ୍ରିବଳି ରୂପରେ ବିଧାତାଙ୍କ ଅଙ୍ଗୁଳି ଚିହ୍ନ ସ୍ପଷ୍ଟ ଦେଖାଯାଉଥାଏ । ଜୀମୂତବାହନ ଏହି କ୍ଷୀଣକଟି ସୁନ୍ଦରୀଙ୍କୁ ଦେଖିବାମାତ୍ରେ ସେ ଚକ୍ଷୁ ମାର୍ଗରେ ଆସି ତାଙ୍କ ହୃଦୟକୁ ହରଣ କରିନେଲେ ।

ଉପବନକୁ ଅଳଙ୍କୃତ କରୁଥିବା, ଦର୍ଶନ ମାତ୍ରେ ହୃଦୟରେ ଉତ୍କଣ୍ଠା ଓ ବିକାର ଜାତ କରୁଥିବା ଏବଂ କନ୍ଦର୍ପ ଭସ୍ମୀଭୂତ ହେବାପରେ ବନ ମଧ୍ୟରେ ବାସ କରୁଥିବା ସଖା ବସନ୍ତ ତୁଲ୍ୟ ଜୀମୂତବାହନଙ୍କୁ ଦେଖି ସେହି କନ୍ୟା ମଧ୍ୟ ତାଙ୍କ ପ୍ରତି ଅନୁରାଗିଣୀ ହୋଇପଡ଼ିଲେ । ତାଙ୍କ ବୀଣାର ଆଳାପରୁ ବିଳାପ ଧ୍ୱନି ନିର୍ଗତ ହେଲା । ଜୀମୂତବାହନ ନିକଟକୁ ଯାଇ ଜଣେ ସଖୀଙ୍କୁ ପ୍ରଶ୍ନ କଲେ, 'ତୁମ ସଖୀ କେଉଁ ନାମରେ ଧନ୍ୟା ? କେଉଁ ବଂଶକୁ ସେ ଅଳଙ୍କୃତ କରୁଛନ୍ତି ?' ଉତ୍ତରରେ ସଖୀ ଜଣାଇଲା 'ଏହାଙ୍କ ନାମ ମଳୟବତୀ । ଇଏ ସିଦ୍ଧମାନଙ୍କର ରାଜା ବିଶ୍ୱାବସୁଙ୍କ କନ୍ୟା ଏବଂ ମିତ୍ରାବସୁଙ୍କ ଭଗିନୀ ।' ସଖୀ ଜୀମୂତବାହନଙ୍କ ସହିତ ଆସିଥିବା ଜଣେ ମୁନିକୁମାରଙ୍କଠାରୁ ତାଙ୍କ ପରିଚୟ ସଂଗ୍ରହ କରି ମଳୟବତୀଙ୍କୁ ହସିହସି କହିଲା, 'ସଖି, ବିଦ୍ୟାଧର ଅଧିପତି ତୁମର ଅତିଥି ରୂପେ ଉପସ୍ଥିତ । ତାଙ୍କର ସ୍ୱାଗତ ଏବଂ ଅତିଥି ସତ୍କାର ନକରି ତୁମେ ଏପରି ବସି ରହିବା ଉଚିତ ହେଉନାହିଁ ।' ସଖୀ ଏପରି କହିବା ସତ୍ତ୍ୱେ ମଳୟବତୀ ଲଜ୍ଜାବଶତଃ ମସ୍ତକ ଅବନତ କରି ନୀରବ ଭାବେ ବସିରହିଲେ । ସଖୀଟି ଜୀମୂତବାହନଙ୍କୁ ଉଦ୍ଦେଶ୍ୟ କରି କହିଲା, 'ଆମ ସଖୀ ଲଜ୍ଜା ହେତୁ ଆପଣଙ୍କ ସତ୍କାର କରିପାରୁ ନାହାଁନ୍ତି । ତେଣୁ ମୋଠାରୁ ସତ୍କାର ଗ୍ରହଣ କରନ୍ତୁ ।' ଏହା କହି ସେ ଅର୍ଘ୍ୟ ସହିତ ତାଙ୍କୁ ମାଳାଟିଏ ପ୍ରଦାନ କଲା । ମଳୟବତୀ ତାଙ୍କ ପ୍ରତି ଆକୃଷ୍ଟ ଥିବା ଜାଣି ଜୀମୂତବାହନ ମାଳାଟି ଗ୍ରହଣ କରିବା ସଙ୍ଗେସଙ୍ଗେ ମଳୟବତୀଙ୍କ କଣ୍ଠରେ ପିନ୍ଧାଇଦେଲେ । ମଳୟବତୀ ତାର ବିନିମୟରେ ନିଜର କଟାକ୍ଷ-ପାତଦ୍ୱାରା ଜୀମୂତବାହନଙ୍କ କଣ୍ଠରେ ନୀଳକମଳର ମାଳାଟିଏ ଅର୍ପଣ ଦେଲେ ।

ଏହିପରି ବିନା ବାକ୍ୟବ୍ୟୟରେ ଉଭୟଙ୍କର ସ୍ୱୟମ୍ବର ବିଧାନ ଶେଷ ହେଲା । ଏ ସମୟରେ ଜଣେ ପରିଚାରିକା ଆସି ସିଦ୍ଧ କନ୍ୟାଙ୍କୁ ମାତା ସ୍ମରଣ କରୁଥିବା ଜଣାଇ ବିନା ବିଳମ୍ବରେ ସେଠାରୁ ଫେରିଯିବାପାଇଁ ଅନୁରୋଧ କଲା । ମଳୟବତୀ ଅନିଚ୍ଛା ସତ୍ତ୍ୱେ ଜୀମୂତବାହନଙ୍କଠାରୁ ଅତିକଷ୍ଟରେ ଦୃଷ୍ଟି ଫେରାଇଆଣି ପରିଚାରିକା ସହିତ ପ୍ରସ୍ଥାନ କଲେ । ଜୀମୂତବାହନ ରାଜକୁମାରୀଙ୍କ ଚିନ୍ତାରେ ସ୍ୱ ଆଶ୍ରମକୁ ଫେରିଗଲେ ।

ପ୍ରିୟ ବିରହର ଚିନ୍ତା ମଳୟବତୀଙ୍କୁ ବ୍ୟାକୁଳ କରୁଥାଏ । ମାତାଙ୍କ ସହିତ କ୍ଷଣକପାଇଁ ସାକ୍ଷାତ କରି ସେ ନିଜର ଶଯ୍ୟା ଉପରେ ଯାଇ ପଡ଼ିଗଲେ । ହୃଦୟରେ

ପ୍ରଜ୍ୱଳିତ ହେଉଥିବା କାମାଗ୍ନି ଶରୀରକୁ ଦଗ୍ଧ କରିବା ଯୋଗୁଁ ଉଷ୍ଣ ଜଳବିନ୍ଦୁ ରୂପେ ଉତ୍ତପ୍ତ ବାଷ୍ପ ସବୁ ଅଶ୍ରୁ ରୂପେ ନିର୍ଗତ ହେଲା । ସମଗ୍ର ଶରୀର ଉତ୍ତପ୍ତ ହୋଇଉଠିଲା । ସଖୀମାନେ ତାଙ୍କ ଶରୀରରେ ଚନ୍ଦନ ଲେପନ କଲେ । ପଦ୍ମପତ୍ରର ବ୍ୟଜନ ମଧ୍ୟ ତାଙ୍କୁ ଶାନ୍ତି ଦେଲା ନାହିଁ । ସଖୀମାନଙ୍କର କୋଳ କିମ୍ବା ଭୂମିରେ ଶୋଇ ମଧ୍ୟ ସେ ଆଶ୍ୱସ୍ତି ଲାଭ କରିପାରୁ ନଥିଲେ । ରକ୍ତିମ ଆଭାରେ ସୁଶୋଭିତା ସଂଧ୍ୟା ସହିତ ଦିନ୍ମଣିର ପଶ୍ଚିମ ଦିଗରେ ଗୋପନ ଅଭିସାର କରିବା ପରେ ଚନ୍ଦ୍ର ପ୍ରାଚୀ କନ୍ୟାକୁ ଚୁମ୍ବନ କରିବାପାଇଁ ଉଠି ଆସିଲେ । ଚନ୍ଦ୍ରକିରଣରେ ମଳୟବତୀ ଜୀବନ ପ୍ରତି ଆଶା ତ୍ୟାଗ କଲେ । ତଥାପି ଲଜ୍ଜାବଶତଃ ସେ ଜୀମୂତବାହନଙ୍କ ନିକଟକୁ ଦୂତୀ କିମ୍ବା ପତ୍ର ପ୍ରେରଣ କରିପାରିଲେ ନାହିଁ । ପଦ୍ମ ଯେପରି ଚନ୍ଦ୍ରଉଦୟରେ ବିମୁଗ୍ଧ ଭ୍ରମରମାନଙ୍କୁ ନିଜ ମଧ୍ୟରେ ଅବରୁଦ୍ଧ କରି ସୂର୍ଯ୍ୟଙ୍କ ପ୍ରତୀକ୍ଷା କରେ ମଳୟବତୀ ସେହିପରି ଜୀମୂତବାହନଙ୍କ ରୂପକୁ ନିଜ ହୃଦୟ ମଧ୍ୟରେ ଧାରଣ କରି ସେହି ଜ୍ୟୋତ୍ସ୍ନାସ୍ନାତ ରଜନୀ ବିତାଇବାକୁ ଲାଗିଲେ ।

ଏଣେ ଜୀମୂତବାହନ ମଧ୍ୟ କନ୍ଦର୍ପର ଶିକାର ହୋଇ ଶଯ୍ୟା ଉପରେ ପଡ଼ିଥାନ୍ତି । ଲଜ୍ଜାବଶତଃ ସେ କାହା ନିକଟରେ ଏହା ପ୍ରକାଶ କରୁନଥିଲେ ସୁଦ୍ଧା, ନବାନୁରାଗବଶତଃ ତାଙ୍କ ଶରୀର ମ୍ଳାନ ଦେଖାଯାଉଥିଲା । ହୃଦୟ ସନ୍ତପ୍ତ ଥିବା ଯୋଗୁଁ ରାତ୍ରିଟି ବିନିଦ୍ରଭାବେ ହିଁ କଟିଗଲା । ଉତ୍ସୁକତାର ସହିତ ସେ ପରଦିନ ପ୍ରଭାତରୁ ହିଁ ଯାଇ ପୂର୍ବୋକ୍ତ ଭବାନୀ ମନ୍ଦିରରେ ପହଞ୍ଚିଲେ । ବନ୍ଧୁଙ୍କ ଏପ୍ରକାର ଅବସ୍ଥା ଦେଖି ମିତ୍ର ମୁନିକୁମାର ମଧ୍ୟ ତାଙ୍କୁ ଅନୁସରଣ କରି ଆଶ୍ୱାସନା ଦେଉଥାନ୍ତି ।

ଜୀମୂତବାହନଙ୍କ ପରି ମଳୟବତୀ ମଧ୍ୟ ଅସହ୍ୟ ବେଦନାରେ ସନ୍ତପ୍ତ ହୋଇ ଏକାକୀ ରାଜପ୍ରାସାଦରୁ ନିର୍ଗତ ହେଲେ । ପ୍ରାଣବିସର୍ଜନ କରି ବିରହବେଦନାରୁ ମୁକ୍ତିଲାଭ କରିବାପାଇଁ ସେ ଏହି ନିର୍ଜନ ମନ୍ଦିର ନିକଟରେ ଆସି ପହଞ୍ଚିଥାନ୍ତି । ବୃକ୍ଷ ଅନ୍ତରାଳରେ ଥିବା ଯୋଗୁଁ ଜୀମୂତବାହନଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିନଥାଏ । ସେ ବାଷ୍ପପୂର୍ଣ୍ଣ ନୟନରେ ଦେବୀ ଭବାନୀଙ୍କୁ ନିବେଦନ କଲେ, 'ମାତା, ଏହି ଜନ୍ମରେ ମୁଁ ଜୀମୂତବାହନଙ୍କୁ ପତି ରୂପେ ପାଇପାରିଲି ନାହିଁ, ଆପଣଙ୍କ ଅପାର କୃପାରୁ ସେ ଯେପରି ପରଜନ୍ମରେ ମୋର ପତି ହୁଅନ୍ତି, ଏହାହିଁ ପ୍ରାର୍ଥନା ।' ଦେବୀଙ୍କୁ ପ୍ରଣିପାତ କରି ସେ ପରମୁହୂର୍ତ୍ତରେ ମନ୍ଦିର ସମ୍ମୁଖସ୍ଥ ଅଶୋକ ବୃକ୍ଷର ଶାଖାରେ ନିଜ ଉତ୍ତରୀୟ ଦ୍ୱାରା ଏକ ଫାଶ ପ୍ରସ୍ତୁତ କଲେ । 'ହା ନାଥ ! ହା ଦେବ ଜୀମୂତବାହନ ! ଆପଣଙ୍କ ଦୟାଳୁତା ବିଶ୍ୱବିଖ୍ୟାତ । କିନ୍ତୁ ମୋର ଏପରି ଅବସ୍ଥାରେ ଆପଣ କାହିଁକି ନିଷ୍କରୁଣ ହୋଇ ପଡୁଛନ୍ତି ।' କହି ସେ

ନିଜ ଗଳାରେ ଫାଶଟି ଗଳାଇଲା ବେଳେ ଶୂନ୍ୟରୁ ଦେବୀଙ୍କ ଦିବ୍ୟବାଣୀ ଶୁଣାଗଲା, 'ପୁତ୍ରି, ଏପରି ଦୁଃସାହସ କରନାହିଁ । ବିଦ୍ୟାଧର ରାଜପୁତ୍ର ଜୀମୂତବାହନ ଚକ୍ରବର୍ତ୍ତୀତ୍ୱ ଲାଭ କରି ତୋର ପାଣିଗ୍ରହଣ କରିବ ।'

ଦିବ୍ୟବାଣୀ ଶୁଣି ଜୀମୂତବାହନ ମିତ୍ର ସହିତ ଯାଇ ମଳୟବତୀଙ୍କ ନିକଟରେ ପହଞ୍ଚିଲେ । ମଳୟବତୀ ଦେବୀଙ୍କ କୃପାଲାଭ କରି ପ୍ରସନ୍ନ ଦେଖାଯାଉଥାନ୍ତି । ମୁନିକୁମାର ତାଙ୍କୁ ଲକ୍ଷ୍ୟ କରି 'ଦେଖନ୍ତୁ ଦେବୀଙ୍କ ଦିବ୍ୟ କୃପା ସଶରୀରେ ଆପଣଙ୍କ ସମ୍ମୁଖରେ ଉପସ୍ଥିତ' ବୋଲି କହୁଥିବା ବେଳେ ଜୀମୂତବାହନ ମଧୁର ବାକ୍ୟରେ ତାଙ୍କୁ ଆଶ୍ୱାସିତ କରି ଫାଶଟିକୁ ଖୋଲିଦେଲେ । କଣ୍ଠରୁ ଫାଶ ଖୋଲିଯିବା ମାତ୍ରେ ମଳୟବତୀ ଜୀମୂତବାହନଙ୍କ ବାହୁପାଶ ମଧ୍ୟରେ ଆବଦ୍ଧ ହୋଇପଡ଼ିଲେ । ଉଭୟଙ୍କ ଶରୀରରେ ଅମୃତ ବୃଷ୍ଟିର ଶିହରଣ ଖେଳିଗଲା । ଲଜ୍ଜାବଶତଃ ରାଜକୁମାରୀ ଭୂମି ଉପରେ ପାଦାଙ୍ଗୁଳି ସାହାଯ୍ୟରେ ରେଖା ଟାଣିବାକୁ ଲାଗିଲେ ।

ଏ ସମୟରେ ତାଙ୍କ ସନ୍ଧାନରେ ଆସି ଜଣେ ସଖୀ ସେଠାରେ ପହଞ୍ଚିଲା । ସେ ସହର୍ଷ କଣ୍ଠରେ ଜଣାଇଲା, 'ସଖୀଙ୍କର କଲ୍ୟାଣ ହେଉ । ଅତ୍ୟନ୍ତ ଆନନ୍ଦର କଥା, ତୁମର ମନୋରଥ ପୂର୍ଣ୍ଣ ହୋଇଛି । ମୋ ସମ୍ମୁଖରେ ହିଁ କୁମାର ମିତ୍ରାବସୁ ତୁମର ପିତା ବିଶ୍ୱାବସୁଙ୍କୁ କହୁଥିବା ଶୁଣିଲି ଯେ, ସମଗ୍ର ପୃଥିବୀରେ ବିଦ୍ୟାଧର ରାଜପୁତ୍ର ରୂପେ ସମ୍ମାନିତ ଏବଂ କଳ୍ପବୃକ୍ଷକୁ ଲୋକକଲ୍ୟାଣପାଇଁ ଦାନ କରିଥିବା ଜୀମୂତବାହନ ଏଠାରେ ଅତିଥି ରୂପେ ଉପସ୍ଥିତ । ତାଙ୍କର ସମୁଚିତ ସତ୍କାର କରିବାପାଇଁ ସେ ଅନୁରୋଧ ଜଣାଇଛନ୍ତି । ତାଙ୍କ ପରି ଅନ୍ୟ ପାତ୍ରଟିଏ ବା ମିଳିବ କେଉଁଠୁ ? ତେଣୁ ସର୍ବଗୁଣସମ୍ପନ୍ନା ମଳୟବତୀକୁ ତାଙ୍କ ହସ୍ତରେ ଅର୍ପଣ କରି ତାଙ୍କର ଅଭିନନ୍ଦନ କରିବାପାଇଁ ମଧ୍ୟ ପ୍ରସ୍ତାବ ଦେଇଛନ୍ତି । ରାଜା ଆନନ୍ଦରେ ସମ୍ମତି ପ୍ରଦାନ କରିବାରୁ କାର୍ଯ୍ୟସିଦ୍ଧିପାଇଁ କୁମାର ସେହି ମହାଭାଗଙ୍କ ଆଶ୍ରମକୁ ଗଲେ । ଏଣୁ ଶୀଘ୍ର ତୁମର ବିବାହ ହେବ ବୋଲି ମୋର ବିଶ୍ୱାସ । ତୁମେ ବର୍ତ୍ତମାନ ଅନ୍ତଃପୁରକୁ ଫେରିଚାଲ ଏବଂ ଏହି ମହାତ୍ମା ମଧ୍ୟ ତାଙ୍କ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କରନ୍ତୁ ।' ସଖୀର କଥାରେ ହର୍ଷ ଓ ଉତ୍କଣ୍ଠାଯୁକ୍ତ ମଳୟବତୀ ବାରମ୍ବାର ପଛକୁ ଚାହିଁ ଚାହିଁ ବିଳମ୍ବିତ ପଦକ୍ଷେପରେ ଅଗ୍ରସର ହେଲେ ।

ଜୀମୂତବାହନ ମଧ୍ୟ ଶୀଘ୍ର ଯାଇ ନିଜ ଆଶ୍ରମରେ ଉପସ୍ଥିତ ହେଲେ । ପୂର୍ବରୁ ମିତ୍ରାବସୁ ଆସି ସେଠାରେ ତାଙ୍କୁ ଅପେକ୍ଷା କରିଥାନ୍ତି । ସେ ନିଜର ଓ ପିତାଙ୍କର ଅଭିଳାଷ ମିତ୍ରଙ୍କ ନିକଟରେ ଜ୍ଞାପନ କଲେ । ଏଥିରେ ଜୀମୂତବାହନ ଅସମ୍ମତ ହେବାର କିଛି କାରଣ

ନଥିଲା । ଜୀମୂତବାହନ ଥିଲେ ଜାତିସ୍ମର । ସେ ମିତ୍ରାବସୁଙ୍କୁ ପୂର୍ବଜନ୍ମର କଥା ଶୁଣାଇ କହିଲେ ଯେ ମିତ୍ରାବସୁ ପୂର୍ବଜନ୍ମରେ ତାଙ୍କର ମିତ୍ର ଥିଲେ । ସେତେବେଳେ ତାଙ୍କ ଭଗିନୀ ସହିତ ଜୀମୂତବାହନଙ୍କ ବିବାହ ହୋଇଥିଲା । ତେଣୁ ଏ ଜନ୍ମରେ ସେମାନଙ୍କୁ ମିତ୍ର ଓ ପତ୍ନୀ ରୂପରେ ଲାଭ କରି ସେ ନିଜକୁ ଅତ୍ୟନ୍ତ ସୌଭାଗ୍ୟଶାଳୀ ମନେକରୁଛନ୍ତି ।

ମିତ୍ରାବସୁ ମିତ୍ରଙ୍କ ଠାରୁ ପୂର୍ବଜନ୍ମର ବୃତ୍ତାନ୍ତ ଶୁଣି ରାଜା ଜୀମୂତକେତୁଙ୍କ ନିକଟରେ ନିଜର ପ୍ରସ୍ତାବ ଏବଂ ପିତାଙ୍କ ପ୍ରାର୍ଥନା ନିବେଦନ କଲେ । ପୁତ୍ରର ସୌଭାଗ୍ୟରେ ସେମାନଙ୍କର ହୃଦୟ ଆନନ୍ଦରେ ନାଚିଉଠିଲା । ପରେ ନିଜର କାର୍ଯ୍ୟସିଦ୍ଧି ସମ୍ପର୍କରେ ରାଜା ବିଶ୍ୱାବସୁ ଏବଂ ମାତାଙ୍କ ନିକଟରେ ନିବେଦନ କରନ୍ତେ ସେମାନେ ମଧ୍ୟ ଅତ୍ୟନ୍ତ ଆନନ୍ଦ ପ୍ରକାଶ କଲେ । କିଛିଦିନ ମଧ୍ୟରେ ବିଦ୍ୟାଧର କୁମାର ଜୀମୂତବାହନଙ୍କ ସହିତ ସିଦ୍ଧ ରାଜକୁମାରୀ ମଳୟବତୀଙ୍କ ବିବାହ ସମ୍ପନ୍ନ ହେଲା । ମିତ୍ରାବସୁ ଭଗିନୀର ବିବାହରେ ନିଜର କ୍ଷମତା ଓ ବିଭବ ଅନୁଯାୟୀ ଆନନ୍ଦ ଉତ୍ସବର ଆୟୋଜନ କଲେ । ହସଖୁସି କେଳିବିଳାସ ମଧ୍ୟରେ ନବପରିଣିତ ଦମ୍ପତିଙ୍କ ସମୟ ବିତିବାକୁ ଲାଗିଲା ।

ଦିନେ କୌତୂହଳବଶତଃ ମଳୟ ପର୍ବତରେ ବିହାର କରୁଥିବା ବେଳେ ଜୀମୂତବାହନ ଶାଳକ ତଥା ମିତ୍ର ମିତ୍ରାବସୁଙ୍କ ସହିତ ସମୁଦ୍ର ତଟରେ ଯାଇ ପହଞ୍ଚିଲେ । ସେଠାରେ ଏକ ବିଶାଳ ଅସ୍ଥିସ୍ତୂପ ଜୀମୂତବାହନଙ୍କ ବିସ୍ମୟ ଉତ୍ପାଦନ କଲା । ସେ ଏହି ଅସ୍ଥିଗୁଡ଼ିକ କେଉଁ ପ୍ରାଣୀମାନଙ୍କର ଜାଣିବାପାଇଁ ଜିଜ୍ଞାସୁ ଦୃଷ୍ଟିରେ ମିତ୍ରାବସୁଙ୍କୁ ଚାହାଁନ୍ତେ ସେ ଦୟାଶୀଳ ଜୀମୂତବାହନଙ୍କୁ କହିଲେ, 'ଶୁଣନ୍ତୁ, ମୁଁ ଏହାର ସମଗ୍ର ବୃତ୍ତାନ୍ତ ଆପଣଙ୍କୁ ସଂକ୍ଷେପରେ କହି ଶୁଣାଉଛି ।

ପ୍ରାଚୀନ କାଳରେ ସର୍ପମାନଙ୍କର ମାତା କଦ୍ରୁ ଏବଂ ଗରୁଡ଼ଙ୍କ ଜନନୀ ବିନତାଙ୍କ ମଧ୍ୟରେ କଳହ ସୃଷ୍ଟି ହେଲା । କପଟ ଆଚରଣ କରି କଦ୍ରୁ ବିନତାଙ୍କୁ ପରାସ୍ତ କଲେ । ଫଳରେ ବିନତା କଦ୍ରୁଙ୍କ ନିକଟରେ ଦାସୀ ରୂପେ ରହିବାପାଇଁ ବାଧ୍ୟ ହେଲେ । ଶକ୍ତିମାନ ଗରୁଡ଼ ମାତାଙ୍କୁ ଦାସତ୍ୱରୁ ମୁକ୍ତ କରିଥିଲେ ସୁଦ୍ଧା ତାଙ୍କର କ୍ରୋଧ ଶାନ୍ତ ହେଲା ନାହିଁ । ସେ କଦ୍ରୁଙ୍କ ପୁତ୍ର ସର୍ପମାନଙ୍କୁ ଭକ୍ଷଣ କରିବାକୁ ଲାଗିଲେ । ସମୟେ ସମୟେ ପାତାଳ ପୁରରେ ପ୍ରବେଶ କରି ସେ କିଛି ସର୍ପଙ୍କୁ ଭକ୍ଷଣ କରୁଥାନ୍ତି, ଆଉ କିଛି ସର୍ପଙ୍କୁ ନଖ ଓ ଚଞ୍ଚୁ ଦ୍ୱାରା ଆହତ କରୁଥାନ୍ତି । ଆଉ କିଛି ସର୍ପ ତାଙ୍କ ଦର୍ଶନ ମାତ୍ରେ ହିଁ ଭୟରେ ମରିଯାଉଥାନ୍ତି ।

ନାଗରାଜ ବାସୁକି ଦେଖିଲେ ଗରୁଡ଼ଙ୍କ ଅତ୍ୟାଚାର ଏପରି ଯଦି ଚାଲେ ତେବେ ସର୍ପବଂଶ ସମୂଳେ ବିନଷ୍ଟ ହେବ । ତେଣୁ ସେ ଗରୁଡ଼ଙ୍କୁ ବିନୟ ପୂର୍ବକ ଏକ ସନ୍ଧିର ପ୍ରସ୍ତାବ ଦେଇ କହିଲେ, 'ପକ୍ଷୀରାଜ, ମୁଁ ଆପଣଙ୍କ ଭୋଜନପାଇଁ ପ୍ରତିଦିନ ଗୋଟିଏ ଲେଖାଏଁ ସର୍ପ ଦକ୍ଷିଣ ସମୁଦ୍ର ତୀରକୁ ପଠାଇ ଦେଉଥିବି । ସେଥିରେ ତୃପ୍ତ ହୋଇ ଆପଣ ଆଉ ପାତାଳପୁରକୁ ଆସିବେ ନାହିଁ । ସର୍ପବଂଶ ଯଦି ସମୂଳେ ଧ୍ୱଂସ ପାଇଯାନ୍ତି ତାହାହେଲେ ଆପଣଙ୍କର ଲାଭ କ'ଣ ହେବ ?' ନାଗରାଜଙ୍କ କଥାରେ ମହାପରାକ୍ରମଶାଳୀ ଗରୁଡ଼ ଦେଖିଲେ ଯେ ଏଥିରେ ତାଙ୍କର ଲାଭ ବ୍ୟତୀତ କ୍ଷତି କିଛି ନାହିଁ । ସେ ବାସୁକିଙ୍କ ସନ୍ଧି ପ୍ରସ୍ତାବ ସ୍ୱୀକାର କଲେ । ସେହିଦିନଠାରୁ ଗରୁଡ଼ ପ୍ରତିଦିନ ଆସି ବାସୁକି ପ୍ରେରିତ ସର୍ପଟିକୁ ଏଠାରେ ଭୋଜନ କରୁଛନ୍ତି । ସେହି ସର୍ପମାନଙ୍କର ଅସ୍ଥି ସମୂହରେ ଆପଣ ଦେଖୁଥିବା ଏହି ଅସ୍ଥିସ୍ତୂପ ପର୍ବତ ତୁଲ୍ୟ ବଢ଼ିଚାଲିଛି ।'

ପରମଦୟାଶୀଳ ଏବଂ ଧୈର୍ଯ୍ୟନିଧି ଜୀମୂତବାହନ ମିତ୍ରାବସୁଙ୍କ ମୁଖରୁ ଏହି ବୃତ୍ତାନ୍ତ ଶୁଣି ଅତ୍ୟନ୍ତ ଦୁଃଖିତ ହେଲେ । କହିଲେ, 'ସର୍ପରାଜ ବାସୁକିଙ୍କ କଥା ଅବଶ୍ୟ ଚିନ୍ତନୀୟ । ସେ କ'ଣ ଏଡ଼େ ଭୟାଳୁ ଯେ ପ୍ରତିଦିନ ନିଜ ହାତରେ ଜଣେ ଜଣେ ପ୍ରଜାଙ୍କୁ ଶତ୍ରୁର ଆହାରପାଇଁ ପଠାଇ ଦେଉଛନ୍ତି ! ବାସୁକିଙ୍କର ସହସ୍ରମୁଖ । ସେଥିରୁ ଗୋଟିଏ ମୁଖ ସୁଦ୍ଧା କହିପାରିଲା ନାହିଁ 'ଗରୁଡ଼ ତୁମେ ପ୍ରଥମେ ମତେ ଆହାର କର', ଏହାହିଁ ଆଶ୍ଚର୍ଯ୍ୟର କଥା । ପ୍ରତିଦିନ ନାଗପତ୍ନୀମାନଙ୍କର ଆର୍ତ୍ତଚିତ୍କାର ଶୁଣୁଥିବା ନିର୍ଦ୍ଦୟ ବାସୁକି ଗରୁଡ଼ଙ୍କୁ ପ୍ରାର୍ଥନା କରିବାର ଆବଶ୍ୟକତା ବା କ'ଣ ଥିଲା ? ସାଂସାରିକ ମୋହର କରାମତି ମଧ୍ୟ କି ଅଦ୍ଭୁତ ! ଗରୁଡ଼ କଶ୍ୟପଙ୍କ ପୁତ୍ର, ପ୍ରବଳ ପରାକ୍ରମୀ ଏବଂ ଭଗବାନ ବିଷ୍ଣୁଙ୍କ ବାହନ ହୋଇଥିବା ଯୋଗୁଁ ପବିତ୍ର । ତଥାପି ମୋହ ବଶରୁ ଏପରି ପାପକର୍ମ କରିଚାଲିଛନ୍ତି ।' ଏହା କହି ଜୀମୂତବାହନ ମନେମନେ ଚିନ୍ତାକଲେ ଯେ ତାଙ୍କର ଏହି ଅସାର ଶରୀର କଦାପି ଚିରସ୍ଥାୟୀ ନୁହେଁ । ଏହାର ବିନିମୟରେ ସେ ଯଦି ଅନ୍ତତଃ ଗୋଟିଏ ସର୍ପକୁ ରକ୍ଷା କରନ୍ତି, ତା'ହେଲେ ସେହି ଭୟଭୀତ ଓ ନିଃସଙ୍ଗ ସର୍ପଟିର ସ୍ୱଜନମାନେ ପ୍ରଭୂତ ଆନନ୍ଦଲାଭ କରିପାରିବେ ।

ଜୀମୂତବାହନ ଏହିପରି ଚିନ୍ତା କରୁଥିବା ବେଳେ ଜଣେ ପ୍ରତିହାର ଆସି ଜଣାଇଲା ଯେ ମିତ୍ରାବସୁଙ୍କୁ ତାଙ୍କ ପିତା ସ୍ମରଣ କରୁଛନ୍ତି । ସେ ପରେ ଯିବାପାଇଁ କହି ମିତ୍ରଙ୍କୁ ବିଦାୟ ଦେଲେ । ଏକାକୀ ଜୀମୂତବାହନ ସେଠାରେ ବିଚରଣ କରୁଥାନ୍ତି । ମନରେ ତାଙ୍କର ଅଭିଳାଷ ପୂରଣ କରିବାର ସଂକଳ୍ପ । ଏ ସମୟରେ ଦୂରରୁ ଏକ କରୁଣ ଧ୍ୱନି

ତାଙ୍କର ଶ୍ରୁତିଗୋଚର ହେଲା । ସେ ନିକଟକୁ ଯାଇ ଦେଖିଲେ ଗୋଟିଏ ଉଚ୍ଚ ଶିଳାଖଣ୍ଡ ଉପରେ ଜଣେ ପୁରୁଷ ଦଣ୍ଡାୟମାନ । ତାର ଆକୃତି ଅତ୍ୟନ୍ତ ଆକର୍ଷଣୀୟ ହୋଇଥିଲେ ସୁଦ୍ଧା ସେ ଅତ୍ୟନ୍ତ ଦୁଃଖିତ ଥିବା ଜଣାଯାଉଥିଲା । କୌଣସି ରାଜକର୍ମଚାରୀ ସେହିକ୍ଷଣି ତାକୁ ସେଠାରେ ଆଣି ଛାଡ଼ିଯାଇଥାଏ । ସେ ବ୍ୟାକୁଳରେ କ୍ରନ୍ଦନ କରୁଥିବା ଜଣେ ବୃଦ୍ଧାକୁ ଫେରିଯିବାପାଇଁ ଅନୁନୟ କରୁଥାଏ ।

ଜୀମୂତବାହନ କିଛି ଦୂରରେ ରହି ଗୋପନରେ ସେମାନଙ୍କ କଥା ଶୁଣୁଥାନ୍ତି । ବୃଦ୍ଧାଟି ଯୁବକଟିର ଅନୁରୋଧ ରକ୍ଷାନକରି ସେଠାରେ ସେପରି ହିଁ କ୍ରନ୍ଦନ କରୁଥାଏ । କହୁଥାଏ, 'ହା ଶଂଖଚୂଡ଼ ! ହା ଦୁଃଖିଧନ ! ହା ଗଣ୍ଠିଧନ ! ହା କୁଳଚନ୍ଦ୍ରମା ! ତୋର ମୁଖଚନ୍ଦ୍ର ମୁଁ ଆଉ କେଉଁଠି ଦେଖିବି । ପୁତ୍ର, ତୋର ମୁଖଚନ୍ଦ୍ର ନଦେଖି ତୋର ପିତା ଏହି ବୃଦ୍ଧ ବୟସରେ କିପରି ଜୀବନ ନିର୍ବାହ କରିବେ ? ସୂର୍ଯ୍ୟଙ୍କର କୋମଳ କିରଣରେ ତୋର ଶରୀର ଝାଉଁଳି ପଡୁଥିଲା । ଏବେ ତୁ ଗରୁଡ଼ର ନଖ ଓ ଚଞ୍ଚୁ ଆଘାତ କିପରି ବା ସହ୍ୟ କରିବୁ ? ନାଗଲୋକ ତ ଅତ୍ୟନ୍ତ ବିଶାଳ ଓ ବିସ୍ତୃତ । ମୋ ପରି ଅଭାଗିନୀର ଏକମାତ୍ର ପୁତ୍ରକୁ ବାଛିବାପାଇଁ ବିଧାତା ନାଗରାଜଙ୍କୁ କିପରି ବା ପ୍ରେରଣା ଦେଲା ?' ମାତାକୁ ସାନ୍ତ୍ୱନା ଦେଇ ଯୁବକ ପୁତ୍ର କହୁଥାଏ, 'ମା', ମୁଁ ତ ଏବେ ନିଜେ ଦୁଃଖୀ । ତୁମେ ମୋର ଦୁଃଖକୁ ଆଉ କାହିଁକି ବଢ଼ାଉଛ ? ଘରକୁ ଫେରିଯାଅ । ମୁଁ ତୁମକୁ ଶେଷ ପ୍ରଣାମ ଜଣାଉଛି । ଗରୁଡ଼ଙ୍କ ଆସିବା ସମୟ ହୋଇଗଲାଣି । ତୁମେ ଆଉ ଏଠାରେ ରହନାହିଁ ।' ଏହାଶୁଣି ବୃଦ୍ଧା 'ଆଃ, ମୋ ଜୀବନ, ମୋ ଜୀବନ ଧନକୁ କିଏ ରକ୍ଷା କରିବ ?' କହି ଚତୁର୍ଦ୍ଦିଗକୁ ଚାହିଁବାକୁ ଲାଗିଲ ।

ବୋଧିସତ୍ତ୍ୱଙ୍କ ଅଂଶଜାତ ଜୀମୂତବାହନ ଏସବୁ ଦେଖି ଓ ଶୁଣି ଦୟାର୍ଦ୍ର ହୋଇପଡ଼ିଲେ । ଭାବିଲେ, 'ଏ ହିଁ ହେଉଛି ସେହି ଶଂଖଚୂଡ଼ ନାଗ । ବାସୁକି ଏହାକୁ ଆଜିର ଆହାରପାଇଁ ଗରୁଡ଼ଙ୍କ ନିକଟକୁ ପଠାଇଛନ୍ତି । ବୃଦ୍ଧାଟି ଏହାର ମାତା । ଏକମାତ୍ର ପୁତ୍ର ମୃତ୍ୟୁମୁଖକୁ ଯାଉଥିବାରୁ ସେ ବିକଳ ହୋଇ ତା' ପଛେପଛେ ଆସିଛି । ତାର କରୁଣ ପ୍ରଳାପ ସହ୍ୟ କରିବା ସମ୍ଭବ ନୁହେଁ । ମୁଁ ଯଦି ମୋର ନିଜର ବିନାଶଶୀଳ ଶରୀର ପରିବର୍ତ୍ତେ ଏହି ନାଗ ଯୁବକଟିକୁ ରକ୍ଷା ନକରେ, ତେବେ ମୋ ଜୀବନ ବୃଥା ।' ଏହିପରି ଚିନ୍ତା କରି ଜୀମୂତବାହନ ପ୍ରସନ୍ନଚିତ୍ତରେ ବୃଦ୍ଧା ସମ୍ମୁଖରେ ଯାଇ ଉପସ୍ଥିତ ହେଲେ । କହିଲେ, 'ମା', ତୁମେ ଆଉ ଦୁଃଖ କରନାହିଁ । ମୁଁ ତୁମ ପୁତ୍ରକୁ ରକ୍ଷାକରିବି ।' ବୃଦ୍ଧା ତାଙ୍କୁ ଗରୁଡ଼ ମଣିକରି ଭୟରେ ପୁତ୍ର ପରିବର୍ତ୍ତେ ତାକୁ ଖାଇବାପାଇଁ ଅନୁରୋଧ କରିବାକୁ

ଲାଗିଲା । ଶଂଖଚୂଡ଼ ଆଗନ୍ତୁକଙ୍କୁ ଚିହ୍ନି ନଥିଲେ ସୁଦ୍ଧା ମା'ଙ୍କୁ କହିଲା, 'ମା', ତୁମେ ବ୍ୟସ୍ତ ହୁଅ ନାହିଁ । ଏ ମହାଭାଗ କେବେ ଗରୁଡ଼ ହୋଇନପାରନ୍ତି । ଏହାଙ୍କୁ ଦେଖିଲେ ମନରେ ଆନନ୍ଦଭାବ ସୃଷ୍ଟି ହେଉଛି । କାହିଁ ଚନ୍ଦ୍ରମା ପରି ସ୍ନିଗ୍ଧଶୀତଳ ଏହି ଯୁବକ ଏବଂ କାହିଁ ସେହି ଭୟଙ୍କର ଗରୁଡ଼ !'

ସେମାନଙ୍କ ବାର୍ତ୍ତାଳାପ ମଧ୍ୟରେ ଜୀମୂତବାହନ ବୃଦ୍ଧାଙ୍କୁ ଆଶ୍ୱାସନା ଦେଇ କହିଲେ, 'ମା', ମୁଁ ଜଣେ ବିଦ୍ୟାଧର । ତୁମ ପୁତ୍ରକୁ ରକ୍ଷା କରିବାପାଇଁ ଏଠାରେ ଆସି ପହଞ୍ଚିଛି । ମୁଁ ମୋ ଶରୀରକୁ ବସ୍ତ୍ର ମଧ୍ୟରେ ଆବୃତ କରି କ୍ଷୁଧାର୍ତ୍ତ ଗରୁଡ଼ଙ୍କୁ ସମର୍ପଣ କରିବି । ତୁମେ ପୁତ୍ର ସହିତ ଘରକୁ ଫେରିଯାଅ ।' ତାଙ୍କ କଥାରେ ବୃଦ୍ଧାର ବିଳାପ ଶାନ୍ତ ହେଲା । ସେ ଦୃଢ଼ ସ୍ୱରରେ କହିଲା, 'ଏପରି କହ ନାହିଁ । ଆମର ଏ ଅବସ୍ଥାରେ ଏତେବଡ଼ ଦୟା ଦେଖାଇଥିବା ଯୋଗୁଁ ତୁମେ ମୋର ପୁତ୍ରଠାରୁ ମଧ୍ୟ ଅଧିକ ।' ଜୀମୂତବାହନ କଥା ମଝିରୁ ହିଁ ବାଧା ଦେଇ ନିବେଦନ କଲେ, 'ଆପଣମାନେ ମୋତେ ଆଉ ବାଧା ଦିଅନ୍ତୁ ନାହିଁ । ମୁଁ ନିଶ୍ଚିତ ଭାବେ ମୋର ପ୍ରତିଜ୍ଞା ପାଳନ କରିବି ।' କିନ୍ତୁ ଶଂଖଚୂଡ଼ ତାଙ୍କ ଆଗ୍ରହରେ ବାଧାଦେଇ କହିଲେ, 'ମହାସତ୍ତ୍ୱ, ଆପଣ ଯେଉଁ ଦୟାଶୀଳତା ଦେଖାଇଛନ୍ତି ତାର ପଟାନ୍ତର ନାହିଁ । କିନ୍ତୁ ଆପଣଙ୍କ ଶରୀର ବିନିମୟରେ ମୁଁ ମୋର ଦେହରକ୍ଷା କରିବି ନାହିଁ । ରତ୍ନବିନିମୟରେ ପଥରଖଣ୍ଡକୁ ରକ୍ଷା କରିବାର ଅର୍ଥ କ'ଣ ? ମୋଭଳି ସ୍ୱାର୍ଥପର ସଂସାରରେ ବହୁତ ଅଛନ୍ତି, କିନ୍ତୁ ଆପଣଙ୍କ ପରି ଲୋକ ସଂସାରରେ ବିରଳ । ଆପଣ ସଂସାରର ପ୍ରତ୍ୟେକଟି ଜୀବପାଇଁ ଚିନ୍ତିତ । ତେଣୁ ହେ ମହାଭାଗ, ଚନ୍ଦ୍ରରେ କଳଙ୍କ ପରି ଶଂଖପାଳଙ୍କ ପବିତ୍ର ବଂଶକୁ ମୁଁ କଳଙ୍କିତ କରିପାରିବି ନାହିଁ ।' ସେ ପୁଣି ନିଜର ମା'ଙ୍କୁ କହିଲା, 'ମା' ତୁମେ ଏହି ଦୁର୍ଗମ ଅରଣ୍ୟ ମଧ୍ୟରୁ ଫେରିଯାଅ । ଯମରାଜଙ୍କ ବିଳାସ ଶଯ୍ୟାପରି ଏହି ବଧଶିଳା ଅତ୍ୟନ୍ତ ଭୟାନକ । ସର୍ପମାନଙ୍କ ରକ୍ତରେ ଏହା ରାକ୍ଷସର ଜିହ୍ୱାଭଳି ମନେହେଉଛି । ଗରୁଡ଼ ଆସିବା ସମୟ ନିକଟ ହୋଇଗଲାଣି । ସେ ଆସିବା ପୂର୍ବରୁ ମୁଁ ସମୁଦ୍ରରେ ସ୍ନାନ କରି ଭଗବାନ ଗୋକର୍ଣ୍ଣେଶ୍ୱରଙ୍କୁ ପ୍ରଣିପାତ ପୂର୍ବକ ଫେରିଆସିବି ।' ଏହା କହି ରୋରୁଦ୍ୟମାନା ମାତାଙ୍କ ଠାରୁ ବିଦାୟ ଗ୍ରହଣ ପୂର୍ବକ ଶଂଖଚୂଡ଼ ଗୋକର୍ଣ୍ଣେଶ୍ୱରଙ୍କୁ ବନ୍ଦନା କରିବାପାଇଁ ଚାଲିଗଲା ।

ଜୀମୂତବାହନ ସେଠାରେ ଏକାକୀ ଠିଆ ହୋଇ ଭାବୁଥାନ୍ତି, 'ଯଦି ଏ ସମୟରେ ଗରୁଡ଼ ଆସିଯାଇଥାନ୍ତେ ତା'ହେଲେ ମୋର ମନୋରଥ ପୂର୍ଣ୍ଣ ହୋଇଯାନ୍ତା ।' ଏ

ସମୟରେ ଗରୁଡ଼ଙ୍କ ଆଗମନର ସୂଚନା ଦେଇ ପବନର ବେଗରେ ବୃକ୍ଷଗୁଡ଼ିକ ଦୋହଲିବାକୁ ଲାଗିଲେ । ମନେ ହେଉଥିଲା ସେମାନେ ଜୀମୂତବାହନଙ୍କୁ ନିଜ ପ୍ରତିଜ୍ଞାରୁ ଓହରିଯିବାପାଇଁ କହୁଥିଲେ । ଜୀମୂତବାହନ ପରୋପକାର ନିମିତ୍ତ ଜୀବନଦାନ କରିବାର ଆକାଂକ୍ଷା ନେଇ ବଧଶିଳା ଉପରକୁ ଉଠିଗଲେ । ବାୟୁବିକ୍ଷୁବ୍ଧ ସମୁଦ୍ର ତରଙ୍ଗ ଜ୍ୟୋତିରେ ବିସ୍ମୟ ପୂର୍ବକ ଗରୁଡ଼ଙ୍କ ବେଗକୁ ଲକ୍ଷ୍ୟ କରିବାକୁ ଲାଗିଲା । ଚାହୁଁଚାହୁଁ ଆକାଶକୁ ଆଚ୍ଛାଦନ କରି ଗରୁଡ଼ ଅବତରଣ କରିଆସିଲେ ଏବଂ ଦୟାବତାର ଜୀମୂତବାହନଙ୍କୁ ଚଞ୍ଚୁରେ ଉଠାଇନେଲେ ।

ଜୀମୂତବାହନଙ୍କ ଶରୀରରୁ ରକ୍ତର ଧାରା ବହୁଥାଏ । ତାଙ୍କର ଶିରୋଭୂଷା ମଣିଟି ରକ୍ତରଞ୍ଜିତ ହୋଇଯାଇଥାଏ । ଗରୁଡ଼ ତାଙ୍କୁ ଚଞ୍ଚୁରେ ଧରି ମଳୟ ପର୍ବତ ଦିଗରେ ଅଗ୍ରସର ହେଲେ । ରକ୍ତାକ୍ତ ଶରୀରରୁ ଗରୁଡ଼ ଖଣ୍ଡଖଣ୍ଡ ମାଂସ ଭକ୍ଷଣ କରୁଥିବା ବେଳେ ଜୀମୂତବାହନ ଚିନ୍ତା କରୁଥାନ୍ତି ଯେ ଆଗାମୀ ଜନ୍ମମାନଙ୍କରେ ତାଙ୍କୁ ଏପରି ଶରୀରଟିଏ ମିଳୁଥାଉ । ଯଦି ତାଙ୍କର ସ୍ୱର୍ଗ ବା ମୋକ୍ଷ ପ୍ରାପ୍ତି ହୋଇଯାଏ ତେବେ ପରୋପକାର କରିବା କ'ଣ ଆଉ ସମ୍ଭବ ହେବ ? ବିଦ୍ୟାଧର କୁଳଚନ୍ଦ୍ରମା ଜୀମୂତବାହନ ଏହିପରି ଚିନ୍ତା କରୁଥିବା ବେଳେ ତାଙ୍କ ଉପରେ ଆକାଶରୁ ପୁଷ୍ପ ବୃଷ୍ଟି ହେବାକୁ ଲାଗିଲା ।

ଏହା ମଧ୍ୟରେ ଜୀମୂତବାହନଙ୍କ ମସ୍ତକରୁ ବିଚ୍ୟୁତ ହୋଇ ରକ୍ତରଞ୍ଜିତ ମଥାମଣିଟି ତାଙ୍କ ପତ୍ନୀ ମଳୟବତୀଙ୍କ ସମ୍ମୁଖରେ ଯାଇ ପଡ଼ିଲା । ସେ ପତି ଧାରଣ କରିଥିବା ଅଳଙ୍କାରଟିକୁ ଚିହ୍ନିପାରିଲେ । ଦୁଃଖ ଓ ଶୋକରେ ବିହ୍ୱଳ ମଳୟବତୀ ଶାଶୁଶ୍ୱଶୁରଙ୍କୁ ନେଇ ମଣିଟି ଦେଖାଇଲେ । ମଣିଟି ସମସ୍ତଙ୍କ ମନରେ ଦୁଃଖ ଓ ବିସ୍ମୟର ଛାୟା ଖେଳାଇଦେଲା । ରାଜା ଜୀମୂତକେତୁ ନିଜର ବିଦ୍ୟା ପ୍ରଭାବରେ ସମସ୍ତ ବୃତ୍ତାନ୍ତ ଜାଣିପାରିଲେ । ପୁତ୍ରକୁ ରକ୍ଷା କରିବାପାଇଁ ସେ ରାଣୀ କନକବତୀ ଓ ପୁତ୍ରବଧୂ ମଳୟବତୀଙ୍କ ସହିତ ଗରୁଡ଼ଙ୍କ ଭୋଜନ ସ୍ଥାନରେ ଯାଇ ପହଞ୍ଚିଲେ ।

ଏଣେ ଶଙ୍ଖଚୂଡ଼ ଗୋକର୍ଣ୍ଣେଶ୍ୱରଙ୍କୁ ପ୍ରଣାମ କରି ଫେରିଆସିଲା । ବଧଶିଳା ରକ୍ତରଞ୍ଜିତ ହୋଇଥିବା ଦେଖି ସେ ସମସ୍ତ ବିଷୟ ଅନୁମାନ କରିପାରିଲା । ତା ଚକ୍ଷୁରୁ ଶୋକାଶ୍ରୁ ବହିବାକୁ ଲାଗିଲା । ନିଜକୁ ନିଜେ କହିବାକୁ ଲାଗିଲା, 'ମୁଁ ମହାପାପର ଭାଗୀ ହୋଇଗଲି । ସେହି ଦୟାଳୁ ମହାପୁରୁଷ ନିଶ୍ଚିତଭାବେ ନିଜକୁ ଗରୁଡ଼ଠାରେ ସମର୍ପଣ କରିଦେଇଛନ୍ତି । ମୁଁ ଯଦି ତାଙ୍କୁ ଜୀବିତାବସ୍ଥାରେ ଉଦ୍ଧାର କରିପାରିବି ତେବେ ହୁଏତ ଅପନିନ୍ଦାରୁ ମୁକ୍ତି ପାଇବି । ତେଣୁ ବର୍ତ୍ତମାନ ସର୍ପଶତ୍ରୁ ଗରୁଡ଼ଙ୍କର ସନ୍ଧାନ କରିବା

ମୋପାଇଁ ଉଚିତ ହେବ ।' ବଧଶିଳାରୁ ଯେଉଁ ରକ୍ତର ଧାର ଜୀମୂତବାହନଙ୍କୁ ଚଞ୍ଚୁରେ ଧରି ନେଲାବେଳେ ବହିଯାଇଥିଲା, ଶଙ୍ଖଚୂଡ଼ ତା'କୁ ଅନୁସରଣ କରି ଆଗକୁ ଯିବାକୁ ଲାଗିଲା ।

ଏଣେ ଗରୁଡ଼ ଜୀମୂତବାହନଙ୍କୁ ନେଇ ମଳୟପର୍ବତର ଗୋଟିଏ ଶିଖର ଉପରେ ଖାଉଥାନ୍ତି । ସେ ତାଙ୍କ ଶରୀରରୁ ଯେତିକି ମାଂସ ଖାଉଥାନ୍ତି ରାଜକୁମାର ସେତିକି ପ୍ରସନ୍ନ ଦେଖାଯାଉଥାନ୍ତି । ଗରୁଡ଼ ଏହା ଦେଖି ବିସ୍ମିତ ହେଲେ । ଖାଇବା ଛାଡ଼ି ସେ ଚିନ୍ତା କରିବାକୁ ଲାଗିଲେ ଯେ ସେ ଖାଉଥିବା ବ୍ୟକ୍ତିଟି ନିଶ୍ଚୟ ଜଣେ ଅପୂର୍ବ ଶକ୍ତିଶାଳୀ ପୁରୁଷ । ତାହା ନ ହୋଇଥିଲେ ଶରୀର କ୍ଷତବିକ୍ଷତ ହେଉଥିଲା ବେଳେ ସେ ଏପରି ପ୍ରସନ୍ନ ଦେଖାଯାଉ ନଥାନ୍ତା । ପୁଣି ଆଶ୍ଚର୍ଯ୍ୟର କଥା, ବ୍ୟକ୍ତିଟି ଏପର୍ଯ୍ୟନ୍ତ ଜୀବିତ ଅଛି । ତା' ଶରୀରର ଯାହା କିଛି ଅଂଶ ଅବଶିଷ୍ଟ ଅଛି ତାହା ଆନନ୍ଦରେ ପୁଲକିତ ହୋଇଉଠୁଛି । ମୋ ପ୍ରତି ତାର ଦୃଷ୍ଟିରେ ଭୟ କିମ୍ବା କ୍ରୋଧର ଲେଶ ମାତ୍ର ଚିହ୍ନ ନାହିଁ । ବରଂ ମୁଁ ତାର ଉପକାର କରୁଥିବା କଥା ସେଥିରୁ ସୂଚିତ ହେଉଅଛି । ନିଶ୍ଚିତ ଭାବରେ ଏ ବ୍ୟକ୍ତିଜଣକ ସର୍ପ ନୁହେଁ । କୌଣସି ସଜ୍ଜନ ପୁରୁଷ ହେବା ସମ୍ଭବ । ତେଣୁ ଏହାକୁ ଖାଇବା ମୋ ପକ୍ଷରେ ଉଚିତ ହେବ ନାହିଁ, ବରଂ ତାର ପରିଚୟ ଜାଣିବାପାଇଁ ଚେଷ୍ଟା କରିବା ଯଥାର୍ଥ ହେବ । ଗରୁଡ଼ ଖାଇବା ବନ୍ଦକରି ଏପରି ଚିନ୍ତା କରୁଥିବା ବେଳେ ଜୀମୂତବାହନ ଧୀର ଓ ନମ୍ର ସ୍ୱରରେ କହିଲେ, 'ପକ୍ଷୀରାଜ୍ ! ଆପଣ ଅଟକି ଗଲେ କାହିଁକି ? ମୋ ଶରୀରରେ ତ ଏ ପର୍ଯ୍ୟନ୍ତ କିଛି ରକ୍ତ ମାଂସ ଅବଶିଷ୍ଟ ରହିଛି । ଆପଣଙ୍କର ମଧ ତୃପ୍ତି ଆସିଥିବା ପରି ମନେହେଉନାହିଁ । ତେଣୁ ଯଥାଶୀଘ୍ର ମୋତେ ଆହାର କରି ପରିତୃପ୍ତ ହୁଅନ୍ତୁ ।'

ଜୀମୂତବାହନଙ୍କ ଅନୁରୋଧ ଗରୁଡ଼ଙ୍କୁ ବିସ୍ମୟକର ମନେହେଲା । ସେ ସମ୍ଭ୍ରମର ସହିତ ପଚାରିଲେ, 'ମହାତ୍ମନ୍, ଆପଣ ନିଶ୍ଚୟ ସର୍ପ ନୁହଁନ୍ତି । କୁହନ୍ତୁ, ଆପଣ କିଏ ?' ଜୀମୂତବାହନ ଗରୁଡ଼ଙ୍କ ପ୍ରଶ୍ନକୁ ଏଡ଼ାଇ ଦେଇ ଉତ୍ତର ଦେଲେ, 'ଇଏ ତୁମର କି ପ୍ରଶ୍ନ ? ମୁଁ ତ ସର୍ପ । ତୁମେ ତୁମର କାମ କର । କୌଣସି ବୁଦ୍ଧିମାନ୍ ବ୍ୟକ୍ତି ନିଜର କାର୍ଯ୍ୟ ଛାଡ଼ି ଅନ୍ୟ କାର୍ଯ୍ୟରେ ମନଦିଏ ନାହିଁ ।' ଏ ସମୟରେ ଶଂଖଚୂଡ଼ ଆସି ସେଠାରେ ପହଞ୍ଚିଲା । ଦୂରରୁ ସେ ଚିତ୍କାର କରି କହିଲା, 'ବିନତା ପୁତ୍ର ! ଏପରି ମହାପାପରେ ଭାଗୀ ହୁଅ ନାହିଁ । ତୁମେ କିପରି ଏପରି ଭ୍ରମରେ ପଡ଼ିଲ ? ଯାହାକୁ ତୁମେ ଭୋଜନ କରୁଛ ସେ ସର୍ପ ନୁହେଁ । ମୁଁ ତୁମର ଆଜି ପାଇଁ ଉଦ୍ଦିଷ୍ଟ ଆହାର ।' ଏପରି କହି ସେ ଦ୍ରୁତ ବେଗରେ ଆସି ଉଭୟଙ୍କ ମଧ୍ୟରେ ଠିଆ ହେଲା । ଗରୁଡ଼ଙ୍କୁ ବିଭ୍ରାନ୍ତ ହେଉଥିବା ଦେଖି ଶଂଖଚୂଡ଼

ପୁଣି କହିଲା, 'ତୁମର ଏହା କି ପ୍ରକାର ଭ୍ରମ ? ତୁମେ କ'ଣ ମୋର ଫଣା ଓ ଦୁଇଟି ଜିହ୍ୱା ଦେଖିପାରୁନାହଁ ? ତୁମକୁ କ'ଣ ଏହି ବିଦ୍ୟାଧରଙ୍କ ସୌମ୍ୟ ରୂପ ମଧ୍ୟ ଦେଖାଯାଉନାହିଁ ।' ଶଙ୍ଖଚୂଡ଼ ଏପରି କହୁଥିବା ବେଳେ ଜୀମୂତବାହନଙ୍କ ପିତା, ମାତା ଓ ପତ୍ନୀ ମଧ୍ୟ ସେଠାରେ ଆସି ପହଞ୍ଚିଲେ । ତାଙ୍କର କ୍ଷତବିକ୍ଷତ ଶରୀରକୁ ଦେଖି ସେମାନେ ଶୋକବିହ୍ୱଳ ହୋଇପଡ଼ିଲେ । ପିତାମାତା ପୁତ୍ରର ନାମ ଓ ଗୁଣ ଉଚ୍ଚାରଣ ପୂର୍ବକ କରୁଣ ସ୍ୱରରେ ବିଳାପ କରୁଥିବା ଶୁଣି ଗରୁଡ଼ ନିଜ ଭ୍ରମ ସମ୍ପର୍କରେ ସଚେତନ ହୋଇଉଠିଲେ ।

ଗରୁଡ଼ଙ୍କ ମନରେ ପଶ୍ଚାତ୍ତାପ ଜାତ ହେଲା । ସେ ମନେମନେ ଭାବିଲେ, 'ମୁଁ ଭ୍ରମରେ ପଡ଼ି ବୋଧିସତ୍ତ୍ୱଙ୍କ ଅଂଶକୁ କିପରି ଖାଇଯାଉଛି ? ଇଏତ ସେହି ଜୀମୂତବାହନ ଯିଏ ଅନ୍ୟପାଇଁ ପ୍ରାଣ ଉତ୍ସର୍ଗ କରିଥାନ୍ତି । ଏହାଙ୍କ ଯଶ ତ ତିନିଲୋକରେ ବିଖ୍ୟାତ । ଯଦି ଏହାଙ୍କର ମୃତ୍ୟୁ ହୋଇଯାଏ ତେବେ ମୋତେ ଅଗ୍ନିରେ ପ୍ରବେଶ କରିବାକୁ ପଡ଼ିବ । କାରଣ—

ଅଧର୍ମବିଷବୃକ୍ଷସ୍ୟ ପଚ୍ୟତେ ସ୍ୱାଦୁ କିଂ ଫଳମ୍ ।

ଅଧର୍ମ ରୂପକ ବିଷବୃକ୍ଷର ଫଳ ପାଚିଲେ କ'ଣ ମଧୁର ଲାଗିପାରିବ ? ଗରୁଡ଼ ଏହିପରି ଚିନ୍ତାରେ ବ୍ୟାକୁଳ ଥିଲାବେଳେ ଜୀମୂତବାହନ ସ୍ୱଜନମାନଙ୍କ ପ୍ରତି ଦୃଷ୍ଟିପାତ କରି ପ୍ରାଣ ତ୍ୟାଗ କଲେ ।

ପୁତ୍ରର ମୃତ୍ୟୁରେ ମାତା ପିତା ବିଳାପ କରିବାକୁ ଲାଗିଲେ । ଶଙ୍ଖଚୂଡ଼ ନିଜକୁ ଧିକ୍କାର କରି ନିନ୍ଦା କରିବାକୁ ଲାଗିଲେ । କିନ୍ତୁ ପତ୍ନୀ ମଳୟବତୀ ଅଶ୍ରୁପୂର୍ଣ୍ଣ ନୟନରେ ଆକାଶ ମାର୍ଗକୁ ଚାହିଁ ଅତୀତରେ ତାଙ୍କୁ ବରଦାନ ଦେଇଥିବା ଦେବୀ ଭବାନୀଙ୍କୁ ନିବେଦନ କଲେ, 'ଦେବି, ଆପଣ ତ ମୋତେ ବରଦାନ ଦେଇ କହିଥିଲେ ଯେ ମୋର ପତି ବିଦ୍ୟାଧର ଚକ୍ରବର୍ତ୍ତୀ ହେବେ । କିନ୍ତୁ ଏବେ ଆପଣ ମିଥ୍ୟାବାଦିନୀ କିପରି ହୋଇଗଲେ ? ଏହା କ'ଣ ମୋର ଭାଗ୍ୟର ଦୋଷ ନା ଆପଣଙ୍କ ଛଳନା ?' ରାଜକନ୍ୟାଙ୍କ ନିବେଦନ ଶୁଣି ଭଗବତୀ ଭବାନୀ ସେଠାରେ ସ୍ୱୟଂ ଦେଖାଦେଲେ । 'ପୁତ୍ରି, ମୋ କଥା କେବେ ମିଥ୍ୟା ହେବ ନାହିଁ' କହି ନିଜ କମଣ୍ଡଳୁରୁ କିଛି ଅମୃତ ଜୀମୂତବାହନଙ୍କ ମୃତ ଶରୀର ଉପରେ ସିଞ୍ଚନ କଲେ । ଦେବୀଙ୍କ କୃପାରୁ ଗରୁଡ଼ଙ୍କଦ୍ୱାରା କ୍ଷତବିକ୍ଷତ ଶରୀର ପରିପୂର୍ଣ୍ଣ ହେଲା । ଜୀମୂତବାହନ ଅଧିକତର ଦୀପ୍ତିମନ୍ତ ହୋଇ ଉଠି ଠିଆହେଲେ । ସେ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିବାରେ ଦେବୀ କହିଲେ, 'ମୁଁ ତୋତେ ଦେହଦାନ କରି ଅତ୍ୟନ୍ତ

ସନ୍ତୁଷ୍ଟ । ବର୍ତ୍ତମାନ ନିଜ ହାତରେ ହିଁ ତୋତେ ଚକ୍ରବର୍ତ୍ତୀ ପଦରେ ଅଭିଷିକ୍ତ କରୁଛି । ତୁ ଗୋଟିଏ କଳ୍ପ ପର୍ଯ୍ୟନ୍ତ ବିଦ୍ୟାଧରମାନଙ୍କୁ ଶାସନ କରିବୁ ।' ସେ ନିଜ କମଣ୍ଡଳୁର ଜଳଦ୍ୱାରା ଜୀମୂତବାହନଙ୍କ ଅଭିଷେକ କଲେ । ନିଜେ ବିଦ୍ୟାଧର କୁମାର ଏବଂ ଉପସ୍ଥିତ ଅନ୍ୟ ସମସ୍ତେ ଦେବୀଙ୍କୁ ଭକ୍ତିପୂତ ପ୍ରଣାମ ଜଣାଉଥିବା ବେଳେ ଦେବୀ ସେଠାରୁ ଅଦୃଶ୍ୟ ହୋଇଗଲେ । ସ୍ୱର୍ଗରୁ କୁସୁମ ବୃଷ୍ଟି ହେଲା, ଆକାଶରେ ଦେବତାମାନଙ୍କର ଦୁନ୍ଦୁଭିନାଦ ଶୁଣାଗଲା ।

ଏସବୁ ଦେଖି ଗରୁଡ଼ ବିନିତ ଭାବେ ଜୀମୂତବାହନଙ୍କୁ କହିଲେ, 'ମୁଁ ଆପଣଙ୍କ ଅପୂର୍ବ ପୌରୁଷ ଦେଖି ଅତ୍ୟନ୍ତ ପ୍ରସନ୍ନ । ଆପଣ ନିଜର ଅପୂର୍ବ ଉଦାରତାଦ୍ୱାରା ତ୍ରିଭୁବନ ବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଛନ୍ତି । ଆପଣଙ୍କର ଏହି ଅକ୍ଷୟ କୀର୍ତ୍ତି ଚିରଦିନପାଇଁ ପୃଥିବୀ ପୃଷ୍ଠରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ଆପଣ ମୋଠାରୁ ଅଭିଳଷିତ ବର ଗ୍ରହଣ କରି ମୋତେ ବିଦାୟ ଦିଅନ୍ତୁ ।' ଗରୁଡ଼ଙ୍କ କଥାରେ ଉଦାରଚରିତ ଜୀମୂତବାହନ ବରଭିକ୍ଷା କଲେ, 'ଆପଣ କେବଳ ପଶ୍ଚାତ୍ତାପ ନକରି ସର୍ପମାନଙ୍କୁ ଆଉ ଭକ୍ଷଣ କରିବେ ନାହିଁ ବୋଲି ପ୍ରତିଜ୍ଞା କରନ୍ତୁ । ଯେଉଁ ସର୍ପମାନଙ୍କୁ ଆପଣ ପୂର୍ବରୁ ଭକ୍ଷଣ କରିଛନ୍ତି ସେମାନଙ୍କ ଅସ୍ଥି ସବୁ ଏଠାରେ ସ୍ତୂପୀକୃତ ହୋଇ ରହିଛି । ସେମାନେ ମଧ୍ୟ ଆପଣଙ୍କ ଶକ୍ତି ବଳରେ ଜୀବିତ ହୋଇଉଠନ୍ତୁ ।' ଗରୁଡ଼ ତଥାସ୍ତୁ କହି ଶାନ୍ତିପୂର୍ବକ ରହୁଥିବା ସର୍ପମାନଙ୍କୁ ଭକ୍ଷଣ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ । ତାଙ୍କ ଆଶୀର୍ବାଦ ରୂପକ ଅମୃତରେ ମୃତସର୍ପଗୁଡ଼ିକ ମଧ୍ୟ ଜୀବନଲାଭ କରିଉଠିଲେ । ଦେବତା, ନାଗ ଓ ମୁନି ଋଷିମାନଙ୍କ ଉପସ୍ଥିତିରେ ମଳୟାଚଳ ତ୍ରିଲୋକର ଶୋଭା ଧାରଣ କଲା । ଭଗବତୀ ଭବାନୀଙ୍କ କୃପାରୁ ସମଗ୍ର ବିଦ୍ୟାଧର ଲୋକରେ ଜୀମୂତବାହନଙ୍କ ଅପୂର୍ବ କୃତିତ୍ୱ ମୁହୂର୍ତ୍ତକ ମଧ୍ୟରେ ପ୍ରଚାରିତ ହୋଇଯିବା ଫଳରେ ସମସ୍ତ ବିଦ୍ୟାଧର ଅଧିପତି ସେଠାରେ ଆସି ପହଞ୍ଚିଲେ । ସେମାନଙ୍କ ମସ୍ତକ ସ୍ଥିତ ମୁକୁଟରାଶି ଜୀମୂତବାହନଙ୍କ ଚରଣ ସ୍ପର୍ଶ କଲା । ଗରୁଡ଼ ବିଦାୟ ନେଇ ପ୍ରସ୍ଥାନ କରିବା ପରେ ସେମାନେ ଜୀମୂତବାହନଙ୍କୁ ତାଙ୍କ ପରିବାର ଓ ମିତ୍ରମାନଙ୍କ ସହିତ ହିମାଳୟ ଶିଖରକୁ ନେଇଚାଲିଲେ । ସେଠାରେ ଭଗବତୀ ଭବାନୀ ତାଙ୍କୁ ସ୍ୱହସ୍ତରେ ବିଦ୍ୟାଧର ଚକ୍ରବର୍ତ୍ତୀ ପଦରେ ଅଧିଷ୍ଠିତ କଲେ ।

ଜୀମୂତବାହନ ପିତାମାତା, ମିତ୍ରାବସୁ, ମଳୟବତୀ ଏବଂ ନିଜର ମାତାଙ୍କ ସହିତ ସାକ୍ଷାତ କରି ଫେରିଆସିଥିବା ଶଂଖଚୂଡ଼ ସହିତ ବହୁକାଳ ଧରି ବିଦ୍ୟାଧର ଚକ୍ରବର୍ତ୍ତୀ

ପଦବୀ ଉପଭୋଗ କଲେ । ନିଜର ଅଲୌକିକ କାର୍ଯ୍ୟଦ୍ୱାରା ଲାଭ କରିଥିବା ବହୁମୂଲ୍ୟ ରତ୍ନରାଶି ତାଙ୍କ ରାଜ୍ୟକୁ ଅଧିକରୁ ଅଧିକ ସମୃଦ୍ଧ କରିବାକୁ ଲାଗିଲା ।''

ବେତାଳ ଏହିପରି ଉଦାର ଓ ରସାଳ କଥାଟି ଶୁଣାଇ ପ୍ରଶ୍ନ କଲା, 'ରାଜା ଏବେ କହ, ଶଂଖଚୂଡ଼ ଓ ଜୀମୂତବାହନଙ୍କ ମଧ୍ୟରୁ କିଏ ଅଧିକ ସତ୍ତ୍ୱଶାଳୀ ? ପୂର୍ବର ଅଭିଶାପ କଥା ଭୁଲିଯାଅ ନାହିଁ ।'

ବେତାଳର କଥା ଶୁଣି ରାଜା ତ୍ରିବିକ୍ରମସେନ ଅଭିଶାପ ଭୟରେ ମୌନତା ଭଙ୍ଗ କଲେ । ଧୀରସ୍ଥିର ଭାବରେ ସେ କହିଲେ, 'ଜୀମୂତବାହନ ଯାହା କିଛି କଲେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ବହୁଜନ୍ମର ପୁଣ୍ୟ ପ୍ରଭାବରୁ ସେ ବୋଧିସତ୍ତ୍ୱଙ୍କ ଅଂଶ ରୂପେ ଜନ୍ମଗ୍ରହଣ କରିଥିଲେ । ତେଣୁ ଶଂଖଚୂଡ଼ ହିଁ ପ୍ରଶଂସାର ପାତ୍ର । ସେ ମୃତ୍ୟୁମୁଖରୁ ବଞ୍ଚିଯାଇଥିଲା, ତା'ର ଶତ୍ରୁ ନିକଟରେ ଅନ୍ୟଜଣେ କେହି ନିଜ ଶରୀର ସମର୍ପଣ କରିଦେଇଥିଲା । ଗରୁଡ଼ ମଧ ତା' ପରିବର୍ତ୍ତେ ଅନ୍ୟକୁ ଧରି ଦୂରକୁ ଚାଲିଯାଇଥିଲା । ସେ ଚାହିଁଥିଲେ ଘରକୁ ଫେରିଯାଇ ପାରିଥାନ୍ତା । କିନ୍ତୁ ତାହା ନକରି ଶଂଖଚୂଡ଼ ଜୀମୂତବାହନଙ୍କୁ ଅନୁସରଣ କରି ଗରୁଡ଼ ନିକଟରେ ଯାଇ ପହଞ୍ଚିଛି ଏବଂ ନିଜ ଶରୀର ସମର୍ପଣ କରିବାପାଇଁ ପ୍ରସ୍ତୁତ ହୋଇଛି ।'

ରାଜାଙ୍କ କଥାଶୁଣି ବେତାଳ ସ୍ୱସ୍ଥାନକୁ ଫେରିଗଲା । ରାଜା ପୂର୍ବପରି ତା'ର ପଶ୍ଚାଦ୍ଧାବନ କଲେ ।

# ଚତୁର୍ବିଂଶ ତରଙ୍ଗ

## ସପ୍ତଦଶ ବେତାଳ : ଉନ୍ମାଦିନୀ କଥା

ରାଜା ତ୍ରିବିକ୍ରମସେନ ଶିଂଶପା ବୃକ୍ଷ ଶାଖାରେ ବେତାଳକୁ ଦେଖି ତାକୁ ପୁଣି ସ୍କନ୍ଧ ଉପରକୁ ଉଠାଇ ଆଣିଲେ । ରାତ୍ରିର ଅନ୍ଧକାରରେ ତାଙ୍କର ଯାତ୍ରା ପୁଣି ଆରମ୍ଭ ହେଲା । ବେତାଳ ସ୍କନ୍ଧ ଉପରେ ବସି ପୂର୍ବପରି ରାଜାଙ୍କୁ କହିଲା, ''ରାଜନ୍, ପଥଶ୍ରାନ୍ତି ଦୂର କରିବାପାଇଁ ଅନ୍ୟ ଗୋଟିଏ ଗଳ୍ପ କହୁଛି, ଶୁଣ—

ଗଙ୍ଗା କୂଳରେ କନକପୁର ନାମରେ ଏକ ନଗର ଥିଲା । ତାହା ଧାର୍ମିକ ନାଗରିକମାନଙ୍କ ଆବାସସ୍ଥଳୀ ଥିବା ଯୋଗୁଁ କଳି ତା ମଧ୍ୟରେ ପ୍ରବେଶ କରିବା ସମ୍ଭବ ହେଉନଥାଏ । ସେଠାରେ ଯଶୋଧନ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ବାସ୍ତବରେ ଥିଲେ ଯଶୋଧନ । ସମୁଦ୍ର ତଟବର୍ତ୍ତୀ ପର୍ବତଶ୍ରେଣୀ ବିକ୍ଷୁବ୍ଧ ମହାସାଗରଠାରୁ ପୃଥିବୀକୁ ରକ୍ଷା କରିବା ପରି ସେ ନିଜ ରାଜ୍ୟକୁ ରକ୍ଷା କରୁଥାନ୍ତି । ଚନ୍ଦ୍ରମା ପରି ସେ ଯେପରି ପ୍ରଜାମାନଙ୍କର ଆନନ୍ଦଦାୟକ ଥିଲେ ସେହିପରି ସୂର୍ଯ୍ୟଙ୍କ ପରି ପ୍ରଚଣ୍ଡ ପରାକ୍ରମୀ ମଧ୍ୟ ଥିଲେ । ଶାସ୍ତ୍ରାର୍ଥରେ ନୁହେଁ କିନ୍ତୁ ପରନିନ୍ଦାରେ ସେ ମୂର୍ଖ ଥିଲେ । ତାଙ୍କ ରାଜକୋଷ ଓ ସେନାବାହିନୀ ଦରିଦ୍ର ନଥିଲେ, କିନ୍ତୁ ରାଜା ଥିଲେ ଦୁର୍ଗୁଣରେ ଦରିଦ୍ର । ପ୍ରଜାମାନେ ତାଙ୍କ ଗୁଣଗାନ କରି କହୁଥିଲେ ଯେ ତାଙ୍କ ରାଜା ପାପ ପ୍ରତି ଅତ୍ୟନ୍ତ ଭୀରୁ, ଅତ୍ୟନ୍ତ ଯଶଲୋଭୀ, ପରସ୍ତ୍ରୀମାନଙ୍କ ପାଇଁ ଜଣେ ନପୁଂସକ କିନ୍ତୁ ବୀରତ୍ୱ, ଉଦାରତା ତଥା ଶୃଙ୍ଗାର ପ୍ରତି ଅତ୍ୟନ୍ତ ଆସକ୍ତ । ରାଜାଙ୍କ ରାଜଧାନୀରେ ଜଣେ ମହାବଣିକ ବାସ କରୁଥିଲେ । ଉନ୍ମାଦିନୀ ନାମକ ତାଙ୍କରି କନ୍ୟା ରୂପବିଭବରେ ଅତୁଳନୀୟ ଥିଲା । ତାର ରୂପ ସମ୍ପଦ ଦେଖି ପ୍ରତ୍ୟେକ ଦର୍ଶକ ଉନ୍ମତ୍ତ ହୋଇଉଠୁଥିଲେ । ସ୍ୱୟଂ କାମଦେବ ମଧ୍ୟ ତା'ର ସୌନ୍ଦର୍ଯ୍ୟରେ ଥିଲେ ବିଚଳିତ ।

ସମୟକ୍ରମେ ଉନ୍ମାଦିନୀ ବିବାହଯୋଗ୍ୟ ବୟସରେ ଉପନୀତ ହେଲା । ନୀତିନିଷ୍ଠ ପିତା କନ୍ୟାର ବିବାହ ନିମିତ୍ତ ରାଜା ଯଶୋଧନଙ୍କ ନିକଟକୁ ଯାଇ ନିବେଦନ କଲେ, 'ମହାରାଜ, ମୋର ତ୍ରିଲୋକ ସୁନ୍ଦରୀ କନ୍ୟା ଉନ୍ମାଦିନୀର ବିବାହ ଦେବାପାଇଁ ମୁଁ ଚାହୁଁଛି । କିନ୍ତୁ ଆପଣଙ୍କୁ ନିବେଦନ ନକରି ଏହା କରିବା ମୋ ପକ୍ଷରେ ଉଚିତ ନୁହେଁ । ସମଗ୍ର ପୃଥିବୀରେ ଆପଣ ହିଁ ସମସ୍ତ ରତ୍ନର ଅଧିକାରୀ । ତେଣୁ ମୋର କନ୍ୟାକୁ ସ୍ୱୀକାର କରି ଆପଣ ମୋତେ ଅନୁଗୃହୀତ କରନ୍ତୁ କିମ୍ବା ଅସ୍ୱୀକାର କରୁଛନ୍ତି ବୋଲି ପ୍ରକାଶ କରନ୍ତୁ ।'

ବଣିକଙ୍କ କଥା ଶୁଣି ରାଜା କନ୍ୟାଟିର ଶୁଭାଶୁଭ ଲକ୍ଷଣ ଜାଣିବାପାଇଁ ବ୍ରାହ୍ମଣମାନଙ୍କୁ ପ୍ରେରଣ କଲେ । କନ୍ୟାଟିର ରୂପ ଓ ଲକ୍ଷଣ ଦେଖି ସେମାନଙ୍କର ଚିତ୍ତ ଚଞ୍ଚଳ ହୋଇଉଠିଲା । କିନ୍ତୁ ଶୀଘ୍ର ପ୍ରକୃତିସ୍ଥ ହୋଇ ସେମାନେ ବିଚାର କଲେ ଯେ ଯଦି ରାଜା କନ୍ୟାଟିକୁ ବିବାହ କରନ୍ତି ତେବେ ଏହାପ୍ରତି ଆସକ୍ତ ରହି ତାଙ୍କ ପକ୍ଷରେ ରାଜ୍ୟ ପରିଚାଳନା କରିବା ଅସମ୍ଭବ ହୋଇପଡ଼ିବ । ତେଣୁ ରାଜ୍ୟର ମଙ୍ଗଳପାଇଁ ଆମେ କନ୍ୟାଟି ସୁଲକ୍ଷଣା ବୋଲି ରାଜାଙ୍କ ନିକଟରେ ପ୍ରକାଶ କରିବା ଉଚିତ ନୁହେଁ । ଏହିପରି ବିଚାରକରି ସେମାନେ କନ୍ୟାଟି କୁଲକ୍ଷଣୀ ବୋଲି ରାଜାଙ୍କ ନିକଟରେ ମିଥ୍ୟା ନିବେଦନ କଲେ । ଫଳରେ ରାଜା ବଣିକଙ୍କୁ ଜଣାଇଦେଲେ ଯେ କନ୍ୟାଟିକୁ ସ୍ୱୀକାର କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

ବଣିକ ଫେରିଆସି ରାଜାଙ୍କ ଅନୁମତି କ୍ରମେ ଉନ୍ମାଦିନୀକୁ ସେନାପତି ବଳଧରଙ୍କ ସହିତ ବିବାହ ଦେଲେ । ଉନ୍ମାଦିନୀ ପତି ସହିତ ଆନନ୍ଦରେ ବାସ କରୁଥିଲେ ମଧ୍ୟ ରାଜା ତାକୁ କୁଲକ୍ଷଣୀ କହି ଅସ୍ୱୀକାର କରିବାର ଅପମାନ ଭୁଲି ନଥାଏ ।

ସମୟକ୍ରମେ ବସନ୍ତ ଋତୁ ସମାଗତ ହେଲା । କୁନ୍ଦକଢ଼ି ରୂପ ଦନ୍ତପଂକ୍ତି ବିଶିଷ୍ଟ ତଥା ପଦ୍ମବନକୁ ବିମଥିତ କରୁଥିବା ହେମନ୍ତ ଋତୁ ରୂପକ ହସ୍ତୀକୁ ପରାଭୂତ କରି ଋତୁ ବସନ୍ତ ଏକ ଉନ୍ମତ୍ତ ସିଂହ ପରି ମନେହେଉଥାଏ । ପୁଷ୍ପମଞ୍ଜରୀ ସବୁ ତା'ର କେଶର ଏବଂ ଆମ୍ର ମୁକୁଳ ସବୁ ତା'ର ନଖ ପଂକ୍ତି ପରି ଜଣାଯାଉଥାଏ । ବସନ୍ତ ଉପବନ ମଧ୍ୟରେ କ୍ରୀଡ଼ା କରୁଥିବା ଅବସରରେ ରାଜା ଯଶୋଧନ ବସନ୍ତର ଏହି ଅପୂର୍ବ ଉତ୍ସବ ଦେଖିବାପାଇଁ ହସ୍ତୀ ପୃଷ୍ଠରେ ବାହାରିଲେ । ରାଜାଙ୍କ ରୂପରେ କୁଳସ୍ତ୍ରୀମାନଙ୍କ ଚିତ୍ତବୃତ୍ତି ବିଚଳିତ ହେବାର ସମ୍ଭାବନା ଦୂର କରିବାପାଇଁ ଦୁନ୍ଦୁଭି ବାଦନ କରାଗଲା । ଉନ୍ମାଦିନୀ ପରିତ୍ୟକ୍ତା ହେବା ଅପମାନର ପ୍ରତିଶୋଧ ନେବାପାଇଁ ନିଜ ବାସଭବନର ବଡ଼ଭୀ ଉପରୁ ନିଜ ପ୍ରତି ରାଜାଙ୍କର ଦୃଷ୍ଟି ଆକର୍ଷଣ କଲା ।

ରାଜା ଉନ୍ମାଦିନୀକୁ ଦେଖିବା ମାତ୍ରେ ତାଙ୍କ ହୃଦୟରେ କାମାଗ୍ନି ପ୍ରଜ୍ୱଳିତ ହୋଇଉଠିଲା । ମଳୟାନିଳର ସ୍ପର୍ଶରେ ତାହା ଅଧିକରୁ ଅଧିକତର ଉଜ୍ଜ୍ୱଳ ଓ ଉତ୍ତପ୍ତ ହେବାକୁ ଲାଗିଲା । କାମଦେବଙ୍କ ବିଜୟାସ୍ତ୍ର ତୁଲ୍ୟ ଉନ୍ମାଦିନୀର ସୌନ୍ଦର୍ଯ୍ୟ ରାଜାଙ୍କ ହୃଦୟରେ ଗଭୀର କ୍ଷତ ସୃଷ୍ଟିକରି ତାଙ୍କୁ ମୁହୂର୍ତ୍ତକ ମଧ୍ୟରେ ସଂଜ୍ଞାହୀନ କରିଦେଲା । ଅନୁଚରମାନେ ତାଙ୍କୁ ରାଜପ୍ରାସାଦକୁ ନେଇଆସିଲେ । ସଂଜ୍ଞା ଲାଭ କରି ରାଜା ଜାଣିବାକୁ ପାଇଲେ ଯେ ଉନ୍ମାଦିନୀ ହେଉଛି ସେହି କନ୍ୟା ଯାହାକୁ ରାଜା ଏକଦା ଅସ୍ୱୀକାର କରିଥିଲେ । ଯେଉଁ ବ୍ରାହ୍ମଣମାନେ ତାକୁ କୁଲକ୍ଷଣୀ ବୋଲି ଜଣାଇଥିଲେ ରାଜା ସେମାନଙ୍କୁ ଦେଶାନ୍ତର ଦଣ୍ଡରେ ଦଣ୍ଡିତ କଲେ । ସେ ଦିନକୁଦିନ ଉନ୍ମାଦିନୀର ଚିନ୍ତାରେ ଅଧିକତର ଉତ୍କଣ୍ଠିତ ହୋଇ ଉଠୁଥାନ୍ତି । ଚନ୍ଦ୍ର, ହସ୍ତୀ ପ୍ରଭୃତିକୁ ଉପାଲମ୍ଭ କରି ଚିନ୍ତା କରୁଥାନ୍ତି, 'ଜଡ଼ାତ୍ମା (ଶୀତଳ) ଚନ୍ଦ୍ର କେଡ଼େ ନିର୍ଲଜ୍ଜ । ସମଗ୍ର ବିଶ୍ୱ ଜନତାର ଆନନ୍ଦ ସମ୍ପାଦନ କରୁଥିବା ମୁଖମଣ୍ଡଳର ଉପସ୍ଥିତିରେ ସୁଦ୍ଧା ସେ ପ୍ରତିଦିନ ନିଜ ରୂପ ପ୍ରଦର୍ଶନ କରୁଛି । ଏହାର ପୀନ ଓ ଉନ୍ନତ ସ୍ତନମଣ୍ଡଳ ସ୍ୱର୍ଣ୍ଣକଳଶ କିମ୍ବା ଗଜକୁମ୍ଭ ସହିତ ତୁଳନୀୟ ନୁହେଁ । ପ୍ରଥମଟି କଠୋର ଓ ଦ୍ୱିତୀୟଟି କର୍କଶ । କଟି ଅଳଙ୍କାର ଦ୍ୱାରା ସୁଶୋଭିତ ଏହାର ଜଘନ ହସ୍ତୀ ଶାବକର ଶୁଣ୍ଢ ତୁଲ୍ୟ କାହାକୁ ବା ପ୍ରଲୁବ୍ଧ ନ କରିବ ।'

ଉନ୍ମାଦିନୀର ଚିନ୍ତାରେ ରାଜା କ୍ରମେ କ୍ରମେ କ୍ଷୀଣ ଓ ଦୁର୍ବଳ ହେବାକୁ ଲାଗିଲେ । ଲଜ୍ଜାବଶତଃ ସେ ନିଜର ମନୋବେଦନା ଗୁପ୍ତ ରଖିଥିଲେ ମଧ୍ୟ ବିଶ୍ୱସ୍ତ ଅନୁଚରମାନଙ୍କ ଠାରୁ ତାହା ଗୋପନ ରଖିପାରିଲେ ନାହିଁ । ବାରମ୍ବାର ଜିଜ୍ଞାସା କ୍ରମେ ରାଜା ନିଜ ବେଦନାର କାରଣ ବିଶ୍ୱସ୍ତମାନଙ୍କ ନିକଟରେ ପ୍ରକାଶ କଲେ । ରାଜାଙ୍କୁ ସାନ୍ତ୍ୱନା ଦେଇ ସମସ୍ତେ ଏକ ସ୍ୱରରେ କହିଲେ, 'ମହାରାଜ, ଏଥିପାଇଁ ଏତେ କଷ୍ଟ ସହ୍ୟ କରିବା ଅନାବଶ୍ୟକ । ସେ ଆପଣଙ୍କର ଅଧୀନା । ଆପଣ ତାକୁ କାହିଁକି ନିଜର କରିନେଉ ନାହାଁନ୍ତି ।' କିନ୍ତୁ ଧର୍ମାତ୍ମା ରାଜା ସେମାନଙ୍କ କଥାରେ ସମ୍ମତ ହେଲେ ନାହିଁ ।

ସେନାପତି ବଳଧର ଥିଲେ ଏକାନ୍ତ ରାଜଭକ୍ତ । ରାଜାଙ୍କ ବେଦନାର କାରଣ ତାଙ୍କ ଶ୍ରୁତିଗୋଚର ହୁଅନ୍ତେ ସେ ତତ୍‌କ୍ଷଣାତ୍ ଆସି ରାଜାଙ୍କ ପଦତଳେ ନମ୍ର ନିବେଦନ କଲେ, 'ଦେବ, ଆପଣଙ୍କ ଦାସର ସ୍ତ୍ରୀ ଆପଣଙ୍କର ହିଁ ଦାସୀ । ସେ ପରସ୍ତ୍ରୀ ନୁହେଁ । ମୁଁ ନିଜେ ତାକୁ ଆପଣଙ୍କ ପଦତଳେ ଭେଟିଦେଉଛି । ଆପଣ ତାକୁ ସ୍ୱୀକାର କରନ୍ତୁ କିମ୍ବା ପ୍ରଭୁ, ମୁଁ ତାକୁ ନେଇ ଦେବମନ୍ଦିରରେ ଛାଡ଼ି ଦେଉଛି । ସେ ଯେତେବେଳେ ଦେବଦାସୀ ହୋଇଯିବ ସେତେବେଳେ ଆପଣ ତାକୁ ଗ୍ରହଣ କଲେ କୌଣସି ଦୋଷ ହେବନାହିଁ ।'

ନିଜର ସେନାପତିଠାରୁ ଏ ପ୍ରକାର ନିବେଦନ ଶୁଣି ରାଜା ଆନ୍ତରିକ କ୍ରୋଧ ପ୍ରକାଶ ପୂର୍ବକ କହିଲେ, 'ରାଜା ହୋଇ ମୁଁ ଏପରି ଅନ୍ୟାୟ ଓ ଅଧର୍ମ କାର୍ଯ୍ୟ କିପରି କରିବି ? ମୁଁ ଯଦି ମର୍ଯ୍ୟାଦା ଲଙ୍ଘନ କରେ, ତେବେ କେଉଁ ପ୍ରଜା ନିଜ କର୍ତ୍ତବ୍ୟ ପଥରେ ସ୍ଥିର ରହିବ । ମୋର ଅନ୍ତରଙ୍ଗ ଭକ୍ତ ହୋଇ ମଧ୍ୟ ତୁମେ ମୋତେ ଏପରି ପାପକାର୍ଯ୍ୟରେ ପ୍ରବୃତ୍ତ ହେବାପାଇଁ କିପରି ଉତ୍ସାହିତ କରୁଛ ? ଏହା ମୋତେ କ୍ଷଣିକ ସୁଖ ଦେଇପାରେ କିନ୍ତୁ ପରଲୋକରେ ଏହା ମୋପାଇଁ ଅତ୍ୟନ୍ତ ଦୁଃଖର କାରଣ ହେବ । ତୁମେ ଯଦି ତୁମର ଧର୍ମପତ୍ନୀକୁ ତ୍ୟାଗ କର ତେବେ ମୁଁ ତୁମକୁ କ୍ଷମାଦେବି ନାହିଁ । କେଉଁ ରାଜା ବା ଏପରି ଅଧର୍ମ ସହ୍ୟ କରିବ । ତେଣୁ ମୃତ୍ୟୁ ହିଁ ମୋପାଇଁ ଶ୍ରେୟସ୍କର ।' ଏହାକହି ଯଶୋଧନ ସେନାପତିଙ୍କ ଆଗ୍ରହ ଏଡ଼ାଇ ଦେଲେ । ପ୍ରକୃତରେ ଉତ୍ତମ ସତ୍ୱଶୀଳ ବ୍ୟକ୍ତିମାନେ ଜୀବନ ଉତ୍ସର୍ଗ କରିଦେଇପାରନ୍ତି କିନ୍ତୁ ସତ୍‌ପଥ ତ୍ୟାଗ କରନ୍ତି ନାହିଁ ।

ତ୍ୟଜନ୍ତ୍ୟୁତ୍ତମସତ୍ତ୍ୱା ହି ପ୍ରାଣାନପି ନ ସତ୍‌ପଥମ୍ ।

ଏହାପରେ ସମଗ୍ର ନଗର ଓ ରାଜ୍ୟବାସୀ ସେନାପତିଙ୍କ ପ୍ରାର୍ଥନା ରକ୍ଷା କରିବାପାଇଁ ରାଜାଙ୍କୁ ନିବେଦନ କଲେ । କିନ୍ତୁ ରାଜାଙ୍କ ପ୍ରତିଜ୍ଞା ଅଟଳ । ଦୃଢ଼ନିଶ୍ଚୟ ରାଜା ଏ ସମ୍ପର୍କରେ କାହାରି ମନ୍ତ୍ରଣା ଗ୍ରହଣ କଲେନାହିଁ । ତାଙ୍କ ଶରୀର ଧୀରେଧୀରେ କାମଜ୍ୱରରେ କ୍ଷୀଣ ହେବାକୁ ଲାଗିଲା । କିଛିଦିନ ପରେ ସେ ଶରୀର ତ୍ୟାଗ କଲେ । କିନ୍ତୁ ତାଙ୍କର ଯଶଃ ଶରୀର ଅମର ରହିଲା । ରାଜାଙ୍କ ମୃତ୍ୟୁରେ ସେନାପତି ବଳଧର ଶୋକାବେଗ ସହ୍ୟ କରିନପାରି ଦେହତ୍ୟାଗ କଲେ । ପ୍ରକୃତରେ ଭକ୍ତମାନଙ୍କର କାର୍ଯ୍ୟପ୍ରଣାଳୀ ବଡ଼ ବିଚିତ୍ର ।''

ଭକ୍ତାନାମନିର୍ବାଚ୍ୟଂ ହି ଚେଷ୍ଟିତମ୍ ।

ବେତାଳ ରାଜା ତ୍ରିବିକ୍ରମସେନଙ୍କୁ ଏପରି ଏକ ବିସ୍ମୟକର କଥା ଶୁଣାଇ ପ୍ରଶ୍ନ କଲା, 'ରାଜା, ବର୍ତ୍ତମାନ କୁହ ସେନାପତି ଓ ରାଜାଙ୍କ ମଧ୍ୟରୁ କିଏ ଅଧିକ ସତ୍ତ୍ୱବାନ୍ ? ପ୍ରକୃତ ଉତ୍ତର ଜାଣି ମୌନ ରହିଲେ ତୁମର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।'

ବେତାଳର ପ୍ରଶ୍ନରେ ରାଜା ମୁହଁ ଖୋଲିବା ପାଇଁ ବାଧ ହେଲେ । କହିଲେ, 'ଉଭୟଙ୍କ ମଧ୍ୟରେ ରାଜା ଯେ ଅଧିକ ସତ୍ତ୍ୱବାନ୍, ଏଥିରେ ସନ୍ଦେହ କଣ ଅଛି ।'

ରାଜାଙ୍କ ଉତ୍ତରରେ ବେତାଳ ଯୁକ୍ତିକଲା, 'ରାଜନ୍, ଏମାନଙ୍କ ମଧ୍ୟରେ ସେନାପତି କାହିଁକି ଅଧିକ ସତ୍ତ୍ୱବାନ୍ ନହେବ ? ତା' ସ୍ତ୍ରୀ ଅଲୌକିକ ସୁନ୍ଦରୀ । ସେ ତା' ସହିତ

ଦୀର୍ଘଦିନ ଧରି ସୁଖଭୋଗ କରି ତା'ର ଆସ୍ୱାଦନ ସୁଖ ଜାଣିଥିଲା । ତଥାପି ପ୍ରଭୁଙ୍କ ପ୍ରତି ଭକ୍ତି ହେତୁ ସେ ନିଜର ସେହିପରି ସ୍ତ୍ରୀକୁ ଅର୍ପଣ କରିବାପାଇଁ ଆସିଥିଲା । ପୁଣି ରାଜାଙ୍କ ମୃତ୍ୟୁପରେ ସେ ମଧ୍ୟ ଅଗ୍ନିରେ ପ୍ରବେଶ କରି ପ୍ରାଣବିସର୍ଜନ କରିଥିଲା । କିନ୍ତୁ ରାଜା ତାର ଯେଉଁ ପତ୍ନୀକୁ ଅସ୍ୱୀକାର କଲେ ସେହି ନାରୀର ସମ୍ଭୋଗ ସୁଖ ସେ କଦାପି ଆସ୍ୱାଦନ କରିନାହାଁନ୍ତି ।'

ବେତାଳର କଥା ଶୁଣି ରାଜା ହସି ହସି କହିଲେ, 'ତମେ ଯାହା କହୁଛ ତାହା ଠିକ୍ କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ସେନାପତି ଉଚ୍ଚ କୁଳରେ ଜନ୍ମଗ୍ରହଣ କରିଥିଲା । ପ୍ରଭୁଙ୍କ ପ୍ରତି ଭକ୍ତିଭାବରୁ ସେ ଯାହା କରିଛି ତାହା ଅବଶ୍ୟ ଉଚିତ । କାରଣ ପ୍ରାଣପାତ କରି ମଧ୍ୟ ପ୍ରଭୁମାନଙ୍କର ଜୀବନରକ୍ଷା କରିବା ସେବକମାନଙ୍କ କର୍ତ୍ତବ୍ୟ । କିନ୍ତୁ ରାଜାମାନେ ମଦମତ୍ତ ହସ୍ତୀ ତୁଲ୍ୟ ନିରଙ୍କୁଶ । ସେମାନେ ବିଷୟସୁଖ ପ୍ରତି ଆସକ୍ତ ହେଲେ ଧର୍ମ ଓ ମର୍ଯ୍ୟାଦାର ସମସ୍ତ ଶୃଙ୍ଖଳ ଛିନ୍ନ କରିଥାନ୍ତି । ନିରଙ୍କୁଶ ରାଜାମାନଙ୍କର ବିବେକ ଅଭିଷେକ ଜଳରେ, ବନ୍ୟାଜଳରେ ସବୁକିଛି ଧୋଇହୋଇଗଲା ପରି, ଭାସିଯାଇଥାଏ । ସଞ୍ଚାଳିତ ଚାମର ବାୟୁରେ ଧୂଳି, ମଶକ ଏବଂ ମକ୍ଷିକା ସବୁ ଉଡ଼ିଗଲା ପରି ବୃଦ୍ଧମାନଙ୍କଦ୍ୱାରା ଉପଦିଷ୍ଟ ଶାସ୍ତ୍ରନୀତି ସେମାନଙ୍କ ବିବେକରୁ ଦୂର ହୋଇଯାଇଥାଏ । ଏମାନଙ୍କର ମସ୍ତକ ଉପରିସ୍ଥ ଶ୍ୱେତଛତ୍ର ସୂର୍ଯ୍ୟଙ୍କ କିରଣ ସହିତ ସମସ୍ତ ସତ୍ୟକୁ ଆଚ୍ଛାଦନ କରିଦେଇଥାଏ । ଐଶ୍ୱର୍ଯ୍ୟ ଦ୍ୱାରା ଅନ୍ଧୀଭୂତ ରାଜାମାନଙ୍କ ଚକ୍ଷୁ ଉଚିତ ମାର୍ଗ ଦେଖିପାରେ ନାହିଁ । ନହୁଷ ପ୍ରଭୃତି ରାଜା ବିଶ୍ୱବିଜୟୀ ଥିଲେ । ତଥାପି କାମମୋହିତ ହୋଇ ବହୁ ବିପତ୍ତିର ସମ୍ମୁଖୀନ ହୋଇଛନ୍ତି । ରାଜା ଯଶୋଧନ ମଧ୍ୟ ପୃଥିବୀର ଏକଛତ୍ର ଚକ୍ରବର୍ତ୍ତୀ ଥିଲେ । ତଥାପି ସେ ଲକ୍ଷ୍ମୀତୁଲ୍ୟ ଚଞ୍ଚଳା ଉନ୍ମାଦିନୀର ରୂପରେ ବିମୋହିତ ହେଲେ ନାହିଁ । ଏହି ଧର୍ମାତ୍ମା ଏବଂ ଧୀର ସ୍ୱଭାବ ରାଜା ଜୀବନକୁ ବିସର୍ଜନ କଲେ କିନ୍ତୁ ଅନୁଚିତ ମାର୍ଗରେ ପାଦ ଦେଲେ ନାହିଁ । ଏଥିପାଇଁ ମୁଁ ରାଜାଙ୍କୁ ଉଭୟଙ୍କ ମଧ୍ୟରେ ଅଧିକ ସତ୍ତ୍ୱବାନ୍ ବୋଲି କହୁଛି ।'

ରାଜାଙ୍କ ମୌନ ଭଙ୍ଗ ହୁଅନ୍ତେ ବେତାଳ ନିଜ ମାୟା ପ୍ରଭାବରେ ପୁଣି ସ୍ୱସ୍ଥାନକୁ ଫେରିଗଲା । ରାଜା ପୁଣି ତାକୁ ପାଇବାପାଇଁ ଶୀଘ୍ରତା ପୂର୍ବକ ତାର ଅନୁଗମନ କ'ଲେ । ବାସ୍ତବରେ ମହାତ୍ମାମାନେ କୌଣସି କାର୍ଯ୍ୟ ଆରମ୍ଭ କଲେ, ତାହା ଯେତେ କଠିନ ହେଉନା କାହିଁକି ଶେଷ ନକରି ଛାଡ଼ନ୍ତି ନାହିଁ ।

**ଆରେଭେ ହି ସୁଦୁଷ୍କରେଽପି ମହତାଂ ମଧ୍ୟେ ବିରାମଃ କୁତଃ ।**

# ପଞ୍ଚବିଂଶ ତରଙ୍ଗ

## ଅଷ୍ଟାଦଶ ବେତାଳ : ବ୍ରାହ୍ମଣ କୁମାର କଥା

ସେହି ଘନ ଅନ୍ଧକାର ରାତ୍ରିରେ ରାଜା ତ୍ରିବିକ୍ରମସେନ ନିର୍ଭୟ ଚିତ୍ତରେ ପୁଣି ସେହି ଶିଂଶପା ବୃକ୍ଷ ମୂଳରେ ଯାଇ ପହଞ୍ଚିଲେ । ଶ୍ମଶାନ ଚିତାଗ୍ନି ଓ ମାଂସଭକ୍ଷୀ ଭୂତପ୍ରେତଙ୍କଦ୍ୱାରା ବିଭୀଷିକାମୟ ଦେଖାଯାଉଥିଲା । ପ୍ରେତମାନଙ୍କର ପ୍ରଲମ୍ବିତ ଜିହ୍ୱାସବୁ ଚିତାଗ୍ନିର ଅଗ୍ନିଶିଖା ପରି ଲେଲିହାନ ମନେହେଉଥିଲା । ରାଜା ସେଠାରେ ବହୁ ପ୍ରେତ ଶରୀର ଝୁଲୁଥିବା ଦେଖିବାକୁ ପାଇଲେ । ସବୁଗୁଡ଼ିକ ଏକାପରି ଦେଖାଯାଉଥାନ୍ତି । ପ୍ରତ୍ୟେକ ଶବ ମଧ୍ୟରେ ବେତାଳମାନଙ୍କ ସ୍ଥିତି ଲକ୍ଷ୍ୟ କରି ହେଉଥାଏ । ଏସବୁ ଦେଖି ଦୃଢ଼ଚିତ୍ତ ତ୍ରିବିକ୍ରମସେନ ଭୟଭୀତ ନହୋଇ ଚିନ୍ତା କରିବାକୁ ଲାଗିଲେ ଯେ ଏସବୁ ତ ବଡ଼ ଆଶ୍ଚର୍ଯ୍ୟର କଥା । ସେହି ମାୟାବୀ ବେତାଳ ତାଙ୍କ ସମୟ ନଷ୍ଟ କରିବାପାଇଁ କ'ଣ ଏସବୁ କରୁଛି ? ଯଦି ମୋର କାର୍ଯ୍ୟ ସମ୍ପୂର୍ଣ୍ଣ ହେବା ପୂର୍ବରୁ ରାତ୍ରି ଶେଷ ହୋଇଯାଏ ତେବେ ମୋତେ ଅଗ୍ନିରେ ପ୍ରବେଶ କରିବାକୁ ପଡ଼ିବ । ଉପହାସର ପାତ୍ର ହେବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର । ଏତେଗୁଡ଼ିଏ ଶବ ମଧ୍ୟରୁ କେଉଁଟି ତାଙ୍କର ଈପ୍ସିତ ଶବ ଜାଣିବା ସମ୍ଭବ ହେଉନାହିଁ । ରାଜା ଏପରି ଚିନ୍ତା କରୁଥିବା ବେଳେ ବେତାଳ ରାଜାଙ୍କୁ ସତ୍ତ୍ୱଶୀଳ ଓ ଦୃଢ଼ମନା ଦେଖି ସନ୍ତୁଷ୍ଟ ହେଲା । ସେ ତା'ର ମାୟା ପ୍ରତ୍ୟାହୃତ କରିନେବାରୁ ରାଜା ସେଠାରେ ଗୋଟିଏ ମାତ୍ର ଶବ ମଧ୍ୟରେ ବେତାଳକୁ ଦେଖିବାକୁ ପାଇଲେ । ବୃକ୍ଷ ଶାଖାରୁ ଓହ୍ଲାଇ ଆଣି ରାଜା ତାକୁ ସ୍କନ୍ଧରେ ଧାରଣପୂର୍ବକ ପୁଣି ଲକ୍ଷ୍ୟ ସ୍ଥଳ ପ୍ରତି ଅଗ୍ରସର ହେଲେ । ରାଜାଙ୍କ ନିର୍ଭୀକତା ଦେଖି ବେତାଳ ପୁଣି କହିବା ଆରମ୍ଭ କଲା—

''ରାଜା, ବଡ଼ ଆଶ୍ଚର୍ଯ୍ୟର କଥା, ତୁମେ ଟିକିଏ ବି ବିଚଳିତ ହେଉନାହଁ ! ତେବେ ମୋଠାରୁ ଏହି କଥାଟି ଶୁଣ—

ଉଜ୍ଜୟିନୀ ନାମରେ ଏକ ନଗରୀ ଅଛି । ନାଗପୁରୀ ଭୋଗବତୀ ଏବଂ ଦେବପୁରୀ ଅମରାବତୀ ପରେ ଉଜ୍ଜୟିନୀ ତତ୍ତୁଲ୍ୟ ଏକ ତୃତୀୟ ନଗରୀ । ହିମାଳୟକନ୍ୟା ପାର୍ବତୀଙ୍କର କଠୋର ତପସ୍ୟାରେ ପ୍ରୀତ ହୋଇ ମହାଯୋଗୀ ଶିବ ତାଙ୍କୁ ବିବାହ କଲାପରେ ଏହି ଅସାଧାରଣ ନଗରୀକୁ ହିଁ ନିଜର ବାସସ୍ଥଳୀ ରୂପେ ନିର୍ବାଚନ କରିଥିଲେ । ବିଷୟ ଭୋଗ ଏବଂ ପବିତ୍ରତା ଉଭୟ ପାଇଁ ଏଥିରେ ଯଥେଷ୍ଟ ସୁଯୋଗ ରହିଅଛି । ଏଠାରେ ସ୍ତବ୍ଧତା ଓ କର୍କଶତା କେବଳ ଉତ୍ତମ ଲକ୍ଷଣଯୁକ୍ତା ନାରୀମାନଙ୍କ ସ୍ତନରେ, ବକ୍ରତା ସେମାନଙ୍କ ଭ୍ରୂଯୁଗଳରେ ଏବଂ ଚପଳତା ସେମାନଙ୍କ ଚକ୍ଷୁରେ କେବଳ ଦେଖିବାକୁ ମିଳୁଥିଲା । ସେହିପରି ତମ ରାତ୍ରିରେ, ବକ୍ରତା କବିମାନଙ୍କ ଉକ୍ତିରେ, ମଦହସ୍ତୀମାନଙ୍କ ଗଣ୍ଡସ୍ଥଳରେ, ଜଡ଼ତା (ଶୀତଳତା) ମୋତି, ଚନ୍ଦ୍ର ଏବଂ ଚନ୍ଦନରେ କେବଳ ଦେଖାଯାଏ ।

ଏହି ଉଜ୍ଜୟିନୀ ନଗରୀରେ ଚନ୍ଦ୍ରପ୍ରଭ ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ବ୍ରାହ୍ମଣ ଦେବସ୍ୱାମୀ ତାଙ୍କର ବିଶ୍ୱସ୍ତ ସଚିବ । ସେ ଅତ୍ୟନ୍ତ ବିତ୍ତଶାଳୀ ଥିଲେ ଏବଂ ବହୁ ଯାଗଯଜ୍ଞ କରି ବହୁ ପୁଣ୍ୟର ଅଧିକାରୀ ମଧ୍ୟ ହୋଇପାରିଥିଲେ ।

ଯଥା ସମୟରେ ଦେବସ୍ୱାମୀ ଏକ ପୁତ୍ରର ଜନକ ହେଲେ । ପିତା ତା'ର ନାମ ରଖିଥିଲେ ଚନ୍ଦ୍ରସ୍ୱାମୀ । ପିତାଙ୍କ ତତ୍ତ୍ୱାବଧାନରେ ଚନ୍ଦ୍ରସ୍ୱାମୀ ଶୈଶବରୁ ହିଁ ବହୁଶାସ୍ତ୍ର ଅଧ୍ୟୟନ କରିଥିଲେ । କିନ୍ତୁ ଯୌବନରେ ହଠାତ୍ ସେ ଦ୍ୟୂତବିଳାସୀ ହୋଇପଡ଼ିଲେ ।

ଏକଦା ବ୍ରାହ୍ମଣ ପୁତ୍ର ଜୁଆ ଖେଳିବାର ନିଶାରେ କୌଣସି ଏକ ବିଶାଳ ଜୁଆ ଆଡ୍ଡାରେ ଯାଇ ପ୍ରବେଶ କଲେ । ବିପଦସବୁ ନିରନ୍ତର ଏହି ଦ୍ୟୂତଭବନକୁ ଚାହିଁ ରହିଥାନ୍ତି । ଫିଙ୍ଗା ଯାଉଥିବା ପଶା କାଠିଗୁଡ଼ିକ ଏହି ବିପତ୍ତିମାନଙ୍କର ଚକ୍ଷୁ । ଏମାନଙ୍କର କର୍ଣ୍ଣ କୃଷ୍ଣମୃଗ ତୁଲ୍ୟ । ସେମାନେ କହୁଥାନ୍ତି, 'ଦେଖାଯାଉ ଆଜି କିଏ ଆସି ଆମ ଜାଲରେ ପଡୁଛି ?' ଭବନ ମଧ୍ୟରୁ ଜୁଆଡ଼ିମାନଙ୍କର ମାରଧର, ପାଟିତୁଣ୍ଡର ଶବ୍ଦ ଶୁଭୁଥାଏ । ଏହାଦ୍ୱାରା ସେହି ଦ୍ୟୂତଭବନ ସତେ ଯେପରି କହୁଥାଏ, 'ଏପରି କିଏ ଅଛି, ଯାହାଠାରୁ ଆମେ ଲକ୍ଷ୍ମୀଙ୍କୁ ହରଣ କରିନପାରୁ ? ସ୍ୱୟଂ ଅଳକାପତି କୁବେର ମଧ୍ୟ ଯଦି ଏଠାକୁ ଆସନ୍ତି ତେବେ ହତଶ୍ରୀ ହୋଇ ଫେରିଯିବେ ।'

ଚନ୍ଦ୍ରସ୍ୱାମୀ ସେହି ଦ୍ୟୂତଭବନ ମଧ୍ୟରେ ଅନ୍ୟମାନଙ୍କ ସହିତ ଜୁଆ ଖେଳିବା ଆରମ୍ଭ କଲେ । ସେଥିରେ ସେ ନିଜର ପରିଧେୟ ବସ୍ତ୍ର ପର୍ଯ୍ୟନ୍ତ ହାରିଦେଲେ । ଅନ୍ୟମାନଙ୍କଠାରୁ ଧାର କରି ମଧ୍ୟ ସେ ନିଜର ଧନରାଶି ଉଦ୍ଧାର କରିପାରିଲେ ନାହିଁ । ଦ୍ୟୂତଭବନର ଅଧିକାରୀ ତା'ର ପ୍ରାପ୍ୟ ନପାଇବା ଯୋଗୁଁ ଚନ୍ଦ୍ରସ୍ୱାମୀଙ୍କୁ ତିରସ୍କାର କରିବା ସହିତ

ବହୁତ ପ୍ରହାର କଲା । ଦଣ୍ଡାଘାତରେ ଚନ୍ଦ୍ରସ୍ୱାମୀଙ୍କ ସମଗ୍ର ଶରୀର କ୍ଷତବିକ୍ଷତ ହୋଇପଡ଼ିଲା । ସେ ସେଠାରେ ହିଁ ଚେତନାଶୂନ୍ୟ ହୋଇ ମୁର୍ଦାର ପରି ପଡ଼ିଗଲେ ।

ଚନ୍ଦ୍ରସ୍ୱାମୀ ସେଠାରେ ଦୁଇ ତିନିଦିନ ଧରି ସେହିପରି ପଡ଼ି ରହିଥାନ୍ତି । ସେ ଭୂମିରୁ ଉଠିପାରୁ ନଥିବା ଦେଖି ସେହି ଦ୍ୟୂତଭବନର ଅଧିକାରୀ କ୍ରୋଧରେ ଅନ୍ୟ ଜୁଆଡ଼ିମାନଙ୍କୁ କହିଲା, 'ଇଏତ ପଥର ପାଲଟି ଗଲାଣି । ତୁମେ ଏହି ନିର୍ଜୀବ ବ୍ରାହ୍ମଣକୁ ନେଇ କୌଣସି ଅନ୍ଧକୂପ ମଧ୍ୟରେ ପକାଇଦେଇ ଆସ । ମୁଁ ତୁମମାନଙ୍କର ଧନରାଶି ଫେରାଇ ଦେବି ।' ଜୁଆଡ଼ିମାନେ ଚନ୍ଦ୍ରସ୍ୱାମୀକୁ ଉଠାଇନେଇ ଅନ୍ଧକୂପର ସନ୍ଧାନରେ ବାହାରିଲେ । ବହୁଦୂର ଯିବାପରେ ମଧ୍ୟ ଯେତେବେଳେ କୂଅଟିଏ ସେମାନଙ୍କ ଦୃଷ୍ଟିରେ ପଡ଼ିଲା ନାହିଁ ସେତେବେଳେ ଜଣେ ବୃଦ୍ଧ ଜୁଆଡ଼ି ଅନ୍ୟମାନଙ୍କୁ କହିଲା, 'ଇଏତ ପ୍ରାୟ ମରିଗଲାଣି । ପୁଣି ୟାକୁ କୂଅ ଭିତରେ ପକାଇ ଲାଭ କ'ଣ ? ଆମେ ତାକୁ ଏଠାରେ ଛାଡ଼ିଦେଇ ଫେରିଯିବା । ଅଧିକାରୀ ଯେବେ ପଚାରେ, ତେବେ ତା' କଥା ଅନୁସାରେ ଆମେ ଚନ୍ଦ୍ରସ୍ୱାମୀକୁ କୂଅରେ ଫୋପାଡ଼ି ଦେଇଛୁ ବୋଲି କହିବା ।' ବୃଦ୍ଧ କଥାରେ ସମସ୍ତେ ଚନ୍ଦ୍ରସ୍ୱାମୀକୁ ସେଠାରେ ଛାଡ଼ିଦେଇ ଫେରିଗଲେ ।

କିଛି ସମୟ ପରେ ଚନ୍ଦ୍ରସ୍ୱାମୀଙ୍କ ଚେତା ଫେରିଲା । ସେ ଉଠି ବସିଲେ । ନିକଟସ୍ଥ ଗୋଟିଏ ଶୂନ୍ୟ ଶିବମନ୍ଦିର ମଧ୍ୟରେ ପ୍ରବେଶ କରି କିଛି ସମୟ ବିଶ୍ରାମ ନେଲେ । ନିଜ ଅବସ୍ଥା ଦେଖି ତାଙ୍କର ଦୁଃଖ ହେଲା । ସେ ସରଳବିଶ୍ୱାସୀ ଥିବା ଯୋଗୁଁ ଅନ୍ୟ ଜୁଆଡ଼ିମାନେ ତାଙ୍କୁ ଠକି ଦେଇଥିବା ସେ ଜାଣିପାରିଲେ । ଉଲଗ୍ନ, ଆହତ, ଧୂଳିଧୂସରିତ ଥିବା ଯୋଗୁଁ ଦିନରେ ବାହାରକୁ ବାହାରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ପିତା, ବନ୍ଧୁବାନ୍ଧବ ଏବଂ ଶୁଭାକାଂକ୍ଷୀମାନେ ତାଙ୍କୁ ଦେଖି କ'ଣ କହିବେ, ସେକଥା ଭାବି ସେ ବ୍ୟାକୁଳ ହୋଇପଡୁଥିଲେ । ଏଣୁ ଦିବସଟି ସେହି ଶୂନ୍ୟ ମନ୍ଦିର ଭିତରେ ବିତାଇଦେଇ ରାତ୍ରିର ଅନ୍ଧକାର ଭିତରେ କିଛି ଖାଦ୍ୟପେୟର ସନ୍ଧାନ କରିବେ ବୋଲି ଭାବି ସେଠାରେ ଶୋଇରହିଲେ ।

ଦିନ ପ୍ରାୟ ଶେଷ ହେଲା । ସୂର୍ଯ୍ୟଦେବ ନିଜର କିରଣ ଜାଲକୁ ସମ୍ବରଣ କରି ଅସ୍ତାଚଳ ଅଭିମୁଖରେ ଗତି କଲେ । ଏ ସମୟରେ ଜଣେ ମହାବ୍ରତୀ ତପସ୍ୱୀ ଆସି ସେଠାରେ ଉପସ୍ଥିତ ହେଲେ । ତାଙ୍କର ଉନ୍ନତ ଭସ୍ମବିଲେପିତ ଶରୀର, ବିଶାଳ ଜଟାଜୁଟ ଓ ଉଜ୍ଜ୍ୱଳ ତ୍ରିଶୂଳ ତାଙ୍କଠାରେ ସ୍ୱୟଂ ମହାଦେବଙ୍କ ଭ୍ରମ ସୃଷ୍ଟି କରୁଥିଲା । ଚନ୍ଦ୍ରସ୍ୱାମୀକୁ ଦେଖି ସେ ତା'ର ପରିଚୟ ଜିଜ୍ଞାସା କଲେ । ତା'ଠାରୁ ସମସ୍ତ ବୃତ୍ତାନ୍ତ ଶୁଣିବା ପରେ

ସେ କହିଲେ, 'ଏହା ମୋର ଆଶ୍ରମ । ଆଘାତ ଓ କ୍ଷୁଧାରେ ତୁମେ କ୍ଳାନ୍ତ ହୋଇପଡ଼ିଛ । ବର୍ତ୍ତମାନ ତୁମେ ମୋର ଅତିଥି । ଯାଅ ସ୍ନାନ କରି ଆସ । ଭିକ୍ଷା କରି ମୁଁ ଯାହା ଆଣିଛି ସେଥିରେ ମୋର ଅଂଶୀଦାର ହୁଅ ।' ଚନ୍ଦ୍ରସ୍ୱାମୀ ବିନମ୍ର ଭାବରେ କହିଲେ, 'ଭଗବନ୍, ମୁଁ ବ୍ରାହ୍ମଣ କୁମାର । ଆପଣଙ୍କ ଭିକ୍ଷାନ୍ନରେ ମୁଁ କିପରି ବା ଭାଗନେଇପାରିବି ?' ତପସ୍ୱୀ ତା କଥାରେ ସନ୍ତୁଷ୍ଟ ହେଲେ ।

ବ୍ରତଧାରୀ ତପସ୍ୱୀ ଜଣକ ଥିଲେ ଜଣେ ସିଦ୍ଧପୁରୁଷ । ଅତିଥିଙ୍କର ସତ୍କାର କରିବାପାଇଁ ସେ ମନ୍ଦିରର ଗର୍ଭଗୃହ ମଧ୍ୟରେ ପ୍ରବେଶ କଲେ । ଇଷ୍ଟ ସିଦ୍ଧି ବିଦ୍ୟାକୁ ସ୍ମରଣ କରିବା ମାତ୍ରେ ବିଦ୍ୟା ଆସି ସେଠାରେ ଉପସ୍ଥିତ ହେଲା । ତା'ର କାର୍ଯ୍ୟକ୍ରମ ସମ୍ପର୍କରେ ଜିଜ୍ଞାସା କରନ୍ତେ ତପସ୍ୱୀ ତାଙ୍କ ଅତିଥିଟିର ସତ୍କାର କରିବା ନିମିତ୍ତ ନିର୍ଦ୍ଦେଶ ଦେଲେ । ଚନ୍ଦ୍ରସ୍ୱାମୀ ଦେଖିଲେ ବିଦ୍ୟା 'ହଉ ତା ହିଁ କରୁଛି' ବୋଲି କହି ସେଠାରେ ଏକ ସୁବର୍ଣ୍ଣ ନିର୍ମିତ ନଗରୀ ସୃଷ୍ଟି କଲା । ସେଥିରେ ଥିବା ଉଦ୍ୟାନମାନଙ୍କରେ ବହୁ ଦିବ୍ୟରୂପ ଓ ଦିବ୍ୟ ଆଭରଣଯୁକ୍ତା ରମଣୀ କ୍ରୀଡ଼ା କରୁଥିଲେ । ନଗର ମଧ୍ୟରୁ କିଛି ବାରାଙ୍ଗନା ବିସ୍ମିତ ଚନ୍ଦ୍ରସ୍ୱାମୀ ନିକଟକୁ ଆସି କହିଲେ, 'ଭଦ୍ର, ଉଠନ୍ତୁ, ସ୍ନାନ ଭୋଜନ କରି ଶ୍ରାନ୍ତି ଦୂର କରନ୍ତୁ ।' ଏହାକହି ସେମାନେ ତାଙ୍କୁ ଏକ ଦିବ୍ୟ ଭବନ ମଧ୍ୟକୁ ନେଇଗଲେ । ସେଠାରେ ଉତ୍ତମ ଭାବେ ସ୍ନାନ କରାଇ ତାଙ୍କ ଶରୀରରେ ଅଙ୍ଗରାଗ ଲେପନ କଲେ । ଚନ୍ଦ୍ରସ୍ୱାମୀ ଉତ୍ତମ ବସ୍ତ୍ର ଓ ଉତ୍ତରୀୟ ପରିଧାନ କରିବା ପରେ ସେମାନେ ତାଙ୍କୁ ନେଇ ଅନ୍ୟ ଏକ ଭବନରେ ପ୍ରବେଶ କରାଇଲେ ।

ଉକ୍ତ ଭବନର ଏକ ପ୍ରକୋଷ୍ଠ ମଧ୍ୟରେ ଜଣେ ସର୍ବାଙ୍ଗସୁନ୍ଦରୀ ଯୁବତୀ ବସିଥାଏ । ସେ ରୂପ ଲାବଣ୍ୟରେ ଏହି ବାରାଙ୍ଗନାମାନଙ୍କ ସ୍ୱାମିନୀ ବୋଲି ଜଣାଯାଉଥାଏ । ଯୁବତୀଟି ଆଦରପୂର୍ବକ ଚନ୍ଦ୍ରସ୍ୱାମୀଙ୍କୁ ନେଇ ନିଜ ଆସନର ଅର୍ଦ୍ଧାଂଶରେ ବସାଇଲା । ଉଭୟେ ସେଠାରେ ଏକତ୍ର ଦିବ୍ୟ ଭୋଜନ କଲେ । ଭୋଜନ ପରେ ସେ ଚନ୍ଦ୍ରସ୍ୱାମୀଙ୍କୁ କିଛି ସ୍ୱାଦିଷ୍ଟ ଫଳ ଏବଂ ତାମ୍ବୁଲରେ ଆପ୍ୟାୟନ କଲା । ଉଭୟେ ଏକତ୍ର ଗୋଟିଏ ଶଯ୍ୟାରେ ଶୟନ କରି ରାତ୍ରିଟି ସମ୍ଭୋଗ ସୁଖରେ କଟାଇଦେଲେ ।

ପ୍ରଭାତରୁ ଚନ୍ଦ୍ରସ୍ୱାମୀଙ୍କ ନିଦ୍ରାଭଙ୍ଗ ହେଲା । ନିଜକୁ ସେହି ଭଗ୍ନ ଶିବମନ୍ଦିର ମଧ୍ୟରେ ଦେଖି ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ଦାସୀ କିମ୍ବା ନଗର କିମ୍ବା ସେହି ଦିବ୍ୟ ଯୁବତୀ କେହି ସେଠାରେ ନଥିଲେ । ତାଙ୍କ ବିସ୍ମୟରେ ପୂର୍ଣ୍ଣଚ୍ଛେଦ ଟାଣି ଏ ସମୟରେ ଯୋଗୀଶ୍ରେଷ୍ଠ ତପସ୍ୱୀ ମନ୍ଦିର ମଧ୍ୟରୁ ହସିହସି ବାହାରିଲେ । 'ରାତିଟି କ'ଣ ସୁଖରେ

କଟିଲା ?' ତାଙ୍କର ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଚନ୍ଦ୍ରସ୍ୱାମୀ କହିଲେ, 'ଭଗବନ୍, ଆପଣଙ୍କ କୃପାରୁ ରାତିଟି ତ ସୁଖରେ କଟିଗଲା କିନ୍ତୁ ବର୍ତ୍ତମାନ ସେହି ସୁନ୍ଦରୀ ବିନା ମୋର ଜୀବନ ଚାଲିଯାଉଛି ।' ଚନ୍ଦ୍ରସ୍ୱାମୀଙ୍କ ବିକଳ ଅବସ୍ଥାରେ ଦୟାଳୁ ତପସ୍ୱୀ ତାଙ୍କୁ ଆଶ୍ୱାସନା ଦେଲେ ଯେ ସେ ପୁଣି ରାତ୍ରିରେ ଅନୁରୂପ ଦିବ୍ୟ ସୁଖ ଭୋଗ କରିବ । ତପସ୍ୱୀଙ୍କ କୃପାବଳରୁ ଚନ୍ଦ୍ରସ୍ୱାମୀ ପ୍ରତିଦିନ ରାତିରେ ଏହିପରି ଦିବ୍ୟସୁଖ ଭୋଗ କରୁଥାନ୍ତି । ଧୀରେଧୀରେ ଏହି ବିଦ୍ୟାର ପ୍ରଭାବ ଜାଣି ଦିନେ ଚନ୍ଦ୍ରସ୍ୱାମୀ ତପସ୍ୱୀ ପ୍ରବରଙ୍କୁ ବିଭିନ୍ନ ସେବାରେ ସନ୍ତୁଷ୍ଟ କରି ନିବେଦନ କଲେ 'ଭଗବନ୍, ମୁଁ ଆପଣଙ୍କ ଶରଣାଗତ । ଯଦି ପ୍ରକୃତରେ ମୋ ପ୍ରତି ଆପଣଙ୍କ ଦୟା ଥାଏ, ତେବେ ମୋତେ ଏହି ଅପୂର୍ବ ପ୍ରଭାବଶାଳୀ ବିଦ୍ୟାଟି ଶିଖାଇ ଦିଅନ୍ତୁ ।' ତପସ୍ୱୀ ବ୍ରାହ୍ମଣ ଯୁବକର ଆଗ୍ରହ ଦେଖି କହିଲେ—

'ଏହି ବିଦ୍ୟା ସିଦ୍ଧ କରିବା ଅତ୍ୟନ୍ତ କଠିନ । ଏହା ତୁମଦ୍ୱାରା ସିଦ୍ଧ ହେବ ବୋଲି ବିଶ୍ୱାସ ହେଉନାହିଁ । ଏହାର ସାଧନା ଜଳମଧ୍ୟରେ କରିବାକୁ ହେବ । ଯେଉଁ ସାଧକ ଏହାର ସାଧନା ଆରମ୍ଭ କରେ ସେ ଜଳମଧ୍ୟରୁ ଜାତ ମାୟାଜାଲରେ ଛନ୍ଦି ହୋଇପଡ଼େ । ଏବଂ ତାହା ଯୋଗୁଁ ସେ ସିଦ୍ଧିଲାଭ କରିପାରେ ନାହିଁ । ଏହି ମାୟାଜାଲ ବଳରେ ତା'ର ଭ୍ରମ ହୁଏ ଯେ ସେ ପୁଣି ଜନ୍ମଲାଭ କରିଛି । ସେତେବେଳେ ସେ ଧୀରେ ଧୀରେ ନିଜକୁ ବାଳକ, ପୁଣି ଯୁବକ, ପୁଣି ବିବାହିତ ଗୃହସ୍ଥ ମନେକରେ । ତା'ର ମନେହୁଏ ସେ ଗୋଟିଏ ପୁତ୍ରର ଜନକ ହୋଇପାରିଛି । ଏ ପ୍ରକାର ଭ୍ରମ ମଧ୍ୟରେ ପଡ଼ି ସେ ଶତ୍ରୁ ଓ ମିତ୍ର ସୃଷ୍ଟିକରେ । ଏ ଜନ୍ମର କୌଣସି କଥା ତାର ମନେରହେ ନାହିଁ । ଏପରିକି ସେ ଯେ ଗୋଟିଏ ବିଦ୍ୟା ସାଧନରେ ପ୍ରବୃତ୍ତ ଅଛି ତାହା ମଧ୍ୟ ସ୍ମରଣ କରିପାରେ ନାହିଁ । ଯେଉଁ ପୁରୁଷ ଚବିଶି ବର୍ଷ ପର୍ଯ୍ୟନ୍ତ ଗୁରୁଙ୍କ ନିକଟରୁ ବିଦ୍ୟାଧ୍ୟୟନ କରି ଜ୍ଞାନ ପ୍ରାପ୍ତ ହୋଇଥାଏ, ତା'ର କେବଳ ଏହି ଜନ୍ମର କଥା ସ୍ମରଣ ଥାଏ । ସେ ଜାଣିପାରେ ଯେ ସେ ଯାହାସବୁ ଅନୁଭବ କରୁଛି, ତାହା ମାୟାର ଖେଳ ମାତ୍ର । ମାୟାର ବଶୀଭୂତ ହୋଇଥିଲେ ହେଁ ସେ ଅଗ୍ନିରେ ପ୍ରବେଶ କରେ ଏବଂ ବିଦ୍ୟା ସିଦ୍ଧି ପରେ ଜଳ ମଧ୍ୟରୁ ଉଠିଆସି ସେ ପରମାର୍ଥ ଜ୍ଞାନର ଅଧିକାରୀ ହୁଏ । କୌଣସି ଶିଷ୍ୟକୁ ଏହି ବିଦ୍ୟା ପ୍ରଦାନ କଲେ ସେ ଯଦି ଏଥିରେ ସିଦ୍ଧିଲାଭ କରିନପାରେ, ତେବେ ଅପାତ୍ରରେ ଦାନ କରିଥିବା ଯୋଗୁଁ ଗୁରୁ ମଧ୍ୟ ଏହି ବିଦ୍ୟା ହରାଇବସନ୍ତି । ମୋର ସିଦ୍ଧିଦ୍ୱାରା ତୁମେ ଏସବୁ ଉପଭୋଗ କରିପାରୁଛ । ତଥାପି ଏହି ବିଦ୍ୟା ଗ୍ରହଣ କରିବା ଆଗ୍ରହ କାହିଁକି କରୁଛ ? ଏପରି କିଛି ନହେଉ ଯାହାଦ୍ୱାରା ମୁଁ ମୋର ସିଦ୍ଧି ହରାଇ ବସିବି ଏବଂ ତୁମେ ବର୍ତ୍ତମାନ ଯେଉଁ ସୁଖ ଲାଭ କରୁଛ ସେଥିରୁ ବଞ୍ଚିତ ହେବ ।'

ତପସ୍ୱୀଙ୍କ ଠାରୁ ଏହି ଦୁଃସାଧ ବିଦ୍ୟା ସମ୍ପର୍କରେ ଜାଣିବା ପରେ ମଧ ହଠ ପୂର୍ବକ ଏହି ଅପୂର୍ବ ବିଦ୍ୟାଟି ଶିକ୍ଷା କରିବାପାଇଁ ଚନ୍ଦ୍ରସ୍ୱାମୀ ମିନତି କଲେ । ତପସ୍ୱୀ ତା'ର ଆଗ୍ରହକୁ ଏଡ଼ାଇ ପାରିଲେ ନାହିଁ । ସେ ବିଦ୍ୟା ଶିଖାଇବାପାଇଁ ସ୍ୱୀକୃତ ହେଲେ । ସଜ୍ଜନ ପୁରୁଷମାନେ ଆଶ୍ରିତମାନଙ୍କ ଅନୁରୋଧ କ୍ରମେ କ'ଣ ବା ନ କରନ୍ତି ?

ବତାଶ୍ରିତାନୁରୋଧେନ କିଂ ନ କୁର୍ବନ୍ତି ସାଧବଃ ।

ତପସ୍ୱୀ ଚନ୍ଦ୍ରସ୍ୱାମୀକୁ ନଦୀ ତଟକୁ ନେଇଗଲେ । କହିଲେ, 'ବତ୍ସ, ଏହି ବିଦ୍ୟାର ମନ୍ତ୍ର ଜପ କରୁଥିବା ବେଳେ ଯେତେବେଳେ ମାୟାଜନିତ ଦୃଶ୍ୟ ଦେଖିବୁ ସେତେବେଳେ ମୋର ମନ୍ତ୍ରବଳରେ ସାବଧାନ ରହି ସେହି ମାୟାଜାତ ଅଗ୍ନି ମଧରେ ପ୍ରବେଶ କରିଯିବୁ । ମୁଁ ସେପର୍ଯ୍ୟନ୍ତ ତୋପାଇଁ ଏହି ନଦୀତଟରେ ଅପେକ୍ଷା କରିବି ।' ଏପରି ଉପଦେଶ ଦେଇ ମହାବ୍ରତାଚାରୀ ତପସ୍ୱୀ ସ୍ନାନ ଓ ଆଚମନ ପୂର୍ବକ ଚନ୍ଦ୍ରସ୍ୱାମୀକୁ ବିଧି ଅନୁଯାୟୀ ମନ୍ତ୍ରପ୍ରଦାନ କଲେ । ଚନ୍ଦ୍ରସ୍ୱାମୀ ନତମସ୍ତକରେ ଗୁରୁଙ୍କୁ ପ୍ରଣିପାତ କରି ନଦୀର ଜଳରାଶି ମଧରେ ପ୍ରବେଶ କଲେ ।

ଜଳ ମଧରେ ସେ ଯେତେବେଳେ ମନ୍ତ୍ର ଜପ ଆରମ୍ଭ କଲେ ସେତେବେଳେ ମାୟାଯୋଗୁଁ ସେ ଏ ଜନ୍ମର ସମସ୍ତ ଅନୁଭବ ବିସ୍ମୃତ ହେଲେ । ସେ ଦେଖିଲେ ଯେ ଅନ୍ୟ କୌଣସି ନଗରୀରେ ଜଣେ ବ୍ରାହ୍ମଣର ପୁତ୍ରଭାବେ ତାଙ୍କର ଜନ୍ମ ହୋଇଛି । ସେ ଧୀରେ ଧୀରେ ବୃଦ୍ଧିଲାଭ କରୁଛନ୍ତି । ବ୍ରାହ୍ମଣ ତାଙ୍କ ବ୍ରତଉପନୟନ କଲେ । ସେ ବିଭିନ୍ନ ଶାସ୍ତ୍ର ଅଧୟନ କଲେ । ତାଙ୍କ ବିବାହ ମଧ ସମ୍ପନ୍ନ ହେଲା । ପରିବାରର ସୁଖଦୁଃଖରେ ସମ୍ପୂର୍ଣ୍ଣ ଲିପ୍ତ ରହି ଶେଷରେ ପୁତ୍ରର ମଧ ମୁଖାବଲୋକନ ହେଲା । ପୁତ୍ର ସ୍ନେହରୁ ସେ ବିଭିନ୍ନ କାର୍ଯ୍ୟ ସମ୍ପାଦନ କରିବାକୁ ଲାଗିଲେ । ପିତାମାତା, ପତ୍ନୀପୁତ୍ର ରୂପ ମାୟାଜାଲରେ ବାନ୍ଧିହୋଇ ସେ ସୁଖଦୁଃଖମୟ ଜୀବନ ବିତାଉଥାନ୍ତି ।

ଚନ୍ଦ୍ରସ୍ୱାମୀ ଏହିପରି ମିଥ୍ୟା ଜନ୍ମାନ୍ତରର ଅନୁଭବ କରୁଥିବା ବେଳେ ସୁଯୋଗ ଦେଖି ଗୁରୁଦେବ ଚେତନା ଉତ୍ପନ୍ନ କରାଇବା ପାଇଁ ବିଦ୍ୟା ପ୍ରୟୋଗ କଲେ । ତପସ୍ୱୀଙ୍କ ବିଦ୍ୟା ପ୍ରଭାବରୁ ଚନ୍ଦ୍ରସ୍ୱାମୀ ଅବିଳମ୍ବେ ମାୟାଜାଲ ଭେଦ କରି ଚେତନା ପ୍ରାପ୍ତ ହେଲେ । ସେ ନିଜକୁ ଏବଂ ପୂଜ୍ୟ ଗୁରୁଦେବଙ୍କୁ ସ୍ମରଣ କଲେ । ତାଙ୍କ ଅନୁଭବ ଯେ ମିଥ୍ୟା ଥିଲା, ଏହା ମଧ ସେ ଜାଣିପାରିଲେ । ଦିବ୍ୟ ଓ ଅସାଧ ବିଦ୍ୟାପ୍ରାପ୍ତି ନିମିତ୍ତ ସେ ଯେତେବେଳେ ଅଗ୍ନିରେ ପ୍ରବେଶ କରିବାପାଇଁ ଉଦ୍ୟତ ହେଲେ ସେତେବେଳେ ପରିବାର ପରିଜନଙ୍କ

ସହିତ ବୃଦ୍ଧ ଗୁରୁଦେବ ମଧ୍ୟ ତାକୁ ସେଥିରୁ ନିବୃତ୍ତ କରିବାପାଇଁ ପ୍ରୟାସ କଲେ । କିନ୍ତୁ ଚନ୍ଦ୍ରସ୍ୱାମୀ ଦିବ୍ୟସୁଖ ଲାଳସାରେ କାହାରି କଥାରେ କର୍ଣ୍ଣପାତ କଲେ ନାହିଁ । ସେ ସପରିବାର ନଦୀର ଅପରପାରରେ ଆସି ଉପନୀତ ହେଲେ । ସେଠାରେ ଚିତା ସଜ୍ଜିତ ଥାଏ । ସେହି ଚିତାଗ୍ନିରେ ନିଜର ବୃଦ୍ଧ ପିତାମାତା ଏବଂ ପତ୍ନୀକୁ ପ୍ରବେଶ କରୁଥିବା ଦେଖି ଏବଂ ପୁତ୍ରର କରୁଣ ବିଳାପ ଶୁଣି ସେ ପୁଣି ମୋହରେ ପଡ଼ିଗଲେ । ଚିନ୍ତା କରିବାକୁ ଲାଗିଲେ, 'ମୁଁ ଯଦି ଅଗ୍ନିରେ ପ୍ରବେଶ କରିଯାଏ ତେବେ ମୋର ଏ ସମସ୍ତ ଆତ୍ମୀୟ ସ୍ୱଜନ ମୃତ୍ୟୁବରଣ କରିବେ । ମୁଁ ଏପର୍ଯ୍ୟନ୍ତ ଗୁରୁଙ୍କ ବାକ୍ୟ ସତ୍ୟ କି ମିଥ୍ୟା ଜାଣିପାରି ନାହିଁ । ଅଗ୍ନି ମଧ୍ୟରେ ପ୍ରବେଶ କରିବା ଉଚିତ କି ଅନୁଚିତ, ଏହା ଏକ ବିଷମ ସମସ୍ୟା । କିନ୍ତୁ ଏପର୍ଯ୍ୟନ୍ତ ମୁଁ ଗୁରୁଙ୍କର ପ୍ରତ୍ୟେକଟି ନିର୍ଦ୍ଦେଶକୁ ପାଳନ କରିଆସିଛି । ଏବେ କାହିଁକି ବା ସେଥିରୁ ଓହରିଯିବି । ଏଣୁ ଅଗ୍ନିରେ ପ୍ରବେଶ କରିବା ହିଁ ମୋ ପକ୍ଷରେ ଉଚିତ ହେବ ।' ମନେମନେ ଏହିପରି ନିଶ୍ଚୟ କରି ବ୍ରାହ୍ମଣ ଚନ୍ଦ୍ରସ୍ୱାମୀ ଅଗ୍ନି ମଧ୍ୟରେ ପ୍ରବେଶ କଲେ ।

ଅଗ୍ନିର ସ୍ପର୍ଶ ଚନ୍ଦ୍ରସ୍ୱାମୀପାଇଁ ବରଫ ପରି ଶୀତଳ ମନେହେଲା । ସେ ଏଥିରେ ବିସ୍ମୟ ପ୍ରକାଶ କରୁଥିବା ବେଳେ ତାଙ୍କଠାରୁ ମାୟାର ପ୍ରଭାବ ଅପସରି ଗଲା ଏବଂ ସେ ଆସି ନଦୀର ଅପର ତୀରରେ ଠିଆହେଲେ । ସେଠାରେ ଗୁରୁଙ୍କୁ ଅପେକ୍ଷା କରୁଥିବା ଦେଖି ପ୍ରଣିପାତ ପୂର୍ବକ ତାଙ୍କ ନିକଟରେ ସମଗ୍ର ବୃତ୍ତାନ୍ତ ଆମୂଳଚୂଳ ବର୍ଣ୍ଣନା କଲେ । ଗୁରୁ ଏଥିରେ ଶଙ୍କିତ ହୋଇ କହିଲେ, 'ବତ୍ସ, ମୋର ଭୟ ହେଉଛି ତୁମେ କୌଣସି ସ୍ଥାନରେ କିଛି ଭୁଲ୍ କରିଛ । ଏହି ସାଧନାରେ ଅଗ୍ନି ଶୀତଳ ହେବା କେହି ଜାଣିନାହାଁନ୍ତି । ଏହା ତୁମର ହିଁ ନୂତନ ଅନୁଭୂତି ।' ଚନ୍ଦ୍ରସ୍ୱାମୀ ନମ୍ରତା ପ୍ରଦର୍ଶନ କରି କହିଲେ, 'ଭଗବନ୍, ମୁଁ ସାଧନା ମଧ୍ୟରେ କୌଣସିଠାରେ କିଛି ଭୁଲ କରିନାହିଁ ।'

ତଥାପି ତପସ୍ୱୀ ସନ୍ଦେହମୁକ୍ତ ହୋଇପାରିଲେ ନାହିଁ । ରହସ୍ୟ ଉଦ୍‌ଘାଟନ କରିବାପାଇଁ ସେ ପୂର୍ବୋକ୍ତ ବିଦ୍ୟାକୁ ସ୍ମରଣ କଲେ । କିନ୍ତୁ ବିଦ୍ୟା ତାଙ୍କର କି ତାଙ୍କ ଶିଷ୍ୟର ସମ୍ମୁଖରେ ପ୍ରକଟ ହେଲାନାହିଁ । ଉଭୟେ ବିଦ୍ୟାଭ୍ରଷ୍ଟ ହୋଇଥିବା ଜାଣି ଦୁଃଖରେ ସେଠାରୁ ପ୍ରସ୍ଥାନ କଲେ ।''

କଥାଟି ଶୁଣାଇ ବେତାଳ ରାଜା ତ୍ରିବିକ୍ରମସେନଙ୍କୁ ତାଙ୍କ ଶପଥ ସ୍ମରଣ କରାଇ ନେଇ ପ୍ରଶ୍ନ କଲା, 'ରାଜନ୍, ତୁମେ ମୋର ଏହି ସଂଶୟ ଦୂର କର । ଚନ୍ଦ୍ରସ୍ୱାମୀ ତ ନିର୍ଦ୍ଦେଶ ଅନୁସାରେ ସମସ୍ତ କ୍ରିୟା ଅନୁଷ୍ଠାନ କରିଥିଲା । ତଥାପି ଉଭୟେ କାହିଁକି ନଷ୍ଟ ବିଦ୍ୟା ହେଲେ ?'

ବେତାଳର ପ୍ରଶ୍ନରେ ରାଜା ଉତ୍ତର ଦେଲେ, 'ଯୋଗେଶ୍ୱର, ମୁଁ ଜାଣିପାରିଲିଣି ଯେ ତୁମେ ଏପରି କିଛି କଥା କହି ସମୟ କେବଳ ବିଳମ୍ବ କରୁଛ । ତଥାପି ମୁଁ କହୁଛି ଶୁଣ । ଯେପର୍ଯ୍ୟନ୍ତ ମନୁଷ୍ୟ ତା' ମନରେ ଉଠୁଥିବା ମାନସିକ ଦ୍ୱନ୍ଦ୍ୱକୁ ପରିହାର ନ କରିଛି ଏବଂ ଧୈର୍ଯ୍ୟଶୀଳ, ନିର୍ମଳ ଓ ସୁଦୃଢ଼ ହୋଇନାହିଁ ସେତେବେଳ ପର୍ଯ୍ୟନ୍ତ କେବଳ ଠିକ୍‌ଠାକ୍ ଭାବେ କୌଣସି ଦୁଷ୍କର କାର୍ଯ୍ୟ କଲେ ସେଥିରେ ସିଦ୍ଧି ମିଳେ ନାହିଁ । ସେହି ଦୁଷ୍ଟବୁଦ୍ଧି ବ୍ରାହ୍ମଣ ଯୁବକ ଚେତନା ଲାଭ କରି ମଧ୍ୟ ଦ୍ୱିଧାଗ୍ରସ୍ତ ହୋଇପଡ଼ିଲା । ତେଣୁ ତାକୁ ସିଦ୍ଧି ମିଳିଲା ନାହିଁ । ତପସ୍ୱୀ ମଧ୍ୟ ଅପାତ୍ରରେ ବିଦ୍ୟାଦାନ କରିଥିବା ଯୋଗୁଁ ପାଇଥିବା ସିଦ୍ଧି ହରାଇ ବସିଲେ ।'

ରାଜାଙ୍କ କଥାଶୁଣି ବେତାଳ ପୂର୍ବପରି ବୃକ୍ଷଶାଖାକୁ ଫେରିଗଲା । ରାଜା ମଧ୍ୟ ତା' ପଛରେ ଚାଲିବାକୁ ଲାଗିଲେ ।

# ଷଡ଼ବିଂଶ ତରଙ୍ଗ

## ଊନବିଂଶ ବେତାଳ : ଚନ୍ଦ୍ରପ୍ରଭ କଥା

ରାଜା ତ୍ରିବିକ୍ରମସେନ ପୁଣି ବେତାଳ ଆବିଷ୍ଟ ଶବକୁ ସ୍କନ୍ଧରେ ଧରି ଶିଂଶପା ବୃକ୍ଷ ମୂଳରୁ ଯାତ୍ରା ଆରମ୍ଭ କଲେ । ପଥ ମଧ୍ୟରେ ବେତାଳ ପୁଣି କହିବା ଆରମ୍ଭ କଲା, ''ରାଜନ୍, ଶୁଣ, ମୁଁ ତୁମକୁ ଅତ୍ୟନ୍ତ ମନୋରଞ୍ଜକ କଥାଟିଏ ଶୁଣାଉଛି–

ବକ୍ରୋଳକ ନାମରେ ଏକ ସ୍ୱର୍ଗତୁଲ୍ୟ ନଗରୀ ଅଛି । ସେଠାରେ ଇନ୍ଦ୍ରତୁଲ୍ୟ ରାଜା ସୂର୍ଯ୍ୟପ୍ରଭ ଶାସନ କରନ୍ତି । ଭଗବାନ ବିଷ୍ଣୁ ଯେପରି ପାତାଳରୁ ପୃଥିବୀକୁ ଉଦ୍ଧାର କରି ବହୁକାଳ ପର୍ଯ୍ୟନ୍ତ ତାକୁ ନିଜ ଦନ୍ତରେ ଧାରଣ କରିଥିଲେ, ସେହିପରି ଏହି ରାଜା ନିଜ ବାହୁବଳରେ ଦୀର୍ଘଦିନ ଧରି ରାଜ୍ୟ ଶାସନ କରିଥିଲେ । ରାଜାଙ୍କ ରାଜତ୍ୱ କାଳରେ ରାଜ୍ୟ ମଧ୍ୟରେ କେବଳ ଧୂମରାଶି ଯୋଗୁଁ ପ୍ରଜାବୃନ୍ଦଙ୍କ ଚକ୍ଷୁ ଅଶ୍ରୁସିକ୍ତ ହେଉଥିଲା, ଶୃଙ୍ଗାର ଚର୍ଚ୍ଚା ବେଳେ ହିଁ ମାର ଶବ୍ଦ ଶୁଣାଯାଉଥିଲା, ଦ୍ୱାରପାଳମାନଙ୍କ ହସ୍ତରେ କେବଳ ସ୍ୱର୍ଣ୍ଣଦଣ୍ଡ ରହିଥିଲା । ରାଜ୍ୟ ସମସ୍ତ ସମ୍ପତ୍ତିରେ ଭରପୂର ଥିଲେ ସୁଦ୍ଧା ରାଜାଙ୍କ ବହୁ ରାଣୀଙ୍କ ମଧ୍ୟରୁ ଜଣେ କେହି ପୁତ୍ରସନ୍ତାନଟିଏ ରାଜାଙ୍କୁ ଦେଇପାରିନଥିଲେ । ସେଥିପାଇଁ ରାଜାଙ୍କ ମନରେ ଥିଲା ଅମାପ ଦୁଃଖ ।

ଏହି ସମୟରେ ତାମ୍ରଲିପ୍ତି ନଗରୀରେ ଧନପାଳ ନାମକ ଜଣେ ଧନୀବଣିକ ବାସ କରୁଥିଲେ । ତାଙ୍କର ଏକମାତ୍ର କନ୍ୟାର ନାମ ଧନବତୀ । ତା'ର ଦିବ୍ୟ ରୂପରୁ ଜଣାଯାଉଥିଲା ଯେ ସେ କୌଣସି ଅଭିଶପ୍ତା ବିଦ୍ୟାଧରୀ । କନ୍ୟାଟି ଯୌବନରେ ପଦାର୍ପଣ କରିବାମାତ୍ରେ ମହାଜନଙ୍କର ମୃତ୍ୟୁ ହେଲା । ରାଜାଙ୍କ ସହାୟତାରେ ସ୍ୱଜନମାନେ ତାଙ୍କର ଧନସମ୍ପତ୍ତି ନିଜର କରିନେଲେ ।

ମହାଜନଙ୍କ ପତ୍ନୀ ହିରଣ୍ୟବତୀ । ତାଙ୍କ ନିକଟରେ କିଛି ଅର୍ଥ ଓ ଅଳଙ୍କାର ଥାଏ । ତା' ସହିତ ସେ କନ୍ୟା ଧନବତୀକୁ ଧରି ଆତ୍ମୀୟମାନଙ୍କ ଭୟରେ ଦିନେ ସଂଧ୍ୟାବେଳେ ସ୍ୱଭବନରୁ ପଳାୟନ କଲେ । ତାଙ୍କ ହୃଦୟରେ ଗଭୀର ଦୁଃଖ ଏବଂ ବାହାରେ ଭୟଙ୍କର ଅନ୍ଧକାର । କନ୍ୟାର ହାତଧରି ସେ ବହୁ କଷ୍ଟରେ ନଗର ବାହାରକୁ ଆସିଲେ । ଅନ୍ଧକାରରେ କିଛି ଦେଖଯାଉ ନଥିବା ଯୋଗୁଁ ସାଧ୍ୱୀ ହିରଣ୍ୟବତୀ ଶୂଳୀ ଉପରେ ଚଢ଼ାଯାଇଥିବା ଜଣେ ଚୋର ସହିତ ଧକ୍କା ଖାଇଲେ । ସେପର୍ଯ୍ୟନ୍ତ ଚୋରଟିର ଜୀବନ ଯାଇ ନଥାଏ । ହିରଣ୍ୟବତୀଙ୍କ ସ୍କନ୍ଧ ଆଘାତରେ ସେ ବେଦନାର୍ତ୍ତ ହୋଇ ଚିତ୍କାର କରିଉଠିଲା, 'ମୋ କ୍ଷତରେ କିଏ କାହିଁକି ଲୁଣ ଛିଟା ଦେଉଛି ?'

ବଣିକବଧୂଙ୍କ ଜିଜ୍ଞାସା କ୍ରମେ ଚୋରଟି କହିଲା, 'ମୁଁ ତ ଜଣେ ଜଣାଶୁଣା ଚୋର । ଏହି ଶୂଳୀ ଖୁଣ୍ଟ ଉପରେ ଚଢ଼ାଯାଇଥିଲେ ସୁଦ୍ଧା ମୋ ପରି ପାପୀର ଜୀବନ ଯାଉନାହିଁ । କିନ୍ତୁ ଆର୍ଯ୍ୟେ, ଆପଣ କହନ୍ତୁ ଆପଣ କିଏ ? ଆଉ ଏହି ଅନ୍ଧକାର ମଧ୍ୟରେ ଏହିପରି କୁଆଡ଼େ ଯାଉଛନ୍ତି ।' ବଣିକ ପତ୍ନୀ ନିଜର ସମଗ୍ର ବୃତ୍ତାନ୍ତ ତା' ନିକଟରେ ବ୍ୟକ୍ତ କଲେ । ଏ ସମୟରେ ପୂର୍ବ ଦିଗ୍‌ବଧୂର ଚନ୍ଦନତିଳକ ପରି ଚନ୍ଦ୍ର ଉଦିତ ହେଲେ । ଚତୁର୍ଦ୍ଦିଗ ଆଲୋକିତ ହେବାରୁ ଚୋରଟି ବଣିକ କନ୍ୟା ଧନବତୀଙ୍କୁ ଦେଖି ତାର ମାତାଙ୍କୁ କହିଲା, 'ଆପଣଙ୍କ ନିକଟରେ ମୋର ଏକ ପ୍ରାର୍ଥନା ଅଛି । ମୁଁ ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ଦେଉଛି । ଆପଣ ଅନୁଗ୍ରହ ପୂର୍ବକ କନ୍ୟାଟିକୁ ମୋତେ ପ୍ରଦାନ କରନ୍ତୁ ।' ଏଥିରେ ସେ ହାସ୍ୟ ସମ୍ବରଣ କରିପାରିଲେ ନାହିଁ ।

କନ୍ୟାଟିକୁ ନେଇ ତୁମେ କଣ କରିବ ବୋଲି ପ୍ରଶ୍ନ କରନ୍ତେ ଚୋର ତା'ର ଅଭିଳାଷ ଜଣାଇ କହିଲା, 'ମୋର ଆୟୁଷ ସମାପ୍ତ ହେଉଛି । କିନ୍ତୁ ମୁଁ ପୁତ୍ରହୀନ । ଅପୁତ୍ରକମାନେ ସଦ୍‌ଗତି ଲାଭ କରନ୍ତି ନାହିଁ । ତୁମ କନ୍ୟା ଯଦି ମୋତେ ବିବାହ କରି ଅନ୍ୟକୌଣସି ପୁରୁଷଦ୍ୱାରା ମୋର ଆଦେଶରେ ସନ୍ତାନସମ୍ଭବା ହୁଏ ତେବେ ସେ ମୋର କ୍ଷେତ୍ରଜପୁତ୍ର ହେବ । ତା'ଠାରୁ ପିଣ୍ଡ ପ୍ରାପ୍ତ ହୋଇ ମୁଁ ସଦ୍‌ଗତି ଲାଭ କରିବି । ଏଥିପାଇଁ ମୁଁ ଆପଣଙ୍କୁ ଏପରି ନିବେଦନ କରୁଛି । ଆପଣ ମୋର ମନୋରଥ ପୂରଣ କରନ୍ତୁ ।'

ବଣିକବଧୂ ଲୋଭାବିଷ୍ଟ ହୋଇ ଚୋରର ଅନୁରୋଧ ରକ୍ଷା କରିବାପାଇଁ ସ୍ୱୀକାର କଲେ । ନିକଟସ୍ଥ ଏକ କୂପରୁ ଜଳ ଆଣି ସେ ଚୋରର ପ୍ରସାରିତ ହସ୍ତରେ ଜଳଦାନ ପୂର୍ବକ କହିଲେ, 'ମୁଁ ମୋର ଏହି କୁମାରୀ କନ୍ୟାକୁ ତୁମ ହସ୍ତରେ ସମର୍ପଣ କଲି ।' ଚୋରଟି କନ୍ୟାକୁ ପୂର୍ବୋକ୍ତ ଆଦେଶ ଶୁଣାଇଲା, 'ତୁ ମୋନିମିତ୍ତ ଅନ୍ୟପୁରୁଷ ଦ୍ୱାରା

ପୁତ୍ର ଜାତ କରାଇବୁ ।' ନିଜ ଶାଶୁଙ୍କୁ ମଧ୍ୟ କହିଲା, 'ସମ୍ମୁଖସ୍ଥ ବଟବୃକ୍ଷ ମୂଳରେ ମୋର ଧନରାଶି ପୋତା ହୋଇଛି । ଆପଣ ସେଗୁଡ଼ିକୁ ନେଇଯାଆନ୍ତୁ । ମୃତ୍ୟୁ ପରେ ବିଧିପୂର୍ବକ ମୋର ଦାହ ସଂସ୍କାର କରିବେ ଏବଂ ମୋର ଅସ୍ଥିକୁ ନେଇ କୌଣସି ପବିତ୍ର ତୀର୍ଥରେ ବିସର୍ଜନ କରିବେ । ଏହାପରେ ଆପଣ କନ୍ୟା ସହିତ ବକ୍ରୋଳକ ନଗରୀକୁ ଚାଲିଯାନ୍ତୁ । ସେଠାରେ ରାଜା ସୂର୍ଯ୍ୟପ୍ରଭଙ୍କ ସୁଶାସନରେ ପ୍ରଜାମାନେ ଆନନ୍ଦର ସହିତ ଜୀବନଯାପନ କରୁଛନ୍ତି । ଆପଣ ମଧ୍ୟ ସେଠାରେ ଉପଦ୍ରବ ଓ ଚିନ୍ତାରହିତ ହୋଇ ବାସ କରିପାରିବେ ।' ଏହିପରି କହୁଥିବା ବେଳେ ଶୂଳୀ ଉପରେ ଝୁଲୁଥିବା ତୃଷାର୍ତ୍ତ ଚୋରଟି ନିଜର ସଦ୍ୟବିବାହିତା ପତ୍ନୀ ହସ୍ତରୁ ଜଳପାନ କରି ପ୍ରାଣତ୍ୟାଗ କଲା ।

ହିରଣ୍ୟବତୀ ଚୋରର ନିର୍ଦ୍ଦେଶାନୁସାରେ ବଟବୃକ୍ଷଟିର ମୂଳରୁ ପର୍ଯ୍ୟାପ୍ତ ସ୍ୱର୍ଣ୍ଣମୁଦ୍ରା ଲାଭ କଲେ ଏବଂ ସେଠାରୁ ଏକ ଗୁପ୍ତ ମାର୍ଗରେ ଧନବତୀ ସହିତ ନିଜର ଜଣେ ମିତ୍ରଙ୍କ ଘରକୁ ଚାଲିଗଲେ । ସେଠାରେ ଚୋରର ଦାହକ୍ରିୟା ସମ୍ପନ୍ନ କରାଇ ତା'ର ଅସ୍ଥିକୁ ତୀର୍ଥ ଜଳରେ ବିସର୍ଜନ ଦେବାର ବ୍ୟବସ୍ଥା ମଧ୍ୟ କରାଇଲେ । ପରଦିନ ସେ ଗୁପ୍ତଧନରାଶି ସହିତ କନ୍ୟାକୁ ନେଇ ମିତ୍ରଙ୍କ ଠାରୁ ବିଦାୟ ନେଲେ । କିଛିଦିନ ମଧ୍ୟରେ ଉଭୟ ମାତା ଓ କନ୍ୟା ସୂର୍ଯ୍ୟପ୍ରଭଙ୍କ ବକ୍ରୋଳକ ନଗରୀରେ ଆସି ଉପସ୍ଥିତ ହେଲେ । ସେଠାରେ ବସୁଦତ୍ତ ନାମକ ଜଣେ ବଣିକଙ୍କଠାରୁ ଗୋଟିଏ ଗୃହ କିଣିନେଇ ହିରଣ୍ୟବତୀ ନିଜର ବିଧବା କନ୍ୟା ଧନବତୀ ସହିତ ନିଶ୍ଚିନ୍ତ ମନରେ ବାସ କରିବାକୁ ଲାଗିଲେ ।

ସେତେବେଳେ ସେହି ନଗରୀରେ ବିଷ୍ଣୁସ୍ୱାମୀ ନାମରେ ଜଣେ ଅଧ୍ୟାପକ ରହୁଥାନ୍ତି । ମନଃସ୍ୱାମୀ ନାମରେ ତାଙ୍କର ଜଣେ ବ୍ରାହ୍ମଣ ଶିଷ୍ୟ ଥାଏ । ସେ ଯେପରି ରୂପବାନ୍ ସେହିପରି କୁଳୀନ ଓ ଶାସ୍ତ୍ରଜ୍ଞ ମଧ୍ୟ । ଯୌବନର ବଶୀଭୂତ ହୋଇ ସେ ହଂସାବଳୀ ନାମକ ଏକ ବିଳାସିନୀ କନ୍ୟା ପ୍ରତି ଆକୃଷ୍ଟ ଥାଏ । ହଂସାବଳୀ କନ୍ୟାଶୁଳ୍କ ସ୍ୱରୂପ ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ଚାହୁଁଥାଏ । ବ୍ରାହ୍ମଣ କୁମାରଙ୍କ ନିକଟରେ ଏତେ ପରିମାଣର ସ୍ୱର୍ଣ୍ଣମୁଦ୍ରା ନଥିବା ଯୋଗୁଁ କେବଳ ଦୁଃଖ କରିବା ବ୍ୟତୀତ ତାଙ୍କ ନିକଟରେ ଅନ୍ୟ କୌଣସି ପନ୍ଥା ନଥିଲା ।

ଦିନେ ଧନବତୀ ବ୍ରାହ୍ମଣ ଯୁବକଙ୍କୁ ତାଙ୍କ ନିବାସ ସ୍ଥାନରେ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲା । ସେ ହଂସାବଳୀର ଚିନ୍ତାରେ ଦୁର୍ବଳ ହୋଇପଡ଼ିଥିଲେ ସୁଦ୍ଧା ତାଙ୍କ ଶରୀରର ସୌନ୍ଦର୍ଯ୍ୟ ଅତୁଟ ଥିଲା । ତାଙ୍କ ଦର୍ଶନରେ ସେ ପତିଙ୍କ ଆଦେଶ ସ୍ମରଣ କରି ମା'ଙ୍କୁ କହିଲା, 'ମା, ଏହି ବ୍ରାହ୍ମଣ ପୁତ୍ରର ରୂପ ଓ ଯୌବନ ଲୋଭନୀୟ । ଦର୍ଶକମାନଙ୍କ

ଚକ୍ଷୁରେ ସେ ଯେପରି ଅମୃତ ବର୍ଷା କରୁଛନ୍ତି ।' ଏଥିରୁ ହିରଣ୍ୟବତୀ କନ୍ୟାର ମନୋଭାବ ବୁଝିପାରିଲେ । ସେ ଚୋରର କଥା ସ୍ମରଣ କରି ଭାବିଲେ ଯେ ଯଦି କୌଣସି ପୁରୁଷଠାରୁ ତାଙ୍କ କନ୍ୟାର ପୁତ୍ରଲାଭ ନିଶ୍ଚିତ, ତେବେ ସେଥିପାଇଁ ଏହି ବ୍ରାହ୍ମଣକୁମାରଙ୍କୁ କାହିଁକି ବା ନିଯୁକ୍ତ କରାଯାଇ ନପାରିବ ? ମନଃସ୍ୱାମୀଙ୍କ ମନୋଭାବ ଜ୍ଞାତ ହେବାପାଇଁ ସେ ଜଣେ ବିଶ୍ୱସ୍ତା ଦାସୀକୁ ତାଙ୍କ ନିକଟକୁ ପ୍ରେରଣ କଲେ । ଦାସୀ ଏକାନ୍ତରେ ମନଃସ୍ୱାମୀଙ୍କ ନିକଟରେ ବଣିକ ପତ୍ନୀଙ୍କ ପ୍ରସ୍ତାବ ଉପସ୍ଥାପନ କଲା । ବିଳାସପ୍ରିୟ ବ୍ରାହ୍ମଣଯୁବକ କହିଲେ, 'ଯଦି ହଂସାବଳୀକୁ ଲାଭ କରିବାପାଇଁ ମୋତେ ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା ମିଳେ ତେବେ ମୁଁ ଗୋଟିଏ ରାତିପାଇଁ ସେଠାକୁ ଯାଇପାରେ ।' ଦାସୀ ଫେରିଆସି ହିରଣ୍ୟବତୀଙ୍କୁ ମନଃସ୍ୱାମୀଙ୍କ ସର୍ତ୍ତ ଜଣାଇଲା । ସେ ସେହି ମୁହୂର୍ତ୍ତରେ ହିଁ ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା ତାଙ୍କ ନିକଟକୁ ପ୍ରେରଣ କଲେ । ମନଃସ୍ୱାମୀ ସେହି ଧନରାଶିକୁ ନେଇ ଦାସୀ ସହିତ ଧନବତୀଙ୍କ ଶୟନ କକ୍ଷରେ ଯାଇ ପହଞ୍ଚିଲେ ।

ଧନବତୀ ଅତ୍ୟନ୍ତ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାଏ । ମନଃସ୍ୱାମୀ ତାର ସୌନ୍ଦର୍ଯ୍ୟରେ ବିମୋହିତ ହୋଇପଡ଼ିଲେ । ରାତ୍ରିଟି ସମ୍ଭୋଗ ସୁଖରେ ବିତିଗଲା । ପ୍ରଭାତରୁ ବ୍ରାହ୍ମଣ ଯୁବକ ଗୁପ୍ତଭାବେ ଯେପରି ଆସିଥିଲେ ସେହିପରି ଫେରିଗଲେ । ଧନବତୀ ମନଃସ୍ୱାମୀଙ୍କଦ୍ୱାରା ଗର୍ଭବତୀ ହେଲା ଏବଂ ସମୟକ୍ରମେ ଏକ ପୁତ୍ର ସନ୍ତାନକୁ ଜନ୍ମଦେଲା । ପୁତ୍ରଟିର ଶରୀରରେ ଥିବା ଶୁଭଲକ୍ଷଣ ସବୁ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଉଥାଏ । ତାକୁ ଦେଖି ମାତା ଓ କନ୍ୟା ଉଭୟେ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ରାତ୍ରିରେ ଭଗବାନ୍ ଚନ୍ଦ୍ରମୌଳି ସ୍ୱପ୍ନରେ ସେମାନଙ୍କୁ ଦର୍ଶନ ଦେଇ କହିଲେ, 'ସହସ୍ର ସ୍ୱର୍ଣ୍ଣମୁଦ୍ରା ସହିତ ପୁତ୍ରଟିକୁ ରାଜା ସୂର୍ଯ୍ୟପ୍ରଭଙ୍କ ସିଂହଦ୍ୱାର ସମ୍ମୁଖସ୍ଥ ମଣ୍ଡପ ଉପରେ ରଖିଦେଇ ଆସ । ଏଥିରେ ଏହାର କଲ୍ୟାଣ ହେବ ।' ସ୍ୱପ୍ନରୁ ଉଠି ମାତା ଓ କନ୍ୟା ସମାନ ସ୍ୱପ୍ନ ଦେଖିଥିବା ଯୋଗୁଁ ଭଗବାନଙ୍କ ନିର୍ଦ୍ଦେଶ ପାଳନ କରିବାପାଇଁ ପଶ୍ଚାଦ୍‌ପଦ ହେଲେ ନାହିଁ । ସେମାନେ ସେହି ରାତ୍ରିରେ ହିଁ ବାଳକଟିକୁ ରାଜଦ୍ୱାରରେ ରଖିଦେଇ ଆସିଲେ ।

ଏଣେ ରାଜା ସୂର୍ଯ୍ୟପ୍ରଭ ପୁତ୍ରଚିନ୍ତାରେ ସର୍ବଦା ବ୍ୟାକୁଳ ଥାନ୍ତି । ଭଗବାନ୍ ଭବାନୀପତି ତାଙ୍କୁ ମଧ୍ୟ ସ୍ୱପ୍ନରେ ଆଦେଶ ଦେଲେ, 'ରାଜା, ଉଠ, ତୁମ ସିଂହଦ୍ୱାର ସମ୍ମୁଖରେ ଥିବା ମଣ୍ଡପ ଉପରେ ଏକ ସୁନ୍ଦର ବାଳକ ଶୋଇଛି । ତାକୁ ନେଇଆସ ।' ସ୍ୱପ୍ନଭଙ୍ଗ ହେବାରୁ ରାଜା ପଲଙ୍କ ଉପରେ ଉଠି ବସିଲେ । ରାତ୍ରି ଶେଷ ହୋଇଯାଇଥିବାରୁ ସ୍ୱପ୍ନ ସତ୍ୟ ହେବାର ବିଶ୍ୱାସ ହେଲା । ସେ ଦ୍ୱାରପାଳମାନଙ୍କଠାରୁ ସେହି ସମୟରେ

ବାଳକଟିଏ ସିଂହଦ୍ୱାର ମଣ୍ଡପ ଉପରେ ଶୋଇଥିବା କଥା ଶୁଣିଲେ । ରାଜା ନିଜେ ଯାଇ ସେହି ଶିଶୁବାଳକ ନିକଟରେ ପହଞ୍ଚିଲେ । ତା' ନିକଟରେ ସହସ୍ର ସ୍ୱର୍ଣ୍ଣମୁଦ୍ରା ରଖାଯାଇଥାଏ । ବାଳକଟିର ଦିବ୍ୟ ରୂପ ଏବଂ ତାର ହସ୍ତ ଓ ପାଦରେ ଛତ୍ର, ଧ୍ୱଜ ପ୍ରଭୃତି ଚିହ୍ନ ଦେଖି ରାଜା ଏହାକୁ ମଙ୍ଗଳମୟ ଶିବଶଙ୍କରଙ୍କ ଦାନ ବୋଲି ମନେକଲେ । ବାଳକଟି ତାଙ୍କର ସୁଯୋଗ୍ୟ ଉତ୍ତରାଧିକାରୀ ବୋଲି ମନେହେଲା । ନିଜ ହସ୍ତରେ ତାକୁ ଉଠାଇନେଇ ସେ ପ୍ରାସାଦ ମଧରେ ପ୍ରବେଶ କଲେ । ରାଜ୍ୟସାରା ଉତ୍ସବ ପାଳିତ ହେଲା । ବାରଦିନ ଧରି ନୃତ୍ୟଗୀତରେ ନଗରୀ ମୁଖରିତ ହୋଇଉଠିଲା । ରାଜାଙ୍କ ଅକୁଣ୍ଠିତ ଦାନରେ ରାଜ୍ୟ ମଧରେ ଆଉ କେହି ଦରିଦ୍ର ରହିଲେ ନାହିଁ । ପୁତ୍ରଟିର ନାମକରଣ କରାଗଲା ଚନ୍ଦ୍ରପ୍ରଭ । ପରିବାର ପରିଜନଙ୍କୁ ଆନନ୍ଦିତ କରି ଶିଶୁଟି ନିଜର ଶାରୀରିକ ସୌନ୍ଦର୍ଯ୍ୟ ଓ ଗୁଣରାଶି ସହିତ ଧୀରେଧୀରେ ବୃଦ୍ଧିଲାଭ କରିବାକୁ ଲାଗିଲା ।

କ୍ରମଶଃ ସେ ଯୌବନରେ ପଦାର୍ପଣ କରି ରାଜ୍ୟଶାସନ ଭାର ବହନ କରିବାପାଇଁ ସମର୍ଥ ହେଲେ । ନିଜର ଶୂରତା, ଉଦାରତା, ରାଜନୀତିଜ୍ଞାନ ଇତ୍ୟାଦିଦ୍ୱାରା ସେ ପ୍ରଜାମାନଙ୍କର ପ୍ରିୟପାତ୍ର ହୋଇଉଠିଲେ । ପୁତ୍ରର ଯୋଗ୍ୟତା ଦେଖି ପିତା ସୂର୍ଯ୍ୟପ୍ରଭ ନିଜକୁ ଧନ୍ୟ ମନେକଲେ । ବାର୍ଦ୍ଧକ୍ୟ ଆସିଯାଇଥିବାରୁ ସେ ପୁତ୍ର ହସ୍ତରେ ରାଜ୍ୟଭାର ଅର୍ପଣ କରି ତୀର୍ଥବାସ ନିମିତ୍ତ ଚାଲିଗଲେ । ରାଜନୀତିକୁଶଳ ଚନ୍ଦ୍ରପ୍ରଭ ସମଗ୍ର ପୃଥିବୀର ଅଧିପତି ହୋଇ ରାଜକାର୍ଯ୍ୟ ପରିଚାଳନା କରୁଥିବା ବେଳେ ପିତା କଠୋର ତପସ୍ୟାରେ ନିମଗ୍ନ ରହି ବାରାଣସୀଠାରେ ଶରୀର ତ୍ୟାଗ କଲେ ।

ପିତାଙ୍କ ମୃତ୍ୟୁରେ ଚନ୍ଦ୍ରପ୍ରଭଙ୍କ ଦୁଃଖ ଅସହ୍ୟ ହୋଇପଡ଼ିଲା । କିନ୍ତୁ ପୁତ୍ରର କର୍ତ୍ତବ୍ୟ ରୂପେ ସେ ଧୀରସ୍ଥିର ଭାବରେ ଶ୍ରାଦ୍ଧାଦି କାର୍ଯ୍ୟ ସମାପନ କଲେ । ଧର୍ମପ୍ରାଣ ଚନ୍ଦ୍ରପ୍ରଭ ପିତୃ-ଋଣରୁ ମୁକ୍ତ ହେବାପାଇଁ ମନ୍ତ୍ରୀମାନଙ୍କୁ ଡାକି କହିଲେ, 'ଦେଖନ୍ତୁ, ପିତୃଋଣରୁ ମୁକ୍ତିପାଇବା ସମ୍ଭବ ନୁହେଁ । ତଥାପି ମୁଁ ନିଜ ହସ୍ତରେ ତାଙ୍କର ଗୋଟିଏ ଋଣ ଶୁଝିବାପାଇଁ ଚାହୁଁଛି । ପିତାଙ୍କର ଅସ୍ଥି ବିଧିପୂର୍ବକ ଗଙ୍ଗାରେ ବିସର୍ଜନ କରି ଗୟା କ୍ଷେତ୍ରରେ ପିଣ୍ଡଦାନ କଲେ କିଛି ଋଣ ଶୁଝିହେବ । ଏଥିନିମିତ୍ତ ପୂର୍ବ ସମୁଦ୍ରତଟକୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବାହାରିଛି ।'

ମନ୍ତ୍ରୀମାନେ ରାଜ୍ୟରେ ରାଜାଙ୍କ ଅନୁପସ୍ଥିତି ଶୁଭଙ୍କର ନୁହେଁ ବୋଲି ପ୍ରଜାପ୍ରାଣ ରାଜାଙ୍କୁ ନିରୁତ୍ସାହିତ କରିବାପାଇଁ ଜଣାଇଲେ, 'ଦେବ, ରାଜାମାନେ ଏପରି କରିବା ଉଚିତ ନୁହେଁ । ରାଜ୍ୟ ବହୁଛିଦ୍ରପୂର୍ଣ୍ଣ । ଅରକ୍ଷିତ ହୋଇ ଏହା କ୍ଷଣକପାଇଁ ମଧ ରହିବା

ସମ୍ଭବ ନୁହେଁ । ଅରାଜକ ରାଜ୍ୟ ରାଜ୍ୟ ନୁହେଁ । ଏଣୁ ପିତାଙ୍କ ସଦ୍‌ଗତିପାଇଁ ଏହି କାର୍ଯ୍ୟ ଅନ୍ୟଦ୍ୱାରା କରାଇବା ଉଚିତ । ନିଜର ରାଜଧର୍ମ ପାଳନ କରିବା ବ୍ୟତୀତ ଆପଣଙ୍କପାଇଁ ଅନ୍ୟ ତୀର୍ଥଯାତ୍ରାର ଆବଶ୍ୟକତା କେଉଁଠି ? ପୁଣି ରାଜା ସର୍ବଦା ରକ୍ଷକମାନଙ୍କଦ୍ୱାରା ସୁରକ୍ଷିତ ରହିବା ଉଚିତ । ତୀର୍ଥଯାତ୍ରାରେ ବହୁ ବିପଦର ସମ୍ଭାବନା ଅଛି । ତେଣୁ ଆପଣ ନିଜ ନିଷ୍ପତ୍ତିର ପୁନର୍ବିଚାର କରନ୍ତୁ ।'

ମନ୍ତ୍ରୀମାନଙ୍କ ପ୍ରସ୍ତାବ ଶୁଣି ଦୃଢ଼ବ୍ରତ ଚନ୍ଦ୍ରପ୍ରଭ କହିଲେ 'ମୋ ନିଷ୍ପତ୍ତି ବଦଳିବାର ନୁହେଁ । ପିତାଙ୍କପାଇଁ ମୋତେ ଅବଶ୍ୟ ଯିବାକୁ ପଡ଼ିବ । ମୋର ଯୌବନ ଓ ଶକ୍ତି ଥିବା ଭିତରେ ମୁଁ ତୀର୍ଥଦର୍ଶନ କରିଆସିବି । କିଏ ଜାଣେ, ପରେ ଏହି କ୍ଷଣଭଙ୍ଗୁର ଶରୀରର ଅବସ୍ଥା କ'ଣ ହେବ ? ଫେରିଆସିବା ପର୍ଯ୍ୟନ୍ତ ଆପଣମାନେ ମୋ ରାଜ୍ୟକୁ ରକ୍ଷା କରିବେ ।'

ରାଜାଙ୍କ ନିଷ୍ପତ୍ତି ଶୁଣି ମନ୍ତ୍ରୀମାନେ ଆଉକିଛି କହିପାରିଲେ ନାହିଁ । ଚନ୍ଦ୍ରପ୍ରଭ ତୀର୍ଥଯାତ୍ରାପାଇଁ ପ୍ରସ୍ତୁତ ହେଲେ । ଏକ ଶୁଭ ଦିନରେ ସେ ପ୍ରାତଃସ୍ନାନାଦି କରି ଅଗ୍ନିହୋତ୍ର ବିଧି ସମ୍ପନ୍ନ କଲେ । ଭୋଜନ, ଦାନ ଦକ୍ଷିଣା ଦ୍ୱାରା ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରିବା ପରେ ପ୍ରଶାନ୍ତବେଶ ଧାରଣ ପୂର୍ବକ ସେ ପ୍ରସ୍ଥାନପାଇଁ ରଥାରୋହଣ କଲେ । ସାମନ୍ତ, ରାଜପୁତ, ନାଗରିକ ଓ ଗ୍ରାମିଣ ଜନତା ତାଙ୍କୁ ବଳାଇ ଦେବାପାଇଁ ରାଜ୍ୟ ସୀମାନ୍ତ ପର୍ଯ୍ୟନ୍ତ ଯାଉଥାନ୍ତି । ରାଜାଙ୍କ ଶତ ଅନୁରୋଧ କ୍ରମେ ସେମାନେ ଅନିଚ୍ଛା ସତ୍ତ୍ୱେ ଅର୍ଦ୍ଧପଥରୁ ଫେରିଆସିଲେ । ମନ୍ତ୍ରୀମାନଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ କରି ବ୍ରାହ୍ମଣ ଓ ପୁରୋହିତମାନଙ୍କ ସହିତ ଚନ୍ଦ୍ରପ୍ରଭ ତୀର୍ଥ ଅଭିମୁଖରେ ଅଗ୍ରସର ହେଲେ ।

ବିଭିନ୍ନ ବିଚିତ୍ର ବେଶଭୂଷାରେ ଭୂଷିତ ଜନସମାଜ ଏବଂ ବିଭିନ୍ନ ଭାଷାଭାଷୀ ବ୍ୟକ୍ତିଙ୍କ ସହିତ ସଂସର୍ଗ ଫଳରେ ଚନ୍ଦ୍ରପ୍ରଭ ଅଶେଷ ଆନନ୍ଦ ଲାଭ କରୁଥାନ୍ତି । ବହୁ ଦେଶ ଅତିକ୍ରମ କରି ସେ ଆସି ଗଙ୍ଗା ତଟରେ ପହଞ୍ଚିଲେ । ଗଙ୍ଗାର ଜଳକଲ୍ଲୋଳ ଓ ତରଙ୍ଗରାଶି ପ୍ରାଣୀମାନଙ୍କର ସ୍ୱର୍ଗାରୋହଣପାଇଁ ସୋପାନ ପଂକ୍ତି ପରି ମନେହେଉଥିଲା । ଦେବତା, ଦାନବ ଓ ମାନବମାନଙ୍କ ବନ୍ଦନୀୟା ହିମାଳୟକନ୍ୟା ଗଙ୍ଗା ଭଗବାନ ଶଙ୍କରଙ୍କ ଜଟାଜୁଟ ମଧ୍ୟରୁ ନିଷ୍କ୍ରାନ୍ତ ହୋଇ ଭଗବତୀ ଭବାନୀଙ୍କ ପରି ଦେଖାଯାଉଥାନ୍ତି । ରାଜା ରଥରୁ ଅବତରଣ କରି ତୀର୍ଥସ୍ନାନ ପୂର୍ବକ ଦେବୀ ଗଙ୍ଗାଙ୍କ ଆରାଧନା କଲେ । ପିତା ସୂର୍ଯ୍ୟପ୍ରଭଙ୍କ ଅସ୍ଥି ବିସର୍ଜନ ଏବଂ ଆନୁଷଙ୍ଗିକ ଶ୍ରାଦ୍ଧ, ଦାନ ଇତ୍ୟାଦି ସମ୍ପନ୍ନ କରି ସେ ପୁଣି ରଥ ଆରୋହଣ କଲେ ।

ତାଙ୍କ ରଥ ମୁନିବନ୍ଦିତ ପ୍ରୟାଗ କ୍ଷେତ୍ରରେ ଆସି ପହଞ୍ଚିଲା । ମର୍ତ୍ତ୍ୟବାସୀଙ୍କ ସଦ୍‌ଗତି ନିମିତ୍ତ ବହିଆସୁଥିବା ଗଙ୍ଗା ଓ ଯମୁନାଙ୍କ ମିଳନସ୍ଥଳି ଅଗ୍ନି ଓ ଧୂମଶିଖାର ସମ୍ମିଳନ ପରି ଶୋଭା ପାଉଥାନ୍ତି । ରାଜା ଚନ୍ଦ୍ରପ୍ରଭ ଉପବାସ ରହି ସେଠାରେ ସ୍ନାନ, ଦାନ, ଶ୍ରାଦ୍ଧ ଆଦି ସତ୍‌କାର୍ଯ୍ୟ ଅନୁଷ୍ଠାନ କଲେ । ଏହାପରେ ସେ ଯାଇ ପହଞ୍ଚିଲେ ବାରାଣସୀରେ । ବାରାଣସୀର ମନ୍ଦିରମାନଙ୍କରେ ହିଲ୍ଲୋଳିତ ହେଉଥିବା ପତାକାଗୁଡ଼ିକ ସତେ ଯେପରି ଯାତ୍ରୀମାନଙ୍କୁ 'ଆସ, ମୁକ୍ତିଲାଭ କର' ବୋଲି ଦୂରରୁ ଆହ୍ୱାନ କରୁଥାନ୍ତି । ଚନ୍ଦ୍ରପ୍ରଭ ସେଠାରେ ତିନିଦିନ ଉପବାସ ରହିଲେ । ଶାସ୍ତ୍ରଉକ୍ତ ବିଧିରେ ଭଗବାନ ଶଙ୍କରଙ୍କ ଅର୍ଚ୍ଚନା କରି ସେ ଗୟାକ୍ଷେତ୍ର ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ମାର୍ଗ ମଧ୍ୟରେ ବୃକ୍ଷ ଶାଖାରୁ ପକ୍ଷୀମାନଙ୍କର ମଧୁର କୂଜନ ଶୁଣାଯାଉଥାଏ । ଫଳଭାରାବନତ ବୃକ୍ଷ ଶାଖାଗୁଡ଼ିକ ସତେ ଯେପରି ଚନ୍ଦ୍ରପ୍ରଭଙ୍କୁ ପଦେପଦେ ପ୍ରଣାମ ଜଣାଉଥାନ୍ତି । ବାୟୁ ଆରଣ୍ୟକ ପୁଷ୍ପଗୁଡ଼ିକୁ ତାଙ୍କ ପଦପ୍ରାନ୍ତରେ ଝରାଇ ରାଜାଙ୍କର ଆରାଧନା କରୁଥାଏ । ଏହିପରି ବହୁ ମନୋରମ ବନ ମଧ୍ୟଦେଇ ରାଜା ପବିତ୍ର ଗୟାଶିର ତୀର୍ଥରେ ଆସି ଉପସ୍ଥିତ ହେଲେ । ସେଠାରେ ବିଧିପୂର୍ବକ ଶ୍ରାଦ୍ଧକ୍ରିୟା ସମ୍ପନ୍ନ କରି ସେ ବ୍ରାହ୍ମଣମାନଙ୍କୁ ପର୍ଯ୍ୟାପ୍ତ ଦକ୍ଷିଣାଦ୍ୱାରା ସନ୍ତୁଷ୍ଟ କଲେ । ସେଠାରୁ ଧର୍ମାରଣ୍ୟକୁ ଯାଇ ସେ ଗୟାକୂପରେ ପିଣ୍ଡଦାନପାଇଁ ଉଦ୍ୟତ ହୁଅନ୍ତେ କୂପ ମଧ୍ୟରୁ ତିନୋଟି ମନୁଷ୍ୟର ହସ୍ତ ଉତ୍ତୋଳିତ ହୋଇଆସିଲା । ରାଜା କେଉଁ ହସ୍ତରେ ପିଣ୍ଡଦାନ କରିବେ ଜାଣିପାରିଲେ ନାହିଁ । ସେ କର୍ତ୍ତବ୍ୟ ସ୍ଥିର କରିନପାରି ଉପସ୍ଥିତ ବ୍ରାହ୍ମଣମାନଙ୍କୁ ଚାହିଁବାରୁ ସେମାନେ ନିବେଦନ କଲେ—

'ମହାରାଜ, ଏ ତିନୋଟି ମଧ୍ୟରୁ ଗୋଟିଏ ହସ୍ତ ନିଶ୍ଚିତଭାବେ କୌଣସି ଚୋରର । କାରଣ ଏଥିରେ ଲୌହକଙ୍କଣର ଚିହ୍ନ ସ୍ପଷ୍ଟ ଦେଖାଯାଉଛି । ଦ୍ୱିତୀୟ ହସ୍ତଟି କୌଣସି ବ୍ରାହ୍ମଣର । କାରଣ ଏଥିରେ କୁଶଛେଦନ କରିଥିବାର ଚିହ୍ନ ସୁସ୍ପଷ୍ଟ । ତୃତୀୟ ହସ୍ତଟି ଉତ୍ତମଲକ୍ଷଣ ଏବଂ ମୁଦ୍ରିକାଯୁକ୍ତ ହୋଇଥିବା ଯୋଗୁଁ କୌଣସି ରାଜାଙ୍କର ହେବ । ଏଣୁ ଆମେ ବୁଝିପାରୁନାହୁଁ ଆପଣ କେଉଁ ହସ୍ତରେ ପିଣ୍ଡଦାନ ଦେଲେ ଆପଣଙ୍କ ପିତୃଲୋକ ମୁକ୍ତି ଲାଭ କରିବେ ।' ରାଜା ଚନ୍ଦ୍ରପ୍ରଭ ପିଣ୍ଡହସ୍ତରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଗଲେ ।''

ବେତାଳ ସ୍କନ୍ଧ ଉପରୁ ପ୍ରଶ୍ନ କଲା, 'ରାଜା, ତମେ ତ ଏହି ଆଶ୍ଚର୍ଯ୍ୟଜନକ କଥା ଶୁଣିଲ । ବର୍ତ୍ତମାନ କହ କାହା ହାତରେ ପିଣ୍ଡଦାନ ଦେବା ଚନ୍ଦ୍ରପ୍ରଭର ଉଚିତ ହେବ ?'

ଧର୍ମଜ୍ଞ ତ୍ରିବିକ୍ରମସେନ ଶାପର ପରିଣାମ ସ୍ମରଣ କରି ଉତ୍ତର ଦେଲେ, 'ରାଜା ଚନ୍ଦ୍ରପ୍ରଭ ଚୋର ହାତରେ ହିଁ ପିଣ୍ଡଦେବା ଉଚିତ । କାରଣ ସେ ତା'ର କ୍ଷେତ୍ରଜ ପୁତ୍ର;

ଅନ୍ୟ ଦୁଇଜଣ ନୁହଁନ୍ତି । ଏହାଙ୍କୁ ଜନ୍ମ ଦେଇଥିବା ବ୍ରାହ୍ମଣକୁ ଏହାଙ୍କର ପିତା ରୂପେ ଗ୍ରହଣ କରାଯାଇପାରିବ ନାହିଁ; କାରଣ ସେ ଧନବିନିମୟରେ ଗୋଟିଏ ରାତ୍ରି ପାଇଁ ନିଜକୁ ବିକ୍ରି କରିଦେଇଥିଲା । ରାଜା ସୂର୍ଯ୍ୟପ୍ରଭ ଚନ୍ଦ୍ରପ୍ରଭଙ୍କର ଜାତକର୍ମାଦି ସଂସ୍କାର କରି ପାଳନପୋଷଣ କରିଥିଲେ ମଧ୍ୟ ତାଙ୍କୁ ପିତା ଭାବରେ ଗ୍ରହଣ କରାଯାଇପାରିବ ନାହିଁ; କାରଣ ଶିଶୁଟି ନିକଟରେ ଯେଉଁ ସ୍ୱର୍ଣ୍ଣମୁଦ୍ରା ରହିଥିଲା ତାହା ଶିଶୁଟିର ନିଜର । ଏହାକୁ ପାଳନ ପୋଷଣର ମୂଲ୍ୟ ବୋଲି ଗ୍ରହଣ କରାଯାଇପାରେ । ତେଣୁ ଚୋର ଧନବତୀକୁ ତା'ର ମାତାଠାରୁ ଜଳ ଗ୍ରହଣ ପୂର୍ବକ ନିଜର ସ୍ତ୍ରୀ ରୂପେ ସ୍ୱୀକାର କରିଥିଲା, ତା'ରି ଆଦେଶରେ ହିଁ ଧନବତୀ ବ୍ରାହ୍ମଣ ଯୁବକଦ୍ୱାରା ପୁତ୍ର ଉତ୍ପନ୍ନ କରାଇଥିଲା, ପୁଣି ସେ ତା'ର ସମସ୍ତ ସମ୍ପତ୍ତି ଧନବତୀକୁ ସମର୍ପଣ କରିଦେଇଥିଲା । ଏସବୁ ଦୃଷ୍ଟିରୁ ଚନ୍ଦ୍ରପ୍ରଭ ପ୍ରକୃତରେ ଚୋରର ହିଁ କ୍ଷେତ୍ରଜ ସନ୍ତାନ । ତେଣୁ ମୋ ମତରେ ଚନ୍ଦ୍ରପ୍ରଭ ଚୋରହସ୍ତରେ ହିଁ ପିଣ୍ଡଦାନ ଦେବା ଉଚିତ ।''

ରାଜାଙ୍କ କଥା ଶୁଣି ବେତାଳ ପୁଣି ବୃକ୍ଷଶାଖାକୁ ଫେରିଗଲା । ତାର ଅନୁସରଣ କରିବା ବ୍ୟତୀତ ରାଜାଙ୍କର ଗତ୍ୟନ୍ତର ନଥିଲା ।

## ସପ୍ତବିଂଶ ତରଙ୍ଗ

### ବିଂଶ ବେତାଳ : ରାଜା ଓ ବ୍ରାହ୍ମଣ ପୁତ୍ର କଥା

ରାଜା ତ୍ରିବିକ୍ରମସେନ ଶିଂଶପା ବୃକ୍ଷ ମୂଳକୁ ଯାଇ ପୁଣି ବେତାଳକୁ ସ୍କନ୍ଧ ଉପରକୁ ଉଠାଇଲେ । ମୌନଭାବରେ ସେ ଲକ୍ଷ୍ୟସ୍ଥଳ ପ୍ରତି ଅଗ୍ରସର ହେଉଥିଲା ବେଳେ ବେତାଳ କହିଲା, ''ରାଜା, ଇଏ ତୁମର କିପରି ଜିଦ୍ ? ରାଜପ୍ରାସାଦକୁ ଫେରିଯାଇ ରାତ୍ରି ଉପଭୋଗ କର । ତୁମେ ସେହି ଦୁଷ୍ଟ ଭିକ୍ଷୁ ପାଖକୁ ମୋତେ ଯାହା ନେଇଯାଉଛ ତାହା ଉଚିତ ହେଉନାହିଁ । କିନ୍ତୁ ତୁମର ଯଦି ଏହାହିଁ ଅଭିଳାଷ ତୁମେ ତାହା କରିପାର । ତୁମେ ଧୈର୍ଯ୍ୟ ଦେଖି ମୁଁ ଅତ୍ୟନ୍ତ ପ୍ରୀତ । ଏଣୁ ବର୍ତ୍ତମାନ ମୁଁ ଆଉ ଗୋଟିଏ କଥା କହୁଛି, ତାକୁ ଶୁଣି ପଥକ୍ଳାନ୍ତି ଦୂରକର ।

ଚିତ୍ରକୂଟ ବୋଲି ଏକ ସ୍ୱନାମଧନ୍ୟ ନଗରୀ ଅଛି । ସେଠାରେ ବିଭିନ୍ନ ଜାତିର ଲୋକ ନିଜନିଜ ମର୍ଯ୍ୟାଦାକୁ ଉଲ୍ଲଂଘନ ନକରି ବାସ କରୁଅଛନ୍ତି । ସେଠାରେ ପୂର୍ବେ ସମସ୍ତ ରାଜାଙ୍କ ଶିଖାମଣି ତୁଲ୍ୟ ଚନ୍ଦ୍ରାବଲୋକ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ମିତ୍ରମାନଙ୍କପାଇଁ ତାଙ୍କର ଦୃଷ୍ଟି ଅମୃତ ବୃଷ୍ଟି କରୁଥିଲା । ବିଦ୍ୱାନ୍‌ମାନେ ତାଙ୍କୁ ବୀରତ୍ୱ ରୂପକ ହସ୍ତୀର ଅର୍ଗଳସ୍ତମ୍ଭ, ତ୍ୟାଗର ଉତ୍ପତ୍ତି ଭୂମି ଏବଂ ରୂପର ବିଳାସ କକ୍ଷ ବୋଲି କହୁଥିଲେ । କିନ୍ତୁ ଉପଯୁକ୍ତ ପତ୍ନୀଟିଏ ପାଇଁ ରାଜା ଥିଲେ ସର୍ବଦା ଚିନ୍ତିତ ।

ଦିନେ ସେ ନିଜର ଉଦ୍‌ବେଗ ଶାନ୍ତ କରିବାପାଇଁ ଅଶ୍ୱାରୂଢ଼ ଅନୁଚରମାନଙ୍କ ସହିତ ମୃଗୟାରେ ବାହାରିଲେ । ଅରଣ୍ୟ ମଧ୍ୟରେ ପ୍ରବେଶ କରି ନୀଳ ଆକାଶରେ ବିଚରଣ କରୁଥିବା ପ୍ରଚଣ୍ଡ ସୂର୍ଯ୍ୟ ଯେପରି କିରଣଜାଳଦ୍ୱାରା ଅନ୍ଧକାରକୁ ନାଶ କରନ୍ତି ସେହିପରି ନିଘଞ୍ଚ ଅରଣ୍ୟାନୀ ମଧ୍ୟରେ ରାଜା ନିଜର ଉଜ୍ଜ୍ୱଳ ଶରଜାଳ ଦ୍ୱାରା ବନ୍ୟ ଶୂକରମାନଙ୍କୁ ବଧ କରିବାକୁ ଲାଗିଲେ । ରାଜା ଥିଲେ ପାଣ୍ଡବପୁତ୍ର ଅର୍ଜୁନଙ୍କଠାରୁ ମଧ୍ୟ

ଅଧିକ ପରାକ୍ରମୀ । ଯୁଦ୍ଧରେ ପୃଷ୍ଠଭଙ୍ଗ ଦେବା ଜାଣିନଥିବା ଏବଂ ଶ୍ୱେତଶ୍ମଶ୍ରୁଦ୍ୱାରା ଭୟଙ୍କର ଦେଖାଯାଉଥିବା ଭୀଷ୍ମଙ୍କ ପରି ଉନ୍ମତ୍ତ ପଶୁରାଜ ସିଂହମାନଙ୍କୁ ଶରଶଯ୍ୟାରେ ଶାୟିତ କରୁଥିଲେ । ବଜ୍ରତୁଲ୍ୟ କଠୋର କର୍ତ୍ତରୀରେ ପର୍ବତତୁଲ୍ୟ ଶରଭମାନଙ୍କର ପକ୍ଷ ଛେଦନ କରି ରାଜା ଦେବରାଜ ଇନ୍ଦ୍ରଙ୍କ ତୁଲ୍ୟ ବନ ମଧ୍ୟରେ ବିଚରଣ କରୁଥାନ୍ତି । ଏହିପରି ପଶୁମାନଙ୍କୁ ଶିକାର କରୁଥିବା ବେଳେ ଅରଣ୍ୟର ଅଭ୍ୟନ୍ତର ଭାଗ ଦର୍ଶନ ଲାଳସାରେ ରାଜା ଏକାକୀ ଅଶ୍ୱର ଗତିକୁ ତୀବ୍ରତର କରିଦେଲେ । କଶାଘାତର ବିକଟ ଶବ୍ଦରେ ରାଜାଙ୍କ ଅଶ୍ୱଟି ଅତ୍ୟନ୍ତ ଉତ୍ତେଜିତ ହୋଇଉଠିଲା । ମାର୍ଗର ସମତା ଓ ବନ୍ଧୁରତା ପ୍ରତି ଧ୍ୟାନ ନଦେଇ ଅଶ୍ୱ ବାୟୁଠାରୁ ଅଧିକ ବେଗରେ ପ୍ରଧାବିତ ହେବାକୁ ଲାଗିଲା । କ୍ଷଣକ ମଧ୍ୟରେ ରାଜା ଦଶଯୋଜନ ଅତିକ୍ରମ କରି ଅନ୍ୟ ଏକ ଅରଣ୍ୟ ମଧ୍ୟରେ ଯାଇ ପ୍ରବେଶ କଲେ । ସେଠାରେ ଅଶ୍ୱର ଗତି ସ୍ଥଗିତ ହେବାରୁ ରାଜା ଅଶ୍ୱପୃଷ୍ଠରୁ ଅବତରଣ କଲେ, କିନ୍ତୁ ଦିଗ ସମ୍ପର୍କରେ ତାଙ୍କର ଧାରଣା ଆଉ ହୋଇପାରିଲା ନାହିଁ । ରାଜା କ୍ଳାନ୍ତ ହୋଇ ଇତସ୍ତତଃ ବିଚରଣ କରିବାକୁ ଲାଗିଥାଆନ୍ତି । ଏ ସମୟରେ ଗୋଟିଏ ପଦ୍ମପୁଷ୍କରିଣୀ ରାଜାଙ୍କର ଦୃଷ୍ଟିଗୋଚର ହେଲା । ପଦ୍ମ ପୁଷ୍ପଗୁଡ଼ିକ ଶୀତଳ ବାୟୁ ପ୍ରବାହରେ ସଞ୍ଚାଳିତ ହୋଇ ସତେ ଯେପରି ରାଜାଙ୍କୁ ସ୍ୱାଗତ ଜଣାଉଥିଲେ । ରାଜା ସରୋବର ତଟରେ ଘୋଡ଼ାଟିକୁ ଖୋଲିଦେଲେ । ତା' ପିଠିରୁ ଜିନ୍ ବାହାର କରିନେଇ ସରୋବର ମଧ୍ୟରେ ତାକୁ ସ୍ନାନ ଓ ଜଳପାନ କରାଇଲେ । ନିକଟରୁ କିଛି ଘାସପତ୍ର ସଂଗ୍ରହ କରି ଅଶ୍ୱଟିକୁ ଖୁଆଇବା ପରେ ନିକଟସ୍ଥ ବୃକ୍ଷ ଛାୟାରେ ବାନ୍ଧିଦେଲେ । ଅଶ୍ୱର ପରିଚର୍ଯ୍ୟା କରିବା ପରେ ରାଜା ନିଜେ ନିତ୍ୟକର୍ମ ସମାପନ କରି ଜଳପାନଦ୍ୱାରା ଆଶ୍ୱସ୍ତ ହେଲେ । କ୍ଳାନ୍ତି ଦୂର ହେବା ପରେ ଅରଣ୍ୟର ସୌନ୍ଦର୍ଯ୍ୟ ଉପଭୋଗ କରୁଥିବା ବେଳେ ଏକ ଅଶୋକ ବୃକ୍ଷ ଛାୟାରେ ସଖୀମାନଙ୍କ ସହିତ ବସିଥିବା ଜଣେ ମୁନି କନ୍ୟାଙ୍କଠାରେ ତାଙ୍କର ଦୃଷ୍ଟିନିବଦ୍ଧ ହେଲା । ପୁଷ୍ପ ଅଳଙ୍କାର ଏବଂ ବଲ୍କଳ ପରିଧେୟଦ୍ୱାରା ସେ ଶୋଭା ପାଉଥାନ୍ତି । ରମଣୀୟ ଜଟାଜୁଟ ତାଙ୍କୁ ଅଧିକ ଆକର୍ଷଣୀୟା କରିଥାଏ । ରାଜା ତାଙ୍କୁ ଦେଖି କାମମୋହିତ ହୋଇପଡ଼ିଲେ ।

କନ୍ୟାଟି ତାଙ୍କ ମନରେ ବିଭିନ୍ନ ସନ୍ଦେହ ସୃଷ୍ଟିକଲା । ସେ ଚିନ୍ତା କରିବାକୁ ଲାଗିଲେ, 'ନିର୍ଜନ ଅରଣ୍ୟାନୀ ମଧ୍ୟରେ କନ୍ୟାଟି କିଏ ହୋଇପାରନ୍ତି ? ଇଏ ପଦ୍ମସରୋବରରେ ସ୍ନାନ କରିବାପାଇଁ ଆସିଥିବା ସାବିତ୍ରୀ ନା ପୁନଃ ତପସ୍ୟା କରିବାପାଇଁ ମହାଦେବଙ୍କ ଉତ୍ସଙ୍ଗରୁ ଉଠିଆସିଥିବା ପାର୍ବତୀ ? ବ୍ରତ ପାରଣା କରିବାପାଇଁ ହୁଏତ

ଚନ୍ଦ୍ରମା ମଧ ଦିବାଭାଗରେ ଏଠାକୁ ଆସିଥାଇପାରନ୍ତି । ତାଙ୍କ ନିକଟକୁ ଯାଇ ବରଭିକ୍ଷା କରିବା ଯଥାର୍ଥ ହେବ୍।' ଏହିପରି ଚିନ୍ତା କରି ରାଜା ଧୀରେ ଧୀରେ ଅଶୋକ ବୃକ୍ଷ ପ୍ରତି ଅଗ୍ରସର ହେଲେ ।

ମୁନିକନ୍ୟା ରାଜାଙ୍କୁ ଆସୁଥିବା ଦେଖି ବିଚଳିତ ହୋଇଉଠିଲେ । ରାଜାଙ୍କ ରୂପରାଶି ତାଙ୍କ ଚକ୍ଷୁରେ ପ୍ରବେଶ କରି ସେଗୁଡ଼ିକୁ ବିସ୍ଫାରିତ କରିଦେଲା । ସେ ଗ୍ରଥନ କରୁଥିବା ପୁଷ୍ପମାଲ୍ୟରେ ତାଙ୍କ ଅଙ୍ଗୁଳିଗୁଡ଼ିକ ସ୍ଥିର ହୋଇଗଲା । ତାଙ୍କ ପରିଚୟ ସମ୍ପର୍କରେ ବିଭିନ୍ନ ପ୍ରକାର ଆଶଙ୍କା ତାଙ୍କ ମନରେ ଜାଗ୍ରତ ହେଲା । ସେ ଯୁବକ ରାଜାଙ୍କୁ ଜଣେ ବିଦ୍ୟାଧର ବା ସିଦ୍ଧ ବୋଲି ମନେକଲେ । ରାଜା ନିକଟରେ ଆସି ଉପସ୍ଥିତ ହେବାରୁ ସେ ଲଜ୍ଜାବଶତଃ ନିଜ ଆସନରୁ ଉଠି ଠିଆହେଲେ । ତାଙ୍କ ପାଦଯୁଗଳ ଯିବାପାଇଁ ଇଚ୍ଛା କରୁନଥିଲେ ମଧ ସେ ଧୀରେ ଧୀରେ ରାଜାଙ୍କ ପ୍ରତି କଟାକ୍ଷପାତ କରି ଅନ୍ୟତ୍ର ଯିବାପାଇଁ ଉପକ୍ରମ କଲେ ।

ତାଙ୍କ ମନୋଭାବ ବୁଝିବାରେ ଚତୁର ରାଜାଙ୍କ ପକ୍ଷରେ ବିଳମ୍ବ ହେଲାନାହିଁ । ସେ ସମ୍ମୁଖକୁ ଆସି ନମ୍ରତାର ସହିତ କହିଲେ, 'ପ୍ରଥମଥର ପାଇଁ ସମ୍ମୁଖରେ ଉପସ୍ଥିତ ହୋଇଥିବା ଏବଂ ଦର୍ଶନମାତ୍ର ଚାହୁଁଥିବା ଦୂରାଗତ ଆଗନ୍ତୁକ ପ୍ରତି ତୁମ ପରି ଆଶ୍ରମ ବାସିନୀମାନଙ୍କର ଏ କିପରି ସ୍ୱାଗତ ସତ୍କାର ? ମୋତେ ଦେଖି ତ ତୁମେ ଅନ୍ୟତ୍ର ଚାଲିଯିବାପାଇଁ ଉଦ୍ୟତ ହେଲଣି ।' ରାଜାଙ୍କ ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତିରେ, ଚତୁରତାରେ ତାଙ୍କ ସମକକ୍ଷ ଜଣେ ସଖୀ ରାଜାଙ୍କୁ ସେଠାରେ ବସାଇ ଯଥୋଚିତ ଅତିଥି ସତ୍କାର କଲା । ରାଜା ଉତ୍ସୁକତାର ସହିତ ପ୍ରୀତିପୂର୍ଣ୍ଣ ଭାବେ ଜିଜ୍ଞାସା କଲେ, 'ଭଦ୍ରେ, ତୁମର ଏହି ସଖୀ କେଉଁ ପବିତ୍ର ବଂଶକୁ ଅଳଙ୍କୃତ କରୁଛନ୍ତି ? ଏହାଙ୍କ ନାମରେ କେଉଁସବୁ ଶୁଭ ଅକ୍ଷର ଅଛି, ଯାହା ଶ୍ରୋତାର କର୍ଣ୍ଣରେ ଅମୃତ ବର୍ଷା କରିବାପାଇଁ ସମର୍ଥ । ଏହି ନିର୍ଜନ ବନ ମଧରେ ସେ ନିଜର କୁସୁମ କୋମଳ ଶରୀରକୁ ତପସ୍ୱିନୀର ଦିନଚର୍ଯ୍ୟାରେ କାହିଁକି ସନ୍ତପ୍ତ କରୁଛନ୍ତି ?' ରାଜାଙ୍କ ଶଙ୍କା ଦୂର କରିବାପାଇଁ ସଖୀ ମୁନିକନ୍ୟାଙ୍କ ଏପରି ପରିଚୟ ଦେଲା—

'ମୋର ସଖୀ ମହର୍ଷି କଣ୍ୱଙ୍କ କନ୍ୟା । ତାଙ୍କ ଆଶ୍ରମରେ ହିଁ ସେ ଲାଳିତପାଳିତ । ଅପ୍‌ସରା ମେନକାଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିବା ମୋର ସଖୀଙ୍କ ଶୁଭନାମ ଇନ୍ଦିବରପ୍ରଭା । ପିତାଙ୍କ ଅନୁମତିକ୍ରମେ ସେ ଏହି ସରୋବରରେ ସ୍ନାନ କରିବାପାଇଁ ଆସିଅଛନ୍ତି । ଆମ ଆଶ୍ରମ ଏଠାରୁ ଦୂର ନୁହେଁ ।'

ମୁନିକନ୍ୟାଙ୍କ ପରିଚୟ ଲାଭ କରି ରାଜା ପ୍ରସନ୍ନ ହେଲେ । କଣ୍ୱଙ୍କ ନିକଟରେ ତାଙ୍କ କନ୍ୟାର ପାଣି ପ୍ରାର୍ଥନା କରିବାପାଇଁ ରାଜା ଅଶ୍ୱାରୋହଣ ପୂର୍ବକ ଆଶ୍ରମ ଅଭିମୁଖରେ ଅଗ୍ରସର ହେଲେ । ଆଶ୍ରମଠାରୁ କିଛି ଦୂରରେ ରାଜା ଅଶ୍ୱଟିକୁ ବୃକ୍ଷ ଛାୟାରେ ବାନ୍ଧିଦେଇ ଏକାକୀ ଆଶ୍ରମ ମଧରେ ଯାଇ ପ୍ରବେଶ କଲେ । ଆଶ୍ରମଟି ତପସ୍ୱୀମାନଙ୍କ ଦ୍ୱାରା ପୂର୍ଣ୍ଣ ଥିଲା । ଜଟା ଓ ବଲ୍କଳ ଧାରଣ କରିଥିବା ତାପସ କୁମାରମାନେ ଆଶ୍ରମସ୍ଥିତ ବୃକ୍ଷ ପରି ମନେହେଉଥିଲେ । ସେମାନଙ୍କ ମଧରେ ମହର୍ଷି କଣ୍ୱ ଉପବେଶନ କରିଥାନ୍ତି । ତାଙ୍କ ଶରୀରରୁ ନିର୍ଗତ ତେଜୋରାଶି ଚନ୍ଦ୍ରମା ତୁଲ୍ୟ ଅନ୍ୟମାନଙ୍କୁ ଆହ୍ଲାଦିତ କରୁଥାଏ ।

ରାଜା ନିକଟକୁ ଯାଇ ମହର୍ଷିଙ୍କ ଚରଣ ବନ୍ଦନା କଲେ । ମୁନି ମଧ ତାଙ୍କର ଉଚିତ ଅତିଥିସତ୍କାର କରି ବିଶ୍ରାମର ବ୍ୟବସ୍ଥା କଲେ । ରାଜା ପାନ ଭୋଜନ କରି ଆଶ୍ୱସ୍ତ ହୁଅନ୍ତେ ତ୍ରିକାଳଦର୍ଶୀ ମହର୍ଷି ପ୍ରଶାନ୍ତ ସ୍ୱରରେ କହିଲେ, 'ବତ୍ସ, ଚନ୍ଦ୍ରାବଲୋକ ! ତୁମର ହିତପାଇଁ ମୁଁ ଯାହା କହୁଛି ତାହା ମନଦେଇ ଶୁଣ । ପ୍ରତ୍ୟେକ ସାଂସାରିକ ପ୍ରାଣୀ ମୃତ୍ୟୁକୁ କିପରି ଭୟ କରନ୍ତି ତାହା ତୁମେ ଜାଣ । ତଥାପି ତୁମେ ଏହି ନୀରିହ ମୃଗମାନଙ୍କୁ କାହିଁକି ହତ୍ୟା କରି ଚାଲିଛ ? ଭୀତସନ୍ତ୍ରସ୍ତମାନଙ୍କ ରକ୍ଷା କରିବାପାଇଁ ବିଧାତା କ୍ଷତ୍ରିୟମାନଙ୍କ ଅସ୍ତ୍ରଶସ୍ତ୍ର ସବୁ ନିର୍ମାଣ କରିଛନ୍ତି । ସେ ସବୁର ଅପବ୍ୟବହାର ତୁମ ପକ୍ଷରେ ଉଚିତ ନୁହେଁ । ତେଣୁ ତୁମେ ଧର୍ମ ମାର୍ଗରେ ପ୍ରଜାମାନଙ୍କର ରକ୍ଷାକର, ଶତ୍ରୁମାନଙ୍କୁ ନାଶ କର ଏବଂ ସଂଗ୍ରାମ ଉପଯୋଗୀ ହସ୍ତୀ, ଅଶ୍ୱ ଓ ଶସ୍ତ୍ର ଚାଳନ ଅଭ୍ୟାସ କରି ଚଞ୍ଚଳା ରାଜଲକ୍ଷ୍ମୀଙ୍କୁ ସ୍ଥିର ରଖ । ରାଜ୍ୟସୁଖ ଭୋଗକରି ଧନସମ୍ପତ୍ତି ଦାନ କର । ଏହାଦ୍ୱାରା ଦିଗବିଦିଗରେ ତୁମର ଅକ୍ଷୟ ଯଶ ପ୍ରସାରିତ ହେବ । କୃତାନ୍ତ କ୍ରୀଡ଼ା ପରି ଏହି ମୃଗୟା ତ୍ୟାଗ କରିବା ତୁମ ପକ୍ଷରେ ହିତକର । ଏଥିରେ ମାରିବା, ମରିବା ଏବଂ ନିକଟରେ ଥିବା—ଏହି ତିନୋଟି ଯାକ ପକ୍ଷର ଅନିଷ୍ଟ ହୋଇଥାଏ । ରାଜା ପାଣ୍ଡୁଙ୍କ କଥା କ'ଣ ତୁମେ ଜାଣିନ ? ଏଣୁ ମୃଗୟା ପରିତ୍ୟାଗ କର ।'

ମହର୍ଷିଙ୍କ ଅଭିପ୍ରାୟ ବୁଝିପାରି ଅର୍ଥକୁଶଳୀ ରାଜା କୃତାଞ୍ଜଳି ପୁଟରେ ଉତ୍ତର ଦେଲେ, 'ଭଗବନ୍, ଆପଣ ମୋ ପ୍ରତି ଅମାପ ଅନୁଗ୍ରହ କରିଛନ୍ତି । ଆପଣଙ୍କ ଉପଦେଶ ମୋପାଇଁ ଅତ୍ୟନ୍ତ ମୂଲ୍ୟବାନ୍ । ମୁଁ ବର୍ତ୍ତମାନଠାରୁ ମୃଗୟା ତ୍ୟାଗ କରୁଛି । ଆପଣଙ୍କ କୃପାରୁ ସମସ୍ତ ପ୍ରାଣୀ ଆଜିଠାରୁ ନିର୍ଭୟ ହୋଇଯାନ୍ତୁ ।' ମହର୍ଷି ରାଜାଙ୍କ ପ୍ରତିଶ୍ରୁତିରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଈପ୍ସିତ ବରଭିକ୍ଷା କରିବା ନିମିତ୍ତ କହିଲେ । ରାଜା ଏହାକୁ ଏକ ସମୟୋଚିତ ସୁଯୋଗ ମନେକରି ପ୍ରାର୍ଥନା କଲେ, 'ଭଗବନ୍, ଯଦି ଆପଣ

ମୋ ପ୍ରତି ପ୍ରସନ୍ନ ତେବେ ଆପଣଙ୍କ କନ୍ୟା ଇନ୍ଦିବରପ୍ରଭାଙ୍କୁ ମୋ ହସ୍ତରେ ଅର୍ପଣ କରନ୍ତୁ ।' ରାଜାଙ୍କର ଯାଚନାରେ ମହର୍ଷି ସ୍ନାନଶେଷ କରି ଫେରିଥିବା ଅପ୍‌ସରା ଗର୍ଭ-ସମ୍ଭବା ରାଜଯୋଗ୍ୟା କନ୍ୟାଟିକୁ ରାଜା ଚନ୍ଦ୍ରାବଲୋକଙ୍କ ସହିତ ଯଥାବିଧି ବିବାହ ଦେଲେ ।

ବିବାହ ପରେ ରାଜା ପତ୍ନୀ ସହିତ ନିଜ ରାଜ୍ୟକୁ ଯିବାପାଇଁ ପ୍ରସ୍ତୁତ ହେଲେ । ମୁନିପତ୍ନୀଙ୍କଦ୍ୱାରା କନ୍ୟା ବିଦାୟପାଇଁ ଆୟୋଜନ କରାଗଲା । ମୁନିକନ୍ୟାଙ୍କୁ ସବାରିରେ ବସାଇ ରାଜା ଅଶ୍ୱାରୋହଣ କଲେ । ମହର୍ଷି କଣ୍ୱ ଅଶ୍ରୁଳ ନୟନରେ ଆଶ୍ରମର ସୀମା ପର୍ଯ୍ୟନ୍ତ ଆସି କନ୍ୟାକୁ ବିଦାୟ ଦେଲେ ।

ରାଜା ନବବଧୂ ସହିତ ଯାତ୍ରା କରୁଥିବା ବେଳେ ଭଗବାନ ସୂର୍ଯ୍ୟ ସମଗ୍ର ଦିନର ବିଚରଣଜନିତ କ୍ଳାନ୍ତିରେ ଅବସନ୍ନ ହୋଇ ଅସ୍ତାଚଳ ଶିଖରରେ ବିଶ୍ରାମ ନେଲେ । ରଜନୀ ରାଣୀ ଅଭିସାରିକା ରୂପରେ କୃଷ୍ଣବସ୍ତ୍ର ପରିଧାନ କରି ଧୀରେ ଧୀରେ ନିଜର ଆବାସ ସ୍ଥାନରୁ ନିଷ୍କ୍ରାନ୍ତ ହୋଇଆସିଲେ । ମୃଗନୟନୀଙ୍କ (ମୃଗଶିରାନକ୍ଷତ୍ରଯୁକ୍ତ) ଅନୁରାଗରେ ବାରୁଣିଦିଗ ରକ୍ତରଞ୍ଜିତ ହେଲା ।

ସଂଧ୍ୟାବେଳେ ରାଜା ସଜ୍ଜନମାନଙ୍କ ଚିତ୍ତବୃତ୍ତି ପରି ନିର୍ମଳ ଜଳରାଶିରେ ପରିପୂର୍ଣ୍ଣ ଏକ ସରୋବର ତଟରେ ଥିବା ଗୋଟିଏ ଅଶ୍ୱତ୍ଥ ବୃକ୍ଷ ନିକଟରେ ଆସି ଉପନୀତ ହେଲେ । ବୃକ୍ଷଟି ନବପଲ୍ଲବିତ ଶାଖା ଓ ପତ୍ରରେ ଭରପୂର ଥିଲା । ତା'ର ପାଦଦେଶ ନବଦୂର୍ବାଦଳଦ୍ୱାରା ସବୁଜ ଆସ୍ତରଣର ଭ୍ରମ ସୃଷ୍ଟି କରୁଥିଲା । ରାଜା ସ୍ଥାନଟି ଦେଖି ସେଠାରେ ରାତ୍ରିଯାପନ ପାଇଁ ନିଶ୍ଚୟ କଲେ । ଅଶ୍ୱରୁ ଅବତରଣ କରି ସେ ତା'ର ଖାଦ୍ୟପାନୀୟର ବ୍ୟବସ୍ଥା କରି ମହର୍ଷି କନ୍ୟା ସହିତ ପୁଷ୍ପ ଶଯ୍ୟାରେ ବିଶ୍ରାମ ନେଲେ ।

ରାତ୍ରି ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଚନ୍ଦ୍ର ପ୍ରାଚୀ ଦିଗ୍‌ବଧୂର ମୁଖରୁ ନୀଳ ଶାଟିକାର ଆବରଣ ହଟାଇ ନେଇ ଅନୁରାଗ ରଞ୍ଜିତ ଚୁମ୍ବନରେ ଆଚ୍ଛାଦିତ କରିଦେଲେ । ଚନ୍ଦ୍ରକିରଣରେ ସମସ୍ତ ଦିଗ-ନାୟିକା ମାନ ତ୍ୟାଗ ପୂର୍ବକ ପ୍ରଫୁଲ୍ଲିତ ଦେଖାଗଲେ । ରତ୍ନଦ୍ୱୀପର ଆଲୋକ ଶିଖାପରି ଚନ୍ଦ୍ରଙ୍କ ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ଚତୁର୍ଦ୍ଦିଗକୁ ଆଲୋକିତ କରିବା ସହିତ ସେହି ଅଶ୍ୱତ୍ଥ ମୂଳରୁ ମଧ୍ୟ ଅନ୍ଧକାର ଦୂରେଇ ନେଲା । ରାଜା ଚନ୍ଦ୍ରାବଲୋକ ଜ୍ୟୋତ୍ସ୍ନା ପ୍ଲାବିତ ସରୋବର ତଟରେ ନବ ସଙ୍ଗମର ଉତ୍କଣ୍ଠା ସମ୍ବରଣ କରିନପାରି ଇନ୍ଦିବରପ୍ରଭାଙ୍କ ସହିତ ସୁରତୋତ୍ସବ ପାଳନ କଲେ । ସେ ଧୀରେଧୀରେ ନବବଧୂଙ୍କ ନୀବୀ ଉନ୍ମୋଚନ

କଲେ । ତା ସହିତ ତାଙ୍କ ଲଜ୍ଜା ମଧ୍ୟ ଦୂରୀଭୂତ ହେଲା । ଅଧରରେ ଦନ୍ତକ୍ଷତ ଦ୍ୱାରା ସେ ମୁଗ୍ଧା ନାୟିକାର ମୁଗ୍ଧତା ଖଣ୍ଡନ କଲେ । ଇନ୍ଦିବରପ୍ରଭାଙ୍କ ସ୍ତନଯୁଗଳ ଯୌବନ ରୂପକ ହସ୍ତୀର ଗଣ୍ଡସ୍ଥଳ ପରି ସ୍ନିଗ୍ଧ ଓ ଉନ୍ନତ ଥିଲା । ରାଜା ନଖକ୍ଷତ ରୂପକ ନୂତନ ନକ୍ଷତ୍ରମାଳା ଅଳଙ୍କାରଦ୍ୱାରା ତାକୁ ବିଭୂଷଣ କଲେ । ମୁନିକୁମାରୀଙ୍କ ମୁଖ, କପୋଳ, ଗଣ୍ଡ, ନେତ୍ର ପ୍ରଭୃତିକୁ ବାରମ୍ବାର ଚୁମ୍ବନ କରି ରାଜା ଯେପରି ତାଙ୍କର ପ୍ରତ୍ୟେକ ଅଙ୍ଗରୁ ଲାବଣ୍ୟରୂପକ ଅମୃତ ପାନ କରୁଥାନ୍ତି । ସୁରତଉତ୍ସବରେ ରାତ୍ରିଟି ମୁହୂର୍ତ୍ତକ ପରି କଟିଗଲା । ବ୍ରାହ୍ମମୁହୂର୍ତ୍ତରୁ ଉଭୟେ ଶଯ୍ୟାତ୍ୟାଗ କଲେ । ସରୋବରରେ ନିତ୍ୟକର୍ମ ଓ ସଂଧ୍ୟା ବନ୍ଦନା ଶେଷ ହେଲା । ସେମାନେ ନିଜର ସେନାବାହିନୀ ସହିତ ମିଳିତ ହେବାପାଇଁ ଅଶ୍ୱାରୋହଣ କଲେ । ଯେଉଁ ଚନ୍ଦ୍ର ରାତ୍ରିରେ କମଳିନୀର ଶୋଭାକୁ ଆଚ୍ଛନ୍ନ କରିଦେଇଥିଲେ ବର୍ତ୍ତମାନ ତାଙ୍କର ତେଜୋରାଶି ନଷ୍ଟ ହେବାରୁ ଭୟଭୀତ ହୋଇ ଅସ୍ତାଚଳର ଗୁହା ମଧ୍ୟରେ ଆତ୍ମଗୋପନ କରିବାକୁ ବାହାରିଲେ । ପ୍ରଣୟିନୀ ପ୍ରତି ଅସଦାଚରଣ କରିଥିବା ଯୋଗୁଁ କ୍ରୋଧରେ ରକ୍ତବର୍ଣ୍ଣ ଧାରଣ କରି ନିଜର ରଶ୍ମି ରୂପ ବାହୁ ଉତ୍ତୋଳନ ପୂର୍ବକ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଆକ୍ରମଣ କରିବାପାଇଁ ଧୀରେଧୀରେ ଅଗ୍ରସର ହେଉଥାନ୍ତି ।

ଏ ସମୟରେ ଏକ ବ୍ରହ୍ମରାକ୍ଷସ ଅଚାନକ ଭାବରେ ସେଠାରେ ଆସି ଉପସ୍ଥିତ ହେଲା । ବିଜୁଳିର ପ୍ରଭା ପରି ତା'ର ପିଙ୍ଗଳ କେଶପାଶ ଏବଂ ଶରୀରର ଘନକୃଷ୍ଣ ବର୍ଣ୍ଣ ମନରେ ପ୍ରଳୟକାଳୀନ ମେଘର ଭ୍ରମ ସୃଷ୍ଟି କରୁଥାଏ । ତା' କଣ୍ଠରେ ଅନ୍ତ୍ରନାଳୀର ମାଳା ଏବଂ ସ୍କନ୍ଧରେ ମନୁଷ୍ୟ କେଶ ନିର୍ମିତ ଯଜ୍ଞୋପବିତ । ସେ ଶବମସ୍ତକରୁ ମାଂସ ଭକ୍ଷଣ କରି ନରକପାଳରେ ରକ୍ତପାନ କରୁଥାଏ । କ୍ରୋଧବଶତଃ ତା' ମୁଖରୁ ଅଗ୍ନି ଉଦ୍‌ଗିରଣ ହେଉଥାଏ । ତା'ର କରାଳ ଦନ୍ତ ପଂକ୍ତି କାଳର କର୍ତ୍ତରୀ ପରି ମନେହେଉଥିଲା । ସେ ଅଟ୍ଟହାସ ପୂର୍ବକ ରାଜାଙ୍କୁ ଭର୍ତ୍ସନା କରି କହିଲା—

'ରେ ପାପିଷ୍ଠ ! ମୁଁ ହେଉଛି ଜ୍ୱାଳାମୁଖ ନାମକ ବ୍ରହ୍ମରାକ୍ଷସ । ଏହି ଅଶ୍ୱତ୍ଥ ବୃକ୍ଷ ମୋର ନିବାସ ସ୍ଥାନ । ଦେବତାମାନେ ମଧ୍ୟ ଏହାର ଅବମାନନା କରିବାପାଇଁ ସାହସ କରନ୍ତି ନାହିଁ । ରାତ୍ରିରେ ମୁଁ ପରିଭ୍ରମଣରେ ବାହାରିଯିବା ପରେ ତୁ ମୋର ବାସସ୍ଥାନକୁ ଅଧିକାର କରିନେଇଛୁ, ଏବଂ ନିଜର ସ୍ତ୍ରୀ ସହିତ ଏଠାରେ ସୁରତୋତ୍ସବ ପାଳନ କରିଛୁ । ବର୍ତ୍ତମାନ ତୋତେ ତୋର ଅବୀନିତ ଆଚରଣର ଫଳ ଭୋଗିବାକୁ ପଡ଼ିବ । ତୁ କାମବାସନାରେ ତୋର ଚେତନା ଶକ୍ତି ହରାଇ ବସିଛୁ । ମୁଁ ତୋର ହୃତ୍‌ପିଣ୍ଡ ବାହାର କରି ଭକ୍ଷଣ କରିବି ଏବଂ ତୋର ରକ୍ତପାନ କରି ଶାନ୍ତ ହେବି ।'

ରାଜା ବ୍ରହ୍ମରାକ୍ଷସର କଥା ଶୁଣିଲେ । ସେ ବଡ଼ ଭୟଙ୍କର ଦେଖାଯାଉଥିଲା । ରାଜା ତାକୁ ହତ୍ୟା କରିବା ସମ୍ଭବ ବୋଲି ମନେକଲେ ନାହିଁ । ଏଣେ ପତ୍ନୀ ଇନ୍ଦିବରପ୍ରଭା ମଧ୍ୟ ଭୟରେ ସଙ୍କୁଚିତ ହୋଇପଡ଼ିଥାନ୍ତି । ଏଣୁ ସେ ବିନମ୍ର ଭାବରେ ବ୍ରହ୍ମରାକ୍ଷସକୁ କହିଲେ, 'ଅଜ୍ଞାତସାରରେ ମୁଁ ଯେଉଁ ଅପରାଧ କରିଛି ସେଥିପାଇଁ ଆପଣ ମୋତେ କ୍ଷମା ଦିଅନ୍ତୁ । ମୁଁ ଆପଣଙ୍କ ଆଶ୍ରମକୁ ଆସିଥିବା ଜଣେ ଅତିଥି; ଆପଣଙ୍କ ଶରଣାଗତ । ଆପଣଙ୍କ ପରିତୃପ୍ତିପାଇଁ ମୁଁ ମନୋମତ ପଶୁ ବା ମନୁଷ୍ୟ ଆଣି ଦେଉଛି । କ୍ରୋଧ ପରିତ୍ୟାଗ କରି ଆମପ୍ରତି ପ୍ରସନ୍ନ ହୁଅନ୍ତୁ ।'

ରାଜାଙ୍କ ବିନମ୍ର ଆଚରଣରେ ବ୍ରହ୍ମରାକ୍ଷସ ଶାନ୍ତ ହେଲା । ଏଥିରେ ତାର କିଛି କ୍ଷତି ନଥିବା ଦେଖି କହିଲା, 'ଠିକ୍ ଅଛି । ତାହେଲେ, ତୁ ସାତଦିନ ମଧ୍ୟରେ ମୋତେ ଆଣି ଏପରି ଜଣେ ବ୍ରାହ୍ମଣ କୁମାରଙ୍କୁ ଭେଟି ଦେବୁ, ଯିଏ ସାତବର୍ଷ ବୟସର ହୋଇଥିଲେ ମଧ୍ୟ ମହାସତ୍ତ୍ୱ ଓ ବିବେକୀ ହୋଇଥିବ । ପୁଣି ସେ ନିଜ ଇଚ୍ଛାରେ ତୋ ହସ୍ତରେ ନିଜକୁ ସମର୍ପଣ କରିଥିବ । ସେ ମଲାବେଳେ ତାକୁ ଭୂମିରେ ପକାଇ ତା'ର ମାତା ଦୁଇହାତକୁ ଧରିବ ଏବଂ ପିତା ତା'ର ଦୁଇ ଗୋଡ଼କୁ ଦୃଢ଼ ଭାବରେ ଧରି ରଖିବ । ତୁ ନିଜ ତରବାରିରେ ତା'ର ମସ୍ତକ ଛେଦନ କରିବୁ । ଏହାଯଦି କରିପାରୁ ତେବେ ମୁଁ ତୋର ଅବିନୀତ ଆଚରଣପାଇଁ କ୍ଷମା ଦେବି; ଅନ୍ୟଥା ସମଗ୍ର ସେନାବାହିନୀ ସହିତ ତୋତେ ମୋର ଆହାର ହେବାକୁ ପଡ଼ିବ ।'

ରାଜା ଭୟରେ ବ୍ରହ୍ମରାକ୍ଷସର ସର୍ତ୍ତ ମାନିନେଲେ । ସେ ତତ୍କ୍ଷଣାତ୍ ସେଠାରୁ ଅନ୍ତର୍ହିତ ହୋଇଗଲା ।

ବର୍ତ୍ତମାନ ରାଜା ଚନ୍ଦ୍ରାବଲୋକ ଇନ୍ଦିବରପ୍ରଭାଙ୍କ ସହିତ ଅଶ୍ୱପୃଷ୍ଠରେ ନିଜ ସେନବାହିନୀ ସନ୍ଧାନରେ ଅଗ୍ରସର ହେଲେ । ମନ ତାଙ୍କର ବଡ଼ ଉଦାସ ଥାଏ । ସେ ଚିନ୍ତା କରୁଥାନ୍ତି, 'ମୃଗୟା ଓ କାମବାସନାରେ ମୋହିତ ହୋଇ ମୁଁ ବୋଧହୁଏ ପାଗଳ ହୋଇଯାଇଛି । ଏଣୁ ପଣ୍ଡୁଙ୍କ ପରି ମୋର ବିନାଶ କାଳ ଆସି ଉପସ୍ଥିତ । ବ୍ରହ୍ମରାକ୍ଷସପାଇଁ ଏପରି ଏକ ବ୍ରାହ୍ମଣ ପୁତ୍ର ମୋତେ ମିଳିବ ବା କେଉଁଠୁ ? ନିଜ ରାଜଧାନୀରେ ପହଞ୍ଚିଲେ ହୁଏତ କିଛି ଉପାୟ ଚିନ୍ତା କରାଯାଇପାରେ ।'

ଏହିପରି ଚିନ୍ତାକରି ରାଜା ଅଗ୍ରସର ହେଉଥିବା ବେଳେ ସେନାବାହିନୀ ତାଙ୍କ ଅନୁସନ୍ଧାନରେ ଆସି ସେଠାରେ ପହଞ୍ଚିଲେ । ରାଜା ପତ୍ନୀ ଓ ସେନା ସହିତ ଆପଣାର

ଚିତ୍ରକୂଟ ନଗରରେ ଆସି ଉପସ୍ଥିତ ହେଲେ । ଉପଯୁକ୍ତ ପତ୍ନୀ ସହିତ ରାଜାଙ୍କୁ ଦେଖି ରାଜ୍ୟବାସୀ ଓ ମନ୍ତ୍ରୀମାନେ ଆନନ୍ଦ ଉତ୍ସବ ପାଳନ କଲେ । କିନ୍ତୁ ରାଜାଙ୍କପାଇଁ ଏସବୁ ଆଦୌ ଆନନ୍ଦଦାୟକ ନଥିଲା । ସେ ନିଜର ମନୋବେଦନାକୁ ମନ ମଧ୍ୟରେ ହିଁ ରଖି ଦିନର ଅବଶିଷ୍ଟାଂଶ ବିତାଇଦେଲେ ।

ପରଦିନ ରାଜା ନିଜର ମନ୍ତ୍ରୀମାନଙ୍କ ସହିତ ବ୍ରହ୍ମରାକ୍ଷସର ସର୍ତ୍ତ ସମ୍ପର୍କରେ ବିଚାରବିମର୍ଶ କଲେ । ସେମାନଙ୍କ ମଧ୍ୟରୁ ସୁମତି ନାମକ ଜଣେ ମନ୍ତ୍ରୀ କହିଲେ, 'ଦେବ ! ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ପୃଥିବୀ ବହୁ ଆଶ୍ଚର୍ଯ୍ୟର ଗନ୍ତାଘର । ତେଣୁ ଏପରି ଏକ ବ୍ରାହ୍ମଣ ସନ୍ତାନ ମିଳିବା ଅସମ୍ଭବ ହେବନାହିଁ ।'

ରାଜାଙ୍କୁ ଏହିପରି ଆଶ୍ୱାସନା ଦେଇ ମନ୍ତ୍ରୀ ଗୋଟିଏ ସାତବର୍ଷ ବାଳକର ସୁବର୍ଣ୍ଣ ପ୍ରତିମା ନିର୍ମାଣ କରାଇଲେ । ତା'କୁ ବିଭିନ୍ନ ରତ୍ନାଳଙ୍କାରରେ ବିଭୂଷଣ କରି ଏକ ରତ୍ନପାଲିଙ୍କି ଉପରେ ସ୍ଥାପନା କଲେ । ତାକୁ ନଗର, ଗ୍ରାମ ସର୍ବତ୍ର ପରିଭ୍ରମଣ କରାଇଲେ । ସର୍ବତ୍ର ଘୋଷଣା କରାଯାଉଥାଏ 'ସାତବର୍ଷର ଯେଉଁ ବ୍ରାହ୍ମଣ ପୁତ୍ର ପୃଥିବୀର ସମସ୍ତ ପ୍ରାଣୀଙ୍କ କଲ୍ୟାଣପାଇଁ ସ୍ୱଇଚ୍ଛାରେ ନିଜ ଶରୀର ବ୍ରହ୍ମରାକ୍ଷସକୁ ଅର୍ପଣ କରିବ ଏବଂ ଏହି କାର୍ଯ୍ୟ ପାଇଁ କେବଳ ପିତାମାତାଙ୍କ ଅନୁମତି ନୁହେଁ, ତାର ମୃତ୍ୟୁବେଳେ ସେମାନେ ତାର ହସ୍ତ ଓ ପାଦ ଧରି ରଖିବେ ବୋଲି ସ୍ୱୀକୃତି ଆଣିବ, ତେବେ ସେହି ମାତା ପିତାଙ୍କର କଲ୍ୟାଣ ଚାହୁଁଥିବା ବାଳକକୁ ରାଜା ଏକଶତ ଗ୍ରାମ ସହିତ ଏହି ରତ୍ନାଳଙ୍କାର ବିଭୂଷିତ ସୁବର୍ଣ୍ଣ ମୂର୍ତ୍ତିଟି ପ୍ରଦାନ କରିବେ ।'

ବାଳକର ଏହି ପ୍ରତିମାକୁ ନେଇ ଭ୍ରମଣ କରୁଥିବା ଅନୁଚରମାନେ ଧେଣ୍ଡୁରା ଦେଇ ଉଚ୍ଚସ୍ୱରରେ ଏହା ଘୋଷଣା କରୁଥାନ୍ତି । କୌଣସି ବ୍ରାହ୍ମଣ ଶାସନରେ ଜଣେ ସପ୍ତବର୍ଷ ବୟସ୍କ ବ୍ରାହ୍ମଣ କୁମାର ଏହି ଘୋଷଣା ଶୁଣିଲା । ସେ ଯେପରି ରୂପବାନ୍ ଥିଲା ସେହିପରି ଧୀର ଓ ବୀର ମଧ୍ୟ ଥିଲା । ପୂର୍ବଜନ୍ମର ସଂସ୍କାର ଯୋଗୁଁ ଶୈଶବରୁ ହିଁ ପରୋପକାର କରିବାର ମନୋବୃତ୍ତି ସେ ଆହରଣ କରିଥିଲା । ବ୍ୟକ୍ତିର ପୁଣ୍ୟଫଳ ହିଁ ବୋଧହୁଏ ଶରୀର ଧାରଣ କରିଛି ବୋଲି ମନେହେଉଥିଲା । ଘୋଷକମାନଙ୍କ ନିକଟକୁ ଯାଇ ସେ କହିଲା, 'ଆପଣମାନଙ୍କପାଇଁ ମୁଁ ନିଜକୁ ଅର୍ପଣ କରୁଛି । ପିତାମାତାଙ୍କୁ ବୁଝାଇ ସୁଝାଇ ଆସିବା ପର୍ଯ୍ୟନ୍ତ ଆପଣମାନେ ଟିକିଏ ଅପେକ୍ଷା କରନ୍ତୁ ।'

ଘୋଷକମାନେ ଏଥିରେ ଆନନ୍ଦିତ ହେଲେ । ସେମାନଙ୍କଠାରୁ ଅନୁମତି ନେଇ ବାଳକଟି ପିତାମାତାଙ୍କ ନିକଟରେ କୃତାଞ୍ଜଳି ପୁଟରେ ନିବେଦନ କଲା, 'ପ୍ରାଣୀ ସମାଜର

କଲ୍ୟାଣପାଇଁ ମୁଁ ମୋର ଏହି ନଶ୍ୱର ଶରୀର ପ୍ରଦାନ କରୁଛି । ଏଥିପାଇଁ ଆପଣମାନେ ମୋତେ ଅନୁମତି ଦିଅନ୍ତୁ ଏବଂ ନିଜ ଦାରିଦ୍ର୍ୟର ଅବସାନ ଘଟାନ୍ତୁ । ଏଥିପାଇଁ ରାଜା ଏକଶତ ଗ୍ରାମ ସହିତ ବହୁ ମୂଲ୍ୟବାନ ଅଳଙ୍କାର ବିଭୂଷିତ ମୂର୍ତ୍ତିଟିଏ ମୋତେ ପ୍ରଦାନ କରିବେ । ତାହା ମୁଁ ଆପଣମାନଙ୍କୁ ସମର୍ପଣ କରିଦେବି । ଏହାଦ୍ୱାରା ମୁଁ ଆପଣମାନଙ୍କଠାରେ କିଛିଟା ନିରଣୀ ହେବି ଏବଂ ଅନ୍ୟମାନଙ୍କର ମଧ୍ୟ ମଙ୍ଗଳ ସାଧନ କରିପାରିବି । ଦାରିଦ୍ର୍ୟମୁକ୍ତ ହୋଇ ଆପଣମାନେ ବହୁପୁତ୍ରର ଜନକ ଜନନୀ ହୋଇପାରିବେ ।'

ପୁତ୍ରର କଥାଶୁଣି ପିତାମାତା ଉତ୍ସୁକତାର ସହ କହିଲେ 'ପୁତ୍ର ! ତୁ କ'ଣ ପାଗଳ ହୋଇଗଲୁ କି ? ନା ତୁ କୌଣସି ଦୁଷ୍ଟ ଗ୍ରହର କବଳିତ ହୋଇପଡ଼ିଛୁ ? ତା' ନହେଲେ ଏପରି ପାଗଳଙ୍କ ପରି କଥାବାର୍ତ୍ତା କାହିଁକି କରନ୍ତୁ ? ଧନ ପାଇଁ କିଏ କାହାର ପୁତ୍ରକୁ ମୃତ୍ୟୁମୁଖକୁ ପଠାଇପାରେ ? କେଉଁ ବାଳକ ବା ନିଜର ଶରୀରକୁ ବଳିଦେବାପାଇଁ ଚାହେଁ ?' ପିତାମାତାଙ୍କ କଥା କାଟି ବାଳକ ତାଙ୍କୁ ବୁଝାଇବାପାଇଁ ଚେଷ୍ଟା କଲା, 'ମୋର ବୁଦ୍ଧି ଭ୍ରଷ୍ଟ ହୋଇନାହିଁ କି ମୋର ଏହା ପ୍ରଳାପ ନୁହେଁ । ଆପଣମାନେ ମୋର ଏହି ଯଥାର୍ଥ କଥା ଧୈର୍ଯ୍ୟର ସହିତ ଶୁଣନ୍ତୁ । ଏହି ଶରୀର ଯେଉଁ ସବୁ ଅପବିତ୍ର ବସ୍ତୁରେ ପରିପୂର୍ଣ୍ଣ ସେସବୁ ଅନ୍ୟତ୍ର ଯିବା ସମ୍ଭାବନା ନାହିଁ । ଜନ୍ମରୁ ହିଁ ସେସବୁ ଘୃଣ୍ୟ । ଶରୀର ଦୁଃଖର କ୍ଷେତ୍ର ଏବଂ ମୁହୂର୍ତ୍ତମାତ୍ରରେ ବିନାଶଶୀଳ । ଏଣୁ ବୁଦ୍ଧିମାନ ଲୋକମାନେ କହନ୍ତି, ଏହି ଅତ୍ୟନ୍ତ ଅସାର ଶରୀରରେ ଯେତେ ପୁଣ୍ୟ ଉପାର୍ଜନ କରାଯାଇପାରିବ ସେତେ ଭଲ । ଜଗତର ସମସ୍ତ ପ୍ରାଣୀଙ୍କ ଉପକାର କରିବା ଅପେକ୍ଷା ଆଉ ବଡ଼ ପୁଣ୍ୟ କ'ଣ ହୋଇପାରେ ? ଏଥିରେ ପୁଣି ପିତାମାତାଙ୍କ ପ୍ରତି ଭକ୍ତି ଯଦି ସମ୍ମିଳିତ ହୁଏ ତେବେ ତା'ଠାରୁ ଅଧିକ ଫଳ ଆଉ କ'ଣ ଅଛି ?' ଏହିପରି ବିଭିନ୍ନ ଭାବରେ ପିତାମାତାଙ୍କୁ ସ୍ୱୀକୃତ କରାଇ ଦୃଢ଼ ନିଶ୍ଚୟ ବ୍ରାହ୍ମଣ ବାଳକ ଘୋଷକମାନଙ୍କ ନିକଟକୁ ଫେରିଆସିଲା ଏବଂ ସେମାନଙ୍କଠାରୁ ସୁବର୍ଣ୍ଣ ମୂର୍ତ୍ତି ଓ ଏକଶତ ଗ୍ରାମର ଦାନପତ୍ର ନେଇ ପିତାମାତାଙ୍କ ହସ୍ତରେ ଅର୍ପଣ କଲା । ଏହାପରେ ରାଜସେବକ ଏବଂ ପିତାମାତାଙ୍କ ସହିତ ବାଳକଟି ଚିତ୍ରକୂଟ ନଗରୀ ଅଭିମୁଖରେ ଯାତ୍ରା କଲା ।

ଚିତ୍ରକୂଟରେ ରାଜା ଚନ୍ଦ୍ରାବଲୋକ ବାଳକଟିର ଅଦ୍ଭୁତ ତେଜ ଦେଖି ଅତ୍ୟନ୍ତ ପ୍ରସନ୍ନ ହେଲେ । ତାଙ୍କର ମନେହେଲା ସତେ ଯେପରି ଚିନ୍ତାମଣିଟିଏ ତାଙ୍କ ହାତରେ ଆସି ପହଞ୍ଚିଛି । ବାଳକକୁ ପୁଷ୍ପ ଚନ୍ଦନ ପ୍ରଭୃତିରେ ବିଭୂଷିତ କରାଇ ରାଜା ତା'ର

ପିତାମାତାଙ୍କ ସହିତ ବ୍ରହ୍ମରାକ୍ଷସ ଥିବା ସ୍ଥାନରେ ଯାଇ ପହଞ୍ଚିଲେ । ଅଶ୍ୱତ୍ଥ ବୃକ୍ଷ ନିକଟରେ ଗୋଟିଏ ବେଦିକା ନିର୍ମିତ ହେଲା । ପୁରୋହିତମାନେ ବିଧିପୂର୍ବକ ବେଦିକାଟିକୁ ମାର୍ଜନା କରି ହୋମ ଆରମ୍ଭ କରନ୍ତେ ବ୍ରହ୍ମରାକ୍ଷସ ଅଟ୍ଟହାସ ପୂର୍ବକ ସେଠାରେ ଆସି ଉପସ୍ଥିତ ହେଲା । ସେ କ'ଣ ସବୁ ମନ୍ତ୍ରପାଠ କରୁଥାଏ । ରକ୍ତବର୍ଣ୍ଣର ମଦିରା ପାନ କରି ସେ ଉନ୍ମତ୍ତ ଭାବରେ ଦୋହଲୁଥାଏ । ଦୀର୍ଘଶ୍ୱାସ ଓ ଜୃମ୍ଭାଦ୍ୱାରା ତା'ର ଶରୀର ଫୁଲି ଉଠୁଥାଏ । ତାର ଶରୀରର କାନ୍ତି ଚତୁର୍ଦ୍ଦିଗକୁ ଅନ୍ଧକାରାଚ୍ଛନ୍ନ କରୁଥିଲେ ସୁଦ୍ଧା ଚକ୍ଷୁ ଓ ମୁଖରୁ ନିର୍ଗତ ଅଗ୍ନିଜ୍ୱାଳା ଦ୍ୱାରା ସେହି ଅନ୍ଧକାର ଦୂରୀଭୂତ ହେଉଥାଏ । ତା'ର ସେହି ଭୟଙ୍କର ମୂର୍ତ୍ତି ଦେଖି ରାଜା ଚନ୍ଦ୍ରାବଲୋକ ନମ୍ରତାର ସହିତ କହିଲେ, 'ଭଗବନ୍ ! ଆଜି ପ୍ରତିଜ୍ଞା ପୂର୍ତ୍ତିର ସପ୍ତମ ଦିନ । ଆପଣଙ୍କ ନିର୍ଦ୍ଦେଶାନୁଯାୟୀ ମୁଁ ଏହି ବ୍ରାହ୍ମଣ କୁମାରକୁ ଉପହାର ସ୍ୱରୂପ ନେଇଆସିଛି । ଆପଣ ପ୍ରସନ୍ନ ଚିତ୍ତରେ ଏହାକୁ ବିଧିପୂର୍ବକ ଗ୍ରହଣ କରନ୍ତୁ ।' ରାଜାଙ୍କ କଥା ଶୁଣି ବ୍ରହ୍ମରାକ୍ଷସ ନିଜର ଓଷ୍ଠ ଓ ଅଧରରେ ଜିହ୍ୱା ବୁଲାଇ ବ୍ରାହ୍ମଣ ବାଳକଟିକୁ ଦେଖିବାକୁ ଲାଗିଲା । ତାକୁ ଦେଖି ବ୍ରାହ୍ମଣ କୁମାର ଆନନ୍ଦିତ ହୋଇ ଚିନ୍ତା କଲା ଯେ ନିଜ ଶରୀରକୁ ଦାନ କରି ମୁଁ ଯେଉଁ ପୁଣ୍ୟ ଅର୍ଜନ କରୁଛି ତା' ଦ୍ୱାରା ପରୋପକାର କରିବାପାଇଁ ଅବସର ନଥିବା ସ୍ୱର୍ଗ କିମ୍ବା ମୁକ୍ତି ମୋତେ ନମିଳୁ; ଜନ୍ମଜନ୍ମାନ୍ତରରେ ମୋର ଶରୀର ଏହିପରି ପରୋପକାର ନିମିତ୍ତ ଉତ୍ସର୍ଗିତ ହେଉଥାଉ ।

ବାଳକଟି ଏହିପରି ଚିନ୍ତା କରୁଥିବା ବେଳେ ପୁଷ୍ପବୃଷ୍ଟି କରୁଥିବା ଦିବ୍ୟବିମାନସମୂହ ଦ୍ୱାରା ଆକାଶମାର୍ଗ ଆଚ୍ଛାଦିତ ହୋଇଗଲା । ବାଳକଟିକୁ ବ୍ରହ୍ମରାକ୍ଷସ ସମ୍ମୁଖକୁ ଅଣାଯିବାରେ ମାତା ତା'ର ହସ୍ତଯୁଗଳ ଏବଂ ପିତା ପାଦଯୁଗଳକୁ ଦୃଢ଼ଭାବରେ ଧରି ରଖିଲେ । ରାଜା ତରବାରି ଉତ୍ତୋଳନ କରି ତା'ର ଶିରଚ୍ଛେଦ କରିବାପାଇଁ ଉଦ୍ୟତ ହେବାମାତ୍ରେ ସେ ଏପରି ଉଚ୍ଚହାସ୍ୟ ପ୍ରକାଶ କଲା ଯେ, ସେଥିରେ ବ୍ରହ୍ମରାକ୍ଷସ ସହିତ ସମସ୍ତେ ବିସ୍ମିତ ହୋଇପଡ଼ିଲେ । ନିଜନିଜ ଦାୟିତ୍ୱ ଭୁଲିଯାଇ ସେମାନେ ନତମସ୍ତକ ଓ କୃତାଞ୍ଜଳି ପୁଟରେ ତାର ପ୍ରସନ୍ନ ମୁଖମଣ୍ଡଳକୁ ଚାହିଁ ରହିଲେ ।''

ବେତାଳ କଥାଟି ଏହିଠାରେ ଶେଷକଲା । ପୂର୍ବପରି ରାଜାଙ୍କୁ ପ୍ରଶ୍ନ କଲା, ''ରାଜା, ପ୍ରାଣ ଯିବା ସମୟରେ ବାଳକଟି ଯେଉଁ ହାସ୍ୟ ପ୍ରକାଶ କଲା, ତା'ର କାରଣ କ'ଣ ? ଏହା ଜାଣିବାପାଇଁ ମୋର ବଡ଼ କୌତୂହଳ ଜାତ ହେଉଛି । ତୁମେ ଏହାର କାରଣ ଜାଣି ସୁଦ୍ଧା ଯଦି ପ୍ରକାଶ ନକର ତେବେ ତୁମର ମସ୍ତକ ଶତଧାବିଦୀର୍ଣ୍ଣ ହେବ ।'

ବେତାଳର ପ୍ରଶ୍ନରେ ରାଜାଙ୍କର ମୌନ ଭଙ୍ଗ ହେଲା । ସେ କହିଲେ, 'ମାୟାବି, ତୁମେ ଯଦି ବାଳକଟି ହସିବାର କାରଣ ଜାଣିବାପାଇଁ ଚାହୁଁଛ ତେବେ ଶୁଣ—

ଯେଉଁ ପ୍ରାଣୀ ଦୁର୍ବଳମନା ସେ ବିପଦଗ୍ରସ୍ତ ବା ଭୟଭୀତ ହେଲେ ନିଜର ପିତାମାତାଙ୍କୁ ଡାକିଥାଏ; ପିତାମାତା ଯଦି ନଥାନ୍ତି ତେବେ ରାଜାଙ୍କୁ ଡାକେ, କାରଣ ରାଜାଙ୍କର ଧର୍ମ ହେଉଛି ଦୁର୍ବଳର ରକ୍ଷଣ । ଯଦି ରାଜାଙ୍କ ଠାରୁ ମଧ୍ୟ ସାହାଯ୍ୟ ପାଇବାର ଆଶା ତୁଟିଯାଏ ସେତେବେଳେ ସେ ନିଜର ଇଷ୍ଟଦେବଙ୍କୁ ସ୍ମରଣ କରେ ।

ସେହି ବାଳକପାଇଁ ସମସ୍ତେ ତ ସେଠାରେ ଉପସ୍ଥିତ ଥିଲେ । କିନ୍ତୁ ସମସ୍ତେ ଥିଲେ ତା' ପାଇଁ ପ୍ରତିକୂଳ । ମାତାପିତା ଧନଲୋଭରେ ତାର ହାତ ପାଦକୁ ଧରି ରଖିଥିଲେ । ରାଜା ନିଜର ପ୍ରାଣ ରକ୍ଷାପାଇଁ ସ୍ୱୟଂ ତାକୁ ବଧ କରିବା ନିମିତ୍ତ ଉଦ୍ୟତ ଥିଲେ ଏବଂ ସେଠାରେ ଦେବତା ରୂପେ ଯେଉଁ ବ୍ରହ୍ମରାକ୍ଷସ ଉପସ୍ଥିତ ଥିଲା ସେ ଥିଲା ତାର ଭକ୍ଷକ । ଯେଉଁ ଶରୀର ନଶ୍ୱର ଏବଂ ଆଧିବ୍ୟାଧିରେ ଜର୍ଜରିତ, ପୁଣି ଯାହାର ପରିଣତି ଦୁଃଖଦ, ସେହିପରି ଶରୀର ପ୍ରତି ଉପସ୍ଥିତ ସମସ୍ତ ମୂର୍ଖବୁଦ୍ଧି ବ୍ୟକ୍ତିମାନଙ୍କର ଆସକ୍ତି ଦେଖି ସେ ଆଶ୍ଚର୍ଯ୍ୟ ହୋଇପଡ଼ିଲା । ଶରୀରରେ ପ୍ରବେଶ କଲେ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର ଓ ଶିବ ମଧ୍ୟ ମୃତ୍ୟୁବରଣ କରନ୍ତି । କିନ୍ତୁ ସେହି ମରଣଶୀଳ ଶରୀରକୁ ସ୍ଥିର ରଖିବାପାଇଁ ମନୁଷ୍ୟର କି ବିଚିତ୍ର କାମନା ! ବାଳକଟି ମନୁଷ୍ୟର ଏହି ବିଚିତ୍ର ଶରୀର-ମମତା ଦେଖି ଆଶ୍ଚର୍ଯ୍ୟ ହେଲା ଏବଂ ନିଜର ଅଭିଳାଷ ପୂର୍ଣ୍ଣ ହେବାକୁ ଯାଉଥିବା ଦେଖି ଆନନ୍ଦିତ ମଧ୍ୟ ହେଲା । ଏହି ଆନନ୍ଦ ଓ ବିସ୍ମୟ ହିଁ ତାର ହସିବାର କାରଣ ।'

ରାଜା ଏହା କହି ମୌନ ହୁଅନ୍ତେ ବେତାଳ ନିଜ ମାୟାବଳରେ ପୁଣି ନିଜ ସ୍ଥାନକୁ ଚାଲିଗଲା । ରାଜା ଅନ୍ୟ ଚିନ୍ତା ନକରି ତା'ର ପଶ୍ଚାଦ୍‌ଗମନ କଲେ । ସଜ୍ଜନମାନଙ୍କର ମନୋବଳ ମହାସାଗର ପରି, ତାକୁ କୌଣସି ପ୍ରତିକୂଳ ପରିସ୍ଥିତି ବିକ୍ଷୁବ୍ଧ କରିପାରେ ନାହିଁ ।

ଅକ୍ଷୋଭ୍ୟଂ ହୃଦୟଂ ବତେହ ମହତାମମ୍ଭୋନିଧୀନାମିବ ।

# ଅଷ୍ଟାବିଂଶ ତରଙ୍ଗ

## ଏକବିଂଶ ବେତାଳ : ଅନଙ୍ଗମଞ୍ଜରୀ ଓ ମଣିବର୍ମା କଥା

ରାଜା ତ୍ରିବିକ୍ରମସେନ ପୁଣି ଶିଂଶପା ବୃକ୍ଷ ଶାଖାରୁ ବେତାଳକୁ ଓହ୍ଲାଇ ଆଣି ସ୍କନ୍ଧରେ ଧାରଣ କଲେ । ତାଙ୍କୁ ଚୁପ୍‌ଚାପ ଯାଉଥିବା ଦେଖି ବେତାଳ କହିବା ଆରମ୍ଭ କଲା, ''ରାଜନ୍, ଏହିଥର ତୁମେ ଗୋଟିଏ ସରସ ଶୃଙ୍ଗାର ରସପୂର୍ଣ୍ଣ କଥା ଶୁଣ, ଥକା ମେଣ୍ଟିଯିବ ।

ପୃଥିବୀ ବକ୍ଷରେ ବିଶାଳା ବୋଲି ଏକ ନଗରୀ ଅଛି । ଏହା ସ୍ୱର୍ଗପୁରୀ ପରି ବିଭବଶାଳିନୀ । ସ୍ୱର୍ଗଭ୍ରଷ୍ଟ ପୁଣ୍ୟାତ୍ମା ବ୍ୟକ୍ତିମାନଙ୍କପାଇଁ ବିଧାତା ସତେ ଯେପରି ନଗରୀଟିକୁ ସୃଷ୍ଟି କରିଛନ୍ତି । ସେଠାରେ ପଦ୍ମନାଭ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ଭଗବାନ ବିଷ୍ଣୁ ନିଜର ସୁଦର୍ଶନ ଚକ୍ର ଓ ନନ୍ଦକ ଖଡ୍‌ଗ ଧାରଣ କରି ପୂର୍ବେ ରାଜା ବଳିଙ୍କୁ ବଶୀଭୂତ କରିଥିଲେ । ଏହି ରାଜା ମଧ୍ୟ ସଜ୍ଜନମାନଙ୍କ ପ୍ରସନ୍ନତାପାଇଁ ପରାକ୍ରମୀ ବଳବାନ୍ ରାଜାମାନଙ୍କୁ ନିଜ ବଶକୁ ଆଣିପାରିଥିଲେ । ଏହି ନଗରୀରେ ଐଶ୍ୱର୍ଯ୍ୟ ଓ ସମ୍ପଦଦ୍ୱାରା ଧନାଧିପତି କୁବେରଙ୍କୁ ପରାଜିତ କରୁଥିବା ଜଣେ ମହାବଣିକ ବାସ କରୁଥାନ୍ତି । ତାଙ୍କ ଔରସରୁ ଗୋଟିଏ କନ୍ୟା ଜନ୍ମଗ୍ରହଣ କରିଥିଲା । ତା'ର ଅପରୂପ ସୌନ୍ଦର୍ଯ୍ୟ ଦେଖିଲେ ମନେହେଉଥିଲା ସତେ ଯେପରି ବିଧାତା ମର୍ତ୍ତ୍ୟବାସୀଙ୍କୁ ସ୍ୱର୍ଗପୁରସ୍ଥିତ ଦିବ୍ୟ ରମଣୀମାନଙ୍କ ସ୍ୱରୂପ ସମ୍ପର୍କରେ ଜଣାଇବାପାଇଁ ଗୋଟିଏ ନମୁନା ପୃଥିବୀ ପୃଷ୍ଠକୁ ପଠାଇଛନ୍ତି । ଅର୍ଥଦତ୍ତ କନ୍ୟାଟିର ନାମ ରଖିଥିଲେ ଅନଙ୍ଗମଞ୍ଜରୀ । ତାମ୍ରଲିପ୍ତି ନଗରୀରେ ବାସ କରୁଥିବା ଜଣେ ଶ୍ରେଷ୍ଠ ବ୍ୟବସାୟୀ ମଣିବର୍ମାଙ୍କ ସହିତ ତାର ବିବାହ ସମ୍ପନ୍ନ ହୋଇଥିଲା । କନ୍ୟାଟି ପ୍ରତି ପିତାଙ୍କର ସ୍ନେହ ଥିଲା ଅତ୍ୟନ୍ତ ନିବିଡ଼ । ତେଣୁ ସେ ତାକୁ ଶ୍ୱଶୁରାଳୟକୁ ନ ପଠାଇ ଜାମାତାଙ୍କୁ ଆଣି ନିଜ ଗୃହରେ ରଖିଥାନ୍ତି ।

ରୋଗୀକୁ କଟୁ ଓ ତିକ୍ତ ଔଷଧୀ ଯେପରି ଅପ୍ରିୟ ହୋଇଥାଏ ସେହିପରି ଅନଙ୍ଗମଞ୍ଜରୀପାଇଁ ପତି ମଣିବର୍ମା ଥିଲେ ଅତ୍ୟନ୍ତ ଅପ୍ରିୟ । କିନ୍ତୁ ବିପରୀତ କ୍ରମେ ମଣିବର୍ମାଙ୍କପାଇଁ ଅନଙ୍ଗମଞ୍ଜରୀ ଥିଲେ ନୟନ ପିତୁଳି । କୃପଣର କଷ୍ଟାର୍ଜିତ ସମ୍ପତ୍ତି ପରି ସେ ଅନଙ୍ଗମଞ୍ଜରୀକୁ ଅତ୍ୟନ୍ତ ସ୍ନେହ କରୁଥିଲେ ।

କିଛିଦିନ ପତ୍ନୀ ସହିତ ଶ୍ୱଶୁର ଗୃହରେ ରହିବା ପରେ ମଣିବର୍ମା ପିତାମାତାଙ୍କ ଦର୍ଶନାଭିଳାଷରେ ତାମ୍ରଲିପ୍ତି ପ୍ରସ୍ଥାନ କଲେ । ଏ ସମୟରେ ଗ୍ରୀଷ୍ମଋତୁ ପ୍ରବେଶ କଲା । ସୂର୍ଯ୍ୟଙ୍କ ପ୍ରଖର କିରଣରେ ରାସ୍ତାଘାଟ ଉତ୍ତପ୍ତ ହୋଇଉଠିବାରୁ ବିଦେଶ ଯାତ୍ରା କରିଥିବା ବ୍ୟକ୍ତିମାନେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିବା ସମ୍ଭବ ହେଲାନାହିଁ । ମାଳତୀ ଓ ଗୋଲାପର ସୁଗନ୍ଧି ବସନ୍ତ ବିରହରେ ପୃଥିବୀ ରାଣୀର ଉଷ୍ଣ ନିଶ୍ୱାସବାୟୁ ପରି ମନେହେଉଥାଏ । ଘୂର୍ଣ୍ଣିବାୟୁରେ ଉତ୍‌ଥିତ ଧୂଳିରାଶି ମେଘମାଳାଙ୍କୁ ନିମନ୍ତ୍ରଣ ଦେବାପାଇଁ ଆକାଶ ମାର୍ଗ ପର୍ଯ୍ୟନ୍ତ ଯାଉଥାଏ । ତାପକ୍ଲିଷ୍ଟ ପଥିକର ଶୀତଳ ବୃକ୍ଷ ଛାୟା ଅଭିଳାଷ ପରି ଦିବସ ଧୀରେ ଧୀରେ ବଢ଼ିବାକୁ ଲାଗିଥାଏ । ଚନ୍ଦ୍ରକିରଣରେ ପାଣ୍ଡୁର ଦେଖାଯାଉଥିବା ରାତ୍ରି ହେମନ୍ତର ନିବିଡ଼ ଆଲିଙ୍ଗନ ପାଶ ସ୍ମରଣ କରି କ୍ଷୀଣ ହୋଇଯାଇଥାଏ ।

ଗ୍ରୀଷ୍ମର ଏପରି ଏକ ଉତ୍ତପ୍ତ ଦିବସରେ ଅନଙ୍ଗମଞ୍ଜରୀ ନିଜ ଅଟ୍ଟାଳିକା ଶୀର୍ଷସ୍ଥ ବାତାୟନ ପାର୍ଶ୍ୱରେ ବସିଥାଏ । ବିଶ୍ୱସ୍ତ ସଖୀମାନଙ୍କ ଚନ୍ଦନ ଲେପରେ ତା'ର ଶରୀରର କାନ୍ତି ଅଧିକ ଉଜ୍ଜ୍ୱଳ ଦେଖାଯାଉଥିଲା । ସେହି ଶୋଭାକୁ ଦ୍ୱିଗୁଣିତ କରୁଥାଏ ସିଏ ପରିଧାନ କରିଥିବା କୌଷେୟ ବସ୍ତ୍ର । ବାତାୟନ ନିକଟରେ ବସିଥିବା ବେଳେ ଜଣେ ସୁନ୍ଦର ଓ ତରୁଣ ବ୍ରାହ୍ମଣ ଯୁବକ ତା'ର ଦୃଷ୍ଟି ଆକର୍ଷଣ କଲେ । ସେ ଥିଲେ ରାଜ ପୁରୋହିତଙ୍କ ପୁତ୍ର କମଳାକର । ରାଜମାର୍ଗରେ ଯାଉଥିବା ବେଳେ ମୂର୍ତ୍ତିମାନ୍ କନ୍ଦର୍ପ ରତିଙ୍କ ଅନୁସନ୍ଧାନରେ ବାହାରିଥିବା ପରି ମନେହେଉଥାନ୍ତି । ତାଙ୍କ ଦୃଷ୍ଟି ମଧ୍ୟ ଅନଙ୍ଗମଞ୍ଜରୀଙ୍କ ଚନ୍ଦ୍ରମା ସୁନ୍ଦର ମୁଖମଣ୍ଡଳ ଉପରେ ପଡ଼ିଲା । ତାଙ୍କ ଦର୍ଶନରେ କମଳାକର ସତେ ଯେପରି କୁମୁଦାକର ହୋଇଗଲେ । ପରସ୍ପର ପରସ୍ପର ପ୍ରତି ଆକୃଷ୍ଟ ହୋଇପଡ଼ିଲେ । କନ୍ଦର୍ପ ରୂପକ ଗୁରୁଙ୍କ ଆଦେଶରେ ଉଭୟଙ୍କ ଚିତ୍ତବୃତ୍ତି ବହୁମୂଲ୍ୟ ପ୍ରଣୟ ରଜ୍ଜୁରେ ଆବଦ୍ଧ ହେଲା । କାମମୋହିତ ହୋଇ ସେମାନେ ଲଜ୍ଜା ପରିତ୍ୟାଗ ପୂର୍ବକ ରଜୋଗୁଣରେ ଅଭିଭୂତ ହୋଇପଡ଼ିଲେ ।

କମଳାକର ସହିତ ଯାଉଥିବା ମିତ୍ର ତାଙ୍କର ଏହି ଅବସ୍ଥା ଦେଖି କୌଣସିମତେ ଗୃହକୁ ଫେରାଇନେଲେ । ଅନଙ୍ଗମଞ୍ଜରୀ ମଧ୍ୟ ବିଶ୍ୱସ୍ତା ସଖୀଦ୍ୱାରା ବ୍ରାହ୍ମଣ କୁମାରଙ୍କ

ନାମ ଧାମ ସଂଗ୍ରହ କରି ଗୃହ ମଧ୍ୟକୁ ଚାଲିଗଲା । କାମଜ୍ୱର ପୀଡ଼ିତ ବଣିକ କନ୍ୟା ଶଯ୍ୟା ଉପରେ ପଡ଼ି କେବଳ କଲବଲ ଓ ଛଟପଟ ହେଉଥାଏ । ସେ ନା କିଛି ଦେଖିପାରୁଥାଏ ନା କିଛି ଶୁଣିପାରୁଥାଏ । ଏହିପରି ଦୁଇତିନିଦିନ ବିତିଗଲା । ଅସହ୍ୟ ବିରହ ଉନ୍ମାଦ, ଲଜ୍ଜା ଓ ଭୟରେ ତାର ଶରୀର ଦୁର୍ବଳ ଓ କାନ୍ତି ମଳିନ ହୋଇଗଲା । ପ୍ରିୟ ମିଳନ ଆଶା ଅତ୍ୟନ୍ତ କ୍ଷୀଣ ଥିବା ଯୋଗୁଁ ସେ ଅତ୍ୟନ୍ତ ନିରାଶ ହୋଇ ଦିନେ ରାତିରେ ପ୍ରାଣ ତ୍ୟାଗ କରିବା ନିମିତ୍ତ ନିଶ୍ଚୟ କଲା । ଉଜ୍ଜ୍ୱଳ ଚନ୍ଦ୍ରକିରଣ ତାକୁ ଯେପରି ବାତାୟନ ପଥରୁ ପ୍ରୋତ୍ସାହିତ କରୁଥାଏ । ପରିଚାରିକାମାନେ ନିଦ୍ରିତ ହୋଇପଡ଼ିବା ପରେ ସେ ନିଃଶବ୍ଦରେ ପ୍ରମୋଦଉଦ୍ୟାନ ସ୍ଥିତ ସରୋବର ନିକଟକୁ ଚାଲିଲା । ସେଠାରେ ପିତାଙ୍କଦ୍ୱାରା ସ୍ଥାପିତ କୁଳଦେବୀ ଚାମୁଣ୍ଡାଙ୍କର ଏକ ଭବ୍ୟ ମନ୍ଦିର ନିର୍ମିତ ହୋଇଥାଏ । ଅନଙ୍ଗମଞ୍ଜରୀ ଦେବୀଙ୍କ ସମ୍ମୁଖକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଜଣାଇଲା, 'ଦେବି ! ଏ ଜନ୍ମରେ ତ ମୁଁ କମଳାକରଙ୍କୁ ପତି ରୂପରେ ପାଇପାରିଲି ନାହିଁ; ଆଗାମୀ ଜନ୍ମମାନଙ୍କରେ ତାଙ୍କୁ ପତି ରୂପେ ପାଇବାର ସୌଭାଗ୍ୟ ପ୍ରଦାନ କରନ୍ତୁ ।' ଦେବୀଙ୍କୁ ଏପରି ପ୍ରାର୍ଥନା କରି ଅନଙ୍ଗମଞ୍ଜରୀ ନିଜ ଉତ୍ତରୀୟରେ ଏକ ଫାଶ ପ୍ରସ୍ତୁତ କଲା । ତାକୁ ନିକଟସ୍ଥ ଅଶୋକ ବୃକ୍ଷର ଶାଖାରେ ବାନ୍ଧିଦେଇ ଆତ୍ମହତ୍ୟା ପାଇଁ ପ୍ରସ୍ତୁତ ହେଲା ।

ଏହା ମଧ୍ୟରେ ତା'ର ଅନ୍ତରଙ୍ଗା ସଖୀ ଜାଗ୍ରତ ହୋଇ ଦେଖିଲା ଯେ ଅନଙ୍ଗମଞ୍ଜରୀ ଶଯ୍ୟାରେ ନାହିଁ । ସେ ତାକୁ ବିଭିନ୍ନ ସ୍ଥାନରେ ଖୋଜି ଭାଗ୍ୟବଶତଃ ସେହି ଉଦ୍ୟାନ ମଧ୍ୟରେ ଆସି ପହଞ୍ଚିଲା । ସଖୀକୁ ଆତ୍ମହତ୍ୟା କରୁଥିବା ଦେଖି ସେ ଅତି ଦ୍ରୁତ ପଦରେ ଆସି ଫାଶଟିକୁ କାଟିଦେଲା । ସଖୀର ଉପସ୍ଥିତିରେ ଅନଙ୍ଗମଞ୍ଜରୀ ତ ବଞ୍ଚିଗଲା କିନ୍ତୁ ଅତ୍ୟଧିକ ଶୋକାବେଗରୁ ସେ ମୂର୍ଚ୍ଛିତା ହୋଇପଡ଼ିଲା । ସଖୀର ଉପଚାରରେ ତାର ସଂଜ୍ଞା ଫେରିଆସିବା ମାତ୍ରେ ସଖୀ ଦ୍ୱାରା ଆଶ୍ୱାସିତା ହୋଇ ତାର ଜିଜ୍ଞାସା କ୍ରମେ କହିଲା, 'ସଖୀ ମାତଳିକା, ମୁଁ ଗୁରୁଜନମାନଙ୍କର ଅଧୀନା । ଏଣୁ ପ୍ରାଣପ୍ରିୟ ବ୍ରାହ୍ମଣ କୁମାରଙ୍କ ସହିତ ମୋର ମିଳନ ଅସମ୍ଭବ । ତେଣୁ ଆତ୍ମହତ୍ୟା ବ୍ୟତୀତ ମୋର ଆଉ କ'ଣ ଗତି ଅଛି ?' ଏହା କହୁକହୁ କନ୍ଦର୍ପ ପୀଡ଼ାରେ ସେ ପୁଣି ଅଚେତ ହୋଇପଡ଼ିଲା । ମାତଳିକା ତାର ଏ ଅବସ୍ଥା ଦେଖି କନ୍ଦର୍ପର ଶାସନ କିପରି କଷ୍ଟପ୍ରଦ ଏବଂ ଯେଉଁ ସଖୀ ଦିନେ କୁମାର୍ଗଗାମିନୀ ନାରୀମାନଙ୍କର ନିନ୍ଦା କରୁଥିଲା ତା'ର ଏ ଅବସ୍ଥା ଦେଖି ଚିନ୍ତିତ ହୋଇପଡ଼ିଲା । ଶୀତଳ ଜଳ ଏବଂ ପଂଖା ଚାଳନର ଉପଚାରରେ ସେ ତାକୁ ଜାଗ୍ରତ କଲା । କାମଜ୍ୱର ଶାନ୍ତିପାଇଁ ସେ ପଦ୍ମପତ୍ରର ଶଯ୍ୟା, ପଦ୍ମନାଳର ଉପାଧାନ ଏବଂ

ଶୀତଳ ମାଳାର ବ୍ୟବସ୍ଥା କଲା । ଏଥିରେ ଅନଙ୍ଗମଞ୍ଜରୀ ଅସ୍ଫୁଟ ସ୍ୱରରେ କହିଲା 'ସଖି, ମୋର ହୃଦୟର ଜ୍ୱାଳା ଶାନ୍ତ ହେବ ନାହିଁ । ଯାହାଦ୍ୱାରା ଏହା ପ୍ରଶମିତ ହେବ ତୁ ତାର ଉପାୟ କର । ତୁ ଯଦି ମୋତେ ଜୀବିତ ଦେଖିବାପାଇଁ ଚାହୁଁ ତେବେ ପ୍ରିୟତମ ସହିତ ମୋର ଯେପରି ମିଳନ ଘଟିବ ତାର ଉପାୟ ଚିନ୍ତାକର ।'

ମାତଳିକା ସହାନୁଭୂତି ସୂଚକ ସ୍ୱରରେ କହିଲା, 'ସଖି, ଆଜି ତ ରାତି ବହୁତ ହେଲାଣି । କାଲି ସକାଳେ ମୁଁ କିଛି ଉପାୟ କରି ସେହି ପୁରୋହିତ କୁମାରଙ୍କୁ ଏଠାକୁ ନେଇଆସିବି । ବର୍ତ୍ତମାନ ତୁମେ ଧୈର୍ଯ୍ୟ ଧରି ନିଜ ଶୟନ କକ୍ଷକୁ ଫେରିଯାଅ ।'

ସଖୀର କଥାରେ ଅନଙ୍ଗମଞ୍ଜରୀ ମନରେ ଆଶାର ଉଦୟ ହେଲା । ସେ ନିଜ କଣ୍ଠରୁ ମୁକ୍ତାମାଳାଟିଏ ବାହାର କରି ସଖୀ କଣ୍ଠରେ ଲମ୍ବାଇ ଦେଇ କହିଲା, 'ସଖି, ତୋଠାରୁ ମୋର ଅନ୍ତରଙ୍ଗ କିଏ ଅଛି ? ଏବେ ନିଜ ଘରକୁ ଫେରିଯା' । ସୂର୍ଯ୍ୟ ଉଦୟ ହେବାମାତ୍ରେ କାମରେ ବାହାରିପଡ଼ିବୁ ।'

ରାତ୍ରି ପ୍ରଭାତ ହେବାମାତ୍ରେ ମାତଳିକା ଅନ୍ୟମାନଙ୍କ ଅଗୋଚରରେ କମଳାକରଙ୍କ ଗୃହରେ ଯାଇ ପହଞ୍ଚିଲା । ଘର ମଧ୍ୟରେ ତାଙ୍କୁ ନଦେଖି ସେ ଉଦ୍ୟାନ ମଧ୍ୟକୁ ଯାଇ ଦେଖିଲା କମଳାକର ଚନ୍ଦନ ଜଳରେ ସ୍ନାନକରି ପଦ୍ମପତ୍ରର ଶଯ୍ୟା ଉପରେ ଶୋଇଛନ୍ତି । ମିତ୍ର ତାଙ୍କ କନ୍ଦର୍ପ ଜ୍ୱାଳା ଶାନ୍ତ କରିବାପାଇଁ କଦଳୀପତ୍ରର ପଂଖାରେ ତାଙ୍କୁ ବିଞ୍ଚୁଥାନ୍ତି । ମାତଳିକା ଏହାକୁ ନିଜ ସଖୀଠାରୁ ମଧ୍ୟ ଅଧିକ ବିରହଜନିତ ମନୋବେଦନା ବୋଲି ମନେକଲା । କିନ୍ତୁ ପ୍ରକୃତ ତଥ୍ୟ ଜାଣିବା ତା'ର ଆବଶ୍ୟକ । ଏଥିପାଇଁ ସେ ନିଜକୁ ଗୋପନ ରଖି ସେଠାରେ ଅପେକ୍ଷା କଲା ।

ଏ ସମୟରେ ମିତ୍ର ଆଶ୍ୱାସନା ଦେଇ କହୁଥିବା ଶୁଣି ସେ ସେମାନଙ୍କର ନିକଟତର ହେଲା । ମିତ୍ର କହୁଥାନ୍ତି, 'ମିତ୍ର, କେତେଦିନ ଧରି ଆଉ ଏହିପରି ମନୋବେଦନା ଭିତରେ ରହିବ ? ଉଦ୍ୟାନର ରମଣୀୟ ଶୋଭା ଦର୍ଶନ କରି କିଛି ସମୟ ପାଇଁ ମନକୁ ଶାନ୍ତ କର ।' ମିତ୍ର କଥାରେ କମଳାକର କହିଲେ, 'ମୋର ଶରୀରରେ ମନ ବୋଲି ଆଉ କିଛି ନାହିଁ । ସେହି ବଣିକ କନ୍ୟା ତାକୁ ଚୋରି କରି ନେଇଯିବା ପରଠାରୁ ମୋ ଶରୀର ଶୂନ୍ୟ । କାହାକୁ ବା ଶାନ୍ତ କରିବି ? ବର୍ତ୍ତମାନ ମୋର ଏହି ଶୂନ୍ୟ ଶରୀର କନ୍ଦର୍ପର ତୂଣୀରରେ ପରିଣତ ହୋଇସାରିଛି । ତେଣୁ ତୁମେ ଯଦି ପାରିବ ତା' ସହିତ ମିଳିତ ହେବାର କିଛି ଉପାୟ କର ।' କମଳାକରଙ୍କ ମୁଖରୁ ଏହା ଶୁଣି ମାତଳିକାର ସନ୍ଦେହ ଦୂର ହେଲା । ସେ ସମ୍ମୁଖକୁ ଆସି କହିଲା—

'ଭଦ୍ର, ମୋତେ ଅନଙ୍ଗମଞ୍ଜରୀ ଆପଣଙ୍କ ନିକଟକୁ ପଠାଇଛନ୍ତି । ସେ ମୋ ଦ୍ୱାରା ସନ୍ଦେଶ ପଠାଇଛନ୍ତି ଯେ ହଠାତ୍ କୌଣସି କୁଳସ୍ତ୍ରୀର ହୃଦୟରେ ପ୍ରବେଶ କରି ତା'ର ମନକୁ ଚୋରାଇ ନେବା ଆପଣଙ୍କର ଏ କି ସଭ୍ୟତା ? କେବଳ ସେତିକି ନୁହେଁ, ଜଣେ ନିପୁଣ ଚୋର ପରି ଆପଣ ଏପର୍ଯ୍ୟନ୍ତ ନିଜକୁ ଗୋପନ ରଖିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା, ଏଥିରେ ମଧ୍ୟ ଆପଣଙ୍କ ପରି ସୁନ୍ଦର ପୁରୁଷ ନିକଟରେ ସେ ନିଜର ପ୍ରାଣ ଓ ଶରୀର ସମର୍ପି ଦେବାପାଇଁ ପ୍ରସ୍ତୁତ । ତାଙ୍କ ଶରୀରରୁ କେବଳ ତପ୍ତ ନିଶ୍ୱାସ ନିର୍ଗତ ହେଉଛି । ମନେହେଉଛି ତାଙ୍କ ହୃଦୟ କନ୍ଦର୍ପାଗ୍ନିରେ ଜଳୁଥିବା ଯୋଗୁଁ ଏହା ତାର ଧୂମରାଶି ମାତ୍ର । ତାଙ୍କ ଚକ୍ଷୁରୁ ନିର୍ଗତ ହେଉଥିବା କଜ୍ଜଳ ମିଶ୍ରିତ ଅଶ୍ରୁବିନ୍ଦୁ ସବୁ ମୁଖକମଳର ଚତୁର୍ଦ୍ଦିଗରେ ଘୂରି ବୁଲୁଥିବା ଭ୍ରମର ପଂକ୍ତି ବୋଲି ମନେହେଉଛି । ଯଦି ଆପଣ ଚାହାଁନ୍ତି ତେବେ ମୁଁ ଉଭୟଙ୍କ ମିଳନର ବ୍ୟବସ୍ଥା କରିବି ।'

ମାତଳିକାଠାରୁ ପ୍ରିୟା ସନ୍ଦେଶ ଶୁଣି କମଳାକର କିଛି ଆଶ୍ୱସ୍ତି ବୋଧ କଲେ । କହିଲେ, 'ଭଦ୍ରେ, ତୁମ କଥା ଶୁଣି ମୋର ବେଦନା ଶାନ୍ତ ହେଲା । ତୁମ ସଖୀଙ୍କ ମନ ମୋ ନିକଟରେ ରହିଯାଇଛି । ତେଣୁ ମୋର ଭୟ ହେଉଛି ତାଙ୍କର ବିରହ ବେଦନା ତାଙ୍କ ମନ ଭିତରେ ନରହି ପ୍ରଘଟିତ ହୋଇପଡ଼ିବ । ତେଣୁ ବର୍ତ୍ତମାନ ତୁମେ ହିଁ ଏକମାତ୍ର ଭରସା । ଯାହା ଚାହୁଁଛ ତାହା କରିପାର ।'

କମଳାକରଙ୍କ ଆତ୍ମସମର୍ପଣ ମାତଳିକାକୁ ଉତ୍‌ଫୁଲ୍ଲ କଲା । ସେ ଉପାୟଟିଏ ବତାଇ କହିଲା, 'ଆଜି ରାତିରେ ମୁଁ ସଖୀ ଅନଙ୍ଗମଞ୍ଜରୀଙ୍କୁ ଗୁପ୍ତ ଭାବରେ ନେଇ ତାଙ୍କ ଶୟନ ଭବନର ନିକଟରେ ଥିବା ଉଦ୍ୟାନ ମଧ୍ୟରେ ପହଞ୍ଚାଇବି । ଆପଣ ବାହାରେ ଉପସ୍ଥିତ ଥିବେ । ମୁଁ କୌଣସି ଉପାୟରେ ଆପଣଙ୍କୁ ଉଦ୍ୟାନ ମଧ୍ୟକୁ ନେଇ ଆସିବି । ସେଠାରେ ଆପଣମାନଙ୍କର ମନୋମତ ମିଳନ ଘଟିପାରିବ ।'

ମାତଳିକାର ନିର୍ଦ୍ଦିଷ୍ଟ ଉପାୟ କେବଳ କମଳାକରଙ୍କୁ ନୁହେଁ ଅନଙ୍ଗମଞ୍ଜରୀଙ୍କୁ ମଧ୍ୟ ଆନନ୍ଦିତ କଲା । ସଂଧ୍ୟାରାଣୀ ପ୍ରତି ଅନୁରାଗୀ ହୋଇ ସୂର୍ଯ୍ୟ କେଉଁ ଗୁପ୍ତ ସ୍ଥାନକୁ ଚାଲିଗଲେ । ପୂର୍ବ ଦିଗ୍‌ବଧୂ ଚନ୍ଦ୍ର ସହିତ ମିଳିତ ହେବାପାଇଁ ବେଶଭୂଷାରେ ଭୂଷିତ ହେଲା । ଶ୍ୱେତ କଇଁ ସବୁ କମଳର ସୌଭାଗ୍ୟ ଲାଭ କରିଥିବା ଯୋଗୁଁ ଅତ୍ୟନ୍ତ ପ୍ରସନ୍ନ ଦେଖାଗଲେ । ଉକ୍ରଣ୍ଠିତ କମଳାକର ସାଜସଜ୍ଜିତ ହୋଇ ନିଜ ପ୍ରିୟତମାର ପମୋଦ ଉଦ୍ୟାନରଦ୍ୱାର ନିକଟରେ ଯାଇ ଅପେକ୍ଷା କଲେ ।

ଅନଙ୍ଗମଞ୍ଜରୀ ଅତି କଷ୍ଟରେ ଦିବସଟି ବିତାଇ ସଂଧ୍ୟା ହେବାରୁ ସଖୀ ସହିତ ଯାଇ ଉଦ୍ୟାନରେ ପ୍ରବେଶ କଲା । ମାତଳିକା ତାକୁ ଆମ୍ରବୃକ୍ଷର ମୂଳରେ ଥିବା ବେଦିକା ଉପରେ ବସାଇ ଉଦ୍ୟାନ ବାହାରକୁ ଗଲା । ଅପେକ୍ଷମାଣ କମଳାକର ତା' ସହିତ ଉଦ୍ୟାନ ମଧ୍ୟରେ ଆସି ପ୍ରବେଶ କଲେ । ପଥିକ ଶୀତଳ ବୃକ୍ଷ ଛାୟା ଦେଖି ଯେପରି ଆନନ୍ଦିତ ହୁଏ ଆମ୍ର ବୃକ୍ଷର ତିଳତଣ୍ଡୁଳିତ ଛାୟାରେ ଅନଙ୍ଗମଞ୍ଜରୀକୁ ଦେଖି କମଳାକର ସେହିପରି ଆନନ୍ଦ ପ୍ରକାଶ କଲେ । ସେ ଧୀରେଧୀରେ ବେଦିକା ଦିଗକୁ ଅଗ୍ରସର ହେଉଥିବା ଦେଖି ଅନଙ୍ଗମଞ୍ଜରୀ ଦ୍ରୁତ ପଦକ୍ଷେପରେ ଆସି ତାଙ୍କୁ ଦୃଢ଼ ଆଲିଙ୍ଗନପାଶରେ ଆବଦ୍ଧ କଲା; କନ୍ଦର୍ପ ତା'ର ସମସ୍ତ ଲଜ୍ଜା ହରଣ କରିନେଇଥାଏ ।

'କୁଆଡ଼େ ଯାଉଛନ୍ତି, ମୁଁ ତ ଏବେ ଆପଣଙ୍କୁ ପାଇଗଲି' କହି ଅନଙ୍ଗମଞ୍ଜରୀ ପାଗଳିନୀଙ୍କ ପରି ପ୍ରଳାପ କରିବାକୁ ଲାଗିଲା । ଅତ୍ୟଧିକ ଆନନ୍ଦ ଯୋଗୁଁ ତାର ଶ୍ୱାସ ରୁଦ୍ଧ ହୋଇପଡ଼ିଲା । ସେ ସେହିଠାରେ ହିଁ ମୃତ୍ୟୁବରଣ କଲା । ବାୟୁଛିନ୍ନ ଲତା ପରି ତାର ସୁନ୍ଦର ଶରୀର ଭୂମି ଉପରେ ଲୋଟିଗଲା । ପ୍ରଣୟର ପଥ ବଡ଼ ବିଚିତ୍ର । ଏହାର ପରିଣାମ ସର୍ବଦା ବିଷମ ।

ବିଚିତ୍ରୋ ବତ କାମସ୍ୟ ବିପାକବିଷମଃ କ୍ରମଃ ।

ଏହି ଆକସ୍ମିକ ଓ ଭୟଙ୍କର ବଜ୍ରପାତରେ କମଳାକର ମଧ୍ୟ ମୂର୍ଚ୍ଛିତ ହୋଇପଡ଼ିଲେ । କିଛି ସମୟ ପରେ ଚେତନା ଲାଭକରି ସେ ଅନଙ୍ଗମଞ୍ଜରୀର ମୃତ ପିଣ୍ଡକୁ ଚୁମ୍ବନ ଓ ଆଲିଙ୍ଗନ କରିବାକୁ ଲାଗିଲେ । ଅସହ୍ୟ ଦୁଃଖରୁ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ମୃତ୍ୟୁବରଣ କଲେ । ଉଭୟଙ୍କୁ ମୃତ ଦେଖି ମାତାଳିକାର ଦୁଃଖ ମଧ୍ୟ ସୀମାହୀନ ହୋଇଉଠିଲା । ବୋଧହୁଏ ଏଥିପାଇଁ ରାତ୍ରି ମଧ୍ୟ ନିଜର ଶେଷ ସୀମାରେ ଆସି ପହଞ୍ଚିଲା ।

ପ୍ରଭାତରୁ ଉଦ୍ୟାନ ରକ୍ଷକମାନେ ଏସବୁ ଦୃଶ୍ୟ ଦେଖି କୋଳାହଳ ସୃଷ୍ଟି କଲେ । ମାତଳିକାଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଉଭୟ ପରିବାର ଲଜ୍ଜା, ଆଶ୍ଚର୍ଯ୍ୟ, ଦୁଃଖ ଓ ମୋହରେ ବିକଳ ହୋଇ ସେଠାରେ ଆସି ପହଞ୍ଚିଲେ । ଦୁଃଖ ଓ ଲଜ୍ଜାରେ ସେମାନଙ୍କର ମସ୍ତକ ଅବନତ ହୋଇପଡୁଥିଲା । ସେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବହୁ ସମୟ ପର୍ଯ୍ୟନ୍ତ ନିର୍ବାକ୍ ରହିଗଲେ । ପ୍ରକୃତରେ ବିଟପୀ ସ୍ତ୍ରୀମାନେ ନିଜ କୁଳପାଇଁ କଳଙ୍କ ଏବଂ ଉଭୟ କୁଳର ସନ୍ତାପଦାୟିନୀ ।

କଷ୍ଟାଃ କୁଳଖଳୀକାରହେତବୋ ବତ କୁସ୍ତ୍ରିୟଃ ।

ଏ ମଧ୍ୟରେ ଅନଙ୍ଗମଞ୍ଜରୀର ପତି ମଣିବର୍ମା ପତ୍ନୀନିମିତ୍ତ ଉତ୍କଣ୍ଠିତ ହୋଇ ତାମ୍ରଲିପ୍ତିରୁ ଫେରିଆସିଲା । ଶ୍ୱଶୁରଙ୍କ ଗୃହରେ ପହଞ୍ଚିବା ମାତ୍ରେ ଏ ସମସ୍ତ ସମାଚାର ଶୁଣି ସେ ମଧ୍ୟ ଯାଇ ସେହି ପ୍ରମୋଦ ଉଦ୍ୟାନରେ ପହଞ୍ଚିଲା । ଅଶ୍ରୁସଜଳ ଚକ୍ଷୁରେ ସେ ପତ୍ନୀର ସୌନ୍ଦର୍ଯ୍ୟ ସ୍ମରଣ କରୁଥାଏ । ପରପୁରୁଷ ନିକଟରେ ମରିପଡ଼ିଥିବା ଦେଖିଲେ ମଧ୍ୟ ସ୍ତ୍ରୀ ପ୍ରତି ତାର ଅନୁରାଗ ହ୍ରାସ ପାଇଲା ନାହିଁ । ସେ ଶୋକାଗ୍ନିରେ ସନ୍ତପ୍ତ ହୋଇ ସେହିଠାରେ ପ୍ରାଣତ୍ୟାଗ କଲା ।

ଏ ତିନିଜଣଙ୍କ ମୃତ୍ୟୁରେ ସେଠାରେ ଉପସ୍ଥିତ ଥିବା ବନ୍ଧୁ ସ୍ୱଜନମାନେ ଏପରି ବିକଳ ବିଳାପ କଲେ ଯେ ସମଗ୍ର ନଗରବାସୀ ବିସ୍ମିତ ଭାବରେ ସେଠାରେ ଆସି ପହଞ୍ଚିଲେ । ଅନଙ୍ଗମଞ୍ଜରୀର ପିତା ପୂର୍ବେ ଯେଉଁ ଚଣ୍ଡିକା ମନ୍ଦିର ନିର୍ମାଣ କରିଥିଲେ ତାହା ସମ୍ମୁଖରେ ହିଁ ଥିଲା । ଦେବୀଙ୍କ ପରିଚାରିକାମାନେ ଅଦୃଶ୍ୟ ଭାବେ ଏସବୁ ଘଟଣା ଦେଖି ଦେବୀଙ୍କୁ ଜଣାଇଲେ, 'ଭଗବତି, ଅର୍ଥଦତ୍ତ ହିଁ ଆପଣଙ୍କର ଏ ମୂର୍ତ୍ତି ପ୍ରତିଷ୍ଠା କରିଛନ୍ତି । ସେ ଆଜୀବନ ଆପଣଙ୍କ ଏକନିଷ୍ଠ ଭକ୍ତ । ଏହି ଦୁଃଖ ସମୟରେ ଆପଣ ତାଙ୍କ ପ୍ରତି ଦୟା କରନ୍ତୁ ।'

ପରିଚାରିକାମାନଙ୍କ ସ୍ତୁତିରେ ଦେବୀ ସନ୍ତୁଷ୍ଟା ହୋଇ ଏହି ତିନିଜଣଯାକ କାମବାସନା ରହିତ ହୋଇ ଜୀବନ ଲାଭ କରନ୍ତୁ ବୋଲି ଆଦେଶ ଦେଲେ । ଦେବୀଙ୍କ କୃପାରୁ ତିନିଜଣଯାକ ନିଦ୍ରାରୁ ଉଠିବା ପରି ଉଠି ବସିଲେ । ସେମାନଙ୍କର କାମ ବିକାର ନଷ୍ଟ ହୋଇଯାଇଥିଲା । ଏହି ଆଶ୍ଚର୍ଯ୍ୟଜନକ ଘଟଣାରେ ଉପସ୍ଥିତ ନଗରବାସୀ ଓ ସ୍ୱଜନମାନେ ବହୁ ଆନନ୍ଦିତ ହେଲେ । କମଳାକର ଲଜ୍ଜାରେ ମଥା ପୋତି ସ୍ୱଗୃହକୁ ଫେରିଗଲେ । ଅର୍ଥଦତ୍ତ ମଧ୍ୟ ନିଜର ଲଜ୍ଜାବନତା କନ୍ୟା ଅନଙ୍ଗମଞ୍ଜରୀକୁ ଜାମାତା ସହିତ ସ୍ୱଗୃହକୁ ନେଇ ସେମାନଙ୍କର ମଙ୍ଗଳଚର୍ଯ୍ୟା କଲେ ।''

ରାତ୍ରିର ଅନ୍ଧକାରରେ ମାର୍ଗ ଅତିକ୍ରମ କରୁଥିବା ରାଜା ତ୍ରିବିକ୍ରମସେନଙ୍କୁ କଥାଟି ଶୁଣାଇ ବେତାଳ ତାର ସ୍ୱାଭାବିକ ରୀତିରେ ପ୍ରଶ୍ନ କଲା, 'ରାଜନ୍, ଏବେ କହ, ଏ ତିନିଜଣଙ୍କ ମଧ୍ୟରୁ କାହାର ଆସକ୍ତି ସବୁଠାରୁ ବେଶୀ ଥିଲା ? ଜାଣି ମଧ୍ୟ ଯଦି ଉତ୍ତର ନଦିଅ ତେବେ ନିଶ୍ଚିତଭାବେ ଅଭିଶାପର ପରିଣାମ ଭୋଗ କରିବ ।'

ବେତାଳର ପ୍ରଶ୍ନରେ ରାଜା ବାଧ୍ୟ ହୋଇ ଉତ୍ତର ଦେଲେ, 'ମୋତେ ଲାଗୁଚି ମଣିବର୍ମା ହିଁ ସବୁଠାରୁ ବେଶି ମୋହାସକ୍ତ ଥିଲା । ଅନ୍ୟ ଦୁଇଜଣ ତ ପରସ୍ପର ପ୍ରତି

ଅନୁରକ୍ତ ଥିଲେ ଏବଂ ସୁଯୋଗ ପାଇବାରୁ ତାହା ପରିପକ୍ୱତା ଲାଭ କରିଥିଲା । ତେଣୁ ସେମାନେ ପ୍ରାଣତ୍ୟାଗ କରିବା ଅସମ୍ଭବ ନଥିଲା । କିନ୍ତୁ ମଣିବର୍ମା ନିଜ ସ୍ତ୍ରୀକୁ ପରପୁରୁଷ ପ୍ରତି ଅନୁରକ୍ତା ହୋଇ ମରିବା ଦେଖି କ୍ରୋଧ ପ୍ରକାଶ କରିବା ପରିବର୍ତ୍ତେ ମୋହଗ୍ରସ୍ତ ଓ ଶୋକାର୍ତ୍ତ ହୋଇ ମୃତ୍ୟୁବରଣ କଲା । ଏଣୁ ଏ ତିନିଜଣଙ୍କ ମଧ୍ୟରୁ ସେ ହିଁ ଅଧିକ ମୋହାସକ୍ତ ।'

ରାଜାଙ୍କ କଥା ଶୁଣି ବେତାଳ ହଠାତ୍ ତାଙ୍କ ସ୍କନ୍ଧରୁ ନିଜ ସ୍ଥାନକୁ ଫେରିଗଲା । ଅନନ୍ୟଗତିକ ରାଜା ତା'ର ଅନୁସରଣ କଲେ ।

# ଏକୋନତ୍ରିଂଶ ତରଙ୍ଗ

## ଦ୍ୱାବିଂଶ ବେତାଳ : ଚାରି ବ୍ରାହ୍ମଣ ଭ୍ରାତା କଥା

ରାଜା ତ୍ରିବିକ୍ରମ ସେନ ଶିଂଶପା ବୃକ୍ଷଶାଖାରୁ ପୁଣି ବେତାଳକୁ ନିଜ ସ୍କନ୍ଧ ଉପରକୁ ଉଠାଇ ନେଇ ଚାଲିବାକୁ ଲାଗିଲେ । ମାର୍ଗ ମଧ୍ୟରେ ବେତାଳ କହିଲା, ''ରାଜନ୍, ତୁମେ ଜଣେ ସଜ୍ଜନ ଓ ମହାପରାକ୍ରମଶାଳୀ ଜଣାଯାଉଛ । ତେଣୁ ତୁମକୁ ଗୋଟିଏ ଅପୂର୍ବ କଥା ଶୁଣାଉଛି, ଶୁଣ--

ପ୍ରାଚୀନ କାଳରେ ଏହି ପୃଥିବୀ ପୃଷ୍ଠରେ କୁସୁମପୁର ବୋଲି ଏକ ନଗର ଥିଲା । ଏହାର ରାଜା ଥିଲେ ଧରଣୀବରାହ । ତାଙ୍କ ବ୍ରାହ୍ମଣ ବହୁଳ ରାଜ୍ୟରେ ବ୍ରାହ୍ମଣମାନଙ୍କୁ ଦିଆଯାଇଥିବା ବ୍ରହ୍ମସ୍ଥଳ ନାମକ ଏକ ଅଗ୍ରହାର ଥିଲା । ସେଠାରେ ବିଷ୍ଣୁସ୍ୱାମୀ ନାମକ ଜଣେ ବ୍ରାହ୍ମଣ ରହୁଥିଲେ । ଅଗ୍ନିଙ୍କର ସ୍ୱାହା ପରି ସେହି ବ୍ରାହ୍ମଣଙ୍କ ପତ୍ନୀ ଥିଲେ ତାଙ୍କର ଅତ୍ୟନ୍ତ ଅନୁକୂଳ । ସେମାନଙ୍କର ଚାରୋଟି ପୁତ୍ର । ବେଦ ଅଧ୍ୟୟନରେ ସେମାନଙ୍କର ଶୈଶବାବସ୍ଥା ବିତିଗଲା । ଏ ସମୟରେ ବିଷ୍ଣୁସ୍ୱାମୀ ସ୍ୱର୍ଗାରୋହଣ କଲେ । ପତିଙ୍କ ମୃତ୍ୟୁରେ ପତ୍ନୀ ମଧ୍ୟ ତାଙ୍କର ସହଗମନ କଲେ ।

ପିତାମାତାଙ୍କ ମୃତ୍ୟୁରେ ଚାରି ଭାଇ ଅନାଥ ହୋଇପଡ଼ିଲେ । ବଂଶୀୟ ସ୍ୱଜନମାନେ ସୁଯୋଗ ଦେଖି ସେମାନଙ୍କର ସର୍ବସ୍ୱ ଅପହରଣ କରିବାପାଇଁ ପଶ୍ଚାଦ୍‌ପଦ ହେଲେ ନାହିଁ । ନିଃସ୍ୱ ଓ ନିରନ୍ନ ହୋଇପଡ଼ିବାରୁ ଚାରିଭାଇ ସେଠାରେ ରହିବା ଅନୁଚିତ ମନେକରି ମାତାମହ ରହୁଥିବା ଯଜ୍ଞସ୍ଥଳ ନାମକ ଗ୍ରାମକୁ ଚାଲିଯିବାପାଇଁ ନିଶ୍ଚୟ କଲେ । ମାର୍ଗ ମଧ୍ୟରେ ଭିକ୍ଷାଦ୍ୱାରା ଉଦରପୋଷଣ କରି ସେମାନେ ବହୁଦିନ ପରେ ଯାଇ ମାତାମହଙ୍କ ଗୃହରେ ଉପସ୍ଥିତ ହେଲେ । ସେତେବେଳକୁ ତାଙ୍କର ସ୍ୱର୍ଗବାସ ହୋଇଯାଇଥାଏ ।

ମାମୁମାନେ ଆଶ୍ରୟ ଦେବାରୁ ସେମାନେ ସେଠାରେ ଖାଇପିଇ ବେଦ ଅଧ୍ୟୟନ ଓ ଅଭ୍ୟାସପୂର୍ବକ ରହିବାକୁ ଲାଗିଲେ ।

କିଛିଦିନ ରହିବା ପରେ ମାମୁମାନଙ୍କର ଉପେକ୍ଷା ମନୋଭାବ ଲକ୍ଷ୍ୟ କରି ସେମାନେ ଭବିଷ୍ୟତ ସମ୍ପର୍କରେ ଚିନ୍ତିତ ହୋଇପଡ଼ିଥାନ୍ତି ।

ଦିନେ ବଡ଼ଭାଇ ଅନ୍ୟମାନଙ୍କୁ ସାନ୍ତ୍ୱନା ଦେଇ କହିଲା, 'ଭାଇମାନେ, ଏହିପରି ଚିନ୍ତାକରି ଆମେ ବା କ'ଣ କରିପାରିବା ? ସବୁକିଛି ବିଧାତା ହାତରେ । ମନୁଷ୍ୟ ଚାହିଁଲେ ବି କିଛି କରିପାରେ ନାହିଁ । ଭବିଷ୍ୟତ ସମ୍ପର୍କରେ ଉଦ୍‌ବିଗ୍ନ ହୋଇ ଆଜି ମୁଁ ଏଣେତେଣେ ବୁଲୁଥିବା ବେଳେ ଶ୍ମଶାନରେ ଯାଇ ପହଞ୍ଚିଲି । ସେଠାରେ ଗୋଟିଏ ମୃତ ପୁରୁଷର ଶବ ପଡ଼ିଥାଏ । ତାକୁ ଦେଖି ମୁଁ ଚିନ୍ତା କଲି ଯେ ପୁରୁଷଟି ପ୍ରକୃତରେ ଧନ୍ୟ । ସମସ୍ତ ଦୁଃଖକଷ୍ଟ ଭାରରୁ ମୁକ୍ତ ହୋଇ ସେ ନିଶ୍ଚିନ୍ତ ମନରେ ଏପରି ବିଶ୍ରାମ କରୁଛି । ତାକୁ ଦେଖି ମୋର ମଧ୍ୟ ମରିବାପାଇଁ ଇଚ୍ଛା ହେଲା । ଶ୍ମଶାନସ୍ଥିତ ଗୋଟିଏ ବୃକ୍ଷ ଶାଖାରେ ଫାଶଟିଏ ଲଗାଇ ମୁଁ ସେଥିରେ ଓହଳି ପଡ଼ିଲି । ମୋର ଚେତନା ଲୋପ ହେଲା । କିନ୍ତୁ ମୁଁ ମରି ନଥାଏ । ଏ ସମୟରେ ଫାଶଟି ଖୋଲିଯିବାରୁ ମୁଁ ଭୂମି ଉପରେ ପଡ଼ିଗଲି । ମୋର ଯେତେବେଳେ ଚେତନା ଫେରିଲା, ଦେଖିଲି, ଜଣେ କେହି ଦୟାଳୁ ପୁରୁଷ ମୋ ନିକଟରେ ବସି ପଙ୍ଖାଚାଳନ କରୁଛନ୍ତି । ବୋଧହୁଏ ମୁଁ ତାଙ୍କରି ଚେଷ୍ଟାରେ ହିଁ ଚେତନା ଲାଭ କରିଥିଲି । ମୋତେ ପ୍ରକୃତିସ୍ଥ ଦେଖି ସେ କହିଲେ, 'ଭାଇ, ବିଦ୍ୱାନ୍ ହୋଇ ମଧ୍ୟ ତୁମେ ଦୁଃଖରେ ଭାଙ୍ଗି ପଡ଼ିବା କେତେଦୂର ଉଚିତ ? ମନୁଷ୍ୟ ସୁକର୍ମରେ ସୁଖ ଏବଂ ଦୁଷ୍କର୍ମରେ ଦୁଃଖ ଭୋଗ କରିଥାଏ । ଏହା ବ୍ୟତୀତ ଅନ୍ୟ କଥା କିଛି ନାହିଁ । ଯଦି ତୁମେ ଦୁଃଖରେ ବିଚଳିତ ହୋଇପଡୁଛ ତେବେ ସତ୍‌କର୍ମ କର । ଏପରି ଆତ୍ମହତ୍ୟା କରି ନରକର ନିର୍ଯ୍ୟାତନା ଭୋଗ କରିବାପାଇଁ କାହିଁକି କାମନା କରୁଛ ?'

ଏହିପରି ବିଭିନ୍ନ ଭାବରେ ମୋତେ ଆଶ୍ୱାସନା ଦେଇ ସେ କେଉଁଆଡ଼େ ଚାଲିଗଲେ । ମୁଁ ମଧ୍ୟ ଆତ୍ମହତ୍ୟା ଚିନ୍ତା ଛାଡ଼ି ଫେରି ଆସିଲି । ଏଥିରୁ ସ୍ପଷ୍ଟ ଜଣାଯାଉଛି ବିଧାତା ନଚାହିଁଲେ ମନୁଷ୍ୟ ମରି ବି ପାରେନାହିଁ । ତେଣୁ ମୁଁ କୌଣସି ତୀର୍ଥରେ ଯାଇ ତପସ୍ୟା କରିବି ବୋଲି ନିଶ୍ଚୟ କରିଛି । ମୋର ପୁଣ୍ୟ ବଳରେ ମୁଁ ପରଜନ୍ମରେ ଯେପରି ଆଉ ନିର୍ଧନ ନହୁଏ ସେହିପରି ଚେଷ୍ଟାକରିବି ।'

ବଡ଼ଭାଇ କଥା ଶୁଣି ଛୋଟ ଭାଇମାନେ କହିଲେ, 'ଆର୍ଯ୍ୟ, ଆପଣ ବିଦ୍ୱାନ୍ ହୋଇ ମଧ୍ୟ ଧନହୀନତାପାଇଁ କାହିଁକି ଏପରି ଦୁଃଖ କରୁଛନ୍ତି ? ଶରତ୍‌କାଳୀନ ମେଘ ପରି ଧନସମ୍ପତ୍ତି ଯେ ଚଞ୍ଚଳ ଓ ଅସ୍ଥିର ଏହା କ'ଣ ଆପଣ ଜାଣନ୍ତି ନାହିଁ ? ଦୁର୍ଜନର ମିତ୍ରତା, ବେଶ୍ୟା ଓ ଲକ୍ଷ୍ମୀ—ଏ ତିନୋଟି କେବେ ଚିରସ୍ଥାୟୀ ନୁହଁନ୍ତି । ମନୁଷ୍ୟ ଯେତେ ସାବଧାନ ହେଲେ ସୁଦ୍ଧା ଏମାନେ କେବେ କାହାର ହୋଇ ରହନ୍ତି ନାହିଁ । ତେଣୁ ମନସ୍ୱୀ ପୁରୁଷକୁ ଏପରି କିଛି ଶକ୍ତି ଅର୍ଜନ କରିବାକୁ ପଡ଼ିବ ଯାହାଦ୍ୱାରା ସେ ଧନରୂପକ ହରିଣୀକୁ ବାରମ୍ବାର ବନ୍ଧନ କରି ଆଣିପାରିବ ।'

**ଆହୃତ୍ୟ ରକ୍ଷମାଣାପି ଯତ୍ନେନାନ୍ତବିରାଗିଣୀ**
**ଅସନ୍ମୈତ୍ରୀ ଚ ବେଶ୍ୟା ଚ ଶ୍ରୀଶ୍ଚ କସ୍ୟ କଦା ସ୍ଥିରା ।**

ଛୋଟଭାଇର କଥା ଶୁଣି ବଡ଼ଭାଇ ଧୈର୍ଯ୍ୟ ଧାରଣ କଲା । ସମସ୍ତେ ବସି ଏ ପ୍ରକାର ଶକ୍ତି ସାମର୍ଥ୍ୟ ସମ୍ପର୍କରେ ବିଚାରବିମର୍ଶ କଲେ । ଶେଷରେ ନିଶ୍ଚୟ ହେଲା ଯେ ସେମାନେ ସମଗ୍ର ପୃଥିବୀ ଭ୍ରମଣ କରି ଏଥିପାଇଁ ଆବଶ୍ୟକୀୟ ବିଶେଷଜ୍ଞାନର ସନ୍ଧାନ କରିବେ ।

ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ମିଳନକେନ୍ଦ୍ର ରୂପେ ସ୍ଥିର କରି ଚାରିଭାଇ ଚାରିଦିଗକୁ ପ୍ରସ୍ଥାନ କଲେ । କିଛି ବର୍ଷ ବିତିଗଲା । ସେମାନେ ସେହି ମିଳନ କେନ୍ଦ୍ରରେ ଆସି ସମ୍ମିଳିତ ହେଲେ । ପ୍ରତ୍ୟେକେ ନିଜନିଜର ଅର୍ଜିତ ବିଦ୍ୟା ସମ୍ପର୍କରେ ସ୍ୱାଭିମାନ ପ୍ରକାଶ କରୁଥାନ୍ତି ।

ଜଣେ ଭାଇ କହିଲା, 'ମୁଁ ଗୋଟିଏ ଅଦ୍ଭୁତ ବିଦ୍ୟା ଶିଖିଛି । ଯଦି କୌଣସି ପ୍ରାଣୀର ଖଣ୍ଡିଏ ଅସ୍ଥି ମତେ ମିଳିଯାଏ ତେବେ କ୍ଷଣକ ମଧ୍ୟରେ ମୁଁ ପ୍ରାଣୀଟିର ଶରୀରରେ ମାଂସ ଭରି ଦେଇପାରିବି ।'

ଏହାଶୁଣି ଅନ୍ୟ ଜଣେ ଭାଇ କହିଲା, 'ଏ ତ ବହୁତ ଭଲକଥା । ମୁଁ ମଧ୍ୟ ଏପରି ଏକ ବିଦ୍ୟା ଅର୍ଜନ କରିଛି ଯାହାଦ୍ୱାରା ମୁଁ ସେହି ମାଂସଳ ଶରୀରକୁ ଚର୍ମ ଓ ଲୋମରେ ଆଚ୍ଛାଦନ କରି ଦେଇପାରିବି ।'

ତୃତୀୟ ଭାଇ ଚର୍ମ, ମାଂସ ଓ ଲୋମଯୁକ୍ତ ଶରୀରକୁ ବିଭିନ୍ନ ଅବୟବ ଦ୍ୱାରା ପୂର୍ଣ୍ଣାଙ୍ଗ ରୂପ ଦେଇପାରିବା ବିଦ୍ୟା ଶିକ୍ଷା କରିଥିବା କଥା ପ୍ରକାଶ କଲା ।

ଶେଷରେ ଚତୁର୍ଥ ଭ୍ରାତା କହିଲା, 'ମୁଁ ତ ମୃତସଂଜୀବନୀ ବିଦ୍ୟା ଅର୍ଜନ କରିଛି । ତୁମଦ୍ୱାରା ପ୍ରସ୍ତୁତ ନିର୍ଜୀବ ପ୍ରାଣୀର ଶରୀରରେ ଜୀବନୀ ଶକ୍ତି ସଞ୍ଚାର କରି ତାକୁ ଜୀବନ୍ତ କରିଦେଇ ପାରିବି ।'

ଏହିପରି ନିଜନିଜ ବିଦ୍ୟା ସମ୍ପର୍କରେ ସୂଚନା ଦେଇ ତା'ର ପରୀକ୍ଷା ନିମିତ୍ତ ସେମାନେ ଖଣ୍ଡିଏ ଅସ୍ଥିର ସନ୍ଧାନ କଲେ । ନିକଟସ୍ଥ ଅରଣ୍ୟ ମଧ୍ୟରୁ ସଞ୍ଚୟ କରିଥିବା ଖଣ୍ଡିଏ ଅସ୍ଥି ଗୋଟିଏ ସିଂହର ଥିଲା । ସେମାନେ ତାହା ନଜାଣି ତା ଉପରେ ନିଜର ବିଦ୍ୟା ପ୍ରୟୋଗ କଲେ । ଜଣେ ତାକୁ ଆବଶ୍ୟକୀୟ ମାଂସରେ ପୂର୍ଣ୍ଣକଲା । ଅନ୍ୟ ଜଣେ ତାର ଯୋଗ୍ୟ ଚର୍ମ ଓ ଲୋମ ପ୍ରସ୍ତୁତ କଲା । ତୃତୀୟ ଜଣକ ଅସ୍ଥିଟିକୁ ଗୋଟିଏ ସିଂହର ରୂପ ଦେଲା ଏବଂ ପରିଶେଷରେ ଚତୁର୍ଥ ଭ୍ରାତାର ବିଦ୍ୟାବଳରେ ସିଂହଟି ଜୀବନ ଲାଭ କରିଉଠିଲା । ସିଂହର ଭୟଙ୍କର ରୂପ ଏବଂ ବିକଟ ଗର୍ଜନରେ ସେମାନେ ସଂତ୍ରସ୍ତ ହୋଇଉଠିଲେ । ସିଂହଟି ପ୍ରଚଣ୍ଡ ବେଗରେ ସେମାନଙ୍କୁ ଆକ୍ରମଣ କରି ନିଜର କ୍ଷୁଧା ଶାନ୍ତ କଲା ଏବଂ ଅରଣ୍ୟ ମଧ୍ୟକୁ ଚାଲିଗଲା । ଏହିପରି ସିଂହ ଭଳି ଏକ ହିଂସ୍ରଜନ୍ତୁକୁ ଜୀବନ ଦାନ କରିଥିବା ତ୍ରୁଟି ଯୋଗୁଁ ଚାରି ବ୍ରାହ୍ମଣପୁତ୍ର ମୃତ୍ୟୁଲାଭ କଲେ । ବାସ୍ତବରେ ହିଂସ୍ର ଜନ୍ତୁକୁ ଜାଗ୍ରତ କରି କିଏ ବା ସୁଖ ପାଇଛି ?

ଯଦି ବିଧାତା ବାମ ହୁଏ ତେବେ ଯତ୍ନପୂର୍ବକ ଶିକ୍ଷା କରିଥିବା ବିଦ୍ୟା ମଧ୍ୟ କଲ୍ୟାଣ ପରିବର୍ତ୍ତେ ଦୁଃଖ ହିଁ ଦେଇଥାଏ । ପୌରୁଷରୂପକ ବୃକ୍ଷ ସେତେବେଳେ ଫଳପ୍ରସୂ ହୋଇଥାଏ, ଯେତେବେଳେ ଭାଗ୍ୟରୂପକ ଏହାର କାଣ୍ଡ ଅନୁକୂଳ ଥାଏ, ନୀତିରୂପକ ଆଳବାଳରେ ଜ୍ଞାନରୂପକ ଜଳ ପୂର୍ଣ୍ଣ ରହିଥାଏ ।''

ଇତ୍‌ଥଂ ଚୋପାର୍ଜିତୋ ଯତ୍ନାଦ୍‌ଗୁଣୋଽପି ବିଧୁରେ ବିଧୌ
ସଂପତ୍ତୟେ ନ ନ ପରଂ ଜାୟତେ ତୁ ବିପତ୍ତୟେ ।
ମୂଳେ ହ୍ୟବିକୃତେ ଦୈବେ ସିକ୍ତେ ପ୍ରଜ୍ଞାନବାରିଣା
ନୟାଳବାଳଃ ଫଳତି ପ୍ରାୟଃ ପୌରୁଷ ପାଦପଃ ।

କଥାଟି ଶୁଣାଇ ରାଜାଙ୍କ ସ୍କନ୍ଧ ଉପରେ ବସିଥିବା ବେତାଳ ମାର୍ଗ ମଧ୍ୟରେ ପ୍ରଶ୍ନ କଲା, 'ରାଜା, ବର୍ତ୍ତମାନ ତୁମେ କହ, ଯେଉଁ ସିଂହର ଆହାର ହୋଇ ଚାରିଭାଇ ମୃତ୍ୟୁବରଣ କଲେ ତାକୁ ଜୀବିତ କରିବା ଅପରାଧରେ କିଏ ଅପରାଧୀ ? ଜାଣିଶୁଣି ଚୁପ୍ ରହିଲେ ଅଭିଶାପ ପଡ଼ିବ ।'

ବେତାଳର କଥାଶୁଣି ରାଜା ତାଙ୍କ ମୌନତା ଭଙ୍ଗ ହେଲେ ବେତାଳ ଯେ ପୁଣି ତା' ନିଜ ସ୍ଥାନକୁ ଫେରିଯିବ, ସେ କଥା ଜାଣିସୁଦ୍ଧା ମୁହଁ ଖୋଲିବାପାଇଁ ବାଧ୍ୟ ହେଲେ । କହିଲେ, 'ଯିଏ ସିଂହଟିକୁ ଜୀବନଦାନ ଦେଲା, ସିଏ ହିଁ ପ୍ରକୃତ ଅପରାଧୀ । ଅସ୍ଥି ଖଣ୍ଡଟି କେଉଁ ପ୍ରାଣୀର ନଜାଣି ଅନ୍ୟମାନେ ସେଥିରେ ମାଂସ, ଚର୍ମ, ଲୋମ ସଂଯୁକ୍ତ କରି ତାର ପୂର୍ଣ୍ଣାଙ୍ଗ ଶରୀର ପ୍ରସ୍ତୁତ କରିଥିଲେ । ବାସ୍ତବିକତାର ଜ୍ଞାନ ନଥିବା ଯୋଗୁଁ ସେମାନେ ପାପରେ ଭାଗୀ ନୁହଁନ୍ତି । କିନ୍ତୁ ଜୀବଟି ସିଂହ ବୋଲି ଜାଣି ସୁଦ୍ଧା ନିଜ ଅର୍ଜିତ ବିଦ୍ୟାର ପ୍ରଭାବ ଦେଖାଇବାପାଇଁ ଯିଏ ତାକୁ ଜୀବନଦାନ ଦେଲା ସେ ହିଁ ବ୍ରହ୍ମହତ୍ୟା କରିଛି ।'

ରାଜାଙ୍କ କଥା ଶୁଣିବା ମାତ୍ରେ ମାୟାବୀ ବେତାଳ ରାଜାଙ୍କ ସ୍କନ୍ଧରୁ ବିଚ୍ୟୁତ ହୋଇ ବୃକ୍ଷଶାଖାକୁ ଫେରିଗଲା । ରାଜା ମଧ୍ୟ ପୂର୍ବ ପରି ତାକୁ ପୁଣି ଆଣିବାପାଇଁ ପଶ୍ଚାତ୍‌ଧାବନ କଲେ ।

# ତ୍ରିଂଶ ତରଙ୍ଗ

## ତ୍ରୟୋବିଂଶ ବେତାଳ : କ୍ରନ୍ଦନଶୀଳ ତପସ୍ୱୀ କଥା

ରାଜା ତ୍ରିବିକ୍ରମସେନ ପୁଣି ବେତାଳକୁ ଶିଂଶପା ବୃକ୍ଷରୁ ଆଣି ଅନ୍ଧକାର ଭିତରେ ମାର୍ଗ ଅତିକ୍ରମ କରୁଥାନ୍ତି । ବେତାଳ ତାଙ୍କୁ ଭୟଭୀତ କରିବାପାଇଁ ବିଭିନ୍ନ ବିକୃତ ରୂପ ଦେଖାଉଥାଏ । କିନ୍ତୁ ରାଜା ସେସବୁ ପ୍ରତି ଭ୍ରୂକ୍ଷେପ ନକରି ଚୁପ୍‌ଚାପ୍ ଚାଲିଥାନ୍ତି । କିଛିଦୂର ଯିବା ପରେ ବେତାଳ କହିବା ଆରମ୍ଭ କଲା, ''ରାଜା, ଯେଉଁ କାର୍ଯ୍ୟ କରିବା କଥା ନୁହେଁ ତା' ପ୍ରତି ତୁମର ଏତେ ଆଗ୍ରହ ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ତୁମକୁ ସେଥିରୁ ନିବୃତ୍ତ କରିବା ସମ୍ଭବ ନୁହେଁ । ତେଣୁ ପଥଶ୍ରମ ଦୂର କରିବାପାଇଁ ହିଁ କଥାଟିଏ କହୁଛି, ଶୁଣ—

ଇନ୍ଦ୍ରଙ୍କ ଅଳକାପୁରୀ ପରି କଳିଙ୍ଗରେ ଶୋଭାବତୀ ବୋଲି ଏକ ନଗରୀ ଥିଲା । ଏଥିରେ ଥିବା ପ୍ରଜାମାନଙ୍କ ଆଚରଣ ଯେପରି ପବିତ୍ର ଥିଲା, ସେହିପରି ରାଜା ମଧ୍ୟ ଥିଲେ ପ୍ରଜାବତ୍ସଳ ଓ ପବିତ୍ରକର୍ମା । ଐଶ୍ୱର୍ଯ୍ୟ ଓ ପରାକ୍ରମରେ ସେ ଯଦୁବଂଶୀ ପ୍ରଦ୍ୟୁମ୍ନଙ୍କ ପରି ପ୍ରସିଦ୍ଧି ଅର୍ଜନ କରିଥିଲେ । ତାଙ୍କ ନାମ ଥିଲା ପ୍ରଦ୍ୟୁମ୍ନ । ରାଜ୍ୟରେ କରାଘାତ କହିଲେ ମୃଦଙ୍ଗ ବାଦନ ବୁଝାଯାଉଥିଲା, କଳି କେବଳ ଯୁଗକୁ ବୁଝାଇବାପାଇଁ ବ୍ୟବହୃତ ହେଉଥିଲା, ତୀକ୍ଷ୍ଣତା କେବଳ ଜ୍ଞାନ ଅର୍ଜନପାଇଁ ବ୍ୟବହାର କରାଯାଉଥିଲା, ଅପକର୍ଷ ଧନୁରେ ଥିଲା କିନ୍ତୁ ଗୁଣରେ ନଥିଲା । ଏହି ନଗରୀର ଗୋଟିଏ ଅଂଶରେ ରାଜା ବ୍ରାହ୍ମଣମାନଙ୍କପାଇଁ ଏକ ସ୍ୱତନ୍ତ୍ର ବସତି ପ୍ରତିଷ୍ଠା କରିଥିଲେ । ବହୁ ବ୍ରାହ୍ମଣଙ୍କ ଯଜ୍ଞ ଧୂମରେ ଏହା ସୁବାସିତ ଥିବାଯୋଗୁଁ ସ୍ଥାନଟିର ନାମ ଯଜ୍ଞସ୍ଥଳ ରୂପେ ପରିଚିତ । ସେଠାରେ ଯଜ୍ଞସୋମ ନାମକ ଜଣେ ବେଦପାଠୀ ବ୍ରାହ୍ମଣ ରହୁଥିଲେ । ସେ ଯେପରି ବିତ୍ତଶାଳୀ ଥିଲେ ସେହିପରି ଯାଜ୍ଞିକ ଏବଂ ଅତିଥି ସତ୍କାର ନିପୁଣ ଥିଲେ । ଯୌବନ ବିତିଯିବା ପରେ ତାଙ୍କର ସହସ୍ର ମନୋରଥ ପୂର୍ଣ୍ଣକରି ଗୋଟିଏ ମାତ୍ର ପୁତ୍ର ସନ୍ତାନ ଜନ୍ମହେଲା ।

ବାଳକଟିର ଶରୀରରେ ଉତ୍ତମ ଲକ୍ଷଣ ସବୁ ଦେଖି ପିତା ବିଧିପୂର୍ବକ ତାର ନାମକରଣ କଲେ ଦେବସୋମ । ବାଳକଟି ପିତାଙ୍କ ନିକଟରେ ରହି ବୃଦ୍ଧିଲାଭ କରୁଥାଏ । ନିଜର ବିଦ୍ୟା, ବିନୟ ଆଦି ଗୁଣରେ ଯଜ୍ଞସ୍ଥଳର ବ୍ରାହ୍ମଣମାନେ ତା' ପ୍ରତି ଅତ୍ୟନ୍ତ ସ୍ନେହ ପ୍ରକାଶ କରୁଥାନ୍ତି । ଷୋଳ ବର୍ଷ ବୟସରେ ପଦାର୍ପଣ କରି ପୁତ୍ରଟି ଅକସ୍ମାତ୍ ଜ୍ୱର ରୋଗରେ ପ୍ରାଣତ୍ୟାଗ କଲା ।

ବାର୍ଦ୍ଧକ୍ୟରେ ପ୍ରାପ୍ତ ଏକମାତ୍ର ପୁତ୍ରର ମୃତ୍ୟୁରେ ପିତାମାତା ଶୋକବିହ୍ୱଳ ହୋଇଉଠିଲେ । ସେମାନେ ମୃତ ପିଣ୍ଡଟିକୁ ଆଲିଙ୍ଗନ କରି ବହୁ ସମୟ ପର୍ଯ୍ୟନ୍ତ ବସିରହିଥାନ୍ତି । ତାର ଦାହସଂସ୍କାର ବିଳମ୍ବିତ ହେଉଥିବାରୁ ଉପସ୍ଥିତ ବ୍ରାହ୍ମଣମାନଙ୍କ ମଧ୍ୟରୁ ଜଣେ ବୃଦ୍ଧ ବ୍ରାହ୍ମଣ ଯଜ୍ଞସୋମଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲେ, 'ବ୍ରହ୍ମନ୍, ଆପଣ ତ ଭୂତ ଓ ଭବିଷ୍ୟତ ଜାଣନ୍ତି । ଏହି ସଂସାର ଯେ ଜଳ ବୁଦ୍‌ବୁଦ ପରି କ୍ଷଣଭଙ୍ଗୁର୍, ତାହା କ'ଣ ଆପଣ ଜାଣନ୍ତି ନାହିଁ ? ଏହା ଗନ୍ଧର୍ବ ନଗରୀ ପରି ଅଚିରସ୍ଥାୟୀ । ଯେଉଁ ରାଜାମାନେ ସମଗ୍ର ପୃଥିବୀକୁ ସେନାବାହିନୀଦ୍ୱାରା ଆଚ୍ଛାଦନ କରିଥିଲେ, ରମଣୀୟ ପ୍ରାସାଦ ମଧ୍ୟରେ ରତ୍ନନିର୍ମିତ ପର୍ଯ୍ୟଙ୍କ ଉପରେ ଶୟନ କରୁଥିଲେ, ମଧୁର ସଙ୍ଗୀତ ଧ୍ୱନି ଯେଉଁମାନଙ୍କ କର୍ଣ୍ଣରେ ଅମୃତର ଧାରା ବର୍ଷା କରୁଥିଲା, ଯେଉଁମାନଙ୍କ କମନୀୟ ଶରୀର ଚନ୍ଦନ ଚର୍ଚ୍ଚିତ ଥିଲା ଏବଂ ଯେଉଁମାନେ ନିଜକୁ ଅମର ମନେକରି ବହୁ ରମଣୀୟା ରମଣୀମାନଙ୍କ ମଧ୍ୟରେ ଆନନ୍ଦ ଉପଭୋଗ କରୁଥିଲେ, ସେମାନଙ୍କୁ ମଧ୍ୟ ଦିନେ କାଳ ଗ୍ରାସ କରିନେଲା । ସେମାନେ ମଧ୍ୟ ଏକାକୀ ପ୍ରେତ ଓ ଶୃଗାଳମାନଙ୍କର ବିକଟ ଚିତ୍କାରରେ ଭୀତି-ଉତ୍ପାଦନ କରୁଥିବା ଶ୍ମଶାନର ଆଶ୍ରୟ ନେଲେ । ଚିତା ଉପରେ ଶାୟିତ ସେମାନଙ୍କ ଶରୀରକୁ ଅଗ୍ନି ଦଗ୍ଧ କଲା । ଏହିପରି ରାଜାମାନଙ୍କୁ ମୃତ୍ୟୁମୁଖରୁ କେହି ଯଦି ବଞ୍ଚାଇ ପାରିଲେ ନାହିଁ, ତେବେ ଅନ୍ୟମାନଙ୍କ କଥା ବା କ'ଣ କୁହାଯିବ ? ତେଣୁ ତୁମେ ଏହି ଶବଟିକୁ ହୃଦୟରେ ଚାପି ଧରି କ'ଣ ବା କରିବ ?'

ବୃଦ୍ଧଙ୍କ ପ୍ରତିବୋଧ ବାକ୍ୟରେ ବ୍ରାହ୍ମଣ କୌଣସିମତେ ପୁତ୍ରର ଶବଟିକୁ ତଳେ ରଖି ସ୍ନାନ କରାଇଲେ । ତାକୁ ବିଭିନ୍ନ ବେଶଭୂଷାରେ ଭୂଷିତ କରି ଗୋଟିଏ ସୁସଜ୍ଜିତ ପାଲିଙ୍କି ଉପରେ ବସାଇଲେ । ବ୍ରାହ୍ମଣପତ୍ନୀ ବିକଳ ଭାବେ ପ୍ରଳାପ କରୁଥାନ୍ତି । ବନ୍ଧୁ ସ୍ୱଜନମାନେ ବାଳକର ଶବଟିକୁ ପିତାମାତାଙ୍କ ହସ୍ତରୁ ଟାଣି ଶ୍ମଶାନକୁ ନେଇଗଲେ ।

ଶ୍ମଶାନରେ ଜଣେ ବୃଦ୍ଧ ତପସ୍ୱୀ ରହୁଥାନ୍ତି । ସେ ଜଣେ ପାଶୁପତ ଯୋଗୀ । ବାର୍ଦ୍ଧକ୍ୟ ଓ କଠୋର ତପସ୍ୟା ଫଳରେ ତାଙ୍କ ଶରୀର ଅତ୍ୟନ୍ତ କ୍ଷୀଣ ହୋଇପଡ଼ିଥାଏ ।

ମନେହେଉଥିଲା, କାଳେ ଭାଙ୍ଗି ପଡ଼ିବ ବୋଲି ଶିରାପ୍ରଶିରାଗୁଡ଼ିକ ତାକୁ ବାନ୍ଧି ରଖିଥିଲେ । ତାଙ୍କ ସମଗ୍ର ଶରୀର ଭସ୍ମ ବିଲେପିତ ଶ୍ୱେତ ଲୋମରାଶିଦ୍ୱାରା ଆଚ୍ଛାଦିତ ଥିଲା । ପିଙ୍ଗଳ ଜଟାଜୁଟ ବିଜୁଳିର ଆଭା ପ୍ରକାଶ କରୁଥିଲା । ସେ ଦ୍ୱିତୀୟ ଶିବଙ୍କ ପରି ଦେଖାଯାଉଥିଲେ । ଆଶ୍ରମଟିଏ ସ୍ଥାପନ କରି ସେ ସେଠାରେ ରହୁଥାନ୍ତି । ତାଙ୍କ ନାମ ଥିଲା ବାମଶିବ ।

ତପସ୍ୱୀଙ୍କ ସହିତ ସେହି ଆଶ୍ରମ ମଧ୍ୟରେ ଜଣେ ଶିଷ୍ୟ ମଧ୍ୟ ରହୁଥାଏ । କିଛି ସମୟ ପୂର୍ବରୁ ବାମଶିବ ତାକୁ ଏଣୁତେଣୁ କହି ଗାଳି ଦେଇଥିବାରୁ ସେ ରୁଷ୍ଟ ଥିଲା । ସେ ଯେପରି ମୂର୍ଖ, ସେହିପରି ଦୁଷ୍ଟ ମଧ୍ୟ । ଧ୍ୟାନ, ଯୋଗ ଇତ୍ୟାଦିରେ କିଛି ବ୍ୟୁତ୍ପତ୍ତି ଲାଭ କରିଥିବାଯୋଗୁଁ ତା' ମନରେ ଅହଙ୍କାର ଆସିଯାଇଥାଏ । ଭିକ୍ଷାନ୍ନଦ୍ୱାରା ସେ ତା'ର ଜୀବନ ନିର୍ବାହ କରୁଥିଲା । ଦୂରରେ ବିଳାପ ଧ୍ୱନି ଓ କୋଳାହଳ ଶୁଣାଯିବାରୁ ଗୁରୁ ତାକୁ ଶୀଘ୍ର ଯାଇ ପୂର୍ବରୁ କେବେ ଶୁଣାଯାଇନଥିବା ଏପରି ତୁମୁଳ କୋଳାହଳର କାରଣ ଜାଣିଆସିବାପାଇଁ ନିର୍ଦ୍ଦେଶ ଦେଲେ । ଶିଷ୍ୟଟି ତାଙ୍କ ନିର୍ଦ୍ଦେଶକୁ ଅବଜ୍ଞା କରି କହିଲା, 'ମୁଁ ଯିବି ନାହିଁ, ତୁମେ ନିଜେ ଯାଇ ବୁଝି ଆସ । ମୋର ଭିକ୍ଷା ବେଳ ଗଡ଼ିଯାଉଛି ।' ଗୁରୁ ବିରକ୍ତିରେ କହିଲେ, 'ମୂର୍ଖ, ତୋ ପରି ପେଟୁର ଜୀବନ ଧିକ୍ । ଅଧାଦିନ ଗଡ଼ିଯିବା ପରେ ତୋର ଭିକ୍ଷା ବେଳା ଆରମ୍ଭ ହେଉଛି, ନୁହେଁ ?' ଏଥିରେ ଶିଷ୍ୟଟି କ୍ରୋଧାନ୍ୱିତ ହୋଇଉଠିଲା । ସେ ତ ପୂର୍ବରୁ ଦୁଷ୍ଟ । ଗୁରୁଙ୍କ କଥା ଶୁଣି ସେ କ୍ରୁଦ୍ଧ କଣ୍ଠରେ କହିଲା, 'ଆରେ ବୁଢ଼ା, ତୋତେ ଓ ତୋର ଗୁରୁପଣିଆକୁ ଧିକ୍ । ମୁଁ ତୋର ଶିଷ୍ୟ ନୁହେଁ କି ତୁ ମୋର ଗୁରୁ ନୋହୁଁ । ମୁଁ ଏବେ ଏଠାରୁ ଯାଉଛି । ତୁ ତୋର କମଣ୍ଡଳୁ ସମ୍ଭାଳେ ।' ଏହା କହି ସେ ଦଣ୍ଡ କମଣ୍ଡଳକୁ ତପସ୍ୱୀଙ୍କ ଆଡ଼କୁ ଫୋପାଡ଼ି ଦେଇ ସେଠାରୁ ଚାଲିଗଲା ।

ଶିଷ୍ୟର ଏ ପ୍ରକାର ବ୍ୟବହାର ଦେଖି ବାମଶିବ କେବଳ ହସିଦେଲେ । ସେ ଆଶ୍ରମରୁ ବାହାରି ବ୍ରାହ୍ମଣକୁମାରର ଶବକୁ ଦାହ କରିବାପାଇଁ ରଖାଯାଇଥିବା ସ୍ଥାନରେ ଯାଇ ପହଞ୍ଚିଲେ । ଯୌବନର ଦ୍ୱାରଦେଶରେ ପଦାର୍ପଣ କରୁଥିବା ବାଳକଟିର ଶବକୁ ଧରି ସ୍ୱଜନମାନେ ବିଳାପ କରୁଥାନ୍ତି । ତପସ୍ୱୀ ନିଜର କ୍ଷୀଣ ଶରୀର ପରିତ୍ୟାଗ କରି ତା' ମଧ୍ୟରେ ପ୍ରବେଶ କରିବାପାଇଁ ନିଶ୍ଚୟ କଲେ । ସେ ଶୀଘ୍ର ଏକ ନିର୍ଜନ ସ୍ଥାନକୁ ଯାଇ ପ୍ରଥମେ ନିଜର ଦୁର୍ବଳ ଶରୀର ଉପରେ ହସ୍ତ ସଞ୍ଚାଳନ ପୂର୍ବକ ମନଖୋଲି ବିଳାପ କଲେ ଏବଂ ପରେ ସେଠାରେ ବିଭିନ୍ନ ଅଙ୍ଗଭଙ୍ଗୀ କରି ପ୍ରଚଣ୍ଡ ନୃତ୍ୟ କରିବାକୁ ଲାଗିଲେ । ମୁହୂର୍ତ୍ତକ ମଧ୍ୟରେ ଯୌବନ ଲାଭ ଲାଳସାରେ ତାଙ୍କ ପ୍ରାଣଶକ୍ତି ନିଜ ଶରୀର ପରିତ୍ୟାଗ

ପୂର୍ବକ ସେହି ବ୍ରାହ୍ମଣ କୁମାରର ଶରୀରରେ ପ୍ରବେଶ କଲା । ତପସ୍ୱୀ ମୃତପିଣ୍ଡର ଶରୀରରେ ପ୍ରବେଶ କରିବା ମାତ୍ରେ ଦେବସୋମ ହାଇମାରି ଅଳସ ଭାଙ୍ଗିବା ଭଙ୍ଗୀରେ ଚିତା ଉପରେ ଉଠି ବସିଲା । ଉପସ୍ଥିତ ଜନତା ଆଶ୍ଚର୍ଯ୍ୟାନ୍ୱିତ ହୋଇ ଶ୍ମଶାନଭୂମିକୁ ଆନନ୍ଦ କୋଳାହଳରେ ମୁଖରିତ କଲେ ।

ବ୍ରାହ୍ମଣପୁତ୍ରର ଶରୀରରେ ପ୍ରବେଶ କରିଥିଲେ ସୁଦ୍ଧା ବାମଶିବ ନିଜ ଯୋଗ ସିଦ୍ଧି ବଳରେ ପୂର୍ବ ଶରୀରର ଅନୁଭୂତିକୁ ବିସ୍ମୃତ ହୋଇନଥାନ୍ତି । ଯୁବକର ଶରୀର ପ୍ରାପ୍ତ ହେଲେ ମଧ୍ୟ ତପସ୍ୱୀ ଜୀବନ ତ୍ୟାଗ କରିବାପାଇଁ ଚାହୁଁନଥିଲେ । ଏଣୁ ଉପସ୍ଥିତ ସମସ୍ତଙ୍କୁ ଛଳନା କରି କହିଲେ, ''ମୁଁ ପ୍ରାଣତ୍ୟାଗ କରିବା ପରେ ପରଲୋକରେ ଯାଇ ପହଞ୍ଚିଲି । ସେଠାରେ ଭଗବାନ୍ ଶଙ୍କରଙ୍କ ସହିତ ମୋର ସାକ୍ଷାତ ହେଲା । ମୋର ସ୍ତୁତିରେ ସନ୍ତୁଷ୍ଟ ହୋଇ ସେ ମୋତେ ଜୀବନ ଦାନ ଦେଲେ ଏବଂ ପାଶୁପତ ବ୍ରତ ଆଚରଣ କରିବାପାଇଁ ନିର୍ଦ୍ଦେଶ ଦେଲେ । ବର୍ତ୍ତମାନ ମୋତେ କୌଣସି ନିର୍ଜନ ସ୍ଥାନକୁ ଯାଇ ଏହି ବ୍ରତ ଅନୁଷ୍ଠାନ କରିବାକୁ ପଡ଼ିବ । ଶିବଙ୍କ ନିର୍ଦ୍ଦେଶ ଅନ୍ୟଥା କଲେ ପୁଣି ମୁଁ ମୃତ୍ୟୁମୁଖରେ ପଡ଼ିବି । ତେଣୁ ଆପଣମାନେ ଏଠାରୁ ଫେରିଯାନ୍ତୁ । ମୁଁ ମଧ୍ୟ ଅନ୍ୟତ୍ର ଯାଉଛି ।'

ତପସ୍ୱୀଙ୍କ ଚିତ୍ତବୃତ୍ତି ତପସ୍ୟା ପ୍ରତି ଉନ୍ମୁଖ ଥିବା ଯୋଗୁଁ ସେ ସମସ୍ତଙ୍କୁ ବିଦାୟ ଦେଇ ଅନ୍ୟତ୍ର ଯିବାପାଇଁ ଉଦ୍ୟତ ହେଲେ । ପ୍ରଥମେ ସେ ନିଜ ପୂର୍ବ ଶରୀରଟିକୁ ଗୋଟିଏ ଗର୍ତ୍ତ ମଧ୍ୟରେ ସମାଧିସ୍ଥ କରି ନିଜର ଯୁବଶରୀରରେ ପୁନଶ୍ଚ ପାଶୁପତ ବ୍ରତ ଆଚରଣ କଲେ ।''

କଥାଟି ଶେଷ କରି ବେତାଳ ତା'ର ସ୍ୱାଭାବିକ ରୀତିରେ ରାଜା ତ୍ରିବିକ୍ରମସେନଙ୍କୁ ପ୍ରଶ୍ନ କଲା, 'ରାଜା, ବର୍ତ୍ତମାନ୍ କହ, ଅନ୍ୟ ଶରୀରରେ ପ୍ରବେଶ କରିବା ପୂର୍ବରୁ ତପସ୍ୱୀ ପ୍ରଥମେ କାହିଁକି ବିଳାପ କଲା ? ଏବଂ ପରେ କାହିଁକି ନାଚିଉଠିଲା ? ଏହାର କାରଣ ଜାଣିବାପାଇଁ ମୋର ବଡ଼ କୌତୂହଳ ଜାତ ହେଉଛି ।'

ବେତାଳର କୌତୂହଳ ନିବାରଣପାଇଁ ଏବଂ ଅଭିଶାପ ନିମିତ୍ତ ଆଶଙ୍କିତ ହୋଇ ରାଜା ତ୍ରିବିକ୍ରମସେନ ମୌନିବ୍ରତଭଙ୍ଗ କଲେ । କହିଲେ, ''କାନ୍ଦିବା ଓ ନାଚିବାରେ ତପସ୍ୱୀର ଯେଉଁ ଅଭିପ୍ରାୟ ଥିଲା, ତାହା ଶୁଣ । ସେହି ବୃଦ୍ଧ ତପସ୍ୱୀ ଭାବିଲା ଯେ ଏହି ବାର୍ଦ୍ଧକ୍ୟଗ୍ରସ୍ତ ଶରୀରକୁ ନେଇ ସେ ଦୀର୍ଘଦିନ ଧରି ସିଦ୍ଧିପ୍ରାପ୍ତ ପାଇଁ ସାଧନ କରିଆସୁଛି । ଯେଉଁ ଶରୀରକୁ ଶୈଶବରେ ତା'ର ପିତାମାତା ସ୍ନେହ ଶ୍ରଦ୍ଧା ଦେଇ ଲାଳନପାଳନ କରିଥିଲେ ତାକୁ ତ୍ୟାଗ କରୁଥିବା ଯୋଗୁଁ ତା' ମନରେ ଅଶେଷ ଦୁଃଖ ଜାତ ହେଉଥିଲା । ସେଥିପାଇଁ

ସେ ପ୍ରଥମେ କାନ୍ଦିବାକୁ ଲାଗିଲା; ଶରୀରର ମୋହ ତ୍ୟାଗ କରିବା ଅତ୍ୟନ୍ତ କଠିନ । ପୁଣି ନୂତନ ଯୁବ ଶରୀରରେ ପ୍ରବେଶ କରି ସେ ଅଧିକ ନିଷ୍ଠାର ସହିତ ସାଧନା କରିପାରିବ ବୋଲି ଆନନ୍ଦରେ ନାଚିଉଠିଲା । ଯୌବନର କାମନା କିଏ ବା ନକରେ ?'

ଶବ ଶରୀରରେ ରହିଥିବା ବେତାଳ ରାଜା ତ୍ରିବିକ୍ରମସେନଙ୍କ ଉତ୍ତର ଶୁଣି ପୁଣି ଶିଂଶପା ବୃକ୍ଷ ଉପରକୁ ଚାଲିଗଲା । ରାଜା ଅଧିକ ଉତ୍ସାହରେ ତା'ର ଅନୁଗମନ କଲେ । ଧୀର ବୁଦ୍ଧି ବ୍ୟକ୍ତିମାନଙ୍କର ସ୍ଥୈର୍ଯ୍ୟ କୁଳାଚଳ ପରି କଳ୍ପାନ୍ତ ସ୍ଥାୟୀ ।

**କଳ୍ପାନ୍ତେଽପ୍ୟଚଳଂ କୁଳାଦ୍ରିବିଜୟି ସ୍ଥୈର୍ଯ୍ୟଂ ହି ଧୀରାତ୍ମନାମ୍ ।**

## ଏକତ୍ରିଂଶ ତରଙ୍ଗ

### ଚତୁର୍ବିଂଶ ବେତାଳ : ପାଦଚିହ୍ନର କରାମତି କଥା

ଚତୁର୍ଦ୍ଦଶୀ ରତ୍ରିଟି ଏକ ରାକ୍ଷସୀ ପରି ଭୟଙ୍କର ଥିଲା । ଅନ୍ଧକାରରେ ସେ ଥିଲା ଘନକୃଷ୍ଣ । ଚିତାଗ୍ନିଗୁଡ଼ିକ ତାର ଜ୍ୱଳନ୍ତ ଚକ୍ଷୁ ପରି ମନେହେଉଥିଲା । ସେହି ଭୟଙ୍କର ରାତ୍ରିରେ ବୀର ତ୍ରିବିକ୍ରମସେନ ଅନ୍ୟ କୌଣସି କଥା ଚିନ୍ତା ନକରି ପୁଣି ଯାଇ ଶିଂଶପା ବୃକ୍ଷ ମୂଳରେ ଉପସ୍ଥିତ ହେଲେ । ବେତାଳଦ୍ୱାରା ଆବିଷ୍ଟ ଶବଟିକୁ ସ୍କନ୍ଧରେ ଧାରଣ କରି ସେ ମାର୍ଗ ଅତିକ୍ରମ କରୁଥିବା ବେଳେ ବେତାଳ ପୂର୍ବପରି କହିଲା, ''ରାଜନ୍, ବାରମ୍ବାର ଏପରି ଯିବାଆସିବାରେ ମୁଁ ଉଦ୍‌ବିଗ୍ନ ହୋଇଉଠିଲିଣି । କିନ୍ତୁ ତୁମର ତ ଟିକିଏ ବୋଲି ବିରକ୍ତି ଦେଖାଯାଉନାହିଁ । ବର୍ତ୍ତମାନ ମୁଁ ଏକ ମହାପ୍ରଶ୍ନ ପଚାରୁଛି, ଶୁଣ—

ଦକ୍ଷିଣା ପଥରେ ଧର୍ମ ନାମରେ ଜଣେ ରାଜା ଥିଲେ । ବହୁ ବନ୍ଧୁ ସ୍ୱଜନ ମଧ୍ୟରେ ରାଜା ଧର୍ମାଚରଣପୂର୍ବକ ରାଜ୍ୟ ଶାସନ କରୁଥାନ୍ତି । ତାଙ୍କ ପତ୍ନୀ ଚନ୍ଦ୍ରାବତୀ ମାଳବ ଦେଶର କନ୍ୟା । ସେ ଉଚ୍ଚକୁଳସମ୍ଭୂତା ଏବଂ ଅତ୍ୟନ୍ତ ଗୁଣବତୀ । ତାଙ୍କ ଗର୍ଭରୁ ରାଜାଙ୍କର ଗୋଟିଏ କନ୍ୟା ଜନ୍ମଗ୍ରହଣ କରିଥିଲା । ରାଜା କନ୍ୟାଟିର ନାମ ରଖିଥିଲେ ଲାବଣ୍ୟବତୀ । ନାମ ଅନୁଯାୟୀ କନ୍ୟାଟି ମଧ୍ୟ ଥିଲା ଅତ୍ୟନ୍ତ ରୂପବତୀ ।

କନ୍ୟାଟି ବିବାହଯୋଗ୍ୟା ହେବାରୁ ଗୋତ୍ରଜମାନେ ଏକତ୍ର ମନ୍ତ୍ରଣା କରି ରାଜାଙ୍କୁ ରାଜ୍ୟଚ୍ୟୁତ କରିଦେଲେ । ରାଜା ସେମାନଙ୍କ ଭୟରେ ପତ୍ନୀ ଓ କନ୍ୟା ସହିତ ରାତ୍ରିର ଅନ୍ଧକାର ମଧ୍ୟରେ ରାଜ୍ୟ ତ୍ୟାଗ କଲେ । ଭବିଷ୍ୟତ ନିମିତ୍ତ ଯଥେଷ୍ଟ ଧନ ସମ୍ପତ୍ତି ସହ ସେ ପ୍ରଥମେ ନିଜ ଶ୍ୱଶୁରାଳୟ ମାଳବ ପ୍ରତି ଅଗ୍ରସର ହେଉଥାନ୍ତି । ରାତ୍ରି ଶେଷ ବେଳକୁ ସେମାନେ ଯାଇ ବିନ୍ଧ୍ୟ ପର୍ବତ ନିକଟସ୍ଥ ଏକ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ ।

ରାତ୍ରି ପ୍ରଭାତ ହେଲା । ପୂର୍ବଦିଗରୁ ସୂର୍ଯ୍ୟ ଧୀରେ ଧୀରେ ଉଠି ଆସିଲେ । ତାଙ୍କର ପ୍ରଥମ କିରଣାବଳୀ ରାଜାଙ୍କୁ ଯେପରି ଆଗକୁ ଯିବାପାଇଁ ବାରଣ କରୁଥିଲେ । ସେଥିରୁ ବନ ମଧ୍ୟରେ ଥିବା ଚୋର ତସ୍କରଙ୍କ ଉପଦ୍ରବର ସୂଚନା ମିଳୁଥିଲା । କିନ୍ତୁ ରାଜା ପତ୍ନୀ ଓ କନ୍ୟା ସହ ପଦବ୍ରଜରେ ବନ ଅତିକ୍ରମ କରୁଥାନ୍ତି । ସେମାନଙ୍କ ପାଦସବୁ କୁଶାଗ୍ର ଓ କଣ୍ଟକରେ କ୍ଷତବିକ୍ଷତ ହୋଇଉଠୁଥାଏ । ଏହିପରି କିଛିଦୂର ଯିବାପରେ ସେମାନେ ଏକ ଶବରପଲ୍ଲୀରେ ଯାଇ ଉପସ୍ଥିତ ହେଲେ । ଗ୍ରାମଟି ଦସ୍ୟୁ ଓ ନରଘାତକମାନଙ୍କଦ୍ୱାରା ପରିପୂର୍ଣ୍ଣ ଥିଲା । ଧର୍ମରହିତ ଥିବା ଯୋଗୁଁ ଏହାକୁ ଯମପୁରୀ କହିଲେ ଅଯଥାର୍ଥ ହେବ ନାହିଁ । ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ପରିହିତ ଆଗନ୍ତୁକମାନଙ୍କୁ ଦୂରରୁ ଦେଖି ଲୁଣ୍ଠନ କରିବା ଆଶାରେ ସେମାନେ ବିଭିନ୍ନ ଅସ୍ତ୍ରଶସ୍ତ୍ର ଧରି ଦୌଡ଼ି ଆସିଲେ । ରାଜା ଧର୍ମ ଏମାନଙ୍କୁ ଦେଖି ପତ୍ନୀଙ୍କୁ କହିଲେ, 'ଏମାନେ ପ୍ରଥମେ ତୁମ ଉପରେ ହିଁ ଆକ୍ରମଣ କରିବେ । ତେଣୁ ତୁମେ ଦୁହେଁ ଅରଣ୍ୟ ମଧ୍ୟକୁ ଚାଲିଯାଅ ।' ରାଜାଙ୍କ ନିର୍ଦ୍ଦେଶରେ ସେମାନେ ଅରଣ୍ୟ ମଧ୍ୟରେ ଦୂରକୁ ଚାଲିଗଲେ ।

ରାଜା ନିଜ ତରବାରିଦ୍ୱାରା ବହୁ ଦସ୍ୟୁଙ୍କୁ ହତ୍ୟା କଲେ ସୁଦ୍ଧା ଶେଷରେ ସେମାନଙ୍କ ଶରବୃଷ୍ଟିରେ ଆହାତ ହୋଇପଡ଼ିଲେ । ସେମାନଙ୍କ ମିଳିତ ଆକ୍ରମଣରେ ରାଜାଙ୍କର ମୃତ୍ୟୁ ହେଲା । ତାଙ୍କ ଶରୀରରେ ଥିବା ବସ୍ତ୍ର ଓ ଆଭୂଷଣ ଧରି ଭୀଲ୍‌ମାନେ ନିଜ ପଲ୍ଲୀକୁ ଫେରିଗଲେ ।

ଦୂରରେ ନିଜକୁ ଗୁପ୍ତରଖି ରାଣୀ ଓ ରାଜକନ୍ୟା ଏସବୁ ଦୃଶ୍ୟ ଦେଖୁଥାନ୍ତି । ରାଜାଙ୍କ ମୃତ୍ୟୁ ସେମାନଙ୍କୁ ଅନାଥ କରିଦେଲା । ସେମାନେ ଶୋକ ଓ ଭୟବିହ୍ୱଳ ହୋଇ ସେଠାରୁ ବନ ମଧ୍ୟକୁ ପଳାୟନ କଲେ । ମଧ୍ୟାହ୍ନର ଉତ୍ତପ୍ତ ସୂର୍ଯ୍ୟ କିରଣରେ ସେମାନଙ୍କ ଶରୀର ଜଳୁଥାଏ । କିଛିଦୂର ଯିବା ପରେ ସେମାନେଏକ ପଦ୍ମପୁଷ୍ପପୂର୍ଣ୍ଣ ସରୋବର ନିକଟରେ ଆସି ପହଞ୍ଚିଲେ । ରାଣୀ ଚନ୍ଦ୍ରାବତୀ କନ୍ୟା ଲାବଣ୍ୟବତୀ ସହିତ ନିକଟସ୍ଥ ଏକ ଅଶୋକ ବୃକ୍ଷ ଛାୟାରେ ଆଶ୍ରୟ ନେଇ ଦୁଃଖ ଓ ଶୋକରେ କରୁଣ ବିଳାପ କରୁଥାନ୍ତି । ଏ ସମୟରେ ନିକଟବର୍ତ୍ତୀ ନଗରର ରାଜା ଶିକାର ଉଦ୍ଦେଶ୍ୟରେ ନିଜ ପୁତ୍ର ସହିତ ସେଠାରେ ଆସି ପହଞ୍ଚିଲେ ।

ରାଜାଙ୍କ ନାମ ଥିଲା ଚନ୍ଦ୍ରସିଂହ ଏବଂ ତାଙ୍କ ପୁତ୍ର ଥିଲେ ସିଂହପରାକ୍ରମ । ସରୋବର ତଟରେ ମାତା ଓ କନ୍ୟାଙ୍କ ପଦଚିହ୍ନ ଦେଖି ଚନ୍ଦ୍ରସିଂହ ପୁତ୍ରକୁ କହିଲେ,

'ଆସ ଏହି ଶୁଭଲକ୍ଷଣ ଯୁକ୍ତ ପଦଚିହ୍ନ ଗୁଡ଼ିକୁ ଅନୁସରଣ କରି ଆମେ ଆଗକୁ ଯିବା । ଏହି ସ୍ତ୍ରୀମାନେ ଯଦି ଆମକୁ ମିଳିଯାନ୍ତି ତେବେ ଏଥିରୁ ଜଣକୁ ତୁମେ ବିବାହ କରିବ ।' ପିତାଙ୍କ କଥା ଶୁଣି ପୁତ୍ର ସିଂହପରାକ୍ରମ କହିଲେ, 'ଏହି ଛୋଟ ଛୋଟ ପାଦ ଚିହ୍ନ ଥିବା ସ୍ତ୍ରୀଟି ମୋର ବୋଲି ମନେହେଉଛି । ତାର ବୟସ ନିଶ୍ଚୟ କମ୍ ହୋଇଥିବ । ତେଣୁ ସେ ମୋର ଯୋଗ୍ୟା । ଆଉ ଏହି ବଡ଼ବଡ଼ ପାଦଚିହ୍ନ ଥିବା ସ୍ତ୍ରୀଟି ନିଶ୍ଚୟ ଅଧିକ ବୟସର ହୋଇଥିବେ । ସେ ଆପଣଙ୍କପାଇଁ ।'

ପୁତ୍ରର କଥାଶୁଣି ଚନ୍ଦ୍ରସିଂହ କହିଲେ, 'ତୁମେ କ'ଣ କହୁଛ ! ତୁମ ମା ମରିବା ତ ଏହି ଅଳ୍ପ କିଛିଦିନ ହିଁ ହୋଇଚି । ତା' ପରି ଜଣେ ସ୍ତ୍ରୀକୁ ଭୁଲି ମୁଁ କିପରି ଅନ୍ୟ ସ୍ତ୍ରୀ କଥା ଚିନ୍ତା କରିବି ?' ପିତାଙ୍କ କଥା ପୁତ୍ରର ମନକୁ ଗଲାନାହିଁ । ସେ ପିତାଙ୍କୁ ଏକ ପ୍ରକାର ବାଧ କରି କହିଲା, 'ଆପଣ ଆଉ ସେକଥା ଉଠାନ୍ତୁ ନାହିଁ । ବିପତ୍ନିକ ଗୃହସ୍ୱାମୀର ଗୃହ ଏକାନ୍ତ ଶୂନ୍ୟ । ଆପଣ ମୂଳଦେବ କହିଥିବା କଥା କ'ଣ ଶୁଣିନାହାଁନ୍ତି ? –ଯେଉଁ ଗୃହର ଦ୍ୱାରଦେଶରେ ପୃଥୁଳସ୍ତନୀ ଏବଂ ଘନଜଘନା ପତ୍ନୀ ସ୍ୱାମୀକୁ ଅପେକ୍ଷା କରି ରହେନାହିଁ ସେହି ବନ୍ଧନରହିତ କାରାଗାରରୂପକ ଗୃହ ମଧ୍ୟରେ ନିପଟ ମୂର୍ଖ ବ୍ୟତୀତ ଆଉ କିଏ ବା ପ୍ରବେଶ କରିବ ?'

**ଯତ୍ରଘନସ୍ତନଜଘନା ନାସ୍ତେ ମାର୍ଗାବିଲୋକିନୀ କାନ୍ତା,**
**ଅଜଡ଼ଃ କସ୍ତଦନିଗଡ଼ଂ ପ୍ରବିଶତି ଗୃହସଂଜ୍ଞକଂ ଦୁର୍ଗମ୍ ।**

ତେଣୁ ମୁଁ ଯେଉଁ କନ୍ୟାକୁ ପସନ୍ଦ କରିଛି, ତା' ବ୍ୟତୀତ ଆପଣ ଯଦି ଅନ୍ୟ ସ୍ତ୍ରୀଟିକୁ ଗ୍ରହଣ ନ କରନ୍ତି ତେବେ ଆପଣଙ୍କୁ ମୋ ରାଣ ।'

ପୁତ୍ର କଥାରେ ଚନ୍ଦ୍ରସିଂହଙ୍କୁ ବାଧ ହୋଇ ଶେଷରେ ହିଁ ଭରିବାକୁ ପଡ଼ିଲା । ସେମାନେ ପଦଚିହ୍ନ ଦେଖି ଦେଖି ଆଗକୁ ଚାଲିଲେ ।

ପୂର୍ବୋକ୍ତ ସରୋବର ନିକଟରେ ଚନ୍ଦ୍ରାବତୀ ବୃକ୍ଷ ଛାୟାରେ ବସିଥିବା ଦେଖାଗଲା । ବହୁମୂଲ୍ୟ ମୁକ୍ତାହାରରେ ତାଙ୍କ ଶ୍ୟାମଳ ଅଙ୍ଗ ନକ୍ଷତ୍ରମାଳିନୀ ରଜନୀ ପରି ଶୋଭା ପାଉଥିଲା । ଲାବଣ୍ୟବତୀ ନିଜ ରୂପଲାବଣ୍ୟରେ ଚନ୍ଦ୍ରମାର ଜ୍ୟୋତ୍ସ୍ନା ପରି ସେହି ରାତ୍ରିକି ଆଲୋକିତ କରୁଥିଲେ । ପ୍ରଚଣ୍ଡ ମଧ୍ୟାହ୍ନରେ ରାତ୍ରିର ସୌନ୍ଦର୍ଯ୍ୟ ଅନୁଭବ କରି ଉଭୟ ପିତା ଓ ପୁତ୍ର ଚକିତ ହୋଇପଡ଼ିଲେ । ସେମାନେ ଧୀରେଧୀରେ ତାଙ୍କ ନିକଟକୁ ଅଗ୍ରସର ହେଲେ ।

ପୂର୍ବରୁ ତସ୍କରମାନଙ୍କଦ୍ୱାରା ପତିଙ୍କ ମୃତ୍ୟୁ ଘଟିଥିବାରୁ ଚନ୍ଦ୍ରାବତୀ ଏମାନଙ୍କୁ ଦେଖିବାମାତ୍ରେ ତ୍ରସ୍ତ ଭାବରେ ଉଠି ଠିଆହେଲେ । କିନ୍ତୁ ଲାବଣ୍ୟବତୀ ଆଶ୍ୱସ୍ତ କରି କହିଲେ, 'ମା, ତୁମେ ଏପରି ବ୍ୟସ୍ତ ହୁଅନାହିଁ । ଏମାନେ ଚୋର ନୁହଁନ୍ତି । ଉଭୟଙ୍କ ସୌମ୍ୟ ଆକୃତି, ବେଶଭୂଷା ଓ ଅସ୍ତ୍ରଶସ୍ତ୍ର ଦେଖିଲେ ମନେହେଉଛି ଏମାନେ ମୃଗୟାପାଇଁ ଏଠାରେ ଆସି ପହଞ୍ଚିଛନ୍ତି ।' କିନ୍ତୁ କନ୍ୟାର କଥାରେ ରାଣୀଙ୍କର ପ୍ରତ୍ୟୟ ଜାତ ହେଲା ନାହିଁ । ଏ ସମୟରେ ଚନ୍ଦ୍ରସିଂହ ଅଶ୍ୱପୃଷ୍ଠରୁ ଅବତରଣ କରି ନମ୍ର ସ୍ୱରରେ କହିଲେ, 'ଆପଣ ଆଶଙ୍କିତ ହେବାର କୌଣସି କାରଣ ନାହିଁ । ଅନୁରାଗବଶତଃ ଆମେ ଆପଣମାନଙ୍କୁ ଦେଖିବାପାଇଁ ଆସିଛୁ । ତେଣୁ ଆପଣ ଆମମାନଙ୍କୁ ବିଶ୍ୱାସ କରି ନିଜର ପରିଚୟ ଦିଅନ୍ତୁ । ଏହି ବନ ମଧ୍ୟରେ ଭ୍ରମଣ କରୁଥିବା ଆପଣମାନଙ୍କୁ ଦେଖିଲେ ମନେ ହେଉଛି ଶିବଙ୍କ ତୃତୀୟ ନେତ୍ର ଜ୍ୱାଳାରେ କାମଦେବ ଦଗ୍ଧ ହେବାପରେ ଆପଣମାନେ ତାଙ୍କ ବିରହ ଦୁଃଖରେ ସନ୍ତପ୍ତ ରତି ଓ ପ୍ରୀତି । ଆପଣ ଉଭୟଙ୍କ ଏହି କୋମଳ ତନୁଶ୍ରୀ କୌଣସି ରତ୍ନଖଚିତ ଭବନ ମଧ୍ୟରେ ଶୋଭାପାଇବା କଥା । ଆପଣ ଏହି ଜନମାନବଶୂନ୍ୟ ଅରଣ୍ୟରେ କାହିଁକି ବିଚରଣ କରୁଛନ୍ତି ? ସୁନ୍ଦରୀ ପରିଚାରିକାମାନଙ୍କ କୋଳରେ ସ୍ଥାନ ନପାଇ ଅରଣ୍ୟ ଭୂମିର କଣ୍ଟକଦ୍ୱାରା କ୍ଷତବିକ୍ଷତ ହେଉଥିବା ଯୋଗୁଁ ଆମମାନଙ୍କ ମନରେ ଅତ୍ୟନ୍ତ ଦୁଃଖ ଜାତ ହେଉଛି । ପୃଥିବୀରୁ ଉଠୁଥିବା ଧୂଳିରାଶି ଆପଣମାନଙ୍କ ଶରୀରରେ ପଡ଼ିବାଦ୍ୱାରା ଆପଣମାନଙ୍କର ମୁଖମଣ୍ଡଳ ମ୍ଳାନ ହୋଇପଡୁଛି । ଆପଣଙ୍କ କୁସୁମକୋମଳ ଶରୀର ଉପରେ ପଡୁଥିବା ପ୍ରଚଣ୍ଡ ସୂର୍ଯ୍ୟକିରଣ ଆମମାନଙ୍କ ଶରୀରକୁ ଦଗ୍ଧୀଭୂତ କରୁଛି । ଆପଣମାନଙ୍କ ଏପରି ସ୍ଥିତି ଦେଖି ଆମେମାନେ ଅତ୍ୟନ୍ତ ଦୁଃଖିତ । ଏହି ହିଂସ୍ରଜନ୍ତୁ ପୂର୍ଣ୍ଣ ଅରଣ୍ୟ ମଧ୍ୟରେ ଆପଣମାନେ ରହିବା ଆମର ସହ୍ୟ ହେଉନାହିଁ । ତେଣୁ ଅନୁଗ୍ରହପୂର୍ବକ ନିଜର ସମସ୍ତ ବୃତ୍ତାନ୍ତ ପ୍ରକାଶ କରି ଆମର ଶଙ୍କା ଦୂର କରନ୍ତୁ ।'

ଚନ୍ଦ୍ରସିଂହଙ୍କ କୋମଳ ବଚନରେ ଲଜ୍ଜା ଓ ଶୋକବିହ୍ୱଳା ରାଣୀ ଦୀର୍ଘଶ୍ୱାସ ନେଇ ନିଜର ଜୀବନ କାହାଣୀ ରାଜାଙ୍କୁ ଶୁଣାଇଲେ ।

ସେମାନଙ୍କୁ ଅସୁରକ୍ଷିତା ଦେଖି ରାଜା ନିଜର ସ୍ନେହସିକ୍ତ କୋମଳ ଓ ମଧୁର ବଚନରେ ସେମାନଙ୍କୁ ଆଶ୍ୱାସନା ଦେବା ସହିତ ବିବାହପାଇଁ ସ୍ୱୀକୃତ କରାଇଲେ । ରାଣୀ ପରିସ୍ଥିତିର ତାଡ଼ନାରେ ନିଜର ଦ୍ୱିତୀୟ ଜନ୍ମହେଲା ବୋଲି ମନେକଲେ । ବିଦେଶରେ ବିପଦ ମଧ୍ୟରେ ପଡ଼ିଥିବା ଅବଳା ନାରୀଟିଏ ଆଉ ବା କ'ଣ କରନ୍ତା ?

ଚନ୍ଦ୍ରସିଂହ ଓ ତାଙ୍କ ପୁତ୍ର ଉଭୟ ମାତା ଓ କନ୍ୟାଙ୍କୁ ଅଶ୍ୱପୃଷ୍ଠରେ ଧରି ନିଜର କୁବେରପୁର ତୁଲ୍ୟ ରାଜଧାନୀକୁ ଫେରିଗଲେ ।

ଏହାପରେ ଚନ୍ଦ୍ରସିଂହଙ୍କ ପୁତ୍ର ସିଂହପରାକ୍ରମ ବିଧବା ରାଣୀ ଚନ୍ଦ୍ରାବତୀଙ୍କୁ ନିଜର ପତ୍ନୀ ରୂପେ ଗ୍ରହଣ କଲେ, କାରଣ ତାଙ୍କର ପାଦ ଦୁଇଟି ଛୋଟ ଥିଲା । ଚନ୍ଦ୍ରସିଂହ ଚନ୍ଦ୍ରବତୀଙ୍କ କନ୍ୟା ରାଜକୁମାରୀ ଲାବଣ୍ୟବତୀଙ୍କୁ ନିଜ ପତ୍ନୀ ରୂପେ ଗ୍ରହଣ କଲେ, କାରଣ ତାଙ୍କ ପାଦ ଦୁଇଟି ମା'ଙ୍କ ପାଦ ଅପେକ୍ଷା ଟିକିଏ ଅଧିକ ଦୀର୍ଘ ଥିଲା । ପିତା ଓ ପୁତ୍ର ପାଦଚିହ୍ନ ଦେଖି ପୂର୍ବରୁ ଏପରି ନିଶ୍ଚୟ କରିଥିବା ଯୋଗୁଁ ଏ ପ୍ରକାର ପରିସ୍ଥିତି ସୃଷ୍ଟି ହେଲା । ସତ୍ୟକୁ କିଏ ବା ଅତିକ୍ରମ କରିପାରେ !

ସତ୍ୟଂ କଷ୍ଟାତିବର୍ତ୍ତତେ

ଏହିପରି ପଦଚିହ୍ନର ବିପର୍ଯ୍ୟାସରୁ ପିତା ଓ ପୁତ୍ର କନ୍ୟା ଓ ମାତାକୁ ବିବାହ କଲେ । ଚନ୍ଦ୍ରାବତୀ ନିଜ କନ୍ୟାର ହିଁ ପୁତ୍ରବଧୂ ହେଲେ । ସମୟ କ୍ରମେ ସେମାନେ ପୁତ୍ର କନ୍ୟାମାନଙ୍କୁ ଜନ୍ମ ଦେଲେ । ପୁଣି ସେମାନଙ୍କଠାରୁ ମଧ ସନ୍ତାନସନ୍ତତିମାନେ ଜାତ ହେଲେ । ଏହିପରି ଲାବଣ୍ୟବତୀ ଓ ଚନ୍ଦ୍ରବତୀଙ୍କୁ ସତୀସାଧ୍ୱୀ ଓ ଅନୁରାଗବତୀ ପତ୍ନୀ ରୂପେ ଲାଭକରି ଚନ୍ଦ୍ରସିଂହ ଓ ସିଂହପରାକ୍ରମ ଆନନ୍ଦରେ ଜୀବନ ବିତାଇବାକୁ ଲାଗିଲେ ।''

ବେତାଳ କଥାଟି ଶୁଣାଇସାରି ପ୍ରଶ୍ନ କଲା 'ରାଜନ୍, ଯଦି ତୁମେ ଜାଣୁଛ ତେବେ କହ ଯେ ଏହି ମାତା ଓ କନ୍ୟାଙ୍କଠାରୁ ପୁତ୍ର ଓ ପିତାଙ୍କ ଦ୍ୱାରା କ୍ରମଶଃ ଯେଉଁ ସନ୍ତାନ ସବୁ ଜାତ ହେଲେ ସେମାନଙ୍କ ମଧ୍ୟରେ ସମ୍ପର୍କର ସ୍ୱରୂପ କ'ଣ ହେବ ? ଜାଣିଶୁଣି ଯଦି ଚୁପ୍ ରହ ତେବେ ଅଭିଶାପର ପରିଣାମ ନିଶ୍ଚୟ ଭୋଗ କରିବାକୁ ପଡ଼ିବ ।'

ବେତାଳର ପ୍ରଶ୍ନ ଶୁଣି ରାଜା କିଛି ସମୟ ଧରି ଚିନ୍ତାରେ ପଡ଼ିଗଲେ । କୌଣସି ନିର୍ଦ୍ଦିଷ୍ଟ ଉତ୍ତର ଖୋଜି ନପାଇବା ଯୋଗୁଁ ସେ ମୌନ ଭଙ୍ଗ ନକରି ଅଗ୍ରସର ହେଲେ । ମୃତ ଶବଟିର ଶରୀର ମଧ୍ୟରେ ରହି ବେତାଳ ଏଥିରେ ମନେମନେ ହସିଉଠିଲା । ଭାବିଲା, 'ଏହି ମହାପ୍ରଶ୍ନର ଉତ୍ତର ରାଜାଙ୍କୁ ଜ୍ଞାତ ନୁହେଁ । ତଥାପି ସେ ପ୍ରସନ୍ନ ଜଣାପଡୁଛନ୍ତି । ପୁଣି ନିରୁଦ୍‌ବିଗ୍ନ ଭାବରେ ଅଭିଶାପର ପରିଣତି ଚିନ୍ତା ନକରି ଧୀରସ୍ଥିର ଭାବରେ ଚାଲିଛନ୍ତି । ରାଜା ନିଶ୍ଚିତ ଭାବରେ ବଡ଼ ପରାକ୍ରମୀ । ତେଣୁ ଏହାଙ୍କ ସହିତ ପ୍ରବଞ୍ଚନା କରିବା ଉଚିତ ହେବନାହିଁ । ପୁଣି ସେହି ଭିକ୍ଷୁ ମୋ ସହିତ ଚାଲାକି ଖେଳୁଛି । ସେ ଏତିକିରେ ଶାନ୍ତ ହେବ ନାହିଁ । ତେଣୁ ସେହି ଦୁରାତ୍ମାକୁ କୌଶଳପୂର୍ବକ ଦୂରେଇ ଦେଇ

ତା'ର ସମସ୍ତ ସିଦ୍ଧି ରାଜାଙ୍କ ପାଇଁ ସୁଲଭ କରିଦେବା ମୋ ପକ୍ଷରେ ଉଚିତ ହେବ । ଭବିଷ୍ୟତରେ ରାଜାଙ୍କର କଲ୍ୟାଣ ହେବା ସୂଚନା ମିଳୁଅଛି ।'

ଏହିପରି ଚିନ୍ତାକରି ବେତାଳ ରାଜାଙ୍କୁ ଲକ୍ଷ୍ୟ କରି କହିଲା, 'ରାଜନ୍, ଏହି ଭୟଙ୍କର ଅନ୍ଧକାର ରାତ୍ରିରେ ବାରମ୍ବାର ଶ୍ମଶାନ ଭୂମିରେ ଯିବାଆସିବା କରିବାଦ୍ୱାରା ତୁମେ ଯେ କଷ୍ଟ ପାଇଛ, ଏହା ମୁଁ ଜାଣୁଛି । ତଥାପି ତୁମେ ନିଜ ପ୍ରତିଜ୍ଞାରୁ ବିଚ୍ୟୁତ ହୋଇନାହଁ । ତେଣୁ ତୁମେ ସୁଖଲାଭ କରିବାର ଯୋଗ୍ୟ । ତୁମର ଏହି ଆଶ୍ଚର୍ଯ୍ୟଜନକ ଧୈର୍ଯ୍ୟ ଦେଖି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ । ବର୍ତ୍ତମାନ ତୁମେ ଏ ଶବଟିକୁ ନେଇଯାଅ । ମୁଁ ତା' ମଧ୍ୟରୁ ଚାଲିଯାଉଛି । କିନ୍ତୁ ତୁମର ମଙ୍ଗଳପାଇଁ ମୁଁ ଯାହା କହୁଛି ତାକୁ ମନଦେଇ ଶୁଣ ଏବଂ ସେ ଅନୁଯାୟୀ କାର୍ଯ୍ୟ କର ।

ତୁମେ ଯେଉଁ ଦୁଷ୍ଟ ଭିକ୍ଷୁପାଇଁ ଏହି ମୃତ ପିଣ୍ଡଟିକୁ ନେଇଯାଉଛ ସେ ଆଜି ଏହି ଶରୀର ମଧ୍ୟରେ ମୋତେ ଆହ୍ୱାନ କରି ପୂଜା କରିବ । ପୂଜା ପରେ ଦୁଷ୍ଟ ତୁମକୁ ବଳି ଚଢ଼ାଇବାପାଇଁ କହିବ 'ଭୂମି ଉପରେ ପଡ଼ି ସାଷ୍ଟାଙ୍ଗ ପ୍ରଣିପାତ କର ।' ରାଜନ୍, ତୁମେ ସେ ଭିକ୍ଷୁ କଥାରେ ପ୍ରଣିପାତ ନକରି କହିବ, 'ତୁମେ ପ୍ରଥମେ କିପରି ପ୍ରଣିପାତ କରିବାକୁ ହେବ ଦେଖାଅ, ତା'ପରେ ମୁଁ ସେପରି କରିବି ।' ସେ ଯେତେବେଳେ ତୁମକୁ ଶିଖାଇବାପାଇଁ ସାଷ୍ଟାଙ୍ଗ ପ୍ରଣିପାତ କରି ଅବନତ ମୁଖରେ ଭୂମି ଉପରେ ପଡ଼ିଯିବ ସେତେବେଳେ ତୁମେ ସେ ପୂଜା କରୁଥିବା ତରବାରି ସାହାଯ୍ୟରେ ତା'ର ମସ୍ତକ ଛିନ୍ନ କରିବ । ଏହାଦ୍ୱାରା ସେ ଚାହୁଁଥିବା ବିଦ୍ୟାଧର ଐଶ୍ୱର୍ଯ୍ୟ ସିଦ୍ଧି ତୁମେ ଲାଭ କରିପାରିବ । ତେଣୁ ସେହି ଦୁଷ୍ଟ ଭିକ୍ଷୁକୁ ବଳି ଚଢ଼ାଇ ତୁମେ ପୃଥିବୀର ଅଧୀଶ୍ୱର ହୁଅ । ଯଦି ଏପରି ନକର ତା'ହେଲେ ସେ ତୁମକୁ ବଳିଦାନ କରିବ । ଏହି କାରଣରୁ କେବଳ ମୁଁ ଏତେ ସମୟ ଧରି ତୁମ କାର୍ଯ୍ୟରେ ବିଘ୍ନ ସୃଷ୍ଟି କରୁଥିଲି । ବର୍ତ୍ତମାନ ଯାଅ, ତୁମର ମଙ୍ଗଳ ହେଉ ।'

ବେତାଳ ଏପରି ପରାମର୍ଶ ଦେଇ ତ୍ରିବିକ୍ରମସେନଙ୍କ ସ୍କନ୍ଧ ଉପରେ ଥିବା ଶବ ମଧ୍ୟରୁ ଚାଲିଗଲା । ତା'ର ଉପଦେଶରେ ରାଜା ଭିକ୍ଷୁ କ୍ଷାନ୍ତଶୀଳର ଚକ୍ରାନ୍ତ ବୁଝିପାରିଲେ । ସେ ଯେ ତାଙ୍କର ଅମଙ୍ଗଳ କରିବାପାଇଁ ଉଦ୍ୟତ ତାହା ମଧ୍ୟ ତାଙ୍କର ଅଜଣା ରହିଲା ନାହିଁ । ତଥାପି ନିଜର ମନୋଭାବକୁ ଗୋପନ ରଖି ରାଜା ଶବ ସହିତ ଭିକ୍ଷୁଥିବା ବଟବୃକ୍ଷ ନିକଟରେ ଯାଇ ପହଞ୍ଚିଲେ ।

## ଦ୍ୱାତ୍ରିଂଶ ତରଙ୍ଗ

### ପଞ୍ଚଦଶ ବେତାଳ : ଭିକ୍ଷୁ କ୍ଷାନ୍ତିଶୀଳ କଥା

ରାଜା ତ୍ରିବିକ୍ରମସେନ ଭିକ୍ଷୁର ନିର୍ଦ୍ଦେଶ ଅନୁଯାୟୀ ଶବ ସହିତ ତା'ର ଆରାଧନା ସ୍ଥଳରେ ଆସି ପହଞ୍ଚିଲେ । କୃଷ୍ଣପକ୍ଷ ରାତ୍ରିର ଭୟାନକ ତମିସ୍ରା ମଧ୍ୟରେ ଭିକ୍ଷୁ କ୍ଷାନ୍ତିଶୀଳ ବୃକ୍ଷଶାଖାରେ ବସି ରାଜାଙ୍କ ପ୍ରତୀକ୍ଷା କରୁଥାଏ । ସେ ପୂଜାସ୍ଥଳୀକୁ ରକ୍ତରଞ୍ଜିତ କରି ଅସ୍ଥିର ଶ୍ୱେତ ଚୂର୍ଣ୍ଣରେ ମଣ୍ଡଳ ପ୍ରସ୍ତୁତ କରିଥାଏ । ତାର ଚତୁର୍ଦ୍ଦିଗରେ ରକ୍ତପୂର୍ଣ୍ଣ ଘଟ ଏବଂ ମନୁଷ୍ୟ ଚର୍ବି ପୂର୍ଣ୍ଣ ପ୍ରଦୀପ ସବୁ ସ୍ଥାନିତ ହୋଇଥାଏ । ମଧ୍ୟଭାଗରେ ଆହୁତିପାଇଁ ହୋମକୁଣ୍ଡ ପ୍ରସ୍ତୁତ । ନିଜ ଇଷ୍ଟସିଦ୍ଧି ପାଇଁ ସମସ୍ତ ପ୍ରସ୍ତୁତି ମଧ୍ୟରେ ଅପେକ୍ଷା କରିଥିବା ଭିକ୍ଷୁ ସମ୍ମୁଖରେ ରାଜା ଶବଟିକୁ ନେଇ ସ୍ଥାପନ କଲେ । ରାଜାଙ୍କୁ ଦେଖି ଭିକ୍ଷୁ ପ୍ରସନ୍ନ ଚିତ୍ତରେ ବୃକ୍ଷରୁ ଅବତରଣ କଲା ଏବଂ ପ୍ରଶଂସା କରି କହିଲା–

'ମହାରାଜ, ଆପଣ ମୋ ପ୍ରତି ଦୁଷ୍କର ଅନୁଗ୍ରହ ପ୍ରଦର୍ଶନ କରିଛନ୍ତି । କାହିଁ ଆପଣଙ୍କ ପରି ପରାକ୍ରମାଳୀ ରାଜା ଏବଂ କାହିଁ ଏପରି ଅପବିତ୍ର ସ୍ଥାନରେ ଏତାଦୃଶ ହୋମକ୍ରିୟା । ଜନତା ଆପଣଙ୍କୁ ରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି କହିବା ପ୍ରକୃତରେ ଯଥାର୍ଥ । ଆପଣ କେବଳ ନିଜର ସ୍ୱାର୍ଥ ସମ୍ପର୍କରେ ଚିନ୍ତା ନକରି ଅନ୍ୟର ଉପକାର କରିପାରନ୍ତି । ପ୍ରାଣ ବିନିମୟରେ ମଧ୍ୟ ଯେଉଁମାନେ ନିଜର ପ୍ରତିଜ୍ଞା ରକ୍ଷା କରିପାରନ୍ତି ସେମାନଙ୍କୁ ହିଁ ମହାତ୍ମା କୁହାଯାଏ ।' ଭିକ୍ଷୁ ନିଜର ଅଭିଳାଷ ସିଦ୍ଧ ହେଲା ଭାବି ପୂଜନ କ୍ରିୟା ଆରମ୍ଭ କଲା ।

ଶବଟିକୁ ସ୍ନାନ କରାଇ ସେ ତା' ଦେହରେ ଚନ୍ଦନଲେପନ କଲା । ତାକୁ ପୁଷ୍ପମାଳାଦ୍ୱାରା ସୁସଜ୍ଜିତ କରି ମଣ୍ଡଳ ମଧ୍ୟରେ ନେଇ ରଖିଲା । ନିଜେ ଶରୀରକୁ ଭସ୍ମ ବିଲେପିତ କରି ଶବ ମସ୍ତକରୁ ସଂଗୃହୀତ କେଶରାଶି ଦ୍ୱାରା ପ୍ରସ୍ତୁତ ହୋଇଥିବା

ଯଜ୍ଞୋପବିତ ଧାରଣ କଲା । କୌଣସି ଶବାଧାରରୁ ସଂଗ୍ରହ କରିଥିବା ବସ୍ତ୍ରଦ୍ୱାରା ଆପାଦମସ୍ତକ ଆଚ୍ଛାଦନ କରି ସେ କିଛି ସମୟ ପାଇଁ ଧ୍ୟାନସ୍ଥ ହେଲା । ଧ୍ୟାନରୁ ଉଠିବା ପରେ ସେ ଶବପିଣ୍ଡ ମଧ୍ୟକୁ ପୂର୍ବୋକ୍ତ ବେତାଳର ଆବାହନ କାର୍ଯ୍ୟ ଆରମ୍ଭ କଲା । ଭିକ୍ଷୁର ମନ୍ତ୍ରଶକ୍ତି ପ୍ରଭାବରେ ବେତାଳ ଆସି ଶବଦେହରେ ପ୍ରବେଶ କରିବା ପରେ ସେ ନିମ୍ନଲିଖିତ ପ୍ରକାରେ ତାର ପୂଜାକର୍ମ ଅନୁଷ୍ଠାନ କଲା ।

ନରକପାଳରେ ରକ୍ତର ଅର୍ଘ୍ୟ ପ୍ରଦାନ କରି ଭିକ୍ଷୁ ଶୁଭ୍ର ନରଦନ୍ତର ପୁଷ୍ପ ଅର୍ପଣ କଲା । ନରଚକ୍ଷୁର ଧୂପଦେଇ ସୁଗନ୍ଧିତ ନରରକ୍ତ ମିଶ୍ରିତ ଚନ୍ଦନ ବେତାଳ ଶରୀରରେ ଲେପନ କଲା । ନରମାଂସର ବଳି ଉତ୍ସର୍ଗ କରିବା ପରେ ଦୁଷ୍ଟ ଭିକ୍ଷୁ ରାଜାଙ୍କୁ ଲକ୍ଷ୍ୟ କରି କହିଲା, 'ମହାରାଜ୍, ଏଠାରେ ମନ୍ତ୍ରଦ୍ୱାରା ଆବାହନ କରାଯାଇଥିବା ଦେବତା ଆବିର୍ଭୂତ ହୋଇଛନ୍ତି । ଆପଣ ଭୂମି ଉପରେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତୁ । ସେ ଆପଣଙ୍କୁ ଅଭିଳଷିତ ବର ପ୍ରଦାନ କରିବେ ।' ଭିକ୍ଷୁର ନିର୍ଦ୍ଦେଶ ରାଜାଙ୍କୁ ବେତାଳର ଉପଦେଶ ସ୍ମରଣ କରାଇଦେଲା । ରାଜା କହିଲେ, 'ସାଷ୍ଟାଙ୍ଗ ପ୍ରଣିପାତ କିପରି କରିବାକୁ ହୁଏ ମୁଁ ଜାଣେନି । ତେଣୁ ଆପଣ ପ୍ରଥମେ ପ୍ରଣିପାତ କରି ମୋତେ ଦେଖାଇ ଦିଅନ୍ତୁ । ମୁଁ ସେପରି ହିଁ କରିବି ।'

ଭିକ୍ଷୁ ସାଷ୍ଟାଙ୍ଗ ପ୍ରଣିପାତ ଶିକ୍ଷା ଦେବାପାଇଁ ଭୂପୃଷ୍ଠରେ ଶୋଇବା ମାତ୍ରେ ରାଜା ତରବାରିର ତୀକ୍ଷ୍ଣଧାରରେ ତାର ମସ୍ତକ ଛେଦନ କଲେ । ନିର୍ଭୀକ ତ୍ରିବିକ୍ରମସେନ ଭିକ୍ଷୁର ହୃଦୟ କମଳ ସହିତ ଯେତେବେଳେ ତାର ମସ୍ତକ ବେତାଳକୁ ଅର୍ପଣ କଲେ ସେତେବେଳେ ଶ୍ମଶାନସ୍ଥ ଭୂତପ୍ରେତମାନଙ୍କର ପ୍ରସନ୍ନ ସାଧୁବାଦ ଶୁଣାଗଲା । ବେତାଳ ରାଜାଙ୍କ ଦ୍ୱାରା ଆନୀତ ଶବ ମଧ୍ୟରେ ରହି କହିଲା, 'ରାଜନ୍, ଏହି କପଟୀ ଭିକ୍ଷୁ ବିଦ୍ୟାଧର ଅଧିପତି ପଦବୀ ଲାଳସାରେ ଯେଉଁ କ୍ରିୟାନୁଷ୍ଠାନ କରିଥିଲା, ବର୍ତ୍ତମାନ ତୁମକୁ ତାହା ପ୍ରାପ୍ତ ହେବ । ମୁଁ ତୁମକୁ ବହୁତ କଷ୍ଟ ଦେଇଛି । ତେଣୁ ତୁମେ ତୁମର ଅଭୀଷ୍ଟ ବର ପ୍ରାର୍ଥନା କର ।'

ରାଜା ବେତାଳକୁ ପ୍ରସନ୍ନ ଜାଣି କହିଲେ, 'ଆପଣ ମୋ ପ୍ରତି ପ୍ରସନ୍ନ ଥିବା ଯୋଗୁଁ ମୁଁ ସବୁକିଛି ପାଇଯାଇଛି । କିନ୍ତୁ ଆପଣଙ୍କ ବଚନ ଅମୋଘ । ତେଣୁ ମୁଁ ଏତିକି ମାତ୍ର ପ୍ରାର୍ଥନା କରୁଛି, ଆପଣ ଆରମ୍ଭଠାରୁ ଚତୁର୍ବିଂଶ ଓ ଅନ୍ତିମ ପଞ୍ଚବିଂଶ କଥାପର୍ଯ୍ୟନ୍ତ ଯାହାସବୁ ମୋତେ ଶୁଣାଇଛନ୍ତି, ସେଗୁଡ଼ିକ ସମଗ୍ର ପୃଥିବୀରେ ପ୍ରସିଦ୍ଧି ଓ ଆଦର ଲାଭ କରୁ ।' ରାଜାଙ୍କ ଯାଚନାରେ ବେତାଳ ଅଧିକ ପ୍ରୀତ ହୋଇ କହିଲା, 'ତାହା ତ ନିଶ୍ଚୟ

ହେବ । ତା' ବ୍ୟତୀତ ମୁଁ ଆଉକିଛି ଅଧିକ କହୁଛି ଶୁଣ । ପୂର୍ବରୁ ଯେଉଁ ଚବିଶିଟି କଥା କହିଥିଲି ତା' ସହିତ ଏହି ଶେଷ କଥାଟି ମିଶି ପୃଥିବୀରେ 'ବେତାଳ ପଞ୍ଚବିଂଶତି' ନାମରେ ଖ୍ୟାତି ଲାଭ କରିବ । ଲୋକମାନେ ଏହାର ଆଦର କରିବେ, ଏହା ସେମାନଙ୍କପାଇଁ କଲ୍ୟାଣକର ହେବ । ଯେ କେହି ଆଦର ପୂର୍ବକ ଏଥିରୁ ଗୋଟିଏ ମାତ୍ର ଶ୍ଳୋକ ପାଠ କରିବ କିମ୍ବା ଶୁଣିବ ସେ ନିଶ୍ଚିତ ଭାବେ ପାପ ମୁକ୍ତ ହେବ । ଯେଉଁ ସ୍ଥାନରେ ଏହାକୁ ପଢ଼ାଯିବ ବା କୁହାଯିବ ସେଠାରେ ଯକ୍ଷ, ବେତାଳ, କୁଷ୍ମାଣ୍ଡ, ଡାକିନୀ, ରାକ୍ଷସ ପ୍ରଭୃତିଙ୍କ ପ୍ରଭାବ ରହିବ ନାହିଁ ।

ରାଜା ତ୍ରିବିକ୍ରମସେନଙ୍କୁ ଏହିପରି କହି ବେତାଳ ମନୁଷ୍ୟ ଶରୀରରୁ ନିଜ ଯୋଗମାୟାବଳରେ ସ୍ୱ-ଅଭୀପ୍ସିତ ଧାମକୁ ଫେରିଗଲା ।

ଏହାପରେ ରାଜାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ସ୍ୱୟଂ ମହାଦେବ ଦେବତାମାନଙ୍କ ସହ ସେଠାରେ ନିଜକୁ ପ୍ରକଟନ କଲେ । ରାଜା ନତମସ୍ତକରେ ଭକ୍ତିପୂତ ପ୍ରଣାମ ଜଣାଉଥିବା ବେଳେ ଭଗବାନ ଶଙ୍କର କହିଲେ, 'ବତ୍ସ, ହଠ ପୂର୍ବକ ବିଦ୍ୟାଧରମାନଙ୍କ ମହାଚକ୍ରବର୍ତ୍ତୀ ପଦ ଲାଭପାଇଁ ଚେଷ୍ଟା କରୁଥିବା ଏହି ଧୂର୍ତ୍ତ ତପସ୍ୱୀକୁ ହତ୍ୟା କରି ତୁ ଆଜି ଧନ୍ୟ ହୋଇଛୁ । ମ୍ଳେଚ୍ଛ ରୂପରେ ଅବତୀର୍ଣ୍ଣ ଅସୁରମାନଙ୍କୁ ଶାନ୍ତ କରିବାପାଇଁ ମୁଁ ପୂର୍ବେ ନିଜ ଅଂଶରୁ ରାଜା ବିକ୍ରମାଦିତ୍ୟକୁ ସୃଷ୍ଟି କରିଥିଲି । ବର୍ତ୍ତମାନ ପ୍ରଚଣ୍ଡ ଦୁର୍ବୃତ୍ତମାନଙ୍କ ଦମନପାଇଁ ମୋର ସେହି ଅଂଶରୁ ତୁ ତ୍ରିବିକ୍ରମସେନ ରୂପେ ଜନ୍ମ ନେଇଛୁ । ଏଣୁ ସମସ୍ତ ଦ୍ୱୀପ ଓ ପାତାଳ ସହିତ ସମଗ୍ର ପୃଥିବୀକୁ ନିଜର ବଶୀଭୂତ କରି ଅତିଶୀଘ୍ର ତୁ ବିଦ୍ୟାଧରମାନଙ୍କ ଅଧିପତି ହେବୁ । ବହୁଦିନ ଧରି ରାଜସୁଖରେ ନିମଜ୍ଜିତ ରହି ଶେଷରେ ତୁ ସ୍ୱଇଚ୍ଛାରେ ସେ ସମସ୍ତକୁ ତ୍ୟାଗ କରି ମୋ ନିକଟକୁ ଆସିବୁ । ଏଥିରେ କୌଣସି ସନ୍ଦେହ ନାହିଁ । ବର୍ତ୍ତମାନ ମୋର ଏହି ଅପରାଜିତ ନାମକ ଖଡ୍‌ଗ ଗ୍ରହଣ କର । ଏହାଦ୍ୱାରା ମୁଁ କହିଥିବା ସମସ୍ତ ବସ୍ତୁ ତୁ ଲାଭ କରିପାରିବୁ ।'

ଭଗବାନ ଖଡ୍‌ଗଟିକୁ ପ୍ରଦାନ କରି ରାଜାଙ୍କ ସ୍ତୁତି ପାଠ ମଧ୍ୟରେ ଅନ୍ତର୍ହିତ ହେଲେ ।

ରାତ୍ରି ଶେଷହୋଇ ଆସୁଥିଲା । ପ୍ରଭାତର ଆଲୋକ ଧୀରେଧୀରେ ବିଚ୍ଛୁରିତ ହେଉଥାଏ । ତାଙ୍କର ସମସ୍ତ କାର୍ଯ୍ୟ ଶେଷ ହୋଇଥିବା ଦେଖି ରାଜା ତ୍ରିବିକ୍ରମସେନ ନିଜର ରାଜଧାନୀ ପ୍ରତିଷ୍ଠାନ ପୁରକୁ ଫେରିଗଲେ । ରାତ୍ରିର ସମଗ୍ର ବୃତ୍ତାନ୍ତ ପ୍ରଚାରିତ ହେବାପରେ ପ୍ରଜାମାନେ ଆନନ୍ଦ ଉତ୍ସବ ମନାଇବା ସହିତ ରାଜାଙ୍କୁ ଅଭିନନ୍ଦନ ଜଣାଇଲେ । ସମଗ୍ର ଦିବସଟି ସ୍ନାନ, ଦାନ, ନୃତ୍ୟଗୀତ, ଶିବାର୍ଚ୍ଚନାରେ କଟିଗଲା ।

ଶିବଙ୍କଠାରୁ ପ୍ରାପ୍ତ ଖଡ଼୍ଗ ପ୍ରଭାବରେ ରାଜା ସ୍ୱଳ୍ପଦିନ ମଧ୍ୟରେ ସପ୍ତଦ୍ୱୀପ ଓ ପାତାଳ ସହିତ ସସାଗରା ଧରାର ଅଧିପତି ହେଲେ । ବିଦ୍ୟାଧରମାନେ ମଧ୍ୟ ଆଦରର ସହିତ ତାଙ୍କୁ ବିଦ୍ୟାଧର ରାଜପଦବୀ ଅର୍ପଣ କଲେ । ଚିରକାଳ ଭୋଗବିଳାସରେ ଜୀବନଯାପନ କରି ଶେଷରେ ଭଗବତ୍ କୃପାରୁ ତ୍ରିବିକ୍ରମସେନ ଭଗବାନଙ୍କ ଚରଣାରବିନ୍ଦରେ ଲୀନ ହେଲେ ।

ବେତାଳ ପଞ୍ଚବିଂଶତି ଶେଷ ହେଲା ।

ନାଗରାଜ ପାରାବତଙ୍କ ଅଭିଶାପ ବଶରୁ ଦୀର୍ଘଦିନର ବିଚ୍ଛେଦ ପରେ ମାର୍ଗ ମଧ୍ୟରେ ଆସି ଉପସ୍ଥିତ ହୋଇଥିବା ମନ୍ତ୍ରୀ ବିକ୍ରମକେଶରୀ ଏହିପରି ନିଜର ଅନୁଭୂତି ବର୍ଣ୍ଣନା କଲାପରେ ଜଣାଇଲେ, 'ଦେବ, ସେହି ଗ୍ରାମରେ ମୋର ଶୁଭାକାଂକ୍ଷୀ ସେହି ବୃଦ୍ଧ ବ୍ରାହ୍ମଣ ବେତାଳ ପଞ୍ଚବିଂଶତିର ପଚିଶିଟି କଥା ଶୁଣାଇ କହିଲେ, 'ବତ୍ସ, ବେତାଳର ଅନୁଗ୍ରହରୁ ରାଜା ତ୍ରିବିକ୍ରମସେନ କ'ଣ ତାଙ୍କର ସମସ୍ତ ମନୋରଥ ପୂରଣ କଲେ ନାହିଁ ? ତେଣୁ ତୁମେ ମଧ୍ୟ ମନରୁ ଦୁଃଖ ଦୂରକରି ମୋଠାରୁ ଏହି ମନ୍ତ୍ର ଗ୍ରହଣ କର । ଏହାଦ୍ୱାରା ତୁମେ କୌଣସି ଶ୍ରେଷ୍ଠ ବେତାଳକୁ ପ୍ରସନ୍ନ କଲେ ଅଚିରେ ନିଜ ସ୍ୱାମୀ ମୃଗାଙ୍କଦତ୍ତ ସହିତ ତୁମର ମିଳନ ହୋଇପାରିବ । ଉତ୍ସାହୀମାନଙ୍କ ପାଇଁ କୌଣସି ବସ୍ତୁ ଅପ୍ରାପ୍ୟ ନୁହେଁ । ନିରୁତ୍ସାହୀ କେଉଁ ବ୍ୟକ୍ତି ବା ନଷ୍ଟ ହୋଇନାହିଁ ? ତୁମେ ମୋତେ ସର୍ପବିଷର ଜ୍ୱାଳାରୁ ମୁକ୍ତି ଦେଇଛ । ଏଣୁ ତୁମେ ମୋର ମିତ୍ର । ମିତ୍ର ଭାବରେ ମୁଁ ଯାହା କହୁଛି ତାହା ତୁମେ କରିଦେଖ ।'

ବ୍ରାହ୍ମଣଙ୍କଠାରୁ ମୁଁ ବିଧିପୂର୍ବକ ମନ୍ତ୍ର ଗ୍ରହଣ କଲି । ବ୍ରାହ୍ମଣ ମୋତେ ବିଦାୟ ଦେଲେ । ମୁଁ ଆସି ଉଜ୍ଜୟିନୀ ନଗରୀରେ ପହଞ୍ଚିଲି ।

ଉଜ୍ଜୟିନୀରେ ରହୁଥିବା ବେଳେ ମୁଁ ତତ୍ରସ୍ଥ ଶ୍ମଶାନକୁ ଯାଇ ଗୋଟିଏ ଶବ ସଂଗ୍ରହ କଲି । ତାକୁ ସ୍ନାନଲେପନ କରି ଶିକ୍ଷା କରିଥିବା ମନ୍ତ୍ରଦ୍ୱାରା ସେଥିରେ ଏକ ବେତାଳର ଆବାହନ କଲି । ଶବଟି ବେତାଳ ଦ୍ୱାରା ଆବିଷ୍ଟ ହେବାରୁ ମୁଁ ଯଥୋଚିତ ପୂଜାପୂର୍ବକ ତା'ର ସନ୍ତୁଷ୍ଟି ବିଧାନପାଇଁ ମନୁଷ୍ୟ ମାଂସର ନୈବେଦ୍ୟ ଅର୍ପଣ କଲି । କିନ୍ତୁ ସେ ଅତିଶୀଘ୍ର ତା'କୁ ଗ୍ରାସ କରି ଅତୃପ୍ତ ଭାବରେ ଅଧିକ ମାଂସ ପ୍ରଦାନ କରିବାପାଇଁ ଆଦେଶ ଦେଲା । ମୁହୂର୍ତ୍ତ ମାତ୍ର ଅପେକ୍ଷା କରିବା ନିମିତ୍ତ ସେ ପ୍ରସ୍ତୁତ ନଥାଏ । ତେଣୁ ମୋ ନିଜ ଶରୀରରୁ ହିଁ ମାଂସକର୍ତ୍ତନ କରି ତାକୁ ସମର୍ପଣ କରୁଥାଏ । କିଛି ସମୟ ପରେ ବେତାଳ ମୋ ପ୍ରତି ସନ୍ତୁଷ୍ଟ ହୋଇ କହିଲା, 'ମିତ୍ର, ତୁମର ଦୃଢ଼ତା ଓ ବୀରତ୍ୱ ଦେଖି ମୁଁ ପ୍ରସନ୍ନ ହେଲି ।

ତୁମର ଶରୀର ପୂର୍ବପରି ଅକ୍ଷତ ଓ ସୁନ୍ଦର ହେଉ । ତୁମେ ମୋଠାରୁ ଈପ୍‌ସିତ ବର ଗ୍ରହଣ କର ।' ଆପଣଙ୍କ ବ୍ୟତୀତ ସେତେବେଳେ ମୋ ମନରେ ଅନ୍ୟ କୌଣସି ଚିନ୍ତା ନଥିଲା । ମୁଁ ସେଥିପାଇଁ ବେତାଳକୁ କହିଲି, 'ଆପଣ ଯଦି ମୋ ପ୍ରତି ସନ୍ତୁଷ୍ଟ ତେବେ ମୋତେ ମୋର ସ୍ୱାମୀ ମୃଗାଙ୍କଦତ୍ତଙ୍କ ନିକଟକୁ ନେଇ ଚାଲନ୍ତୁ । ଏହାବ୍ୟତୀତ ମୁଁ ଆଉକିଛି ଚାହେଁ ନାହିଁ ।' ବେତାଳ ମୋତେ ତା'ର ସ୍କନ୍ଧ ଉପରେ ବସିବାପାଇଁ ନିର୍ଦ୍ଦେଶ ଦେଲା । ମୁଁ ନିର୍ଦ୍ଦେଶକ୍ରମେ ତାର ସ୍କନ୍ଧ ଉପରେ ଯାଇ ବସିବା ମାତ୍ରେ ସେ ଆକାଶ ମାର୍ଗରେ ଆସି ଏଠାରେ ଅବତରଣ କଲା । ଏପରିଭାବରେ ମୁଁ ଆପଣଙ୍କ ଚରଣ ଦର୍ଶନର ସୌଭାଗ୍ୟ ଲାଭ କଲି । ବେତାଳ ତାର କାର୍ଯ୍ୟ ଶେଷ କରି ଫେରିଗଲା । ଆପଣମାନଙ୍କ ସହିତ ମୁଁ ଆସି ମିଳିତ ହେଲି । ନାଗରାଜର ଶାପଠାରୁ ଏ ପର୍ଯ୍ୟନ୍ତ ଏହାହିଁ ମୋର ସମଗ୍ର ଅନୁଭୂତି ।'

ପ୍ରିୟାପ୍ରାପ୍ତି ନିମିତ୍ତ ଉଜ୍ଜୟିନୀ ଅଭିମୁଖରେ ଯାଉଥିବା ମୃଗାଙ୍କଦତ୍ତ ମିତ୍ର ଓ ମନ୍ତ୍ରୀ ବିକ୍ରମକେଶରୀଙ୍କ ବିଚିତ୍ର ଅନୁଭୂତି ଶୁଣି ପ୍ରୀତ ହେଲେ । ପାରାବତ ଶାପରୁ ବିଚ୍ଛିନ୍ନ ହୋଇପଡ଼ିଥିବା ଜଣେଜଣେ ମନ୍ତ୍ରୀଙ୍କ ମିଳନରେ ସେ ଭବିଷ୍ୟତର ସଫଳତା ସମ୍ଭାବନା କରୁଥାନ୍ତି । ତାଙ୍କ ମନରୁ ଧୀରେ ଧୀରେ ଦୁଃଖ ଓ ଆଶଙ୍କା ଦୂରୀଭୂତ ହେଉଥାଏ ।

# ତ୍ରୟତ୍ରିଂଶ ତରଙ୍ଗ

ରାତ୍ରିରେ ନୃତ୍ୟ କରୁଥିବା ବେଳେ ନକ୍ଷତ୍ର ସମୂହ ଯେଉଁ ଗଣପତିଙ୍କର କୁମ୍ଭ ସ୍ଥଳରୁ ଖସି ଆସି ଜାନୁଦେଶକୁ ସୁଶୋଭନ କରୁଛନ୍ତି, ସେହି ସମସ୍ତ ବିଘ୍ନ ବିନାଶକାରୀ ବିଘ୍ନରାଜଙ୍କୁ ନମସ୍କାର ।

ବିକ୍ରମକେଶରୀ ମୃଗାଙ୍କଦତ୍ତଙ୍କ ସହିତ ମିଳିତ ହୋଇ ଯଥେଷ୍ଟ ଆନନ୍ଦ ଲାଭ କଲେ । ମିତ୍ର ତଥା ସଚିବଙ୍କ ଅନୁଭୂତି ଶୁଣିବା ପରେ ତାଙ୍କର ଉଜ୍ଜୟିନୀ ଯାତ୍ରା ପୁଣି ଆରମ୍ଭ ହେଲା । ମିତ୍ରମାନଙ୍କ ମଧ୍ୟରୁ ଗୁଣାକର, ବିମଳବୁଦ୍ଧି, ବିଚିତ୍ରକଥ, ଭୀମପରାକ୍ରମ, ପ୍ରଚଣ୍ଡ ଶକ୍ତି ଏବଂ ବ୍ରାହ୍ମଣ ଶ୍ରୁତଧି ପୂର୍ବରୁ ଆସି ଯାଇଥିବା ଯୋଗୁଁ ଅନ୍ୟ ମିତ୍ରମାନଙ୍କ ଅନୁସନ୍ଧାନରେ ସେମାନେ ମଧ୍ୟ ଯୋଗଦେଲେ । ମୃଗାଙ୍କଦତ୍ତ ଏହି ଆଠଜଣ ମିତ୍ରଙ୍କ ସହିତ ଶଶାଙ୍କବତୀଙ୍କୁ ଲାଭ କରିବାପାଇଁ ଉଜ୍ଜୟିନୀ ଅଭିମୁଖରେ ଅଗ୍ରସର ହେଲେ ।

କିଛି ଦୂର ଅତିକ୍ରମ କଲାପରେ ସେମାନେ ଏକ ଅରଣ୍ୟ ମଧ୍ୟରେ ଆସି ପ୍ରବେଶ କଲେ । ପ୍ରଚଣ୍ଡ ଗ୍ରୀଷ୍ମ ଯୋଗୁଁ ବନମଧ୍ୟସ୍ଥିତ ସମସ୍ତ ଜଳାଶୟ ଶୁଷ୍କ ହୋଇପଡ଼ିଥିଲା । ଶୁଖିଲା ଓ ପତ୍ରପୁଷ୍ପହୀନ ବୃକ୍ଷରାଜି ଅରଣ୍ୟଟିକୁ ଏକ ଶ୍ମଶାନ ଭୂମିରେ ପରିଣତ କରିଦେଇଥିଲା । ସୂର୍ଯ୍ୟଙ୍କର ପ୍ରଖର କିରଣରେ ବାଲୁକାରାଶି ସତେ ଯେପରି ଜ୍ୱଳନ୍ତ ଅଗ୍ନିକଣାରେ ପରିବର୍ତ୍ତିତ ହୋଇଯାଇଥିଲେ । ବନଭୂମିକୁ ଦେଖି ରାଜକୁମାର ମୃଗାଙ୍କଦତ୍ତ ମିତ୍ରମାନଙ୍କୁ କହିଲେ, 'ବନ୍ଧୁଗଣ ! ଏହି ବିଶାଳ ବନଭୂମିକୁ ନିରୀକ୍ଷଣ କର । ଏହା ଯେପରି ଦୁର୍ଗମ, ସେହିପରି ଭୟଙ୍କର । ଏହା ମଧ୍ୟରେ ବିଶ୍ରାମ ନେବାପାଇଁ ଆଶ୍ରମଟିଏ ବିରଳ । ପଥିକମାନଙ୍କ ଯିବାଆସିବା ବନ୍ଦ ହୋଇଯିବାଯୋଗୁଁ ସୁଗମ ମାର୍ଗଟିଏ ପାଇବା ସମ୍ଭବ ନୁହେଁ । ଏଠାରେ ଥିବା ମରୁମରୀଚିକା ଗୁଡ଼ିକ ଦୁଃଖ ରୂପକ ଅଗ୍ନିରୁ ଜାତ ହେଉଥିବା ଜ୍ୱଳନ୍ତ ଶିଖା ପରି ମନେହେଉଛନ୍ତି । ଶୁଷ୍କ ତୃଣଭୂମିଗୁଡ଼ିକୁ ଦେଖିଲେ ଚତୁର୍ଦ୍ଦିଗ ରୁକ୍ଷ କେଶପାଶରେ ଆଚ୍ଛାଦିତ ହେଲାପରି ମନେହେଉଛି । ଶୁଷ୍କ କଣ୍ଟକାବଳୀ ବ୍ୟାଘ୍ର, ସିଂହ

ପ୍ରଭୃତିଙ୍କ ଭୟରେ ବନଭୂମିକୁ ସତେ ଯେପରି ରୋମାଞ୍ଚିତ କରିଛନ୍ତି । ଜଳବିନ୍ଦୁଟିଏ ପାଇବାପାଇଁ ମୃଗଶାବକମାନଙ୍କ କରୁଣ ଆର୍ତ୍ତନାଦରେ ବନଭୂମି ସତେ ଯେପରି ବିଳାପ କରିଉଠୁଛି । ତେଣୁ ଆମେ ଏହି ଭୟାନକ ମହାଭୂମିକୁ ଯଥାଶୀଘ୍ର ଅତିକ୍ରମ କରିଯିବା ଉଚିତ ହେବ ।' ଏହା କହି କ୍ଷୁଧା ଓ ତୃଷାରେ ଅତ୍ୟନ୍ତ ବ୍ୟାକୁଳ ମନ୍ତ୍ରୀମାନଙ୍କ ସହିତ ମୃଗାଙ୍କଦତ୍ତ ଦ୍ରୁତ ପଦପାତରେ ବନଭୂମିକୁ ଅତିକ୍ରମ କରିଗଲେ ।

କିଛିଦୂର ଯିବା ପରେ ସେମାନେ ଏକ ସ୍ୱଚ୍ଛ ଜଳପୂର୍ଣ୍ଣ ସରୋବର ନିକଟରେ ଆସି ପହଞ୍ଚିଲେ । ସରୋବରଟି ସୂର୍ଯ୍ୟ କିରଣରେ ବିଗଳିତ ଚନ୍ଦ୍ରମାର ଶୋଭା ଧାରଣ କରିଥିଲା । ଦିଗନ୍ତବିସ୍ତୃତ ସରୋବରଟିକୁ ସତେ ଯେପରି ତ୍ରୈଲୋକ୍ୟ ଲକ୍ଷ୍ମୀ ନିଜର ପ୍ରତିବିମ୍ବ ଦର୍ଶନ କରିବାପାଇଁ ମଣି ଦର୍ପଣ ତୁଲ୍ୟ ନିର୍ମାଣ କରିଥିଲେ । ସରୋବରଟି ମହାଭାରତ ପରି ମନେହେଉଥିଲା । ଧାର୍ତ୍ତରାଷ୍ଟ୍ର ଅର୍ଥାତ୍ କୃଷ୍ଣବର୍ଣ୍ଣ ପକ୍ଷ ଓ ଚଞ୍ଚୁଯୁକ୍ତ ହଂସ ପରି ଧୃତରାଷ୍ଟ୍ରଙ୍କ ପୁତ୍ରମାନଙ୍କ ଦ୍ୱାରା ଚଳଚଞ୍ଚଳ ଥିଲା । ଜଳରାଶିରେ ଆଶ୍ରୟଦାତା ଅର୍ଜୁନ ଅର୍ଥାତ୍ ଅର୍ଜୁନ ବୃକ୍ଷ କିମ୍ବା ପଣ୍ଡୁ ପୁତ୍ର ଅର୍ଜୁନର ଛାୟାରେ ଆଚ୍ଛାଦିତ ଥିଲା । ଏହାର ରସ ଅର୍ଥାତ୍ ଜଳ କିମ୍ବା କାବ୍ୟରସ ଥିଲା ଅତ୍ୟନ୍ତ ସ୍ୱାଦିଷ୍ଟ । ସରୋବରଟି ପୁଣି ମନ୍ଥନ କାଳୀନ ସମୁଦ୍ରର ପ୍ରତୀତି ସୃଷ୍ଟି କରୁଥିଲା । ତଟବର୍ତ୍ତୀ ନୀଳକଣ୍ଠ ଅର୍ଥାତ୍ ମୟୂର କିମ୍ବା ଶିବ ଏହାର ସମସ୍ତ ଉତ୍ତମ ବିଷ ଅର୍ଥାତ୍ ଜଳ କିମ୍ବା ହଳାହଳ ସବୁକୁ ପାନ କରୁଥିଲେ ଏବଂ ଲକ୍ଷ୍ମୀ ଅର୍ଥାତ୍ ସୌନ୍ଦର୍ଯ୍ୟ କିମ୍ବା ମହାଲକ୍ଷ୍ମୀଙ୍କୁ ଲାଭକରି ଅଚ୍ୟୁତ ଅର୍ଥାତ୍ କେବେ ଶୁଖୁନଥିବା କିମ୍ବା ଭଗବାନ ବିଷ୍ଣୁ ଏଠାରେ ବାସ କରୁଥିଲେ । ସରୋବରଟି ପୁଣି ଧରାପୃଷ୍ଠରେ ନିର୍ମିତ ପାତାଳ ବୋଲି ମନେ ହେଉଥିଲା । ଏହାର ଗଭୀରତାକୁ ଭେଦ କରି ସୂର୍ଯ୍ୟକିରଣ ପୃଷ୍ଠତଳ ପର୍ଯ୍ୟନ୍ତ ପହଞ୍ଚି ପାରୁନଥିଲା ଏବଂ ଏହା ଅନନ୍ତ ଅର୍ଥାତ୍ ଅସଂଖ୍ୟ କିମ୍ବା ନାଗରାଜ ବାସୁକିଙ୍କ ପଦ୍ମ ସଂଖକ ଫଣା ଦ୍ୱାରା ସୁଶୋଭିତ ଥିଲା ।

ରାଜକୁମାର ମୃଗାଙ୍କଦତ୍ତ ନିଜ ସଚିବମାନଙ୍କ ସହିତ ପଶ୍ଚିମ ତୀରରେ ଥିବା ଏକ ବିଶାଳ ଓ ଦିବ୍ୟ ବୃକ୍ଷ ନିକଟରେ ଆସି ଉପସ୍ଥିତ ହେଲେ । ଶୀତଳ ପବନ ଦ୍ୱାରା ଆନ୍ଦୋଳିତ ଶାଖାଗୁଡ଼ିକ ଥିଲେ ଏହାର ବାହୁ; ଏହାର ଶିଖର ଆକାଶବାହିନୀ ଗଙ୍ଗାଙ୍କୁ ସ୍ପର୍ଶ କରୁଥିଲା । ଏହିପରି ବୃକ୍ଷଟି ନୃତ୍ୟରତ ନଟରାଜଙ୍କ ଭ୍ରମ ଜାଗ୍ରତ କରୁଥିଲା । ବୃକ୍ଷଟିର ଉଚ୍ଚତା ଦେଖିଲେ ମନେହେଉଥିଲା ସତେ ଯେପରି ସେ ସ୍ୱର୍ଗର ନନ୍ଦନକାନନକୁ ଦେଖିବାପାଇଁ ଉଦ୍‌ଗ୍ରୀବ ହୋଇଉଠିଛି । ବୃକ୍ଷଟି ବହୁ ସୁମିଷ୍ଟ ଫଳରାଶିରେ ପରିପୂର୍ଣ୍ଣ ଥିଲା । ପକ୍ୱ ଫଳଗୁଡ଼ିକ କଳ୍ପବୃକ୍ଷର ଶାଖାରେ ଝୁଲୁଥିବା ଅମୃତ କଳସର ପ୍ରତୀତି ସୃଷ୍ଟି

କରୁଥିଲା । ମନ୍ଦାନିଳଦ୍ୱାରା ଆନ୍ଦୋଳିତ ପତ୍ରଗୁଡ଼ିକ ଶାଖା ଉପରେ ବସିଥିବା ପକ୍ଷୀମାନଙ୍କ ସ୍ୱରରେ ଫଳଗୁଡ଼ିକୁ ସ୍ପର୍ଶ କରିବାପାଇଁ ସତେ ଯେପରି ବାରମ୍ବାର ମନା କରୁଥିଲେ ।

ମୃଗାଙ୍କଦତ୍ତ ବୃକ୍ଷଟିର ଶୋଭରାଶି ସନ୍ଦର୍ଶନ କରୁଥିବା ବେଳେ ତାଙ୍କ ମନ୍ତ୍ରୀମାନେ କ୍ଷୁଧା ଓ ତୃଷାରେ ବ୍ୟାକୁଳ ହୋଇ ସେହି ସୁମିଷ୍ଟ ଫଳ ସବୁକୁ ଖାଇବା ନିମିତ୍ତ ଦୌଡ଼ିଲେ । ସେମାନେ ବୃକ୍ଷ ଉପରେ ଚଢ଼ିବା ମାତ୍ରେ ବଡ଼ ବିଚିତ୍ର ଭାବରେ ମନୁଷ୍ୟ ଶରୀର ପରିତ୍ୟାଗ କରି ଛଅଟି ଫଳରେ ପରିଣତ ହୋଇଗଲେ ।

ମୃଗାଙ୍କଦତ୍ତ ସଚିବମାନଙ୍କୁ ନ ଦେଖି ବିହ୍ୱଳଭାବେ ଜଣଜଣଙ୍କର ନାମ ଧରି ଡାକିବା ଆରମ୍ଭ କଲେ କିନ୍ତୁ କାହାରିଠାରୁ କୌଣସି ଉତ୍ତର ମିଳିଲା ନାହିଁ । ସେଠାରେ କାହାରିକୁ ନଦେଖି ପୁଣି ଘୋର ନୈରାଶ୍ୟରେ ରାଜକୁମାର ମୂର୍ଚ୍ଛିତ ହୋଇ ପଡ଼ିଗଲେ । ତାଙ୍କ ନିକଟରେ କେବଳ ବ୍ରାହ୍ମଣ ଶ୍ରୁତଧି ହିଁ ଉପସ୍ଥିତ ରହିଥାନ୍ତି । ସେ ବୃକ୍ଷ ଉପରେ ଚଢ଼ି ନଥିବା ଯୋଗୁଁ ତାଙ୍କର କୌଣସି ଶାରିରୀକ ପରିବର୍ତ୍ତନ ହୋଇନଥାଏ । ସେ ରାଜପୁତ୍ରଙ୍କ ମୂର୍ଚ୍ଛାଭଙ୍ଗ କରି ପ୍ରଶାନ୍ତ ସ୍ୱରରେ ସାନ୍ତ୍ୱନା ଦେଲେ, 'ଦେବ ! ଆପଣ ବୁଦ୍ଧିମାନ୍ । ଧୈର୍ଯ୍ୟହୀନ ଭାବରେ ଏପରି ନିରାଶ ହେବା ଆପଣଙ୍କପାଇଁ ଶୋଭା ପାଉନାହିଁ । ଯେଉଁ ବ୍ୟକ୍ତି ବିପଦରେ ଧୈର୍ଯ୍ୟହୀନ ହୁଏ ନାହିଁ ସେ ହିଁ ସମସ୍ତ କଲ୍ୟାଣର ଅଧିକାରୀ ହୋଇଥାଏ ।

ଅଶ୍ନୁତେ ହି ସ କଲ୍ୟାଣଂ ବ୍ୟସନେ ଯୋ ନ ମୁହ୍ୟତି ।

ନାଗରାଜଙ୍କ ଅଭିଶାପ ବଶରୁ ବିଚ୍ଛିନ୍ନ ହୋଇପଡ଼ିଥିବା ମିତ୍ରମାନେ ତ ପୁଣି ଆପଣଙ୍କ ନିକଟକୁ ଫେରିଆସୁଛନ୍ତି ! ଏହିପରି ପୁଣି ଏହି ମନ୍ତ୍ରୀ ଓ ମିତ୍ରମାନେ ଆମ ନିକଟରେ ଆସି ପହଞ୍ଚିବେ ଏବଂ ମୃଗାଙ୍କବତୀ ମଧ୍ୟ ଆପଣଙ୍କପାଇଁ ଅଲଭ୍ୟ ହେବେ ନାହିଁ ।'

ଶ୍ରୁତଧିଙ୍କ କଥା ଶୁଣି ରାଜକୁମାର ଆଶଙ୍କା ପ୍ରକାଶ କଲେ 'ଏହା କିପରି ସମ୍ଭବ ? ବିଧାତା ଆମମାନଙ୍କର ବିନାଶପାଇଁ ହିଁ ଏହି ସରୋବର ଓ ବୃକ୍ଷ ନିର୍ମାଣ କରିଛନ୍ତି । ଏହା ନହୋଇଥିଲେ ଭୀମପରାକ୍ରମଙ୍କ ସହିତ ରାତିରେ ସେହି ବେତାଳର ସାକ୍ଷାତ ବା ହୁଅନ୍ତା କାହିଁକି ? ତା' ସହିତ କଥାବାର୍ତ୍ତା କଲାବେଳେ ଆମେ ଶଶାଙ୍କବତୀଙ୍କ ପରିଚୟ ଲାଭ କରନ୍ତେ କାହିଁକି ? ଶଶାଙ୍କବତୀଙ୍କୁ ପାଇବାପାଇଁ ଆମେ ଅଯୋଧ୍ୟାରୁ କାହିଁକି ବା ବାହାରନ୍ତେ ? ପୁଣି ସର୍ପରାଜଙ୍କ ଅଭିଶାପରୁ ମାର୍ଗ ମଧ୍ୟରେ ଆମମାନଙ୍କର ବିଚ୍ଛେଦ ବା କାହିଁକି ଘଟନ୍ତା ? କିଛି ସମୟପାଇଁ ଆମମାନଙ୍କର ମିଳନ ହେବାପରେ ପୁଣି ବା କାହିଁକି ଏପରି ବିଚ୍ଛେଦ ଘଟିଛି ? ମିତ୍ର, ଏସବୁ ଘଟଣା ଦୁର୍ଘଟଣା ମୋତେ ଇଷ୍ଟନାଶର ଲକ୍ଷଣ ବୋଲି ମନେହେଉଛି । ଏ ସମସ୍ତେ ବୋଧହୁଏ ବୃକ୍ଷ ମଧ୍ୟରେ ଥିବା କୌଣସି ପ୍ରେତାତ୍ମାର

କବଳିତ ହୋଇଛନ୍ତି । ଏମାନଙ୍କ ବିନା ଶଶାଙ୍କବତୀଙ୍କୁ ନେଇ ମୁଁ କ'ଣ କରିବି ? ମୋର ଜୀବନଧାରଣର ସାର୍ଥକତା ବା କେଉଁଠି ? ତେଣୁ ଏହି ଭ୍ରମ ଭିତରେ ଘାରି ହେବାରେ କିଛି ଲାଭ ନାହିଁ ।'

ଏହିପରି କହି ଶ୍ରୁତଧିଙ୍କ ବାରଣ ସତ୍ତ୍ୱେ ଶୋକାକୁଳ ମୃଗାଙ୍କଦତ୍ତ ସରୋବରରେ ଝାସ ଦେବାପାଇଁ ଉଠି ଠିଆହେଲେ । ଏ ସମୟରେ ଆକାଶମାର୍ଗରୁ ଶୂନ୍ୟବାଣୀ ଶୁଣାଗଲା, 'ବତ୍ସ ! ଏପରି ଦୁଃସାହସ କର ନାହିଁ । ତୁମର ମନୋରଥ ଅଳ୍ପ ସମୟ ମଧ୍ୟରେ ପୂର୍ଣ୍ଣ ହେବାକୁ ଯାଉଛି । ଏହି ବୃକ୍ଷ ଉପରେ ଭଗବାନ ବିଘ୍ନରାଜ ବାସ କରନ୍ତି । ଅଜ୍ଞାତସାରରେ ତୁମର ମିତ୍ରମାନେ ତାଙ୍କର ଅବମାନନା କରିଛନ୍ତି । ସେମାନେ ଅପବିତ୍ର ଥିଲେ । ସେମାନେ ମୁହଁ, ହାତ ଧୋଇ ନଥିଲେ କିମ୍ବା ସ୍ନାନ ଆଚମନ ମଧ୍ୟ କରିନଥିଲେ । କ୍ଷୁଧାତୁର ଥିବାଯୋଗୁଁ ଫଳ ଖାଇବା ଆଶାରେ ସେମାନେ ଏପରି ଅପବିତ୍ର ଅବସ୍ଥାରେ ହିଁ ବୃକ୍ଷ ଉପରେ ଆରୋହଣ କରିବାରୁ ଭଗବାନ ଗଣପତି ସେମାନଙ୍କୁ ଅଭିଶାପ ଦେଲେ ଯେ ସେମାନେ ଯାହା ଚାହୁଁଛନ୍ତି ତାହାହିଁ ହୋଇଯିବେ । ଫଳରେ ତୁମର ଛଅଜଣ ସଚିବ ଫଳରୂପ ଧାରଣ କରିଛନ୍ତି । ତୁମର ଅନ୍ୟ ଚାରିଜଣ ସଚିବ ମଧ୍ୟ ଏହି ମାର୍ଗରେ ଯାଉଥିବା ବେଳେ ଅନୁରୂପ ଭାବେ ବୃକ୍ଷ ଆରୋହଣ କରିଥିବା ଯୋଗୁଁ ଫଳରୂପ ଧାରଣ କରି ବୃକ୍ଷ ଉପରେ ଓହଳି ରହିଛନ୍ତି । ତେଣୁ ତୁମେ ତପଃ ଆଚରଣ କରି ବିଘ୍ନରାଜଙ୍କ ଆରାଧନା କର । ତାଙ୍କରି କୃପା ପ୍ରାପ୍ତ ହେଲେ ତୁମର ସକଳ ମଂନୋରଥ ସିଦ୍ଧ ହେବ ।'

ଅମୃତ ତୁଲ୍ୟ ଏହି ଆକାଶବାଣୀ ମୃଗାଙ୍କଦତ୍ତଙ୍କ ମନରେ ଆଶାର ଆଲୋକ ସଞ୍ଚାରଣ କଲା । ସେ ଧୈର୍ଯ୍ୟ ଧାରଣପୂର୍ବକ ଶରୀର ତ୍ୟାଗର ସଂକଳ୍ପରୁ ନିବୃତ୍ତ ହେଲେ । ସରୋବରରେ ସ୍ନାନ କରି ସେ ଗଣପତିଙ୍କ ଆରାଧନା ଆରମ୍ଭ କଲେ । ଉପବାସ ରହି ନିମ୍ନଲିଖିତ ସ୍ତୁତିପାଠ ପୂର୍ବକ ସେ ଗଣପତିଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ଭାବେ ପଡ଼ିଥାନ୍ତି ।

''ହେ ଗଜବଦନ, ଆପଣଙ୍କର ଜୟ ହେଉ । ହେ ଈଶ ! ଆପଣ ଯେତେବେଳେ ତାଣ୍ଡବ ନୃତ୍ୟ କରୁଥାନ୍ତି ସେତେବେଳେ ଆପଣଙ୍କ ପଦସଞ୍ଚାଳନରେ ପୃଥିବୀ, ପର୍ବତ ଓ ଅରଣ୍ୟ ସମୂହ ନମ୍ରଭାବେ ଆପଣଙ୍କ ଚରଣ କମଳରେ ନତମସ୍ତକ ହେବାପରି ଜଣାଯାଉଥାନ୍ତି । ଆପଣଙ୍କ ଶରୀରର ଆକାର ବିବିଧ ଶ୍ରେଷ୍ଠ ସିଦ୍ଧିଗୁଡ଼ିକୁ ଗର୍ଭସ୍ଥ କରିଥିବା ଘଟ ସଦୃଶ । ତ୍ରିଭୁବନ ନିବାସୀ ସୁର, ଅସୁର ଓ ମନୁଷ୍ୟ ଆପଣଙ୍କ ଚରଣ କମଳ ଯୁଗଳକୁ ସର୍ବଦା ଉପାସନା କରିଥାନ୍ତି । ଆପଣଙ୍କ ତେଜୋରାଶି ଏକତ୍ର ଉଦିତ ଦ୍ୱାଦଶ ସୂର୍ଯ୍ୟର ଆଭା ଧାରଣ କରିଥାଏ । ଯେଉଁ ଅସୁରମାନଙ୍କୁ ବ୍ରହ୍ମା, ବିଷ୍ଣୁ ଏବଂ ଇନ୍ଦ୍ର ବିନାଶ

କରିପାରନ୍ତି ନାହିଁ, ଆପଣ ସେମାନଙ୍କ ପାଇଁ ଅସମୟରେ ପ୍ରାପ୍ତ କଳ୍ପାନ୍ତକାଳ ସଦୃଶ । ଭକ୍ତମାନଙ୍କ ଦୁଃଖ ନିବାରଣ ପାଇଁ ଆଳତି ବର୍ତ୍ତିକା ପରି ଆପଣଙ୍କ କର କମଳରେ ଅପୂର୍ବ ପରଶୁ ଶୋଭାପାଉଛି, ତାହା ଅଗ୍ନିର ପ୍ରଚଣ୍ଡ ଜ୍ୱାଳା ପରି ଶୋଭାୟମାନ । ହେ ଗଣପତି ! ଭଗବାନ ଶଙ୍କରଙ୍କ ମନୋରଥ ପୂରଣ କରିବାପାଇଁ ତ୍ରିପୁରାସୁରର ସଂହାର ବେଳେ ଭଗବତୀ ଗୌରୀ ମଧ୍ୟ ଆପଣଙ୍କ ଉପାସନା କରିଥିଲେ । ବର୍ତ୍ତମାନ ମୁଁ ଆପଣଙ୍କ ଶରଣାଗତ । ଆପଣଙ୍କ ଚରଣ ଦ୍ୱୟରେ ମୁଁ କୋଟିକୋଟି ପ୍ରଣାମ ଜଣାଉଅଛି ।''

ଜୟ ନିଜତାଣ୍ଡବଡ଼ମ୍ବରମର୍ଦ୍ଦଭରନ୍ୟଞ୍ଚତେନ ଭୁବନେନ
ସମହୀଶୈଳବନେନ ପ୍ରଣମ୍ୟମାନେଶ ଗଜବଦନ ।
ଜୟ ସସୁରାସୁରମାନୁଷଭୁବନତ୍ରୟପୂଜିତାଙ୍ଘ୍ରିକମଳଯୁଗ
ବର ବିବିଧସିଦ୍ଧିନିର୍ଭରନିଧାନ କୁମ୍ଭୋପମାକାର ।
ଜୟ ଯୁଗପଦୁଦିତଚଣ୍ଡଦ୍ୱାଦଶଦିନକୃତ୍ପ୍ରଦୀପ୍ତତେଜସ୍କ
ହରହରିସୁରପତିଦୁର୍ଜୟଦିତିଜକୁଳାକାଳକଳ୍ପାନ୍ତ ।
ଜୟ ଭକ୍ତବୃଜିନବାରଣ ଲୀଳାନୀରାଜନୋଲ୍ଲୁକେନେବ
ପରଶୁବରେଣ ବିରାଜିତକରତଳକଳିତାନଳଜ୍ୱାଳ ।
ଅଭିମତସିଦ୍ଧ୍ୟୈ ଭର୍ତ୍ତୁସ୍ତ୍ରିପୁରବିଜୟେ ଗଣେଶ ଗୌର୍ଯ୍ୟାଽପି
ଯଃ ପୂଜିତୋଽସି ତଂ ତ୍ୱାଂ ଶ୍ରିତୋଽସ୍ମି ଶରଣଂ ନମସ୍ତେଽସ୍ତୁ ।

ସମଗ୍ର ଦିବସ ନିରାହାର ରହି ମୃଗାଙ୍କଦତ୍ତ ସେହି ବୃକ୍ଷର ପାଦଦେଶରେ କୁଶାସନ ଉପରେ ବସି ଭଗବାନ ବିଘ୍ନରାଜଙ୍କ ସ୍ତୁତି ପାଠ କରୁଥାନ୍ତି । ଏହିପରି ଏଗାର ଦିନ ବିତିଗଲା । ଶ୍ରୁତଧି ଏ ସମୟରେ ତାଙ୍କର ତତ୍ତ୍ୱ ନେଉଥାନ୍ତି । ଦ୍ୱାଦଶ ଦିନ ରାତ୍ରିରେ କ୍ଳାନ୍ତିଯୋଗୁଁ ତାଙ୍କ ଚକ୍ଷୁ ମୁଦ୍ରିତ ହୋଇ ଆସିଲା । ଏ ସମୟରେ ତାଙ୍କ ଆରାଧନାରେ ସନ୍ତୁଷ୍ଟ ଗଣପତି ସ୍ୱପ୍ନରେ କହିଲେ, 'ବତ୍ସ ! ମୁଁ ତୋର ଉପାସନାରେ ପ୍ରୀତ । ତୋର ମନ୍ତ୍ରୀମାନେ ଶାପମୁକ୍ତ ହୋଇ ତୋ ନିକଟରେ ଉପସ୍ଥିତ ହେବେ । ସେମାନଙ୍କ ସହିତ ଅଗ୍ରସର ହୋଇ ସମୟକ୍ରମେ ତୁ ଶଶାଙ୍କବତୀକୁ ଲାଭ କରିବୁ । ନିଜ ରାଜ୍ୟକୁ ଫେରିଯାଇ ଦୀର୍ଘକାଳ ପୃଥିବୀ ପୃଷ୍ଠରେ ରାଜତ୍ୱ କରିବାପାଇଁ ମୁଁ ତୋତେ ବରପ୍ରଦାନ କରୁଅଛି ।'

ଶ୍ରୀ ଗଣେଶ୍ୱରଙ୍କ ସ୍ୱପ୍ନାଦେଶ ପାଇ ମୃଗାଙ୍କଦତ୍ତ ପ୍ରଭାତରୁ ଶଯ୍ୟାତ୍ୟାଗ କଲେ । ଶ୍ରୁତଧିଙ୍କ ନିକଟରେ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣନା କରିବାରୁ ସେ ରାଜକୁମାରଙ୍କୁ ଧନ୍ୟ ଧନ୍ୟ

କଲେ । ମୃଗାଙ୍କଦତ୍ତ ଆନନ୍ଦିତ ମନରେ ସ୍ନାନ ସମାପନପୂର୍ବକ ଭଗବାନ ବିନାୟକଙ୍କ ପୂଜନ କରି ତାଙ୍କ ନିବାସ ସ୍ଥାନ ସେହି ବୃକ୍ଷଟିକୁ ପ୍ରଦକ୍ଷିଣ କରିବାକୁ ଲାଗିଲେ । କିଛି ସମୟ ମଧ୍ୟରେ ଫଳଗୁଡ଼ିକର ରୂପ ପରିବର୍ତ୍ତିତ ହୋଇଗଲା । ତାଙ୍କର ଦଶଜଣ ସଚିବ ସ୍ୱଶରୀର ଧାରଣ କରି ବୃକ୍ଷ ଉପରୁ ଅବତରଣ କରି ଆସିଲେ । ଏମାନଙ୍କ ମଧ୍ୟରେ ପୂର୍ବ ଛଜଣଙ୍କ ସହିତ ଥିଲେ ବ୍ୟାଘ୍ରସେନ, ସ୍ଥୂଳବାହୁ, ମେଘବଳ ତଥା ଦୃଢ଼ମୁଷ୍ଟି । ସେମାନେ ଏକତ୍ର ରାଜକୁମାରଙ୍କୁ ପ୍ରଣିପାତ କଲେ । ଦଶଜଣଯାକ ସଚିବଙ୍କୁ ପାଇଥିବାଯୋଗୁଁ ମୃଗାଙ୍କଦତ୍ତଙ୍କ ମଧ୍ୟ ଆନନ୍ଦର ସୀମା ରହିଲା ନାହିଁ । ତାଙ୍କ ଚକ୍ଷୁଯୁଗଳ ଅଶ୍ରୁସିକ୍ତ ହୋଇଉଠିଲା; ତାଙ୍କ କଣ୍ଠ ଥରିବାକୁ ଲାଗିଲା, ବାକ୍‌ସ୍ଫୂର୍ତ୍ତି ହେଲାନାହିଁ । ସେ ଜଣଜଣକୁ ବାରମ୍ବାର ନିରୀକ୍ଷଣ କରି ଆଲିଙ୍ଗନ କରିବାକୁ ଲାଗିଲେ । ସଚିବମାନେ ମଧ୍ୟ ଉପବାସକ୍ଲିଷ୍ଟ ରାଜକୁମାରଙ୍କୁ ଦର୍ଶନ କରି ବିହ୍ୱଳ ହୋଇପଡ଼ିଲେ । ସେମାନଙ୍କ ଆଖି ମଧ୍ୟ ଛଳଛଳ ହୋଇପଡ଼ିଲା । ଶ୍ରୁତଧିଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ସେମାନେ ଏପରି ଜଣେ ମିତ୍ର ଓ ସଚିବ ବତ୍ସଳ ରାଜପୁତ୍ରଙ୍କ ଆଶ୍ରୟ ଲାଭ କରିଥିବା ଯୋଗୁଁ ନିଜନିଜକୁ ଧନ୍ୟ ମନେକଲେ ।

ଏହାପରେ ମୃଗାଙ୍କଦତ୍ତ ପ୍ରସନ୍ନତାପୂର୍ବକ ସଚିବମାନଙ୍କ ସହିତ ଉକ୍ତ ସରୋବରରେ ସ୍ନାନ କରି ଉପବାସର ପାରଣା କଲେ । ଦୀର୍ଘ ବାରଦିନ ଧରି ଉପବାସ ରହିଥିବା ଯୋଗୁଁ ତାଙ୍କ ଶରୀର ଦ୍ୱିତୀୟା ଚନ୍ଦ୍ରପରି କ୍ଷୀଣ ଦେଖାଯାଉଥାଏ । ତଥାପି ସଚିବମାନଙ୍କୁ ଲାଭ କରିବାଯୋଗୁଁ କାର୍ଯ୍ୟସିଦ୍ଧିପାଇଁ ତାଙ୍କର ଆଶା ଓ ବିଶ୍ୱାସ କ୍ରମଶଃ ଦୃଢ଼ୀଭୂତ ହେଉଥାଏ ।

## ଚତୁଃତ୍ରିଂଶ ତରଙ୍ଗ

### ବ୍ୟାଘ୍ରସେନଙ୍କ ଅନୁଭୂତି

ପ୍ରସାଦ ଭୋଜନ ପରେ ସମସ୍ତେ ଆଶ୍ୱସ୍ତ ହୋଇ ସରୋବର କୂଳରେ ବିଶ୍ରାମ ନେଲେ । ସେହିଦିନ ଯେଉଁ ଚାରିଜଣ ସଚିବ ସେମାନଙ୍କ ସହିତ ସମ୍ମିଳିତ ହୋଇଥିଲେ, ସେମାନଙ୍କ ବିଯୋଗକାଳୀନ ଅନୁଭୂତି ସମ୍ପର୍କରେ ଶୁଣିବାକୁ ଉତ୍କଣ୍ଠା ପ୍ରକାଶ କରିବାଯୋଗୁଁ ପ୍ରଥମେ ବ୍ୟାଘ୍ରସେନ କହିବା ଆରମ୍ଭ କଲେ–

'ଦେବ ! ଆପଣ ପ୍ରଥମେ ମୋ ଅନୁଭୂତି ଶୁଣନ୍ତୁ । ପାରାବତର ଅଭିଶାପରେ ମୁଁ ଆପଣଙ୍କଠାରୁ ବିଚ୍ଛିନ୍ନ ହୋଇ ବହୁଦୂର ଚାଲିଗଲି । ଧୀରେଧୀରେ ମୋର ଚେତନା ଲୋପ ହେଲା । ଦୀର୍ଘ ସମୟ ପରେ ଯେତେବେଳେ ମୁଁ ଚେତା ଫେରିପାଇଲି ସେତେବେଳକୁ ରାତି ହୋଇଯାଇଥାଏ । ମୁଁ ସେହି ଅନ୍ଧକାର ମଧ୍ୟରେ କୌଣସି ଅରଣ୍ୟରେ ପଥହରା ହୋଇ ବୁଲିବାକୁ ଲାଗିଲି । ମୋର ଦିଗ ଜ୍ଞାନ ନଥିଲା । ରାସ୍ତା ମଧ୍ୟ ଦେଖାଯାଉ ନଥିଲା । ଦୁଃଖ ଏବଂ କ୍ଳାନ୍ତିରେ ରାତ୍ରିଟି ମୋପାଇଁ ଅତି ଦୀର୍ଘ ମନେହେଲା । ତଥାପି କଷ୍ଟକଷ୍ଟରେ କୌଣସିମତେ ରାତିଟି ବିତିଗଲା । ପ୍ରଭାତରୁ ସୂର୍ଯ୍ୟଙ୍କ ପ୍ରଥମ କିରଣରେ ବନଭୂମି ଆଲୋକିତ ହୋଇଉଠିଲା । ମୁଁ ନିଜ ଅପେକ୍ଷା ଆପଣଙ୍କ ଚିନ୍ତାରେ ବ୍ୟଥିତ ହୋଇପଡ଼ିଲି । ଆପଣ କ'ଣ କରୁଥିବେ, ଏକାକୀ କିପରି ସମୟ କଟାଉଥିବେ, ଆପଣଙ୍କୁ କିପରି ବା ପୁଣି ଫେରିପାଇବି, କୋଉଠି ଖୋଜିବି, ଉପାୟ ବା କ'ଣ, ଏହାହିଁ ଥିଲା ମୋ ଚିନ୍ତାର ବିଷୟ । ଶେଷରେ ଉଜ୍ଜୟିନୀ ଆମର ଲକ୍ଷ୍ୟସ୍ଥଳ ଥିବାଯୋଗୁଁ ମୁଁ ସେଠାକୁ ଯିବାପାଇଁ ନିଶ୍ଚୟ କଲି । ସେଠାରେ ରହିଥିଲେ ଶଶାଙ୍କବତୀଙ୍କୁ ପାଇବାପାଇଁ ଆପଣ ଦିନେ ନା ଦିନେ ନିଶ୍ଚୟ ସେଠାକୁ ଆସିବେ ଏବଂ ସେତେବେଳେ ଆପଣଙ୍କ ସହିତ ସାକ୍ଷାତ ହେବାର ଆଶାନେଇ ମୁଁ ଉଜ୍ଜୟିନୀ ଅଭିମୁଖରେ ଯାତ୍ରା କଲି ।

ମୋର ଦୁର୍ଦ୍ଦଶାକୁ ବଢ଼ାଇବାପାଇଁ ସେହି ନିର୍ଜଳା ବନଭୂମି ସୂର୍ଯ୍ୟକିରଣରେ ପ୍ରତପ୍ତ ଥିଲା । ମୁଁ କିପରି ଯେ ସେହି ବନଭୂମିକୁ ଅତିକ୍ରମ କଲି ତାହା ଏବେ ମଧ୍ୟ ଜାଣିପାରୁ ନାହିଁ । କୌଣସିମତେ ମୁଁ ଆସି ଏକ ସରୋବର ନିକଟରେ ପହଞ୍ଚିଲି । ସରୋବରଟି

ପ୍ରସ୍ଫୁଟିତ ପଦ୍ମପୁଷ୍ପ ରୂପକ ଚକ୍ଷୁରେ ମୋତେ ଚାହୁଁଥିବା ଏବଂ ଜଳଚର ପକ୍ଷୀମାନଙ୍କ କୂଜନରେ ମୋ ସହିତ ଆଳାପ କରୁଥିବା ମନେହେଲା । ସଜ୍ଜନ ପୁରୁଷମାନଙ୍କ ଦର୍ଶନରେ ଯେପରି ସମସ୍ତ କଷ୍ଟ ଦୂରୀଭୂତ ହୁଏ, ସେହିପରି ତରଙ୍ଗାବଳୀ ରୂପକ ହସ୍ତ ପ୍ରସାରଣ କରି ଆଶ୍ୱାସିତ କରୁଥିବା ସ୍ୱଚ୍ଛ ଜଳପୂର୍ଣ୍ଣ ପୁଷ୍କରିଣୀ ଦର୍ଶନରେ ମୋର ସମସ୍ତ କଷ୍ଟ ଓ ଦୁଃଖ ଦୂର ହେଲା ।

ମୁଁ ସରୋବରରେ ସ୍ନାନକରି କିଛି ମୃଣାଳ ଭକ୍ଷଣ କଲି । ଜଳପାନ ପରେ ଆଶ୍ୱସ୍ତ ହୋଇ ସେହି ସରୋବର କୂଳରେ ବସିଥିବା ବେଳେ ଦୃଢ଼ମୁଷ୍ଟି, ସ୍ଥୂଳବାହୁ ଓ ମେଘବଳ ସେଠାକୁ ଆସୁଥିବା ମୋର ଦୃଷ୍ଟିଗୋଚର ହେଲେ । ସେମାନେ ନିକଟକୁ ଆସି ଆପଣଙ୍କ ସମ୍ପର୍କରେ ହିଁ ମୋତେ ଜିଜ୍ଞାସା କରିବାକୁ ଲାଗିଲେ, କିନ୍ତୁ ଆମେ କେହି ଆପଣଙ୍କ ସମ୍ପର୍କରେ କିଛି ଜାଣିନଥିଲୁ । ଆମ ମନରେ ଆପଣଙ୍କ ଅମଙ୍ଗଳ ଆଶଙ୍କା ଜାଗ୍ରତ ଥିଲା । ଆପଣଙ୍କ ବିରହ ସହ୍ୟ କରି ନପାରି ଆମେ ସେହି ସରୋବର ମଧ୍ୟରେ ଶରୀର ତ୍ୟାଗ କରିବାର ନିଷ୍ପତ୍ତି ନେଲୁ ।

ଏହି ସମୟରେ ମହର୍ଷି ଦୀର୍ଘତପାଙ୍କର ପୁତ୍ର ମହାତପା ସ୍ନାନ କରିବାନିମିତ୍ତ ସେଠାରେ ଆସି ପହଞ୍ଚିଲେ । ଜଟାଧାରୀ ସେହି ତେଜସ୍ୱୀ ବ୍ରାହ୍ମଣକୁମାରଙ୍କୁ ଦେଖିଲେ ମନେହେଉଥିଲା, ସତେ ଯେପରି ଅଗ୍ନିଦେବ ପୁଣି ଖାଣ୍ଡବ ବନକୁ ଦହନ କରିବାପାଇଁ ନିଜର ଜାଜ୍ୱଲ୍ୟମାନ ରୂପ ପ୍ରକଟନ କରିଛନ୍ତି । ମୁନିପୁତ୍ର ମୃଗଚର୍ମ ପରିଧାନ କରି ବାମହସ୍ତରେ କମଣ୍ଡଳୁ ଏବଂ ଦକ୍ଷିଣ ହସ୍ତରେ ରୁଦ୍ରାକ୍ଷମାଳା ଧାରଣ କରିଥାନ୍ତି । ଏହାଙ୍କ ସହିତ ଆସିଥିବା ହରିଣଶାବକଗୁଡ଼ିକ ନିଜନିଜର କୋମଳ ଶୃଙ୍ଗରେ ସ୍ନାନଘାଟର ମୃତ୍ତିକା ସବୁ ଖନନ କରୁଥାନ୍ତି । ମୃଗଶାବକ ତୁଲ୍ୟ ଅନ୍ୟ କେତେଜଣ ବାଳକ ମଧ୍ୟ ମୁନିକୁମାରଙ୍କ ସହିତ ସ୍ନାନ କରିବାପାଇଁ ଆସିଥିବା ଆମର ଦୃଷ୍ଟିଗୋଚର ହେଲା ।

ଆମକୁ ସରୋବର ମଧ୍ୟରେ ଆତ୍ମବିସର୍ଜନ କରିବାପାଇଁ ଉଦ୍ୟତ ହେଉଥିବା ଦେଖି ମହାତପା ଆମ ନିକଟରେ ଆସି ପହଞ୍ଚିଲେ । ସଜ୍ଜନମାନେ ସ୍ୱଭାବତଃ କରୁଣାର୍ଦ୍ର ଏବଂ ଅକାରଣ ବାନ୍ଧବ ହୋଇଥାନ୍ତି ।

**କରୁଣାର୍ଦ୍ରା ହି ସର୍ବସ୍ୟ ସନ୍ତୋଽକାରଣବାନ୍ଧବାଃ ।**

ମୁନିକୁମାର ଆମକୁ ଲକ୍ଷ୍ୟକରି କହିଲେ, 'ଆପଣମାନେ କାପୁରୁଷ ପରି ଏପ୍ରକାର ପାପକାର୍ଯ୍ୟ କରିବା ଉଚିତ ନୁହେଁ । ଯେଉଁମାନେ କାପୁରୁଷ ସେମାନେ ବିପଦରେ ଅନ୍ଧୀଭୂତ ହୋଇ ବିପତ୍ତି ଗର୍ତ୍ତରେ ପଡ଼ିଥାନ୍ତି । କିନ୍ତୁ ଯେଉଁମାନେ ଉତ୍ତମ ମାର୍ଗର ସନ୍ଧାନ ପାଇଛନ୍ତି ଏବଂ ଯେଉଁମାନେ ବିବେକଶୀଳ, ଚକ୍ଷୁଷ୍ମାନ୍ ସେମାନେ ଅବଶ୍ୟ ନିଜର

ଅଭିଳଷିତ ବସ୍ତୁ ପ୍ରାପ୍ତ କରିଥାନ୍ତି । ଆପଣମାନେ ଭବ୍ୟ ଆକୃତି ସମ୍ପନ୍ନ । ତେଣୁ ନିଶ୍ଚିତଭାବେ ଆପଣମାନଙ୍କର କଲ୍ୟାଣ ହେବ । ଆପଣମାନଙ୍କର ଦୁଃଖରେ ମୁଁ ବିଶେଷ ଦୁଃଖିତ । ତେଣୁ ଦୁଃଖର କାରଣ ପ୍ରକାଶ କରିବା ହୁଅନ୍ତୁ ।'

ମୁନିକୁମାରଙ୍କଦ୍ୱାରା ଆଶ୍ୱାସିତ ହୋଇ ମୁଁ ସମସ୍ତ ବୃତ୍ତାନ୍ତ ତାଙ୍କ ନିକଟରେ ବ୍ୟକ୍ତ କଲି । ସେହି ଭବିଷ୍ୟଦ୍ରଷ୍ଟା ମହାତପା ବିଭିନ୍ନ ଉଦାହରଣ ଦେଇ ଆମ୍ଭମାନଙ୍କୁ ବୋଧ କଲେ । ଆମେ ଆତ୍ମହତ୍ୟା କରିବା ଚିନ୍ତାରୁ ନିବୃତ୍ତ ହେଲୁ । ସ୍ନାନ ଶେଷରେ ସେ ଆମମାନଙ୍କର ଅତିଥି ସତ୍କାର କରିବାର ଅଭିଳାଷ ପ୍ରକାଶ କଲେ । ଆମେ ତାଙ୍କ ସହିତ ନିକଟବର୍ତ୍ତୀ ଦୀର୍ଘତପାଙ୍କ ଆଶ୍ରମରେ ଯାଇ ଉପସ୍ଥିତ ହେଲୁ । ଆଶ୍ରମର ବେଦିକା ଉପରେ ଥିବା ଉନ୍ନତ ବୃକ୍ଷଗୁଡ଼ିକ ମଧ୍ୟ ଶାଖାରୂପକ ବାହୁ ଉତ୍ତୋଳନ କରି ଏବଂ ସୂର୍ଯ୍ୟଙ୍କର ପ୍ରଖର କିରଣ ପାନ କରି ତପସ୍ୟା କରୁଥିବା ଭ୍ରମ ସୃଷ୍ଟି କରୁଥାନ୍ତି । ମୁନିପୁତ୍ର ଆଶ୍ରମରେ ଆମମାନଙ୍କର ହସ୍ତପଦ ପ୍ରକ୍ଷାଳନ କରି ଏକ ଉଚ୍ଚ ଆସନ ଉପରେ ନେଇ ବସାଇଲେ । ନିକଟସ୍ଥ ଏକ ବୃକ୍ଷ ନିକଟକୁ ଯାଇ ସେ ଭିକ୍ଷା କରିବା ମାତ୍ରେ ତାଙ୍କ ଭିକ୍ଷା ପାତ୍ର ସ୍ୱୟଂଚ୍ୟୁତ ଫଳରାଶିରେ ପୂର୍ଣ୍ଣ ହୋଇଗଲା । ସେ ସେଗୁଡ଼ିକୁ ଆମପାଇଁ ନେଇ ଆସିଲେ । ଅମୃତ ତୁଲ୍ୟ ସେହି ଫଳଗୁଡ଼ିକୁ ଆହାର କରି ଆମେ ଅତ୍ୟନ୍ତ ତୃପ୍ତି ଲାଭ କଲୁ ।

ଏହିପରି ଦିନଟି ବିତିଗଲା । ସୂର୍ଯ୍ୟ ସମୁଦ୍ର ମଧ୍ୟରେ ଯାଇ ଲମ୍ଫ ଦେଲେ । ଫଳରେ ଯେଉଁ ଜଳବିନ୍ଦୁ ସବୁ ଉପରକୁ ବିଚ୍ଛୁରିତ ହେଲା ସେ ସବୁ ଆକାଶରେ ତାରା ରୂପରେ ସୁଶୋଭିତ ହେଲେ । ସୂର୍ଯ୍ୟଙ୍କ ଅଦର୍ଶନରେ ଚନ୍ଦ୍ରଙ୍କର ଯେପରି ବୈରାଗ୍ୟ ଜାତ ହେଲା । ସେ ଜ୍ୟୋତ୍ସ୍ନାରୂପକ ଶ୍ୱେତ ବସ୍ତ୍ର ପରିଧାନ କରି ପୂର୍ବାଚଳ ଶିଖରସ୍ଥିତ ତପୋବନର ଆଶ୍ରୟ ନେଲେ । ମହାତପାଙ୍କ ଆଶ୍ରମବାସୀମାନେ ସଂନ୍ଧ୍ୟାବନ୍ଦନା ଶେଷକରି ଏକ ସ୍ଥାନରେ ଯାଇ ଏକତ୍ର ହେଲେ । ଆମେ ସେମାନଙ୍କ ଦର୍ଶନ ନିମିତ୍ତ ସେଠାରେ ଯାଇ ଉପସ୍ଥିତ ହେଲୁ । ଆମେ ପ୍ରଣାମ କରୁଥିବା ଦେଖି ସେମାନେ ଆମର ଯଥୋଚିତ ସତ୍କାର କଲେ । ଆମ୍ଭମାନଙ୍କର ପରିଚୟ ଜାଣିବାପାଇଁ ଆଗ୍ରହ ପ୍ରକାଶ କରନ୍ତେ ମହର୍ଷିପୁତ୍ର ଆମେ ଆଶ୍ରମରେ ପହଞ୍ଚିବା ପର୍ଯ୍ୟନ୍ତ ସମସ୍ତ ବୃତ୍ତାନ୍ତ ସେମାନଙ୍କୁ କହି ଶୁଣାଇଲେ ।

ସମସ୍ତ ବୃତ୍ତାନ୍ତ ଶୁଣିବା ପରେ ସେମାନଙ୍କ ମଧ୍ୟରେ ଥିବା କଣ୍ୱ ନାମକ ଜଣେ ଜ୍ଞାନବୃଦ୍ଧ ତପସ୍ୱୀ ଆମକୁ ଲକ୍ଷ୍ୟକରି କହିଲେ, 'ତୁମେମାନେ ତ ବୀରପୁରୁଷ ପରି ମନେହେଉଛ । କାପୁରୁଷସୁଲଭ ଏପରି ଅନୁଚିନ୍ତା ତୁମ ମନକୁ ଆସିଲା କିପରି ? ଯେଉଁମାନେ ସତ୍‌ପୁରୁଷ ସେମାନେ କଦାପି ବିପତ୍ତିରେ ଧୈର୍ଯ୍ୟ ହରାନ୍ତି ନାହିଁ, ଐଶ୍ୱର୍ଯ୍ୟ ଲାଭ କରି ଗର୍ବିତ ହୁଅନ୍ତି ନାହିଁ ଏବଂ କୌଣସି ପରିସ୍ଥିତିରେ ଉତ୍ସାହ ପରିତ୍ୟାଗ କରନ୍ତି

ନାହିଁ । ଯେଉଁମାନେ ମହାପୁରୁଷ ସେମାନେ କଷ୍ଟରୁ କଷ୍ଟତର ପରିସ୍ଥିତିରେ ମଧ୍ୟ ଧୈର୍ଯ୍ୟ ଧାରଣପୂର୍ବକ ଉତ୍ତମ କାର୍ଯ୍ୟ ହିଁ କରିଥାନ୍ତି । ଏହାଦ୍ୱାରା ହିଁ ମହତ୍ ପୁରୁଷାର୍ଥ ଲାଭ ହୋଇଥାଏ ।

ଆପଦ୍ୟଭଗ୍ନଧୈର୍ଯ୍ୟତ୍ୱଂ ସଂପଦ୍ୟନଭିମାନିତା,
ଯଦୁତ୍ସାହସ୍ୟ ଚାତ୍ୟାଗସ୍ତଦ୍ଧି ସତ୍ପୁରୁଷବ୍ରତମ୍ ।
ମହାନ୍ତଶ୍ଚ ମହାନ୍ତ୍ୟେବ କୃଚ୍ଛ୍ରାଣ୍ୟୁତ୍ତୀର୍ଯ ଧୈର୍ଯତଃ,
ମହତୋଽର୍ଥାନ୍ ସମାସାଦ୍ୟ ମହତ୍ଶବ୍ଦମବାପ୍ନୁବନ୍ ।

ତୁମେ ବର୍ତ୍ତମାନ ସୁନ୍ଦରସେନଙ୍କ କଥା ଶୁଣ । ସେ ମନ୍ଦାରବତୀଙ୍କପାଇଁ କେତେ କଷ୍ଟ ସହ୍ୟ କରିନଥିଲେ ।' ଏହାକହି ମହର୍ଷି କଣ୍ୱ ଉପସ୍ଥିତ ସମସ୍ତ ମୁନି ଏବଂ ଆମ୍ଭମାନଙ୍କୁ ଶୁଣାଇବାପାଇଁ କଥାଟି ଆରମ୍ଭ କଲେ ।

## ସୁନ୍ଦରସେନ୍ ଓ ମନ୍ଦାରବତୀ କଥା

ଉତ୍ତର ଦିଗକୁ ଅଳଙ୍କୃତ କରୁଥିବା ନିଷଦ ନାମରେ ଏକ ରାଜ୍ୟ ଅଛି । ପ୍ରାଚୀନ କାଳରେ ସେଠାରେ ଅଳକା ବୋଲି ଏକ ନଗରୀ ଥିଲା । ନଗରବାସୀମାନେ ସମସ୍ତ ସମୃଦ୍ଧିର ଅଧିକାରୀ ଓ ସୁଖୀ ଥିଲେ । କେବଳ ରତ୍ନନିର୍ମିତ ଦ୍ୱୀପଗୁଡ଼ିକୁ ସେଠାରେ କଦାପି ବିଶ୍ରାମ ମିଳୁନଥିଲା ।

ସେଠାରେ ମହାସେନ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ଥିଲେ ନିଜର ନାମ ଅନୁରୂପ ଗୁଣଶାଳୀ । ଦେବସେନାପତି କାର୍ତ୍ତିକେୟଙ୍କ ପରି ସେ ନିଜର ଅଦ୍ଭୁତ ଓ ପ୍ରଚଣ୍ଡ ପରାକ୍ରମ ବଳରେ ପ୍ରବଳ ଶକ୍ତିଶାଳୀ ଶତ୍ରୁମାନଙ୍କୁ ପରାଜୟ କରିଥିଲେ । ତାଙ୍କ ପ୍ରଧାନମନ୍ତ୍ରୀ ଥିଲେ ଗୁଣପାଳିତ । ସେ ରାଜାଙ୍କ ଅନୁରୂପ ପରାକ୍ରମୀ ଏବଂ ଶେଷନାଗଙ୍କ ପରି ସମଗ୍ର ପୃଥିବୀକୁ ଧାରଣ କରିବାରେ ସମର୍ଥ ଥିଲେ । ସମସ୍ତ ଶତ୍ରୁ ପରାଜିତ ହେବାପରେ ରାଜା ମନ୍ତ୍ରୀଙ୍କ ଉପରେ ରାଜ୍ୟଭାର ସମର୍ପଣ କରିଦେଇଥିଲେ । ସମୟକ୍ରମେ ରାଜାଙ୍କ ନିଜ ରାଣୀଙ୍କ ଗର୍ଭରୁ ଏକ ପୁତ୍ରସନ୍ତାନ ଜାତ ହେଲା । ରାଜା ପୁତ୍ରର ନାମ ରଖିଲେ ସୁନ୍ଦରସେନ । ସେ ବୟସରେ ବାଳକ ଥିଲେ ମଧ୍ୟ ଗୁଣରେ ବାଳକ ନଥିଲେ । ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟ ଲକ୍ଷ୍ମୀ ସତେ ଯେପରି ସ୍ୱୟମ୍ବରରେ ତାଙ୍କୁ ପତି ରୂପରେ ବରଣ କରିଥିଲେ । ରାଜକୁମାରଙ୍କ ସହିତ ଶୈଶବରୁ ହିଁ ତାଙ୍କର ପାଞ୍ଚଜଣ ମନ୍ତ୍ରୀଙ୍କୁ ଲାଳନପାଳନ କରାଯାଉଥିଲା । ସେମାନେ ମଧ୍ୟ ବୟସ, ବୀରତା ଏବଂ ବୁଦ୍ଧିରେ ରାଜକୁମାରଙ୍କ ଅନୁରୂପ ଥିଲେ । ଏହି ମନ୍ତ୍ରୀମାନଙ୍କ ନାମ ଥିଲା ଚନ୍ଦ୍ରପ୍ରଭ, ଭୀମଭୁଜ,

ବ୍ୟାଘ୍ର ପରାକ୍ରମ, ବୀରବିକ୍ରମଶକ୍ତି ଏବଂ ଦୃଢ଼ବୁଦ୍ଧି । ସେମାନେ ସମସ୍ତେ ଥିଲେ ପରାକ୍ରମୀ, ବଳବୁଦ୍ଧି ସମନ୍ୱିତ, କୁଳୀନ ତଥା ସ୍ୱାମୀଭକ୍ତ । ସମସ୍ତେ ପକ୍ଷୀମାନଙ୍କ ଭାଷା ବୁଝିପାରୁଥିଲେ ।

ଏମାନଙ୍କ ଗହଣରେ ରାଜକୁମାର ସୁନ୍ଦରସେନ କ୍ରମଶଃ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲେ । ସମସ୍ତେ ରାଜଗୃହରେ ହିଁ ବାସ କରୁଥାନ୍ତି । ବୟଃପ୍ରାପ୍ତ ହେବାରୁ ରାଜା ରାଜକୁମାରଙ୍କ ବିବାହପାଇଁ କନ୍ୟାର ଅନୁସନ୍ଧାନ କଲେ, କିନ୍ତୁ ଅନୁରୂପ କନ୍ୟାଟିଏ ଖୋଜି ପାଇବା ସମ୍ଭବ ନହେବାରୁ ସୁନ୍ଦରସେନ ଦୀର୍ଘଦିନ ପର୍ଯ୍ୟନ୍ତ ଅବିବାହିତ ରହିଥାନ୍ତି । ସେ ଦିନେ ନିଜର ମନ୍ତ୍ରୀମାନଙ୍କ ସହିତ ବସି ଚିନ୍ତା କଲେ ଯେ ଯୁଦ୍ଧରେ ପ୍ରଚଣ୍ଡ ଶୌର୍ଯ୍ୟ, ନିଜ ବାହୁବଳ ଦ୍ୱାରା ଅର୍ଜିତ ସମ୍ପତ୍ତି ଏବଂ ଅନୁରୂପ ଗୁଣଶାଳିନୀ ପତ୍ନୀଦ୍ୱାରା ହିଁ ମନୁଷ୍ୟ ପ୍ରତିଷ୍ଠା ଲାଭ କରିଥାଏ, ଅନ୍ୟଥା ଜୀବନ ମୂଲ୍ୟହୀନ । ଏହିପରି ଚିନ୍ତାକରି ସେ ଏକଦା ନିଜର ପାଞ୍ଚସଚିବ ଏବଂ ସେନାବାହିନୀ ସହିତ ମୃଗୟା ପାଇଁ ନଗର ମଧ୍ୟରୁ ନିଷ୍କ୍ରାନ୍ତ ହେଲେ । ନଗରଦ୍ୱାରରେ ଦୂରଦେଶାଗତ ଜଣେ ପ୍ରୌଢ଼ ପରିବ୍ରାଜିକା କାତ୍ୟାୟନୀ ରାଜପୁତ୍ରଙ୍କୁ ଦେଖି ତାଙ୍କ ପ୍ରତି ସ୍ୱତଃ ଆକୃଷ୍ଟ ହୋଇପଡ଼ିଲା । ରାଜପୁତ୍ର ରୋହିଣୀ ରହିତ ଚନ୍ଦ୍ରମା କିମ୍ବା ରତି ରହିତ କନ୍ଦର୍ପ ପରି ତା'ର ମନେହେଲେ । ଅନୁଗାମୀମାନଙ୍କଠାରୁ ରାଜକୁମାରଙ୍କ ପରିଚୟ ଲାଭ କରି ସେ ବିଧାତାର କୃତିତ୍ୱକୁ ଧନ୍ୟ ମନେକଲା । ନିକଟକୁ ଯାଇ ସେ ତାଙ୍କୁ ପ୍ରଣାମ କରି କହିଲା, 'ରାଜକୁମାରଙ୍କର ଜୟ ହେଉ ।' କିନ୍ତୁ ରାଜପୁତ୍ର ସଖାମାନଙ୍କ ସହିତ ବାର୍ତ୍ତାଳାପରେ ନିମଜ୍ଜିତ ଥିବାଯୋଗୁଁ ତା' କଥା ଶୁଣିପାରିଲେ ନାହିଁ । ସେ ଆଗକୁ ଅଗ୍ରସର ହୋଇ ଚାଲିଯିବା ଦେଖି ପରିବ୍ରାଜିକାଙ୍କ ମନରେ ଦୁଃଖ ଓ କ୍ରୋଧ ଜାତ ହେଲା । ସେ ଉଚ୍ଚସ୍ୱରରେ ସମସ୍ତଙ୍କୁ ଶୁଣାଇ କହିଲେ, 'ରେ ରାଜପୁତ୍ର, ତୁ ମୋର ଆଶୀର୍ବାଦ ପର୍ଯ୍ୟନ୍ତ ଗ୍ରହଣ କଲୁନାହିଁ । ପୃଥିବୀରେ ଏପରି କୌଣସି ରାଜା ବା ରାଜକୁମାର ନାହାଁନ୍ତି ଯେଉଁମାନେ ମୋର ଆଦର କରନ୍ତି ନାହିଁ । ଯଦି ନିଜର ଯୌବନ ଓ କୌଳିନ୍ୟପାଇଁ ତୋର ଏତେ ଅଭିମାନ, ତେବେ ତୁ ହଂସଦ୍ୱୀପର ରାଜକନ୍ୟା ମନ୍ଦାରବତୀକୁ ନିଜର ପତ୍ନୀରୂପେ ଲାଭ କଲେ ତୋର ତ ଅଭିମାନର ସୀମା ରହିବ ନାହିଁ । ସେ କନ୍ୟା ବର୍ତ୍ତମାନ ପୃଥିବୀର ସର୍ବଶ୍ରେଷ୍ଠ ସୁନ୍ଦରୀ ଓ ଗୁଣବତୀ । ତୁ ତ ସେତେବେଳେ ଇନ୍ଦ୍ରଙ୍କର ମଧ୍ୟ ଅବମାନନା କରିବୁ । ମନୁଷ୍ୟମାନଙ୍କୁ ବା ପଚାରେ କିଏ ?'

ତାପସୀଙ୍କ ଏହି କଥାରେ ସୁନ୍ଦରସେନ କୌତୂହଳୀ ହୋଇଉଠିଲେ । ସେ ନିକଟକୁ ଯାଇ ବିନମ୍ର ଭାବେ କ୍ଷମା ପ୍ରାର୍ଥନା କରି ଶାନ୍ତ କଲେ । ତାପସୀଙ୍କଠାରୁ ସମସ୍ତ କଥା ଜାଣିବାପାଇଁ ନିଜ ଭୃତ୍ୟମାନଙ୍କ ସହିତ ତାଙ୍କୁ ମନ୍ତ୍ରୀ ବିକ୍ରମଶକ୍ତିଙ୍କ ଗୃହକୁ ବିଶ୍ରାମପାଇଁ ପଠାଇଦେଲେ ।

କିଛି ସମୟ ପରେ ରାଜକୁମାର ମୃଗୟାରୁ ଫେରିଆସିଲେ । ତାଙ୍କର ସଂନ୍ଧ୍ୟାକାଳୀନ କୃତ୍ୟ ସମାପ୍ତ ହେଲା । ପରିବ୍ରାଜିକା ମଧ ପାନଭୋଜନରେ ଆପ୍ୟାୟିତ ହୋଇ କ୍ଳାନ୍ତି ଅପନୋଦନ କରିସାରିଥିଲେ । ରାଜକୁମାର ତାଙ୍କୁ ନିଜ ନିକଟକୁ ଡକାଇ ଆଣି ବିନମ୍ର ଭାବରେ ଜିଜ୍ଞାସା କଲେ, 'ଭଗବତି, ଆପଣ ଆଜି ଯେଉଁ ମନ୍ଦାରବତୀ ନାମକ କନ୍ୟାର କଥା କହିଲେ, ସେ କିଏ ? ତାର ପରିଚୟ ଦେଇ ମୋର କୌତୂହଳ ଦୂର କରନ୍ତୁ ।'

ତପସ୍ୱିନୀ ରାଜକୁମାରଙ୍କ ଜିଜ୍ଞାସାର ଉତ୍ତରରେ କହିଲେ, 'ଶୁଣ ! ତୀର୍ଥାଟନରେ ବାହାରି ମୁଁ ବିଭିନ୍ନ ଦ୍ୱୀପ ସହିତ ସମଗ୍ର ପୃଥିବୀ ପରିକ୍ରମା କରୁଛି । ଏହିପରି ଭ୍ରମଣ କରୁଥିବା ବେଳେ ମୁଁ ସଂଯୋଗବଶତଃ ଥରେ ଯାଇ ହଂସଦ୍ୱୀପରେ ପହଞ୍ଚିଲି । ସେଠାରେ ରାଜା ମନ୍ଦାରଦେବଙ୍କ କନ୍ୟା ସହିତ ମୋର ସାକ୍ଷାତ ହେଲା । କନ୍ୟାଟି ନନ୍ଦନବନର ଶୋଭାକୁ ଉପହାସ କରୁଛି । ସେ କୌଣସି ଦେବପୁତ୍ରଙ୍କ ଉପଭୋଗ୍ୟା । ଯେଉଁମାନଙ୍କର ଅଶେଷ ପୁଣ୍ୟ ନାହିଁ ସେମାନଙ୍କ ପାଇଁ ତା'ର ଦର୍ଶନଲାଭ କରିବା ମଧ ସମ୍ଭବ ନୁହେଁ । ତାର ଶରୀରର ରୂପକାନ୍ତି ଏପରି ମନୋରମ ଯେ ତାକୁ ଦେଖିବା ମାତ୍ରେ ଦର୍ଶକ ମନରେ ଆପେ ଆପେ ଅନୁରାଗ ଜାଗ୍ରତ ହେବ । ମନେହୁଏ ବିଧାତା ଅଧିକ ଅମୃତ ସହିତ ଚନ୍ଦ୍ରକୁ ଗୋଳି ତା'ର ଶରୀର ନିର୍ମାଣ କରିଛନ୍ତି । ପୃଥିବୀ ପୃଷ୍ଠରେ ସେ ଅସାମାନ୍ୟା । ତା'ର ଯୋଗ୍ୟ ପତି ଅନ୍ୟତ୍ର ବିରଳ । ମୋର ମନେହେଉଛି ରୂପ ସମ୍ପଦରେ ତୁମେ ହିଁ ତା'ର ସମକକ୍ଷ ହେବ । ଯେଉଁମାନେ ତାକୁ ଦେଖିନାହାଁନ୍ତି, ମୋ ମତରେ, ସେମାନଙ୍କ ଚକ୍ଷୁ ଓ ଜନ୍ମ ନିଷ୍ଫଳ ।'

ତପସ୍ୱିନୀଙ୍କଠାରୁ ଏହା ଶୁଣି ରାଜକୁମାର କନ୍ୟାଟିକୁ ଦେଖିବାର ଉପାୟ ସମ୍ପର୍କରେ ପୁଣି ଜିଜ୍ଞାସା କଲେ । ତାଙ୍କ କୌତୂହଳ ଦମନ କରିବାପାଇଁ ପରିବ୍ରାଜିକା କହିଲେ, 'ତା ପ୍ରତି ମୁଁ ବିଶେଷ ଭାବେ ଆକୃଷ୍ଟ ହୋଇପଡ଼ିବା ଯୋଗୁଁ ମୁଁ ତାର ଏକ ଚିତ୍ରପଟ ଅଙ୍କନ କରିଥିଲି । ଏବେ ମଧ ତାହା ମୋର ଝୁଲିମୁଣା ମଧରେ ରହିଛି । ଯଦି ତୁମର ଆଗ୍ରହ ହେଉଛି ତାକୁ ଦେଖିପାର ।' ରାଜକୁମାର ସାଗ୍ରହ ଦୃଷ୍ଟିରେ ଚାହିଁ ରହିବାରୁ ତପସ୍ୱିନୀ ଚିତ୍ରପଟଟି ବାହାର କରି ତାଙ୍କ ନିକଟରେ ଟେକି ଧରିଲେ । ଯଦିଓ ତାହା ଏକ ଚିତ୍ରିତ ମୂର୍ତ୍ତି ଥିଲା ତଥାପି କନ୍ୟାଟିର ଅଦ୍ଭୁତ ରୂପରାଶି ଦର୍ଶନ କରି ରାଜକୁମାର ସୁନ୍ଦରସେନ ଚିତ୍ରାର୍ପିତ ପରି ରହିଗଲେ । ତାଙ୍କର ସମଗ୍ର ଶରୀର ରୋମାଞ୍ଚିତ ହୋଇଉଠିଲା । ମନେହେଲା ସତେଯେପରି କାମଦେବଙ୍କ ପୁଷ୍ପଶରଗୁଡ଼ିକ ତାଙ୍କ ଶରୀରରେ ବିଦ୍ଧ ହୋଇଯାଉଛି । ଧୀରେଧୀରେ ତାଙ୍କ ଚେତନା ଶକ୍ତି ଲୋପ ପାଇ

ଆସିଲା । ସେ ନା କିଛି ଦେଖିପାରିଲେ, ନା ଶୁଣିପାରିଲେ, ନା କିଛି କହିପାରିଲେ । କେବଳ ଚିତ୍ରପଟ ମଧ୍ୟରେ ତାଙ୍କର ସମସ୍ତ ଇନ୍ଦ୍ରିୟ ବିଲୀନ ହୋଇଗଲେ ।

ରାଜକୁମାରଙ୍କ ଏପରି ପରିସ୍ଥିତି ଦେଖି ମନ୍ତ୍ରୀମାନେ ତପସ୍ୱିନୀଙ୍କୁ ଅନୁରୋଧ କଲେ, 'ଆର୍ଯ୍ୟେ ! ଆମେ ଆପଣଙ୍କ ପରୀକ୍ଷା ନେବାପାଇଁ ଚାହୁଁନାହୁଁ । ତଥାପି ଆପଣ ଯଦି ଦୟାକରି ଏହି ଚିତ୍ରପଟ ଉପରେ ଆମ ରାଜକୁମାରଙ୍କ ଏକ ଚିତ୍ର ଅଙ୍କନ କରିଦିଅନ୍ତେ ତେବେ ଆପଣଙ୍କ ଏହି ଅପୂର୍ବ ଚିତ୍ରାଙ୍କନ କୌଶଳ ସମ୍ପର୍କରେ ଆମର କିଛି ଧାରଣା ହୁଅନ୍ତା ।' ମନ୍ତ୍ରୀମାନଙ୍କ କଥାରେ ପରିବ୍ରାଜିକା ରାଜକୁମାରଙ୍କ ଏକ ଜୀବନ୍ତ ପ୍ରତିକୃତି ଅଙ୍କନ କରିଦେଲେ । ଚିତ୍ରଟିକୁ ଦେଖି ଉପସ୍ଥିତ ସମସ୍ତେ ତପସ୍ୱିନୀଙ୍କ କଳାକୌଶଳର ଭୂୟସୀ ପ୍ରଶଂସା କଲେ । ରାଜକୁମାରଙ୍କ ଚିତ୍ରଟିକୁ ଦେଖିଲେ ଯେହେତୁ ସେ ସ୍ୱୟଂ ରାଜକୁମାର ବୋଲି ହିଁ ପ୍ରତୀୟମାନ ହୁଅନ୍ତି, ତେଣୁ ମନ୍ଦାରବତୀଙ୍କ ଚିତ୍ରଟି ମଧ୍ୟ ତାଙ୍କ ରୂପରାଶିର ଅନୁରୂପ ହୋଇଥିବ ବୋଲି ସମସ୍ତଙ୍କର ଧାରଣା ହେଲା । ସୁନ୍ଦରସେନ ମଧ୍ୟ ଉଭୟ ଚିତ୍ରକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ପରିବ୍ରାଜିକାଙ୍କଠାରୁ ଉଭୟ ଚିତ୍ର ଗ୍ରହଣ କରି ତାଙ୍କର ଉପଯୁକ୍ତ ସମ୍ମାନ କଲେ । କିନ୍ତୁ ତାପସୀ ଗୋଟିଏ ସ୍ଥାନରେ ରହିବାପାଇଁ ପ୍ରସ୍ତୁତ ନଥିବା ଯୋଗୁଁ ସେ ତାଙ୍କୁ ବିଦାୟ ଦେବାପାଇଁ ବାଧ୍ୟ ହେଲେ ।

ତପସ୍ୱିନୀ ଚାଲିଯିବା ପରେ ସୁନ୍ଦରସେନ ମନ୍ଦାରବତୀଙ୍କ ହୃଦୟହାରିଣୀ ଚିତ୍ରପଟଟି ନେଇ ନିଜ ଶୟନ ପ୍ରକୋଷ୍ଠରେ ପ୍ରବେଶ କଲେ । ସେ ଚିତ୍ରପଟଟିର ଗୋଟିଏ ପରେ ଗୋଟିଏ ଅଙ୍ଗକୁ ସ୍ପର୍ଶ କରି କହୁଥାନ୍ତି 'ଏହା ମୁଖ ନା ନିଷ୍କଳଙ୍କ ଚନ୍ଦ୍ର ? ଏହା ସ୍ତନଯୁଗଳ ନା କାମଦେବଙ୍କ ରାଜ୍ୟାଭିଷେକ ପାଇଁ ସ୍ଥାପିତ କଳଶ ଯୁଗଳ ? ଉଦରର ତ୍ରିବଳୀ ସତେ କ'ଣ ରୂପ ସମୁଦ୍ରର ଲହରୀ କି ? ଏହା ନିତମ୍ବ ନା ରତି ଦେବୀଙ୍କ ବିଳାସ ଶଯ୍ୟା ?' ଏହିପରି ପ୍ରଳାପ କରିକରି ସୁନ୍ଦରସେନ ଶଯ୍ୟା ଉପରେ ପଡ଼ିଥାନ୍ତି । ଦିନ ପରେ ଦିନ ବିତିଗଲା । ସେ ଖାଇବା ପିଇବା ଭୁଲିଗଲେ । କାମଜ୍ୱରରେ ପୀଡ଼ିତ ହୋଇ ତାଙ୍କ ଶରୀର କ୍ଷୀଣ ହୋଇଗଲା । ପିତା ମହାସେନ ଓ ମାତା ଶଶିପ୍ରଭା ପୁତ୍ରର ଏ ଅବସ୍ଥା ଦେଖି ଶୋକାକୁଳ ହୋଇପଡ଼ିଲେ । ପୁତ୍ରର ସଚିବମାନଙ୍କଠାରୁ ସେମାନେ ଜାଣିବାକୁ ପାଇଲେ ଯେ ହଂସଦ୍ୱୀପର ରାଜକନ୍ୟା ମନ୍ଦାରବତୀ ହିଁ ପୁତ୍ରର ଅସୁସ୍ଥତାର କାରଣ । ମହାସେନ ପୁତ୍ରକୁ ଆଶ୍ୱାସନା ଦେଇ କହିଲେ, 'ପୁତ୍ର ! ତୁମର ଏହି ଅଭିଷଙ୍ଗ ଏକାନ୍ତ ଉଚିତ ହୋଇଛି । ତାକୁ ଗୋପନ କରି ରଖିବାର କିଛି କାରଣ ନାହିଁ । ମନ୍ଦାରବତୀ ପ୍ରକୃତରେ କନ୍ୟାରତ୍ନଟିଏ । ସବୁ ଦୃଷ୍ଟିରୁ ସେ ତୁମର ଯୋଗ୍ୟା । ତା'ର ପିତା ମନ୍ଦାରଦେବ ମଧ୍ୟ ମୋର ପରମମିତ୍ର । ଯାହା ଉଚିତ ଏବଂ ଯେଉଁ କାର୍ଯ୍ୟ ଦୂତଦ୍ୱାରା ହେବା ସମ୍ଭବ ଏଥିପାଇଁ ତୁମେ ଏତେଟା ସନ୍ତାପ କରିବାର ଆବଶ୍ୟକତା କ'ଣ ?'

ପୁତ୍ରଙ୍କୁ ଏହିପରି ଆଶ୍ୱାସନା ଦେଇ ରାଜା ମହାସେନ ରାଜା ମନ୍ଦାରସେନଙ୍କ ନିକଟକୁ କନ୍ୟା ମନ୍ଦାରବତୀର ବିବାହ ନିମିତ୍ତ ସୁରତଦେବ ନାମକ ଜଣେ ଦୂତକୁ ହଂସଦ୍ୱୀପ ପ୍ରେରଣ କଲେ । ପରିବ୍ରାଜିକା ଅଙ୍କନ କରିଥିବା ନିଜ ପୁତ୍ରର ପ୍ରତିକୃତିଟିକୁ ମଧ୍ୟ ସେ ଦେବାପାଇଁ ଭୁଲିଲେ ନାହିଁ । ଦୂତ ପ୍ରଥମେ ଆସି ସମୁଦ୍ର ତଟସ୍ଥିତ ରାଜା ମହେନ୍ଦ୍ରାଦିତ୍ୟଙ୍କ ରାଜଧାନୀ ଶଶାଙ୍କ ପୁରରେ ପହଞ୍ଚିଲା । ସେଠାରୁ ଯାଉଥିବା କୌଣସି ନାବିକଙ୍କ ଜାହାଜ ସାହାଯ୍ୟରେ କିଛିଦିନ ମଧ୍ୟରେ ହଂସଦ୍ୱୀପରେ ଯାଇ ଉପସ୍ଥିତ ହେଲା । ରାଜଦ୍ୱାରରେ ଦ୍ୱାରପାଳମାନଙ୍କ ଦ୍ୱାର ସୂଚିତ କରି ସେ ରାଜାଙ୍କୁ ସାକ୍ଷାତ କରିବା ସହିତ ଆଣିଥିବା ଉପହାର ସବୁ ପ୍ରଦାନ କରି ସମଗ୍ର ବୃତ୍ତାନ୍ତ କହି ଶୁଣାଇଲା । ଶେଷରେ ସେ କହିଲା, 'ମହାରାଜ ! ରାଜା ମହାସେନ ଆପଣଙ୍କୁ ଏହା କହିବାପାଇଁ କହିଛନ୍ତି ଯେ ତାଙ୍କ ପୁତ୍ର ସୁନ୍ଦରସେନପାଇଁ ଆପଣ ନିଜ କନ୍ୟା ମନ୍ଦାରବତୀଙ୍କୁ ଦେବେ । କାତ୍ୟାୟନୀ ନାମ୍ନୀ ଜଣେ ପରିବ୍ରାଜିକା ଆପଣଙ୍କ କନ୍ୟାର ଏକ ଚିତ୍ରପଟ ଅଙ୍କନ କରିଥିଲା । ସେ ଆମ ରାଜ୍ୟକୁ ଆସି ଚିତ୍ରପଟଟି ଦେଖାଇବା ପରେ ସୁନ୍ଦରସେନଙ୍କ ପାଇଁ ମନ୍ଦାରବତୀ ଯୋଗ୍ୟା ବିବେଚିତ ହେବା ଯୋଗୁଁ ରାଜା ସେହି ଚିତ୍ରପଟ ଉପରେ ତାଙ୍କ ପୁତ୍ରର ମଧ୍ୟ ଗୋଟିଏ ଚିତ୍ର ଅଙ୍କନ କରିବାପାଇଁ ଅନୁରୋଧ କଲେ । ତାର ଅଙ୍କିତ ଚିତ୍ରଟି ମଧ୍ୟ ଆପଣଙ୍କ ଅବଲୋକନପାଇଁ ନେଇଆସିଛି । ଆମ ରାଜପୁତ୍ର ଅପ୍ରତିମ ରୂପବାନ୍ । ସେ ନିଜର ଯୋଗ୍ୟ କନ୍ୟା ନ ପାଇଲେ ବିବାହ କରିବେ ନାହିଁ ବୋଲି ସ୍ଥିର କରିଛନ୍ତି । ଆପଣଙ୍କ କନ୍ୟା କେବଳ ତାଙ୍କର ଏକମାତ୍ର ଯୋଗ୍ୟା ମନେହେଉଛନ୍ତି । ଆପଣ ଚିତ୍ରପଟଟି ଗ୍ରହଣ କରନ୍ତୁ ଏବଂ ବସନ୍ତ ସହିତ ବାସନ୍ତୀଲତାର ମିଳନପାଇଁ ପ୍ରବନ୍ଧ କରନ୍ତୁ ।'

ଦୂତର କଥା ଶୁଣି ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ମହାରାଣୀ ଓ ମନ୍ଦାରବତୀଙ୍କୁ ମଧ୍ୟ ସେଠାକୁ ଡକାଇ ଆଣି ସେମାନଙ୍କୁ ଚିତ୍ରପଟଟି ଦେଖାଇଲେ । ତାଙ୍କ କନ୍ୟାପାଇଁ ପୃଥିବୀରେ ଯେ ଯୋଗ୍ୟ ବରପାତ୍ର ନାହିଁ, ଏପରି ଯେଉଁ ଦୁଃଖ ତାଙ୍କର ଥିଲା, ତାହା ଚିତ୍ରପଟ ଦର୍ଶନରେ ଦୂରୀଭୂତ ହେଲା । ରାଜା କହିଲେ, 'ବିଧାତା ଯଦି ଏହି ରାଜକୁମାର ସହିତ ଆମ କନ୍ୟାର ବିବାହ କରାନ୍ତି ତେବେ ତାଙ୍କର ନିର୍ମାଣ କୌଶଳ ସାର୍ଥକ ହେବ । ଏହାଙ୍କ ବିନା ମନ୍ଦାରବତୀ ଏବଂ ମନ୍ଦାରବତୀ ବ୍ୟତୀତ ସୁନ୍ଦରସେନ ଶୋଭା ପାଇବେ ନାହିଁ । ପଦ୍ମ ବିନା ହଂସ ଏବଂ ହଂସ ବିନା ପଦ୍ମର ସୌନ୍ଦର୍ଯ୍ୟ ବା କେଉଁଠି !'

ରାଜାଙ୍କ ସମ୍ମତିକୁ ରାଣୀ ସର୍ବାନ୍ତଃକରଣରେ ସମର୍ଥନ କଲେ । ପିତାମାତାଙ୍କ ସମର୍ଥନ ଏବଂ ସୁନ୍ଦରସେନଙ୍କ ରୂପ ମନ୍ଦାରବତୀଙ୍କ ମନରେ କନ୍ଦର୍ପ ପୀଡ଼ା ଜାତକଲା । ତାଙ୍କର ପ୍ରସନ୍ନ ଚକ୍ଷୁ ଯୁଗଳ ଚିତ୍ରପଟ ଉପରେ ସ୍ଥିର ହୋଇଗଲା । ସେ ବିନା ନିଦ୍ରାରେ

ଶୟନ କରିଥିବା ପରି ନିଶ୍ଚଳ ହୋଇପଡ଼ିଲେ । କନ୍ୟାର ଏ ପ୍ରକାର ଅବସ୍ଥା ଦେଖି ରାଜା କନ୍ୟାଦାନର ପ୍ରତିଶ୍ରୁତି ଦେଇ ଦୂତର ଆଦର ଅଭ୍ୟର୍ଥନା କଲେ ।

ପରଦିନ କୁମାରସେନ ନାମକ ବ୍ରାହ୍ମଣଙ୍କୁ ସୁରତଦେବଙ୍କ ସହିତ ସେ ମହାସେନଙ୍କ ନିକଟକୁ ପ୍ରେରଣ କଲେ । ଦୂତମାନଙ୍କୁ କହିଲେ, ''ତୁମେ ଶୀଘ୍ର ଯାଇ ଅଳକାର ରାଜା ମହାସେନଙ୍କୁ ମୋର ଏହି ସନ୍ଦେଶ ପ୍ରଦାନ କର । 'ଆପଣଙ୍କ ସୌହାର୍ଦ୍ଦରେ ମୁଁ ଅତ୍ୟନ୍ତ ପ୍ରୀତ । ଆପଣଙ୍କ ପୁତ୍ର ପାଇଁ ମୁଁ ମୋର କନ୍ୟା ମନ୍ଦାରବତୀକୁ ପ୍ରଦାନ କରିବାପାଇଁ ପ୍ରତିଶ୍ରୁତିବଦ୍ଧ । ଆପଣ ପୁତ୍ର ସହିତ ଆସି କନ୍ୟାକୁ ଗ୍ରହଣ କରିବେ ନା ମୁଁ କନ୍ୟାକୁ ଆପଣଙ୍କ ନିକଟକୁ ପଠାଇବି, ଜାଣିଲେ ତଦନୁଯାୟୀ କାର୍ଯ୍ୟାନୁଷ୍ଠାନ କରିବି' ।''

ରାଜାଙ୍କ ସନ୍ଦେଶ ଘେନି ଉଭୟ ଦୂତ ନୌକାରୋହଣ ପୂର୍ବକ ଶଶାଙ୍କପୁରରେ ଯାଇ ଉପନୀତ ହେଲେ । ସେଠାରୁ ପଦବ୍ରଜରେ ସେମାନେ ଅଳକାପୁରୀ ତୁଲ୍ୟ ଅଳକା ନଗରୀରେ ଯାଇ ପହଞ୍ଚିଲେ । ଉଚିତ ଶିଷ୍ଟାଚାର ସହିତ ସେମାନେ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେବାରୁ ରାଜା ସେମାନଙ୍କ ଆଦର ସତ୍କାର କରି ତାଙ୍କଠାରୁ ରାଜା ମନ୍ଦାର ସେନଙ୍କ ସନ୍ଦେଶ ଲାଭ କଲେ । ରାଜାଙ୍କର ଚିନ୍ତା ଦୂରୀଭୂତ ହେଲା । ସେ ଉଭୟ ଦୂତଙ୍କୁ ବିଭିନ୍ନ ଉପହାରଦ୍ୱାରା ସନ୍ତୁଷ୍ଟ କରି ଆଗନ୍ତୁକ ଦୂତର ବିଶ୍ରାମପାଇଁ ଉପଯୁକ୍ତ ବ୍ୟବସ୍ଥା କରାଇଲେ ।

ଦୂତଠାରୁ କନ୍ୟାର ଜନ୍ମନକ୍ଷତ୍ର ସଂଗ୍ରହ କରି ରାଜା ଗଣକମାନଙ୍କଦ୍ୱାରା ବିବାହ ତିଥି ନିର୍ଦ୍ଦିଷ୍ଟ କଲେ । ତିନିମାସ ପରେ କାର୍ତ୍ତିକ ଶୁକ୍ଳ ପଞ୍ଚମୀ ଦିନ ଲଗ୍ନ ସ୍ଥିରିକୃତ ହେଲା । ସେ ଏକ ପତ୍ର ଲେଖି କୁମାରସେନ ଏବଂ ନିଜର ଅନ୍ୟ ଏକ ଦୂତ ଚନ୍ଦ୍ରସ୍ୱାମୀଙ୍କ ଦ୍ୱାରା ମନ୍ଦାରସେନଙ୍କ ନିକଟକୁ ପ୍ରେରଣ କଲେ । ପତ୍ରଟିରେ ଲେଖାଥିଲା ଯେ ପୂର୍ବୋକ୍ତ ଲଗ୍ନରେ ବିବାହ ସ୍ଥିରୀକୃତ ହେଲା । ସେ ନିଜେ ପୁତ୍ର ସହିତ ଯାଇ ପୁତ୍ରବଧୂକୁ ଗ୍ରହଣ କରିବେ ।

ଦୂତମାନେ ହଂସଦ୍ୱୀପରେ ପହଞ୍ଚି ରାଜାଙ୍କ ହସ୍ତରେ ପତ୍ରଟି ଅର୍ପଣ କଲେ । ଦୂତମାନଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ରାଜାଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ଆଗନ୍ତୁକ ଦୂତକୁ ବିଭିନ୍ନ ଉପହାରଦ୍ୱାରା ସମ୍ମାନିତ କରି ନିଜ ସ୍ୱାମୀଙ୍କ ନିକଟକୁ ପଠାଇଦେଲେ । ଦୂତ ଅଳକା ନଗରୀରେ ପହଞ୍ଚି କାର୍ଯ୍ୟସିଦ୍ଧିର ସନ୍ଦେଶ ପ୍ରଦାନ କରନ୍ତେ ଉଭୟ ପକ୍ଷ ବିବାହ ଦିବସର ଅପେକ୍ଷାରେ ରହିଲେ ।

ଏଣେ ହଂସଦ୍ୱୀପରେ ମନ୍ଦାରବତୀ ସୁନ୍ଦରସେନଙ୍କ ଚିତ୍ରପଟ ଦେଖିବା ମୁହୂର୍ତ୍ତରୁ ତାଙ୍କ ପ୍ରତି ବିଶେଷଭାବେ ଆସକ୍ତ ହୋଇପଡ଼ିଥାନ୍ତି । ବିବାହ ତିଥି ତାଙ୍କୁ ବହୁ ଦୂର ବୋଲି

ମନେହେଲା । ଏତେଦିନର ଅପେକ୍ଷା ସହ୍ୟ କରିବା ତାଙ୍କପାଇଁ ଥିଲା ଦୁଷ୍କର । ପ୍ରିୟ ମିଳନପାଇଁ ଉତ୍ସୁକତା ତାଙ୍କ କନ୍ଦର୍ପ ବେଦନାକୁ ଗୁରୁତର କରିବାକୁ ଲାଗିଲା । ଚନ୍ଦନ ପ୍ରଲେପ ତାଙ୍କପାଇଁ ହେଲା ଜ୍ୱାଳାମୟ । କମଳ ପତ୍ରର ଶଯ୍ୟାକୁ ସେ ଅଗ୍ନିତପ୍ତ ଲୌହ ଚଟାଣ ବୋଲି ମନେକଲେ । ଚନ୍ଦ୍ରଙ୍କର ଶୀତଳ କିରଣ ତାଙ୍କପାଇଁ ଦାବାଗ୍ନିର ଜ୍ୱଳନ୍ତ ଶିଖାପରି ମନେହେଲା । ସେ ବିରହ ବ୍ରତ ପାଳନ କରି ଉପବାସରେ ମୌନ ରହିଲେ । ସଖୀମାନେ ବାରମ୍ବାର ପ୍ରଶ୍ନ କରନ୍ତେ ସେ ଧୀର ତଥା ଅସ୍ଫୁଟ ସ୍ୱରରେ କହିଲେ, 'ସଖି ! ମୋର ବିବାହ ଦିବସ ବହୁ ଦୂରରେ । ପ୍ରିୟ ରାଜକୁମାରଙ୍କ ବ୍ୟତୀତ ଏତେଦିନ କଟାଇବା ମୋ ପକ୍ଷରେ ସମ୍ଭବ ନୁହେଁ । ତାଙ୍କ ରାଜ୍ୟ ବହୁଦୂରରେ, ବିବାହର ଅବଧି ଅତ୍ୟନ୍ତ ଦୀର୍ଘ ଏବଂ ବିଧାତାର ଗତି ବଡ଼ ବିଚିତ୍ର । ଏହା ମଧ୍ୟରେ କାହାର କ'ଣ ହେବ କହିବା କଷ୍ଟକର । ତେଣୁ ମୃତ୍ୟୁବରଣ କରିବା ହିଁ ମୋ ପକ୍ଷରେ ଶ୍ରେୟସ୍କର ।' ଏହିପରି କହୁଥିବା ବେଳେ କନ୍ଦର୍ପର ନବମ ଦଶା ଆସି ତାଙ୍କୁ ଗ୍ରାସ କଲା । ସେ ମୂର୍ଚ୍ଛିତା ହୋଇପଡ଼ିଲେ ।

ରାଜା ଓ ରାଣୀ କନ୍ୟାର ଏ ଅବସ୍ଥା ଦେଖି ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କଲେ । ରାଜା ନିଜର ମତ ପ୍ରକାଶ କରି କହିଲେ, 'ଅଳକା ନରପତି ମୋର ପରମମିତ୍ର । ମନ୍ଦାରବତୀ ଏଠାରେ ବିଳମ୍ବ ସହ୍ୟ କରିବାପାଇଁ ଅସମର୍ଥା । ତେଣୁ ତାକୁ ଯଥାଶୀଘ୍ର ସେଠାକୁ ପଠାଇଦେବା ଉଚିତ ହେବ ବୋଲି ମୁଁ ଭାବୁଛି । ନିଜର ପତି ନିକଟରେ ରହିଲେ ସେ ହୁଏତ ବିଳମ୍ବ ସହ୍ୟ କରିବାପାଇଁ ସମର୍ଥ ହେବ ।' ରାଜାଙ୍କ ପ୍ରସ୍ତାବକୁ ରାଣୀ ଓ ମନ୍ତ୍ରୀମାନେ ମଧ୍ୟ ସମର୍ଥନ କଲେ ।

ନିଜର ନିଷ୍ପତ୍ତି ଜଣାଇ ରାଜା କନ୍ୟାକୁ ଆଶ୍ୱାସିତ କରିବା ସଙ୍ଗେସଙ୍ଗେ ତାକୁ ଅଳକାପୁରୀ ପଠାଇବାର ସମସ୍ତ ଆୟୋଜନ କଲେ । ଏକ ନୂତନ ପୋତ ନିର୍ମିତ ହେଲା । ଶୁଭ ମୁହୂର୍ତ୍ତରେ ଧନସମ୍ପଦ, ପରିଚର ପରିଚାରିକାଙ୍କ ସହିତ ମନ୍ଦାରବତୀକୁ ହଂସଦ୍ୱୀପରୁ ଅଳକା ନେବାପାଇଁ ବ୍ୟବସ୍ଥା କରାଗଲା । ରାଜା ନିଜର ବିଶ୍ୱସ୍ତ ମନ୍ତ୍ରୀ ବିନୀତମତୀଙ୍କୁ ମଧ୍ୟ କନ୍ୟା ସହିତ ପ୍ରେରଣ କଲେ । ମାତାଙ୍କଦ୍ୱାରା ବିବାହ କାଳୋଚିତ ମଙ୍ଗଳକାର୍ଯ୍ୟ ସବୁ ସମାହିତ ହେଲା । ରାଜକୁମାରୀ ମନ୍ଦାରବତୀ ସମୁଦ୍ରର ନୀଳ ଜଳରାଶି ମଧ୍ୟରେ ଆଗକୁ ଅଗ୍ରସର ହେଲେ ।

ସମୁଦ୍ର ଯାତ୍ରାରେ କିଛିଦିନ ବିତିଗଲା । ଦିନେ ହଠାତ୍ ଚତୁର୍ଦ୍ଦିଗର ଆକାଶ ମେଘାଚ୍ଛନ୍ନ ହୋଇପଡ଼ିଲା । ମେଘ ଗର୍ଜନ ଏବଂ ବାୟୁର ପ୍ରଚଣ୍ଡ ବେଗ ସମୁଦ୍ରକୁ ବିକ୍ଷୁବ୍ଧ କଲା । ମେଘରୂପକ ଦସ୍ୟୁ ବାତ୍ୟାରୂପକ ଫୁତ୍କାର ସହିତ ବର୍ଷାଧାରାରୂପକ ବାଣବର୍ଷଣ କରିବାକୁ ଲାଗିଲା । ମୁହୂର୍ତ୍ତକ ମଧ୍ୟରେ ଜାହଜଟି ବାୟୁର ପ୍ରଚଣ୍ଡ ବେଗରେ ବହୁ ଦୂରକୁ

ଚାଲିଯାଇ ଖଣ୍ଡବିଖଣ୍ଡ ହୋଇପଡ଼ିଲା । ଜାହାଜ ସହିତ ପରିଚାରିକା, ବିନୀତମତି ଏବଂ ଧନଭଣ୍ଡାର ମଧ୍ୟ ସମୁଦ୍ରର ଅଥଳ ଜଳରାଶି ମଧ୍ୟରେ ନିମଜ୍ଜିତ ହେଲେ । କିନ୍ତୁ ସମୁଦ୍ର ରାଜକନ୍ୟାଙ୍କୁ ନିଜର ଲହରୀରୂପକ ହସ୍ତଦ୍ୱାରା ଉତ୍ତୋଳନ କରି ନିକଟସ୍ଥ ବେଳାଭୂମିର ଅରଣ୍ୟ ମଧ୍ୟରେ ନେଇ ନିକ୍ଷେପ କଲା । କାହିଁ ସମୁଦ୍ରରେ ନିମଜ୍ଜନ ଏବଂ କାହିଁ ବେଳାଭୂମିରେ ଶୟନ । ବାସ୍ତବରେ ଭବିତବ୍ୟପାଇଁ କୌଣସି କର୍ମ ଅସାଧ୍ୟ ନୁହେଁ ।

ଭବିତବ୍ୟସ୍ୟ ନାସାଧ୍ୟଂ ଦୃଶ୍ୟତେ ବତ ଦୃଶ୍ୟତାମ୍ ।

ସେହି ପରିସ୍ଥିତିରେ ରାଜକୁମାରୀ ନିର୍ଜନ ବନ ମଧ୍ୟରେ ଏକାକିନୀ ତ୍ରସ୍ତ ଓ ବିହ୍ୱଳ ଭାବରେ ଜଳପୂର୍ଣ୍ଣ ସାଗର ମଧ୍ୟରୁ ଉଠିଆସି ଦୁଃଖସାଗର ମଧ୍ୟରେ ନିମଜ୍ଜିତ ହେଲେ । 'ମୁଁ କୁଆଡ଼େ ଯାଉଥିଲି, କେଉଁଠି ଆସି ପହଞ୍ଚିଲି ! ମୋର ପରିଚାରୀ ଓ ବିନୀତମତିଙ୍କର କଣ ହେଲା, ମୋର ଏହି ଦଶା କାହିଁକି ଓ କିପରି ହୋଇଗଲା ? ଏବେ ମୁଁ ଅଭାଗିନୀ କୁଆଡ଼େ ଯିବି ? କ'ଣ କରିବି ? ହେ ବିଧାତା ! ତୁ ମୋତେ ସମୁଦ୍ର ମଧ୍ୟରୁ କାହିଁକି ରକ୍ଷା କଲୁ ? ହା ତାତ ! ହା ମାତା, ହା ଆର୍ଯ୍ୟପୁତ୍ର ! ଦେଖ, ତୁମକୁ ନପାଇ ମୁଁ କିପରି ସଙ୍କଟରେ ଆସି ପଡ଼ିଛି । ମୋତେ ରକ୍ଷା କରିବା ପାଇଁ ତୁମେ କାହିଁକି ଆସୁନାହଁ ।'

ଏହିପରି ବିଳାପ ଓ ପ୍ରଳାପ କରି ମନ୍ଦାରବତୀ ସେଠାରେ ବସିଥାନ୍ତି । ତାଙ୍କ ଚକ୍ଷୁଯୁଗଳରୁ ଅବିରତ ଅଶ୍ରୁଧାରା ବହୁଥାଏ । ଅଶ୍ରୁ ବିନ୍ଦୁଗୁଡ଼ିକ ହାରଛିନ୍ନ ମୋତି ପରି ଗୋଟିକ ପରେ ଗୋଟିଏ ତଳେ ପଡ଼ୁଥାଏ ।

ସେଠାରୁ କିଛି ଦୂରରେ ମହର୍ଷି ମତଙ୍ଗଙ୍କ ଆଶ୍ରମ । ସେ ନିଜର ବାଳବ୍ରହ୍ମଚାରିଣୀ କନ୍ୟା ଯମୁନା ସହିତ ସମୁଦ୍ରସ୍ନାନ ପାଇଁ ଆସିଥାନ୍ତି । ମନ୍ଦାରବତୀଙ୍କ ବିଳାପଧ୍ୱନି ତାଙ୍କର କର୍ଣ୍ଣଗୋଚର ହେଲା । ସେ ଦୟାପରବଶ ହୋଇ ବିଳାପଧ୍ୱନିର ଅନୁସରଣରେ ଆସି ରାଜକୁମାରୀଙ୍କ ନିକଟରେ ପହଞ୍ଚିଲେ । ଯୂଥଭ୍ରଷ୍ଟ ହରିଣୀ ପରି ମନ୍ଦାରବତୀ ଚଞ୍ଚଳ ନେତ୍ରରେ ଇତସ୍ତତଃ ଚାହୁଁଥାନ୍ତି । ମହର୍ଷି ମଧୁର ସ୍ୱରରେ ତାଙ୍କର ପରିଚୟ ଏବଂ ସେଠାରେ ଆସି ପହଞ୍ଚିବାର ବୃତ୍ତାନ୍ତ ଜିଜ୍ଞାସା କଲେ । ମହର୍ଷିଙ୍କ ଦିବ୍ୟରୂପ ଏବଂ କୋମଳ ମଧୁର ସ୍ୱର ରାଜକୁମାରୀଙ୍କ ମନରେ କିଛି ସାହସ ସଞ୍ଚାର କଲା । ସେ ଲଜ୍ଜାବନତ ମୁଖରେ ନିଜର ସମସ୍ତ ବୃତ୍ତାନ୍ତ ଧୀରେଧୀରେ ବ୍ୟକ୍ତ କଲେ । ମହର୍ଷି ମତଙ୍ଗ ରାଜକୁମାରୀଙ୍କ ଦୁଃଖରେ ସମବେଦନା ପ୍ରକାଶ କରି କିଛି ସମୟ ସମାଧିସ୍ଥ ହେଲେ । ତପୋବଳରେ ସେ ଅତୀତ ଓ ଭବିଷ୍ୟତକୁ ଜାଣିପାରି ସେହିପରି କୋମଳ ସ୍ୱରରେ କହିଲେ, 'ପୁତ୍ରି ! ଆଉ ଦୁଃଖ କର ନାହିଁ । ଧୈର୍ଯ୍ୟ ଧର । ଶିରୀଷ ପୁଷ୍ପ ତୁଲ୍ୟ ତୁମର କୋମଳ ଅଙ୍ଗକୁ

ନିଶ୍ଚିତ ଭାବେ ଦୁଃଖରାଶି କଷ୍ଟ ଦେଉଛନ୍ତି । ଅବଶ୍ୟ ବିପତ୍ତି କିଏ କୋମଳ, କିଏ କଠୋର ତାହା ବିବେଚନା କରେ ନାହିଁ ।

ଅପେକ୍ଷନ୍ତେ ହି ବିପଦଃ କିମ୍ ପେଲବମପେଲବମ୍ ?

ତୁମେ ଅତି ଶୀଘ୍ର ନିଜର ଅଭିଳକ୍ଷିତ ପତି ଲାଭ କରିବ । ବର୍ତ୍ତମାନ ଅନତିଦୂରରେ ଥିବା ମୋର ଆଶ୍ରମକୁ ଚାଲ । ସେଠାରେ ମୋର ଏହି କନ୍ୟା ସହିତ କିଛି ସମୟ ବିତାଇବାକୁ ହେବ । ତୁମେ ଆମ ଆଶ୍ରମକୁ ନିଜ ଘର ବୋଲିହିଁ ମନେକର ।'

ମହର୍ଷି ଏହିପରି ସାନ୍ତ୍ୱନା ଦେଇ ସ୍ନାନ ସମାପନ୍ନ କଲେ ଏବଂ କନ୍ୟା ସହିତ ତାଙ୍କୁ ନେଇ ଆଶ୍ରମ ଅଭିମୁଖରେ ଅଗ୍ରସର ହେଲେ । ପତିସଙ୍ଗମ ଅଭିଳାଷିଣୀ ମନ୍ଦାରବତୀ ମୁନିକନ୍ୟା ଯମୁନାଙ୍କ ପରି ସଂଯମ ବ୍ରତ ଆଚରଣ ପୂର୍ବକ ସେଠାରେ ମହର୍ଷିଙ୍କ ସେବା କରି କାଳକ୍ଷେପଣ କରିବାକୁ ଲାଗିଲେ ।

ଏହା ମଧ୍ୟରେ, ସୁନ୍ଦରସେନ ମଧ୍ୟ ମନ୍ଦାରବତୀଙ୍କୁ ଲାଭ କରିବାପାଇଁ ଦିନ ଗଣୁଥାନ୍ତି । ଗଭୀର ଉତ୍କଣ୍ଠା ଯୋଗୁଁ ତାଙ୍କ ଶରୀର କ୍ଷୀଣ ଓ ଦୁର୍ବଳ ହୋଇଯାଇଥାଏ । ଚଣ୍ଡପ୍ରଭ ପ୍ରଭୃତି ମିତ୍ର ତାଙ୍କୁ ସାନ୍ତ୍ୱନା ଦେଉଥାନ୍ତି । ପ୍ରତୀକ୍ଷାର ଦିନଗୁଡ଼ିକ ଧୀରେଧୀରେ ଶେଷ ହୋଇ ଆସିଲା । ବିବାହ ଦିବସ ନିକଟତର ହେବାରୁ ପିତା ହଂସଦ୍ୱୀପ ଯିବା ନିମିତ୍ତ ଆୟୋଜନ କରିବାକୁ ଲାଗିଲେ । ଶୁଭଦିନ ଓ ଶୁଭମୁହୂର୍ତ୍ତ ଦେଖି ସୁନ୍ଦରସେନ ନିଜର ବିପୁଳ ସେନାବାହିନୀ ସହିତ ମଙ୍ଗଳ କୃତ୍ୟ ସମାପନ ପୂର୍ବକ ଯାତ୍ରା ଆରମ୍ଭ କଲେ । ନିଜ ସଚିବମାନଙ୍କ ସହିତ ଆନନ୍ଦ ଓ ଉଦ୍‌ବିଗ୍ନ ମନରେ ସେ କିଛିଦିନ ମଧ୍ୟରେ ଯାଇ ସମୁଦ୍ର ତଟର ଆଭରଣ ସ୍ୱରୂପ ଶଶାଙ୍କପୁର ନଗରରେ ଉପସ୍ଥିତ ହେଲେ । ରାଜା ମହେନ୍ଦ୍ରାଦିତ୍ୟ ତାଙ୍କ ଶୁଭାଗମନ ବାର୍ତ୍ତା ଶୁଣି ନିଜେ ପଥ ମଧ୍ୟରୁ ତାଙ୍କୁ ନଗର ମଧ୍ୟକୁ ପାଛୋଟି ନେଲେ । ହସ୍ତୀପୃଷ୍ଠରେ ରାଜକୁମାରଙ୍କୁ ଦେଖି ନଗରବାସିନୀ ରମଣୀଗଣ ପ୍ରଚଣ୍ଡ ବାତ୍ୟା ବିକ୍ଷୁବ୍ଧ କମଳିନୀ ବନତୁଲ୍ୟ ଚଞ୍ଚଳ ହୋଇଉଠିଲେ । ନଗରବାସୀଙ୍କୁ ଆନନ୍ଦ ବିତରଣ କରି କରି ରାଜକୁମାର ସୁନ୍ଦରସେନ ଯାଇ ରାଜଭବନରେ ପ୍ରବେଶ କଲେ । ରାଜା ମହେନ୍ଦ୍ରାଦିତ୍ୟ ତାଙ୍କର ପ୍ରଭୂତ ସତ୍କାର କରିବା ସହିତ ନିଜେ ତାଙ୍କ ସହିତ ଯିବାପାଇଁ ପ୍ରତିଶ୍ରୁତି ଦେଲେ । ସୁନ୍ଦରସେନଙ୍କୁ ସେହି ରାତ୍ରିଟି ସେଠାରେ ବିତାଇବାକୁ ପଡ଼ିଲା । ତାଙ୍କ ମନରେ ଆନନ୍ଦ ଓ ଦ୍ୱନ୍ଦ୍ୱ । ସେ ଭାବୁଥାନ୍ତି, 'ସତେ କ'ଣ ସମୁଦ୍ର ପାର କରି ସେ ମନ୍ଦାରବତୀଙ୍କୁ ପାଇପାରିବେ ? ନବବିବାହିତା ମନ୍ଦାରବତୀ ସ୍ୱାଭାବିକ ପ୍ରେମ, ଲଜ୍ଜା, ଭୟ ଓ ଶୀଳବଶତଃ ତାଙ୍କ ପ୍ରତି କି ପ୍ରକାର ଆଚରଣ ପ୍ରଦର୍ଶନ

କରିବେ ? ମୁଁ ତାଙ୍କୁ ଆଲିଙ୍ଗନ କରିବା ବେଳେ ତାଙ୍କର ନାହିଁ ନାହିଁ ଶବ୍ଦ କ'ଣ ମୋର କର୍ଣ୍ଣଗୋଚର ହେବ ?' ଏହିପରି ବିଭିନ୍ନ ଚିନ୍ତାରେ ରାତ୍ରିଟି ବିନିଦ୍ରଭାବେ ହିଁ କଟିଗଲା ।

ପ୍ରଭାତରୁ ସୁନ୍ଦରସେନ ନିଜର ସେନାବାହିନୀକୁ ସେଠାରେ ବିଶ୍ରାମ କରିବାପାଇଁ ଛାଡ଼ିଦେଇ ମହେନ୍ଦ୍ରାଦିତ୍ୟଙ୍କ ସହିତ ସମୁଦ୍ରତଟରେ ଯାଇ ପହଞ୍ଚିଲେ । ରାଜା ମହେନ୍ଦ୍ରାଦିତ୍ୟ ନିଜ ମନ୍ତ୍ରୀମାନଙ୍କ ସହିତ ଭୋଜନ ସାମଗ୍ରୀ ଓ ଜଳପୂର୍ଣ୍ଣ ଏକ ବିଶାଳ ନୌକା ଆରୋହଣ କଲେ । ରାଜକୁମାର ସୁନ୍ଦରସେନ ମଧ୍ୟ ଅନ୍ୟ ଏକ ଜାହାଜରେ ଆବଶ୍ୟକୀୟ ଖାଦ୍ୟ, ପାନୀୟ ଓ ସ୍ୱଳ୍ପସଂଖ୍ୟକ ପରିଚର ସହିତ ଯାତ୍ରା ଆରମ୍ଭ କଲେ । ଜାହାଜ ଦୁଇଟି ସମୁଦ୍ରର ନୀଳ ଜଳରାଶି ଉପରେ ପତାକା ସମୂହକୁ ହିଲ୍ଲୋଳିତ କରି ଦକ୍ଷିଣ ପଶ୍ଚିମ ଦିଗକୁ ଅଗ୍ରସର ହେଲେ । ଏହିପରି ସମୁଦ୍ର ମଧ୍ୟରେ ଦୁଇ ତିନିଦିନ ବିତିଗଲା ।

ଚତୁର୍ଥ ଦିନ ଅଚାନକ ଭାବେ ପ୍ରଚଣ୍ଡ ବାତ୍ୟା ସମୁଦ୍ରର ଜଳରାଶିକୁ ବିକ୍ଷୁବ୍ଧ କଲା । ସମୟର ଗତି ସହିତ ମନୁଷ୍ୟର ମନୋଭାବ ମଧ୍ୟ ଏହିପରି ପରିବର୍ତ୍ତିତ ହୋଇଯାଇଥାଏ । ନାବିକମାନେ ପାଲଗୁଡ଼ିକୁ ଓହ୍ଲାଇ ଆଣିଲେ । କୃତାଞ୍ଜଳି ପୁଟରେ ସାଗରକୁ ବିଭିନ୍ନ ଧନରତ୍ନ ଦ୍ୱାରା ଅର୍ଘ୍ୟଦାନ ଦେଲେ । ଜୀବନର ଆଶା ପରିତ୍ୟାଗ କରି ବୃହଦାକାର ଶିଳାଖଣ୍ଡଗୁଡ଼ିକୁ ଜାହାଜରୁ ପ୍ରଲମ୍ବିତ ରଜ୍ଜୁଦ୍ୱାରା ବନ୍ଧନ କରି ଆତ୍ମରକ୍ଷାପାଇଁ ଚେଷ୍ଟା କଲେ । କିନ୍ତୁ ବାତ୍ୟାର ପ୍ରକୋପ ଜାହାଜ ଦୁଇଟିକୁ ଯୁଦ୍ଧ କ୍ଷେତ୍ର ମଧ୍ୟସ୍ଥ ଆହତ ହାତୀ ପରି ଇତସ୍ତତଃ ଘୂର୍ଣ୍ଣିତ କରିବାକୁ ଲାଗିଲା । ଏସବୁ ଦେଖି ସୁନ୍ଦରସେନ ଧୈର୍ଯ୍ୟଧାରଣ ପୂର୍ବକ ରାଜା ମହେନ୍ଦ୍ରାଦିତ୍ୟଙ୍କ ଜାହାଜରେ ଯାଇ ପହଞ୍ଚିଲେ । ସେ ବିନୀତ ସ୍ୱରରେ 'ମୋର ପାପ ଯୋଗୁଁ କେବଳ ଆପଣମାନେ ଅସମୟରେ ଏପରି ପ୍ରଚଣ୍ଡ ବାତ୍ୟାଗ୍ରସ୍ତ ହୋଇଛନ୍ତି । ଆପଣମାନଙ୍କର ଏପରି ଦୁର୍ଦ୍ଦଶା ଦେଖିବା ମୋ ପକ୍ଷରେ ସମ୍ଭବ ନୁହେଁ । ଏଣୁ ସମୁଦ୍ରକୁ ଶାନ୍ତ କରିବାପାଇଁ ମୁଁ ନିଜକୁ ସମର୍ପଣ କରୁଛି ।' କହି ନିଜ ଉତ୍ତରୀୟକୁ କମରରେ ଦୃଢ଼ ଭାବରେ ବାନ୍ଧି ସମୁଦ୍ର ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ଏଥିରେ କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ଚନ୍ଦ୍ରପ୍ରଭ ପ୍ରଭୃତି ତାଙ୍କର ପାଞ୍ଚ ସଚିବ ଏବଂ ରାଜା ମହେନ୍ଦ୍ରାଦିତ୍ୟ ମଧ୍ୟ ସମୁଦ୍ର ମଧ୍ୟକୁ ଡେଇଁ ପଡ଼ିଲେ । କିଛି ସମୟ ସମୁଦ୍ରରେ ସନ୍ତରଣ କଲାପରେ ସେମାନଙ୍କ ମାନସିକ ଅସ୍ଥିରତା ସ୍ଥିର ହେଲା । କିନ୍ତୁ ଉତ୍ତାଳ ଲହରୀ ବେଗରେ ସେମାନେ ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଲେ ।

କ୍ଷଣକ ମଧ୍ୟରେ ପବନ ଶାନ୍ତ ହୋଇଗଲା । ସାଗର ପୁଣି ପ୍ରଶାନ୍ତ ଓ ନିଶ୍ଚଳ ହୋଇପଡ଼ିଲା । କ୍ରୋଧ ଶାନ୍ତି ପରେ ସଜ୍ଜନମାନଙ୍କର ଚିତ୍ତବୃତ୍ତି ପରି ସାଗର ବକ୍ଷ ପୁନଃ ପ୍ରତୀୟମାନ ହେଲା । ଏ ସମୟରେ ଅନ୍ୟ କୌଣସି ଜାହାଜରୁ ଛିନ୍ନ ହୋଇ କ୍ଷୁଦ୍ର

ନୌକାଟିଏ ସେମାନଙ୍କ ଆଡ଼କୁ ଭାସି ଆସୁଥିବା ସୁନ୍ଦରସେନ ଲକ୍ଷ୍ୟ କଲେ । ସେ ଏବଂ ତାଙ୍କ ଅନ୍ୟତମ ସଚିବ ଜୀବନ ରକ୍ଷାପାଇଁ ସେହି ଦିଗକୁ ସନ୍ତରଣ କରିଗଲେ । ଜୀବନ ଓ ମୃତ୍ୟୁ ମଧ୍ୟରେ ଝୁଲୁଥିବା ସେହି ନୌକାଟି ହିଁ ସେମାନଙ୍କର ଶେଷ ଆଶ୍ରୟ ଥିଲା । ରାଜକୁମାର ଦୃଢ଼ବୁଦ୍ଧିଙ୍କ ସହିତ ତା' ଉପରେ ଆରୋହଣ କଲେ । ସେତେବେଳେ ସେମାନେ ଦିଗ-ଜ୍ଞାନ ରହିତ । ଚତୁର୍ଦ୍ଦିଗରେ କେବଳ ଜଳ ଓ ଜଳ । ନିଜର ପୌରୁଷ ସେଠାରେ ପରାହତ । ତେଣୁ ସେମାନେ ଇଷ୍ଟ ଦେବତାଙ୍କ ନିକଟରେ ନିଜନିଜକୁ ସମର୍ପଣ କରିଦେଲେ ।

ଭାଗ୍ୟର ଅନୁକୂଳତା ଯୋଗୁଁ ମନ୍ଦ ସମୀରଣ ସେମାନଙ୍କୁ ତୃତୀୟ ଦିନରେ ନେଇ ତୀରରେ ଲଗାଇଲା । ତୀରବର୍ତ୍ତୀ ହେବାରୁ ସୁନ୍ଦରସେନ ସଚିବଙ୍କ ସହିତ ଭୂମି ଉପରେ ପାଦ ରଖିଲେ । ତାଙ୍କ ହୃଦୟରେ ଜୀବନର ଆଶା ସଞ୍ଚାରିତ ହେଲା । ସୁନ୍ଦରସେନ ନିଜକୁ ସମ୍ଭାଳି ନେଇ ଦୃଢ଼ବୁଦ୍ଧିଙ୍କୁ କହିଲେ, 'ମୁଁ ସମୁଦ୍ରର ଏହି ବିସ୍ତୀର୍ଣ୍ଣ ଜଳରାଶିକୁ ପାରକରି ଆସି ମଧ୍ୟ ମନେହେଉଛି ପାତାଳ ଗର୍ଭରେ ପ୍ରବେଶ କରିଗଲି । ବିକ୍ରମଶକ୍ତି, ବ୍ୟାଘ୍ରପରାକ୍ରମ, ଚଣ୍ଡପ୍ରଭ ଏବଂ ଭୀମଭୁଜଙ୍କ ପରି ମିତ୍ରମାନେ ଏବଂ ଅକାରଣ ବାନ୍ଧବ ରାଜା ମହେନ୍ଦ୍ରାଦିତ୍ୟ ପ୍ରଭୃତିଙ୍କୁ ହରାଇ ମୋର ଜୀବନ ଧାରଣ କରିବା ବୃଥା ।' ରାଜକୁମାରଙ୍କ ଏହିପରି ନୈରାଶ୍ୟ ଦୃଢ଼ବୁଦ୍ଧିଙ୍କୁ ବ୍ୟଥିତ କଲା । ସେ ଆଶ୍ୱାସନା ଦେଇ କହିଲେ, 'ଦେବ, ଆପଣ ଧୈର୍ଯ୍ୟ ଧାରଣ କରନ୍ତୁ । ମୁଁ ଜାଣିପାରୁଛି ଆମ୍ଭମାନଙ୍କର କଲ୍ୟାଣ ହେବ । ହୁଏତ ଅନ୍ୟମାନେ ମଧ୍ୟ ଆମ ପରି ସମୁଦ୍ରର କୌଣସି ନା କୌଣସି ତଟରେ ଯାଇ ପହଞ୍ଚିଛନ୍ତି । ଭାଗ୍ୟର ଗତି ଦୁର୍ଜ୍ଞେୟ । କିଏ ବା ତାକୁ ଜାଣିପାରେ ?'

**ଶକ୍ୟା ହି କେନ ନିଶ୍ଚେତୁଂ ଦୁର୍ଜ୍ଞାନା ନିୟତେର୍ଗତିଃ ।**

ଦୃଢ଼ବୁଦ୍ଧି ଏହିପରି କହୁଥିବା ବେଳେ ସେଠାରେ ସ୍ନାନ କରିବାପାଇଁ ଦୁଇଜଣ ତପସ୍ୱୀ ଆସି ପହଞ୍ଚିଲେ । ଉଦାସ ଭାବରେ ଦୁଇଜଣ ଯୁବକ ବସିଥିବା ଦେଖି ସେମାନେ ନିକଟକୁ ଆସି ପରିଚୟ ଜିଜ୍ଞାସା କଲେ । ରାଜକୁମାରଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ସେମାନଙ୍କର ଦୟା ହେଲା । ସେମାନେ କୋମଳ ସ୍ୱରରେ କହିଲେ, 'ସଜ୍ଜନ ! ପୂର୍ବଜନ୍ମର କର୍ମ ବଡ଼ ବଳବାନ । ସେଗୁଡ଼ିକ ହିଁ ଏ ଜନ୍ମରେ ସୁଖ ଓ ଦୁଃଖ ଦେଇଥାନ୍ତି । ଦେବତାମାନେ ମଧ୍ୟ ଏହାକୁ ପରିବର୍ତ୍ତନ କରିବା ସମ୍ଭବ ନୁହେଁ । ତେଣୁ ଦୁଃଖରୁ ମୁକ୍ତି ପାଇବାକୁ ହେଲେ ବୁଦ୍ଧିମାନ ପୁରୁଷମାନଙ୍କୁ ସତ୍‌କର୍ମ କରିବାକୁ ହୁଏ । ଦୁଃଖର ପ୍ରତିକାର ଏଥିରେ ହିଁ ହୋଇଥାଏ । ଶୋକ କିମ୍ବା ଶାରୀରିକ କ୍ଳେଶଦ୍ୱାରା ଦୁଃଖ ଦୂର ହୁଏ ନାହିଁ । ତେଣୁ ତୁମେ

ଶୋକ ତ୍ୟାଗକର । ସାହସର ସହିତ ଶରୀର ରକ୍ଷାକର । ଜୀବନରେ ଥିଲେ କୋଉ ପୁରୁଷାର୍ଥ ବା ସିଦ୍ଧ ହୁଏ ନାହିଁ ?

ଶରୀରେ ସତି କୋ ନାମ ପୁରୁଷାର୍ଥୋ ନ ସିଦ୍ଧ୍ୟତି ।

ତୁମ ଶରୀରରେ ଶୁଭ ଲକ୍ଷଣ ସବୁ ଦେଖାଯାଉଛି । ଏଣୁ ତୁମର କଲ୍ୟାଣ ସୁନିଶ୍ଚିତ ।' ଏହିପରି ଆଶ୍ୱାସନା ଦେଇ ସେମାନେ ସୁନ୍ଦରସେନ ଓ ଦୃଢ଼ବୁଦ୍ଧିଙ୍କୁ ନିଜ ଆଶ୍ରମକୁ ନେଇଗଲେ । ଭାଗ୍ୟ ଅନୁକୂଳତାକୁ ପ୍ରତୀକ୍ଷା କରି ସେଠାରେ କିଛିଦିନ ବିତାଇବା ବ୍ୟତୀତ ସେମାନଙ୍କର ଅନ୍ୟ କିଛି ଉପାୟ ନଥିଲା ।

ଏହା ମଧ୍ୟରେ ସୁନ୍ଦରସେନଙ୍କ ମନ୍ତ୍ରୀ ଭୀମଭୁଜ ଓ ବିକ୍ରମଶକ୍ତି ମଧ୍ୟ ସନ୍ତରଣ କରି ଦ୍ୱୀପର ଅନ୍ୟତୀରରେ ଯାଇ ପହଞ୍ଚିଥାନ୍ତି । ଦୁଃଖ ଓ ଶୋକରେ ବିହ୍ୱଳ ହୋଇ ସେମାନେ 'ଆମ ପରି ଅନ୍ୟମାନେ ମଧ୍ୟ ଏହି ଦୁର୍ଘଟଣାରୁ ବଞ୍ଚିଯାଇଥାଇପାରନ୍ତି' ବୋଲି ଭାବି ସେମାନଙ୍କ ଅନୁସନ୍ଧାନରେ ମହାରଣ୍ୟ ମଧ୍ୟରେ ପ୍ରବେଶ କଲେ ।

ଅନ୍ୟ ଦୁଇଜଣ ମନ୍ତ୍ରୀ ଚଣ୍ଡପ୍ରଭ ଓ ବ୍ୟାଘ୍ରପରାକ୍ରମ ଏବଂ ରାଜା ମହେନ୍ଦ୍ରାଦିତ୍ୟ ମଧ୍ୟ ଅନୁରୂପ ଭାବେ ସମୁଦ୍ର ପାର ହୋଇ କୂଳରେ ଆସି ପହଞ୍ଚିଥାନ୍ତି । ସେମାନେ ବିଭିନ୍ନ ସ୍ଥାନରେ ସୁନ୍ଦରସେନଙ୍କୁ ଖୋଜି ନିରାଶ ହେଲେ । ସୌଭାଗ୍ୟକ୍ରମେ ସେମାନଙ୍କୁ ସେମାନଙ୍କ ଜାହାଜ ଅକ୍ଷତ ଭାବେ ମିଳିଗଲା । ସେମାନେ ଦୁଃଖିତ ଭାବେ ଶୋକାକୁଳ ଚିତ୍ତରେ ଶଶାଙ୍କପୁର ଫେରିଗଲେ । ଉଭୟ ମନ୍ତ୍ରୀ ଓ ରାଜକୁମାରଙ୍କ ସେନାବାହିନୀ ଅନନ୍ୟଗତିକ ହୋଇ ଅଳକା ଫେରି ଚାଲିଲେ । ସୁନ୍ଦରସେନଙ୍କ ଅଦର୍ଶନରେ ସମଗ୍ର ନଗରୀ ବିଳାପ କରି ଉଠିଲା । ରାଜା ମହାସେନ ଓ ରାଣୀ ପୁତ୍ରର ଏପରି ଦୁରବସ୍ଥାର ସମ୍ବାଦ ପାଇ ମଧ୍ୟ ଯେ ପ୍ରାଣତ୍ୟାଗ ନକରି ଜୀବନଧାରଣ କଲେ, ତାହା ତାଙ୍କ ଆୟୁବଳର ପ୍ରଭାବ ମାତ୍ର । ସେମାନେ ଯେତେବେଳେ ଶରୀର ତ୍ୟାଗ କରିବାପାଇଁ ଉଦ୍ୟତ ହେଲେ ସେତେବେଳେ ମନ୍ତ୍ରୀମାନେ ବିଭିନ୍ନ ଆଶା ଓ ଆଶ୍ୱାସନା ଦେଇ ଏବଂ ପୁତ୍ରମିଳନର ଆଶାକୁ ସେମାନଙ୍କ ମନରେ ଜାଗ୍ରତ ରଖି ସେଥିରୁ ନିବୃତ୍ତ କଲେ । କିନ୍ତୁ ମହାସେନ ଆଉ ନିଜ ପ୍ରାସାଦରେ ନରହି ନଗର ବାହାରେ ଥିବା ଶିବ ମନ୍ଦିରକୁ ଚାଲିଗଲେ । ପୁତ୍ରର ଅନୁସନ୍ଧାନ ପାଇଁ ପ୍ରୟାସ ଅବ୍ୟାହତ ରଖି ଏବଂ ତପସ୍ୟାଚରଣ କରି ଅନୁଚରମାନଙ୍କ ସହିତ ସେହିଠାରେ ହିଁ ତାଙ୍କ ସମୟ ଅତିବାହିତ ହେବାକୁ ଲାଗିଲା ।

ଏଣେ ହଂସଦ୍ୱୀପରେ ମଧ୍ୟ ରାଜା ମନ୍ଦାରସେନ କନ୍ୟା ଏବଂ ଜାମାତାଙ୍କ ସମୁଦ୍ର ନିମଜ୍ଜନ ସମ୍ବାଦ ପ୍ରାପ୍ତ ହେଲେ । ଜାମାତାଙ୍କର ଦୁଇଜଣ ମନ୍ତ୍ରୀ ମଧ୍ୟ ଅଳକାରେ ପହଞ୍ଚିଥିବା

ବିଷୟ ତାଙ୍କର କର୍ଣ୍ଣଗୋଚର ହେଲା । ରାଜା ମହାସେନ ପୁତ୍ରର ପୁନର୍ମିଳନ ଆଶାରେ ତପଶ୍ଚରଣ ପୂର୍ବକ ଭଗବାନ ଗୌରୀମତିଙ୍କ ଆରାଧାନା କରୁଥିବା ମଧ୍ୟ ସେ ଜାଣିବାକୁ ପାଇଲେ । କନ୍ୟା ଶୋକରେ ସେ ମଧ୍ୟ ପ୍ରାଣତ୍ୟାଗ କରିବାପାଇଁ ଉଦ୍ୟତ ହେଉଥିଲେ କିନ୍ତୁ ସଚିବମାନଙ୍କର ଆଶ୍ୱାସନା ତାଙ୍କୁ ସେଥିରୁ ନିବୃତ୍ତ କଲା । ରାଣୀ କନ୍ଦର୍ପସେନା ସମଦୁଃଖଭାଗୀ ମହାସେନଙ୍କୁ ସାକ୍ଷାତ କରିବାପାଇଁ ଅଳକା ଚାଲିଗଲେ । ପୁତ୍ରର ବିରହରେ ରାଜା ମହାସେନ ଯାହା କରିବେ ରାଣୀ ମଧ୍ୟ ତାହା କରିବାପାଇଁ ନିଶ୍ଚୟ କରିଥାନ୍ତି । ମନ୍ଦାରବତୀଙ୍କ ଦୁଃଖଦ ବୃତ୍ତାନ୍ତ ମହାସେନଙ୍କ ମନୋବେଦନାକୁ ଆହୁରି ବଢ଼ାଇ ଦେଲା । ମନ୍ଦାରସେନ ମଧ୍ୟ କିଛିଦିନ ମଧ୍ୟରେ ସେଠାରେ ଆସି ପହଞ୍ଚିଲେ । ଉଭୟେ ଉଭୟଙ୍କୁ ଦର୍ଶନ କରି ଏକତ୍ର ଇନ୍ଦ୍ରିୟ ସଂଯମ ଏବଂ ମିତ ଭୋଜନଦ୍ୱାରା କୁଶାସନ ଉପରେ ଶୟନ କରି ତପଶ୍ଚରଣ କରିବାକୁ ଲାଗିଲେ ।

ବାୟୁ ବେଗରେ ଶୁଷ୍କ ପତ୍ର ସବୁ ଯେପରି ବୃକ୍ଷରୁ ଛିନ୍ନ ହୋଇ ଇତସ୍ତତଃ ଉଡ଼ିଯାନ୍ତି ସେହିପରି ବିଧାତାର ପ୍ରତିକୂଳତା ଯୋଗୁଁ ରାଜକୁମାରୀ ଓ ରାଜକୁମାର ସଚିବ ଓ ପରିଜନମାନଙ୍କଠାରୁ ପରସ୍ପର ବିଚ୍ଛିନ୍ନ ହୋଇପଡ଼ିଲେ । ଏକଦା ସୁନ୍ଦରସେନ ନିଜ ଆଶ୍ରମରୁ ବାହାରି ଲକ୍ଷ୍ୟହୀନ ଭାବେ ସେହି ଦ୍ୱୀପ ମଧ୍ୟରେ ବିଚରଣ କରୁଥିବା ବେଳେ ମହର୍ଷି ମାତଙ୍ଗଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ । ସେଠାରେ ଏକ ସ୍ୱଚ୍ଛ ଜଳପୂର୍ଣ୍ଣ ସରୋବର ତାଙ୍କର ଦୃଷ୍ଟିଗୋଚର ହେଲା । ସରୋବରର ଚତୁର୍ପାଶ୍ୱରେ ସ୍ୱାଦିଷ୍ଟ ଫଳପୂର୍ଣ୍ଣ ବହୁ ବିଶାଳ ବୃକ୍ଷ ଶୋଭା ପାଉଥାନ୍ତି । ସୁନ୍ଦରସେନ ଶ୍ରାନ୍ତ ହୋଇପଡ଼ିଥିଲେ । ସେ ସରୋବରରେ ସ୍ନାନକରି କିଛି ସ୍ୱାଦିଷ୍ଟ ଫଳ ଆହାର କଲେ । ଟିକିଏ ଆଶ୍ୱସ୍ତ ହେବାରୁ ସେ ଦୃଢ଼ବୁଦ୍ଧିଙ୍କ ସହିତ ସେଠାକୁ ଝରି ଆସୁଥିବା ଏକ ନିର୍ଝରିଣୀର କୂଳେ କୂଳେ କିଛିଦୂର ଯାଇ ଏକ ଶିବାଳୟ ନିକଟରେ ପହଞ୍ଚିଲେ । ସେଠାରେ କେତେଜଣ ମୁନିକନ୍ୟା ପୁଷ୍ପଚୟନରେ ନିବିଷ୍ଟ ଥାନ୍ତି ।

ସେମାନଙ୍କ ମଧ୍ୟରେ ଜଣେ ଥାନ୍ତି ଅପୂର୍ବ ରୂପବତୀ; ତ୍ରୈଲୋକ୍ୟସୁନ୍ଦରୀ । ତାଙ୍କ ଶରୀରରୁ ନିର୍ଗତ ହେଉଥିବା ତେଜୋରାଶି ଚନ୍ଦ୍ରଜ୍ୟୋତ୍ସ୍ନା ପରି ସମଗ୍ର ବନ ପ୍ରଦେଶକୁ ଆଲୋକିତ କରୁଥାଏ । ତାଙ୍କ ଦୃଷ୍ଟିପାତରେ ବନଭୂମି ନୀଳକମଳରେ ଆଚ୍ଛାଦିତ ହେଲାପରି ମନେହେଉଥାଏ । ତାଙ୍କ ପଦପାତରେ ଧରଣୀରାଣୀ ସ୍ଥଳପଦ୍ମରେ ବିଭୂଷିତ ହେଉଥାନ୍ତି । ତାଙ୍କୁ ଦେଖି ରାଜକୁମାର ଚିନ୍ତା କରିବାକୁ ଲାଗିଲେ, 'ଏହି କନ୍ୟାଟି କିଏ ହୋଇପାରେ ? ଇଏ କ'ଣ ସହସ୍ରାକ୍ଷ ଇନ୍ଦ୍ରଙ୍କର ଦର୍ଶନଯୋଗ୍ୟା କୌଣସି ଅପ୍‌ସରା ? ଅଥବା ପୁଷ୍ପ ବିମଣ୍ଡିତା ବନଦେବୀ । ଅପ୍‌ସରାମାନଙ୍କୁ ନିର୍ମାଣ କରି ସୃଷ୍ଟିକର୍ତ୍ତାଙ୍କ

ନିର୍ମାଣ କୌଶଳ ଯେତେବେଳେ ପରିପକ୍ୱତା ଲାଭ କଲା ସେତେବେଳେ ବୋଧହୁଏ ସେ ଏହି ଅପୂର୍ବ କନ୍ୟାଟିକୁ ନିର୍ମାଣ କରିଛନ୍ତି । ସତେ ତ, ଚିତ୍ରପଟରେ ମୁଁ ମନ୍ଦାରବତୀଙ୍କ ଯେଉଁ ରୂପ ଦେଖିଥିଲି ତାହା ସହିତ ଏହାଙ୍କ ଆକୃତି ସମ୍ପୂର୍ଣ୍ଣ ମିଳିଯାଉଛି । ହୁଏତ ଏହି ମୁନିକୁମାରୀ ମନ୍ଦାରବତୀ ହୋଇପାରନ୍ତି । କିନ୍ତୁ ଏହା ବା କିପରି ସମ୍ଭବ ? ହଂସଦ୍ୱୀପ କେଉଁଠି ଏବଂ ଏହି ନିର୍ଜନ ଦ୍ୱୀପର ମୁନି ଆଶ୍ରମ କେଉଁଠି ? ତେଣୁ କନ୍ୟାଟି କିଏ, କେଉଁ ରାଜ୍ୟର କିମ୍ବା କିପରି ଭାବରେ ସେ ଏଠାରେ ଆସି ପହଞ୍ଚିଛନ୍ତି ଜାଣିବା ସମ୍ଭବ ନୁହେଁ ।'

କନ୍ୟାଟି ପ୍ରତି ଦୃଷ୍ଟି ଆକର୍ଷଣ କରନ୍ତେ ଦୃଢ଼ବୁଦ୍ଧି ମଧ୍ୟ ବିସ୍ମୟଭାବ ପ୍ରକାଶ କରି କହିଲେ, 'ଦେବ ! ଇଏ ମାନବୀ ନୁହନ୍ତି; ବୋଧହୁଏ ଅନ୍ୟ କେହି । ଏହାଙ୍କର ବିଭିନ୍ନ ଅଙ୍ଗ ପୁଷ୍ପ ଆଭୂଷଣଦ୍ୱାରା ବିଭୂଷିତ ହୋଇଥିଲେ ସୁଦ୍ଧା ଏହାଙ୍କର ହାର, କେୟୂର ଓ କେଶପାଶ ସ୍ୱୟଂ ଅଳଙ୍କାରର ଅଳଙ୍କାର ବୋଲି ମନେହେଉଛି । ଏ ପ୍ରକାର ରୂପ ଓ ସୌକୁମାର୍ଯ୍ୟ ବନଭୂମିରେ ସମ୍ଭବ ନୁହେଁ । ତେଣୁ କନ୍ୟାଟି ହୁଏତ କୌଣସି ସ୍ୱର୍ଗବାସିନୀ ଅପ୍ସରା କିମ୍ବା ମର୍ତ୍ତ୍ୟବାସିନୀ ରାଜକନ୍ୟା; କିନ୍ତୁ କୌଣସିମତେ ମୁନିକନ୍ୟା ନୁହନ୍ତି । ଏହାଙ୍କ ପ୍ରକୃତ ପରିଚୟ ପାଇବାପାଇଁ ଚାଲନ୍ତୁ ଆମେ କିଛି ସମୟ ଅପେକ୍ଷା କରିବା ।' ଦୃଢ଼ବୁଦ୍ଧିଙ୍କ ପରାମର୍ଶ ଅନୁଯାୟୀ ଉଭୟେ ଏକ ବୃକ୍ଷ ଅନ୍ତରାଳରେ ନିଜନିଜକୁ ଗୋପନ କରି ରଖିଲେ ।

ମୁନିକନ୍ୟାମାନେ ପୁଷ୍ପଚୟନ ଶେଷକରି ସ୍ନାନ ନିମିତ୍ତ ନିର୍ଝରିଣୀ ମଧ୍ୟରେ ପ୍ରବେଶ କଲେ । ସେମାନେ ସ୍ୱଚ୍ଛନ୍ଦଭାବେ ଜଳକ୍ରୀଡ଼ା କରୁଥିବା ବେଳେ ବିଧିର ବିଧାନ କ୍ରମେ ଗୋଟିଏ କୁମ୍ଭୀର ଆସି ସେହି ତ୍ରୈଲୋକ୍ୟସୁନ୍ଦରୀ କନ୍ୟାଟିକୁ ଆକ୍ରମଣ କଲା । ଏହା ଦେଖି ଅନ୍ୟ ମୁନିକୁମାରୀମାନେ ବିବ୍ରତ ହୋଇପଡ଼ିଲେ । ତା' କବଳରୁ ତାଙ୍କୁ ରକ୍ଷା କରିବାପାଇଁ ଆର୍ତ୍ତ ଭାବରେ ଚିତ୍କାର କଲେ, 'ହେ ବନଦେବତା ବୃନ୍ଦ ! ରକ୍ଷାକର ରକ୍ଷାକର ! ମନ୍ଦାରବତୀ ଶଙ୍କାହୀନ ଭାବେ ଏହି ନିର୍ଝରିଣୀରେ ସ୍ନାନ କରୁଥିବା ବେଳେ କୁମ୍ଭୀରଦ୍ୱାରା ଆକ୍ରାନ୍ତ ହୋଇପଡ଼ିଛନ୍ତି । ମୃତ୍ୟୁମୁଖରୁ ତାଙ୍କୁ ରକ୍ଷାକରିବାପାଇଁ ଆପଣମାନେ ସଦୟ ହୁଅନ୍ତୁ ।'

ଏହାଶୁଣି ସୁନ୍ଦରସେନଙ୍କ ମନେହେଲା ଯେ ଏହି କନ୍ୟାଟି ହିଁ ତାଙ୍କର ସେହି ପ୍ରାଣପ୍ରିୟା ମନ୍ଦାରବତୀ । ସେ ଯଥାଶୀଘ୍ର ଯାଇ ଛୁରୀକାଦ୍ୱାରା କୁମ୍ଭୀରଟିକୁ ହତ୍ୟା କଲେ । ମୃତ୍ୟୁମୁଖରୁ ସଦ୍ୟ ଉଦ୍ଧାର କରି ସେ ମନ୍ଦାରବତୀଙ୍କୁ କୂଳକୁ ନେଇ ଆସିଲେ ଏବଂ ପ୍ରାଥମିକ ଉପଚାର ଦ୍ୱାରା ତାଙ୍କୁ ଆଶ୍ୱସ୍ତ କଲେ । ଭୟ ଦୂର ହେବାରୁ ମନ୍ଦାରବତୀ

ଚକ୍ଷୁ ଉନ୍ମୀଳନ କଲେ । ସୁନ୍ଦରସେନଙ୍କ ଉପରେ ତାଙ୍କ ଦୃଷ୍ଟିପାତ ହେବାରୁ ସେ ମନେମନେ ଚିନ୍ତ କଲେ, 'ମୋର ସୌଭାଗ୍ୟରୁ ଜୀବନ ରକ୍ଷାପାଇଁ ଆକସ୍ମିକ ଭାବେ ଆସି ପହଞ୍ଚିଥିବା ଏହି ପୁରୁଷ ଜଣକ କିଏ ହୋଇପାରନ୍ତି ? ଚିତ୍ରରେ ମୁଁ ଯେଉଁ ଅଳକାର ରାଜପୁତ୍ର ଏବଂ କୁଳୀନ ପ୍ରିୟତମଙ୍କୁ ଦେଖିଥିଲି, ଏହାଙ୍କ ଆକୃତି ତା' ସହିତ ସମ୍ପୂର୍ଣ୍ଣ ମିଳିଯାଉଛି । ଏହି ବ୍ୟକ୍ତିଜଣକ ଆଉ ସିଏ ନୁହନ୍ତି ତ ! କିନ୍ତୁ ଛିଃ, ମୁଁ ଏ କ'ଣ ଚିନ୍ତା କରୁଛି ? ଏପରି ଚିନ୍ତା କରିବା ମୋପାଇଁ ଅନ୍ୟାୟ । ଭଗବାନ କରନ୍ତୁ ତାଙ୍କ ପରି ସତ୍‌ପୁରୁଷ ଏପରି ସ୍ଥାନରେ ଆସି ନ ପଡ଼ନ୍ତୁ । ପ୍ରାଣରକ୍ଷା କରିଥିଲେ ସୁଦ୍ଧା ଇଏ ପରପୁରୁଷ । ତେଣୁ ପରପୁରୁଷ ନିକଟରେ ଅଧିକ ସମୟ ରହିବା ଉଚିତ ନୁହେଁ । ବର୍ତ୍ତମାନ ଏଠାରୁ ଚାଲିଯିବା ହିଁ ଉଚିତ ହେବ । ଭଗବାନ ଏହି ସଜ୍ଜନଙ୍କ ମଙ୍ଗଳ କରନ୍ତୁ ।' ଏହିପରି ଚିନ୍ତାକରି ମନ୍ଦାରବତୀ ସଖୀମାନଙ୍କୁ କହିଲେ, 'ଚାଲ, ଏହି ସଜ୍ଜନ ପୁରୁଷଙ୍କୁ ପ୍ରଣାମ କରି ଆମେ ଏଥର ଯିବା ।'

ମନ୍ଦାରବତୀଙ୍କ ନାମ ଶୁଣିବାଠାରୁ ସୁନ୍ଦରସେନଙ୍କୁ ଯଥେଷ୍ଟ ପ୍ରମାଣ ମିଳିଯାଇଥିଲା । କିନ୍ତୁ ସେ ତଥାପି ସନ୍ଦିହାନ୍ ଥିଲେ । ନିଶ୍ଚିତ ହେବାପାଇଁ ସେ ମୁନିକୁମାରୀମାନଙ୍କ ମଧ୍ୟରୁ ଜଣକୁ ପଚାରିଲେ, 'ଆପଣ ଯଦି ଅନ୍ୟଥା ନ ଭାବନ୍ତି ତେବେ ଦୟାକରି ଆପଣଙ୍କର ଏହି ସଖୀ କାହାର କନ୍ୟା ଏବଂ କେଉଁ ବଂଶରେ ଜାତ କହି ମୋତେ ଅନୁଗୃହୀତ କରନ୍ତୁ । ତାଙ୍କ ସମ୍ପର୍କରେ ଜାଣିବାପାଇଁ ମୋର କାହିଁକି ଅତ୍ୟନ୍ତ କୌତୂହଳ ଜାଗ୍ରତ ହେଉଛି ?'

ରାଜକୁମାରଙ୍କ ପ୍ରଶ୍ନର ଉତ୍ତରରେ ମୁନିକୁମାରୀ କହିଲେ 'ଭଦ୍ର ! ଏ ହେଉଛନ୍ତି ହଂସଦ୍ୱୀପର ରାଜା ମନ୍ଦାରସେନଙ୍କ କୁମାରୀ କନ୍ୟା । ଏହାଙ୍କ ଶୁଭନାମ ମନ୍ଦାରବତୀ । ରାଜକୁମାର ସୁନ୍ଦରସେନଙ୍କ ସହିତ ବିବାହ ନିମିତ୍ତ ଏହାଙ୍କୁ ଅଳକା ନଗରୀକୁ ନିଆଯାଉଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ଏ ଯାଉଥିବା ଜାହାଜଟି ଜଳମଗ୍ନ ହେବାରୁ ସେ ଆସି ସମୁଦ୍ର ତଟରେ ଏହି ସ୍ଥାନରେ ଲାଗିଲେ । ମହର୍ଷି ମତଙ୍ଗ ଏହାଙ୍କୁ ଏକାକିନୀ ଏବଂ ଦୁଃଖିତା ଦେଖି ଆଶ୍ରମକୁ ନେଇଆସିଛନ୍ତି ।' ମୁନିକୁମାରୀଙ୍କ କଥା ଶେଷ ନହେଉଣୁ ଦୃଢ଼ବୁଦ୍ଧି ଯୁଗପତ୍ ହର୍ଷ ଓ ବିଷାଦରେ ଭାବବିହ୍ୱଳ ହୋଇ ନୃତ୍ୟ କରିବାକୁ ଲାଗିଲେ । ସେ ଚିତ୍କାର କରି କହୁଥାନ୍ତି, 'ଆଜି ଆପଣ ଦେବୀ ମନ୍ଦାରବତୀଙ୍କୁ ପାଇଗଲେ । ଆପଣଙ୍କର ଜୟ ହେଉ । ଆପଣ ଯାହାପାଇଁ ଏତେ ଚିନ୍ତିତା ଥିଲେ ଏବଂ ଆମ୍ଭେମାନେ ଯାହାକୁ ଦେଖିବାପାଇଁ ସତତ ଉତ୍କଣ୍ଠିତ ଥିଲୁ, ସେ ହେଉଛନ୍ତି ଏହି ମନ୍ଦାରବତୀ ।' ଦୃଢ଼ବୁଦ୍ଧିଙ୍କ ଏପରି ଆଚରଣରେ ବିସ୍ମିତ

ମୁନିକନ୍ୟାମାନଙ୍କ ଜିଜ୍ଞାସା କ୍ରମେ ସେ ସମସ୍ତ ବୃତ୍ତାନ୍ତ ଆମୂଳଚୂଳ ବର୍ଣ୍ଣନା କଲେ । ମନ୍ଦାରବତୀଙ୍କ ସନ୍ଦେହ ଦୂର ହେଲା । ସେ 'ହା ଆର୍ଯ୍ୟପୁତ୍ର' କହି ସୁନ୍ଦରସେନଙ୍କ ପଦପ୍ରାନ୍ତରେ ପଡ଼ିଗଲେ ।

ସୁନ୍ଦରସେନ ମନ୍ଦାରବତୀଙ୍କୁ କୋଳାଗ୍ରତ କରି ରୋଦନ କରିବାକୁ ଲାଗିଲେ । ସେମାନଙ୍କ ଶୋକରେ ନିକଟସ୍ଥ କାଷ୍ଠ ପାଷାଣ ମଧ୍ୟ ଶୋକାକୁଳ ହୋଇଉଠିଲେ । ମୁନିକନ୍ୟାମାନେ ଶୀଘ୍ର ଯାଇ ମହର୍ଷି ମାତଙ୍ଗଙ୍କୁ ଏ ସମ୍ବାଦ ପ୍ରଦାନ କରନ୍ତେ ସେ କନ୍ୟା ଯମୁନା ସହିତ ଆସି ସେଠାରେ ପହଞ୍ଚିଲେ । ମହର୍ଷିଙ୍କ ଦର୍ଶନରେ ସୁନ୍ଦରସେନଙ୍କ ଶୋକାବେଗ ସ୍ତିମିତ ହେଲା । ସେ ମହର୍ଷିଙ୍କ ପଦଯୁଗଳରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ମହର୍ଷି ଉଭୟଙ୍କୁ ଆଶ୍ୱସ୍ତ କରି ଆଶ୍ରମକୁ ପଠାଇଦେଲେ । ମୁନିଙ୍କ ଆତିଥ୍ୟରେ ସୁନ୍ଦରସେନଙ୍କ କ୍ଳାନ୍ତି ଦୂର ହେଲା । ସେ ଆନନ୍ଦ ମନରେ ସେହି ଦିନଟି ଆଶ୍ରମରେ ବିତାଇଦେଲେ ।

ପରଦିନ ପ୍ରଭାତରୁ ମହର୍ଷି ସୁନ୍ଦରସେନଙ୍କୁ ଡାକି କହିଲେ, 'ବତ୍ସ ! ମୁଁ କାର୍ଯ୍ୟାନ୍ତରେ ବର୍ତ୍ତମାନ ଶ୍ୱେତଦ୍ୱୀପ ଚାଲିଯାଉଛି । ତେଣୁ ତୁମେ ମଧ୍ୟ ମନ୍ଦାରବତୀଙ୍କୁ ନେଇ ଅଳକା ଚାଲିଯାଅ । ସେଠାରେ ରାଜକନ୍ୟାଙ୍କୁ ବିବାହ କରି ତାର ପାଳନ ପୋଷଣ କର । ମୁଁ ଏହାକୁ କନ୍ୟାରୂପେ ଗ୍ରହଣ କରିଛି । ତେଣୁ ବର୍ତ୍ତମାନ ତାହାକୁ ତୁମ ହସ୍ତରେ ସମର୍ପଣ କଲି । ଏହା ସହିତ ତୁମେ ଦୀର୍ଘଦିନ ଧରି ରାଜ୍ୟ ଭୋଗ କରିବ । ମନ୍ତ୍ରୀମାନଙ୍କପାଇଁ ତୁମେ ବ୍ୟସ୍ତ ହୁଅ ନାହିଁ । ସେମାନେ ଯଥାଶୀଘ୍ର ତୁମକୁ ମିଳିଯିବେ ।' ମହର୍ଷି ଏହିପରି କହି ସେମାନଙ୍କଠାରୁ ବିଦାୟ ନେଲେ ଏବଂ ଯୋଗ ବଳରେ ନିଜର ଅନୁରୂପ ଯୋଗସିଦ୍ଧା କନ୍ୟା ଯମୁନା ସହିତ ଆକଶ ମାର୍ଗରେ ଚାଲିଗଲେ ।

ମହର୍ଷିଙ୍କ ପ୍ରସ୍ଥାନ ପରେ ସୁନ୍ଦରସେନ ମଧ୍ୟ ଆଶ୍ରମସ୍ଥ ମୁନିକୁମାର ଓ ମୁନିକୁମାରୀମାନଙ୍କଠାରୁ ବିଦାୟ ଗ୍ରହଣ କରି ମନ୍ଦାରବତୀ ଓ ଦୃଢ଼ବୁଦ୍ଧିଙ୍କ ସହିତ ସମୁଦ୍ର ତୀରରେ ଆସି ପହଞ୍ଚିଲେ । ସଂଯୋଗ କ୍ରମେ ଜଣେ ବଣିକ ଯୁବକଙ୍କ କ୍ଷୁଦ୍ରନୌକାଟିଏ ସେତେବେଳେ ସେହି ମାର୍ଗ ଦେଇ ଯାଉଥାଏ । ଦୃଢ଼ବୁଦ୍ଧି ଶୀଘ୍ର ନିଜ ରାଜ୍ୟରେ ପହଞ୍ଚିଯିବା ଲୋଭରେ ବଣିକ ଯୁବକଙ୍କୁ ତାଙ୍କ ଜାହାଜରେ ସ୍ଥାନ ଦେବାପାଇଁ ଅନୁରୋଧ ଜଣାଇଲେ ।

ଦୁଷ୍ଟ ବଣିକ ଯୁବକ ମନ୍ଦାରବତୀଙ୍କୁ ଦେଖିବାମାତ୍ରେ କାମମୋହିତ ହୋଇପଡ଼ିଲା । ତେଣୁ ସେ ଦୃଢ଼ବୁଦ୍ଧିଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ ନକରି ଜାହାଜଟିକୁ ଆଣି କୂଳରେ ଲଗାଇଲା । ସୁନ୍ଦରସେନ ମନ୍ଦାରବତୀଙ୍କୁ ପ୍ରଥମେ ଜାହାଜ ଉପରେ ଚଢ଼ାଇ ଦେଲେ । ସେ ନିଜର ଅନ୍ୟାନ୍ୟ ଜିନିଷ ସହିତ ଜାହାଜ ଉପରେ ଆରୋହଣ

କରିବାକୁ ଯାଉଥିବା ବେଳେ ସେହି କାମମୋହିତ ଦୁଷ୍ଟବୁଦ୍ଧି ବଣିକ ପୁତ୍ର ନାବିକମାନଙ୍କୁ ନୌକା ବାହିନେବା ପାଇଁ ଇଙ୍ଗିତ ଦେଲା । ସେମାନେ କାଳବିଳମ୍ବ ନକରି ଜାହାଜଟିକୁ କୂଳରୁ ଦୂରେଇ ନେଲେ । ତୀବ୍ର ବେଗରେ ନୌକାଟି ଚାହୁଁଚାହୁଁ ସୁନ୍ଦରସେନଙ୍କ ଚକ୍ଷୁ ଅନ୍ତରାଳକୁ ଚାଲିଗଲା । ରାଜକୁମାରୀ ଜାହାଜ ଉପରେ ଠିଆହୋଇ ବିଳାପ କରିବାକୁ ଲାଗିଲେ ।

ସୁନ୍ଦରସେନ କିଂକର୍ତ୍ତବ୍ୟବିମୂଢ଼ ହୋଇ ସେହି ବଣିକ ଯୁବକକୁ କେବଳ ଚିତ୍କାର କରି ଡାକିବାକୁ ଲାଗିଲେ । ତାଙ୍କର ଶୋକାବେଗ ପ୍ରବଳରୁ ପ୍ରବଳତର ହେବାକୁ ଲାଗିଲା; କିନ୍ତୁ ଦୃଢ଼ବୁଦ୍ଧି ତାଙ୍କ ମନରେ ସାହସ ସଞ୍ଚାର କରି କହିଲେ, 'ପ୍ରଭୁ ! ଉଠନ୍ତୁ । ଏ ପ୍ରକାର କ୍ଲୀବତା ଏବଂ କାପୁରୁଷତା ବୀର ପୁରୁଷମାନଙ୍କୁ ଶୋଭାପାଏ ନାହିଁ । ଚାଲନ୍ତୁ ଆମେ ଏହି ମାର୍ଗରେ ଯାଇ ସେହି ଦୁର୍ବୃତ୍ତ ବଣିକ ଯୁବକର ସନ୍ଧାନ କରିବା । ବୁଦ୍ଧିମାନ ଲୋକମାନେ ବିପତ୍ତି ବା କଷ୍ଟବେଳେ ନିରୁତ୍ସାହିତ ହୁଅନ୍ତି ନାହିଁ ।'

ଆପଦ୍ କାଳେ ଚ଼ କଷ୍ଟେଽପି ନୋତ୍ସାହସ୍ତ୍ୟଜତେ ବୁଧୈଃ ।

ଦୃଢ଼ବୁଦ୍ଧିଙ୍କ ସାନ୍ତ୍ୱନା ବାକ୍ୟରେ ସୁନ୍ଦରସେନ କୌଣସିମତେ ନିଜକୁ ସମ୍ବରଣ କରି ଆଗକୁ ଅଗ୍ରସର ହେଲେ ।

ମାର୍ଗରେ ଗଲାବେଳେ ବିରହ ସନ୍ତପ୍ତ ସୁନ୍ଦରସେନ ଦିନରାତି କେବଳ 'ହା ଦେବି ! ହା ମନ୍ଦାରବତୀ !' ବୋଲି ପ୍ରଳାପ କରୁଥାନ୍ତି । ସେ ଖାଇବା ପିଇବା ପ୍ରାୟ ଛାଡ଼ିଦେଇଥିଲେ । କେବଳ ଦୃଢ଼ବୁଦ୍ଧି ସମୟେ ସମୟେ ତାଙ୍କୁ ସାନ୍ତ୍ୱନା ଦେବାପାଇଁ ପ୍ରୟାସ କରୁଥାନ୍ତି, କିନ୍ତୁ ମିତ୍ରଙ୍କ କଥା ପ୍ରତି ତାଙ୍କର ଆଦୌ ଧ୍ୟାନ ନଥାଏ । ସେ ଭାବୀ ପତ୍ନୀଙ୍କ ଧ୍ୟାନରେ ନିମଜ୍ଜିତ ରହି ଇତସ୍ତତଃ ଦୌଡୁଥାନ୍ତି । କିଛିଦୂର ଯିବାପରେ ସେମାନେ ଏକ ବିଶାଳ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ସେଠାରେ ପୁଷ୍ପିତ ଲତାଟିଏ ଦେଖିଲେ ରାଜକୁମାର ତା' ନିକଟକୁ ଦୌଡ଼ିଯାଇ କହନ୍ତି, 'ସେହି ବଣିକଦସ୍ୟୁଠାରୁ ପଳାୟନ କରିଆସିଥିବା ଇଏ ମୋର ପ୍ରିୟତମା । ଦେଖ ! କିପରି ପୁଷ୍ପାଭରଣରେ ଭୂଷିତ ହୋଇ ସୁନ୍ଦର ଦେଖାଯାଉଛନ୍ତି ।' ଭ୍ରମର ଆକୁଳିତ ପଦ୍ମପୁଷ୍ପଗୁଡ଼ିକୁ ଦେଖି କହୁଥାନ୍ତି 'ଭୟରେ ବୋଧହୁଏ ସେ ଆସି ଏହି ସରୋବର ମଧ୍ୟରେ ଆତ୍ମଗୋପନ କରିଛନ୍ତି । ଦେଖ ! ସେ ତାଙ୍କର ଭ୍ରୂଲତା ଉଠାଇ ମୋତେ ଚାହିଁ ରହିଛନ୍ତି ।' ଲତା ପତ୍ର ଗହଳରେ କୋକିଳର କାକଳି ଶୁଣି କହିଉଠନ୍ତି 'ଦେଖ ! ମନ୍ଦାରବତୀ କିପରି ମୋତେ ମଧୁର ଓ କୋମଳ ସ୍ୱରରେ ଆହ୍ୱାନ କରୁଛନ୍ତି ।' ଏହିପରି ପ୍ରତି ପଦପାତରେ ସେ ଉନ୍ମତ୍ତପ୍ରାୟ

ହୋଇଉଠୁଥିଲେ । ନିର୍ମଳ ଚନ୍ଦ୍ରମଣ୍ଡଳ ସୂର୍ଯ୍ୟଙ୍କ ପରି ତାଙ୍କୁ ସନ୍ତପ୍ତ କରୁଥିଲା । ତାଙ୍କପାଇଁ ଦିନ ଓ ରାତ୍ରି ମଧ୍ୟରେ କୌଣସି ପ୍ରଭେଦ ନଥିଲା ।

ଦୃଢ଼ବୁଦ୍ଧିଙ୍କ ସହିତ ସୁନ୍ଦରସେନ କୌଣସିମତେ ସେହି ରମଣୀୟ ଅରଣ୍ୟ ପ୍ରଦେଶକୁ ଅତିକ୍ରମ କରିଆସିଲେ, କିନ୍ତୁ ମାର୍ଗ ସମ୍ପର୍କରେ କୌଣସି ଧାରଣା ନଥିବା ଯୋଗୁଁ ସେମାନେ ପୁଣିଯାଇ ଏକ ଭୟଙ୍କର ଜଙ୍ଗଲ ମଧ୍ୟରେ ପହଞ୍ଚିଲେ । ଅରଣ୍ୟଟି ତୀକ୍ଷ୍ଣ ଖଡ୍‌ଗଯୁକ୍ତ ଗଣ୍ଡାର, ଭୟଙ୍କର ବ୍ୟାଘ୍ର ଓ ସିଂହଦ୍ୱାରା ପରିପୂର୍ଣ୍ଣ ଥିଲା । ଦସ୍ୟୁଦଳଦ୍ୱାରା ମଧ୍ୟ ଏହା ଏକ ଆକ୍ରମଣକାରୀ ସେନାଦଳର ଭ୍ରମ ସୃଷ୍ଟି କରୁଥିଲା । ଅରଣ୍ୟ ମଧ୍ୟରେ ଆଶ୍ରୟସ୍ଥଳ ଥିଲା ଦୁର୍ଲ୍ଲଭ, କିନ୍ତୁ ବିପତ୍ତି ଥିଲା ସୁଲଭ ।

କିଛିଦୂର ଯିବାପରେ ଦଳେ ଭୀଲ୍ ସୈନିକ ତାଙ୍କୁ ଘେରିଗଲେ । ସେମାନେ ପୁଳିନ୍ଦ ଅଧିପତି ବିନ୍ଧ୍ୟକେତୁଙ୍କ ଆଦେଶରେ ଭଗବତୀଙ୍କ ନିକଟରେ ବଳି ଚଢ଼ାଇବାପାଇଁ ଜଣେ ସୁଦୃଶ୍ୟ ପୁରୁଷର ସନ୍ଧାନରେ ବାହାରିଥାନ୍ତି । ବିଦେଶ, ବିରହକ୍ଲେଶ, ନୀଚ଼ମନା ବଣିକଠାରୁ ପରାଜୟ, ଅନାହାର ତଥା ପଥକ୍ଲାନ୍ତି ରୂପକ ପଞ୍ଚାଗ୍ନିଦ୍ୱାରା ସୁନ୍ଦରସେନ ଦଗ୍ଧୀଭୂତ ହେଉଥିଲେ । ବର୍ତ୍ତମାନ ବିଧାତା ତାଙ୍କର ଧୈର୍ଯ୍ୟ ପରୀକ୍ଷା କରିବାପାଇଁ ଭୀଲ୍‌ମାନଙ୍କ ଆକ୍ରମଣ ରୂପକ ଷଷ୍ଠ ଅଗ୍ନି ସୃଷ୍ଟି କଲେ ।

ବିଷାକ୍ତ ଶରବୃଷ୍ଟି କରି ବନ୍ଧନ କରିବାପାଇଁ ଆସୁଥିବା ପୁଳିନ୍ଦ ସେନାକୁ ଦେଖି ସୁନ୍ଦରସେନ ମୁହୂର୍ତ୍ତକ ମଧ୍ୟରେ ସଚେତନ ହୋଇଉଠିଲେ । ସେନା ସଶସ୍ତ୍ର । ସୁନ୍ଦରସେନ କେବଳ ଦୃଢ଼ବୁଦ୍ଧି ସହାୟ । ତଥାପି ସଂଗ୍ରାମ କୁଶଳୀ ସୁନ୍ଦରସେନ ନିଜର ଉନ୍ମୁକ୍ତ ଖଡ୍‌ଗଦ୍ୱାରା ବହୁ ସୈନିକଙ୍କୁ ନିଧନ କଲେ । ଏ ସମ୍ବାଦ ପାଇବା ମାତ୍ରେ ବିନ୍ଧ୍ୟକେତୁ ଅନ୍ୟ ଏକ ସେନାବାହିନୀ ପ୍ରେରଣ କଲେ । ସେମାନଙ୍କ ମଧ୍ୟରୁ ସୁଦ୍ଧା ବହୁ ସୈନିକ ଦୃଢ଼ମୁଷ୍ଟି ସୁନ୍ଦରସେନଙ୍କଦ୍ୱାରା ପଞ୍ଚତ୍ୱ ପ୍ରାପ୍ତ ହେଲେ । ଭୀଲ୍ ସେନାବାହିନୀ ଛିନ୍ନଭିନ୍ନ ହୋଇଗଲା, କିନ୍ତୁ ଶ୍ରାନ୍ତକ୍ଲାନ୍ତ ସୁନ୍ଦରସେନ ଓ ଦୃଢ଼ବୁଦ୍ଧି ଆହତ ହୋଇ ମୂର୍ଚ୍ଛିତ ହୋଇପଡ଼ିଲେ । ଭୀଲ୍‌ସେନା ସେମାନଙ୍କୁ ଦୃଢ଼ଭାବେ ବନ୍ଧନକରି କାରାଗାର ମଧ୍ୟରେ ନେଇ ନିକ୍ଷେପ କଲେ । କାରାଗାରଟି କୀଟପତଙ୍ଗରେ ଥିଲା ପରିପୂର୍ଣ୍ଣ । ଚତୁର୍ଦ୍ଦିଗରେ ବୁଢ଼ିଆଣୀ ଜାଲ । ଉପରୁ ଝୁଲୁଥିବା ସାପ କାତିଗୁଡ଼ିକ ତା' ମଧ୍ୟକୁ ସର୍ପ ପ୍ରବେଶ କରୁଥିବାର ସୂଚନା ଦେଉଥିଲା । କୋଠରି ଭିତରେ ଆଣ୍ଠୁଏ ଧୂଳି । ମୂଷାମାନେ ଗାତଖୋଳି ଚାଲିଥାନ୍ତି । ପୂର୍ବରୁ ମଧ୍ୟ ତା' ମଧ୍ୟରେ ଆଉକିଛି ଲୋକଙ୍କୁ ନିକ୍ଷେପ କରାଯାଇଥିଲା । ସେମାନେ ବିପନ୍ନ, ଭୟଭୀତ ଓ ବିକଳ ଦେଖାଯାଉଥିଲେ । କାରାଗାରଟି ନରକର ଜନ୍ମଭୂମି ବୋଲି ମନେହେଉଥିଲା । ସୁନ୍ଦରସେନ ସେହି ପୂର୍ବ

ନିକ୍ଷିପ୍ତ ବନ୍ଦୀମାନଙ୍କ ମଧ୍ୟରେ ନିଜର ଦୁଇଜଣ ସଚିବ ଭୀମଭୁଜ ଓ ବିକ୍ରମଶକ୍ତିଙ୍କୁ ଦେଖିବାକୁ ପାଇଲେ । ସେମାନେ ସମୁଦ୍ରଗର୍ଭରୁ ଉଦ୍ଧାର ପାଇ ରାଜକୁମାରଙ୍କ ଅନୁସନ୍ଧାନରେ ପୂର୍ବୋକ୍ତ ଅରଣ୍ୟ ମଧ୍ୟରେ ପ୍ରବେଶ କରି ଏପରି ଦୁର୍ଦ୍ଦଶାରେ ପଡ଼ିଥାନ୍ତି । ସୁନ୍ଦରସେନଙ୍କୁ ଦେଖି ସେମାନେ ତାଙ୍କ ପାଦତଳେ ଲୋଟିଗଲେ । ସେମାନଙ୍କୁ ଚିହ୍ନିପାରି ସୁନ୍ଦରସେନଙ୍କ ଚକ୍ଷୁ ସଜଳ ହୋଇଉଠିଲା । ସେ ସେମାନଙ୍କୁ ଆଲିଙ୍ଗନ କରି ଛାତିରେ ଲଗାଇଲେ । ପରସ୍ପର ଦର୍ଶନରେ ସେମାନଙ୍କର ଦୁଃଖ ଶତଗୁଣ ବୃଦ୍ଧିପାଇଲା । ଅନ୍ୟବନ୍ଦୀମାନେ ସେମାନଙ୍କୁ ଧୈର୍ଯ୍ୟ ଦେଇ କହୁଥାନ୍ତି, 'ଆପଣମାନଙ୍କର ଦୁଃଖ କରିବା ବ୍ୟର୍ଥ । ପୂର୍ବ ଜନ୍ମକୃତ କର୍ମକୁ ଟାଳିଦେବା ସମ୍ଭବ ନୁହେଁ । ଆମ ସମସ୍ତଙ୍କ ଏକ ସଙ୍ଗରେ ମୃତ୍ୟୁ ହେବା କ'ଣ ବିଚିତ୍ର ନୁହେ ! ପୁଳିନ୍ଦମାନଙ୍କର ରାଜା ଆଗାମୀ ଚତୁର୍ଦ୍ଦଶୀ ଦିନ ଦେବୀଙ୍କ ନିକଟରେ ଜୀବବଳି ଦେବାର ଅଛି । ଏଣୁ ଆମ ସମସ୍ତଙ୍କୁ ଏଠାରେ ଏକତ୍ର କରାଯାଇଛି । ଦୁଃଖ କରି ଆଉ ଲାଭ କ'ଣ ? ପ୍ରାଣୀମାନଙ୍କୁ ନେଇ କ୍ରୀଡ଼ା କରବା ବିଧାତାର ବିଚିତ୍ର ବିଳାସ ।

ତତ୍କିଂ ଶୁଚା ଗତିଶ୍ଚିତ୍ରା ଜନ୍ତୁଷୁ କ୍ରୀଡ଼ତୋ ବିଧେଃ ।

ତେଣୁ ସେ ଯେପରି ଅମଙ୍ଗଳ କରନ୍ତି ସେହିପରି ଆପଣମାନଙ୍କର ମଙ୍ଗଳ ମଧ୍ୟ କରିପାରନ୍ତି ।' ବନ୍ଦୀମାନଙ୍କଠାରୁ ଏହା ଶୁଣି ଚାରିଜଣଯାକ ସେଠାରେ ମୃତ୍ୟୁକୁ ଅପେକ୍ଷା କରିବାକୁ ଲାଗିଲେ । ଏହାହିଁ ଦୁଃଖର କଥା ଯେ ବିପତ୍ତି ମହତ୍ ଲୋକମାନଙ୍କୁ ମଧ୍ୟ ଛାଡ଼ି ନଥାଏ ।

କଷ୍ଟଂ ନିରନ୍ନୁରୋଧତ୍ୱମାପଦାଂ ସୁମହତ୍ସ୍ୱପି ।

ଚତୁର୍ଦ୍ଦଶୀ ତିଥି ଆସି ପହଞ୍ଚିଲା । ରାଜାଙ୍କ ଆଦେଶରେ ବନ୍ଦୀମାନଙ୍କୁ ନେଇ ଭବାନୀ ମନ୍ଦିରରେ ଏକତ୍ର କରାଗଲା । ମନ୍ଦିରଟି ମୃତ୍ୟୁର କରାଳ ମୁଖ ତୁଲ୍ୟ ଭୟଙ୍କର ଥିଲା । ପ୍ରଜ୍ୱଳିତ ଦୀପାବଳୀ ତା'ର ଜିହ୍ୱା, ପ୍ରଲମ୍ବିତ ଘଣ୍ଟା ସମୂହ ତାର ଦନ୍ତପଂକ୍ତି ଏବଂ ବୀରପୁରୁଷମାନଙ୍କ ମୁଣ୍ଡମାଳା ତା'ର ଆହାର ସାମଗ୍ରୀ ପରି ଦେଖାଯାଉଥିଲା । ସୁନ୍ଦରସେନ ମନ୍ଦିର ମଧ୍ୟରେ ଦେବୀଙ୍କ ଦର୍ଶନ ଲାଭ କରି ପ୍ରଣାମ ପୂର୍ବକ ପ୍ରାର୍ଥନା କଲେ—

''ଦାରିତୋଦ୍ଦାମଦୈତ୍ୟେନ ତ୍ରିଶିଖେନାସ୍ରବର୍ଷିଣା
ଶମିତାସୁରସନ୍ତାପେ ପ୍ରଣତାଭୟଦାୟିନି ॥
ନିର୍ବାପୟ ପ୍ରସନ୍ନେନ ଲୋଚନେନାମୃତଶ୍ଚ୍ୟୁତା
ଦୃଷ୍ଟ୍ୱା ମାଂ ଦୁଃଖଦାବାଗ୍ନିଦଗ୍ଧଂ ଦେବି ନମୋଽସ୍ତୁତେ ।''

ଅର୍ଥାତ୍ 'ହେ ଦେବି ! ରକ୍ତରଞ୍ଜିତ ତ୍ରିଶୂଳ ଦ୍ୱାରା ଆପଣ ଦୁର୍ଦ୍ଧାନ୍ତ ଦୈତ୍ୟମାନଙ୍କୁ ନିଧନ କରି ପୃଥିବୀକୁ ଭୀତିମୁକ୍ତ କରିଛନ୍ତି । ଆପଣ ନିଜ ଭକ୍ତମାନଙ୍କର ଅଭୟଦାୟିନୀ । ଆପଣ ନିଜର ପ୍ରସନ୍ନ ଏବଂ ଅମୃତମୟ ଦୃଷ୍ଟିରେ ଦୁଃଖରୂପକ ଦାବାଗ୍ନି ମଧ୍ୟରେ ସନ୍ତପ୍ତ ହେଉଥିବା ମୋ ପ୍ରତି କଟାକ୍ଷପାତ କରନ୍ତୁ । ମୋର ଦୁଃଖ ଦୂର କରନ୍ତୁ । ମୁଁ ଆପଣଙ୍କୁ ନମସ୍କାର କରୁଅଛି ।'

ସୁନ୍ଦରସେନ ଏହିପରି ପ୍ରାର୍ଥନା କରୁଥିବା ବେଳେ ବଳିଦାନ କରିବାପାଇଁ ପୁଳିନ୍ଦ ରାଜ ବିନ୍ଧ୍ୟକେତୁ ଆସି ସେଠାରେ ଉପସ୍ଥିତ ହେଲେ । ସୁନ୍ଦରସେନ ଦେଖିବା ମାତ୍ରେ ତାଙ୍କୁ ଚିହ୍ନିପାରିଲେ । କିନ୍ତୁ ଲଜ୍ଜାବଶତଃ ମିତ୍ରମାନଙ୍କୁ ଧୀର ସ୍ୱରରେ କହିଲେ, 'ଆରେ ଦେଖ ! ଇଏ ତ ସେହି ପୁଳିନ୍ଦରାଜ ବିନ୍ଧ୍ୟକେତୁ । ପିତାଙ୍କ ସେବାପାଇଁ ସେ ବହୁବାର ଆମ ରାଜଭବନକୁ ଆସିଛନ୍ତି । ପିତାଙ୍କ କୃପାରୁ ସେ ଏହି ଅରଣ୍ୟାନୀର ଅଧିପତି । ସେ ଯାହାହେଉ, ଆମେ ବର୍ତ୍ତମାନ କିଛି କହିବା ବା ଶୁଣିବା ଉଚିତ ନୁହେଁ । ଏପରି ପରିସ୍ଥିତିରେ ନିଜର ପରିଚୟ ଦେବା ଅପେକ୍ଷା ସ୍ୱାଭିମାନୀ ପୁରୁଷମାନେ ମୃତ୍ୟୁକୁ ଶ୍ରେୟସ୍କର ମନେ କରିଥାନ୍ତି ।'

ରାଜକୁମାର ମିତ୍ରମାନଙ୍କୁ ଏପରି କହୁଥିବା ବେଳେ ରାଜା ବିନ୍ଧ୍ୟକେତୁ ଭୃତ୍ୟମାନଙ୍କୁ କହିଲେ, 'ତମେ ସବୁ ଯେଉଁ ବୀର ପୁରୁଷକୁ ବଳି ଦେବାପାଇଁ ଆଣିଛ ତାକୁ ମୋତେ ଟିକିଏ ଦେଖାଅ । ସେ ଆମର ବହୁ ସୈନିକଙ୍କ ଜୀବନ ନେଇଛି ।' ଏଥିରେ ଭୃତ୍ୟମାନେ ସୁନ୍ଦରସେନଙ୍କୁ ଆଣି ତାଙ୍କ ସମ୍ମୁଖରେ ଠିଆ କରାଇଲେ । ସୁନ୍ଦରସେନଙ୍କ ଶରୀର ଧୂଳିଧୂସରିତ ଏବଂ କ୍ଷତାକ୍ତ ଥିଲା । ପ୍ରଥମେ ସେ ରାଜକୁମାରଙ୍କୁ ଚିହ୍ନିପାରିଲେ ନାହିଁ । କିନ୍ତୁ ସେ ତାଙ୍କର ପରିଚିତ ମନେହେଉଥିଲେ । ତେଣୁ ବଳିଦେବାକୁ ନେବା ପୂର୍ବରୁ ସେ ତାଙ୍କର ପରିଚୟ ଏବଂ ସେଠାକୁ ଧରା ହୋଇଆସିଥିବା ବୃତ୍ତାନ୍ତ ଜାଣିବାକୁ ଚାହିଁଲେ । କିନ୍ତୁ ସୁନ୍ଦରସେନ ସ୍ୱାଭିମାନବଶତଃ ନିଜର ପରିଚୟ ଗୋପନ ରଖି ଉତ୍ତର ଦେଲେ, 'ମୁଁ ଯିଏ ହେଉ ଏବଂ ଯେଉଁଠାରୁ ଆସିଥାଉ, ସେଥିରେ ତୁମର କ'ଣ ଅଛି ? ତୁମର ଯାହା କର୍ତ୍ତବ୍ୟ ତାହା କରିଯାଅ ।'

ରାଜକୁମାରଙ୍କ କଣ୍ଠସ୍ୱର ବିନ୍ଧ୍ୟକେତୁଙ୍କ ସନ୍ଦେହ ଦୂର କଲା । ସେ ବିକଳରେ 'ହାୟ, ହାୟ' କରି ଭୂମି ଉପରେ ଲୋଟିଗଲେ । ପୁଣି ଉଠିପଡ଼ି ରାଜକୁମାରଙ୍କୁ ହୃଦୟରେ ଲଗାଇ ବିଳାପ କରିବାକୁ ଲାଗିଲେ । ସେ କହୁଥାନ୍ତି, 'ପ୍ରଭୁ, ମହାରାଜ ମହାସେନ ! ଦେଖନ୍ତୁ, ମୁଁ ପାପିଷ୍ଠ ଆପଣଙ୍କ ଉପକାରର କି ପ୍ରକାର ପ୍ରତ୍ୟୁପକାର କରିଅଛି ! ଆପଣଙ୍କ

ପ୍ରାଣୋପମ ପୁତ୍ର, ଜାଣେ ନାହିଁ, କେଉଁଠାରୁ ଆସି ମୋ ନିକଟରେ ପହଞ୍ଚିଥିଲେ । ମୁଁ ତାଙ୍କର ଏପରି ଅବସ୍ଥା କରିଛି ।' ବିନ୍ଧ୍ୟକେତୁଙ୍କର ଏ ପ୍ରକାର ବିଳାପ ଅନ୍ୟମାନଙ୍କ ମନରେ ମଧ ଶୋକର ଛାୟା ଖେଳାଇ ଦେଲା । ଉପସ୍ଥିତ ସମସ୍ତଙ୍କ ଚକ୍ଷୁ ସଜଳ ହୋଇଉଠିଲା । ସୁନ୍ଦରସେନଙ୍କ ମିତ୍ରମାନେ ବିନ୍ଧ୍ୟକେତୁଙ୍କୁ ସାନ୍ତ୍ୱନା ଦେଇ କହିଲେ 'ପୁଳିନ୍ଦରାଜ ! ଆପଣ ଯେ ରାଜକୁମାରଙ୍କୁ ପ୍ରଥମ ଦର୍ଶନରୁ ହିଁ ଚିହ୍ନିପାରିଲେ, ଏହା କ'ଣ ଯଥେଷ୍ଟ ନୁହେଁ । ଯଦି କିଛି ଅନର୍ଥ ଘଟିଥାନ୍ତା ତା'ହେଲେ ଆପଣ ଆଉ କି ଉପାୟ କରିପାରିଥାନ୍ତେ । ତେଣୁ ବର୍ତ୍ତମାନ ଆପଣ ଆନନ୍ଦିତ ହେବାକଥା । ଦୁଃଖର ଅବସର କୋଉଠି ?'

ପୁଳିନ୍ଦରାଜ ସୁନ୍ଦରସେନଙ୍କ ଚରଣରେ ପ୍ରଣିପାତ କରିବା ସହିତ ସମସ୍ତ ବନ୍ଦୀଙ୍କୁ ମୁକ୍ତ କରିଦେଲେ । ସେ ସମ୍ମାନ ଓ ସମୁଚିତ ସତ୍କାର ପୂର୍ବକ ନିଜ ବାସଭବନକୁ ନେଇ ସ୍ନାନପାନଦ୍ୱାରା ତାଙ୍କୁ ଆପ୍ୟାୟନ କଲେ । କ୍ଷତ ସ୍ଥାନଗୁଡ଼ିକରେ ଉପଯୁକ୍ତ ଔଷଧର ପଟି ବନ୍ଧାଗଲା । ସେ ବିନୀତଭାବେ ରାଜକୁମାରଙ୍କ ଏ ଅବସ୍ଥାରେ ଆସି ପଡ଼ିବା ବୃତ୍ତାନ୍ତ ଜାଣିବାପାଇଁ ପ୍ରଶ୍ନ କଲେ । ଉତ୍ତରରେ ସୁନ୍ଦରସେନ ତାଙ୍କର ସମଗ୍ର ବୃତ୍ତାନ୍ତ କହି ଶୁଣାଇବା ପରେ ପୁଳିନ୍ଦରାଜ ଆଶ୍ଚର୍ଯ୍ୟ ଚକିତ ଭାବରେ କହିଲେ, 'ବଡ଼ ଆଶ୍ଚର୍ଯ୍ୟର କଥା, ମନ୍ଦାରବତୀଙ୍କପାଇଁ ଆପଣ ରାଜ୍ୟରୁ ବାହାରିଥିଲେ କିନ୍ତୁ ସମୁଦ୍ରରେ ଯାଇ ପଡ଼ିଲେ । ପୁଣି ମହର୍ଷି ମତଙ୍ଗଙ୍କ ଆଶ୍ରମରେ ମନ୍ଦାରବତୀଙ୍କ ସହିତ ଆପଣଙ୍କର ସାକ୍ଷାତ ହେଲା । ଯେଉଁ ବଣିକ ଯୁବକକୁ ଆପଣ ବିଶ୍ୱାସ କଲେ, ସେ ପୁଣି ମନ୍ଦାରବତୀଙ୍କୁ ଅପହରଣ କରିନେଇ ଚାଲିଗଲା । ଆପଣ ଏହି ଅରଣ୍ୟରେ ପ୍ରବେଶ କରି ବଳିଦାନପାଇଁ କାରାରୁଦ୍ଧ ହେଲେ । ମୁଁ ପୁଣି ଆପଣଙ୍କୁ ଚିହ୍ନିପାରିଲି । ଆପଣ ମୃତ୍ୟୁମୁଖରୁ ଫେରିଆସିଲେ । ବିଧାତାର ଏ ବିଧାନ ବଡ଼ ବିଚିତ୍ର ମନେହେଉଛି । ସେହି ବିଧାତାକୁ ମୋର କୋଟି କୋଟି ପ୍ରଣାମ । ଆପଣ ମନ୍ଦାରବତୀଙ୍କ ସମ୍ପର୍କରେ ଆଦୌ ଚିନ୍ତା କରନ୍ତୁ ନାହିଁ । ଯେଉଁ ବିଧାତା ଏତେ ସବୁ କରିପାରେ ସେ କ'ଣ ଏତିକି କରିବ ନାହିଁ !'

ବିନ୍ଧ୍ୟକେତୁ ଏହା କହୁଥିବା ବେଳେ ତାଙ୍କ ସେନାପତି ପ୍ରସନ୍ନତାପୂର୍ବକ ଦ୍ରୁତ ପଦରେ ଆସି ନିବେଦନ କଲା, 'ଦେବ ! ଜଣେ ବଣିକ ଯୁବକ ବହୁ ଧନରତ୍ନ ସହ ଆମ ଅରଣ୍ୟ ମଧ୍ୟରେ ଆସି ପ୍ରବେଶ କରିଛି । ତା' ସହିତ ତା'ର ବହୁ ଅନୁଚର ଏବଂ ଜଣେ ଅତ୍ୟନ୍ତ ସୁନ୍ଦରୀ ସ୍ତ୍ରୀ ମଧ ରହିଛି । ଏହି ସମ୍ବାଦ ପାଇବା ମାତ୍ରେ ମୁଁ ସୈନିକମାନଙ୍କ ସହିତ ଯାଇ ତାକୁ ତା'ର ଧନରତ୍ନ, ସ୍ତ୍ରୀ ଓ ଅନୁଚରମାନଙ୍କ ସହିତ ବାନ୍ଧିଆଣିଛି ।

ସେମାନେ ବାହାରେ ଠିଆ ହୋଇଛନ୍ତି ।' ଏହା ଶୁଣିବା ମାତ୍ରେ ସୁନ୍ଦରସେନ ଓ ବିନ୍ଧ୍ୟକେତୁ ମନେମନେ ସେହି ବଣିକ ଯୁବକ ଓ ମନ୍ଦାରବତୀ ହୋଇଥିବା ଆଶାକଲେ । ଉଭୟଙ୍କ ମୁହଁରୁ ଏକ ସଙ୍ଗେ ସେମାନଙ୍କୁ ନେଇ ଆସିବାପାଇଁ ନିର୍ଦ୍ଦେଶ ବାହାରିଗଲା । ସେନାପତି ସଙ୍ଗେସଙ୍ଗେ ଆଦେଶ ପାଳନ କଲା । ଦୃଢ଼ବୁଦ୍ଧି ସେମାନଙ୍କୁ ଦେଖିବା ମାତ୍ରେ ଚିତ୍କାର କରି ଉଠିଲେ, 'ଇଏତ ସେହି ଦୁଷ୍ଟ ବଣିକ ଯୁବକ ଏବଂ ଏ ତ ଦେବୀ ମନ୍ଦାରବତୀ ।' ଶୋକାକୁଳ କଣ୍ଠରେ ପୁଣି 'ଦେବି ! ଆପଣଙ୍କର ଏ କି ଅବସ୍ଥା ! ଧୂମ ଧୂପିତ ଲତା ପରି ଆପଣ ମ୍ଳାନ ଦେଖାଯାଉଛନ୍ତି । ଆପଣଙ୍କ ସେହି ପୁଷ୍ପାଭରଣ କାହିଁ ? ଆପଣଙ୍କ ଅଧର ପଲ୍ଲବ ଶୁଷ୍କ ହୋଇପଡ଼ିଛି ।' ଦୃଢ଼ବୁଦ୍ଧି ଏହିପରି କହୁଥିବାବେଳେ ସୁନ୍ଦରସେନ କାଳ ବିଳମ୍ବ ନକରି ମନ୍ଦାରବତୀଙ୍କୁ ଦୃଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ ।

ଦୀର୍ଘ ସମୟ ଧରି ଉଭୟ ସୁନ୍ଦରସେନ ଓ ମନ୍ଦାରବତୀ କେବଳ ଅଶ୍ରୁମୋଚନ ହିଁ କରୁଥାନ୍ତି । ସେମାନଙ୍କ କଣ୍ଠରୁ ବାକ୍‌ସ୍ଫୂର୍ତ୍ତି ହେଉନଥାଏ । ସତେ ଯେପରି ଉଭୟେ ପରସ୍ପରର ଦୁଃଖକୁ ଅଶ୍ରୁଧାରାଦ୍ୱାରା ଦୂରୀଭୂତ କରୁଥାଆନ୍ତି । ବିନ୍ଧ୍ୟକେତୁ ଉଭୟଙ୍କୁ ବୁଝାଇ ସୁଝାଇ ଶାନ୍ତ କଲେ । ବଣିକ ଯୁବକକୁ 'ତତେ ବିଶ୍ୱାସ କରିଥିବା ଏହି ରମଣୀଙ୍କୁ ଅପହରଣ କରି ତୋର କଣ ଲାଭ ହେଲା' ବୋଲି ସେ କ୍ରୁଦ୍ଧ ସ୍ୱରରେ ପଚାରିବାରୁ ଯୁବକଟି ଭୀତତ୍ରସ୍ତ କଣ୍ଠରେ କହିଲା, 'ମୁଁ ନିଜର ବିନାଶପାଇଁ କେବଳ ଏହିପରି ବ୍ୟର୍ଥ ପ୍ରୟାସ କରିଥିଲି । ଏହି ମନସ୍ୱିନୀ ଦେବୀ ଅଧର୍ଷଣୀୟା । ସେ ନିଜ ସତୀତ୍ୱଦ୍ୱାରା ନିଜକୁ ରକ୍ଷା କରିପାରନ୍ତି । ମୁଁ ଏହି ଅଗ୍ନିଶିଖାତୁଲ୍ୟା ନାରୀଙ୍କୁ ସ୍ପର୍ଶ ସୁଦ୍ଧା କରିପାରିନାହିଁ । ମୁଁ ଭାବିଥିଲି ଯେ ଏହାଙ୍କୁ ନେଇ ନିଜ ରାଜ୍ୟକୁ ଚାଲିଯିବି । ସେଠାରେ କିଛିଦିନ ମଧ୍ୟରେ କ୍ରୋଧ ଶାନ୍ତ ହେଲେ ମୁଁ ଏହାଙ୍କ ସମ୍ମତିକ୍ରମେ ବିବାହ କରିବି । କିନ୍ତୁ ମୋର ଆଶା ଆଶାରେ ହିଁ ରହିଗଲା । ବର୍ତ୍ତମାନ ମୁଁ ଆସି ଏହି ଅବସ୍ଥାରେ ପଡ଼ିଛି ।' ବଣିକ ଯୁବକଠାରୁ ଏହାଶୁଣି ବିନ୍ଧ୍ୟକେତୁ ତାକୁ ବଧ କରିବାପାଇଁ ଆଦେଶ ଦେଲେ । କିନ୍ତୁ ଦୟାଶୀଳ ସୁନ୍ଦରସେନଙ୍କ ଯୋଗୁଁ ସେ ବଞ୍ଚିଗଲା । ବିନ୍ଧ୍ୟକେତୁ ତା'ର ସମସ୍ତ ଧନସମ୍ପତ୍ତି ନିଜର କରିନେଲେ । ଜୀବନ ଗଲେ ମନୁଷ୍ୟ ଥରେ ମାତ୍ର ମରିଥାଏ କିନ୍ତୁ ଧନବିନା ତାକୁ ପ୍ରତିଦିନ ମରିବାକୁ ପଡ଼େ ।

**ଦିନେ ଦିନେ ମ୍ରିୟନ୍ତେ ହି ଗତାର୍ଥା ନ ଗତାସବଃ ।**

ସୁନ୍ଦରସେନଙ୍କ କୃପାରୁ ପ୍ରାଣଲାଭ କରି ଦୁଷ୍ଟ ବଣିକ ଲକ୍ଷ୍ୟହୀନ ଭାବେ ପଳାୟନ କଲା ।

ରାଜା ବିନ୍ଧ୍ୟକେତୁ ରାଜପୁତ୍ର ଓ ମନ୍ଦାରବତୀଙ୍କୁ ନେଇ ନିଜ ରାଣୀ ଅନ୍ତଃପୁରରେ ପ୍ରବେଶ କଲେ । ରାଣୀଙ୍କୁ ଆଦେଶ ଦେଲେ ଯେ ସେ ମନ୍ଦାରବତୀଙ୍କୁ ସ୍ନାନ କରାଇ ଉତ୍ତମ ପରିଧେୟ ଓ ଅଳଙ୍କାର-ଅନୁଲେପନଦ୍ୱାରା ବିଭୂଷଣ କରାଇବେ । ନିଜେ ରାଜା ସୁନ୍ଦରସେନଙ୍କୁ ସ୍ନାନ କରାଇ ଉତ୍ତମ ବସ୍ତ୍ର ଭୂଷଣଦ୍ୱାରା ସନ୍ତୁଷ୍ଟ କଲେ । ରାଜକୁମାର ଏକ ଉଚ୍ଚ ଆସନ ଉପରେ ଯାଇ ବସନ୍ତେ ସେ ଗଜମୁକ୍ତା ଓ କସ୍ତୁରୀ ପ୍ରଭୃତି ବନଜାତ ଦ୍ରବ୍ୟ ଉପହାର ଦେଇ ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ଏହି ଉପଲକ୍ଷରେ ଶବର ପଲ୍ଲୀରେ ଆନନ୍ଦଉତ୍ସବ ପାଳିତ ହେଲା । ପୁଳିନ୍ଦଯୁବତୀମାନଙ୍କର ମନୋରମ ନୃତ୍ୟଗୀତରେ ବନଭୂମି ମୁଖରିତ ହୋଇଉଠିଲା ।

ପରଦିନ ସୁନ୍ଦରସେନ ପୁଳିନ୍ଦାଧିପତିଙ୍କୁ କହିଲେ, 'ଦେଖନ୍ତୁ, ମୋର କ୍ଷତ ସବୁ ଆପଣଙ୍କ ବନୌଷଧରୁ ଭରିଗଲା । ମୋର ମନୋରଥ ମଧ୍ୟ ପୂର୍ଣ୍ଣ ହୋଇଛି । ବର୍ତ୍ତମାନ ଆମେ ଆମ ନଗରୀକୁ ଯିବୁ । ଆପଣ ଜଣେ ପତ୍ରବାହକକୁ ପିତାଙ୍କ ନିକଟକୁ ପଠାନ୍ତୁ ଏବଂ ଆମେ ଯାଉଥିବା ସମ୍ବାଦ ମଧ୍ୟ ପ୍ରେରଣ କରନ୍ତୁ ।' ରାଜକୁମାରଙ୍କ ଅନୁରୋଧ ଅବିଳମ୍ବେ କାର୍ଯ୍ୟକାରୀ ହେଲା ।

ପତ୍ରବାହକ ଅଳକାରେ ପହଞ୍ଚିଲା ବେଳକୁ ରାଜା ମହାସେନ ପୁତ୍ରର କୌଣସି ସମ୍ବାଦ ଲାଭ ନକରି ରାଣୀଙ୍କ ସହିତ ଅଗ୍ନି ପ୍ରବେଶ ପାଇଁ ପ୍ରସ୍ତୁତ ହେଉଥାନ୍ତି । ଶୋକାକୁଳ ନଗରବାସୀ ଶିବମନ୍ଦିର ନିକଟସ୍ଥ ଜ୍ୱଳନ୍ତ ଅଗ୍ନିର ଚତୁର୍ଦ୍ଦିଗରେ ଘେରି ରହି ଅଶ୍ରୁ ବିସର୍ଜନ କରୁଥାନ୍ତି ।

ଦୂରରୁ ରାଜାଙ୍କୁ ଏ ଅବସ୍ଥାରେ ଦେଖି ପତ୍ରବାହକ ପୁଳିନ୍ଦ ଉଚ୍ଚସ୍ୱରରେ ସେ ଆସିଥିବା ସୂଚନା ଦେଇ ଦୌଡ଼ିବା ଆରମ୍ଭ କଲା । ତା'ର ଶରୀର ଧୂଳିଧୂସରିତ ଥିଲା । ହାତରେ ତାର ଧନୁର୍ବାଣ । ଲତା ବଲ୍‌କଳରେ ତା'ର ଜଟା ଆବଦ୍ଧ ଥିଲା । ବର୍ଣ୍ଣ ତା'ର ଘନକୃଷ୍ଣ । ସେ କଟିରେ ବେଲପତ୍ରର ମାଳା ପରିଧାନ କରିଥିଲା । ରାଜାଙ୍କୁ ଶୁଣାଇଲା ପରି ସେ କହୁଥାଏ, 'ଦେବ ! ଆପଣଙ୍କ ଜୟହେଉ । ଯୁବରାଜ ସୁନ୍ଦରସେନ ସମୁଦ୍ର ପାର କରି ମନ୍ଦାରବତୀଙ୍କ ସହିତ ଆସୁଛନ୍ତି । ପ୍ରଭୁ ! ସେ ଆମର ରାଜା ବିନ୍ଧ୍ୟକେତୁଙ୍କ ଶବର ପଲ୍ଲୀରେ ଆସି ପହଞ୍ଚିଥିଲେ । ତାଙ୍କ ସହିତ ସେ ସେଠାରୁ ବାହାରିଲେଣି । ସେମାନେ ମୋତେ ଆପଣଙ୍କୁ ଏ ସମ୍ବାଦ ଦେବାପାଇଁ ଆଗରୁ ପଠାଇଛନ୍ତି ।' ଶବରର କଥାଶୁଣି ରାଜା ମହାସେନ ହଠାତ୍ ହତଚକିତ ହୋଇ ପଡ଼ିଲେ । ପତ୍ରବାହକ ବିନ୍ଧ୍ୟକେତୁଙ୍କ ପତ୍ରଟିକୁ ରାଜାଙ୍କ ପଦତଳେ ସ୍ଥାପନ କଲା । ପତ୍ରଟି ପଢ଼ାଯିବା ପରେ ସମସ୍ତ ବୃତ୍ତାନ୍ତ

ଜାଣି ଉପସ୍ଥିତ ଜନତା ବିସ୍ମିତ ହୋଇପଡ଼ିଲେ । ସେମାନଙ୍କ ମଧ୍ୟରେ ଆନନ୍ଦ କୋଳାହଳ ଆରମ୍ଭ ହେଲା । ରାଜା ମହାସେନଙ୍କ ଶୋକ ଦୂରୀଭୂତ ହେଲା । ପତ୍ରବାହକର ସ୍ୱାଗତ ସତ୍କାର କରି ସେ ରାଜ୍ୟବାସୀଙ୍କ ସହିତ ରାଜଧାନୀରେ ପ୍ରବେଶ କଲେ ।

ପୁତ୍ରର ଆଗମନ ବାର୍ତ୍ତାଶୁଣି ରାଜା ମହାସେନ ବିଳମ୍ବ ସହ୍ୟ କରିପାରିଲେ ନାହିଁ । ସେ ପରଦିନ ହଂସଦ୍ୱୀପର ରାଜା ମନ୍ଦାରସେନଙ୍କ ସହିତ ପୁତ୍ର ଓ ପୁତ୍ରବଧୂଙ୍କୁ ସ୍ୱାଗତ କରିବାପାଇଁ ରାଜଧାନୀରୁ ନିଷ୍କ୍ରାନ୍ତ ହେଲେ । ଅସଂଖ୍ୟ ଚତୁରଙ୍ଗ ସେନା ପୃଥିବୀ କମ୍ପିତ କରି ତାଙ୍କର ଅନୁଗମନ କରୁଥାନ୍ତି ।

ଏଣେ ସୁନ୍ଦରସେନ ମନ୍ଦାରବତୀଙ୍କ ସହିତ ଶବରପଲ୍ଲୀରୁ ନିଜ ରାଜ୍ୟ ଅଭିମୁଖରେ ଅଗ୍ରସର ହେଲେ । ତାଙ୍କ ସହିତ ଦୃଢ଼ବୁଦ୍ଧି ତ ଥିଲେ, କାରାଗାର ମଧ୍ୟରେ ମିଳିତ ହୋଇଥିବା ବିକ୍ରମଶକ୍ତି ଓ ଭୀମଭୁଜ ମଧ ତାଙ୍କର ଅନୁଗାମୀ ହେଲେ । ସୁନ୍ଦରସେନ ବାୟୁ ସହିତ ବାର୍ତ୍ତାଳାପ କରୁଥିବା ଏକ ଅଶ୍ୱ ପୃଷ୍ଠରେ ଆରୋହଣ କରିଥାନ୍ତି । ପୁଳିନ୍ଦରାଜ ବିନ୍ଧ୍ୟକେତୁ ମଧ ସମାନ ବେଗଗାମୀ ଅଶ୍ୱପୃଷ୍ଠରେ ପ୍ରଭୁକୁମାରଙ୍କ ଅନୁସରଣ କରୁଥାନ୍ତି । ପୁଳିନ୍ଦ ସେନା ଦ୍ୱାରା ସମଗ୍ର ବନଭୂମି ଆଚ୍ଛାଦିତ ହୋଇପଡ଼ିଥାଏ । କିଛିଦିନ ମଧ୍ୟରେ ସେମାନେ ନିଜ ରାଜ୍ୟର ନିକଟବର୍ତ୍ତୀ ହେଲେ । ପିତା ମହାସେନ ହିତ ମିତ୍ର ଓ ଅନୁଚରମାନଙ୍କ ସହିତ ଆସୁଥିବା ସେମାନଙ୍କର ଦୃଷ୍ଟିଗୋଚର ହେଲା । ରାଜକୁମାର ପିତାଙ୍କୁ ଦେଖିବା ମାତ୍ରେ ଅଶ୍ୱପୃଷ୍ଠରୁ ଅବତରଣ କରି ମିତ୍ରମାନଙ୍କ ସହିତ ତାଙ୍କ ଚରଣ ପ୍ରାନ୍ତରେ ପ୍ରଣିପାତ ଜଣାଇଲେ । ପିତା ପୁତ୍ରଙ୍କର ଏହି ମିଳନ ଦର୍ଶକମାନଙ୍କୁ ଉଲ୍ଲସିତ କଲା । ପୂର୍ଣ୍ଣଚନ୍ଦ୍ର ଦର୍ଶନରେ ସାଗର ଉତ୍‌ଫୁଲ୍ଲିତ ହେଲାପରି ମହାସେନ ଓ ମନ୍ଦାରସେନ ନିଜ ନିଜର ଆନନ୍ଦାତିଶଯ୍ୟକୁ ରୋଧ କରିପାରିଲେ ନାହିଁ । ବୋହୂ ମନ୍ଦାରବତୀ ପାଦରେ ଅବନତ ହେଉଥିବା ଦେଖି ମହାସେନ ନିଜକୁ ଏବଂ ନିଜର ରାଜବଂଶକୁ ସାର୍ଥକ ମନେ କଲେ । ଦୃଢ଼ବୁଦ୍ଧି ପ୍ରଭୃତି ପୁତ୍ରର ସଚିବମିତ୍ରମାନେ ମଧ ରାଜାଙ୍କୁ ପ୍ରଣାମ ଜଣାଇ ଅଭିନନ୍ଦିତ ହେଲେ । ପୁଳିନ୍ଦରାଜ ବିନ୍ଧ୍ୟକେତୁଙ୍କୁ ବିଶେଷ ରୂପେ ସମ୍ମାନିତ କରାଗଲା । ପିତା ପରିଚିତ କରାଇଦେବାରୁ ସୁନ୍ଦରସେନ ଶ୍ୱଶୁର ମନ୍ଦାରଦେବଙ୍କ ପାଦ ଛୁଇଁ ପ୍ରଣାମ କଲେ । ଏ ସମୟରେ ପୂର୍ବରୁ ଅଳକା ଫେରିଆସିଥିବା ଅନ୍ୟ ଦୁଇଜଣ ମିତ୍ର ଚଣ୍ଡପ୍ରଭ ଓ ବ୍ୟାଘ୍ରପରାକ୍ରମ ପାଦ ସ୍ପର୍ଶ କରୁଥିବା ଦେଖି ସୁନ୍ଦରସେନଙ୍କ ସକଳ ମନୋରଥ ପୂର୍ଣ୍ଣ ହେଲା । ସମସ୍ତେ ଫେରି ଆସିଥିବା ଶୁଣି ଶଶାଙ୍କପୁରରୁ ରାଜା ମହେନ୍ଦ୍ରାଦିତ୍ୟ ମଧ ସେଠାରେ ଆସି ପହଞ୍ଚିଲେ । ନଳକୂବରଙ୍କ ସହିତ ରମ୍ଭା ତୁଲ୍ୟ ସୁନ୍ଦରସେନ ମନ୍ଦାରବତୀଙ୍କ ସହିତ ଶୋଭା ପାଉଥାନ୍ତି ।

ଏହାପରେ ସମସ୍ତେ ସମସ୍ତ ସୌଭାଗ୍ୟ ଓ ସମ୍ପଦର ନିବାସଭୂମି ଅଳକାପୁରୀ ମଧ୍ୟରେ ପ୍ରବେଶ କଲେ । ନଗରୀର ମହିଳାମାନେ ବାତାୟନ ମାର୍ଗରୁ ଦୃଷ୍ଟିରୂପକ କମଳଦ୍ୱାରା ରାଜକୁମାର ଓ ରାଜବଧୂଙ୍କୁ ନୀରାଜନା କରୁଥାନ୍ତି । ଆନନ୍ଦାଶ୍ରୁରେ ମାତାଙ୍କର ନୟନଯୁଗଳ ପରିପୂର୍ଣ୍ଣ ହୋଇଯାଇଥାଏ । ଉଭୟେ ତାଙ୍କ ପଦସ୍ପର୍ଶ କରି ପ୍ରଣତି ଜ୍ଞାପନ କଲେ । ରାଜଭବନର ହିତାକାଂକ୍ଷୀ ଓ ଭୃତ୍ୟମାନେ ଆନନ୍ଦ ଉତ୍ସବରେ ମାତିଗଲେ । ରାଜକୁମାରଙ୍କ ସେହି ଦିନଟି ହସଖୁସିରେ କଟିଗଲା ।

ପରଦିନ ଉତ୍ତମଲଗ୍ନ ଦେଖି ଉଭୟଙ୍କ ବିବାହ ସମ୍ପନ୍ନ ହେଲା । ସୁନ୍ଦରସେନଙ୍କ ବହୁଦିନର ଅଭିଳାଷ ପୂର୍ଣ୍ଣତା ଲାଭ କଲା । ସେ ମହର୍ଷି ମତଙ୍ଗଙ୍କଦ୍ୱାରା ପୂର୍ବରୁ ସମର୍ପିତା ମନ୍ଦାରବତୀଙ୍କ ପାଣି ଗ୍ରହଣ କଲେ । ଶ୍ୱଶୁର ମନ୍ଦାରଦେବ ମଧ୍ୟ ପୁତ୍ରହୀନ ଥିବାରୁ ବହୁମୂଲ୍ୟ ଧନରାଶି ପ୍ରଦାନ ପୂର୍ବକ ତାଙ୍କ ମୃତ୍ୟୁପରେ ସୁନ୍ଦରସେନଙ୍କୁ ନିଜର ଉତ୍ତରାଧିକାରୀ ଘୋଷଣା କଲେ । ମହାସେନ ରାଜ୍ୟରେ ନିଜର ବିଭବାନୁରୂପ ମହୋତ୍ସବ ପାଳନ କଲେ । ରାଜ୍ୟବାସୀଙ୍କୁ ପାନାହାରରେ ସନ୍ତୁଷ୍ଟ କରାଗଲା, ବନ୍ଦୀମାନଙ୍କୁ ମୁକ୍ତ କରାଗଲା । ରାଜ୍ୟରେ ସୁବର୍ଣ୍ଣ ମୁଦ୍ରା ସବୁ ବୃଷ୍ଟି କରାଗଲା ।

ମନ୍ଦାରବତୀଙ୍କୁ ଲାଭ କରି ସୁନ୍ଦରସେନ କୃତାର୍ଥ ହେଲେ । ଏମାନଙ୍କର ସଂଯୋଗ ଦେଖି ନଗରବାସିନୀ ନାରୀମାନେ ନୃତ୍ୟଗୀତରେ ଦୀର୍ଘଦିନ ପର୍ଯ୍ୟନ୍ତ ନଗରୀକୁ ମୁଖରିତ କରିରଖିଲେ । ଏହି ଆନନ୍ଦଉତ୍ସବ ମଧ୍ୟରେ ରାଜା ମହାସେନଙ୍କଦ୍ୱାରା ବହୁ ସମ୍ମାନିତ ହୋଇ ରାଜା ମନ୍ଦାରସେନ ନିଜ ରାଜ୍ୟକୁ ଫେରିଗଲେ । ରାଜା ମହେନ୍ଦ୍ରାଦିତ୍ୟ ଏବଂ ବନରାଜ ବିନ୍ଧ୍ୟକେତୁ ମଧ୍ୟ ନିଜ ନିଜ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।

ସମୟ କ୍ରମେ ରାଜା ମହାସେନ ପୁତ୍ରକୁ ସୁଯୋଗ୍ୟ ଓ ପ୍ରଜାପ୍ରିୟ ଦେଖି ନିଜହସ୍ତରେ ତାଙ୍କୁ ରାଜପଦରେ ଅଭିଷିକ୍ତ କରି ବାନପ୍ରସ୍ଥ ଅବଲମ୍ବନ କଲେ । ସୁନ୍ଦରସେନ ମଧ୍ୟ ନିଜ ବାହୁବଳରେ ଶତ୍ରୁମାନଙ୍କୁ ପରାସ୍ତ କରି ଦୀର୍ଘଦିନ ପର୍ଯ୍ୟନ୍ତ ନିଷ୍କଣ୍ଟକ ରାଜ୍ୟ ଶାସନ କରିବାକୁ ଲାଗିଲେ । ମନ୍ଦାରବତୀଙ୍କଯୋଗୁଁ ତାଙ୍କ ଆନନ୍ଦ ବହୁଗୁଣିତ ହେଉଥାଏ ।'

ପୂର୍ବୋକ୍ତ ସରୋବର ତଟରେ ସଚିବ ବ୍ୟାଘ୍ରସେନ ମୃଗାଙ୍କଦତ୍ତଙ୍କୁ ଗଳ୍ପଟି ଶୁଣାଇ ପୁଣି କହିଲେ, ''ପ୍ରଭୁ ! ଆଶ୍ରମ ମଧ୍ୟରେ ମହର୍ଷି କଣ୍ୱ ଆମକୁ ଏହି ବିଚିତ୍ର ଗଳ୍ପଟି ଶୁଣାଇବା ସଙ୍ଗେସଙ୍ଗେ ସାହସ ଦେଇ କହିଲେ, 'ପୁତ୍ର ! ଯେଉଁ ବୁଦ୍ଧିମାନ ପୁରୁଷମାନେ ଅତ୍ୟନ୍ତ କଠୋର ଓ ଦୁସ୍ତର ଦୁଃଖକୁ ସହ୍ୟ କରିନିଅନ୍ତି ସେହିମାନଙ୍କର ମନୋରଥ କେବଳ ପୂର୍ଣ୍ଣ ହୁଏ । କିନ୍ତୁ ଯେଉଁମାନେ ଧୈର୍ଯ୍ୟ ହରାଇ ନିଜ ଚେଷ୍ଟାରୁ ନିବୃତ୍ତ ରହନ୍ତି ସେମାନଙ୍କର ମନୋରଥ କଦାପି ପୂର୍ଣ୍ଣ ହୁଏ ନାହିଁ ।

ତତ୍‌ପୁତ୍ରକାଃ ସୁବିଷମାଣିଦୁରୁତ୍ତରାଣି
କୃଚ୍ଛ୍ରାଣି ଧୀରହୃଦୟାଃ କିଳ ଯେ ସହନ୍ତେ ।
ତେ ପ୍ରାପ୍ନୁବନ୍ତି ପରମିତ୍‌ଥମଭୀପ୍ସିତାନି
ନାନ୍ୟେ ତୁ ଯେ ଗଳିତସତ୍ତ୍ୱ ବିଲୁପ୍ତଚେଷ୍ଟାଃ ।।

ତେଣୁ ତୁମେମାନେ କାପୁରୁଷତା ତ୍ୟାଗକରି ଅଗ୍ରସର ହୁଅ । ତୁମର ସ୍ୱାମୀ ମୃଗାଙ୍କଦତ୍ତ ମଧ୍ୟ ନିଜ ମନ୍ତ୍ରୀମାନଙ୍କୁ ଲାଭକରି ଶଶାଙ୍କବତୀ ସହିତ ବହୁଦିନ ପର୍ଯ୍ୟନ୍ତ ପୃଥିବୀରେ ରାଜତ୍ୱ କରିବ ।' ମହର୍ଷି ଏହା କହିବା ପରେ ଆମେ ଧୈର୍ଯ୍ୟ ସଂଗ୍ରହ କଲୁ । ରାତିଟି ସେଠାରେ ବିତାଇଦେଇ ପରଦିନ ଆମେ ଶ୍ରାନ୍ତକ୍ଲାନ୍ତ ହୋଇ ଆସି ଏହି ଘନ ଅରଣ୍ୟ ମଧ୍ୟରେ ପ୍ରବେଶ କରିଥିଲୁ । କ୍ଷୁଧା ଓ ତୃଷା ଆମକୁ ବ୍ୟାକୁଳ କରୁଥାଏ । ଫଳ ଖାଇବା ଆଶାରେ ଆମେ ଗଣନାଥଙ୍କ ଏହି ବୃକ୍ଷ ଉପରେ ଆରୋହଣ କରି ନିଜେ ଫଳରେ ପରିଣତ ହୋଇଗଲୁ । ଆପଣଙ୍କ ତପସ୍ୟାଯୋଗୁଁ ଆଜି ଆମେ ମୁକ୍ତ ହୋଇଛୁ । ନାଗରାଜ ପାରାବତଙ୍କ ଅଭିଶାପ ଯୋଗୁଁ ଆପଣଙ୍କଠାରୁ ବିଚ୍ଛିନ୍ନ ହୋଇପଡ଼ିଥିବା ଆମ ଚାରିଜଣଙ୍କ ଏହାହିଁ ବିଚିତ୍ର ଅନୁଭୂତି । ବର୍ତ୍ତମାନ ଆମକୁ ଅଭିଶାପରୁ ମୁକ୍ତି ମିଳିଗଲା । ଚାଲନ୍ତୁ ସମସ୍ତେ ମିଶି କାର୍ଯ୍ୟସିଦ୍ଧି ପାଇଁ ପ୍ରୟାସ କରିବା ।''

ମନ୍ତ୍ରୀ ବ୍ୟାଘ୍ରସେନଙ୍କ କଥା ଶୁଣି ମୃଗାଙ୍କଦତ୍ତଙ୍କ ମନରେ ଶଶାଙ୍କବତୀଙ୍କୁ ଲାଭ କରିବା ଆଶା ବଳବତୀ ହୋଇଉଠିଲା । ସେମାନେ ଧୈର୍ଯ୍ୟଧାରଣ ପୂର୍ବକ ସେଠାରେ ରାତ୍ରିଯାପନ କଲେ ।

## ପଞ୍ଚତ୍ରିଂଶ ତରଙ୍ଗ

ପରଦିନ ପ୍ରଭାତରୁ ମୃଗାଙ୍କଦତ୍ତ ସରୋବର ତଟରେ ନିଦ୍ରା ତ୍ୟାଗ କରି ଉଠିବସିଲେ । ସମସ୍ତ ସଚିବ ଆସିଯାଇଥିବାରୁ ତାଙ୍କ ଚିତ୍ତବୃତ୍ତି ଉଲ୍ଲସିତ ଥିଲା । ସରୋବରରେ ନିତ୍ୟକର୍ମ ସମାପନ କରି ସେ ବୃକ୍ଷ ମଧ୍ୟରେ ଭଗବାନ ବିନାୟକଙ୍କ ଆରାଧନା କଲେ । ସଚିବ ଓ ଶ୍ରୁତଧି ପ୍ରସ୍ତୁତ ହେବାରୁ ଶଶାଙ୍କବତୀଙ୍କ ଉଜ୍ଜୟିନୀ ନଗରୀ ଅଭିମୁଖରେ ସେମାନଙ୍କର ଯାତ୍ରା ଆରମ୍ଭ ହେଲା ।

ପଥ ମଧ୍ୟରେ ସେମାନଙ୍କୁ ବହୁ ବନପ୍ରଦେଶ ଅତିକ୍ରମ କରିବାକୁ ପଡ଼ିଲା । ସହସ୍ର ପୁଷ୍କରିଣୀ ସେମାନେ ପାର ହୋଇଗଲେ । ତମାଳ ପୁଷ୍ପ ଆଚ୍ଛାଦିତ କେଉଁ ବନଭୂମି ଦିବସରେ ସୁଦ୍ଧା ରାତ୍ରିର ଭ୍ରମ ସୃଷ୍ଟି କରୁଥିଲା । କୋମଳ ପତ୍ର ଓ ପୁଷ୍ପ ପାଖୁଡ଼ାଗୁଡ଼ିକରୁ ଝରିପଡୁଥିବା ଶିଶିର ବିନ୍ଦୁ ବର୍ଷାରତୁର ଭ୍ରାନ୍ତି ସୃଷ୍ଟି କରୁଥାଏ । କେଉଁ ଅରଣ୍ୟରେ ବିଶାଳକାୟ ଉନ୍ମତ୍ତ ହସ୍ତୀମାନେ ବଂଶକୁଞ୍ଜଗୁଡ଼ିକୁ ନଷ୍ଟଭ୍ରଷ୍ଟ କରୁଥାନ୍ତି । ଅର୍ଜ୍ଜୁନ ବୃକ୍ଷରାଜି କୌଣସି ବନଭୂମିକୁ ବିରାଟ ନଗରୀର ଶୋଭା ପ୍ରଦାନ କରୁଥାନ୍ତି । ବିରାଟକାୟ ପାର୍ବତ୍ୟ ଗୁହାସବୁ ବନପୁଷ୍ପ ଆଚ୍ଛାଦିତ ଥିଲେ ସୁଦ୍ଧା ଅତ୍ୟନ୍ତ ନିର୍ମଳ ଓ ସ୍ୱଚ୍ଛ ଦେଖାଯାଉଥାନ୍ତି । କିଛି ଗୁମ୍ଫା ମଧ୍ୟରେ ମୁନିଋଷିମାନେ ତପଶ୍ଚରଣ କରୁଥିବା ବେଳେ ଅନ୍ୟଗୁଡ଼ିକ ବ୍ୟାଘ୍ର, ବରାହ ଆଦି ହିଂସ୍ରଜନ୍ତୁମାନଙ୍କ ଆଶ୍ରୟ ସ୍ଥଳ ଥିଲା । ମୃଗାଙ୍କଦତ୍ତ କ୍ରମଶଃ ମିତ୍ର ଓ ସଚିବମାନଙ୍କ ସହିତ ଏ ସମସ୍ତ ସରୋବର, ପର୍ବତ ଓ ଅରଣ୍ୟ ଅତିକ୍ରମ କରି ଉଜ୍ଜୟିନୀର ନିକଟବର୍ତ୍ତୀ ହେଲେ ।

ଉଜ୍ଜୟିନୀ ନିକଟରେ ଗନ୍ଧବତୀ ନାମକ ନଦୀ ପ୍ରବାହିତ । ତା'ର ଶୀତଳ ଜଳରେ ସ୍ନାନକରି ପଥଚାରୀମାନଙ୍କର କ୍ଲାନ୍ତି ଦୂରୀଭୂତ ହେଲା । ସେମାନେ ନଦୀର ଅପର ତୀରରେ ଥିବା ମହାକାଳଙ୍କ ମହାଶ୍ମଶାନରେ ପହଞ୍ଚିଲେ । ଶ୍ମଶାନ ନରମୁଣ୍ଡ ଓ ଅସ୍ଥିଖଣ୍ଡ ସମୂହରେ ପରିପୂର୍ଣ୍ଣ ଥିଲା । ବୀର ବା ବେତାଳମାନଙ୍କଦ୍ୱାରା ଆବିଷ୍ଟ ନରକଙ୍କାଳଗୁଡ଼ିକ

ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥାଏ । ଭୂତ ପ୍ରେତମାନଙ୍କଦ୍ୱାରା ମୁଖରିତ ମହାଶ୍ମଶାନ ମଧ୍ୟରେ ଡାକିନୀମାନେ କ୍ରୀଡ଼ା କରୁଥାନ୍ତି । ଚିତା ଧୂମର ଦୁର୍ଗନ୍ଧ ଶ୍ମଶାନଟିକୁ ବୀଭତ୍ସ ଓ ଭୟାନକ କରିଥାଏ । ସେମାନେ ଏହି ଶ୍ମଶାନ ଅତିକ୍ରମ କରି ଅନ୍ୟତମ ପ୍ରାଚୀନ ନଗରୀ ଉଜ୍ଜୟିନୀ ମଧ୍ୟରେ ପ୍ରବେଶ କଲେ ।

ସେତେବେଳେ ଉଜ୍ଜୟିନୀରେ ରାଜା ଥାନ୍ତି କର୍ମସେନ । ନଗରୀର ରାଜମାର୍ଗଗୁଡ଼ିକ ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଆରକ୍ଷୀମାନଙ୍କ ଦ୍ୱାରା ସୁରକ୍ଷିତ ଥାଏ । ବହୁ ବୀର ଓ କୁଳୀନ ରାଜପୁତ୍ରମାନଙ୍କ ଦ୍ୱାରା ନଗରୀଟିର ଶାସନ କାର୍ଯ୍ୟ ପରିଚାଳିତ ହେଉଥାଏ । ନଗରୀର ଚତୁର୍ଦ୍ଦିଗରେ ସମୁଚ୍ଚ ପ୍ରାଚୀର । ପ୍ରାଚୀର ନିକଟରେ ହସ୍ତୀ, ଅଶ୍ୱ ଓ ରଥାରୋହୀ ସୈନିକମାନଙ୍କ ଆବାସ । ତେଣୁ ନଗରୀ ମଧ୍ୟରେ ପ୍ରବେଶ କରିବା ଅତ୍ୟନ୍ତ ଦୁଷ୍କର ବ୍ୟାପାର ଥିଲା । ନଗରୀ ମଧ୍ୟକୁ ଯିବା ଦୁଃସାଧ ଦେଖି ମୃଗାଙ୍କଦତ୍ତ ବିମନା ହୋଇପଡ଼ିଲେ । ସେ ମନ୍ତ୍ରୀମାନଙ୍କୁ କହିଲେ, 'ଏତେ କଷ୍ଟ ସହ୍ୟ କରି ଉଜ୍ଜୟିନୀ ନିକଟରେ ପହଞ୍ଚିଥିଲେ ସୁଦ୍ଧା ପ୍ରିୟାପ୍ରାପ୍ତି ତ ଦୂରର କଥା ନଗରୀ ମଧ୍ୟରେ ପ୍ରବେଶ କରିବା ମଧ୍ୟ ଏ ଅଭାଗାପାଇଁ ସମ୍ଭବ ହୋଇପାରୁନାହିଁ ।' ମନ୍ତ୍ରୀମାନେ ପରାମର୍ଶ ଦେଲେ, 'ଦେବ ! ଆମେ ମାତ୍ର ଆଠଜଣ । ସେନାସୁରକ୍ଷିତ ନଗରୀ ମଧ୍ୟରେ ବଳପୂର୍ବକ ପ୍ରବେଶ କରିବା ଆମ ପକ୍ଷରେ ଅସମ୍ଭବ । ଆପଣ କ'ଣ ଏହା ସମ୍ଭବ ମନେକରୁଛନ୍ତି ? ତେଣୁ ଆମକୁ କିଛି ଉପାୟ କରିବାକୁ ପଡ଼ିବ । କିଛି ସମୟ ଚିନ୍ତା କଲେ ନିଶ୍ଚୟ କୌଣସି ନା କୌଣସି ଉପାୟ ମିଳିଯିବ । ଦେବତା ଓ ମହର୍ଷିମାନେ ଆପଣଙ୍କ ମନୋରଥ ସିଦ୍ଧି କଥା ବାରମ୍ବାର କହିଥିବା କଥା କ'ଣ ଆପଣଙ୍କର ମନେନାହିଁ ?'

ସଚିବମାନଙ୍କର ପରାମର୍ଶ କ୍ରମେ ମୃଗାଙ୍କଦତ୍ତ କିଛିଦିନ ଧରି ନଗର ବାହାରେ ହିଁ ପରିକ୍ରମା କରୁଥାନ୍ତି । ତାଙ୍କ ଅନ୍ୟତମ ସଚିବ ବିକ୍ରମକେଶରୀ ପୂର୍ବରୁ ଯେଉଁ ବେତାଳକୁ ସିଦ୍ଧ କରିଥିଲେ ଦିନେ ସେ ରାଜକୁମାରଙ୍କ ଅନୁମତି କ୍ରମେ ତାକୁ ଆବାହନ କଲେ । ସେମାନଙ୍କ ଅଭିଳାଷ ଥିଲା ଯେ ବେତାଳ ରାଜକୁମାରୀଙ୍କୁ ତାଙ୍କ ବାସଭବନରୁ ଉଠାଇ ଆଣିବ ।

ବେତାଳ ଆସି ପହଞ୍ଚିଲା । ତାର ବର୍ଣ୍ଣ ଥିଲା ଘନକୃଷ୍ଣ । ସେ ଦୀର୍ଘକାୟ ଥିଲା । ଗଳାଟି ତାର ଓଟ ପରି । ହସ୍ତୀ ତୁଲ୍ୟ ତାର ମୁଖ ଶୁଣ୍ଢଯୁକ୍ତ । ତାର ପାଦଗୁଡ଼ିକ ମଇଁଷିର ପାଦପରି ଏବଂ ଆଖିଗୁଡ଼ିକ ଉଲ୍ଲୁକର ଆଖି ପରି । ତାର କାନ ଦୁଇଟି ଗଧର କାନପରି ଦେଖାଯାଉଥିଲା । ସେ ମଧ୍ୟ ନଗରୀ ମଧ୍ୟରେ ପ୍ରବେଶ କରିନପାରି ସ୍ୱସ୍ଥାନକୁ ଫେରିଗଲା ।

ଭଗବାନ ଭବାନୀପତିଙ୍କ ବର ପ୍ରଭାବରୁ ନଗରୀ ମଧ୍ୟରେ ଏ ପ୍ରକାର ଅତିଭୌତିକ ଶକ୍ତିମାନଙ୍କ ପ୍ରବେଶ ନିଷିଦ୍ଧ ଥିଲା ।

କିନ୍ତୁ ରାଜକୁମାରଙ୍କ ମନ ଯାଇ ନଗରୀ ମଧ୍ୟରେ । ସେ ତା' ମଧ୍ୟରେ ପ୍ରବେଶ କରିବାପାଇଁ ଅତ୍ୟନ୍ତ ଉତ୍କଣ୍ଠିତ ହୋଇପଡୁଥିଲେ । ବାରମ୍ବାର ସଚିବ ଓ ମିତ୍ରମାନଙ୍କ ସହିତ ପରାମର୍ଶ କରୁଥାନ୍ତି । ଦିନେ ନୀତିଜ୍ଞ ବ୍ରାହ୍ମଣ ଶ୍ରୁତଧି କହିଲେ, 'ଦେବ ! ଆପଣ ତ ନୀତିତତ୍ତ୍ୱଜ୍ଞ । କିନ୍ତୁ ଅଜ୍ଞାନୀମାନଙ୍କ ପରି ଏପରି ଦୁଃଖ କାହିଁକି କରୁଛନ୍ତି ? ନିଜର ଏବଂ ଶତ୍ରୁର ସାମର୍ଥ୍ୟ କଳନା ନକରି ଏପରି ପରିସ୍ଥିତିରେ କିଏ ବା ପରାକ୍ରମ ପ୍ରଦର୍ଶନପାଇଁ ପରାମର୍ଶ ଦେବ ? ଉଜ୍ଜୟିନୀର ରକ୍ଷାପାଇଁ ଏହାର ଚାରୋଟି ଦ୍ୱାରକୁ ପ୍ରତ୍ୟେକରେ ଦୁଇ ସହସ୍ର ହସ୍ତୀ, ପଚିଶ ସହସ୍ର ଅଶ୍ୱ, ଦଶଲକ୍ଷ ରଥ ଏବଂ ଦଶଲକ୍ଷ ପଦାତିକ ସେନା ପହରା ଦେଉଛନ୍ତି । ତେଣୁ ପ୍ରଚଣ୍ଡ ବୀର ପୁରୁଷମାନଙ୍କ ନିବାସ ଭୂମି ଏହି ନଗରୀକୁ ଜୟ କରିବା ଅତ୍ୟନ୍ତ କଠିନ ବ୍ୟାପାର । ହଠାତ୍ ଆମେ ଏହା ମଧ୍ୟରେ ପ୍ରବେଶ କରିବା, ଦୀପ ଶିଖା ପ୍ରତି ପତଙ୍ଗରାଜି ଅନୁଧାବନ କରିବା ପରି ହେବ । ଏହାଦ୍ୱାରା ଆମର କୌଣସି କାର୍ଯ୍ୟ ସିଦ୍ଧ ହେବ ନାହିଁ । ପୁଣି କିଛି ମାତ୍ର ସେନା ସଂଗ୍ରହକରି ଉଜ୍ଜୟିନୀ ଆକ୍ରମଣ ମଧ୍ୟ ଯୁକ୍ତିଯୁକ୍ତ ନୁହେଁ । ଗଜାରୋହୀ ସହିତ ପଦଚାରୀ ସୈନିକର ଦ୍ୱନ୍ଦ୍ୱ ଯୁଦ୍ଧ ପରି ଉପହସିତ ହେବା ହିଁ ସାର ହେବ । ତେଣୁ ଆପଣ ଏପରି କରନ୍ତୁ । ସେହି ଶବରାଧିପତି ମାୟାବଟୁଙ୍କୁ ଡକାଇ ଆଣନ୍ତୁ । ସେ ଆପଣଙ୍କ ମିତ୍ର । ଯେତେବେଳେ ସେ ନର୍ମଦା ନଦୀରେ ଭୟଙ୍କର କୁମ୍ଭୀର ଦ୍ୱାରା ଆକ୍ରାନ୍ତ ହୋଇଥିଲା ସେତେବେଳେ ଆପଣ ତାକୁ ସେହି ସଂକଟରୁ ଉଦ୍ଧାର କରିଥିଲେ ।'

'ସେହିପରି ସେହି ମାୟାବଟୁର ମିତ୍ର ଅତ୍ୟନ୍ତ ବଳବାନ୍ ମାତଙ୍ଗରାଜଙ୍କୁ ମଧ୍ୟ ଡକାଇ ଆଣନ୍ତୁ । ଏମାନଙ୍କ ସାହଚର୍ଯ୍ୟ ଲାଭକଲେ ଦୁର୍ଗ ପିଶାଚ ଆପଣଙ୍କ ଅନୁରାଗୀ ହେବ । ପୁଣି ସେ ଅତ୍ୟନ୍ତ ପରାକ୍ରମୀ ଏବଂ ବାଳବ୍ରହ୍ମଚାରୀ, ଶକ୍ତିରକ୍ଷିତ ନାମକ କିରାତ ରାଜ ମଧ୍ୟ ସେମାନଙ୍କର ମିତ୍ର । ଆପଣ ଏମାନଙ୍କୁ ନିଜନିଜର ସେନାବାହିନୀ ସହିତ, ଆସିବାପାଇଁ ନିର୍ଦ୍ଦେଶ ଦିଅନ୍ତୁ । ସେମାନେ ଆସି ନିଜର ସୈନିକମାନଙ୍କ ଦ୍ୱାରା ଚତୁର୍ଦ୍ଦିଗ ଘେରିଯାଆନ୍ତୁ । ଏହିପରି ଉଚିତ ସହାୟତା ଲାଭ କଲେ ଆପଣଙ୍କ କାର୍ଯ୍ୟ ସିଦ୍ଧ ହୋଇପାରିବ ।'

'ଆପଣଙ୍କ ସନ୍ଧି ଅନୁଯାୟୀ କିରାତରାଜ ଯେ ଆପଣଙ୍କ ଦୂତର ପ୍ରତୀକ୍ଷା କରୁଥିବେ, ଏକଥା ଆପଣ କିପରି ବିସ୍ମୃତ ହୋଇପଡୁଛନ୍ତି ? ଆମ ସର୍ତ୍ତ ଅନୁଯାୟୀ

ମାତଙ୍ଗରାଜଙ୍କ ଆଦେଶରେ ମାୟାବଟୁ ମଧ୍ୟ ନିଶ୍ଚୟ ଆସିଯାଇଥିବେ; ଏବଂ ତାଙ୍କ ସହିତ ପ୍ରସ୍ତୁତ ହୋଇ ବସିଥିବେ । ବର୍ତ୍ତମାନ ଆମେ ମାତଙ୍ଗରାଜଙ୍କ କରଭଗ୍ରୀବ ନାମକ ଦୁର୍ଗକୁ ପ୍ରସ୍ଥାନ କରିବା । ତାହା ବିନ୍ଧ୍ୟ ପର୍ବତର ଦକ୍ଷିଣରେ ଅବସ୍ଥିତ । ସେ ସେଠାରେ ହିଁ ଅବସ୍ଥାନ କରନ୍ତୁ । ଆମେ କିରାତରାଜ ଶକ୍ତିରକ୍ଷିତଙ୍କୁ ସେଠାକୁ ଡକାଇ ଆଣିଲେ ସମସ୍ତେ ଏକତ୍ର କାର୍ଯ୍ୟସିଦ୍ଧି ପାଇଁ ଉଦ୍ୟମ କରିବା ।'

ଶ୍ରୁତଧିଙ୍କ କଥା ଯେପରି ଅର୍ଥପୂର୍ଣ୍ଣ ସେହିପରି ପ୍ରାଜ୍ଞସମ୍ମତ ମଧ୍ୟ ଥିଲା । ସଚିବମାନଙ୍କ ସହିତ ମୃଗାଙ୍କଦତ୍ତ ତାଙ୍କ ପରାମର୍ଶକୁ ସ୍ୱୀକାର କଲେ । ପରଦିନ ପ୍ରଭାତରୁ ମୃଗାଙ୍କଦତ୍ତ ବୁଦ୍ଧି ଓ ଆଲୋକର ଦେବତା ଆକାଶଚାରୀ ଭଗବାନ ସୂର୍ଯ୍ୟଙ୍କୁ ପ୍ରଣିପାତ କରି ବିନ୍ଧ୍ୟପର୍ବତର ଦକ୍ଷିଣସ୍ଥିତ ମାତଙ୍ଗରାଜ ଦୁର୍ଗପିଶାଚଙ୍କ ବାସଭବନ ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ସଚିବ ବ୍ୟାଘ୍ରସେନ, ଭୀମ ପରାକ୍ରମ, ଗୁଣାକର, ମେଘବଳ, ବିମଳବୁଦ୍ଧି, ବିଚିତ୍ରକଥ, ସ୍ଥୂଳବାହୁ, ବିକ୍ରମକେଶରୀ, ପ୍ରଚଣ୍ଡଶକ୍ତି, ଶ୍ରୁତଧି ତଥା ଦୃଢ଼ମୁଷ୍ଟି ତାଙ୍କୁ ଅନୁସରଣ କରି ଚାଲିଲେ ।

ସହଯାତ୍ରୀମାନଙ୍କ ସହିତ ମୃଗାଙ୍କଦତ୍ତ ନିଜର ପ୍ରୟାସ ତୁଲ୍ୟ ବିସ୍ତୀର୍ଣ୍ଣ ବନଭୂମି ଏବଂ ନିଜର ଅଭିଳାଷ ତୁଲ୍ୟ ଗହନ ଅରଣ୍ୟ ପ୍ରଦେଶକୁ କ୍ରମେ କ୍ରମେ ଅତିକ୍ରମ କଲେ । କୌଣସି ସରୋବର ତଟରେ ରାତ୍ରିଟି ବିତାଇ ଦେଇ ସେମାନେ ପରଦିନ ଉନ୍ନତ ବିନ୍ଧ୍ୟ ପର୍ବତ ଉପରେ ଆରୋହଣ କଲେ । ପର୍ବତର ଦକ୍ଷିଣ ଭାଗରେ ଅବତରଣ କରୁଥିବା ବେଳେ ଏକ ଶବରପଲ୍ଲୀ ସେମାନଙ୍କର ଦୃଷ୍ଟିପଥାରୂଢ଼ ହେଲା । ଦୂରରୁ ଏହା ହାତୀଦାନ୍ତ ଓ ମୃଗଚର୍ମଦ୍ୱାରା ସମାକୀର୍ଣ୍ଣ ଥିବା ଜଣାଯାଉଥାଏ । କିନ୍ତୁ ରାଜକୁମାର ଏହା ମାତଙ୍ଗରାଜଙ୍କ ନିବାସ ସ୍ଥାନ କି ନାହିଁ କଳନା କରିପାରିଲେ ନାହିଁ । ଏହିପରି ଦ୍ୱନ୍ଦ୍ୱ ଓ ଆଶଙ୍କା ମଧ୍ୟରେ ଅଗ୍ରସର ହେଉଥିବା ବେଳେ ସମ୍ମୁଖରୁ ଆସୁଥିବା ଜଣେ ମୁନିକୁମାରଙ୍କ ସହିତ ସାକ୍ଷାତ ହେଲା । ସେମାନେ ତାଙ୍କୁ ପ୍ରଣାମ କରି ଜିଜ୍ଞାସା କଲେ, 'ସୌମ୍ୟ ! ଏଠାରେ ମାତଙ୍ଗରାଜ ଦୁର୍ଗପିଶାଚ କେଉଁଠାରେ ରହନ୍ତି ଆପଣ ଜାଣନ୍ତି କି ? ଆମର ତାଙ୍କ ସହିତ ସାକ୍ଷାତ କରିବା ଆବଶ୍ୟକ ।'

ଉତ୍ତରରେ ମୁନିକୁମାର କହିଲେ, 'ଏଠାରୁ ମାତ୍ର ଗୋଟିଏ କ୍ରୋଶ ଦୂରରେ ପଞ୍ଚବଟି ପ୍ରଦେଶ ଅବସ୍ଥିତ । ଏହାର ଅନତିଦୂରରେ ମହର୍ଷି ଅଗସ୍ତ୍ୟଙ୍କ ଆଶ୍ରମ । ଆତ୍ମଗର୍ବୀ ରାଜା ନହୁଷ ଇନ୍ଦ୍ରଙ୍କୁ ଅବମାନନା କରିବା ଫଳରେ ଏଠାରେ ନିକ୍ଷିପ୍ତ ହୋଇଥିଲେ । ଭଗବାନ ରାମଚନ୍ଦ୍ର ପିତୃସତ୍ୟ ପାଳନପାଇଁ ବନବାସ କରୁଥିବା ସମୟରେ ସୀତା ଓ

ଲକ୍ଷ୍ମଣଙ୍କ ସହିତ ଏଠାରେ ଦୀର୍ଘକାଳ ଧରି ମହର୍ଷି ଅଗସ୍ତ୍ୟଙ୍କ ସେବା କରିଥିଲେ । ରାହୁ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ଆକ୍ରମଣ କଲାପରି ଏଠାରେ ରାକ୍ଷସ ନିଧନକାରୀ ରାମଚନ୍ଦ୍ରଙ୍କୁ କବନ୍ଧ ଆକ୍ରମଣ କରିଥିଲା । ରାମଚନ୍ଦ୍ର ଏହି ଯୋଜନବାହୁ ରାକ୍ଷସର ବାହୁ ଛିନ୍ନ କରି ଏଠାରେ ପକାଇଥିଲେ । ରାକ୍ଷସର ଛିନ୍ନବାହୁକୁ ଦେଖିଲେ ମନେହେଉଥିଲା ଶାପଗ୍ରସ୍ତ ଅଜଗର ରୂପୀ ନହୁଷ ଅଗସ୍ତିଙ୍କୁ ପ୍ରାର୍ଥନା କରିବାପାଇଁ ଆସି ଅଛନ୍ତି । ବର୍ଷାଋତୁର ଆଗମନରେ ନୂତନ ମେଘରାଶିର ଗୁରୁଗମ୍ଭୀର ଗର୍ଜନ ଏବେ ମଧ୍ୟ ବୃଦ୍ଧ ମୃଗମାନଙ୍କ ମନରେ ରାମଚନ୍ଦ୍ରଙ୍କ ଧନୁଷ୍ଟଙ୍କାରର ସ୍ମୃତି ଜାଗ୍ରତ କରିଥାଏ । କିନ୍ତୁ ସେମାନେ ଚତୁର୍ଦ୍ଦିଗ ଶୂନ୍ୟ ଦେଖି ଅଶ୍ରୁପ୍ଳାବିତ ଲୋଚନରେ ତୃଣଗ୍ରାସ ପରିତ୍ୟାଗ କରିଥାନ୍ତି । ସେଠାରେ ସୀତା ବିରହର କାରଣଭୂତ ସ୍ୱର୍ଣ୍ଣମୃଗ ରାମଚନ୍ଦ୍ରଙ୍କ ଦ୍ୱାରା ନିହତ ହୋଇଥିଲା । ଏହାପରେ ସେ ତତ୍ରସ୍ଥ ମୃଗମାନଙ୍କୁ ଅଭୟ ଦାନ କରିବାପାଇଁ ଅନ୍ୟତ୍ର ଚାଲିଯାଇଥିଲେ । ସେଠାକୁ ଯିବାବେଳେ ବିଶାଳ ସରୋବର ସବୁ କାବେରୀ କୂଳରେ ତୁମର ଦୃଷ୍ଟିପଥାରୂଢ଼ ହେବ । ବୋଧହୁଏ ମହର୍ଷି ଅଗସ୍ତ୍ୟ ସମସ୍ତ ସାଗର ଜଳକୁ ଶୋଷଣ କରିବା ପରେ ଏସବୁ ସରୋବର ତାଙ୍କ ମୁଖନିଃସୃତ ଜଳଦ୍ୱାରା ପରିପୂରିତ । ଅଗସ୍ତ୍ୟାଶ୍ରମର କିଛି ଦୂରରେ ବିନ୍ଧ୍ୟାଚଳର ସମତଳ ପ୍ରଦେଶ । ସେଠାରେ କରଭଗ୍ରୀବ ନାମକ ଏକ କୁଟିଳ ଓ ଦୁର୍ଗମ ଦୁର୍ଗ ଅଛି । ପ୍ରଚଣ୍ଡ ପରାକ୍ରମୀ ତଥା ବୀର ମାତଙ୍ଗରାଜ ଦୁର୍ଗପିଶାଚ ଏହି ଦୁର୍ଗ ମଧ୍ୟରେ ବାସ କରନ୍ତି । ସେ ଶତ୍ରୁମାନଙ୍କଦ୍ୱାରା ଅପରାଜେୟ । ତାଙ୍କ ନିକଟରେ ଏକଲକ୍ଷ ଧନୁର୍ଦ୍ଧର ରହିଛନ୍ତି ଏବଂ ପ୍ରତ୍ୟେକ ଧନୁର୍ଦ୍ଧର ପାଞ୍ଚଶତ ଯୋଦ୍ଧାଙ୍କଦ୍ୱାରା ପରିବେଷ୍ଟିତ । ଏମାନଙ୍କ ସାହାଯ୍ୟରେ ସେ ଅରଣ୍ୟ ମଧ୍ୟରେ ଯାଉଥିବା ବଣିକମାନଙ୍କୁ ଲୁଣ୍ଠନ କରି, ଶତ୍ରୁମାନଙ୍କୁ ପରାଜିତ କରି ଏବଂ କୌଣସି ରାଜାଙ୍କୁ ଭ୍ରୂକ୍ଷେପ ନକରି ଏହି ବନଭୂମିକୁ ଶାସନ କରନ୍ତି ।'

ମୁନିକୁମାରଙ୍କଠାରୁ ନିଜ ଗନ୍ତବ୍ୟସ୍ଥଳର ସୂଚନା ପାଇ ମୃଗାଙ୍କଦତ୍ତ ତାଙ୍କଠାରୁ ବିଦାୟ ନେଲେ ଏବଂ ଦ୍ରୁତ ପଦରେ ପୂର୍ବୋକ୍ତ ମାର୍ଗରେ ଅଗ୍ରସର ହେଲେ । କ୍ରମଶଃ କରଭଗ୍ରୀବ ନିକଟତର ହେଲା । ଦୁର୍ଗଟି ବହୁ ଶବରପଲ୍ଲୀଦ୍ୱାରା ବେଷ୍ଟିତ ଥିଲା । ଏହି ପଲ୍ଲୀଗୁଡ଼ିକ ମୟୂରପୁଚ୍ଛ, ଗଜଦନ୍ତ, ବ୍ୟାଘ୍ରଚର୍ମ ଓ ମୃଗମାଂସରେ ପୂରିଥିବା ଦେଖି ମୃଗାଙ୍କ ଦତ୍ତ ବନ୍ଧୁମାନଙ୍କୁ ଲକ୍ଷ୍ୟକରି କହିଲେ, 'ଦେଖ, ଏହି ଅରଣ୍ୟବାସୀ ଶବରମାନେ ପଶୁପକ୍ଷୀପରି ଜୀବନଯାପନ କରୁଥିଲେ ସୁଦ୍ଧା ଦୁର୍ଗ ପିଶାଚଙ୍କୁ ସେମାନଙ୍କର ରାଜା ବୋଲି କହୁଅଛନ୍ତି । କୌଣସି ପ୍ରଜା ବିନାରାଜାରେ ରହିବା ସମ୍ଭବ ନୁହେଁ । ସେଥିପାଇଁ ଦେବତାମାନେ ବୋଧହୁଏ ଏହି ରାଜା ଶବ୍ଦଟି ସୃଷ୍ଟି କରିଛନ୍ତି । ବଡ଼ମାଛ ଛୋଟ ମାଛକୁ

ଖାଇଯିବା ପରି ରାଜାଙ୍କ ବିନା ବଳବାନ ବ୍ୟକ୍ତିମାନେ ବଳହୀନମାନଙ୍କର ଜୀବନ ଦୁର୍ବହ କରିଦିଅନ୍ତି ।'

ଏମାନେ କରଭଗ୍ରୀବର ପ୍ରବେଶ ପଥ ଅନୁସନ୍ଧାନ କରୁଥିଲାବେଳେ, ତେଣେ ଶବରରାଜ ମାୟାବଟୁ ପୂର୍ବରୁ ଆସି ପହଞ୍ଚିଯାଇଥାନ୍ତି । ତାଙ୍କ ଗୁପ୍ତଚରମାନେ ମୃଗାଙ୍କଦତ୍ତଙ୍କୁ ପୂର୍ବରୁ ଦେଖିଥିବା ଯୋଗୁଁ ତାଙ୍କୁ ଏଠାରେ ଦେଖି ଚିହ୍ନିପାରିଲେ । ସେମାନଙ୍କଠାରୁ ସମ୍ବାଦ ପାଇ ମାୟାବଟୁ ରାଜକୁମାରଙ୍କ ସ୍ୱାଗତପାଇଁ ସସୈନ୍ୟ ଦୁର୍ଗ ମଧ୍ୟରୁ ଅଗ୍ରସର ହେଲେ । ମୃଗାଙ୍କଦତ୍ତ ନିକଟର,ହେବାରୁ ସେ ଅଶ୍ୱପୃଷ୍ଠରୁ ଅବତରଣ କରି ତାଙ୍କ ପାଦସ୍ପର୍ଶ କଲେ । ରାଜକୁମାର ମଧ୍ୟ ତାଙ୍କୁ ବନ୍ଧୁ ଭାବରେ ତଳୁ ଉଠାଇ ଆଲିଙ୍ଗନ କଲେ । କୁଶଳ ଜିଜ୍ଞାସା ପର୍ବ ଶେଷ ହେଲା । ସେ ଏମାନଙ୍କୁ ଉଚିତ ବାହନ ପୃଷ୍ଠରେ ଆରୋହଣ କରାଇ ସ୍ୱଶିବିରକୁ ନେଇଗଲେ । ପୁଳିନ୍ଦରାଜଙ୍କଦ୍ୱାରା ରାଜକୁମାର ମୃଗାଙ୍କଦତ୍ତଙ୍କ ଆଗମନ ବାର୍ତ୍ତା ଜଣାଇବାପାଇଁ ମାତଙ୍ଗରାଜଙ୍କ ନିକଟକୁ ଦୂତ ପ୍ରେରଣ କରାଗଲା ।

ସାର୍ଥକନାମା ମାତଙ୍ଗରାଜ ଦୁର୍ଗପିଶାଚ ବାର୍ତ୍ତାଲାଭ କରିବା ମାତ୍ରେ ଆସି ପହଞ୍ଚିଲେ । ତାଙ୍କୁ ଦେଖିଲେ ମନେହେଉଥିଲା ସେ ଯେପରି ନିଜେ ଦ୍ୱିତୀୟ ବିନ୍ଧ୍ୟ ପର୍ବତ । ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ପାଷାଣ ପରି କଠୋର, ଶରୀରର ବର୍ଣ୍ଣ ତମାଳ ପୁଷ୍ପ ପରି ଘନକୃଷ୍ଣ । ସେ ପୁଳିନ୍ଦଜାତିର ପ୍ରଜାମାନଙ୍କଦ୍ୱାରା ନିସେବିତ ଥିଲେ । ତାଙ୍କ ଭ୍ରୂକୁଟୀ ମାତ୍ରେ କପୋଳରେ ତିନୋଟି ଗଭୀର ରେଖା ମୁଖମଣ୍ଡଳକୁ ବିକୃତ ଓ ଭୟଙ୍କର କରୁଥିଲା । ମନେହେଉଥିଲା ଦେବୀ ବିନ୍ଧ୍ୟବାସିନୀ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ ନିଜ ତ୍ରିଶୂଳରେ ତିନୋଟି ରେଖା ଟାଣି ଦେଇଛନ୍ତି । ସେ ଆଜୀବନ ତରୁଣ ରହିଥିଲେ ସୁଦ୍ଧା ଅତ୍ୟନ୍ତ କୁରୂପ ଥିଲେ । କୃଷ୍ଣକାୟ ଓ ପର୍ବତାଧିବାସୀ ଥିଲେ ମଧ୍ୟ ସେ କାହା ନିକଟରେ ମସ୍ତକ ନତ କରୁନଥିଲେ । ନୂତନ ମେଘତୁଲ୍ୟ ମୟୂରପୁଚ୍ଛଯୁକ୍ତ ତାଙ୍କର ବିଶାଳ ଧନୁ ବିବିଧ ବର୍ଣ୍ଣରେ ରଞ୍ଜିତ ଥିଲା । ତାଙ୍କ ଶରୀରରେ ଉନ୍ମତ୍ତ ବରାହଦ୍ୱାରା ହୋଇଥିବା କ୍ଷତଚିହ୍ନ ଦେଖିଲେ ହିରଣ୍ୟାକ୍ଷର ଭ୍ରମ ଜାତ ହେଉଥିଲା । ସେ ଘଟୋତ୍କଚ ପରି ପ୍ରଚଣ୍ଡ, ଭୟାନକ ଏବଂ ବଳଶାଳୀ ଥିଲେ । ତାଙ୍କ ପ୍ରଜାମାନେ କଳିକାଳ ପରି ଉଚ୍ଛୃଙ୍ଖଳ ଓ ଅଧର୍ମାସକ୍ତ । ସହସ୍ରାର୍ଜ୍ଜୁନର ସହସ୍ର ବାହୁ ମଧ୍ୟରୁ ମୁକ୍ତିଲାଭ କରିଥିବା ନର୍ମଦା ନଦୀର ଜଳ ପ୍ରବାହ ପରି ଦୁର୍ଗପିଶାଚଙ୍କ ସେନାବାହିନୀ ସମଗ୍ର ବନଭୂମିକୁ ପ୍ଲାବିତ କରି ରଖିଥିଲେ । ଏହି ଶବରସେନାକୁ ଦେଖିଲେ ମନେହେଉଥିଲା ସତେ ଯେପରି ଅଞ୍ଜନ ପର୍ବତର ପାଷାଣଗୁଡ଼ିକ ଢଳି ଢଳି ଚାଲିଛନ୍ତି,

କିମ୍ବା ଅକାଳ ପ୍ରଳୟକାଳୀନ ମେଘରାଶି ଭୂମି ସ୍ପର୍ଶ କରୁଅଛନ୍ତି । ବନଭୂମିକୁ କୃଷ୍ଣବର୍ଣ୍ଣରେ ରଞ୍ଜିତ କରି ତାଙ୍କ ସେନାବାହିନୀ ଆଗକୁ ମାଡ଼ି ଆସୁଥାଆନ୍ତି ।

ଦୂରରୁ ମୃଗାଙ୍କଦତ୍ତଙ୍କୁ ଦେଖି ଦୁର୍ଗପିଶାଚ ସେନାବାହିନୀ ମଧ୍ୟରୁ ବାହାରି ଆସି ତାଙ୍କ ପଦତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଗଜମୁକ୍ତା, କସ୍ତୁରୀ ପ୍ରଭୃତି ଉପହାର ଦେଇ ସେ ବିନମ୍ର ସ୍ୱରରେ କହିଲେ, 'ଆଜି ମୋର ପରମ ସୌଭାଗ୍ୟ । ଦେବୀ ବିନ୍ଧ୍ୟବାସିନୀଙ୍କ ଅପାର କରୁଣାରୁ ଆଜି ଆପଣଙ୍କ ପରି କୁଳୀନରାଜ ଅତିଥି ଏଠାରେ ପଦାର୍ପଣ କରିଛନ୍ତି । ଆପଣଙ୍କ ଆଗମନରେ ମୁଁ ଧନ୍ୟ ହେଲି, କୃତାର୍ଥ ହେଲି ।'

ମୃଗାଙ୍କଦତ୍ତ ମଧ୍ୟ ମାତଙ୍ଗରାଜଙ୍କୁ ସମୁଚିତ ସମ୍ମାନ ଜଣାଇଲେ । ସେହିଠାରେ ହିଁ ସମସ୍ତଙ୍କ ରହିବା ବ୍ୟବସ୍ଥା ହେଲା । ହସ୍ତୀଗୁଡ଼ିକ ଶୃଙ୍ଖଳାବଦ୍ଧ ହେଲେ । ଅଶ୍ୱମାନଙ୍କୁ ଅଶ୍ୱଶାଳାରେ ଭର୍ତ୍ତି କରିଦିଆଗଲା । ପଦାତିକ ସୈନ୍ୟମାନେ ଶିବିକା ମଧ୍ୟରେ ରହିବାର ବ୍ୟବସ୍ଥା କରାଗଲା । ସମଗ୍ର ବନଭୂମି ଲୋକାରଣ୍ୟ ହୋଇଗଲା । ମନେହେଲା ସେହି ବନ ପ୍ରଦେଶ ଏକ ନଗରୀରେ ପରିଣତ ହୋଇଯାଇଛି, ସେ ନିଜର ସମ୍ପୂର୍ଣ୍ଣ ରୂପ ପରିବର୍ତ୍ତିତ କରିଦେଇଛି; ଏପରି ସୌଭାଗ୍ୟ ପୂର୍ବରୁ କେବେ ତା' ଭାଗ୍ୟରେ ସମ୍ଭବ ହୋଇନଥିଲା ।

ରାଜକୁମାର ମିତ୍ରମାନଙ୍କ ସହିତ ସ୍ନାନତର୍ପଣାଦି କ୍ରିୟା ସମାପ୍ତ କଲେ । ମାତଙ୍ଗରାଜଙ୍କଦ୍ୱାରା ଆୟୋଜିତ ପାନ ଭୋଜନ ଶେଷ ହେଲା । ସମସ୍ତେ ଆସି ଗୋଟିଏ ସ୍ଥାନରେ ଏକତ୍ର ହେଲେ । ବାର୍ତ୍ତାଳାପ ମଧ୍ୟରେ ଦୁର୍ଗପିଶାଚ ପ୍ରୀତିପୂର୍ଣ୍ଣ ସ୍ୱରରେ ମୃଗାଙ୍କଦତ୍ତଙ୍କୁ ଜିଜ୍ଞାସା କଲେ, 'ସ୍ୱାମୀ, ରାଜା ମାୟାବଟୁ ବହୁ ସମୟ ହେଲା ଏଠାକୁ ଆସି ମୋ ସହିତ ଆପଣଙ୍କ ଆଦେଶପାଇଁ ପ୍ରତୀକ୍ଷା କରିଛନ୍ତି । ଆପଣମାନେ ଏତେଦିନ ଧରି କେଉଁଠି ଥିଲେ ଏବଂ କ'ଣ କରୁଥିଲେ ଦୟାପୂର୍ବକ ଜଣାଇଲେ ଆମେ କୃତାର୍ଥ ହେବୁ ।'

ଉତ୍ତରରେ ରାଜକୁମାର କହିଲେ, 'ମାୟାବଟୁଙ୍କଠାରୁ ବିଦାୟ ନେଇ ମୁଁ ଯେତେବେଳେ ଅନ୍ୟ ମିତ୍ରମାନଙ୍କୁ ଖୋଜିବାପାଇଁ ବାହାରିଲି ସେତେବେଳେ ମୋ ସହିତ ଥିଲେ ବିମଳବୁଦ୍ଧି, ଗୁଣାକର, ଭୀମପରାକ୍ରମ ଓ ଶ୍ରୁତଧି । ମାର୍ଗ ମଧ୍ୟରେ ପ୍ରଚଣ୍ଡ ଶକ୍ତି ଓ ବିଚିତ୍ରକଥ ଏବଂ ପରେ ବିକ୍ରମକେଶରୀଙ୍କ ସହିତ ଆମର ମିଳନ ଘଟିଲା । ପଥ ମଧ୍ୟରେ ଆମେ ଏକ ସ୍ୱଚ୍ଛ ଜଳାଶୟ ନିକଟରେ ଯାଇ ପହଞ୍ଚିଲୁ । ତା'ର ତୀରରେ ଏକ ସୁମିଷ୍ଟ ଫଳପୂର୍ଣ୍ଣ ବୃକ୍ଷ ରହିଥାଏ । ତାହା ଭଗବାନ୍ ଗଜାନନଙ୍କ ଆବାସସ୍ଥଳ । ଏମାନେ ସେହି

ଫଳସବୁ ଆହରଣ କରିବାପାଇଁ ବୃକ୍ଷ ଉପରେ ଆରୋହଣ କରନ୍ତେ ସମସ୍ତେ ଫଳରେ ପରିଣତ ହୋଇଗଲେ । ଗଣପତିଙ୍କୁ ଆରାଧନାରେ ସନ୍ତୁଷ୍ଟ କରି ମୁଁ କୌଣସିମତେ ଏମାନଙ୍କୁ ମୁକ୍ତ କରାଇଲି । ମୋର ଅନ୍ୟ ଚାରିଜଣ ସଚିବ ମଧ୍ୟ ସେଠାରେ ଫଳରୂପରେ ରହିଥିଲେ । ସେମାନଙ୍କୁ ମଧ୍ୟ ମୁକ୍ତି ମିଳିଗଲା । ସେମାନେ ହେଉଛନ୍ତି ଏହି ଦୃଢ଼ମୁଷ୍ଟି, ବ୍ୟାଘ୍ରସେନ, ମେଘବଳ ତଥା ସ୍ଥୂଳବାହୁ । ଆମେ ସମସ୍ତେ ଉଜ୍ଜୟିନୀ ଯାତ୍ରା କଲୁ । କିନ୍ତୁ ଉଜ୍ଜୟିନୀ ନଗରୀର ସମସ୍ତଦ୍ୱାର ପ୍ରହରୀମାନଙ୍କଦ୍ୱାରା ଅତ୍ୟନ୍ତ ସୁରକ୍ଷିତ, ଆମେ ତା' ମଧ୍ୟରେ ପ୍ରବେଶ କରିପାରିଲୁ ନାହିଁ । ଏଥିରେ ଶଶାଙ୍କବତୀକୁ ହରଣ କରିବାର କଥା ଉଠିଲା ବା କେଉଁଠି ? ଆମ ପାଖରେ କୌଣସି ସୈନ୍ୟ ବା ଦୂତ ମଧ୍ୟ ନଥିଲା । ତେଣୁ ଆପଣମାନଙ୍କ ନିକଟକୁ ସମ୍ବାଦ ପ୍ରେରଣ କରିବା ସମ୍ଭବ ହେଲାନାହିଁ । ଫଳରେ ବିଚାର ଆଲୋଚନା କରି ଆମ୍ଭେମାନେ ଆପଣମାନଙ୍କ ନିକଟରେ ଆସି ପହଞ୍ଚିଛୁ । ମିତ୍ର, ବର୍ତ୍ତମାନ ଆପଣମାନେ ହିଁ ମୋର କାର୍ଯ୍ୟସିଦ୍ଧିର ଉପାୟ ଚିନ୍ତା କରିବେ ।'

ମୃଗାଙ୍କଦତ୍ତ ନିଜର ଅଭିଳାଷ ପ୍ରକାଶ କରିବା ପରେ ମାୟାବଟୁଙ୍କ ସହିତ ଦୁର୍ଗପିଶାଚ ପ୍ରତିଜ୍ଞା କରି କହିଲେ, 'ଆପଣ ଧୈର୍ଯ୍ୟ ଧାରଣ କରନ୍ତୁ । ଆମପାଇଁ ଇଏ ବା କୋଉ ବଡ଼କଥା । ଆମେ ତ ଆରମ୍ଭରୁ ହିଁ ଆମର ଜୀବନ ଆପଣଙ୍କପାଇଁ ସମର୍ପଣ କରିଦେଇଛୁ । ରାଜା କର୍ମସେନକୁ ଆମେ ଆପଣଙ୍କ ନିକଟକୁ ବାନ୍ଧି ନେଇଆସିବୁ । ତା'ର କନ୍ୟା ଶଶାଙ୍କବତୀକୁ ମଧ୍ୟ ଆମେ ବଳପୂର୍ବକ ହରଣ କରି ନେଇଆସିବୁ ।'

ସେମାନଙ୍କ ଦୃଢ଼ପ୍ରତିଜ୍ଞା ଶୁଣି ମୃଗାଙ୍କଦତ୍ତ କୃତଜ୍ଞତାଭରା କଣ୍ଠରେ ପ୍ରୀତିପୂର୍ଣ୍ଣ ଭାବେ କହିଲେ, 'ଆପଣମାନଙ୍କପାଇଁ କେଉଁ କଥା ବା ଅସାଧ୍ୟ । ଆପଣଙ୍କ କଣ୍ଠର ଦୃଢ଼ତା ଏବଂ ଆପଣମାନଙ୍କ ପରାକ୍ରମ ହିଁ ସୂଚିତ କରୁଛି ଯେ ମିତ୍ରକୁ ଦେଇଥିବା ପ୍ରତିଶ୍ରୁତି ଆପଣମାନେ ନିଶ୍ଚୟ ରକ୍ଷା କରିପାରିବେ । ବିଧାତା ବିନ୍ଧ୍ୟାଚଳର ଦୃଢ଼ତା, ବ୍ୟାଘ୍ର, ସିଂହ ପ୍ରଭୃତି ବଳିଷ୍ଠ ପଶୁମାନଙ୍କ ଶୌର୍ଯ୍ୟ ଏବଂ ବନକମଳିନୀର ମିତ୍ର ଅନୁରାଗକୁ ଏକତ୍ର କରି ଆପଣମାନଙ୍କୁ ସୃଷ୍ଟି କରିଅଛନ୍ତି । ତେଣୁ ଯାହା ଯୁକ୍ତିଯୁକ୍ତ ଏବଂ ଉଚିତ ମନେ କରୁଛନ୍ତି ସେହିପରି କରନ୍ତୁ ।'

ଏ ସମୟରେ ସୂର୍ଯ୍ୟଦେବ ଅସ୍ତାଚଳକୁ ଆଶ୍ରୟ କଲେ । ସେନାବାହିନୀ ସହିତ ସମସ୍ତେ ସେହି ଶିବିର ମଧ୍ୟରେ ହିଁ ଯଥୋଚିତ ଭାବେ ବିତାଇଦେଲେ । ପ୍ରଭାତରୁ ମୃଗାଙ୍କଦତ୍ତ ନିଜର ଅନ୍ୟତମ ମିତ୍ର କିରାତରାଜ ଶକ୍ତିରକ୍ଷିତଙ୍କୁ ନିମନ୍ତ୍ରଣ କରି ଆଣିବାପାଇଁ ଦୂତ ରୂପେ ଗୁଣାକରଙ୍କୁ ପ୍ରେରଣ କଲେ । ଦୂତଠାରୁ ସମସ୍ତ କଥା ଶୁଣିବା ମାତ୍ରେ କିରାତ-

ରାଜ କିଛିଦିନ ମଧ୍ୟରେ ନିଜର ବିଶାଳ ସେନାବାହିନୀ ସହିତ ଆସି ସେମାନଙ୍କୁ ସାକ୍ଷାତ କଲେ । ତାଙ୍କ ସେନାବାହିନୀରେ ଥିଲେ ଦଶଲକ୍ଷ ପଦାତିକ, ଦୁଇଲକ୍ଷ ଅଶ୍ୱାରୋହୀ ଏବଂ ଦଶସହସ୍ର ଗଜାରୋହୀ ବଳିଷ୍ଠ ଯୋଦ୍ଧା । ରଥ ସଂଖ୍ୟା ଥିଲା ଅଠାଅଶୀ ହଜାର । ରଥଗୁଡ଼ିକର ଛତ୍ର ଓ ପତାକାଦ୍ୱାରା ଆକାଶମାର୍ଗ ଆଚ୍ଛାଦିତ ହୋଇପଡୁଥିଲା । ମୃଗାଙ୍କଦତ୍ତ ପ୍ରସନ୍ନତାପୂର୍ବକ ମିତ୍ର ଶକ୍ତିରକ୍ଷିତଙ୍କୁ ଶିବିର ମଧ୍ୟକୁ ନେଇଯାଇ ଅନ୍ୟମାନଙ୍କ ସହିତ ପରିଚିତ କରାଇଦେଲେ । ଏହା ମଧ୍ୟରେ ଦୁର୍ଗପିଶାଚ ଏବଂ ମାୟାବଟୁ ମଧ୍ୟ ନିଜ ନିଜର ହିତ ମିତ୍ରମାନଙ୍କୁ ନିମନ୍ତ୍ରଣକରି ଆଣିସାରିଥାନ୍ତି । ଶତଶତ ସେନାବାହିନୀ ରୂପକ ସ୍ରୋତସ୍ୱିନୀର ମିଳନରେ ଦୁର୍ଗପିଶାଚଙ୍କ ମହାସାଗରରୂପୀ ସେନାଶିବିର ଗର୍ଜ୍ଜନ ତର୍ଜ୍ଜନରେ ଶବ୍ଦାୟିତ ହୋଇଉଠିଲା । ମୃଗାଙ୍କଦତ୍ତ ଏଥିରେ ଯଥେଷ୍ଟ ଆନନ୍ଦଲାଭ କଲେ ।

ଦୁର୍ଗପିଶାଚ ଗଜମୁକ୍ତା, କସ୍ତୂରୀ, ମାଂସ ଏବଂ ସୁମିଷ୍ଟ ଫଳରସ ଦ୍ୱାରା ରାଜାମାନଙ୍କର ସ୍ୱାଗତ ସତ୍କାର କଲେ । ଶବରରାଜ ମାୟାବଟୁ ସମସ୍ତଙ୍କପାଇଁ ସ୍ନାନ, ଅନୁଲେପନ, ଆହାର, ପାନ, ଉତ୍ତମ ଶଯ୍ୟା ପ୍ରଭୃତିର ବ୍ୟବସ୍ଥା କରୁଥାନ୍ତି । ମୃଗାଙ୍କଦତ୍ତ ରାଜାମାନଙ୍କ ସହିତ ଯଥୋଚିତ ଆସନରେ ବସି ସମସ୍ତଙ୍କ ସହିତ ଭୋଜନ କଲେ । ଏପରିକି ମାତଙ୍ଗରାଜ ଦୁର୍ଗପିଶାଚଙ୍କୁ ମଧ୍ୟ ସେ କିଛି ଦୂରରେ ନିଜ ସମ୍ମୁଖରେ ବସାଇ ଭୋଜନ କରାଇଲେ । ଯେକୌଣସି କାର୍ଯ୍ୟ ଦେଶ କାଳକୁ ଦୃଷ୍ଟିରେ ରଖି କରାଯାଇଥାଏ କିନ୍ତୁ ବ୍ୟକ୍ତିକୁ ନୁହେଁ ।

**କାର୍ଯ୍ୟଂ ଦେଶଶ୍ଚ କାଳଶ୍ଚ ଗରୀୟାନ୍ ନ ପୁନଃ ପୁମାନ୍ ।**

କିରାତମାନଙ୍କର ନବାଗତ ସେନାବାହିନୀ ସେହି ଦିନଟି ବିଶ୍ରାମ କରିବା ପରେ ମୃଗାଙ୍କଦତ୍ତ ଗଜଦନ୍ତ ନିର୍ମିତ ଆସନ ଉପରେ ବସି ସମାଗତ ରାଜା ଏବଂ ସେନାବାହିନୀକୁ ଯଥୋଚିତ ସ୍ୱାଗତ ଜଣାଇଲେ । ମିତ୍ର ଏବଂ ଶୁଭାକାଂକ୍ଷୀମାନଙ୍କୁ ସମ୍ବୋଧନ କରି କହିଲେ, 'ଆମେ ଆଉ ଏଠାରେ ସମୟ ନଷ୍ଟ କରିବା ଉଚିତ ନୁହେଁ । ତେଣୁ ଆପଣମାନେ ସେନାବାହିନୀ ସହିତ ଉଜ୍ଜୟିନୀ ଅଭିମୁଖରେ ଅଗ୍ରସର ହୁଅନ୍ତୁ ।' ରାଜକୁମାରଙ୍କ ଏ ପ୍ରକାର ନିର୍ଦ୍ଦେଶ ଶୁଣି ସେମାନଙ୍କ ମଧ୍ୟରେ ଉପସ୍ଥିତ ବ୍ରାହ୍ମଣ ଶ୍ରୁତଧି ରାଜକୁମାରଙ୍କୁ ନିବେଦନ କଲେ—

'ଦେବ ! ଅବଧାନ କରନ୍ତୁ । ଏ ସମ୍ପର୍କରେ ନୀତିଶାସ୍ତ୍ରଜ୍ଞମାନେ ଯାହା କହିଛନ୍ତି ତାହା ମୁଁ ଆପଣଙ୍କ ଆଗରେ ବ୍ୟକ୍ତ କରୁଛି । ବିଜୟାକାଂକ୍ଷୀ ରାଜାମାନେ ପ୍ରଥମେ ଯେଉଁ କାର୍ଯ୍ୟ କରଣୀୟ ଏବଂ କେଉଁ କାର୍ଯ୍ୟ ଅକରଣୀୟ ନିର୍ଣ୍ଣୟ କରିଥାନ୍ତି । ଯେଉଁ କାର୍ଯ୍ୟ

କୌଣସି ଉପାୟରେ ସିଦ୍ଧ ହେବ ନାହିଁ ତାହାକୁ ଅକରଣୀୟ ବୋଲି ପରିତ୍ୟାଗ କରିବା ଉଚିତ । ଯାହା ବିଭିନ୍ନ ଉପାୟରେ ସିଦ୍ଧ ହୋଇପାରିବ ତାହା କରଣୀୟ । ଏ ଉପାୟ ସବୁ ଚତୁର୍ବିଧ୍—ସାମ, ଦାନ, ଭେଦ ଓ ଦଣ୍ଡ । ଏଗୁଡ଼ିକ ପୁଣି ଆନୁପୂର୍ବିକ ଭାବେ ଶ୍ରେଷ୍ଠ । ପ୍ରଥମଟି ଶ୍ରେଷ୍ଠତମ । ତେଣୁ ଦେବ, ଏହି ସାମ ଉପାୟ ହିଁ ଆପଣଙ୍କପାଇଁ ଭଲ ହେବ ବୋଲି ମୁଁ ଭାବୁଛି ।

'ରାଜା କର୍ମସେନ ଅତ୍ୟନ୍ତ ନିର୍ଲୋଭ । ତେଣୁ ତାଙ୍କୁ ଦାନ ଦେବାଦ୍ୱାରା ଆପଣଙ୍କ କାର୍ଯ୍ୟ ସିଦ୍ଧ ହେବ ନାହିଁ । ଭେଦ ପ୍ରୟୋଗ ମଧ୍ୟ ସମ୍ଭବ ନୁହେଁ । କାରଣ ଉଜ୍ଜୟିନୀର ପ୍ରଜାମାନେ ରାଜାଙ୍କ ପ୍ରତି ବିରକ୍ତ ନୁହଁନ୍ତି । ସେମାନେ ମଧ୍ୟ ନିର୍ଲୋଭ ଏବଂ ରାଜାଙ୍କ ପ୍ରତି ଅନୁରକ୍ତ ।

'ସେ ଏକ ଅଭେଦ୍ୟ ଦୁର୍ଗ ମଧ୍ୟରେ ରହୁଛନ୍ତି । ତାଙ୍କ ସେନାବାହିନୀ ମଧ୍ୟ ବିଶାଳ । ପୂର୍ବରୁ ସେମାନେ କାହାଦ୍ୱାରା ପରାଜିତ ହୋଇନଥିବା ଯୋଗୁଁ ସେମାନଙ୍କ ଆତ୍ମବିଶ୍ୱାସ ଓ ମନୋବଳ ଅତ୍ୟନ୍ତ ଦୃଢ଼ । ତେଣୁ ଏ କ୍ଷେତ୍ରରେ ଦଣ୍ଡ ନୀତି ମଧ୍ୟ କାର୍ଯ୍ୟ କରିବ ନାହିଁ ।

'ପୁଣି ଅଧିକ ବଳବାନ୍ ପୁରୁଷ ଯେ ସର୍ବଦା ବିଜୟଶ୍ରୀ ଲାଭ କରିବ ଏଥିରେ କୌଣସି ନିଶ୍ଚିତତା ନାହିଁ । ଅଧିକନ୍ତୁ କନ୍ୟା ଗ୍ରହଣ କରି ଯେଉଁ ରାଜବଂଶ ସହିତ ବନ୍ଧୁତା ସ୍ଥାପନ କରାଯିବ, ସେମାନଙ୍କ ମିତ୍ର ଓ ବାନ୍ଧବମାନଙ୍କୁ ବିନାଶ କରିବା ଯଥାର୍ଥ ନୁହେଁ । ତେଣୁ ସାମ ନୀତି ପ୍ରୟୋଗ କରି ଆପଣ ତାଙ୍କ ନିକଟକୁ ପ୍ରଥମେ ଦୂତ ପ୍ରେରଣ କରନ୍ତୁ । ଯଦି ଏହାଦ୍ୱାରା ଆମର କାର୍ଯ୍ୟସିଦ୍ଧି ନହୁଏ, ତେବେ ଆମେ ବାଧ୍ୟ ହୋଇ ଦଣ୍ଡନୀତିର ଆଶ୍ରୟ ନେବା ।'

ଶ୍ରୁତଧିଙ୍କ ପରାମର୍ଶ ସମସ୍ତଙ୍କ ମନକୁ ପାଇଲା । ତାଙ୍କ ଶାସ୍ତ୍ରଜ୍ଞାନ ଓ ଉପସ୍ଥିତ ବୁଦ୍ଧିକୁ ସମସ୍ତେ ପ୍ରଶଂସା କଲେ । ମୃଗାଙ୍କଦତ୍ତ ମିତ୍ରମାନଙ୍କ ସହିତ ପରାମର୍ଶ କରି ରାଜା କର୍ମସେନଙ୍କ ନିକଟକୁ ସୁବିଗ୍ରହ ନାମକ ଜଣେ ବ୍ରାହ୍ମଣ ଦୂତକୁ ପଠାଇଲେ । ସେ କିରାତରାଜଙ୍କ ବିଶ୍ୱସ୍ତ ଓ ଦୌତ୍ୟ କାର୍ଯ୍ୟରେ ନିପୁଣ ଥିଲା । ସେ ପତ୍ର ଓ ବାର୍ତ୍ତା ନେଇ ଉଜ୍ଜୟିନୀ ଅଭିମୁଖରେ ଯାତ୍ରା କଲା ।

ଦୂତ ଯାଇ ଉଜ୍ଜୟିନୀରେ ପହଞ୍ଚିଲା । ପ୍ରତିହାରଦ୍ୱାରା ନିଜର ଆସିବା ସୂଚନା ଦେଇ ସେ ଦରବାର କକ୍ଷରେ ଯାଇ ଉପସ୍ଥିତ ହେଲା । କକ୍ଷଟିର ଭିତ୍ତିଗୁଡ଼ିକ ଗଜ ଓ ଅଶ୍ୱ ଚିତ୍ରରେ ଚିତ୍ରିତ ହୋଇଥାଏ । ରାଜା କର୍ମସେନ ପାରିଷଦ ପରିବେଷ୍ଟିତ ହୋଇ

ରାଜସିଂହାସନ ଉପରେ ବସିଥାନ୍ତି । ଦୂତ ତାଙ୍କୁ ପ୍ରଣାମ କରି ତାଙ୍କ ନିର୍ଦ୍ଦିଷ୍ଟ ଆସନରେ ଉପବେଶନ କଲା । ରାଜା ତା'ର କୁଶଳ ଜିଜ୍ଞାସା କରି ଅଭିନନ୍ଦନ କଲେ । ରାଜାଙ୍କ ବ୍ୟବହାରରେ ପ୍ରୀତ ସୁବିଗ୍ରହ ତାଙ୍କ ହସ୍ତରେ ପତ୍ରଟି ପ୍ରଦାନ କଲା । ରାଜାଙ୍କ ନିର୍ଦ୍ଦେଶ କ୍ରମେ ମନ୍ତ୍ରୀ ପ୍ରଜ୍ଞାକୋଷ ପତ୍ରଟିକୁ ଉନ୍ମୋଚନ କରି ସମସ୍ତଙ୍କ ସମ୍ମୁଖରେ ସ୍ପଷ୍ଟ ରୂପେ ପାଠ କଲେ ।

''ସ୍ୱସ୍ତି, ଶ୍ରୀଭୂମଣ୍ଡଳ ଅଳଙ୍କାର ଅଯୋଧ୍ୟାପୁରୀ ଅଧିପତି ମହାରାଜାଧିରାଜ ସମସ୍ତ-ସାମନ୍ତପ୍ରଣତ ଅମରଦତ୍ତଙ୍କ ପୁତ୍ର ମୃଗାଙ୍କଦତ୍ତ ବର୍ତ୍ତମାନ କରଭଗ୍ରୀବ ଦୁର୍ଗ ପାଦତଳେ ଥିବା ବନଭୂମିସ୍ଥିତ ଶିବିରରୁ ଉଜ୍ଜୟିନୀର ରାଜକମଳ ଚନ୍ଦ୍ରମା ମହାରାଜ କର୍ମସେନଙ୍କ ନିକଟକୁ ଆଦର ସହିତ ଏହି ସ୍ପଷ୍ଟ ସମ୍ବାଦ ପ୍ରେରଣ କରୁଛନ୍ତି ।

'ଆପଣଙ୍କର ଏକ କନ୍ୟାରତ୍ନ ଅଛି । ତାକୁ ଆପଣ କୌଣସି ନା କୌଣସି ପୁରୁଷ ହସ୍ତରେ ସମର୍ପଣ କରିବେ । ଦେବତାମାନେ ତାଙ୍କୁ ମୋର ଯୋଗ୍ୟ ପତ୍ନୀ ରୂପେ ଘୋଷଣା କରିଛନ୍ତି । ତେଣୁ ଆପଣ ତାକୁ ମୋ ହସ୍ତରେ ଅର୍ପଣ କରନ୍ତୁ । ଏହାଦ୍ୱାରା ଆମ୍ଭମାନଙ୍କ ମଧ୍ୟରେ ଥିବା ପୂର୍ବ ବୈରଭାବ ଦୂରୀଭୂତ ହୋଇ ଆତ୍ମୀୟତା ବୃଦ୍ଧିଲାଭ କରିବ । ଆପଣ ଏଥିରେ ଅସମ୍ମତ ହେଲେ ମୁଁ ମୋର ଭୁଜବଳଦ୍ୱାରା ଆପଣଙ୍କ କନ୍ୟାକୁ ବିବାହ କରିବାପାଇଁ ବାଧ୍ୟ ହେବି' ।''

ମନ୍ତ୍ରୀ ପ୍ରଜ୍ଞାକୋଷ ପତ୍ରପାଠ ଶେଷ କଲାବେଳକୁ ରାଜା କର୍ମସେନ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଉଠିଥାନ୍ତି । ସେ ନିଜର ମନ୍ତ୍ରୀମାନଙ୍କୁ ଉଦ୍ଦେଶ୍ୟ କରି କହିଲେ, 'ଏମାନେ ତ ଆମର ପୂର୍ବଶତ୍ରୁ । ପୁଣି ନିଜର ପରିଣାମ ନଜାଣି ଏହି ଅହଙ୍କାରୀ ରାଜପୁତ୍ର ବଡ଼ ଅଶାଳୀନ ଭାବରେ ଏହି ପତ୍ର ପ୍ରେରଣ କରିଅଛି । ଆମ ପ୍ରତି ଅବଜ୍ଞା ପ୍ରଦର୍ଶନ କରି ସେ ପ୍ରଥମେ ନିଜ ନାମ ଏବଂ ପରେ ଆମ ନାମ ଲେଖିଅଛି । ଶେଷରେ ପୁଣି ଆମକୁ ବାହୁବଳର ଧମକ ଦେଇଅଛି । ମୁଁ ତ ଏହି ପତ୍ରର ଉତ୍ତର ଦେବାପାଇଁ ହିଁ ଉଚିତ ମନେକରୁନାହିଁ, କନ୍ୟାଦାନର କଥା ଉଠିଲା କେଉଁଠୁ ? ଦୂତ ତୁମେ ଫେରିଯାଅ । ତୁମ ସ୍ୱାମୀ ଯାହା କରିବାପାଇଁ ଚାହାଁନ୍ତି ତାହା କରନ୍ତୁ ।'

ରାଜା କର୍ମସେନଙ୍କ ଉକ୍ତିରେ ଦୂତ ସୁବିଗ୍ରହ ପରିସ୍ଥିତିଉଚିତ ବାକ୍ୟଦ୍ୱାରା ରାଜାଙ୍କୁ ନିବେଦନ କଲା, 'ମହାରାଜ ! ଏପରି ମୂର୍ଖତା କରନ୍ତୁ ନାହିଁ । ଆପଣ ଏହି ରାଜକୁମାରଙ୍କୁ ଦେଖିନାହାଁନ୍ତି । ତେଣୁ ଏପରି ବଡ଼ ବଡ଼ କଥା କହୁଛନ୍ତି । କିନ୍ତୁ ପ୍ରସ୍ତୁତ ରହନ୍ତୁ । ସେ ଆସି ଏଠାରେ ପହଞ୍ଚିଗଲେ ଆପଣ ଓ ତାଙ୍କ ମଧ୍ୟରେ କ'ଣ ପାର୍ଥକ୍ୟ ଜାଣିପାରିବେ ।'

ଦୂତ କଥାରେ ରାଜାଙ୍କ କ୍ରୋଧ ଆହୁରି ବଢ଼ିଗଲା । ସେ ରୁକ୍ଷ ସ୍ୱରରେ କହିଲେ, 'ଯାଅ, ତୁମେ ଏଠାରୁ ଚାଲିଯାଅ । ଦୂତ ତ ଅବଧ୍ୟ । ଆମେ ବା ଆଉ କ'ଣ କରିପାରିବୁ ?' ଉପସ୍ଥିତ କେହି କେହି ପରସ୍ପର ମଧ୍ୟରେ ଦାନ୍ତ କଟମଟ କରି ସେହିକ୍ଷଣି ହିଁ ଦୂତଟିକୁ ମାରିଦେବାପାଇଁ ନିଷ୍ପତ୍ତି ନେଲେ । ଆଉ କିଛିଜଣ କହିଲେ, 'ଏହି ବାଚାଳ ବ୍ରାହ୍ମଣର କଥାରେ ବିମନା ହେବାର କ'ଣ ଅଛି ? ଆମେ କ'ଣ କରିପାରିବୁ ସେମାନେ ଦେଖିବେ ।' ଆଉ କିଛି ଲୋକଙ୍କ ଚେହେରା କ୍ରୋଧରେ ଲାଲ ହୋଇଯାଇଥିଲା । କିନ୍ତୁ ସେମାନେ ଚୁପ୍ ରହିଥିଲେ । ସେମାନଙ୍କ ଭ୍ରୂକୁଞ୍ଚନ ଆଗାମୀ ଦିନର ଗୁଣଯୁକ୍ତ ଧନୁପରି ପ୍ରତିଭାତ ହୋଇଥିଲା । ଏହିପରି ସମଗ୍ର ରାଜସଭା କ୍ରୋଧ ପ୍ରକାଶ କରୁଥିବା ବେଳେ ସୁବିଗ୍ରହ ସେଠାରୁ ନିଷ୍କ୍ରାନ୍ତ ହୋଇ ମୃଗାଙ୍କଦତ୍ତଙ୍କ ନିକଟକୁ ଫେରି ଆସିଲା ।

ମିତ୍ରମାନଙ୍କ ସହିତ ବସିଥିବା ମୃଗାଙ୍କଦତ୍ତ ନିକଟରେ ସେ କର୍ମସେନ କହିଥିବା ସମସ୍ତ କଥା କହି ଶୁଣାଇଲା । ରାଜକୁମାର ସମସ୍ତ କଥା ଶୁଣି ସେନାବାହିନୀକୁ ଅଗ୍ରସର ହେବାପାଇଁ ନିର୍ଦ୍ଦେଶ ଦେଲେ ।

ଆଦେଶ ମାତ୍ରେ ସେନାବାହିନୀ ବିକ୍ଷୁବ୍ଧ ସାଗର ପରି ଉତ୍ତାଳ ହୋଇଉଠିଲା । ନିଜ ପକ୍ଷର ରାଜାମାନଙ୍କ ମନରେ ଉତ୍ସାହ ଏବଂ ଶତ୍ରୁମାନଙ୍କ ମନରେ ଭୀତି ସଞ୍ଚାର କରି ସେନା ଆଗକୁ ବଢ଼ିବାକୁ ଲାଗିଲେ । ଅଶ୍ୱମାନଙ୍କ ମୁଖରୁ ନିର୍ଗତ ଫେନରାଶି ଏବଂ ମତ୍ତହସ୍ତୀମାନଙ୍କ ଗଣ୍ଡସ୍ଥଳରୁ ପ୍ରବାହିତ ମଦଧାରାଦ୍ୱାରା ପୃଥିବୀ କର୍ଦ୍ଦମାକ୍ତ ହୋଇଉଠିଲା । ଭେରୀ, ତୂରୀ, ହ୍ରେଷା ଏବଂ ବୃଂହଣ ଧ୍ୱନିରେ ଶ୍ରୋତାମାନଙ୍କ କର୍ଣ୍ଣ ବଧିର ହୋଇପଡ଼ିଲା । ମୃଗାଙ୍କଦତ୍ତ ମତ୍ତହସ୍ତୀ ପୃଷ୍ଠରେ ବିଜୟ ଲାଭପାଇଁ ଉଜ୍ଜୟିନୀ ଅଭିମୁଖରେ ଅଗ୍ରସର ହେଲେ ।

# ଷଟ୍‌ତ୍ରିଂଶ ତରଙ୍ଗ

## ମୃଗାଙ୍କଦତ୍ତ ଓ ଶଶାଙ୍କବତୀ କଥା

କିଛିଦିନ ମଧ୍ୟରେ ମୃଗାଙ୍କଦତ୍ତ ସଂଗ୍ରାମକୁଶଳୀ ଯୋଦ୍ଧା ଓ ମିତ୍ରମାନଙ୍କ ସହିତ ବିନ୍ଧ୍ୟପର୍ବତ ଲଙ୍ଘନ କରି ଉଜ୍ଜୟିନୀ ସୀମାରେ ଯାଇ ପହଞ୍ଚିଲେ । ଧୀର ଓ ବୀର ରାଜା କର୍ମସେନ ଏହି ସମ୍ବାଦ ପାଇବାମାତ୍ରେ ନିଜର ରଣକୁଶଳୀ ସେନାବାହିନୀ ସହିତ ଉଜ୍ଜୟିନୀ ନଗରୀରୁ ବହିର୍ଗତ ହେଲେ । ଉଭୟ ସେନା ପରସ୍ପରକୁ ଭେଟିବା ମାତ୍ରେ ଯୁଦ୍ଧ ଆରମ୍ଭ ହେଲା । ଭଗବାନ୍ ନୃସିଂହଙ୍କ ହୁଙ୍କାର ନାଦରେ ହିରଣ୍ୟକଶିପୁର ରାଜଭବନ ମଧ୍ୟରେ ଥିବା କାପୁରୁଷ ରାକ୍ଷସମାନେ ଯେପରି ପଳାୟନ କରିଥିଲେ, ସେହିପରି ଯୁଦ୍ଧ ଆରମ୍ଭ ହେବା ମାତ୍ରେ ଭୟାଳୁ ସୈନିକମାନେ ରଣଭୂମି ତ୍ୟାଗ କରି ଛତ୍ରଭଙ୍ଗ ଦେଲେ । ଉଭୟ ପକ୍ଷରୁ ବାୟୁ ସଞ୍ଚାଳିତ ମେଘ ପରି ଉପର୍ଯ୍ୟୁପରି ବାଣ ବୃଷ୍ଟି ଆରମ୍ଭ ହେଲା । ଶସ୍ୟକ୍ଷେତ୍ରକୁ ପତଙ୍ଗମାନେ ଆକ୍ରାନ୍ତ କଲାପରି ଯୁଦ୍ଧକ୍ଷେତ୍ର ଶରଜାଳ ଦ୍ୱାରା ଆଚ୍ଛାଦିତ ହୋଇପଡ଼ିଲା । ଖଡ୍‌ଗକ୍ଷତ ହସ୍ତୀମାନଙ୍କର କୁମ୍ଭସ୍ଥଳରୁ ନିର୍ଗତ ମୁକ୍ତାସବୁ ସମରଲକ୍ଷ୍ମୀଙ୍କ ଛିନ୍ନହାର ତୁଲ୍ୟ ଇତସ୍ତତଃ ବିକ୍ଷିପ୍ତ ହେଲା । ଯୁଦ୍ଧର କରାଳମୁଖ ତୀକ୍ଷଣକୁନ୍ତ ରୂପକ ଦନ୍ତପଂକ୍ତିଦ୍ୱାରା ବାଣଛିନ୍ନ ଗଜ, ଅଶ୍ୱ ଓ ମନୁଷ୍ୟମାନଙ୍କୁ ଗ୍ରାସ କରୁଥାଏ । ଭାଲ ଅସ୍ତ୍ରଦ୍ୱାରା କର୍ତ୍ତିତ ମୁଣ୍ଡମାଳା ଆକାଶ ମାର୍ଗରୁ ଦର୍ଶନ କରୁଥିବା ଦିବ୍ୟାଙ୍ଗନାମାନଙ୍କ ମୁଖ ଚୁମ୍ବନପାଇଁ ଊର୍ଦ୍ଧ୍ୱଗାମୀ ହେଉଥିଲେ । କବନ୍ଧଗୁଡ଼ିକର ନୃତ୍ୟ ଦେଖିଲେ ଯୋଦ୍ଧାମାନେ ନିଜନିଜ ପ୍ରଭୁମାନଙ୍କର ରଣକୌଶଳରେ ମୁଗ୍ଧ ହୋଇ ନୃତ୍ୟରେ ଉନ୍ମତ୍ତ ଥିଲାପରି ଜଣାଯାଉଥାଏ । ଏହିପରି ଦୀର୍ଘ ପାଞ୍ଚଦିନ ଧରି ଅନବରତ ଏହି ଯୁଦ୍ଧ ଚାଲିଥାଏ । ଯୁଦ୍ଧଭୂମିରେ ରକ୍ତର ନଦୀ ଏବଂ ଶବର ପାହାଡ଼ ସୃଷ୍ଟି ହେଲା ।

ପଞ୍ଚମଦିନ ସନ୍ଧ୍ୟାରେ ମୃଗାଙ୍କଦତ୍ତ ମିତ୍ରମାନଙ୍କସହ ବସି ମନ୍ତ୍ରଣା କରୁଥାନ୍ତି । ବ୍ରାହ୍ମଣ ଶ୍ରୁତଧି ଏ ସମୟରେ ସେଠାରେ ଆସି ଉପସ୍ଥିତ ହେଲେ । ଜିଜ୍ଞାସୁ ଦୃଷ୍ଟିରେ ସମସ୍ତେ ତାଙ୍କୁ ଚାହିଁ ରହିବାରୁ ସେ କହିବା ଆରମ୍ଭ କଲେ—

'ଦେବ ! ଆପଣମାନେ ଯୁଦ୍ଧରେ ବ୍ୟସ୍ତ ଥିବାବେଳେ ମୁଁ ଏକ ଭିକ୍ଷୁକର ଛଦ୍ମବେଶରେ ଉଜ୍ଜୟିନୀ ନଗରୀ ମଧ୍ୟରେ ପ୍ରବେଶ କଲି । ତାହାର ସମସ୍ତଦ୍ୱାର ଜନଶୂନ୍ୟ ଥିଲା । ସେଠାରେ ଅଦୃଶ୍ୟ ଭାବରେ ବିଚରଣ କରି ମୁଁ ଯାହା ସଂଗ୍ରହ କଲି ତାହା ଯଥାନୁରୂପ ଭାବରେ ପ୍ରକାଶ କରୁଛି, ଶୁଣନ୍ତୁ ।'

'ରାଜା କର୍ମସେନ ଯେତେବେଳେ ସଂଗ୍ରାମପାଇଁ ପ୍ରୟାଣ କଲେ-ସେତେବେଳେ ତାଙ୍କ କନ୍ୟା ଶଶାଙ୍କବତୀ ମଧ୍ୟ ମାତାଙ୍କ ଅନୁଜ୍ଞା ନେଇ ବାହାରକୁ ଆସିଲେ । ସେ ଇଷ୍ଟଦେବୀ ଭଗବତୀଙ୍କ ମନ୍ଦିରରେ ପିତାଙ୍କ କଲ୍ୟାଣ କାମନା କରି ପୂଜା କରିବା ନିମିତ୍ତ ପ୍ରବେଶ କରନ୍ତି । ସେଠାରେ ଉପସ୍ଥିତ ଥିବା ଜଣେ ବିଶ୍ୱସ୍ତ ସଖୀଙ୍କୁ ନିକଟକୁ ଡାକି ଶଶାଙ୍କବତୀ ଏକାନ୍ତରେ କହିଲେ, 'ସଖି, ମୋପାଇଁ କେବଳ ପିତାଙ୍କୁ ଏହି ଯୁଦ୍ଧ କରିବାକୁ ପଡୁଛି । ଯଦି ପିତା ପରାଜିତ ହୁଅନ୍ତି ତେବେ ସେ ମୋତେ ଶତ୍ରୁ ରାଜକୁମାରଙ୍କ ହସ୍ତରେ ସମର୍ପଣ କରିଦେବେ । ରାଜାମାନେ ରାଜ୍ୟ ନିମିତ୍ତ ସନ୍ତାନ ସ୍ନେହ ପ୍ରତି ଚକ୍ଷୁ ମୁଦ୍ରିତ କରିଦେଇଥାନ୍ତି । ସେହି ରାଜକୁମାର ମୋର ଅନୁରୂପ କି ନୁହଁନ୍ତି, ମୁଁ ଜାଣିନାହିଁ । କୁରୂପ ପତି ସହିତ ବିବାହ କରିବା ଅପେକ୍ଷା ମୁଁ ମରଣକୁ ଶ୍ରେୟସ୍କର ମନେକରିବି । ମୋପାଇଁ କୁରୂପ ଚକ୍ରବର୍ତ୍ତୀ ପୁରୁଷ ଅପେକ୍ଷା ଦରିଦ୍ର ରୂପବାନ୍ ପତି ଅଧିକ ସ୍ପୃହଣୀୟ । ଏଣୁ ତୁ ଶତ୍ରୁସେନା ମଧ୍ୟରେ ପ୍ରବେଶ କରି ସେହି ରାଜକୁମାରଙ୍କୁ ଦେଖି ଆସ । ତୁ ତ ନାମ ଓ ଗୁଣ ଉଭୟରେ ଚତୁରିକା ।'

ଶଶାଙ୍କବତୀଙ୍କ ନିର୍ଦ୍ଦେଶରେ ଚତୁରିକା ଆମ ସୈନ୍ୟବାହିନୀ ମଧ୍ୟରେ ପ୍ରବେଶ କରି ଆପଣଙ୍କୁ ଦେଖିଗଲା । ସେ ଏଠାରୁ ଫେରିଯାଇ ରାଜକୁମାରୀଙ୍କୁ କହିଲା, 'ସଖି; ଅନ୍ୟମାନଙ୍କ କଥା ଛାଡ଼, ସ୍ୱୟଂ ବାସୁକି ମଧ୍ୟ ତାଙ୍କ ଅନନ୍ତ ଜିହ୍ୱାଦ୍ୱାରା ରାଜକୁମାରଙ୍କ ରୂପ ବର୍ଣ୍ଣନା କରିପାରିବେ ନାହିଁ । ମୁଁ ଏତିକି କହିପାରେ ଯେ ଆପଣଙ୍କ ପରି ରୂପବତୀ କନ୍ୟା ଯେପରି ପୃଥିବୀରେ ବିରଳ, ସେହିପରି ତାଙ୍କ ପରି ରୂପବାନ୍ ପୁରୁଷ ମଧ୍ୟ ଅନ୍ୟତ୍ର ଦେଖିବା ଅସମ୍ଭବ । ମୁଁ ତୁମକୁ ଯାହା କହିଲି ତାହା ଆଦୌ ଯଥେଷ୍ଟ ନୁହେଁ । ତାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିପାରୁନାହିଁ ବୋଲି ମୁଁ ନିଜକୁ ଧିକ୍କାର କରୁଛି । ତିନିଲୋକର କୌଣସି ସିଦ୍ଧ, ଗନ୍ଧର୍ବ ବା ଦେବତା ତାଙ୍କର ସମକକ୍ଷ ନୁହଁନ୍ତି ।'

ସଖୀଠାରୁ ଏହାଶୁଣି ଶଶାଙ୍କବତୀଙ୍କ ଚିତ୍ତବୃତ୍ତି ଆପଣଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲା । ତା' ସହିତ କନ୍ଦର୍ପ ମଧ୍ୟ ପୁଷ୍ପବାଣଦ୍ୱାରା ତାଙ୍କ ଶରୀରକୁ କୀଳିତ କରିଦେଲେ । ସେହି ସମୟଠାରୁ ସେ ନିଜ ପିତାଙ୍କ ସହିତ ଆପଣଙ୍କର ମଧ୍ୟ କଲ୍ୟାଣ କାମନା କରି ତପସ୍ୟା ଆଚରଣ କରିଛନ୍ତି । ବିରହ ଦୁଃଖରେ ତାଙ୍କର ଉପବାସକ୍ଲିଷ୍ଟ ଶରୀର ଦୁର୍ବଳ ହୋଇପଡ଼ିଛି ।

ତେଣୁ ଆପଣ ଆଜି ରାତିରେ ଗୁପ୍ତ ଭାବେ ସେହି ଭବାନୀ ମନ୍ଦିରକୁ ଯାଆନ୍ତୁ ଏବଂ ତାଙ୍କୁ ସେହି ନିର୍ଜନ ସ୍ଥାନରୁ ଅନ୍ୟମାନଙ୍କ ସହିତ ଅଜ୍ଞାତସାରରେ ହରଣ କରି ଆଣନ୍ତୁ । ଆପଣ ରାଜକୁମାରୀଙ୍କୁ ନେଇ ମାୟାବଟୁଙ୍କ ରାଜଭବନକୁ ଚାଲିଯିବେ । ମୁଁ ରାଜା କର୍ମସେନଙ୍କୁ ଶାନ୍ତ କରି ଅନ୍ୟରାଜାମାନଙ୍କ ସହିତ ସେଠାରେ ଆସି ଉପସ୍ଥିତ ହେବି । ବର୍ତ୍ତମାନ ଏହି ଯୁଦ୍ଧରେ ପୂର୍ଣ୍ଣଚ୍ଛେଦ ଟଣାଯାଉ । ସୈନିକମାନଙ୍କ ସଂହାର ଏତିକିରେ ବନ୍ଦ କରାଯାଉ । ଆପଣ ଏବଂ ଆପଣଙ୍କ ଶ୍ୱଶୁରଙ୍କ ଶାରୀରିକ କୁଶଳତା ମୁଁ କାମନା କରୁଛି । ଜୀବନ ସଂହାର କରାଉଥିବା ସଂଗ୍ରାମର ଏହାହିଁ ଅଧମ ଗତି । ତେଣୁ ବିଦ୍ୱାନ୍‌ମାନେ ଯୁଦ୍ଧକୁ ନିନ୍ଦିତ ଉପାୟ ବୋଲି କହିଛନ୍ତି ।'

ଶ୍ରୁତଧିଙ୍କ ଏହି ପରାମର୍ଶ ଗ୍ରହଣ କରି ମୃଗାଙ୍କଦତ୍ତ ମନ୍ତ୍ରୀମାନଙ୍କ ସହିତ ଅଶ୍ୱପୃଷ୍ଠରେ ଭବାନୀ ମନ୍ଦିର ପ୍ରତି ଅଗ୍ରସର ହେଲେ । ନଗର ଦ୍ୱାରରେ ପ୍ରହରୀମାନଙ୍କ ସଂଖ୍ୟା ନିତାନ୍ତ ସ୍ୱଳ୍ପ ଥିଲା । ସେମାନେ ପୁଣି ଗାଢ଼ନିଦ୍ରାରେ ଶୋଇଯାଇଥିଲେ । ଏଣୁ ନଗରୀ ମଧ୍ୟରେ ପ୍ରବେଶ କରିବା ମୃଗାଙ୍କଦତ୍ତଙ୍କ ପାଇଁ କଷ୍ଟକର ହେଲାନାହିଁ । ନଗରୀ ମଧ୍ୟରେ କେବଳ ନିଦ୍ରିତା ରମଣୀ ଏବଂ ଶିଶୁ ବ୍ୟତୀତ ଅନ୍ୟ କେହି ନଥିଲେ ।

ଶ୍ରୁତଧିଙ୍କ ନିର୍ଦ୍ଦିଷ୍ଟ ମାର୍ଗରେ ଯାଇ ରାଜକୁମାର ଦେବୀ ଭବାନୀଙ୍କ ମନ୍ଦିରରେ ଉପସ୍ଥିତ ହେଲେ । ମନ୍ଦିରଟି ପୁଷ୍ପକରଣ୍ଡ ନାମକ ଏକ ବିସ୍ତୃତ ଉଦ୍ୟାନ ମଧ୍ୟରେ ନିର୍ମିତ ହୋଇଥିଲା । ଚନ୍ଦ୍ର ଧୀରେ ଧୀରେ ନିଜର କିରଣଜାଳ ବିସ୍ତାର କରି ପୂର୍ବଦିଗରୁ ଉଠୁଥିବାଯୋଗୁଁ ମନ୍ଦିରଟି ସ୍ପଷ୍ଟ ଦେଖାଯାଉଥାଏ । ସେବାଶୁଶ୍ରୂଷା କ୍ଳାନ୍ତ ପରିଚାରିକାମାନେ ଗଭୀର ନିଦ୍ରାରେ ଶୋଇଯାଇଥାନ୍ତି । କେବଳ ଶଶାଙ୍କବତୀଙ୍କ ଚକ୍ଷୁକୁ ହିଁ ନିଦ୍ରାଦେବୀ ଆଶ୍ରୟ କରିନଥାନ୍ତି । ସେ ଭାବୁଥାନ୍ତି—

'କେବଳ ମୋପାଇଁ ହିଁ ଏହି ଯୁଦ୍ଧରେ ଉଭୟ ପକ୍ଷରୁ ରାଜା, ରାଜକୁମାର ଏବଂ ବୀର ଯୋଦ୍ଧାମାନେ ପ୍ରତିଦିନ ମୃତ୍ୟୁବରଣ କରୁଛନ୍ତି । ସ୍ୱପ୍ନରେ ଦେବୀ ଅମ୍ବିକା ତ ମୋତେ କହିଛନ୍ତି ଯେ ଏହି ରାଜକୁମାର ହିଁ ମୋର ପୂର୍ବଜନ୍ମର ପତି ଏବଂ ମୋତେ ପାଇବାପାଇଁ କେବଳ ସେ ଏହି ସଂଗ୍ରାମରେ ପ୍ରବୃତ୍ତ ହୋଇଛନ୍ତି । ଏଣେ କାମଦେବ ବାରମ୍ବାର ଶରାଘାତ କରି ମୋର ହୃଦୟକୁ ନେଇ ରାଜକୁମାରଙ୍କ ହସ୍ତରେ ସମର୍ପଣ କରିସାରିଲେଣି । ମୁଁ ଅତ୍ୟନ୍ତ ମନ୍ଦପୁଣ୍ୟା । ପିତା ମୋତେ କଦାପି ଏହି ରାଜକୁମାରଙ୍କ ହସ୍ତରେ ସମର୍ପଣ କରିବେ ନାହିଁ । ଆମ ଉଭୟ ବଂଶ ମଧ୍ୟରେ ବଂଶଗତ ପୁରାତନ ଶତ୍ରୁତା । ପୁଣି ଶୁଣିଛି ପତ୍ରାଳାପଦ୍ୱାରା ରାଜକୁମାର ନିଜର ଅହମିକା ପ୍ରଦର୍ଶନ କରିଛନ୍ତି । ବିଧାତା ବାମ ହେଲେ ସ୍ୱପ୍ନଦତ୍ତ ଦେବୀ ଆଶୀର୍ବାଦର ମଧ୍ୟ କ'ଣ ନିଶ୍ଚିତତା ଅଛି ? ତେଣୁ ମୋର ଅଭିଳଷିତ

ପତି ପ୍ରାପ୍ତିର କୌଣସି ସମ୍ଭାବନା ମୁଁ ଦେଖୁନାହିଁ । ମୋର ସମସ୍ତ ଆଶା ତ ବ୍ୟର୍ଥ ହୋଇଛି । ତେଣୁ ଯୁଦ୍ଧରେ ପିତା କିମ୍ବା ରାଜକୁମାରଙ୍କର କୌଣସି ଅମଙ୍ଗଳ ଘଟିବା ପୂର୍ବରୁ ପ୍ରାଣ ବିସର୍ଜନ କରିବା ମୋପାଇଁ ଉଚିତ ହେବ ।'

ଏହିପରି ଚିନ୍ତାକରି ଶଶାଙ୍କବତୀ ଦେବୀ ଭବାନୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଉଠି ଠିଆହେଲେ । ସେ ମନ୍ଦିର ସମ୍ମୁଖସ୍ଥ ଅଶୋକ ବୃକ୍ଷ ନିକଟକୁ ଆସି ତାର ଶାଖାରେ ନିଜ ଉତ୍ତରୀୟଦ୍ୱାରା ଏକ ମୃତ୍ୟୁପାଶ ପ୍ରସ୍ତୁତ କଲେ ।

ଏ ସମୟରେ ମୃଗାଙ୍କଦତ୍ତ ଉଦ୍ୟାନ ମଧ୍ୟରେ ପ୍ରବେଶକରି ମନ୍ଦିର ନିକଟରେ ଆସି ପହଞ୍ଚିଥାନ୍ତି । ସେ ଅଶ୍ୱଗୁଡ଼ିକୁ ନିକଟସ୍ଥ ବୃକ୍ଷରେ ବନ୍ଧନ କରି ମନ୍ଦିର ମଧ୍ୟରେ ପ୍ରବେଶ କରିବାପାଇଁ ଉଦ୍ୟତ ହେଲେ । ଏ ସମୟରେ ମିତ୍ର ବିମଳବୁଦ୍ଧି ଅଶୋକ ବୃକ୍ଷ ନିକଟରେ ରାଜକୁମାରୀଙ୍କୁ ଦେଖି ମୃଗାଙ୍କଦତ୍ତଙ୍କୁ କହିଲେ, 'ଦେବ ! ଦେଖନ୍ତୁ, ଏଠାରେ କେହି ଜଣେ ଉତ୍ତମ ରମଣୀ ଆତ୍ମହତ୍ୟା କରିବାପାଇଁ ଉଦ୍ୟମ କରୁଛନ୍ତି । ସିଏ କିଏ ହୋଇପାରନ୍ତି !' ତାଙ୍କ କଥାରେ ରାଜକୁମାର ଶଶାଙ୍କବତୀଙ୍କୁ ଦେଖି କହିଲେ, 'ଆରେ ଏ କିଏ ? ରତି ନା ମୂର୍ତ୍ତିମତି ପ୍ରସନ୍ନତା । ଏ କ'ଣ ଚନ୍ଦ୍ର ଜ୍ୟୋସ୍ନାର ଶରୀରଧାରିଣୀ ମୂର୍ତ୍ତି ନା କୌଣସି ଦେବୀ ? କିନ୍ତୁ ଏପରି ହେବା ତ ସମ୍ଭବ ନୁହେଁ । ଯଦି ଦେବୀ ହୋଇଥାନ୍ତେ ତେବେ ଆତ୍ମହତ୍ୟାପାଇଁ କାହିଁକି ଚେଷ୍ଟା କରନ୍ତେ । ଚାଲ ଆମେ ବୃକ୍ଷ ଅନ୍ତରାଳରେ ରହି ତାଙ୍କର ପ୍ରକୃତ ପରିଚୟ ଜାଣିବାପାଇଁ ଚେଷ୍ଟା କରିବା ।' ଏହାକହି ସେ ମିତ୍ରମାନଙ୍କ ସହିତ ସେଠାରେ ଆତ୍ମଗୋପନ କରି ରହିଲେ ।

ଏ ସମୟରେ ଶଶାଙ୍କବତୀ ସେଠାରେ ଠିଆ ହୋଇ ଦେବୀଙ୍କୁ ଜଣାଇଲେ, 'ଦେବି ! ଆପଣ ଆପନ୍ନାର୍ତ୍ତିହାରିଣୀ । ପୂର୍ବଜନ୍ମର ପାପରୁ ଯଦି ରାଜକୁମାର ମୃଗାଙ୍କଦତ୍ତ ଏ ଜନ୍ମରେ ମୋ ପତି ହୋଇ ନପାରନ୍ତି, ତେବେ ଆଗାମୀ ଜନ୍ମରେ ତାଙ୍କୁ ପତିରୂପରେ ଲାଭ କରିବା ନିମିତ୍ତ ଆପଣ ମୋତେ ବରଦାନ କରନ୍ତୁ ।' ଏପରି ପ୍ରାର୍ଥନା କରି ସେ ଅଶ୍ରୁପୂର୍ଣ୍ଣ ନୟନରେ ନିଜ ଗଳାରେ ପାଶଟିକୁ ଗଳାଇଲେ ।

ଏହି ସମୟରେ ସଖୀମାନେ ଜାଗ୍ରତ ହୋଇଉଠିଲେ । ରାଜକୁମାରୀଙ୍କୁ ମନ୍ଦିର ମଧ୍ୟରେ ନଦେଖି ବିଚଳିତ ଭାବରେ ସେମାନେ ଆସି ଏହି ଅଶୋକ ବୃକ୍ଷ ନିକଟରେ ତାଙ୍କ ପ୍ରିୟ ସଖୀଙ୍କୁ ଦେଖି, 'ଏପରି ଦୁଃସାହସ କରିବାପାଇଁ କାହିଁକି ଚେଷ୍ଟା କରୁଛ, ସଖି' କହି ତାଙ୍କୁ ପାଶମୁକ୍ତ କଲେ । ରାଜକୁମାରୀ ଲଜ୍ଜିତ ଓ ବିଷଣ୍ଣ ଭାବରେ ସେଠାରେ ଠିଆ ହୋଇଥିବା ବେଳେ ଭବାନୀ ମନ୍ଦିରର ଗର୍ଭଗୃହ ମଧ୍ୟରୁ ଶୁଣାଗଲା, 'ପୁତ୍ରି ଶଶାଙ୍କବତି ! ତୁ ଦୁଃଖିତ ହୁଅନାହିଁ । ମୁଁ ସ୍ୱପ୍ନରେ ତୋତେ ଯାହା କହିଥିଲି ତାହା କଦାଚିତ୍

ଅନ୍ୟଥା ହେବନାହିଁ । ତୋର ପୂର୍ବଜନ୍ମର ପତି ମୃଗାଙ୍କଦତ୍ତ ତୋ ନିକଟରେ ପହଞ୍ଚିସାରିଲାଣି । ତା' ସହିତ ଯାଇ ସସାଗରା ପୃଥିବୀ ଭୋଗକର ।'

ଏଥିରେ ବିବ୍ରତା ହୋଇ ଶଶାଙ୍କବତୀ ଚତୁର୍ପାର୍ଶ୍ୱରେ ଦୃଷ୍ଟି ଫେରାଇବାକୁ ଲାଗିଲେ । ଏ ସମୟରେ ମୃଗାଙ୍କଦତ୍ତଙ୍କ ମନ୍ତ୍ରୀ ବିକ୍ରମକେଶରୀ ଅଙ୍ଗୁଳି ଦ୍ୱାରା ଇଙ୍ଗିତ କରି କହିଲେ, 'ଦେବି, ମାତା ଭବାନୀ ମିଥ୍ୟା କହିନାହାଁନ୍ତି । ଆପଣଙ୍କ ପ୍ରଣୟପାଶରେ ଆକୃଷ୍ଟ ହୋଇ ଆପଣଙ୍କ ପତି ସମ୍ମୁଖରେ ଦଣ୍ଡାୟମାନ ।' ଶଶାଙ୍କବତୀ ଏହା ଶୁଣି କଟାକ୍ଷପାତପୂର୍ବକ ସେହି ସୁନ୍ଦର, ତେଜସ୍ୱୀ ଏବଂ ସହଚର ପରିବେଷ୍ଟିତ ମୃଗାଙ୍କଦତ୍ତଙ୍କୁ ଚାହିଁ ଦେଖିଲେ । ରାଜକୁମାର ଆକାଶରୁ ଅବତରଣ କରି ଆସିଥିବା ଉଜ୍ଜ୍ୱଳ ଗ୍ରହରାଜି ପରିବେଷ୍ଟିତ ଚନ୍ଦ୍ରମା ପରି ଦେଖାଯାଉଥାନ୍ତି । ତାଙ୍କ ରୂପ ଦର୍ଶକ ଦୃଷ୍ଟିରେ ଅମୃତ ବର୍ଷଣ କରୁଥାଏ । ସେ ଅନ୍ୟମାନଙ୍କପାଇଁ ଉପମାନ ରୂପେ ପ୍ରତୀୟମାନ ହେଉଥାନ୍ତି । ତାଙ୍କୁ ଦେଖିବାମାତ୍ରେ ଶଶାଙ୍କବତୀ ସ୍ତମ୍ଭୀଭୂତ ହୋଇପଡ଼ିଲେ । ତାଙ୍କ ସମଗ୍ର ଶରୀର ରୋମାଞ୍ଚିତ ହୋଇଉଠିଲା । ମନେହେଲା କାମଦେବଙ୍କ ଗୋଟିଏ ପରେ ଗୋଟିଏ ଶର ତାଙ୍କ ଶରୀରରେ ବିଦ୍ଧ ହେଉଅଛି ।

ଏତିକିବେଳେ ମୃଗାଙ୍କଦତ୍ତ ତାଙ୍କ ନିକଟକୁ ଆସି ଅମୃତବୋଳା ସ୍ୱରରେ ଲଜ୍ଜା ଦୂର କରିବାପାଇଁ କହିଲେ, 'ଅବନତାଙ୍ଗି ! ତୁମେ ମୋତେ ନିଜ ଦେଶ, ନିଜ ରାଜ୍ୟ, ବନ୍ଧୁବାନ୍ଧବଙ୍କଠାରୁ ବିଚ୍ଛିନ୍ନ କରି ନିଜ ପ୍ରଣୟ ଡୋରିରେ ଏଠାକୁ ବାନ୍ଧିଆଣିଛ । ମୋତେ ତୁମର ଦାସ ବୋଲି ମନେକର । ତୁମର ଶାରୀରିକ ସୌନ୍ଦର୍ଯ୍ୟ ଦର୍ଶନ କରି ମୋର ନେତ୍ରଯୁଗଳ ସାର୍ଥକ ହୋଇଛନ୍ତି । ଅରଣ୍ୟ ମଧ୍ୟରେ ପଥଭ୍ରଷ୍ଟ ହେବା, ଭୂମି ଉପରେ ଶୋଇବା, ଫଳମୂଳ ଖାଇ କ୍ଷୁଧା ନିବାରଣ କରିବା, ଭୟଙ୍କର ଗ୍ରୀଷ୍ମରେ ପଦଯାତ୍ରା କରିବା ଏବଂ କଠୋର ତପଶ୍ଚରଣ କରିବା ପରି ମୋର ସମସ୍ତ କଷ୍ଟ ତୁମର ଏହି ଅମୃତବର୍ଷିଣୀ ରୂପ ଦର୍ଶନରେ ଦୂରୀଭୂତ ହୋଇଛି । ହେ ହରିଣାକ୍ଷି ! ତୁମର ଯଦି ମୋ ପ୍ରତି ପ୍ରକୃତ ସ୍ନେହଥାଏ ତେବେ ତୁମେ ଆମ ନଗରର ନାରୀମାନଙ୍କ ନେତ୍ରୋତ୍ସବରେ ପରିଣତ ହୁଅ । ସେମାନେ ତୁମକୁ ଦେଖି ଅପୂର୍ବ ଆନନ୍ଦ ଲାଭ କରନ୍ତୁ । ଏହି ଯୁଦ୍ଧ ବନ୍ଦ ହେଉ । ଉଭୟପକ୍ଷଙ୍କ କଲ୍ୟାଣ ହେଉ । ମୁଁ ଗୁରୁଜନମାନଙ୍କ ଆଶୀର୍ବାଦ ଲାଭ କରି ମୋର ଜୀବନକୁ ସଫଳ କରେ ।'

ମୃଗାଙ୍କଦତ୍ତଙ୍କ ଏହି ପ୍ରୀତିପୂର୍ଣ୍ଣ ବାକ୍ୟ ଶଶାଙ୍କବତୀଙ୍କ ଲଜ୍ଜା ସମ୍ପୂର୍ଣ୍ଣ ରୂପେ ଦୂର କରିପାରିଲା ନାହିଁ । ସେ ଅବନତ ବଦନରେ ଧୀରେ ଧୀରେ କହିଲେ, 'ମୁଁ ତ ଆପଣଙ୍କ ଗୁଣରାଶି ବିନିମୟରେ ନିଜକୁ ବିକ୍ରୟ କରିଦେଇଛି । ମୁଁ ଆପଣଙ୍କ ସମ୍ପୂର୍ଣ୍ଣ ଅଧୀନା । ତେଣୁ ଆପଣ ଯାହା ଠିକ୍ ବୋଲି ମନେକରୁଛନ୍ତି ତାହାହିଁ ହେଉ ।'

ଶଶାଙ୍କବତୀଙ୍କ ସମ୍ମତିସୂଚକ ସୁଧାବିନିନ୍ଦିତ ଉକ୍ତିରେ ମୃଗାଙ୍କଦତ୍ତଙ୍କ ଚିତ୍ତବୃତ୍ତି ଶାନ୍ତ ହେଲା । ନିଜର ଅଭିଳାଷ ପୂରଣ ହୋଇଥିବାରୁ ସେ ଦେବୀ ଭବାନୀଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇଲେ ।

ଏହାପରେ ମୃଗାଙ୍କଦତ୍ତ ଶଶାଙ୍କବତୀଙ୍କ ହସ୍ତଧାରଣ ପୂର୍ବକ ଅଶ୍ୱପୃଷ୍ଠରେ ନେଇ ଆରୋହଣ କରାଇଲେ । ସେ ନିଜେ ତାଙ୍କ ସମ୍ମୁଖରେ ବସି ଅଶ୍ୱର ରଜ୍ଜୁ ଖୋଲିଦେଲେ । ପଛରେ ଦଶଜଣ ରଣକୁଶଳୀ ସଚିବ ଶଶାଙ୍କବତୀଙ୍କ ପରିଚାରିକାମାନଙ୍କୁ ଧରି ଅନୁଗମନ କରୁଥାନ୍ତି । ସେମାନେ ସମସ୍ତେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ । ଏହିପରି ସେହି ରାତ୍ରିରେ ହିଁ ମୃଗାଙ୍କଦତ୍ତ କରବାଳ ହସ୍ତରେ ଉଜ୍ଜୟିନୀରୁ ନିର୍ଗତ ହେଲେ । ମନ୍ତ୍ରୀମାନଙ୍କର ରୌଦ୍ରରୂପ ଦେଖି ନଗରରକ୍ଷକମାନେ ସେମାନଙ୍କର ଗତିରୋଧ କରିପାରିଲେ ନାହିଁ । ଶ୍ରୁତଧିଙ୍କ ପରାମର୍ଶ ସ୍ମରଣ କରି ନଗର ବାହାରକୁ ଆସିବା ମାତ୍ରେ ସମସ୍ତେ ମାୟାବଟୁଙ୍କ ରାଜଭବନ ପ୍ରତି ଦ୍ରୁତବେଗରେ ଅଗ୍ରସର ହେଲେ ।

ନଗରରକ୍ଷକମାନେ ସଚେତନ ହେବା ବେଳକୁ ସେମାନେ ଦୃଷ୍ଟି ଅନ୍ତରାଳକୁ ଚାଲିଯାଇଥାନ୍ତି । 'କିଏ ସବୁ ଆସିଥିଲେ ? କୁଆଡ଼େ ସବୁ ଗଲେ ?' କହି ସେମାନେ ଭୁଆଁ ବୁଲୁଥିବା ବେଳେ ରାଜକୁମାରୀଙ୍କ ହରଣ କଥା ଉଜ୍ଜୟିନୀ ନଗରୀରେ ପ୍ରଚାରିତ ହୋଇଗଲା । ମହାରାଣୀ ଏ ଦୁଃସମ୍ବାଦ ମହାରାଜ କର୍ମସେନଙ୍କୁ ଜଣାଇବାପାଇଁ ନଗରାଧକ୍ଷଙ୍କୁ ଶୀଘ୍ର ସେନାବାହିନୀ ମଧ୍ୟକୁ ପ୍ରେରଣ କଲେ ।

ଏଣେ ସେହି ରାତ୍ରିରେ ମୁଖ୍ୟ ଗୁପ୍ତଚର ସମ୍ବାଦ ନେଇ କର୍ମସେନଙ୍କ ନିକଟରେ ପହଞ୍ଚିଥାଏ । ସେ ରାଜାଙ୍କୁ ଜଣାଇଲା, 'ଦେବ ! ଆଜି ସନ୍ଧ୍ୟାରେ ମୃଗାଙ୍କଦତ୍ତ ନିଜ ମନ୍ତ୍ରୀମାନଙ୍କ ସହିତ ଅଶ୍ୱପୃଷ୍ଠରେ ଉଜ୍ଜୟିନୀ ଅଭିମୁଖରେ ଯାଇଛନ୍ତି । ମୋତେ ନିଶ୍ଚିତ ଖବର ମିଳିଛି ଯେ ସେ ଉଜ୍ଜୟିନୀର ମନ୍ଦିର ମଧ୍ୟରେ ଆପଣଙ୍କ କଲ୍ୟାଣପାଇଁ ଦେବୀ ଭବାନୀଙ୍କୁ ଆରାଧନା କରୁଥିବା ଶଶାଙ୍କବତୀଙ୍କୁ ହରଣ କରିବାପାଇଁ ସେଠାକୁ ଯାଇଛନ୍ତି । ଆପଣ ବର୍ତ୍ତମାନ ଯଥୋଚିତ କ୍ରିୟାନୁଷ୍ଠାନ କରନ୍ତୁ ।'

ଗୁପ୍ତଚରଠାରୁ ଏହି ସମ୍ବାଦ ଲାଭ କରି ରାଜା ନିଜର ବିଶ୍ୱସ୍ତ ସେନାପତିଙ୍କୁ ଡକାଇ ଆଣିଲେ । ତାଙ୍କ ନିକଟରେ ସମସ୍ତ କଥା ପ୍ରକାଶ କରି ନିର୍ଦ୍ଦେଶ ଦେଲେ, 'ତୁମେ ପାଞ୍ଚଶହ ବୀର ଅଶ୍ୱାରୋହୀ ଯୋଦ୍ଧାଙ୍କୁ ନେଇ ଗୋପନରେ ଉଜ୍ଜୟିନୀ ଚାଲିଯାଅ । ସେଠାରେ ମୃଗାଙ୍କଦତ୍ତଙ୍କୁ ଯେଉଁଠି ଦେଖିବ ସେଇଠି ତାଙ୍କୁ ହତ୍ୟାକର । ଯଦି ପାର ତାଙ୍କୁ ବନ୍ଦୀକରି ଏଠାକୁ ନେଇଆସ । ସେନାବାହିନୀକୁ ଏଠାରେ ଛାଡ଼ି ମୁଁ ମଧ୍ୟ ତୁମର ଅନୁଗମନ କରୁଅଛି ।' ରାଜାଙ୍କ ଦୃଢ଼ ନିର୍ଦ୍ଦେଶରେ ସେନାପତି ତତ୍କ୍ଷଣାତ୍ ସେନାବାହିନୀ ସହିତ

ଉଜ୍ଜୟିନୀ ଯାତ୍ରା କଲେ । ପଥମଧ୍ୟରେ ନଗରପାଳ ସହିତ ତାଙ୍କର ସାକ୍ଷାତ ହେଲା । ସେ ତାଠାରୁ ଜାଣିବାକୁ ପାଇଲେ ଯେ କେହି ଜଣେ ବୀରପୁରୁଷ ରାଜକୁମାରୀଙ୍କୁ ହରଣ କରିନେଇ ଚାଲିଯାଇଛି । ସେନାପତି ଉଜ୍ଜୟିନୀ ଯିବା ପରିବର୍ତ୍ତେ ନଗରପାଳ ସହିତ ରାଜାଙ୍କ ନିକଟକୁ ଫେରିଆସିଲେ । ସେମାନଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ରାଜା ଦେଖିଲେ ଯେ ବର୍ତ୍ତମାନ ଆଉ କିଛି କରିବା ସମ୍ଭବ ନୁହେଁ । ସେ ସେନାବାହିନୀକୁ ଆକ୍ରମଣରୁ ନିବୃତ୍ତ ହେବାପାଇଁ ନିର୍ଦ୍ଦେଶ ପ୍ରଦାନ କରି ରାତ୍ରିଟି ଦୁଶ୍ଚିନ୍ତାରେ ବିତାଇଦେଲେ । ଶ୍ରୁତଧିଙ୍କ ପରାମର୍ଶ କ୍ରମେ ମାୟାବଟୁ ଓ ଦୁର୍ଗପିଶାଚ ମଧ୍ୟ ସେନାବାହିନୀକୁ ସତର୍କ ରଖି ରାତ୍ରିଯାପନ କଲେ ।

ରାତ୍ରି ଶେଷ ହେଲା । ପ୍ରଭାତରୁ ରାଜା କର୍ମସେନ ପ୍ରକୃତ ଘଟଣା ଜାଣିବାକୁ ପାଇଲେ । ତାଙ୍କର ଆଉ କିଛି କରିବାର ନଥିଲା । ତେଣୁ ବୁଦ୍ଧିମାନ କର୍ମସେନ ଦୂତଦ୍ୱାରା ଶତ୍ରୁପକ୍ଷର ମୁଖ୍ୟଙ୍କ ନିକଟକୁ ଦୂତଦ୍ୱାରା ସମ୍ବାଦ ଦେଲେ, 'ମୃଗାଙ୍କଦତ୍ତ ଛଳନା କରି ମୋର କନ୍ୟାକୁ ହରଣ କରିନେଇଯାଇଛନ୍ତି; ଠିକ୍ ଅଛି, ତାଙ୍କ ବ୍ୟତୀତ ମୋ କନ୍ୟାପାଇଁ ଉପଯୁକ୍ତ ବରପାତ୍ର ଆଉ କିଏ ବା ହୋଇପାରେ ? ବର୍ତ୍ତମାନ ସେ ଆପଣମାନଙ୍କ ସହିତ ଆମ ରାଜଭବନରେ ପଦାର୍ପଣ କରନ୍ତୁ । ଏହାଦ୍ୱାରା ମୁଁ ବିଧିପୂର୍ବକ ମୋର କନ୍ୟାକୁ ତାଙ୍କ ସହିତ ବିବାହ ଦେଇପାରିବି ।'

ଦୂତ ମୁଖରୁ ଏହା ଶୁଣି ଶ୍ରୁତଧିଙ୍କ ସହିତ ମୃଗାଙ୍କଦତ୍ତଙ୍କ ପକ୍ଷର ସମସ୍ତ ରାଜା ଏଥିପାଇଁ ସ୍ୱୀକୃତି ପ୍ରଦାନ କଲେ । ସେମାନେ ଦୂତକୁ କହିଲେ ଯେ ଯଦି ଏହା ହୁଏ ତେବେ ତୁମର ସ୍ୱାମୀ ସେନାବାହିନୀ ସହିତ ନିଜ ନଗରକୁ ପ୍ରତ୍ୟାବର୍ତ୍ତନ କରିଯାନ୍ତୁ । ଆମେ ମଧ୍ୟ ଯାଇ ରାଜକୁମାରଙ୍କୁ ନେଇଆସୁଛୁ ।

ଦୂତ ଫେରିଆସି କର୍ମସେନଙ୍କୁ ଏହା ଜଣାଇବାରୁ ସେ ନିଜର ସେନା ସହିତ ଉଜ୍ଜୟିନୀ ଫେରିଗଲେ ।

ଏଣେ ମୃଗାଙ୍କଦତ୍ତ ଶଶାଙ୍କବତୀଙ୍କ ସହିତ ଯାଇ କାଞ୍ଚନପୁର ସ୍ଥିତ ମାୟାବଟୁଙ୍କ ରାଜଭବନରେ ପହଞ୍ଚିଗଲେ । ମାୟାବଟୁଙ୍କ ରାଣୀମାନଙ୍କଦ୍ୱାରା ସେମାନଙ୍କର ଯଥୋଚିତ ସତ୍କାର କରାଗଲା । ସେମାନେ ଆଦରର ସହିତ ଶଶାଙ୍କବତୀଙ୍କୁ ଅନ୍ତଃପୁର ମଧ୍ୟକୁ ନେଇଗଲେ । ନିଜର ଅଭିଳାଷ ପୂର୍ଣ୍ଣ ହୋଇଥିବା ଯୋଗୁଁ ଆନନ୍ଦିତ ରାଜକୁମାର ସଚିବମାନଙ୍କ ସହିତ ସେଠାରେ ବିଶ୍ରାମ କରିବାକୁ ଲାଗିଲେ ।

ଦ୍ୱିତୀୟ ଦିନ ଶ୍ରୁତଧିଙ୍କ ସହିତ କିରାତାଧିପତି ଶକ୍ତିରକ୍ଷିତ, ଶବରରାଜ ବୀର ମାୟାବଟୁ ଏବଂ ମାତଙ୍ଗ ସେନାଧିପତି ଶକ୍ତିମାନ୍ ଦୁର୍ଗପିଶାଚ ନିଜ ନିଜର ସେନା ସହିତ

ଶ୍ରୁତଧିଙ୍କ ଗହଣରେ ଆସି ସେଠାରେ ପହଞ୍ଚିଲେ । ସେମାନେ ଚନ୍ଦ୍ର ଓ ଚନ୍ଦ୍ରିକା ପରି ମୃଗାଙ୍କଦତ୍ତ ଓ ଶଶାଙ୍କବତୀଙ୍କୁ ଦେଖି ଅଭିନନ୍ଦନ ଜଣାଇଲେ । ମୃଗାଙ୍କଦତ୍ତଙ୍କଦ୍ୱାରା ସତ୍‌କୃତ ଓ ସମ୍ମାନିତ ହୋଇ ସେମାନେ କର୍ମସେନଙ୍କଠାରୁ ପାଇଥିବା ସୂଚନା ପ୍ରଦାନ କରିବା ସହିତ ସେ ନିଜ ସେନାବାହିନୀକୁ ପ୍ରତ୍ୟାବୃତ୍ତ କରିନେଇଯାଇଥିବା କଥା ମଧ୍ୟ ଜଣାଇଲେ । ମିଳିତ ବିଶାଳ ସେନାବାହିନୀ ଗୋଟିଏ ଚଳମାନ ସମୃଦ୍ଧ ନଗରୀର ପ୍ରତୀତି ଜାତ କରୁଥାଏ । ମାୟାବଟୁ ସେମାନଙ୍କ ଉପଯୁକ୍ତ ଚର୍ଚ୍ଚାପାଇଁ ନିଜର ସେବକ ଓ ପରିଚାରକମାନଙ୍କୁ ନିର୍ଦ୍ଦେଶ ଦେଲେ ।

ସମସ୍ତଙ୍କର କ୍ଳାନ୍ତି ଦୂର ହେବାପରେ ରାଜକୁମାର ମୃଗାଙ୍କଦତ୍ତ ହିତମିତ୍ରମାନଙ୍କ ଏକ ବୈଠକ ଡକାଇଲେ । ବିବାହନିମିତ୍ତ ତାଙ୍କର ଉଜ୍ଜୟିନୀ ଯିବା କେତେଦୂର ଠିକ୍ ହେବ ସେ ସମ୍ପର୍କରେ ସମସ୍ତଙ୍କର ମତାମତ ଜିଜ୍ଞାସା କରାଗଲା । ସମସ୍ତ ରାଜା ଓ ମନ୍ତ୍ରୀ ଏକ ସ୍ୱରରେ କହିଉଠିଲେ 'ରାଜା କର୍ମସେନ ଅତ୍ୟନ୍ତ ଦୁଷ୍ଟ । ତାଙ୍କ ବାସଭବନକୁ ଯିବା କିପରି ବା କଲ୍ୟାଣକର ହେବ ? ସେଠାକୁ ଯିବାର ବା ଆଉ ଆବଶ୍ୟକ କ'ଣ ? ଆମେ ତ ତାଙ୍କ କନ୍ୟାଙ୍କୁ ପାଇସାରିଲେଣି ।' ଏହି ଆଲୋଚନା ମଧ୍ୟରେ ଶ୍ରୁତଧିଙ୍କୁ ଚୁପ୍‌ଚାପ୍ ବସିଥିବା ଦେଖି ମୃଗାଙ୍କଦତ୍ତ ତାଙ୍କୁ ଲକ୍ଷ୍ୟ କରି ପଚାରିଲେ, 'ବ୍ରହ୍ମନ୍ ! ତୁମେ ଏପରି ଉଦାସୀନ୍ ଭାବରେ ବସିବା ଦେଖି ମୋର ଆଶଙ୍କା ହେଉଛି । ବର୍ତ୍ତମାନ ତୁମେ କୁହ ଏ ସମ୍ପର୍କରେ ତୁମର ମତାମତ କ'ଣ ?'

ଶ୍ରୁତଧି ପ୍ରଶାନ୍ତ ସ୍ୱରରେ କହିବା ଆରମ୍ଭ କଲେ, 'ଯଦି ଆପଣମାନେ ଶୁଣିବାକୁ ଚାହାଁନ୍ତି, ତାହେଲେ ଶୁଣନ୍ତୁ । ମୋର ମତ ହେଲା ଆମେ କର୍ମସେନଙ୍କ ବାସଭବନକୁ ଯିବା ଉଚିତ ହେବ । ସେ ନିଜର ଦୁଷ୍ଟବୁଦ୍ଧିରୁ ଏ ସମ୍ବାଦ ଆମ୍ଭମାନଙ୍କ ନିକଟକୁ ପଠାଇ ନାହାଁନ୍ତି । କନ୍ୟାର ଅପହରଣ ପରେ ଯୁଦ୍ଧ ପରିତ୍ୟାଗ କରି ଉଜ୍ଜୟିନୀ ଫେରିଯିବାରୁ ତାଙ୍କ କ୍ରୋଧ ଯେ ଶାନ୍ତ ହୋଇଛି, ଏହା ସ୍ପଷ୍ଟ ଜଣାଯାଉଛି । ଆମେ ତାଙ୍କ ବାସଭବନକୁ ଗଲେ ସୁଦ୍ଧା ଆମ ସେନାବାହିନୀ ଆମ ସହିତ ରହିଥିବ । ତେଣୁ ସେ ଆମର କ'ଣ ବା କରିଦେବେ ? ସେଠାକୁ ଗଲେ ଆମେ ତାଙ୍କଠାରୁ ସ୍ନେହ ଓ ଆଦର ହିଁ ପାଇବା । କନ୍ୟା ସ୍ନେହରୁ ସେ ଭବିଷ୍ୟତରେ ଆମର ସହାୟକ ହେବେ । ନିଜ କନ୍ୟାକୁ ବିଧିପୂର୍ବକ ବିବାହ ବେଦୀରେ ଦାନ କରିବାପାଇଁ ଚାହୁଁଥିବାରୁ ସେ ଏପ୍ରକାର ସନ୍ଦେଶ ପ୍ରେରଣ କରିଛନ୍ତି । ତେଣୁ ଆମ୍ଭମାନଙ୍କର ସେଠାକୁ ଯିବା ଆଦୌ ଅନୁଚିତ ହେବନାହିଁ ।' ଶ୍ରୁତଧିଙ୍କ କଥାରେ ସମସ୍ତେ ସମ୍ମତି ପ୍ରକାଶ କଲେ । ତାଙ୍କ ଶାସ୍ତ୍ରଜ୍ଞାନ ଓ ବିଚାର ଶକ୍ତି ସମସ୍ତଙ୍କଦ୍ୱାରା ପ୍ରଶଂସିତ ହେଲା । ମୃଗାଙ୍କଦତ୍ତ ଏଥିରେ ସମ୍ମତି ପ୍ରକାଶ କଲେ ସୁଦ୍ଧା କହିଲେ, 'ଶ୍ରୁତଧି ତ ଠିକ୍ କହିଛନ୍ତି । କିନ୍ତୁ ପିତାମାତାଙ୍କ ବିନା ଅନୁମତିରେ ମୁଁ କିପରି ବା ବିବାହ କରିପାରିବି ?

ତେଣୁ ସେମାନଙ୍କ ନିକଟକୁ କୌଣସି ବ୍ୟକ୍ତିଙ୍କୁ ପଠାଯାଉ । ତାଙ୍କ ମତାମତ ଜାଣିସାରିବା ପରେ ଯାହା ଉଚିତ ହେବ ସେପରି କରିବା ।'

ରାଜକୁମାରଙ୍କ ପିତୃଭକ୍ତି ଓ ଆଚାରଜ୍ଞାନ ସମସ୍ତଙ୍କୁ ବିମୁଗ୍ଧ କଲା । ସମସ୍ତେ ମନ୍ତ୍ରଣା କରି ମୃଗାଙ୍କଦତ୍ତଙ୍କୁ ରାଜ୍ୟରୁ ବହିଷ୍କାର କରିଦେଇଥିବା ପିତାଙ୍କ ନିକଟକୁ ଜଣେ ଦୂତ ପ୍ରେରଣ କରିବା ନିମିତ୍ତ ନିଷ୍ପତ୍ତି ନେଲେ । ଅନ୍ୟତମ ସଚିବ ପରାକ୍ରମୀ ଭୀମପରାକ୍ରମଙ୍କୁ ଏଥିପାଇଁ ମନୋନୀତ କରାଗଲା ।

ଏଣେ ମୃଗାଙ୍କଦତ୍ତଙ୍କୁ ଅଯୋଧ୍ୟାରୁ ନିର୍ବାସନ କରିବା ପରେ ପିତା ଅଯୋଧ୍ୟାପତି ଅମରଦତ୍ତ କିଛିଦିନ ମଧ୍ୟରେ ପ୍ରକୃତ ସତ୍ୟ ଜାଣିପାରିଲେ । ବିନୀତମତି ରାଜକୁମାର ମୃଗାଙ୍କଦତ୍ତଙ୍କ ଉପରେ ଯେଉଁ କଳଙ୍କ ଆରୋପ କରିଥିଲେ ତାହା ଗୁପ୍ତଚରମାନଙ୍କ ଦ୍ୱାରା ମିଥ୍ୟା ପ୍ରମାଣିତ ହେଲା । ରାଜା ସତ୍ୟ ଉଦ୍‌ଘାଟିତ ହେବାରୁ ମର୍ମାହତ ହୋଇପଡ଼ିଲେ । ସେହି ଦୁଷ୍ଟ ମନ୍ତ୍ରୀ ସପରିବାର ମୃତ୍ୟୁଦଣ୍ଡରେ ଦଣ୍ଡିତ ହେଲେ । ପୁତ୍ର ବିଚ୍ଛେଦ ଦୁଃଖ ଅସହ୍ୟ ହୋଇପଡ଼ିବାରୁ ସେ ରାଜଭବନ ପରିତ୍ୟାଗ କରି ନନ୍ଦିଗ୍ରାମସ୍ଥିତ ବିଷ୍ଣୁ ମନ୍ଦିରରେ ଯାଇ ରହୁଥାନ୍ତି । ସପତ୍ନୀକ ତପଶ୍ଚରଣ କରି ସେ ପ୍ରତ୍ୟହ ପୁତ୍ର ସହିତ ପୁନର୍ମିଳନପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଥାନ୍ତି । ଏହିପରି ଦୀର୍ଘଦିନ ବିତିଗଲା । ଦିନେ ଦ୍ରୁତଗାମୀ ଅଶ୍ୱ ପୃଷ୍ଠରେ ଭୀମପରାକ୍ରମ ଅଯୋଧ୍ୟାରେ ଆସି ପହଞ୍ଚିଲେ । ପୂର୍ବରୁ ଗୁପ୍ତଚର ଏ ସମ୍ବାଦ ତାଙ୍କୁ ପ୍ରଦାନ କରିଥାଏ ।

ଭୀମପରାକ୍ରମ ଅଯୋଧ୍ୟା ପହଞ୍ଚି ଅନୁଭବ କଲେ ରାମଚନ୍ଦ୍ରଙ୍କ ବିରହରେ ଦଶରଥ ରାଜଧାନୀ ଅଯୋଧ୍ୟା ପରି ଏହା ବିଷଣ୍ଣ ଓ ନିଷ୍ପ୍ରଭ ଦେଖାଯାଉଛି । ତାଙ୍କୁ ଦେଖି ନଗରବାସୀମାନେ ରାଜକୁମାରଙ୍କ ସମ୍ପର୍କରେ ଜାଣିବାପାଇଁ ଘେରିଗଲେ । ସେ ସେମାନଙ୍କୁ ବାରମ୍ବାର ରାଜପୁତ୍ର ସମ୍ପର୍କରେ ଜଣାଇ ନନ୍ଦିଗ୍ରାମରେ ଯାଇ ଉପସ୍ଥିତ ହେଲେ । ଦୀର୍ଘଦିନ ଧରି ତପସ୍ୟା କରିବା ଫଳରେ ରାଜାଙ୍କ ଶରୀର ଦୁର୍ବଳ ହୋଇପଡ଼ିଥାଏ । ପୁତ୍ର ସମ୍ପର୍କରେ ଜାଣିବାପାଇଁ ସେ ଉତ୍ସୁକ ଥାନ୍ତି । ଭୀମପରାକ୍ରମ ନିକଟକୁ ଯାଇ ତାଙ୍କ ଚରଣ ସ୍ପର୍ଶ କଲେ । ରାଜା ସାଶ୍ରୁ ନୟନରେ ତାଙ୍କୁ ଛାତିରେ ଲଗାଇ ତାଙ୍କର କୁଶଳ ଜିଜ୍ଞାସା କରନ୍ତେ ସେ ମଧ୍ୟ ବାଷ୍ପାକୁଳ କଣ୍ଠରେ କହିଲେ, 'ଦେବ ! ଆପଣଙ୍କ ପୁତ୍ର ମୃଗାଙ୍କଦତ୍ତ ନିଜର ଅମିତ ପରାକ୍ରମଦ୍ୱାରା ରାଜା କର୍ମସେନଙ୍କ କନ୍ୟା ଶଶାଙ୍କବତୀଙ୍କୁ ଲାଭ କରିଛନ୍ତି । କିନ୍ତୁ ପିତୃଭକ୍ତ ରାଜକୁମାରଙ୍କପାଇଁ ଆପଣ ଓ ମହାରାଣୀଙ୍କ ବିନା ବିବାହ ଅଶୋଭନୀୟ ମନେହେଉଛି । ତେଣୁ ସେ ଆପଣମାନଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇ ସେଠାକୁ ଯିବାପାଇଁ ମୋଦ୍ୱାରା ପ୍ରାର୍ଥନା କରିଛନ୍ତି । ବର୍ତ୍ତମାନ ସେ କାଞ୍ଚନପୁର ନଗରୀରେ

ଶବରାଧିପତି ମାୟାବଟୁଙ୍କ ରାଜଭବନରେ ଆପଣମାନଙ୍କ ପ୍ରତୀକ୍ଷାରତ ।' ଏହା କହି ରାଜ୍ୟତ୍ୟାଗ କରିବା ପରଠାରୁ ବନବାସ, ସେମାନଙ୍କର ବିଚ୍ଛେଦ, ପୁନର୍ମିଳନ, ରାଜା କର୍ମସେନଙ୍କ ସହିତ ବିଗ୍ରହ ଓ ସନ୍ଧି ଆଦି ସମସ୍ତ ବୃତ୍ତାନ୍ତ ରାଜା ଅମରଦତ୍ତଙ୍କୁ କହି ଶୁଣାଇଲେ । କେଉଁ ପିତା ବା ପୁତ୍ରର ସୁଖ୍ୟାତିରେ ଗର୍ବିତ ନହୁଏ !

ପରଦିନ ରାଜା ଅମରଦତ୍ତ କାଳବିଳମ୍ବ ନକରି ମନ୍ତ୍ରୀ ପରିଷଦ ଓ ସେନାବାହିନୀକୁ ଯାତ୍ରାପାଇଁ ଆଦେଶ ଦେଲେ । ମହାରାଣୀ, ସାମନ୍ତରାଜା ଏବଂ ସଚିବମାନେ ହସ୍ତୀ ଓ ଅଶ୍ୱପୃଷ୍ଠରେ ଆରୋହଣ କରି ଯାତ୍ରା ଆରମ୍ଭ କଲେ । ମାର୍ଗରେ କାଳବିଳମ୍ବ ନକରି ସେମାନେ ଯାଇ ମାୟାବଟୁଙ୍କ ରାଜଧାନୀ କାଞ୍ଚନପୁରରେ ପ୍ରବେଶ କରିବାରୁ ସାଗର ମହାସାଗରରେ ମିଳିତ ହେଲାପରି ମନେହେଲା । ଦୀର୍ଘଦିନରୁ ଅପେକ୍ଷା କରିଥିବା ପୁତ୍ର ପିତାଙ୍କୁ ପ୍ରଣାମ ଜଣାଇବାପାଇଁ ନଗର ବାହାରକୁ ଆସିଗଲେ । ଦୂରରୁ ଉଭୟେ ଉଭୟଙ୍କୁ ଦେଖି ନିଜ ନିଜ ବାହନରୁ ଅବତରଣ କରି ଆସିଲେ । ପିତା ପୁତ୍ରକୁ ଏପରି ନିବିଡ଼ ଭାବରେ ଆଲିଙ୍ଗନ କଲେ ଯେ ମନେହେଲା ଦୁହେଁ ଏକୀଭୂତ ହୋଇଗଲେ । ଉଭୟଙ୍କ ଚକ୍ଷୁ ଆନନ୍ଦାଶ୍ରୁରେ ପ୍ଳାବିତ ହୋଇଉଠିଲା । ମାତା ଚରଣ ସ୍ପର୍ଶ କରୁଥିବା ପୁତ୍ରକୁ ଦୀର୍ଘ ସମୟ ଧରି କୋଳାଗ୍ରତ କରି ରଖିଲେ । ଛାଡ଼ିଦେଲେ କାଳେ ପୁଣି ବିଚ୍ଛେଦ ଘଟିବ, ଏହି ଭୟରେ ମହାରାଣୀ ପୁତ୍ରକୁ ନିଜ ହୃଦୟରୁ ଦୂରେଇ ପାରୁନଥାନ୍ତି ।

ସମସ୍ତେ ଟିକିଏ ଆଶ୍ୱସ୍ତ ହେବା ପରେ ମୃଗାଙ୍କଦତ୍ତ ନିଜର ମିତ୍ର ଓ ହିତମିତ୍ର ରାଜାମାନଙ୍କ ସହିତ ପିତାଙ୍କର ପରିଚୟ କରାଇଦେଲେ । ସମସ୍ତେ ରାଜା ଓ ମହାରାଣୀଙ୍କୁ ଅଭିବାଦନ ଜଣାଇବାରୁ ସେମାନେ ପୁତ୍ରର ହିତକାମୀ ଏବଂ ବିପଦରେ ସହାୟକ ସମସ୍ତ ବନ୍ଧୁଙ୍କୁ ଅଭିନନ୍ଦନ କଲେ । ମାୟାବଟୁ ରାଜା ଅମରଦତ୍ତଙ୍କୁ ମହାରାଣୀଙ୍କ ସହିତ ନିଜ ବାସଭବନକୁ ନେଇ ପୁତ୍ରବଧୂ ଶଶାଙ୍କବତୀଙ୍କ ସହିତ ସାକ୍ଷାତ କରାଇଲେ । ରାଜକୁମାରୀ ଭୂମିଷ୍ଠ ପ୍ରଣାମ ପୂର୍ବକ ଶାଶୁ ଓ ଶ୍ୱଶୁରଙ୍କୁ ସମ୍ମାନ ଜଣାଇଲେ । ମାୟାବଟୁଙ୍କ ଦ୍ୱାରା ଯଥୋଚିତ ଭାବେ ସତ୍କୃତ ହୋଇ ରାଜା ଅମରଦତ୍ତ ମହାରାଣୀ ଓ ପୁତ୍ରବଧୂ ସହିତ ସେନା ଶିବିରକୁ ଫେରିଆସିଲେ । ସେଠାରେ ସମସ୍ତଙ୍କ ସହିତ ଭୋଜନ କରି ରାଜା ପୁତ୍ରର ସୌଭାଗ୍ୟ ଓ ଗୁଣକୀର୍ତ୍ତନ ଶ୍ରବଣରେ ନିଜକୁ କୃତାର୍ଥ ମନେକରୁଥାଆନ୍ତି । ଗୀତ, ବାଦ୍ୟ, ନୃତ୍ୟ ଆଦି ମଧ୍ୟରେ ଦିନଟି ବିତିଗଲା ।

ଗୁପ୍ତଚରମାନଙ୍କଠାରୁ ଏ ସମସ୍ତ ସମ୍ବାଦ ପ୍ରାପ୍ତ ହୋଇ ସ୍ଥିରବୁଦ୍ଧି ରାଜା କର୍ମସେନ ଏହି ସନ୍ଦେଶ ସହିତ ମୃଗାଙ୍କଦତ୍ତଙ୍କ ନିକଟକୁ ଦୂତ ପ୍ରେରଣ କଲେ । ଦୂତ ଆସି କହିଲା, ''ମହାରାଜ, କର୍ମସେନ ଆପଣମାନଙ୍କୁ କହିଛନ୍ତି—

'ଆପଣମାନେ ତ ଉଜ୍ଜୟିନୀ ଆସିବେ ନାହିଁ । ତେଣୁ ମୁଁ ମୋର ପୁତ୍ର ସୁଷେଣଙ୍କୁ ଆପଣଙ୍କ ନିକଟକୁ ପ୍ରେରଣ କରୁଛି । ସେ ବିଧିପୂର୍ବକ ନିଜ ଭଗିନୀଙ୍କୁ ଆପଣଙ୍କ ହସ୍ତରେ ସମର୍ପଣ କରିବ । ଆପଣ ବିଧିରହିତ ଭାବେ ବିବାହ କରିବେ ନାହିଁ । ଏହାହିଁ ମୋର ସସ୍ନେହ ଅନୁରୋଧ ।'

ମୃଗାଙ୍କଦତ୍ତଙ୍କପାଇଁ ଏହି ପତ୍ର ଓ ସନ୍ଦେଶ ଲାଭ କରି ରାଜା ଅମରଦତ୍ତ ଅତ୍ୟନ୍ତ ଆନନ୍ଦିତ କଣ୍ଠରେ ଦୂତକୁ କହିଲେ, 'ଦୂତ, ତୁମ ପ୍ରଭୁ ରାଜା କର୍ମସେନଙ୍କ ବ୍ୟତୀତ ଏପରି କଥା ଆଉ କିଏ ବା କହିପାରେ ? ତାଙ୍କ ତୀକ୍ଷ୍ଣବୁଦ୍ଧି ଏବଂ ବିଦଗ୍ଧତା ଦେଖି ତାଙ୍କ ପ୍ରତି ମୋର ସମ୍ମାନ ବହୁତ ବଢ଼ିଯାଇଛି । ସେ ତାଙ୍କ ପୁତ୍ର ସୁଷେଣଙ୍କୁ ଏଠାକୁ ପଠାଇଦିଅନ୍ତୁ । ତାଙ୍କ ଅଭିଳାଷ ଅନୁଯାୟୀ ହିଁ ଏଠାରେ ସମସ୍ତ କାର୍ଯ୍ୟ ଅନୁଷ୍ଠିତ ହେବ । ଆମେ ତାଙ୍କର ସନ୍ତୋଷପାଇଁ ସବୁପ୍ରକାର ଉଦ୍ୟମ କରିବୁ ।' ଦୂତକୁ ଏହିପରି କହି ଏବଂ ତାର ଯଥୋଚିତ ସତ୍କାରକରି ରାଜା ତାକୁ ବିଦାୟ ଦେଲେ ।

ଦୂତ ବିଦାୟ ନେବା ପରେ ରାଜା ଅମରଦତ୍ତ ପୁତ୍ର ମୃଗାଙ୍କଦତ୍ତ, ବ୍ରାହ୍ମଣ ଶ୍ରୁତଧି ଏବଂ ଉପସ୍ଥିତ ରାଜାମାନଙ୍କୁ କହିଲେ, 'ଚାଲନ୍ତୁ, ଆମେ ବର୍ତ୍ତମାନ୍ ଅଯୋଧ୍ୟା ଚାଲିଯିବା । ସେଠାରେ ହିଁ ବିବାହ ଉତ୍ସବ କରିବା ଅଧିକ ସୁନ୍ଦର ହେବ । ସୁଷେଣଙ୍କ ଯଥୋଚିତ ସତ୍କାର ମଧ୍ୟ ସେଠାରେ ହୋଇପାରିବ । ରାଜା ମାୟାବଟୁ ଏଠାରେ ସୁଷେଣଙ୍କୁ ପ୍ରତୀକ୍ଷା କରନ୍ତୁ । ରାଜକୁମାର ପହଞ୍ଚିବା ମାତ୍ରେ ସେ ତାଙ୍କୁ ସାଙ୍ଗରେ ଧରି ଅଯୋଧ୍ୟା ଚାଲିଆସିବେ । ଆମେ ଆଗରୁ ଯାଇ ବିବାହ ଉତ୍ସବ ନିମିତ୍ତ ଆୟୋଜନ କରିବା ।'

ରାଜାଙ୍କ କଥା ସମସ୍ତଙ୍କ ମନକୁ ପାଇଲା । ପରଦିନ ସେ ମହାରାଣୀ, ପୁତ୍ର, ସଚିବ, ମିତ୍ରରାଜନ୍ୟବର୍ଗ, ସେନାବାହିନୀ ଏବଂ ଶଶାଙ୍କବତୀଙ୍କୁ ସଙ୍ଗରେ ଧରି ସେଠାରୁ ପ୍ରସ୍ଥାନ କଲେ । ମାୟାବଟୁ ସୁଷେଣଙ୍କୁ ସ୍ୱାଗତ କରିବାପାଇଁ ସେଠାରେ ଅପେକ୍ଷା କରି ରହିଲେ ।

ରାଜାଙ୍କ ମିଳିତ ସେନାବାହିନୀ ଦିଗନ୍ତବିସ୍ତାରୀ ଭୟାନକ ସାଗର ପରି ଆଗକୁ ମାଡ଼ି ଚାଲିଲା । ପ୍ରଧାବିତ ଅଶ୍ୱମାନେ ସାଗରର ଉତ୍ତାଳ ତରଙ୍ଗ ପରି ମନେହେଉଥାନ୍ତି । ବହୁଦୂର ପର୍ଯ୍ୟନ୍ତ ସୈନିକମାନଙ୍କର କୃଷ୍ଣ କେଶରାଶି ବ୍ୟତୀତ ଆଉକିଛି ଦେଖାଯାଉ ନଥାଏ । ସେମାନଙ୍କ ତୁମୁଳ ଓ ପ୍ରଚଣ୍ଡ କୋଳାହଳରେ ଅନ୍ୟକୌଣସି ଶବ୍ଦ ଶୁଣାଯାଉ ନଥାଏ । ଉତ୍ଥିତ ଧୂଳିପଟଳଦ୍ୱାରା ଆକାଶ ଆଚ୍ଛାଦିତ ହୋଇ ପୃଥିବୀ ପରି ଦେଖାଯାଉଥାଏ । ହସ୍ତୀମାନଙ୍କର ବୃଂହଣ ନବୋଦିତ ମେଘର ଭ୍ରାନ୍ତି ସୃଷ୍ଟି କରୁଥାଏ । ଧୀରେଧୀରେ ସମସ୍ତେ ଯାଇ କିରାତରାଜ ଶକ୍ତିରକ୍ଷିତଙ୍କ ବାସଭବନରେ ପହଞ୍ଚିଲେ ।

ତାଙ୍କ ରାଣୀ ଓ ସମଗ୍ର ପରିବାର ହୃଦୟ ଖୋଲି ସମସ୍ତଙ୍କ ସତ୍କାର କଲେ । ଗୋଟିଏ ଦିନ ତାଙ୍କ ଆତିଥ୍ୟ ସ୍ୱୀକାର କରି ବିଶ୍ରାମ ପୂର୍ବକ ସେନାବାହିନୀ ପୁଣି ଆଗକୁ ଅଗ୍ରସର ହେଲା । ସେମାନେ ଅଯୋଧ୍ୟା ନଗରୀରେ ଆସି ପ୍ରବେଶ କଲେ ।

ରାଜା ନିଜ ପରିବାର ଓ ସେନା ସହିତ ରାଜଧାନୀରେ ପ୍ରବେଶ କରିବାରୁ ତାହା ବାତ୍ୟା ଆନ୍ଦୋଳିତ ସରୋବରର ଶୋଭା ଧାରଣ କଲା । ନଗରବାସିନୀ ନାରୀମାନେ ବାତାୟନରୁ ବାତାୟନ ନିକଟକୁ ଦୌଡ଼ିଯାଇ ଏମାନଙ୍କୁ ଦର୍ଶନ କରୁଥାନ୍ତି । ସେମାନଙ୍କର ମୁଖ କମଳ ଏବଂ ଚକ୍ଷୁ ନୀଳକମଳ ପରି ସେହି ସରୋବର ମଧ୍ୟରେ କ୍ରୀଡ଼ା କରୁଥାଏ । ସେନାବାହିନୀରେ ଉଡୁଥିବା ପତାକା ସମୂହ ରାଜହଂସ ପରି ମନେହେଉଥାନ୍ତି । ଦୀର୍ଘଦିନ ପରେ ମୃଗାଙ୍କଦତ୍ତ ନବବଧୂ ସହିତ ନଗରୀରେ ପ୍ରବେଶ କରୁଥିବା ଯୋଗୁଁ ନଗରୀ ନିଜର ଆନନ୍ଦୋଲ୍ଲାସ ପ୍ରକଟନ କରୁଥାଏ । ବ୍ରାହ୍ମଣମାନଙ୍କ ଆଶୀର୍ବାଦ, ବନ୍ଦୀଗଣଙ୍କ ସ୍ତୁତି ଏବଂ ଚାରଣମାନଙ୍କ ଗୁଣଗାନଦ୍ୱାରା ନାଗରିକମାନେ ରାଜା ଓ ରାଜକୁମାରଙ୍କୁ ଅଭିନନ୍ଦନ ଜଣାଇଲେ ।

ଶଶାଙ୍କବତୀଙ୍କ ରୂପ ସମ୍ପଦ ସମସ୍ତଙ୍କୁ ବିସ୍ମିତ କରୁଥାଏ । ସମସ୍ତେ କହୁଥାନ୍ତି, କର୍ମସେନଙ୍କ ଏହି ରୂପବତୀ କନ୍ୟାକୁ ଦେଖିଲେ ମହାସାଗର ଏବଂ ହିମାଳୟ ଲକ୍ଷ୍ମୀ ଏବଂ ପାର୍ବତୀଙ୍କ ପିତା ହୋଇଥିବା ଅଭିମାନକୁ ତ୍ୟାଗ କରିବେ ।

ମଙ୍ଗଳବାଦ୍ୟର ପ୍ରତିଧ୍ୱନି ଦଶଦିଗକୁ ଶବ୍ଦାୟିତ କଲା । ତାହାହିଁ ବୋଧହୁଏ ଥିଲା ପୃଥିବୀର ସମସ୍ତ ରାଜନ୍ୟ ମଣ୍ଡଳୀଙ୍କପାଇଁ ନିମନ୍ତ୍ରଣ ବାର୍ତ୍ତା । ଚର୍ଚ୍ଚରୀ କ୍ରୀଡ଼ାରୁ ଉତ୍‌ଥିତ ସୁରଙ୍ଗ ଧୂଳିରାଶି ନାଗରିକମାନଙ୍କ ଗଭୀର ଅନୁରାଗକୁ ସୂଚିତ କରୁଥିଲା ।

ପରଦିନ ଗଣକମାନେ ବିବାହ ଲଗ୍ନ ସ୍ଥିର କଲେ । ଅମରଦତ୍ତ ପୁତ୍ରର ବିବାହ ଅନୁଷ୍ଠାନପାଇଁ ସମସ୍ତ ଆୟୋଜନ ଶେଷ କରିବାକୁ ଲାଗିଲେ । ମାୟାବଟୁଙ୍କ ନିକଟକୁ ଯାଇଥିବା ଦୂତ ଶୀଘ୍ର ଫେରିଆସି ଦ୍ୱାରପାଳ ଦ୍ୱାରା ସୂଚନା ଦେଇ ରାଜା ଅମରଦତ୍ତଙ୍କୁ ସାକ୍ଷାତ କଲା । ଆନନ୍ଦିତ କଣ୍ଠରେ ସେ ସୂଚନା ଦେଲା ଯେ ମାୟାବଟୁଙ୍କ ସହିତ ସୁଷେଣ ଆସି ନଗର ବାହାରେ ପହଞ୍ଚିଲେଣି । ବାର୍ତ୍ତା ଶୁଣିବାମାତ୍ରେ ରାଜା ନିଜର ସେନା ସହିତ ସେନାପତିଙ୍କୁ ତାଙ୍କ ସ୍ୱାଗତପାଇଁ ପ୍ରେରଣ କଲେ । ସମ୍ବାଦଲାଭ କରି ରାଜକୁମାର ମୃଗାଙ୍କଦତ୍ତ ମଧ୍ୟ ଶାଳକଙ୍କୁ ସ୍ୱାଗତ କରିବା ନିମିତ୍ତ ସେନାପତିଙ୍କ ସହିତ ବାହାରିଲେ । ଦୂରରୁ ହିଁ ଉଭୟ ରାଜକୁମାର ନିଜ ନିଜ ବାହନରୁ ଅବତରଣ କରି ପରସ୍ପରକୁ ଆଲିଙ୍ଗନ ପୂର୍ବକ କୁଶଳ ଜିଜ୍ଞାସା କଲେ । ପ୍ରୀତିବଶତଃ ମୃଗାଙ୍କଦତ୍ତ ସୁଷେଣଙ୍କୁ ନିଜ ରଥ ଉପରେ

ହିଁ ବସାଇ ନଗର ମଧ୍ୟରେ ଯାଉଥିବା ବେଳେ ନଗରବାସିନୀମାନଙ୍କ ଚକ୍ଷୁସବୁ ନିର୍ନିମେଷ ହୋଇଗଲା ।

ସୁଷେଣ ପ୍ରଥମେ ରାଜା ଅମରଦତ୍ତଙ୍କୁ ସାକ୍ଷାତ କଲେ । ରାଜାଙ୍କଦ୍ୱାରା ପ୍ରଭୂତ ସତ୍କୃତ ହୋଇ ସେ ଭଗିନୀ ଶଶାଙ୍କବତୀଙ୍କ ବାସଭବନ ପ୍ରତି ଅଗ୍ରସର ହେଲେ । ସେଠାରେ ଶଶାଙ୍କବତୀ ବାଷ୍ପାକୁଳ ନେତ୍ରରେ ତାଙ୍କର ସ୍ୱାଗତ କରି ଦୃଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । କିନ୍ତୁ କିଛିକ୍ଷଣ ମଧ୍ୟରେ ହିଁ ନାରୀସୁଲଭ ଲଜ୍ଜା ତାଙ୍କୁ ଅଧୋମୁଖୀ କରିଦେଲା । ସୁଷେଣ ଭଗିନୀର ମନୋଭାବ ଜାଣିପାରି କହିଲେ, 'ଏଥିରେ ତୋର ମନୋଦୁଃଖ କରିବାର କିଛି ନାହିଁ । ବାପା କହିଛନ୍ତି ଯେ 'ପୁତ୍ରି ! ତୁ କୌଣସି ଅନୁଚିତ କାର୍ଯ୍ୟ କରିନାହୁଁ । ମୁଁ ଆଜି ଜାଣିପାରୁଛି ଦେବୀ ଭବାନୀଙ୍କ ନିର୍ଦ୍ଦେଶ ଅସତ୍ୟ ନୁହେଁ । ରାଜକୁମାର ମୃଗାଙ୍କଦତ୍ତଙ୍କ ସହିତ ତୋର ବିବାହ ବିଷୟ ସେ ପୂର୍ବରୁ ସୂଚିତ କରିଥିଲେ । ପତିଙ୍କ ମାର୍ଗ ଅନୁସରଣ କରିବା ଏବଂ ତାଙ୍କ ଅନୁଜ୍ଞା ପାଳନ କରିବା ସ୍ତ୍ରୀମାନଙ୍କର ପରମ ବ୍ରତ ।' ଏଥିରେ ଶଶାଙ୍କବତୀଙ୍କ ମନୋବେଦନା ଦୂର ହେଲା । ସେ ତାଙ୍କର ମନୋରଥ ପୂର୍ଣ୍ଣ ହୋଇଥିବା ଜାଣି ବିଶେଷ ଆନନ୍ଦଲାଭ କଲେ ।

ସୁଷେଣ ଭଗିନୀଙ୍କୁ ଏହିପରି ଆଶ୍ୱାସନା ଦେଇ ତାଙ୍କୁ ଧରି ରାଜାଙ୍କ ସମ୍ମୁଖକୁ ଆସିଲେ । ନିଜ ସଞ୍ଚିତ ଦୁଇ ସହସ୍ରଭାର ସୁବର୍ଣ୍ଣ ପାଞ୍ଚଟି ଓଟ ଉପରେ ରଖାଯାଇଥିବା ବହୁମୂଲ୍ୟ ରତ୍ନ ଆଭରଣ ଏବଂ ବିଭିନ୍ନ ମଣିମୁକ୍ତାରେ ପରିପୂର୍ଣ୍ଣ ବହୁ ସୁବର୍ଣ୍ଣ କୁମ୍ଭ ସହିତ ଭଗିନୀଙ୍କୁ ସମର୍ପଣ କରି ରାଜା ଅମରଦତ୍ତଙ୍କୁ କହିଲେ, 'ଦେବ ! ଏହା ମୋର ନିଜ ସଞ୍ଚିତ ସମ୍ପତ୍ତି । ପିତା ଯୌତୁକ ସ୍ୱରୂପ ତାଙ୍କର ଯାହା ଦେବା କଥା, ଦେଇଛନ୍ତି । ସମୟ ଆସିଲେ ତାହା ପ୍ରଦାନ କରାଯିବ ।'

ବନ୍ଧୁ ପରିଜନଙ୍କ ସହିତ ପାନଭୋଜନ କରି ସୁଷେଣ ସେଠାରେ ଅବସ୍ଥାନ କଲେ । ପରଦିନ ବିବାହ ଲଗ୍ନ ଆସି ପହଞ୍ଚିଲା । ରାଜା ଅମରଦତ୍ତ ସମସ୍ତ ବ୍ୟବସ୍ଥା ନିଜେ ବୁଲି ବୁଲି ଦେଖିବା ସହିତ ପୁତ୍ରର ବେଶଭୂଷା, ବିଧିବିଧାନ ପ୍ରତି ମଧ୍ୟ ଦୃଷ୍ଟି ଦେଉଥାନ୍ତି । ଏଣେ, ଶଶାଙ୍କବତୀ ଅଳଙ୍କାରର ଅଳଙ୍କାର ଥିଲେ ସୁଦ୍ଧା କେବଳ ବିଧି ରକ୍ଷାପାଇଁ ପୁର-ନାରୀମାନେ ତାଙ୍କୁ ବିଭିନ୍ନ ବେଶଭୂଷାରେ ସଜ୍ଜିତ କଲେ । ସୁଷେଣ ବରକନ୍ୟାଙ୍କୁ ନେପଥ୍ୟ ଗୃହରୁ ବେଦୀ ଉପରକୁ ନେଇଆସିଲେ । ବ୍ରାହ୍ମଣମାନେ ଅଗ୍ନି ପ୍ରଜ୍ୱଳନ କରି ହବନକ୍ରିୟା ଅନୁଷ୍ଠାନ କରୁଥାନ୍ତି । ଭଗବାନ ବିଷ୍ଣୁ ଭଗବତୀ ଲକ୍ଷ୍ମୀଙ୍କ ହସ୍ତ ଧାରଣ କଲାପରି ମୃଗାଙ୍କଦତ୍ତ ଶଶାଙ୍କବତୀଙ୍କ କମଳ-ସୁନ୍ଦର କରପଲ୍ଲବକୁ ଗ୍ରହଣ କଲେ । ଅଗ୍ନିର ଉତ୍ତାପ ଓ ଧୂମରାଶି ଶଶାଙ୍କବତୀଙ୍କ ଚକ୍ଷୁ ଯୁଗଳକୁ ଆର୍ଦ୍ର କରିଦେଲା । ଅଗ୍ନି ମଧ୍ୟରେ ସେ

ଲାଜାଞ୍ଜଳି ଆହୁତି ଦେଲାବେଳେ ସ୍ୱୟଂ କାମଦେବ ଅଗ୍ନି ମଧ୍ୟରୁ ଆବିର୍ଭୂତ ହୋଇ ହାସ୍ୟ ପ୍ରକାଶ କରୁଥିବା ପରି ମନେହେଲା । ରାଜକୁମାରୀ ପ୍ରଥମ ଅଞ୍ଜଳି ଢାଳିବା ପରେ ସୁଷେଣ ପାଞ୍ଚସହସ୍ର ଅଶ୍ୱ ଏବଂ ଏକଶତ ହସ୍ତୀ ପ୍ରଥମ ବରଣର ଉପହାର ସ୍ୱରୂପ ପ୍ରଦାନ କଲେ । ଦ୍ୱିତୀୟ ଅଞ୍ଜଳି ଶେଷରେ ସେ ଦୁଇଶହ ଭାର ସୁବର୍ଣ୍ଣ ଏବଂ ଉତ୍ତମ ବସ୍ତ୍ର, ବହୁମୂଲ୍ୟ ରତ୍ନ ଓ ମୁକ୍ତା ଅଳଙ୍କାର ବହନ କରିଥିବା ନବେଟି ହସ୍ତୀ ପ୍ରଦାନ କଲେ । ଏହିପରି ରାଜା କର୍ମସେନଙ୍କ ବିଶ୍ୱବିଜୟରୁ ପ୍ରାପ୍ତ ଧନରାଶି ପ୍ରତ୍ୟେକ ଥର ପୂର୍ବର ଦୁଇ ଦୁଇ ଗୁଣକରି ପ୍ରଦାନ କରାଗଲା । ମଙ୍ଗଳବାଦ୍ୟ ସହିତ ବିବାହର ମଙ୍ଗଳକୃତ୍ୟ ସମ୍ପନ୍ନ ହେଲା । ମୃଗାଙ୍କଦତ୍ତ ନବବଧୂ ସହିତ ସ୍ୱବାସଭବନରେ ପ୍ରବେଶ କଲେ । ରାଜା ଅମରଦତ୍ତ କେବଳ ରାଜା, ବନ୍ଧୁସ୍ୱଜନ କିମ୍ବା ରାଜଭବନର ଦାସଦାସୀମାନଙ୍କୁ ନୁହେଁ, ରାଜ୍ୟର ସମସ୍ତ ପ୍ରଜା ଏପରିକି ଶୁକଶାରିକାମାନଙ୍କୁ ମଧ୍ୟ ହସ୍ତୀ, ଅଶ୍ୱ, ରତ୍ନ, ଭୂଷଣ ଏବଂ ଭୂରିଭୋଜନ ଦ୍ୱାରା ଆପ୍ୟାୟନ କଲେ । ରାଜା ଦାନ ଓ ଦକ୍ଷିଣା ଦେବାରେ ଏପରି ଉଦାରତା ପ୍ରଦର୍ଶନ କଲେ ଯେ ରାଜ୍ୟର ପ୍ରତ୍ୟେକଟି ବୃକ୍ଷ ମଧ୍ୟ ବସ୍ତ୍ର ଓ ଅଳଙ୍କାରରେ ବିଭୂଷିତ ହୋଇ ଭୂପୃଷ୍ଠସ୍ଥ କଳ୍ପବୃକ୍ଷର ଶୋଭା ଧାରଣ କଲା । ପୁତ୍ର, ପୁତ୍ରବଧୂ, ମିତ୍ରରାଜା ଓ ସୁଷେଣଙ୍କ ସହିତ ଭୋଜନ ପାନରେ ଦିନଟି ଅତିବାହିତ ହେଲା । ରାଜଭବନ ଭୋଜନ ପାନ, ନୃତ୍ୟଗୀତରେ କୋଳାହଳମୟ ହୋଇଉଠିଥାଏ ।

ଏହିପରି ଭାବରେ ଦିବସଟି ଶେଷ ହେବାକୁ ବସିଲା । ସୂର୍ଯ୍ୟ ନିଜ ପଥରେ ପୃଥିବୀ ନାରୀର ରସପାନ କରି ଅସ୍ତାଚଳର ଗୁହା ମଧ୍ୟରେ ଆତ୍ମଗୋପନ କଲେ । ସୂର୍ଯ୍ୟଙ୍କୁ ନବୀନ ଅନୁରାଗବଶତଃ ସନ୍ଧ୍ୟା ସହିତ ଯାଉଥିବା ଦେଖି ବାସରଶ୍ରୀ ମଧ୍ୟ ଈର୍ଷାବଶତଃ ତାଙ୍କର ଅନୁଗମନ କଲା । ପଂକ୍ତିବଦ୍ଧ ପକ୍ଷୀଗୁଡ଼ିକ ତାଙ୍କର କଟି ମେଖଳା ପରି ଜଣାଯାଉଥାନ୍ତି । ସମୟ ଦେଖି ରାତ୍ରିରୂପିଣୀ ଅଭିସାରିକା ମଧ୍ୟ ତାର ବାସଭବନରୁ ନିର୍ଗତ ହେବା ଦେଖାଗଲା । ସେ ଅତ୍ୟନ୍ତ କାମାତୁରା ଥିଲା । ନିଜ ଶରୀରକୁ କୃଷ୍ଣବସ୍ତ୍ରଦ୍ୱାରା ଆଚ୍ଛାଦନ କରି କେବଳ ତାରକାରୂପକ ଚକ୍ଷୁଦ୍ୱାରା ପଥଚାରଣା କରୁଥାଏ । ଏ ସମୟରେ ଦିଗ୍‌ବଧୂର ନୂତନ ସିନ୍ଦୂର ବିନ୍ଦୁ ପରି ଏବଂ କୋପନା ନାରୀର ବିସ୍ତାରିତ କଟାକ୍ଷ ତୁଲ୍ୟ ଖଣ୍ଡିତ ଚନ୍ଦ୍ରମା ଉଦୟାଚଳ ରୂପକ ହସ୍ତୀର ଅଙ୍କୁଶ ଶୋଭା ଧାରଣପୂର୍ବକ ପୂର୍ବଦିଗରେ ଦେଖାଦେଲେ । ଅନ୍ଧକାର ଦୂରହେବା ଫଳରେ ପ୍ରାଚୀ ବଧୂ ପ୍ରସନ୍ନ ଦେଖାଗଲା । ତାର ଅଧରରେ ସ୍ମିତହାସ୍ୟ ପ୍ରକାଶ ପାଇଲା । ରତିରୂପିଣୀ ଲତାର ନବପଲ୍ଲବ ପରି ସତେ ଯେପରି ବକ୍ରୀଭୂତ ଚନ୍ଦ୍ରମା ପୂର୍ବ ଦିଗ୍‌ବଧୂର କର୍ଣ୍ଣଭୂଷଣରେ ପରିଣତ ହୋଇଗଲା ।

ସନ୍ଧ୍ୟା ଉପଗତ ହେବାରୁ ମୃଗାଙ୍କଦତ୍ତ ସାୟଂକାଳୀନ କ୍ରିୟା ସମାପ୍ତ କରି ନବବଧୂ ଶଶାଙ୍କବତୀଙ୍କ ସହିତ ବାସର ଗୃହ ମଧ୍ୟରେ ପ୍ରବେଶ କଲେ । ଗୃହଟି ବହୁମୂଲ୍ୟ ଶଯ୍ୟା ଓ ସାଜସଜ୍ଜାରେ ପରିପୂର୍ଣ୍ଣ ଥିଲା । ଶଶାଙ୍କବତୀଙ୍କ ମୁଖଚନ୍ଦ୍ର ଦ୍ୱାରା ଚତୁର୍ଦ୍ଦିଗ ଆଲୋକିତ ହେବାରୁ ଭିତ୍ତିଚିତ୍ରଗୁଡ଼ିକ ଜୀବନ୍ତ ହୋଇଉଠିଲେ । ପ୍ରଜ୍ୱଳିତ ମଣିଦୀପିକାଗୁଡ଼ିକ ଶଶାଙ୍କବତୀଙ୍କ ଶରୀର କାନ୍ତି ନିକଟରେ ପୁନରୁକ୍ତି ପରି ବ୍ୟର୍ଥ ଜଣାଯାଉଥାନ୍ତି । ସଲଜ୍ଜ ଭାବରେ ଶଶାଙ୍କବତୀ ଶଯ୍ୟା ଉପରେ ଯାଇ ବସିବା ବେଳେ ମୃଗାଙ୍କଦତ୍ତ ଆଲିଙ୍ଗନ, ଚୁମ୍ବନ ଏବଂ ଅଧରକ୍ଷତଦ୍ୱାରା ତାଙ୍କର ଲଜ୍ଜା ଧୀରେ ଧୀରେ ଦୂର କରିବାକୁ ଚେଷ୍ଟା କଲେ । ଅସ୍ଫୁଟ କଣ୍ଠରେ ଉଚ୍ଚାରିତ ମୁଗ୍ଧା ନାୟିକାର 'ନାହିଁ ନାହିଁ, ସରି ସରି, ବହୁତ ହେଲା' ଆଦି ଅସ୍ଫୁଟ ଶବ୍ଦାବଳୀ ମୃଗାଙ୍କଦତ୍ତଙ୍କୁ ନବୀନ ମୋହନ ମନ୍ତ୍ରର ବୀଜାକ୍ଷର ବୋଲି ମନେ ହେଉଥିଲା । ଶଶାଙ୍କବତୀଙ୍କ ରତ୍ନଜଡ଼ିତ କଟିମେଖଳା ଛିନ୍ନ ହେଲା । ମୃଗାଙ୍କଦତ୍ତଙ୍କ ଦୀର୍ଘଦିନର ଆକାଂକ୍ଷା ପରିପୂର୍ଣ୍ଣତା ଲାଭ କଲା ।

ରତିକ୍ରୀଡ଼ାରେ ଶଶାଙ୍କବତୀଙ୍କ କେଶପାଶ ଲୁଳିତ ହୋଇପଡ଼ିଲା । ରତି ଶ୍ରମରୁ ତାଙ୍କ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ଓ ଅଳସ ଦେଖାଗଲା । ଶରୀରରୁ ଅଙ୍ଗରାଗ ସବୁ ବିଭ୍ରଷ୍ଟ ହୋଇପଡ଼ିଲେ, ଚକ୍ଷୁ ନିମିଳିତ ହୋଇଆସିଲା । ମୃଗାଙ୍କଦତ୍ତ ନିରବଚ୍ଛିନ୍ନ ଭାବେ ଏହି କେଶରାଶି, ଅଙ୍ଗ ଓ ମୁଖକୁ ଧରି କ୍ରୀଡ଼ା କରୁଥାନ୍ତି । ଏହିପରି ବିଳାସ ଲୀଳାରେ ରାତ୍ରିଟି ଶେଷ ହେବାକୁ ବସିଲା । ତଥାପି ଉଭୟଙ୍କ ମନରୁ କ୍ରୀଡ଼ାସକ୍ତି ଦୂର ହେଉନଥାଏ । ଶଶାଙ୍କବତୀ ସୂଚନା ଦେଲେ, 'ଆର୍ଯ୍ୟପୁତ୍ର, ରାତ୍ରିଶେଷ ହେଲା । ବର୍ତ୍ତମାନ ବିଳାସ କ୍ରୀଡ଼ା ଶେଷହେଉ । ରତିଶ୍ରମ ହରଣ କରୁଥିବା ଏବଂ ବିଲୁଳିତ କେଶପାଶକୁ କମ୍ପିତ କରୁଥିବା ପ୍ରଭାତୀ ପବନ ବହିବା ଆରମ୍ଭ ହେଲାଣି । ଚନ୍ଦ୍ରମାଙ୍କ ଅନୁସରଣରେ ରାତ୍ରି ଚାଲିଯିବା ବେଳେ ତା'ର କଣ୍ଠରୁ ଛିନ୍ନ ହୋଇପଡୁଥିବା ମୁକ୍ତା ଗୁଟିକା ପରି କୋମଳ ତୃଣରାଶି ଉପରେ ଶିଶିର ବିନ୍ଦୁଗୁଡ଼ିକ ଦେଖାଗଲେଣି । ଆର୍ଯ୍ୟପୁତ୍ର ! ଦେଖନ୍ତୁ, ଚନ୍ଦ୍ରକିରଣର ସ୍ପର୍ଶରେ ଯେତେବେଳେ କଇଁଫୁଲ ସବୁ ବିକଶିତ ହୋଇଉଠିଥିଲେ, ସେତେବେଳେ ଭ୍ରମରମାନେ ସେଗୁଡ଼ିକରୁ ରସ ଆସ୍ୱାଦନ କରି ସୁଖପୂର୍ବକ କ୍ରୀଡ଼ା କରୁଥିଲେ, କିନ୍ତୁ ବର୍ତ୍ତମାନ ଚନ୍ଦ୍ର ତିରୋହିତ ହେବା ଫଳରେ କଇଁଗୁଡ଼ିକ ଧୀରେଧୀରେ ମୁଦ୍ରିତ ହୋଇଆସିବାରୁ ସେମାନେ ଅନ୍ୟତ୍ର ପଳାୟନ କରୁଛନ୍ତି । ଅବଶ୍ୟ ଦୁଷ୍ଟ ଲୋକମାନେ ବିପଦବେଳେ କାହାର ବା ସାହାଯ୍ୟ କରିଥାନ୍ତି ?'

କନ୍ଦର୍ପ ଯେତେବେଳେ ରାତ୍ରିର ଅଧର ଉପରେ ସୂର୍ଯ୍ୟକିରଣ ସଞ୍ଚାରିତ ହେବା ଦେଖିଲେ ସେତେବେଳେ ସେ ଚନ୍ଦ୍ରମାରୂପକ ତିଳକ ବିନ୍ଦୁକୁ ପୋଛିଦେଇ ତା'ର କୃଷ୍ଣବର୍ଣ୍ଣ

ଶରୀରକୁ ବିଦୀର୍ଣ୍ଣ କରିଦେଲେ । ବନ୍ଦୀମାନଙ୍କ ସ୍ତୁତିଗାନ ଶୁଣାଗଲା । ରତିକ୍ଳାନ୍ତ ମୃଗାଙ୍କଦତ୍ତଙ୍କ ମୁଦ୍ରିତ ଚକ୍ଷୁ ଧୀରେ ଧୀରେ ଖୋଲିଆସିଲା । ସେ ପ୍ରଣୟିନୀଙ୍କ କଣ୍ଠ ଦେଶରୁ ନିଜର ବାହୁ ଉଠାଇ ନେଲେ । ଶଶାଙ୍କବତୀ ଶଯ୍ୟାତ୍ୟାଗ କଲେ । ମୃଗାଙ୍କଦତ୍ତ ମଧ୍ୟ ପ୍ରାତଃକୃତ୍ୟ ସମାପନ କରିବାପାଇଁ ଉଠିଗଲେ ।

ନିର୍ବାସିତ ପୁତ୍ର ବହୁଦିନପରେ ଫେରିଆସିଥିବା ଯୋଗୁଁ ରାଜା ଅମରଦତ୍ତ ତାର ଯେପରି କୌଣସି ଅସୁବିଧା ନହୁଏ ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ବିଳାସ କ୍ରୀଡ଼ାରେ ନବପରିଣିତା ଦମ୍ପତିଙ୍କ ଦିନଗୁଡ଼ିକ ଆନନ୍ଦରେ ବିତିବାକୁ ଲାଗିଲା ।

ରାଜା ଅମରଦତ୍ତ ମୃଗାଙ୍କଦତ୍ତଙ୍କ ଶାଳକ ସୁଷେଣଙ୍କ ପଟ୍ଟବନ୍ଧନ ଉତ୍ସବ ପାଳନ କଲେ । ତାଙ୍କୁ ରାଜ୍ୟର ଏକ ଅଂଶ, ହସ୍ତୀ, ଅଶ୍ୱ, ସୁବର୍ଣ୍ଣ, ବହୁମୂଲ୍ୟ ବସ୍ତ୍ର ଇତ୍ୟାଦି ସହିତ ଏକଶତ ଉତ୍ତମ କନ୍ୟା ପ୍ରଦାନ ଦ୍ୱାରା ସମ୍ମାନିତ କରାଗଲା । ଶବରରାଜ ମାୟାବଟୁ, କିରାତାଧିପତି ଶକ୍ତିରକ୍ଷିତ, ବନ୍ଧୁ ସ୍ୱଜନଙ୍କ ସହିତ ମାତଙ୍ଗ ସେନାଧିପତି ଦୁର୍ଗପିଶାଚ ତଥା ଶ୍ରୁତଧିଙ୍କ ସହିତ ମୃଗାଙ୍କଦତ୍ତଙ୍କ ସମସ୍ତ ସଚିବ ଭୂମି, ଗାଇ, ଅଶ୍ୱ, ସୁବର୍ଣ୍ଣ ତଥା ପଟ୍ଟବସ୍ତ୍ରଦ୍ୱାରା ଯଥୋଚିତ ସମ୍ମାନିତ ହେଲେ । ଧୀରେଧୀରେ ସୁଷେଣ ଓ ବନ୍ଧୁରାଜାମାନେ ବିଦାୟଗ୍ରହଣ ପୂର୍ବକ ସ୍ୱ ସ୍ୱ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିବା ଆରମ୍ଭ କଲେ । ପୁତ୍ର ଓ ପୁତ୍ରବଧୂଙ୍କ ସହିତ ରାଜା ଅମରଦତ୍ତ ପୂର୍ବପରି ପୁଣି ନିଜର ପ୍ରଜାମାନଙ୍କୁ ପରିପାଳନା କରିବାରେ ଲାଗିଲେ । ମୃଗାଙ୍କଦତ୍ତ ମଧ୍ୟ ଶତ୍ରୁମାନଙ୍କୁ ଜୟକରି ବହୁ ବିଳମ୍ବରେ ଲାଭ କରିଥିବା ଶଶାଙ୍କବତୀଙ୍କ ସହିତ ମିତ୍ର ଓ ମନ୍ତ୍ରୀମାନଙ୍କୁ ନେଇ ବିଳାସ କ୍ରୀଡ଼ାରେ ସମୟ ଅତିବାହିତ କରୁଥାନ୍ତି ।

ଧୀରେ ଧୀରେ ରାଜାଙ୍କ କର୍ଣ୍ଣପାର୍ଶ୍ୱରେ ଶୁକ୍ଳକେଶ ଦେଖାଦେଲା । ମନହେଲା ବୃଦ୍ଧାବସ୍ଥା ଯେପରି ତାଙ୍କ କର୍ଣ୍ଣ ନିକଟକୁ ଆସି କହିବା ଆରମ୍ଭ କଲା, 'ତୁମେ ସମସ୍ତ ଐଶ୍ୱର୍ଯ୍ୟ ଉପଭୋଗ କରିସାରିଲେଣି । ବୟସ ମଧ୍ୟ ବହୁତ ହେଲାଣି । ବର୍ତ୍ତମାନ ତୁମର ନିବୃତ୍ତିର ସମୟ ।' ରାଜା ବାର୍ଦ୍ଧକ୍ୟର ସୂଚନା ପାଇ ମନ୍ତ୍ରୀମାନଙ୍କର ଏକ ମନ୍ତ୍ରଣା ସଭା ଆହ୍ୱାନ କଲେ । ସେ ଧୀର ଓ ପ୍ରଶାନ୍ତ ସ୍ୱରରେ କହିଲେ, 'ଶୁଣନ୍ତୁ, ମୋର ଯାହା ଅନ୍ତରର କଥା ମୁଁ ଆପଣମାନଙ୍କୁ କହିଶୁଣାଉଛି । ମୋର ବୟସ ବହୁତ ବଢ଼ିଗଲାଣି । ଯମଙ୍କର ଦୂତମାନେ ମୋର କେଶରାଶି ଧରିବା ଆରମ୍ଭ କଲେଣି । ବୃଦ୍ଧାବସ୍ଥାରେ ସମସ୍ତ ସତ୍ତ୍ୱ ନିଃଶେଷ ହୋଇଯିବା ପରେ ମଧ୍ୟ ମୋ ପରି ରାଜା ଯଦି ଭୋଗତୃଷ୍ଣାରୂପକ ବ୍ୟସନରେ ନିମଜ୍ଜିତ ରହେ, ତେବେ ତାଙ୍କୁ ବିଡ଼ମ୍ବନା ବ୍ୟତୀତ ଆଉ କ'ଣ କୁହାଯିବ ? ବୟସ ବୃଦ୍ଧି

ସହିତ ଲୋଭ ଓ କାମବାସନା ଯଦି ବୃଦ୍ଧିଲାଭ କରନ୍ତି, ତେବେ ତାହା ନିଶ୍ଚିତଭାବେ କୁପୁରୁଷର ଲକ୍ଷଣ; ସତ୍‌ପୁରୁଷମାନଙ୍କୁ ଏହା ଶୋଭାପାଏ ନାହିଁ ।

ବିବୃଦ୍ଧି ଭାଜା ବୟସାସମଂଯତ୍
ବିବର୍ଦ୍ଧତେ ଲୋଭମନୋଭବଗ୍ରହଃ ।
ଅସଂଶୟଂ କାପୁରୁଷବ୍ରତଂ ହି ତତ୍
ସ୍ୱଭାବଜଂ ସତ୍‌ପୁରୁଷୈରଶିକ୍ଷିତମ ।।

ମିତ୍ର ରାଜାମାନଙ୍କ ସହିତ ଅବନ୍ତି ନରପତିଙ୍କୁ ଜୟକରି ମୋର ପୁତ୍ର ମୃଗାଙ୍କଦତ୍ତ ପୃଥିବୀରେ କୀର୍ତ୍ତି ପତାକା ଉଡ଼ାଇଛି । ପ୍ରଜାମାନେ ମଧ୍ୟ ତା' ପ୍ରତି ଅନୁରକ୍ତ । ସେ ଉତ୍ତମ ଚରିତ୍ରବାନ୍ ଏବଂ ତାର ସହାୟକମାନେ ମଧ୍ୟ ତା' ପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ଓ ଅନୁରକ୍ତ । ତେଣୁ ମୁଁ ନିଜର ସମଗ୍ର ରାଜ୍ୟ ତା' ହସ୍ତରେ ସମର୍ପଣ କରି ତପସ୍ୟା କରିବାପାଇଁ କୌଣସି ତୀର୍ଥକ୍ଷେତ୍ରକୁ ଯିବା ନିମିତ୍ତ ମନସ୍ଥ କରିଛି । ସତ୍‌ପୁରୁଷମାନଙ୍କ ପାଇଁ ଏହି ଆଚରଣ ହିଁ ଶୋଭନୀୟ । ଅନ୍ୟମାନେ କୁତ୍ସାରଟନା କରିବା ପୂର୍ବରୁ ବୟସୋଚିତ କର୍ମ କରିବା ହିଁ ଶୋଭନୀୟ ।'

ରାଜାଙ୍କ ଏହି ନିଶ୍ଚିତ ବଚନ ଶୁଣି ତାଙ୍କର ଶାସ୍ତ୍ରଜ୍ଞ ମନ୍ତ୍ରୀମାନେ ଏବଂ ପରେ ମହାରାଣୀ ମଧ୍ୟ ରାଜାଙ୍କ ନିଷ୍ପତ୍ତିକୁ ସମର୍ଥନ କଲେ । ପ୍ରଜାମାନଙ୍କର ମଧ୍ୟ ପ୍ରତିକୂଳ ମନ୍ତବ୍ୟ ଦେବାପାଇଁ କିଛି ନଥିଲା ।

ରାଜା ଜ୍ୟୋତିଷମାନଙ୍କ ପରାମର୍ଶ ଅନୁଯାୟୀ ଏକ ଶୁଭଦିନ ଓ ଶୁଭଲଗ୍ନରେ ପୁତ୍ର ମୃଗାଙ୍କଦତ୍ତର ରାଜ୍ୟାଭିଷେକ ଉତ୍ସବ ପାଳନ କଲେ । ଦିନଟି ବ୍ୟସ୍ତତା ମଧ୍ୟରେ କଟିଗଲା । ପରିଚାରକମାନଙ୍କ କାର୍ଯ୍ୟବ୍ୟସ୍ତତା, ଚାରଣମାନଙ୍କ ଯଶୋଗାନ, ବନ୍ଦୀମାନଙ୍କ ସ୍ତୁତି ଏବଂ ଗଣିକାମାନଙ୍କ ନୃତ୍ୟ ଦେଖିଲେ ମନେହେଉଥିଲା ସତେ ଯେପରି ରାଜଭବନ ଆନନ୍ଦରେ ଫାଟିପଡୁଛି । ବ୍ରାହ୍ମଣମାନ ମୃଗାଙ୍କଦତ୍ତ ଓ ଶଶାଙ୍କବତୀଙ୍କ ମସ୍ତକରେ ବିଭିନ୍ନ ତୀର୍ଥରୁ ଆନୀତ ଜଳ ଢାଳିବାକୁ ଲାଗିଲେ । ରାଜାଙ୍କ ଚକ୍ଷୁରୁ ମଧ୍ୟ ଆନନ୍ଦାଶ୍ରୁ ପ୍ରବାହିତ ହେବାକୁ ଲାଗିଲା । ପଶୁରାଜ ସିଂହ ତୁଲ୍ୟ ଅମିତ ପରାକ୍ରମଶାଳୀ ମୃଗାଙ୍କଦତ୍ତ ସିଂହାସନ ଆରୋହଣ କରନ୍ତେ ଶତ୍ରୁ ରାଜାମାନେ ନିଜ ନିଜର ରାଜ୍ୟ ସିଂହାସନ ହରାଇ ବସିଥିବା ପରି ମନେକଲେ । ରାଜମାର୍ଗସବୁ ତୋରଣ, ପୁଷ୍ପମାଲ୍ୟଦ୍ୱାରା ବିଭୂଷିତ ହେଲା । ବନ୍ଧୁ ରାଜାମାନେ ଯଥାଯୋଗ୍ୟ ସମ୍ମାନଲାଭ କଲେ । ରାଜ୍ୟରେ ଦୀର୍ଘ ସାତଦିନ ଧରି ମହୋତ୍ସବ ପାଳିତ ହେଲା ।

ଅଷ୍ଟମ ଦିନ ରାଜା ଅମରଦତ୍ତ ମହାରାଣୀଙ୍କ ସହିତ ନଗର ମଧ୍ୟରୁ ନିଷ୍କ୍ରାନ୍ତ ହେଲେ । ପୁତ୍ର ଓ ରାଜ୍ୟବାସୀ ତାଙ୍କର ଅନୁଗମନ କରୁଥାନ୍ତି । ଅଶ୍ରୁପୂରିତ ଲୋଚନରେ ସେମାନେ ସମସ୍ତଙ୍କୁ ଫେରାଇଦେଇ ମନ୍ତ୍ରୀମାନଙ୍କ ସହିତ ବାରାଣସୀ ଅଭିମୁଖରେ ଯାତ୍ରା କଲେ । ବାରାଣସୀ ଦେବଦେବ ମହାଦେବଙ୍କ ନିତ୍ୟ ବାସସ୍ଥଳୀ । ରାଜା ସେଠାରେ ଗଙ୍ଗାଜଳରେ ସ୍ନାନ ପୂର୍ବକ ତ୍ରିସନ୍ଧ୍ୟାରେ ତାଙ୍କର ଆରାଧନା କରି ତପଶ୍ଚରଣ କରୁଥାନ୍ତି । ଫଳାହାରପୂର୍ବକ ପତ୍ନୀ ସହିତ ସେ ବହୁଦିନ ଧରି ବିଶ୍ୱନାଥ ଧାମରେ ସଂଯତ ଜୀବନଯାପନ କରିବାକୁ ଲାଗିଲେ ।

ସୂର୍ଯ୍ୟ ଯେପରି ବିସ୍ତୃତ ଓ ନିର୍ମଳ ଆକାଶ ମାର୍ଗରେ ବିରାଜମାନ କରି ନିଜ ପ୍ରଚଣ୍ଡ କରଜାଳରେ ପର୍ବତ ସମୂହକୁ ଆକ୍ରାନ୍ତ ଓ ସନ୍ତପ୍ତ କରୁଥାନ୍ତି, ସେହିପରି ରାଜା ମୃଗାଙ୍କଦତ୍ତ ପବିତ୍ର ଓ ସୁଶୋଭିତ ରାଜସିଂହାସନ ଉପରେ ବସି ନିଜ କର (ଭୁଜବଳ) ପ୍ରଭାବରେ ଶତ୍ରୁ ରାଜାମାନଙ୍କୁ ଆକ୍ରମଣ ଓ ପରାସ୍ତ କରି ରାଜ୍ୟ ଶାସନ କରିବାକୁ ଲାଗିଲେ । ମାୟାବଟୁ ପ୍ରଭୃତି ରାଜା, ଶ୍ୱଶୁର କର୍ମସେନ ତଥା ଅତ୍ୟନ୍ତ ବୁଦ୍ଧିମାନ ଶ୍ରୁତଧିଙ୍କ ସହିତ ନିଜର କୁଶଳୀ ମନ୍ତ୍ରୀମାନେ ସର୍ବଦା ତାଙ୍କୁ ସାହାଯ୍ୟ କରୁଥାନ୍ତି । ସେମାନଙ୍କ ସହାୟତାରେ ସେ ସମସ୍ତ ଦ୍ୱୀପ ସହିତ ସସାଗରା ପୃଥିବୀକୁ ଏକଛତ୍ର ସମ୍ରାଟଭାବେ ଶାସନ କରିବାକୁ ଲାଗିଲେ । ମୃଗାଙ୍କଦତ୍ତଙ୍କ ରାଜତ୍ୱ କାଳରେ ଦୁର୍ଭିକ୍ଷ, ଦସ୍ୟୁ, ଶତ୍ରୁଭୟ ଇତ୍ୟାଦି ଦୁଃଖ କେବଳ ବାକ୍ୟରେ ହିଁ ଶୁଣାଯାଉଥିଲା । ପୃଥିବୀ ସତତ ପ୍ରସନ୍ନ ଓ ଆନନ୍ଦମୟ ଥିଲା । ରାଜ୍ୟବାସୀ ରାମରାଜ୍ୟ ଫେରିଆସିଥିବା ପରି ମନେକରୁଥିଲେ । ସାମନ୍ତରାଜାମାନଙ୍କ ଅଭିବାଦନ, ଶଶାଙ୍କବତୀଙ୍କ ପ୍ରେମ, ମିତ୍ର ଓ ମନ୍ତ୍ରୀମାନଙ୍କ ସୌହାର୍ଦ୍ଦ୍ୟ ଲାଭକରି ସମ୍ରାଟ ମୃଗାଙ୍କଦତ୍ତ ବହୁକାଳ ପର୍ଯ୍ୟନ୍ତ ନିଷ୍କଣ୍ଟକ ରାଜ୍ୟ ଓ ସୁଖ ଭୋଗ କରିବାକୁ ଲାଗିଲେ ।

ମଳୟବନରେ ମୁନି ପିଶଙ୍ଗଜଟ ଏହିପରି ଏକ ବିଚିତ୍ର କଥା ଶୁଣାଇ ରାଜକୁମାର ନରବାହନଦତ୍ତଙ୍କୁ କହିଲେ, 'ପୁତ୍ର ! ପ୍ରାଚୀନ କାଳରେ ଏହିପରି ବହୁକଷ୍ଟ ସ୍ୱୀକାର ପୂର୍ବକ ମୃଗାଙ୍କଦତ୍ତ ଯେପରି ଶଶାଙ୍କବତୀକୁ ଲାଭ କରିଥିଲେ ସେହିପରି ତୁମେ ମଧ୍ୟ ମଦନମଞ୍ଚୁକାଙ୍କୁ ଲାଭ କରିବ ।'

ମୁନିରାଜ ପିଶଙ୍ଗଜଟଙ୍କ ସୁଧାମୟ ବାକ୍ୟରେ ନରବାହନଦତ୍ତଙ୍କ ମନରେ ନୂତନ ଆଶା ସଞ୍ଚାରିତ ହେଲା । ମୁନିଙ୍କଠାରୁ ବିଦାୟ ନେଇ ମଦନମଞ୍ଚୁକାଗତପ୍ରାଣ ନରବାହନଦତ୍ତ ତାଙ୍କୁ ସେପର୍ଯ୍ୟନ୍ତ ନେଇ ଆସି ହଠାତ୍ ଅନ୍ତର୍ହିତା ହୋଇଯାଇଥିବା ଲଳିତ ଲୋଚନାଙ୍କ ସନ୍ଧାନରେ ମଳୟ ପର୍ବତ ଉପରେ ଇତସ୍ତତଃ ଭ୍ରମଣ କରିବାକୁ ଲାଗିଲେ ।





## ଡଃ. ସୁଦର୍ଶନ ଆଚାର୍ଯ୍ୟ

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଜରଡ଼ା ସୁବର୍ଣ୍ଣପୁରର ପ୍ରସିଦ୍ଧ ପଣ୍ଡିତ ରାୟ ବଂଶର ଉତ୍ତର ଦାୟାଦ।

ପ୍ରଖ୍ୟାତଯଶା ସମାଲୋଚକ ତଥା ଗବେଷକ ନଟବର ସାମନ୍ତରାୟ, ଅଧ୍ୟାପକ ଚିନ୍ତାମଣି ବେହେରା, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କଠାରୁ ସାହିତ୍ୟ ବିଦ୍ୟା ଆହରଣ।

ଶ୍ରୀକାକୁଲମ୍ କଳା ମହାବିଦ୍ୟାଳୟ, ବ୍ରହ୍ମପୁର ଖଲ୍ଲିକୋଟ ମହାବିଦ୍ୟାଳୟ ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରି ଅବସର ଗ୍ରହଣ।

ସାହିତ୍ୟ ଓ ସାହିତ୍ୟିକ, ସ୍ରଷ୍ଟା ଓ ସୃଷ୍ଟି, ଓଡ଼ିଆ କାବ୍ୟ କୌଶଳ ପରି ମୌଳିକ ସମାଲୋଚନା ଗ୍ରନ୍ଥ ସହିତ ବିଶାଳ କଥାଗ୍ରନ୍ଥ 'କଥା ସରିତ ସାଗର'ର ଓଡ଼ିଆ ଅନୁବାଦ ଏବଂ ରାମଚନ୍ଦ୍ର ଗ୍ରନ୍ଥାବଳୀ (ଚାରିଖଣ୍ଡ), ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ, ଊନବିଂଶ ଶତାବ୍ଦୀର ବିସ୍ମୃତ ପତ୍ରିକା 'ଇନ୍ଦ୍ରଧନୁ', ଉପେନ୍ଦ୍ର ଭଞ୍ଜଙ୍କ ପ୍ରଥମ କାବ୍ୟକୃତି 'ଚିତ୍ରଲେଖା' ପରି ଦୁଷ୍ପ୍ରାପ୍ୟ ଓ ଦୁର୍ଲ୍ଲଭ ଗ୍ରନ୍ଥଗୁଡ଼ିକ ସମ୍ପାଦିତ ହୋଇ ପ୍ରକାଶିତ।

